କଣ୍ଡୁରି ଚରଣ ଦାସ
ଶ୍ରେଷ୍ଠ ରହସ୍ୟ ଉପନ୍ୟାସ

ଲେଖକ :
କଣ୍ଡୁରି ଚରଣ ଦାସ

ପ୍ରକାଶକ :
ଗ୍ରନ୍ଥାଳୟ
ଅଶୋକ ନଗର
ଭୁବନେଶ୍ୱର-୭୫୧୦୦୯

ପ୍ରଥମ ସଂସ୍କରଣ : ୨୦୦୬

ମୁଦ୍ରଣ : ଟେକ୍ନୋ ଆର୍ଟ ଅଫ୍‌ସେଟ୍
କଲ୍ୟାଣୀନଗର, କଟକ

ମୂଲ୍ୟ : ୨୫୦/- ମାତ୍ର

ISBN - 81- 86894 - 26 - 8

**Kanduri Charan Das**
**Srestha Rahasya Upanyasa**

Author:
**Kanduri Charan Das**

Published by :
**Granthalaya**
Ashok Nagar
Bhubaneswar : 751009

First Edition : **2006**

Printed at :
**Techno Arts Offset**
Kalyani Nagar, Cuttack

Price : **250/-** Only

ଉତ୍ସର୍ଗ :

ମୋର ସାରସ୍ୱତ ଜୀବନର ସହଯାତ୍ରିଣୀ
ପତ୍ନୀ କଳ୍ପନା କୁମାରୀ ଦେବୀ
ସୁଚରିତାସୁ...

# ଓଡ଼ିଆ ରହସ୍ୟ-ସାହିତ୍ୟର କିମ୍ବଦନ୍ତୀ-ପୁରୁଷ, କସ୍ତୁରୀଚରଣ ଦାସ

## ବିଭୂତି ପଟ୍ଟନାୟକ

'କାଦମ୍ବିନୀ' ପାଇଁ ଏକ ବିଶେଷ ସାକ୍ଷାତକାର ଦେବା କଥା କହିବା ମାତ୍ରେ ତାଙ୍କ ପାଟିରୁ ନାହିଁ-ନାହିଁ ଶବ୍ଦ ଦୁଇଟି ସ୍ୱତଃ ଉଚ୍ଚାରିତ ହୋଇଗଲା । ଅନେକ ଦିନୁ ଲେଖାଲେଖି ଛାଡ଼ି ଦେଇଛନ୍ତି । କଲିକତାରୁ ପ୍ରକାଶିତ 'ନବରବି' ପାତିରାମ ପରିଜାଙ୍କ ମୃତ୍ୟୁ ପରେ ବଞ୍ଚାଇ ପାରିନାହାନ୍ତି । ମୁଦ୍ରଣ ବ୍ୟୟଭାର ବୃଦ୍ଧି ପାଇବା ସହିତ ଡାକ କିମ୍ବା ରେଳ ଯୋଗେ ବହି ପଠାଇବା ଖର୍ଚ୍ଚ ଅତ୍ୟଧିକ ବୃଦ୍ଧି ପାଇବା ଯୋଗୁଁ ରାଜଶ୍ରୀ ପକେଟ ବୁକ୍‌ସ ପ୍ରକାଶନ ମଧ୍ୟ ଦୀର୍ଘଦିନ ଧରି ବନ୍ଦ ରହିଛି । ସାହିତ୍ୟ ସହିତ ସକଳ ସଂପର୍କ ଛିନ୍ନ ହୋଇ ଯାଇଛି । ତେଣୁ କୌଣସି ସାହିତ୍ୟ ପତ୍ରିକାକୁ ସାକ୍ଷାତକାର ଦେବା କଥା କହିଲେ ସେ ଖୁବ୍ ସଂକୋଚ ଏବଂ କିଛି ପରିମାଣରେ ମାନସିକ ଯନ୍ତଣା ଅନୁଭବ କରୁଛନ୍ତି ।

ସେଥିପାଇଁ ମୁଁ ଯେତେବେଳେ ପଚାରିଲି- ସାହିତ୍ୟ ପତ୍ରକାକୁ ସାକ୍ଷାତକାର ଦେବେ ନାହିଁ କାହିଁକି ? ତାଙ୍କର ସରଳ ଉତ୍ତର ଥିଲା-କେବେ ଗଳ୍ପ, ଉପନ୍ୟାସ ଲେଖୁଥିଲି- ପତ୍ରିକା ପ୍ରକାଶ କରିବା ପାଇଁ ରାତିରେ ଟ୍ରେଡେଲ ମେସିନ ଉପରେ ଶୋଇ ଯାଇଥିଲି - ପୁସ୍ତକ ଛାପି ବିକ୍ରି କରିବା ପାଇଁ ସାରା ଓଡ଼ିଶା ଘୂରି ବୁଲୁ ଥିଲି - ତାହା ଗତ ଜନ୍ମର ଘଟଣା ଭଳି ମନେହେଉଛି । ପକେଟ ବୁକ୍, 'ନବରବି', ବନ୍ଦ ହୋଇଗଲା ପରେ- ପାଠକମାନଙ୍କର ମୋ ବହି ପଢ଼ିବା ଲାଗି ପ୍ରବଳ ଆଗ୍ରହ ଥିବା ବେଳେ ଲେଖାଲେଖି ଛାଡ଼ି ଦେବା ନିଷ୍ପତ୍ତି କରିବା ପରେ- ଏସବୁ କଥା ପୂରାପୂରି ଭୁଲି ଯାଇ ନଥିଲେ ମୁଁ ପ୍ରେସ ବ୍ୟବସାୟ କରି ନିଜର ଆର୍ଥିକ ସ୍ୱଚ୍ଛଳତା ଫେରାଇ ଆଣି ପାରିନଥାନ୍ତି । ଲେଖାଲେଖି କଥା, ପତ୍ରିକା ପ୍ରକାଶନ

କଥା ପକେଟ ବୁକ୍ସ ଛାପିବା କଥା- ଯେତେ ଦିନ ଭୁଲି ପାରି ନଥିଲି ସେତେଦିନ ପର୍ଯ୍ୟନ୍ତ ପ୍ରବଳ ମାନସିକ ଚାପ ଭିତରେ ଥିଲି । ସାହିତ୍ୟ ପାଇଁ ଜନ୍ମ ହୋଇଛି, ସାହିତ୍ୟ ସୃଷ୍ଟି ଓ ସେବାରେ ସାରା ଜୀବନ କଟାଇ ଦେବି- ଏଇ ଭାବନା ମତେ ଅନ୍ୟ କିଛି କରିବା ପାଇଁ ଦେଉ ନଥିଲା । ବହୁ କଷ୍ଟରେ ଅନେକ ଭାବନା ଚିନ୍ତା ପରେ ସାହିତ୍ୟଠାରୁ ନିଜକୁ ଦୂରରେ ରଖି ପ୍ରେସ ବ୍ୟବସାୟରେ ମନୋନିବେଶ କଲି । ଘରୁ ଖାଇ ଘୋଡ଼ା ଆଗରେ ଡେଇଁ ପତ୍ରିକା ବାହାର କରିବା, ନୂଆ ନୂଆ ଲେଖକଙ୍କୁ ଆବିଷ୍କାର କରି ପତ୍ରିକାରେ ସେମାନଙ୍କୁ ପ୍ରତିଷ୍ଠିତ କରାଇବା, ଅନ୍ୟ ପ୍ରାନ୍ତୀୟ ସାହିତ୍ୟରେ ରହସ୍ୟ ଗଳ୍ପ-ଉପନ୍ୟାସ ଅଧିକରୁ ଅଧିକ ସାହିତ୍ୟିକ ମର୍ଯ୍ୟାଦା ଏବଂ ପାଠକୀୟ ଆଦର ଲାଭ କରୁଥିବା ବେଳେ ରହସ୍ୟ-ସାହିତ୍ୟର ମରୁଡ଼ି ଦେଖି ସେଭଳି ସାହିତ୍ୟ ରଚନାରେ ସଂପୂର୍ଣ୍ଣ ମନୋନିବେଶ କରିବା- ମୋର ଏକୁଟିଆ ଦାୟିତ୍ୱ ନୁହେଁ । ଏଥିପାଇଁ ମୁଁ ଠିକା ନେଇ ନାହିଁ । ଅନ୍ୟମାନେ ସେ କାମ କରନ୍ତୁ- ଏହି ସିଦ୍ଧାନ୍ତ ମତେ ସାହିତ୍ୟ ଠାରୁ ଦୂରରେ ରଖିଛି । ମତେ ଆଉ ଲେଖାଲେଖି କରିବାକୁ କହି କିମ୍ବା ମୋର ସାକ୍ଷାତକାର ନେଇ- ମତେ ଆଉ ମାନସିକ ଯନ୍ତ୍ରଣା ଦିଅନ୍ତୁ ନାହିଁ ।

ଏହା ହିଁ ଥିଲା ଏକଦା କଲିକତାରୁ ପ୍ରକାଶିତ 'ଆସନ୍ତାକାଲି', 'କଳନା', 'ତରଙ୍ଗ'ର ସଂପାଦକ, 'ନବରବି'ର ମୁଦ୍ରାକର ଏବଂ ପ୍ରାଣ ପ୍ରତିଷ୍ଠାତା କଣ୍ଡୁରି ଚରଣ ଦାସଙ୍କ ଖେଦୋକ୍ତି । କଲିକତାରୁ ଆସିଲେ ଭୁବନେଶ୍ୱରରେ ସେ କିଛି ସମୟ ମୋ ସହିତ କଟାନ୍ତି, ମୁଁ କଲିକତା ଗଲେ ତାଙ୍କ ଘରେ ଅତୀତର ସ୍ମୃତି ରୋମନ୍ଥନ କରେ । କାରଣ ତାଙ୍କର 'କଳନା', 'ନବରବି' ଏବଂ ରାଜଶ୍ରୀ ପକେଟ ବୁକ୍ସ ପ୍ରକାଶନ ସହିତ ମତେ ମଧ୍ୟ ସେ ଟାଣି ସଂପୃକ୍ତ କରାଇ ଥିଲେ । କଲିକତାରୁ 'ନବରବି' ପ୍ରକାଶନ ବନ୍ଦ ହୋଇଗଲା ପରେ ଭୁବନେଶ୍ୱରରୁ ଆଉ ଗୋଟିଏ ପତ୍ରିକା ପ୍ରକାଶ କରିବା ପାଇଁ ମଞ୍ଚେଶ୍ୱର ଶିଳ୍ପାଞ୍ଚଳରେ ଏକ ପ୍ରେସ ପ୍ରତିଷ୍ଠା ଲାଗି ସେଡ୍ କିଣିଥିଲେ । କିନ୍ତୁ ସେଥିରୁ ମୁଁ ତାଙ୍କୁ ନିବୃତ୍ତ କରିଥିଲି । ସେହି ଅର୍ଥ ପୁସ୍ତକ ପ୍ରକାଶନରେ ବିନିଯୋଗ କରିବା ପାଇଁ ପରାମର୍ଶ ଦେଇଥିଲି । ଚତୁରଙ୍ଗ ପ୍ରକାଶନୀ ସେଇ ପରାମର୍ଶର ଫଳ । ଏବେ ମଧ୍ୟ ଭଲ ଓଡ଼ିଆ ପତ୍ରିକାଟିଏ ପ୍ରକାଶିତ ହେଉଥିବା ଦେଖିଲେ ତାଙ୍କ ଦୁଇ ଆଖି ଆନନ୍ଦରେ ଚିକ୍‌ଚିକ୍ କରି ଉଠେ ।

'କାଦମ୍ବିନୀ'ର ପ୍ରଥମ ସଂଖ୍ୟା ତାଙ୍କ ହାତରେ ଧରାଇ ଦେବା ପରେ ଲକ୍ଷ୍ୟ କଲି ସେହି ଆଶା ଓ ଆନନ୍ଦର ଆଲୋକ ତାଙ୍କ ମୁହଁରେ ବିଚ୍ଛୁରିତ ହୋଇପଡ଼ିଲା । ଅଭିଜ୍ଞ ଜହୁରୀର ଯେପରି ପ୍ରକୃତ ସୁନା ଚିହ୍ନିବା ଲାଗି କଷଟି ପଥରର ପ୍ରୟୋଜନ ହୁଏ ନାହିଁ, କେଉଁ ପତ୍ରିକା ପାଠକମାନଙ୍କ ହୃଦୟ ଜୟ କରିବା ଲାଗି ସକ୍ଷମ ହେବ କି ନାହିଁ ସେ କଥା ଅନୁମାନ କରିବାକୁ କଣ୍ଡୁରିବାବୁଙ୍କୁ ବଜାର-ସର୍ବେକ୍ଷଣ ରିପୋର୍ଟ ଦେଖିବାକୁ ପଡ଼େ ନାହିଁ । 'କାଦମ୍ବିନୀ'ର ପ୍ରଥମ ସଂଖ୍ୟା ଓଲଟ ପାଲଟ କରି ସେ ସ୍ୱଗତୋକ୍ତି କରିଥିଲେ-ଚେଷ୍ଟା କଲେ ଏ ପତ୍ରିକା ଅନେକ ଦୂର ଯାଇପାରିବ ।

ତା'ପରେ କାଦମ୍ବିନୀ ପାଇଁ ସାକ୍ଷାତକାର ଦେବା ଲାଗି ନାହିଁ କରି ପାରିଲେ ନାହିଁ । କେବଳ କହିଲେ-ଅନେକ ଘଟଣାର ସ୍ଥାନ-କାଳ-ପାତ୍ର ମୋର ସଠିକ ମନେ ନାହିଁ । ଆପଣ ତ ସବୁ ଘଟଣାର ସାକ୍ଷୀ-ତେଣୁ ମୁଁ ଯାହା ଛାଡ଼ି ଯିବି-ଆପଣ ତାକୁ ପୂରଣ କରିଦେବେ ।

ପଟ୍ଟାମୁଣ୍ଡାଇ ଗ୍ରାମ୍ୟ ପରିବେଶ ଛାଡ଼ି କୋଳାହଳମୟ କଲିକତା ନଗରୀକୁ କିପରି ଆସିଲେ- କିପରି ଭାବରେ ଆପଣଙ୍କ ଆଦ୍ୟ ସାହିତ୍ୟିକ ଜୀବନର ସ୍ଫୁରଣ ହୋଇଥିଲା- 'ଆସନ୍ତାକାଲି' କିପରି ପ୍ରକାଶିତ ହେଲା- ସେକଥା ଆଗ କୁହନ୍ତୁ । ଆପଣଙ୍କ ଆଦ୍ୟ ଜୀବନର ଏ ସବୁ ଘଟଣା ସହିତ ମୁଁ ସଂପୃକ୍ତ ନୁହେଁ । ମୁଁ 'ଆସନ୍ତାକାଲି'ର ଲେଖକ- ମୋର ପ୍ରଥମ ଗଳ୍ପ 'ଆସନ୍ତାକାଲି' ପୃଷ୍ଠାରେ ହିଁ ପତ୍ରସ୍ଥ ହୋଇଥିଲା- ଆପଣ ଥିଲେ ତା'ର ସଂପାଦକ- ତେଣୁ ସେ ସବୁ ମୋର ଜାଣିବା କଥା ନୁହେଁ ।

ମୋର ପ୍ରଶ୍ନ ଶୁଣି କଣ୍ଠୁରି ବାବୁଙ୍କ ମୁହଁର ରେଖାସବୁ କୁଞ୍ଚିତ ହୋଇଗଲା । ପଚାଶ ବର୍ଷ ତଳର ଅତୀତ ଆଡ଼କୁ ସେ ଠେଲି ହୋଇଗଲେ ।

ତା'ପରେ ମୃଦୁ କଣ୍ଠରେ କହିଲେ- ଅନ୍ୟ ବହୁ ପଟ୍ଟାମୁଣ୍ଡାଇବାସୀଙ୍କ ଭଳି ମୁଁ ଚାକିରିର ଅନ୍ୱେଷଣରେ କଲିକତା ଆସିଥିଲି । ସାହିତ୍ୟିକ ଶୁକଦେବ ସାହୁ, ଫଟୋଗ୍ରାଫର ମହେଶ୍ୱର ସାହୁ, ସଂପାଦକ ଜଗଦୀଶ ପାଣି-ଆମେ ସମସ୍ତେ କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡାଇର ଲୋକ । ସେତେବେଳେ ବୀମା କମ୍ପାନୀ ଜାତୀୟକରଣ ହୋଇନଥିଲା । ଘରୋଇ କମ୍ପାନୀମାନେ ବୀମା ବ୍ୟବସାୟ କରୁଥିଲେ । ମୁଁ ଗୋଟିଏ ବିଦେଶୀ ବୀମା କମ୍ପାନୀରେ ଚାକିରି ପାଇଗଲି । ସେ କମ୍ପାନୀର ନାମ 'ନର୍ଥ ବ୍ରିଟିଶ ଏଣ୍ଡ ମର୍କାଣ୍ଟାଇନ ଇନ୍‌ସୁରାନ୍ସ କମ୍ପାନୀ' । ବୀମା ବ୍ୟବସାୟ ମୋର ପେଷା, କିନ୍ତୁ ନିଶା ଥିଲା ସାହିତ୍ୟ ରଚନା । ବାଲେଶ୍ୱରର ସ୍ୱର୍ଗୀୟ ରମେଶ ମହାନ୍ତିଙ୍କ ସଂପାଦନାରେ କଟକରୁ ପ୍ରକାଶିତ 'ଦୈନିକ ଆଶା'ରେ ମୋର ପ୍ରଥମ ଗଳ୍ପ, ପ୍ରକାଶିତ ହୋଇଥିଲା । ତା ପରେ 'ଶଙ୍ଖ', 'ଚତୁରଙ୍ଗ' ଓ 'ବୀଣା' ପତ୍ରିକାରେ ମୋର ଗଳ୍ପ ନିୟମିତ ପ୍ରକାଶିତ ହୋଇ ମତେ ସାହିତ୍ୟିକ ସ୍ୱୀକୃତି ଆଣି ଦେଇଥିଲା । ମୋ ଗଳ୍ପ ସହିତ ଗୋପାଳ ଚନ୍ଦ୍ର ମିଶ୍ର ଓ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ କବିତା ଏହି ପତ୍ରିକାର ପ୍ରାୟ ସବୁ ସଂଖ୍ୟାରେ ସ୍ଥାନ ପାଉଥିଲା ।

ସାହିତ୍ୟ ରଚନାରୁ ସାହିତ୍ୟ ପତ୍ରିକା 'ଆସନ୍ତାକାଲି' ସଂପାଦନା ଦାୟିତ୍ୱ ଆପଣ କିପରି ଗ୍ରହଣ କଲେ ?

ମୋର ଏ ପ୍ରଶ୍ନର ଉତ୍ତରରେ ସେ କହିଲେ- ସେତେବେଳେ ଯଦୁନାଥ ଦାଶ ମହାପାତ୍ର କଲିକତା କଲେଜରେ ପାଠ ପଢୁଥିଲେ । ତାଙ୍କ ସହିତ ମୋର ଖୁବ୍ ଅନ୍ତରଙ୍ଗ ବନ୍ଧୁତ୍ୱ ଥିଲା । ଆମ ଦୁଇଜଣଙ୍କ ଲେଖାକୁ ନେଇ 'ଗୋଟିଏ ବୃନ୍ତରେ ଦୁଇଟି ଫୁଲ' ଶୀର୍ଷକ ପୁସ୍ତକ ମଧ୍ୟ ପ୍ରକାଶ ପାଇଥିଲା । ୧୯୫୨ ମସିହାରେ ଯଦୁବାବୁ ଓ ମୁଁ ଉଭୟେ କଲିକତାରୁ ଗୋଟିଏ ସାହିତ୍ୟ ପତ୍ରିକା ପ୍ରକାଶ କରିବା ଲାଗି ପରିକଳ୍ପନା କରିଥିଲୁ । 'ଆସନ୍ତାକାଲି' ସେହି ପରିକଳ୍ପନାର ପରିଣତି । ଆମ ସହିତ ହୃଦାନନ୍ଦ ମଲ୍ଲିକ ଏବଂ ରାମଚନ୍ଦ୍ର ହରିଚନ୍ଦନ ମଧ୍ୟ ଆସନ୍ତାକାଲି ସଂପାଦନାର ଦାୟିତ୍ୱ ତୁଲାଇ ଥିଲେ ।

'ଆସନ୍ତାକାଲି' ପ୍ରଥମେ ମନମୋହନ ପୁସ୍ତକାଳୟର ଦାସ ପ୍ରିଣ୍ଟିଂ ୱାର୍କସ ପ୍ରେସରେ ଛାପା ଯାଉଥିଲା । ସେଠାରୁ ତିନୋଟି ସଂଖ୍ୟା ବାହାରିଲା ପରେ ରାମଚନ୍ଦ୍ର ହରିଚନ୍ଦନ, ପାତିରାମ ପରିଜାଙ୍କ ସହ ସଂପର୍କ ସ୍ଥାପନ କଲେ । ସେତେବେଳେ ପରିଜା ପରିବାର ଦ୍ୱାରା ପରିଚାଳିତ କୋଣାର୍କ କେମିକାଲ୍ସ ସ୍ନୋ, ପାଉଡର ଏବଂ କାଞ୍ଚନ, ଦେହଲଗା ତେଲ ତିଆରି

କରି ସୁନାମ ଅର୍ଜନ କରିଥିଲା । ସେମାନଙ୍କର 'କୋଣାର୍କ' ପ୍ରେସରେ ତା'ପରେ ଆସନ୍ତାକାଲି ନିୟମିତ ଛାପା ହେଲା । ପ୍ରତି ସଂଖ୍ୟାର ମୂଲ୍ୟ ଥିଲା ଚାରିଅଣା ମାତ୍ର । ସେତେବେଳେ ଆସନ୍ତାକାଲି ସଂପାଦନା ଓ ପ୍ରକାଶନ ଥିଲା ମୋର ଏକ ମାତ୍ର ଧ୍ୟାନ । ଛାପାକାର୍ଯ୍ୟ ବିଳମ୍ବ ହେଲେ ସେଇ 'କୋଣାର୍କ' ପ୍ରେସରେ ଖବର କାଗଜ ପକାଇ ତା' ଉପରେ ଅନେକ ରାତି ମୁଁ ଶୋଇ ଯାଇଛି ।

'ଆସନ୍ତାକାଲି'କୁ ରଙ୍ଗିନ କରିବା ପାଇଁ ଆମେ ଆନନ୍ଦବଜାରରେ ମୁଦ୍ରିତ ଛବିର ବ୍ଲକ ନେଇ ଛାପୁଥିଲୁ । ପାତିରାମ ପରିଜା ହେଲେ କଲିକତାରେ ଆନନ୍ଦବଜାର ପତ୍ରିକାର ବିତରକ । ତେଣୁ ସେଠାରୁ ବ୍ଲକ ପାଇବା କଷ୍ଟକର ହେଉନଥିଲା । ହିନ୍ଦୀ 'କାହାଣୀ' ପତ୍ରିକାର କଭର ଚିତ୍ରକୁ ମଧ୍ୟ ଆମେ ଆସନ୍ତାକାଲିର ପ୍ରଚ୍ଛଦ ଭାବରେ ବ୍ୟବହାର କରୁଥିଲୁ । ଏହା ଫଳରେ 'ଆସନ୍ତାକାଲି'ର ବିକ୍ରି ହୁ ହୁ ହୋଇ ବଢ଼ି ଯାଇଥିଲା । ମୋର ଯେତେଦୂର ମନେ ହେଉଛି, ଆମେ 'ଆସନ୍ତାକାଲି' ଛାଡ଼ି ଆସିବା ବେଳକୁ ଏହାର ସର୍କୁଲେସନ ବାର ହଜାରରେ ପହଞ୍ଚି ଥିଲା । ୧୯୫୭/୫୮ ମସିହାରେ କୌଣସି ସାହିତ୍ୟ ପତ୍ରିକାର ଛାପା ଦଶ ହଜାର ସୁଦ୍ଧା ସ୍ପର୍ଶ କରି ନଥିଲା !

- ଆପଣମାନେ 'ଆସନ୍ତାକାଲି' ଛାଡ଼ି ଚାଲି ଆସିଲେ କାହିଁକି ?

ପ୍ରଥମେ ଏ ପ୍ରଶ୍ନର ଉତ୍ତର ଦେବାକୁ କୁଣ୍ଠା ପ୍ରକାଶ କରୁଥିଲେ କଣ୍ଟୁରିବାବୁ, ତା'ପରେ କହିଲେ- ପାଞ୍ଚବର୍ଷ ଧାରାବାହିକ ଭାବରେ ପ୍ରକାଶିତ ହେଲା ପରେ 'ଆସନ୍ତାକାଲି'ର ତତ୍‌କାଳୀନ ପ୍ରକାଶକ ଯଦୁମଣି ପରିଜା ଏହାର ସଂପାଦନା ଦାୟିତ୍ୱ ଶ୍ୟାମସୁନ୍ଦର ମହାପାତ୍ରଙ୍କୁ ଦେବାକୁ ଚାହିଁଲେ । ତେଣୁ ଆମେ ଛାଡ଼ି ଆସିବାକୁ ବାଧ୍ୟ ହେଲୁ ।

ତା'ପରେ ସେ ଢୋକ ଗିଳି କହିଲେ- 'ଆସନ୍ତାକାଲି'ର ବିକ୍ରି ଆମେ ଚାଲି ଆସିବା ପରେ କମିବାକୁ ଲାଗିଲା । ପାତିରାମ ବାବୁ ଆମକୁ ପୁଣି ଡକାଇଲେ । ଶ୍ୟାମ ବାବୁ ଆସନ୍ତାକାଲି ସଂପାଦନା ପାଇଁ ସମ୍ଭବତଃ ଟଙ୍କା ନେଉଥିଲେ । ମଝିରେ ମହାପାତ୍ର ରାଜେନ୍ଦ୍ର ପ୍ରସାଦ ମଧ୍ୟ 'ଆସନ୍ତାକାଲି' କଥା ବୁଝୁଥିଲେ । ଆଉ ମନ ଲାଗିଲା ନାହିଁ । ଦୁଇବର୍ଷ ପରେ ଆସନ୍ତାକାଲି ଛାଡ଼ିଦେଲି ।

- ତା'ପରେ 'ତରଙ୍ଗ' ବାହାର କଲି ।

- ହଁ, ପତ୍ରିକା ପ୍ରକାଶନ କରିବା ସେତେବେଳେ ମୋର ଏକ ନିଶା ହୋଇ ଯାଇଥିଲା । ଆସନ୍ତାକାଲି ଛାଡ଼ି ଆସିବା ପରେ କିଛି ଭଲ ଲାଗୁନଥିଲା । ସେ ସମୟରେ ବିଜୁ ପଟ୍ଟନାୟକ 'କଳିଙ୍ଗ ଏୟାରଲାଇନ'ର ଆକାଉଣ୍ଟାଣ୍ଟ ଥିଲେ ପତିତପାବନ ମହାନ୍ତି । ତାଙ୍କର ନାଟକ କରିବା ନିଶା ଥିଲା । 'ବିଜୟ ଉତ୍କଳ ନାଟ୍ୟ ପରିଷଦ' ନାମରେ ଏକ ନାଟ୍ୟ ଅନୁଷ୍ଠାନ ଗଢ଼ି ସେ ବର୍ଷକୁ କଲିକତାରେ ଦୁଇଥର ଓଡ଼ିଆ ଡ୍ରାମା କରୁଥିଲେ । ଏ ସବୁ ନାଟକର ନିର୍ଦ୍ଦେଶନା ଦେଉଥିଲେ ବିୟୋଡ୍‌କେଶ ତ୍ରିପାଠୀ । ତାଙ୍କ ସହିତ ମିଶି ମୁଁ ପୁଣି ପ୍ରକାଶ କଲି 'ତରଙ୍ଗ' । ପାଞ୍ଚଟି ସଂଖ୍ୟା ପ୍ରକାଶିତ ହେଲା ପରେ ତରଙ୍ଗ ବନ୍ଦ ହୋଇଗଲା । ସେତିକି ବେଳେ ଜଗଦୀଶ ପାଣିଙ୍କ ସହ ମିଶି ମୁଁ 'ସମାବେଶ' ସଂପାଦନା ମଧ୍ୟ କରୁଥିଲି । କିନ୍ତୁ ମୁଁ ଯେପରି ଏକ ଲୋକପ୍ରିୟ ସାହିତ୍ୟ ପତ୍ରିକାର ସ୍ୱପ୍ନ ଦେଖୁଥିଲି- 'ସମାବେଶ' ତାହା ହୋଇ ପାରିନଥିଲା ।

ମୁଁ ମଝିରେ ପଚାରିଲି - ତାପରେ 'କଳନା' କେମିତି ବାହାରିଲା ? କାରଣ 'କଳନା' ସଂପାଦନା ସହିତ ଆପଣ ମତେ ପ୍ରଥମେ ନେଇ ଜଡ଼ିତ କରିଥିଲେ !

କଣ୍ଟୁରି ବାବୁ କିଛି ସମୟ ଧ୍ୟାନମଗ୍ନ ହୋଇ ବସି ରହିଲେ ।

ତା ପରେ ମୃଦୁ କଣ୍ଠରେ କହିଲେ- ସେ ବୋଧହୁଏ ୧୯୬୩ ମସିହା । ମୁଁ ସେତେବେଳେ ମୋ ନିଜ ବହି ଛାପିବା ପାଇଁ ୫-ଏ, ନୁରମହମ୍ମଦ ଲେନରେ ଗୋଟିଏ ପ୍ରେସ ବସାଇଥାଏ । ଟେଲିଫୋନ ନେଇଥାଏ- ୩୪-୫୮୪୩ । ଆପଣମାନେ ଗଲେ ସେହି ପ୍ରେସରେ ଆଡ୍ଡା ଜମି ଉଠେ । ଫ୍ରେଣ୍ଡସ ପବ୍ଲିଶର୍ସର ଜଗନ୍ନାଥ ରଥ, ସହଦେବ ପ୍ରଧାନ ଆଉ ଆପଣ କଲିକତା ଗଲେ ସେଠାକୁ ହିଁ ଯାଇଥାନ୍ତି, ମନେଅଛି ?

- ସବୁ ମନେ ଅଛି । ମହାତ୍ମା ଗାନ୍ଧି ରୋଡ଼ର ପ୍ୟାଲେସ ହୋଟେଲରେ ରହେ ଏବଂ ପ୍ରେସରେ ଓଡ଼ିଆ ସାହିତ୍ୟ ଅପେକ୍ଷା ବଙ୍ଗଳା ସାହିତ୍ୟ ବିଷୟ ଅଧିକ ଚର୍ଚ୍ଚା ହୁଏ । ସେତେବେଳେ 'ଉଲ୍ଟୋରଥ', 'ପ୍ରାସାଦ' ଓ 'ନବକଲ୍ଲୋଳ' ବଙ୍ଗଳାର ସର୍ବାଧିକ ଲୋକପ୍ରିୟ ପତ୍ରିକା- ଅବଶ୍ୟ ସାପ୍ତାହିକ 'ଦେଶ' ପଛକୁ ଆପଣ ଏସବୁ ପତ୍ରିକା ମୋ ପାଇଁ କିଣି ରଖିଥାନ୍ତି ।

-ହଁ, ଆମ ପ୍ରେସ ଉପରେ ରହୁ ଥାଆନ୍ତି ଚିତ୍ତ ରଂଜନ ନାୟକ । ସେ ରେଳବାଇ କଣ୍ଟ୍ରାକ୍ଟର ଥିଲେ ଏବଂ ଓଡ଼ିଶା ରାଜନୀତି ସହ ସଂପର୍କ ରଖୁଥିଲେ । ତାଙ୍କର ସହାୟତାରେ 'କଳନା' ବାହାରିଲା । ସେ ସଂପାଦନା ମଣ୍ଡଳୀରେ ନନ୍ଦିନୀ ଶତପଥୀଙ୍କୁ ରଖିବାକୁ ମଧ୍ୟ ପରାମର୍ଶ ଦେଲେ । ନନ୍ଦିନୀ ଦେବୀ, ଚିତ୍ତବାବୁ ଓ ମୁଁ 'କଳନା' ସଂପାଦନା କରୁଥିଲୁ । କିନ୍ତୁ ଅଧିକାଂଶ ସଂପାଦକୀୟ ଲେଖା ଠାରୁ ଆରମ୍ଭ କରି ଲେଖା ନିର୍ବାଚନ ଓ ସଂଗ୍ରହ ପର୍ଯ୍ୟନ୍ତ - ସବୁ କାମ ଆପଣଙ୍କୁ କରିବାକୁ ହେଉ ଥିଲା । ଖୁବ୍ ଭଲ ଚାଲିଥିଲା 'କଳନା' । କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଆତ୍ମଜୀବନୀ 'ଅଙ୍ଗେ ଯାହା ନିଭାଇଛି', 'କଳନା'ରେ ହିଁ ପ୍ରଥମେ ଧାରାବାହିକ ଭାବେ ପ୍ରକାଶ ପାଇଥିଲା । କିନ୍ତୁ ଚିତ୍ତବାବୁ ଏମ.ଏଲ.ଏ. ହୋଇ ଓଡ଼ିଶାରେ ମନ୍ତ୍ରୀ ହେଲେ, ନନ୍ଦିନୀ ଦେବୀ ମଧ୍ୟ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ । ମୁଁ କିଛି ଦିନ ଏକାକୀ 'କଳନା' ବାହାର କରୁଥିଲି - କିନ୍ତୁ ଆର୍ଥିକ କ୍ଷତି ସହି ପତ୍ରିକା ପ୍ରକାଶ କରିବା ବେଶି ଦିନ ସମ୍ଭବ ହେଲା ନାହିଁ । 'କଳନା' ବନ୍ଦ ହୋଇଗଲା ।

- ରାଜଶ୍ରୀ ପକେଟ ବୁକ୍ସ ପରିକଳ୍ପନା କେବେ କଲେ ?

'କଳନା' ବାହାରୁ ଥିବା ବେଳେ ହିଁ ହିନ୍ଦ୍ ପକେଟ ବୁକ୍ସର ଲୋକପ୍ରିୟତା ଲକ୍ଷ୍ୟ କରି ଓଡ଼ିଆ ପକେଟ ବୁକ୍ସ ଚିନ୍ତା ମୋ ମୁଣ୍ଡରେ ପ୍ରବେଶ କଲା । ସେତେବେଳେ ଯଦୁନାଥ ଦାଶ ମହାପାତ୍ରଙ୍କର ରାଜଶ୍ରୀ ପ୍ରେସ ଥିଲା । ତାହାର ନାମ ଅନୁସାରେ ପ୍ରଥମେ ରାଜଶ୍ରୀ ପ୍ରକାଶନୀ ଓ ପରେ ରାଜଶ୍ରୀ ପକେଟ ବୁକ୍ସ ଆରମ୍ଭ କଲି ।

ତା ପରେ ଟିକିଏ ପଛକୁ ଫେରିଯାଇ ସେ କହିଲେ- ୧୯୬୨-୬୩ ମସିହାରେ ମନମୋହନ ପୁସ୍ତକାଳୟ ଟାଇପ ଫାଉଣ୍ଡେରିରୁ ଏକ ହଜାର ଟଙ୍କା ଅଗ୍ରୀମ ଦେଇ ଟାଇପ ଆଣି କଳିଙ୍ଗ ମୁଦ୍ରଣୀ ଆରମ୍ଭ କରିଥିଲି । ସେହି ପ୍ରେସରୁ ପ୍ରଥମେ ବାହାରିଲା 'କଳନା' ଓ ପରେ ପରେ ଛପା ହେଲା ରାଜଶ୍ରୀ ପକେଟ ବୁକ୍ସ । ଏ ସିରିଜରେ ଏକା ମୋର ରହସ୍ୟ

ଉପନ୍ୟାସ ନୁହେଁ, ଆପଣଙ୍କର, କଳ୍ପନା ଦେବୀ, ମିହିର ମହାନ୍ତିଙ୍କ ଉପନ୍ୟାସ, ଉମାଶଙ୍କର ପଣ୍ଡାଙ୍କ ଅନୂଦିତ ଉପନ୍ୟାସ ପ୍ରକାଶ ପାଇ ଅପୂର୍ବ ଲୋକପ୍ରିୟତା ଅର୍ଜନେ କରିଥିଲା । ଏକାକୀ ବହି ଲେଖିବା, ଛାପିବା ଏବଂ ବିତରଣ କରିବା ମୋ ପକ୍ଷରେ ସମ୍ଭବ ହେଉ ନଥିଲା ବୋଲି ସାନ ଭାଇ ପ୍ରାଣକୃଷ୍ଣକୁ ଆଣି ପ୍ରେସ ଦାୟିତ୍ୱରେ ରଖିଥିଲି । ଯଥା ସମ୍ଭବ ସୁଲଭ ମୂଲ୍ୟରେ (ପକେଟ ବୁକ୍‌ସ ଦାମ୍ ଥିଲା ଦୁଇ ଟଙ୍କା ମାତ୍ର) କମ୍ ଲାଭ ରଖି ସୁଖପାଠ୍ୟ ଉପନ୍ୟାସ ପାଠକମାନଙ୍କୁ ଯୋଗାଇ ଦେବା ରାଜଶ୍ରୀ ପକେଟ ବୁକ୍‌ସ ପ୍ରକାଶନର ମୂଳଲକ୍ଷ୍ୟ ଥିଲା । ଇଂଲିଶ ପକେଟ ବୁକ୍ ଷ୍ଟାଇଲ ରାଜଶ୍ରୀ ପକେଟ ବୁକ୍ ଧାରାରେ ସୁରଭିତ ରଙ୍ଗରେ ଲେଖା ଯାଉଥିଲା । ରାଜଶ୍ରୀ ପକେଟ ବୁକ୍‌ସ ବଜାରକୁ ଯିବା ମାତ୍ରେ ପାଠକମାନଙ୍କ ଭିତରେ ଆଲୋଡ଼ନ ସୃଷ୍ଟି ହୋଇଥିଲା । ପ୍ରଫେସର କୃଷ୍ଣଚରଣ ବେହେରା ପ୍ରମୁଖ ଏଭଳି ଉଦ୍ୟମୁକ ଅଭିନନ୍ଦନ ଜଣାଇ ଚିଠି ଲେଖିଥିଲେ । ଆସନ୍ତାକାଲି ଓ କଳନାର ଯେଉଁମାନେ ଏଜେଣ୍ଟ ଥିଲେ ସେମାନଙ୍କ ପାଖକୁ ପକେଟ ବୁକ୍ ପଠାଯାଉଥିଲା । ଶତକଡ଼ା ପଞ୍ଚାଅଶୀ ଭାଗ ଏଜେଣ୍ଟ ଟଙ୍କାଦେଇ ପ୍ୟାକେଟ ଛଡ଼ାଇ ନେଉଥିଲେ । ଶତକଡ଼ା ୧୫ଭାଗ ପ୍ୟାକେଟ ଫେରସ୍ତ ଆସୁଥିଲା । ଆମେ ପାଞ୍ଚହଜାର କବି ଛାପୁଥିଲୁ ଏବଂ ଗୋଟିଏ ଦି ନରେ ଚାରି ହଜାର କବି ଡ଼ାକ ଓ ରେଳ ଯୋଗେ ପଠା ଯାଉଥିଲା । ଓଡ଼ିଶାର ପୁସ୍ତକ ପ୍ରକାଶନ ଇତିହାସରେ ଏହା ଥିଲା ଅଭୂତପୂର୍ବ । ରାଜଶ୍ରୀ ପକେଟ ବୁକ୍ ସିରିଜରେ ଆମେ ପ୍ରାୟ ଏକଶହ ଉପନ୍ୟାସ ଛାପି ପ୍ରକାଶ କରିଥିଲୁ ।

ରାଜଶ୍ରୀ ପକେଟ ବୁକ୍‌ସରେ ପ୍ରକାଶିତ ପ୍ରଥମ ପୁସ୍ତକ ହେଉଛି କସ୍ତୁରି ଚରଣ ଦାସଙ୍କ 'କିଏ କାନ୍ଦେ ?' ୨ୟ ଓ ୩ୟ ବହି ଯଥାକ୍ରମେ 'ସେଇ ଝିଅଟି' ଓ 'ବିଚିତ୍ରବର୍ଣ୍ଣା' ମଧ୍ୟ ତାଙ୍କରି ସୃଷ୍ଟି ।

ଏହି ପକେଟ ବୁକ୍‌ସରେ ମୋର 'ନାଗଫେଣି' 'ନଦୀ ସମୁଦ୍ର' ଓ 'ନିଃସଙ୍ଗ ନକ୍ଷତ୍ର' ପ୍ରଭୃତି ଉପନ୍ୟାସ ପ୍ରଥମେ ହିଁ ପ୍ରକାଶ ପାଇଥିଲା ।

ମୁଁ ପଚାରିଲି- 'କଳନା' ପରେ 'ନବରବି', ସେ ସଂପର୍କରେ କିଛି କହନ୍ତୁ ।

କସ୍ତୁରିବାବୁ ହସିଲେ ।

କହିଲେ - ସେ କଥା ମୋ ଅପେକ୍ଷା ଆପଣ ବେଶି କହି ପାରିବେ । କାରଣ 'ନବରବି' ସଂପାଦନା ସହିତ ଆପଣ ମୂଳରୁ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । 'ନବରବି' ହିଁ ଥିଲା ଆମ ଦୁହିଁଙ୍କର ନିଶା । ସାହିତ୍ୟର ମାନ ହ୍ରାସ ହେବ ନାହିଁ ଅଥଚ ଏହା ଏକ ସର୍ବାଧିକ ଲୋକପ୍ରିୟ ପାରିବାରିକ ପତ୍ରିକା ହେବ ଏଥିପାଇଁ କି କଠିନ ପରିଶ୍ରମ କରିଛି, ସେ କଥା ଆମ ଛଡ଼ା ଆଉ କେହି ବୁଝିବେ ନାହିଁ । ଏଇ ନବରବି ପାଇଁ ମୋର ନିଜ ଲେଖାଲେଖି ଗଲା । ମୁଦ୍ରଣ ଖର୍ଚ୍ଚ ବାବଦ ମୋର ଅନେକ ପ୍ରାପ୍ୟ ମଧ୍ୟ ବୁଡ଼ିଗଲା । ପାତିରାମ ବାବୁଙ୍କ ପରଲୋକ ପରେ ଏ କଥା କାହାକୁ କହି ଥାଆନ୍ତି ? ଏ ସବୁ କଥା କାହାକୁ କହି ହୁଏ ନାହିଁ କି ସହି ହୁଏ ନାହିଁ । କେବଳ ଗୋଟିଏ ଆତ୍ମତୃପ୍ତି ଥିଲା ଯେ ଆସନ୍ତାକାଲି ବନ୍ଦ ହେଲା ବେଳକୁ ଯେତିକି ସର୍କୁଲେସନ ଥିଲା ନବରବି ବନ୍ଦ ହେଲା ବେଳକୁ ସେ ସଂଖ୍ୟା ଅତିକ୍ରମ କରି ଯାଇଥିଲା । ଗୋଟିଏ ବର୍ଷ ପୂଜା ସଂଖ୍ୟା 'ନବରବି'ର ଦ୍ୱିତୀୟ ମୁଦ୍ରଣ ମଧ୍ୟ ଦରକାର ପଡ଼ିଥିଲା । ମନେ ଅଛି ?

'ନବରବି' କଥା ଉଠିଲେ କସ୍ତୁରି ବାବୁ ଖୁବ୍ ଭାବପ୍ରବଣ ହୋଇ ଉଠନ୍ତି । ମୁଁ ପ୍ରସଙ୍ଗ ପରିବର୍ତ୍ତନ କରିବାକୁ ପଚାରିଲି-

- ଆପଣ ତ ଖୁବ୍ ଉଚ୍ଚକୋଟୀର ଗଳ୍ପ ଲେଖୁଥିଲେ । 'ଝଙ୍କାର', 'ଉଦୟ', 'କୁଙ୍କୁମ' ପ୍ରଭୃତି ପତ୍ରପତ୍ରିକାରେ ଆପଣଙ୍କର ସେହି ସବୁ ଗ୍ରାମକୈନ୍ଦ୍ରିକ ଗଳ୍ପ ପଢ଼ି ଆମେ ମୁଗ୍ଧଚକିତ ହେଉଥିଲୁ, ହଠାତ୍ ଗଳ୍ପ ଲେଖା ଛାଡ଼ି ଉପନ୍ୟାସ ଲେଖାରେ ମନୋନିବେଶ କଲେ କାହିଁକି ?

କସ୍ତୁରି ବାବୁ ଉତ୍ତର ଦେଲେ - ଆପଣ ଯେଉଁ ଗଳ୍ପ କଥା କହୁଛନ୍ତି - ସେ ସବୁ ଗଳ୍ପ ମୋ' 'ଧୂଳିର ଧରଣୀ' ଗଳ୍ପ ସଂଗ୍ରହରେ ରହିଛି । କଟକ ଷ୍ଟୁଡେଣ୍ଟସ ଷ୍ଟୋରର ପ୍ରୋପାଇଟର ଅନନ୍ତ ମିଶ୍ର ସେ ଗଳ୍ପଗୁଡ଼ିକ ପଢ଼ି ନିଜେ ପ୍ରକାଶ କରିବେ ବୋଲି ଇଚ୍ଛା ପ୍ରକାଶ କରିଥିଲେ । ସେଥିପାଇଁ ସେ କାଗଜ କିଣି ଦେଇଥିଲେ । ଆମ କଳିଙ୍ଗ ମୁଦ୍ରଣୀରେ ତାହା ଛାପା ହୋଇ ଯାଇଥିବା ଦେଖି ସେ ଏପରି ବିଗିଡ଼ି ଗଲେ ଯେ ସେ ଆଉ ସେ ବହିର ପ୍ରକାଶକ ହେବେ ନାହିଁ ବୋଲି ମନା କରିଦେଲେ । ଅନନ୍ତ ଚରଣ ମିଶ୍ର, କଟକ ଷ୍ଟୁଡ଼େଣ୍ଟସ ଷ୍ଟୋର ଜାଗାରେ ତାଳି ପକାଇ ରାଜଶ୍ରୀ ପ୍ରକାଶନୀ ନାମରେ ଛାପା ହେଲା । ସେ ଦେଇଥିବା କାଗଜ ବାବଦ ମୁଁ ତାଙ୍କୁ 'ଧୂଳିର ଧରଣୀ' ବହି ନେଇ ଦେଇଥିଲି । ତାପରେ ବହି ଛାପିବା ଲାଗି ମୁଁ କୌଣସି ପ୍ରକାଶକଙ୍କ ଦ୍ୱାରସ୍ଥ ହେବି ନାହିଁ ବୋଲି ମନେମନେ ସ୍ଥିର କଲି । ଗଳ୍ପ ବହି ଛାପି ବିକ୍ରି ଖର୍ଚ୍ଚ ଉଠାଇବା ଖୁବ୍ ସହଜ ହେବ ନାହିଁ ବୋଲି ମନେ ହେବାରୁ ଗଳ୍ପ ଛାଡ଼ି ଉପନ୍ୟାସ ଲେଖାରେ ହାତ ଦେଲି । 'କୁମାରୀ କନ୍ୟା', 'ଦାଗ' ଓ 'ଜନ୍ମମାଟି' ଭଳି ସାମାଜିକ ଉପନ୍ୟାସ ମତେ ସାହିତ୍ୟିକ ଖ୍ୟାତି ଆଣି ଦେଇଥିଲା । କିନ୍ତୁ ମୋର ରହସ୍ୟ ଉପନ୍ୟାସ ତୁଳନାରେ ଏ ସବୁ ସାମାଜିକ ଉପନ୍ୟାସ ବିକ୍ରି କମ୍ ହେଉଥିଲା । ପୁଣି ପକେଟ ବୁକ୍ସ ପାଇଁ ଲେଖିବା ଲକ୍ଷ୍ୟ ରଖିବା ଫଳରେ ଉପନ୍ୟାସର ଆକାର ଶହେ ଷାଠିଏ କିମ୍ବା ଦୁଇଶହ ପୃଷ୍ଠା ମଧ୍ୟ ସୀମାବଦ୍ଧ କରି ରଖିବାକୁ ପଡୁଥିଲା । ଏ ସବୁ ଦୃଷ୍ଟିରୁ ସାମାଜିକ ଉପନ୍ୟାସ ଅପେକ୍ଷା ଭିନ୍ନ ସ୍ୱାଦର ରହସ୍ୟ ଉପନ୍ୟାସ ଲେଖିବା ପାଇଁ ମୁଁ ଅଧିକ ଉତ୍ସାହିତ ହୋଇଥିଲି । କିନ୍ତୁ ମୋ ରହସ୍ୟ ଉପନ୍ୟାସ ଲେଖିବା ପାଇଁ ମୁଁ ଅଧିକ ଉତ୍ସାହିତ ହୋଇଥିଲି । କିନ୍ତୁ ମୋ ରହସ୍ୟ ଉପନ୍ୟାସରେ ସାମାଜିକ ଚରିତ୍ର ଓ ବାସ୍ତବବାଦୀ ସମାଜ ଚିତ୍ରଣ ଏତେ ଅଧିକ ଥିଲା ଯେ ଏହାକୁ ଅନ୍ୟ କାହାଣୀଧର୍ମୀ ଡିଟେକ୍ଟିଭ ଉପନ୍ୟାସଠାରୁ ଅଲଗା କରି ଚିହ୍ନାଇ ଦେଉଥିଲା । ଅଥଚ ମୁଁ କେବେ ଉପନ୍ୟାସ ସଂପୂର୍ଣ୍ଣ କରି ସାରି ତାକୁ ଛାପିବାକୁ ଦେଉନଥିଲି । ପ୍ରତିଦିନ ଯାହା ଲେଖେ, ତାହା ଛାପା ହୁଏ । ଲେଖୁ ଲେଖୁ ଛାପା ହେବା ମଧ୍ୟରେ ଉପନ୍ୟାସ ଶେଷ ହୋଇଯାଏ । ସାଧାରଣ ରହସ୍ୟ-ଚୀନ ଡିଟେକ୍ଟିଭ କାହାଣୀ ଏପରି ଲେଖାଯାଏ ନାହିଁ । ମୁଁ ଲେଖୁ ଲେଖୁ ଲେଖାର ଚରିତ୍ରମାନେ ବଦଳି ଯାଆନ୍ତି- କିନ୍ତୁ ଘଟଣା ବିନ୍ୟାସରେ କେଉଁଠି ଭାଗମାପ ଏପାଖ ସେପାଖ ହୁଏ ନାହିଁ ।

ମଝିରେ ମୁଁ ପଚାରିଲି- ଆପଣଙ୍କ ସବୁ ରହସ୍ୟ ଉପନ୍ୟାସର ସୂତ୍ରଧର ସତ୍ୟବ୍ରତ ମହାପାତ୍ର । ଜଟିଳ ଜୀବନ ଓ ରହସ୍ୟମୟ ଘଟଣାର ସୂତ୍ରରେ ନିଜର ତୀକ୍ଷ୍ଣ ଅନ୍ତର୍ଦୃଷ୍ଟି ଆଉ ସୂକ୍ଷ୍ମ ବିଚାର ଦ୍ୱାରା ସେ ଉଦ୍‌ଘାଟନ କରନ୍ତି । ଆପଣ ତାଙ୍କର ନାମ ସତ୍ୟବ୍ରତ ରଖିଥିଲେ କାହିଁକି ?

- ସତ୍ୟର ଅନ୍ୱେଷଣ କରି ଅପରାଧୀକୁ ଧରି ପାରିଥିବାରୁ ମୁଁ ତାର ନାମ ରଖିଥିଲି ସତ୍ୟବ୍ରତ । ଅବାସ୍ତବ କିମ୍ବା ଅଲୌକିକ କାର୍ଯ୍ୟ ଦ୍ୱାରା ସେ ଅପରାଧର ଗ୍ରନ୍ଥିମୋଚନ କରେ ନାହିଁ । ସେଥିପାଇଁ ସେ ଚରିତ୍ର ପାଠକମାନଙ୍କର ଏତେ ପ୍ରିୟ ।

ସାକ୍ଷାତକାର ଦେବେ ନାହିଁ ଦେବେ ନାହିଁ କହି ଏକ ଲମ୍ବା ଇଣ୍ଟରଭ୍ୟୁ ଦେଇ ସାରିଥିଲେ କସ୍ତୁରିବାବୁ । ସାହିତ୍ୟିକ ସ୍ୱୀକୃତି କିମ୍ବା ଆର୍ଥିକ ଲାଭ କଥା ମନରେ ନରଖି ସେ ଦୀର୍ଘଦିନ ଧରି ଓଡ଼ିଆ ସାହିତ୍ୟର ସେବା କରି ଆସିଛନ୍ତି । ଓଡ଼ିଆ ରହସ୍ୟ-ସାହିତ୍ୟର ସେ ଆଜି ଏକ କିମ୍ବଦନ୍ତୀ ପୁରୁଷ । ଗୋଟାଏ ପିଢ଼ିର ପାଠକ ପାଠିକାମାନଙ୍କୁ ସେ ମନ୍ତ୍ରମୁଗ୍ଧ କରି ରଖିଥିଲେ । 'ଆସନ୍ତାକାଲି', 'କଳନା' ଓ 'ନବରବି' ସଂପାଦନା ମାଧ୍ୟମରେ ଆମ ସମୟର ବହୁ ଲେଖକ ଲେଖିକାମାନଙ୍କୁ ଆବିଷ୍କାର କରି ସେ ସାହିତ୍ୟର ଆଗଧାଡ଼ିକୁ ଆଣିଥିଲେ ।

ଏକ ସାହିତ୍ୟିକ ପରିବାର ଭିତରେ ସେ ଜଣେ ଆତ୍ମମଗ୍ନ ଶିଳ୍ପୀ । ପତ୍ନୀ କଳ୍ପନା କୁମାରୀ ଦେବୀ ଓଡ଼ିଶାର ବିଶିଷ୍ଟ କଥାଶିଳ୍ପୀ । କନ୍ୟା ସାବର୍ଣ୍ଣି 'ଆନନ୍ଦବଜାର' ପତ୍ରିକା ଗୋଷ୍ଠୀର ବହୁଳ ପ୍ରସାରିତ ବଙ୍ଗଳା ପତ୍ରିକା 'ସାନନ୍ଦା'ର ସହକାରୀ ସମ୍ପାଦିକା, ଜାମାତା ଅଜୟ 'ଷ୍ଟେଟ୍ସମ୍ୟାନ' ଇଂରାଜୀ ଦୈନିକୀର ସହ ସମ୍ପାଦକ ।

କସ୍ତୁରିବାବୁ କଲମ ଥୋଇ ଦେଇଛନ୍ତି । ଲେଖାଲେଖି ଛାଡ଼ି ଦେଇଛନ୍ତି କଳ୍ପନା ଦେବୀ । ଲେଖାଲେଖି ବଦଳରେ ଦୁହେଁ ପଢ଼ାପଢ଼ିରେ ବ୍ୟସ୍ତ । ସାହିତ୍ୟ ସେ ଦୁହେଁ ଛାଡ଼ି ଦେବାକୁ ଚାହିଁଥିଲେ ମଧ୍ୟ ସାହିତ୍ୟ ସେ ଦୁହିଁଙ୍କୁ ଛାଡ଼ି ନାହିଁ । ଏକସ୍ତରି ବର୍ଷ ବୟସରେ ମଧ୍ୟ କସ୍ତୁରି ବାବୁ ଆଜି ସୁଦ୍ଧା ତାରୁଣ୍ୟରେ ଛଳଛଳ, କର୍ମଚଞ୍ଚଳ ।

'କାଦମ୍ବିନୀ', ଅକ୍ଟୋବର, ୨୦୦୦ ବିଶେଷାଙ୍କରେ ପତ୍ରସ୍ଥ ସାକ୍ଷାତକାର

# ସୂଚୀପତ୍ର

ହୋଟେଲ ରିଜେଣ୍ଟ୍ ଇଣ୍ଟରନାସନାଲ୍ ।
ଚୌରଙ୍ଗୀର ଆଉ ଏକ ନୂତନ ଅଭିଜାତ ହୋଟେଲ ।

ତଳୁ ଠିଆହୋଇ ଉପରକୁ ଚାହିଁ ହୁଏ ନାହିଁ ।

ସଂଜ ନଇଁ ଆସୁଥିଲା । ରାସ୍ତାର ବତିଗୁଡ଼ିକ ଜଳି ସାରିଥିଲା । ମୁଁ କିନ୍ତୁ ଦ୍ୱିଧାବିଜଡ଼ିତ ଚିତ୍ତରେ ଠିଆ ହୋଇଥିଲି ।

ଭିତରକୁ ଯିବି କି ନାହିଁ ।

ଅବଶ୍ୟ ହାତରେ ଆହୁରି ଘଣ୍ଟାଏ ସମୟ ଥିଲା । ସାଢ଼େ ସାତଟାରେ ମୋର ଆପଏଣ୍ଟ୍‌ମେଣ୍ଟ୍ ନିଉ ଆଲିପୁରରେ ।

ମୁଁ ଠିକ୍ କରିପାରୁ ନଥିଲି ହୋଟେଲ ରିଜେଣ୍ଟ୍ ଭିତରକୁ ଯିବି କି ନାହିଁ ? ଭିତରକୁ ଯିବାର ଲୋଭ ଅନେକ । ପୃଥିବୀର ସବୁ ଦେଶର ଲୋକମାନଙ୍କର ଏକ ବିରାଟ ପ୍ରଦର୍ଶନୀ ଗୃହ ଏହି ହୋଟେଲ ରିଜେଣ୍ଟ୍ । ଆଧୁନିକତାର ଚରମ ଶିଖରରେ ଏହି ହୋଟେଲର ସାଜ ସରଞ୍ଜାମ ।

କିନ୍ତୁ ଭିତରକୁ ଗଲେ ଠିକ୍ ସମୟରେ ବାହାରି ହେବ କି ନାହିଁ ସେଇ କଥା ମୁଁ ଚିନ୍ତା କରୁଥିଲି ।

ପଛପଟରୁ ଶୁଣିଲି ଏକ ନାରୀ କଣ୍ଠର ସ୍ୱର ।

: ଆପଣ କ'ଣ କାହାକୁ ଅପେକ୍ଷା କରିଛନ୍ତି ?

: ଏଁ... ! ମୁଁ ବୁଲି ଅନେଇଲି । ଗୋଟିଏ ତରୁଣୀ । ସୁନ୍ଦରୀ । ଆଧୁନିକା । କିନ୍ତୁ ଖୁବ୍ ଚଞ୍ଚଳ ।

: ହଁ, ମାନେ...

ମୋ କଥା ଶେଷ ହେଲା ନାହିଁ । ତରୁଣୀଟି କହିଲା : ଆପଣ କିଛି ମନେକରିବେ ନାହିଁ । ଆପଣ ଟେବଲ ଟେନିସ୍ ଖେଳି ଜାଣନ୍ତି ?

: ଟେନିସ୍, ମାନେ ଟେବଲ ଟେନିସ୍ ଖେଳ କଥା କହୁଛନ୍ତି ? ନା ନା ! ପିଲାଦିନେ କଲେଜ ଲାଇଫ୍‌ରେ ଖେଳୁଥିଲି । ସେ କିଛି ନୁହେଁ ।

: ସେ ଯାହାହେଉ, ଆପଣଙ୍କୁ ର୍ୟାକେଟ୍ ଧରି ଆସେ ତ । ସେତିକି ହେଲେ ଯଥେଷ୍ଟ ହେବ । ବାକି ସବୁ ମୁଁ ଚଳେଇ ନେବି । ଆପଣ ଆସନ୍ତୁ । ମୋତେ ଟିକିଏ ସାହାଯ୍ୟ କରିବାକୁ ହେବ ।

ତରୁଣୀଟି ମୋ ପାଖକୁ ଆଗେଇ ଆସି ବିନୀତ ଭାବରେ ମୋତେ ଅନୁରୋଧ ଜଣାଇଲା ତା' ସହିତ ଯିବା ପାଇଁ ।

ମୁଁ ଦ୍ୱିଧା ବିଜଡ଼ିତ କଣ୍ଠରେ କହିଲି । କିନ୍ତୁ...

: ନା କିନ୍ତୁ ଫିନ୍ତୁ କିଛି ନୁହେଁ ଜେଣ୍ଟଲ୍‌ମ୍ୟାନ୍ । ଆପଣ ମୋତେ ସହାୟତା ନ କରିଲେ ମୁଁ ହାରିଯିବି । ନିନ୍ଦିତ ହେବି । ମୁଁ ଜାଣେ ମୋର ପାର୍ଟନରକୁ ସେମାନେ ଅଟକାଇ ଦେଇଛନ୍ତି । ମୋତେ ଅପଦସ୍ଥ କରିବା ପାଇଁ ଷଡ଼ଯନ୍ତ୍ର କରିଛନ୍ତି ।

ମୁଁ ତରୁଣୀଟିର ଉଦ୍ଦେଶ୍ୟ କିଛି ବୁଝିପାରୁ ନଥିଲି ।

ଏଥର ସେ ଆଉ ଅପେକ୍ଷା କରିପାରିଲା ନାହିଁ । ମୋର ହାତ ଧରି ମୋତେ ରିଜେଣ୍ଟ୍ ହୋଟେଲ ଭିତରକୁ ଏକପ୍ରକାର ଟାଣି ଟାଣି ନେଇଗଲା ।

ଏକଦମ୍ ଅଣ୍ଡର ଗ୍ରାଉଣ୍ଡ ।

ଅଣ୍ଡର ଗ୍ରାଉଣ୍ଡରେ ଗୋଟାଏ ବିରାଟ ଫିଲ୍ଡ଼ । ଏକପ୍ରକାର ଛୋଟ ଗୋଟିଏ ଷ୍ଟେଡ଼ିଅମ୍ । ଭିତରେ ଅଜସ୍ର ଦର୍ଶକ । ସେଇଠି ଟେନିସ୍ ଖେଳ ହେବ ।

ଆମକୁ ଦେଖିବା କ୍ଷଣି ଦର୍ଶକମାନେ କରତାଳି ଧ୍ୱନି କରି ଉଠିଲେ ।

ଅପର ପକ୍ଷର ଦୁଇଜଣ ଟେନିସ୍ ଖେଳୁଆଡ଼ ପ୍ରସ୍ତୁତ ହୋଇ ଟହଲ ମାରୁଥିଲେ । ସେମାନଙ୍କ ମଧ୍ୟରୁ ଜଣେ ତରୁଣ ଓ ଅନ୍ୟ ଜଣେ ତରୁଣୀ ।

ବୋଧହୁଏ ଆଉ ଅପେକ୍ଷା କରିବାର ବେଳ ନଥିଲା ।

ଗୋଟିଏ ଲୋକ ଆସି ଆମ ଦୁଇଜଣଙ୍କ ହାତରେ ଦୁଇଟି ଟେନିସ୍ ବ୍ୟାଗ୍ ଧରାଇ ଦେଇଗଲା ।

ସଂଗେ ସଂଗେ ହୁଇସିଲ୍ ବାଜି ଉଠିଲା ଏବଂ ଖେଳ ଆରମ୍ଭ ହୋଇଗଲା ।

ଆକ୍ରମଣ ପ୍ରତିଆକ୍ରମଣ ଭିତରେ ଖେଳ ଜମି ଉଠିଲା । ଦର୍ଶକମାନଙ୍କର କରତାଳି ଧ୍ୱନି ଓ ଉତ୍ସାହସୂଚକ ନାନା ପ୍ରକାର ଧ୍ୱନି ଭିତରେ ମୁଁ ବଲ୍ ବାଡ଼େଇ ଚାଲିଥିଲି । କିନ୍ତୁ ମୁଁ ବୁଝିପାରୁ ନଥିଲି କିପରି ମୋର ହାତ ଏପରି ନିପୁଣ ଭାବରେ ସେଟ୍ ହୋଇଯାଇଥିଲା । ଗୋଟିଏ ବଲ୍ ମୋ ଆଡୁ ମିସ୍ ହେଉ ନଥିଲା ।

ମୋ ପାର୍ଟନର ତରୁଣୀର ବ୍ୟାଟିଂ ଭଂଗୀ କିନ୍ତୁ ଅପୂର୍ବ । ସେ ଯେପରି ମୋହଗ୍ରସ୍ତ ହୋଇ ଖେଳୁଥିଲା । କ୍ୱଚିତ୍ ବଲ୍ ଆସୁଥିଲା ମୋ ଆଡ଼କୁ । ଆଉ ଯେଉଁ ବଲ୍‌ଟି ଆସୁଥିଲା, ମୋ ପାଖରୁ ମିସ୍ ହେଉ ନଥିଲା ।

ବେଳୁବେଳ ଖେଳ ଜମୁଥିଲା । କିନ୍ତୁ ମୁଁ ବି ଏପରି ମୋହଗ୍ରସ୍ତ ହୋଇପଡ଼ିଥିଲି ଯେ, କେତେବେଳେ ଘଣ୍ଟାପରେ ଘଣ୍ଟା ଅତିବାହିତ ହୋଇଯାଇଥିଲା ।

ଯେତେବେଳେ ଖେଳ ଶେଷ ହେଲା, ମୋର ପାର୍ଟନର ତରୁଣୀଟି ମୋ ପାଖକୁ ଛୁଟିଆସି ମୋତେ ଦୁଇ ହାତରେ ଜାବୁଡ଼ି ଧରି, ମୋ ହାତ, ଦେହ, ମୁହଁ- ସର୍ବତ୍ର ଚୁମ୍ବନ କରିଥିଲା ।

ଆଉ ମୁହୂର୍ତ୍ତକ ପରେ ଦର୍ଶକ ଗ୍ୟାଲେରୀରୁ ଦଳେ ଯୁବକଯୁବତୀ ଛୁଟିଆସି, ମୋତେ ଓ ପାର୍ଟନର ସେଇ ତରୁଣୀଟିକୁ ଟେକି ଉଠାଇ, ମୁଣ୍ଡରେ ମୁଣ୍ଡାଇ ନାଚିବାକୁ ଲାଗିଲେ ।

ସେଦିନ ଆମେ ଜିତିଥିଲୁ ।

ଯେତେବେଳେ ସମସ୍ତ ଆନନ୍ଦଉଲ୍ଲାସ ଶେଷ ହେଲା, ଟେନିସ୍ ଗ୍ରାଉଣ୍ଡରୁ ଭିଡ଼ କମିଲା, ଦର୍ଶକମାନେ ଗୋଟିକ ପରେ ଗୋଟିଏ ବିଦାୟ ହୋଇଗଲେ, ସେତେବେଳକୁ ରାତି ଆଠଟା ।

ମୁଁ ଘଡ଼ିକୁ ଚାହିଁ ଚମକି ଉଠିଲି ।

ମୋର ନିଉ ଆଲିପୁରରେ ସେଇ ଆପଏଣ୍ଟ୍‌ମେଣ୍ଟ୍‌ର ସମୟ ସେତେବେଳକୁ ବହୁ ପୂର୍ବରୁ ଶେଷ ହୋଇଯାଇଥିଲା ।

ଆଉ କିଛି କରିବାର ନଥିଲା ।

ମୁଁ ଭୀଷଣ କ୍ଳାନ୍ତ ହୋଇ ପଡ଼ିଥିଲି । ନୀରବରେ ଚେଆରରେ ଚୁପ୍‌ଚାପ୍ ବସି ରହିଲି ।

ତରୁଣୀଟି ମୋ ପାଖକୁ ଆସି ସ୍ମିତ ହସି କହିଲା : ଆପଣ ଆଜି ମୋର ମାନ ସମ୍ମାନ ରକ୍ଷା କରିଛନ୍ତି । ଅବଶ୍ୟ ଆପଣଙ୍କର ପରିଚୟ ମୁଁ ଜାଣି ନାହିଁ । ତେବେ ଆପଣ ଯିଏ ହୁଅନ୍ତୁ ଆପଣ ମୋର ପରମ ବନ୍ଧୁ । ଆପଣଙ୍କୁ ଜୀବନରେ କେବେ ମୁଁ ଭୁଲିପାରିବି ନାହିଁ ।

ମୁଁ ନୀରବରେ ତରୁଣୀଟିର ଉଜ୍ଜ୍ୱଳ ଓ ବିଜୟ-ଗର୍ବ ମୁଖମଣ୍ଡଳ ଆଡ଼େ ଚାହିଁଥିଲି ।

ସେ ମୋ ହାତଧରି ଉଠାଇଲା । କହିଲା : ଆପଣ ଆସନ୍ତୁ । 'ରିଜେଣ୍ଟ୍'ରେ ବିଶ୍ରାମ କରିନେବେ । ମୋ ନାଁରେ ରୁମ୍ ବୁକ୍ ହୋଇ ରହିଛି । ଇଚ୍ଛାକଲେ ଆଜି ଆପଣ ସେଇ ରୁମ୍‌ରେ କଟାଇ ଦେଇ ଯିବେ ।

ମୁଁ ଉଠି ଠିଆହେଲି । କହିଲି : ଆପଣଙ୍କ ସୌଜନ୍ୟତା ପାଇଁ ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି । କିନ୍ତୁ ମୋ ପକ୍ଷରେ ହୋଟେଲରେ ରାତି କଟାଇବା ସମ୍ଭବ ହେବ ନାହିଁ ।

: ସେ ଯାହାହେବ ଦେଖାଯିବ । ଆପଣ ଆଗ ଆସିଲେ । ତେଣେ ଗୋଟିଏ ପାର୍ଟିର ଆୟୋଜନ ହୋଇଛି । ସେଠାରେ ଆପଣଙ୍କର ଉପସ୍ଥିତି ଏକାନ୍ତ କାମ୍ୟ ।

ମୁଁ କିଛି ପ୍ରତିବାଦ ନ କରି ତରୁଣୀଟିର ପଛେ ପଛେ ଆଗେଇ ଯାଉଥିଲି ।

ହୋଟେଲ ରିଜେଣ୍ଟ୍‌ର ଗୋଟାଏ ବିରାଟ ହଲ୍ ଘରେ ପାର୍ଟିର ଆୟୋଜନ ହୋଇଥିଲା । ବହୁ ତରୁଣତରୁଣୀ ସେହି ପାର୍ଟିରେ ଯୋଗ ଦେଇଥିଲେ । ଆନନ୍ଦ ମୁଖରିତ ସେଇ ହଲ୍ ଘରଟା ମଧ୍ୟରେ ଯେପରି ସ୍ୱର୍ଗ ଓହ୍ଲେଇ ଆସିଥିଲା । ଖାଲି ଆନନ୍ଦ ! ଆଉ ଆନନ୍ଦ !!

ମୋ ପାର୍ଟନର ତରୁଣୀଟି ମୋ ପାଖରେ ବସିଥିଲା । ଧୀରେ ଧୀରେ କହିଲା : ଦେଖୁଛନ୍ତି ଏମାନଙ୍କୁ । ଏମାନେ ସମସ୍ତେ ମୋର ଗୁଣଗ୍ରାହୀ । ଆପଣ ନ ଆସିଥିଲେ ଏ ସମସ୍ତଙ୍କର ଏହି ଆନନ୍ଦ କଳରୋଳ ନୈରାଶ୍ୟରେ ପରିଣତ ହୋଇଥାଆନ୍ତା ।

ମୁଁ କହିଲି : ଏଥିରେ ମୋର କୌଣସି କୃତିତ୍ୱ ନାହିଁ । ତେବେ ଅସଲ ଘଟଣାଟା ମୁଁ କିଛି ବୁଝିପାରୁ ନାହିଁ । ଏପରିକି ଆପଣଙ୍କ ନାଁଟା ମଧ୍ୟ ଏପର୍ଯ୍ୟନ୍ତ ମୁଁ ଜାଣିପାରିଲି ନାହିଁ ।

ତରୁଣୀଟି ଟିକିଏ ହସିଲା । କହିଲା : ସେଥିପାଇଁ ମୁଁ ଦୁଃଖିତ । ମୋ ନାଁ ସୁମିତା ଚନ୍ଦନ । ମତେ ସମସ୍ତେ ମିତା ବୋଲି ଡାକନ୍ତି । ଆପଣ ବି ସେଇଆ ଡାକିବେ । ଏଥର ଆପଣଙ୍କ ନାଁ କୁହନ୍ତୁ ।

: ମୋ ନାଁ ସଞ୍ଜୀବ ରାୟ ।

ସୁମିତା କହିଲା : ଆପଣଙ୍କ ପରିଚୟ ମୋ ସୌଭାଗ୍ୟର ଦ୍ୱାର କିପରି ଭାବରେ ଖୋଲି ଦେଇଛି, ଆପଣ ତାହା କଳ୍ପନା କରିପାରିବେ ନାହିଁ । ଆପଣ ବୋଧହୁଏ ଜାଣିନାହାନ୍ତି, ଏଇ ଖେଳରେ ଜିତି ମୁଁ ଲଣ୍ଡନ ଓ ଆମେରିକା ଏକମାସ ବିନା ଖର୍ଚ୍ଚରେ ବୁଲି ଆସିପାରିବି ।

: ସତେ ! ତା'ହେଲେ ଏଥର ମୁଁ ଆପଣଙ୍କ ସୌଭାଗ୍ୟକୁ ନିଶ୍ଚୟ ଈର୍ଷା କରିବି ।

ସୁମିତା ହସି ହସି କହିଲା : ଏ ଗେମ୍‌ଟା ଏଇ ରିଜେଣ୍ଟ୍ ହୋଟେଲର କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରତିବର୍ଷ ହୁଏ । ଫାଇନାଲ୍‌ରେ ଯିଏ ଜିତେ, ତାକୁ ସେମାନେ ଏକମାସ ଫ୍ରି'ରେ ଲଣ୍ଡନ ଆମେରିକା ବୁଲେଇ ଆଣନ୍ତି । ସତରେ ଆଜି ଆପଣଙ୍କ ପାଖରେ ମୁଁ ଯେ କିପରି କୃତଜ୍ଞତା ଜଣାଇବି, ଭାଷା ଖୋଜି ପାଉ ନାହିଁ ।

ସେହି ହଲ୍ ଘରେ ବେଳକୁ ବେଳ ଭିଡ଼ ବଢୁଥିଲା । ନୂଆ ନୂଆ ତରୁଣ ତରୁଣୀମାନେ ଆସୁଥିଲେ । ସୁମିତା ସହିତ ହାତ ମିଳାଉଥିଲେ । ତା'ର ଶୁଭକାମନା କରୁଥିଲେ । କେହି କେହି ମୋ ସହିତ ମଧ୍ୟ ହାତ ମିଳେଇ ମୋର ଶୁଭକାମନା କରିଯାଉଥିଲେ ।

କିଛି ସମୟ ପରେ ହୋଟେଲର କର୍ତ୍ତୃପକ୍ଷ ଆସିଲେ । ହଲ୍ ଘର ଭିତରେ ମିଉଜିକ୍ ବାଜିଉଠିଲା । ନର୍ତ୍ତକୀ ନୃତ୍ୟ ପ୍ରଦର୍ଶନ କଲା । ସର୍ବଶେଷରେ ହୋଟେଲର କର୍ତ୍ତୃପକ୍ଷ, ସୁମିତା ମୁଣ୍ଡରେ ଏକ ମୁକୁଟ ପିନ୍ଧାଇ ଦେଇ ଘୋଷଣା କଲେ, ସୁମିତା ଚନ୍ଦନ ଏ ବର୍ଷର ରିଜେଣ୍ଟ୍ ବିଜୟୀ ।

ହଲ୍ ଘର କରତାଳି ଧ୍ୱନିରେ ପୂରିଉଠିଲା ।

\+ + +

ସୁମିତା ଚନ୍ଦନ କଥା ମୁଁ ଭୁଲିପାରି ନଥିଲି । ଆକସ୍ମିକ ଭାବରେ ସୁମିତା ସହିତ ଯେପରି ପରିଚୟ ହୋଇଥିଲା, ବାସ୍ତବ କ୍ଷେତ୍ରରେ ସେପରି ପ୍ରାୟ ଘଟି ନଥାଏ । ତେଣୁ ସୁମିତାକୁ ମୁଁ ଭୁଲିପାରୁ ନଥିଲି ।

ମୁଁ ଜଣେ ରିପୋର୍ଟର । ଖବରକାଗଜ ପାଇଁ ସମ୍ବାଦ ସଂଗ୍ରହ ମୋର ପେଷା । ସେହି ଉଦ୍ଦେଶ୍ୟରେ ମୋତେ ବହୁ ଜାଗାକୁ ଯିବାକୁ ହୁଏ । ବହୁ ଲୋକଙ୍କ ସହିତ ମିଶିବାକୁ ହୁଏ । କିନ୍ତୁ ସୁମିତା ଚନ୍ଦନ ଯେପରି ତା'ର ଏକ ବ୍ୟତିକ୍ରମ ।

ମୁଁ ବସି ବସି ଭାବୁଥିଲି ସୁମିତା ସମ୍ବନ୍ଧରେ କାଗଜକୁ ଗୋଟାଏ ରିପୋର୍ଟ ଲେଖିବି କି ନାହିଁ !! ଲେଖିଲେ କିନ୍ତୁ ସମ୍ବାଦଟାକୁ ଚାଞ୍ଚଲ୍ୟକର କରି ଲେଖିବାକୁ ହେବ ।

ସକାଳୁ ଉଠି ପ୍ରଥମ ଚା' କପ୍‌ଟା ଶେଷ କରି ସୁମିତା କଥା ଭାବୁଥିଲି । ସୁମିତା 'ରିଜେଣ୍ଟ୍ ବିଜୟୀ' ହୋଇଛି । ଏଥିପାଇଁ ସେ ବିଦେଶ ଯାତ୍ରାର ସୁଯୋଗ ପାଇବ । କିନ୍ତୁ ସୁମିତାର ଏହି ବିଜୟ ପାଇଁ ମୋର ଦାନ ତ ଯଥେଷ୍ଟ ! ସେହି ତୁଳନାରେ ସୁମିତା ମୋ ପାଖରେ ତ କୃତଜ୍ଞତା ପ୍ରକାଶ କଲା ନାହିଁ । ନାରୀ ଜାତିଟାର ଚରିତ୍ର କ'ଣ ସବୁ କ୍ଷେତ୍ରରେ ସ୍ୱାର୍ଥ ପ୍ରଣୋଦିତ ! ସେ ଯା'ହେଉ, ସୁମିତା ସମ୍ବନ୍ଧରେ ଗୋଟାଏ ରିପୋର୍ଟ ଖବରକାଗଜରେ ବାହାର କରିବି । ତା'ର ଫଟୋ ଗୋଟାଏ ଦରକାର ଯେ ! ତା' ଠିକଣାଟା ତ ଟିପି ଆଣିପାରିଲି ନାହିଁ ! ରିଜେଣ୍ଟ୍ ହୋଟେଲରୁ ହୁଏତ...

ମୋ ଟେଲିଫୋନ୍‌ଟା ପ୍ରଥମ କରି ବାଜି ଉଠିଲା ।

: ହ୍ୟାଲୋ ? ... ଆରେ ସୁମିତା ଚନ୍ଦନ ! ମୁଁ ଏଇକ୍ଷଣି ଆପଣଙ୍କ କଥା ଭାବୁଥିଲି ।

ଅପର ପାର୍ଶ୍ୱରୁ ସୁମିତା କହିଲା : ମୁଁ କିନ୍ତୁ କାଲି ରାତିଭରି ଆପଣଙ୍କ କଥା ଭାବିଛି । ଦୈବାତ୍ ଟେଲିଫୋନ୍ ଗାଇଡ୍‌ରେ ଆପଣଙ୍କ ନାଁଟା ଥିଲା । ଆପଣ ସେହି ସଞ୍ଜୀବ ରାୟ କି ଅନ୍ୟ କେହି ଜାଣିବା ପାଇଁ ଡାୟାଲ କଲି । ଭାଗ୍ୟ ଭଲ ଏକାଥରକେ ସକ୍‌ସେସ୍ ।

ମୁଁ କହିଲି : ଆପଣ ମୋ ନାଁ ମନେ ରଖିଥିଲେ ?

: ନା ମାନେ ? ବର୍ତ୍ତମାନ ଠିକଣାଟା କୁହନ୍ତୁ । ଆପଣଙ୍କୁ ଆନ୍ତରିକ କୃତଜ୍ଞତା ଜଣାଇ ନ ଆସିପାରିଲେ ମୋର ଅପରାଧ ହେବ ।

ମୋତେ ସୁମିତାର କଥା ଶୁଣି ହସ ମାଡ଼ିଲା । ହସିଲି ବି । କହିଲି : ସୁମିତା ଦେବୀ, ଆପଣଙ୍କୁ ଅଶେଷ ଧନ୍ୟବାଦ । କଷ୍ଟ କରି ଆଉ ଆସିବାକୁ ହେବ ନାହିଁ । ଆପଣଙ୍କର ଆନ୍ତରିକତାର ପରିଚୟ ମୁଁ ପାଇଛି । ଆପଣ ବିଦେଶ ଯିବା ପାଇଁ ପ୍ରସ୍ତୁତ ହୁଅନ୍ତୁ । ମୋତେ ଖବର ଦେବେ । ମୁଁ ଯାଇ ଆପଣଙ୍କୁ ସି'ଅଫ୍ କରିଆସିବି ।

: ଅଶେଷ ଧନ୍ୟବାଦ । କିନ୍ତୁ ମୋର ଆପଣଙ୍କ ଘରକୁ ଯିବାରେ କିଛି ପ୍ରତିବନ୍ଧକ ଅଛି କି ?

ମୁଁ ଆଉଥରେ ହସିଉଠି କହିଲି : ନା ନା ସୁମିତା ଦେବୀ । ସେପରି କିଛି ବାଧା ବନ୍ଧନ ଏଠାରେ ନାହିଁ । ଏଠାକୁ ଆସିଲେ ଆପଣଙ୍କର ସମୟ ଅଯଥାରେ ନଷ୍ଟ ହେବ । ଆପଣ ଯଦି ନିହାତି ଆସନ୍ତି, ଆପଣଙ୍କର ଗୋଟିଏ ଫଟୋ ସଂଗରେ ଆଣିଥିବେ ।

: ମୋର ଫଟୋ ? ମୁଁ ନିଜେ ଯେତେବେଳେ ଆପଣଙ୍କ ପାଖକୁ ଯାଉଛି, ଫଟୋଟା ପୁଣି କ'ଣ ହେବ ?

: ଅଛି, ଦରକାର ଅଛି । ଆପଣ କ'ଣ ଆଜି ଆସିବେ ? ମୁଁ କିନ୍ତୁ ଦଶଟା ବେଳଯାଏ ଘରେ ଅଛି ।

ଶେଷରେ ସୁମିତାକୁ ମୋର ଠିକଣାଟା ଦେଇ ରିସିଭରଟା ରଖିଦେଲି ।

ସୁମିତା ସମ୍ବନ୍ଧରେ ମୋର ଧାରଣାଟା ବଦଳି ଗଲା । କିଛିକ୍ଷଣ ଆଗରୁ ନାରୀ ଜାତି ପ୍ରତି ମୋ ମନରେ ଯେଉଁ ଏକ ବିତୃଷ୍ଣା ଭାବ ଜମି ଉଠିଥିଲା, ସୁମିତାର ଟେଲିଫୋନ୍ ପାଇବା ପରେ ତାହା ଧୀରେ ବଦଳିବାକୁ ଲାଗିଲା ।

ବର୍ତ୍ତମାନ ମୋ ମନରେ ଯାହା ପ୍ରଶ୍ନ ଉଠିଲା, ତାହା ହେଉଛି ସୁମିତା କିଏ ? ସେ କେଉଁ ଧରଣର ଝିଅ ? କେଉଁଭଳି ପରିବାରରେ ତା'ର ଜନ୍ମ ? ତା'ର ଆଉ କିଏ ଅଛନ୍ତି ? ଇତ୍ୟାଦି ଇତ୍ୟାଦି ।

ମୁଁ ଚା' କପ୍‌ଟା ଶେଷ କରି ଗୋଟାଏ ସିଗାରେଟ୍ ଲଗାଇଲି ।

ଆଜି କାଗଜରେ ମୋର ଗୋଟାଏ ବିଶେଷ ପ୍ରବନ୍ଧ ବାହାରିବାର କଥା । ତେଣୁ ସେଥିପାଇଁ ଲେଖା ପ୍ରସ୍ତୁତ କରିବା ପାଇଁ ମୁଁ ବସିପଡ଼ିଲି । ଟେବୁଲ୍ ଉପରେ ପଡ଼ିଥିବା ପ୍ୟାଡ୍‌ଟା ଟାଣି ଆଣି ଲେଖିବାକୁ ଲାଗିଲି । ଧରାବନ୍ଧା ଗତ । ଶବ୍ଦ ପରେ ଶବ୍ଦ ବସାଇ ପ୍ରବନ୍ଧଟି ଲେଖିବାକୁ ଆରମ୍ଭ କଲି ।

ଆଉ ଗୋଟିଏ ପାରା ଲେଖି ଶେଷ କରିବାକୁ ଯାଉଛି, ଠିକ୍ ଘନ ଘନ ଗୋଟାଏ ଗାଡ଼ିର ହର୍ଣ୍ଣ ଶୁଣିବାକୁ ପାଇଲି ।

ଥରେ ଦୁଇଥର କାନରେ ବାଜି ନ ବାଜିଲା ପରି ରହିଯାଇଥିଲା ।

କିନ୍ତୁ ପରେ ପରେ ମୋର କାହିଁକି ଧାରଣା ହେଲା...

ମୁଁ ଉଠିଯାଇ ବାରଣ୍ଡାରେ ଠିଆହୋଇ ତଳକୁ ଚାହିଁଲି । ଗୋଟାଏ ଲମ୍ବା ଚଉଡ଼ା ବିରାଟ ଗାଡ଼ି । ଗାଡ଼ିର ଦରଜା ଖୋଲି ଉପରକୁ ଚାହିଁ ଠିଆ ହୋଇଛି ସୁମିତା ଚନ୍ଦନ ।

: ଆରେ ଆପଣ...

ମୁଁ ଉପରୁ ଥାଇ ଚିତ୍କାର କରି ଉଠିଲି ।

ସଂଗେ ସଂଗେ ଶିଡ଼ି ଦେଇ ଓହ୍ଲେଇଗଲି ତଳକୁ । ଯିବାବେଳେ ମୋର ମନେ ହେଉଥିଲା, ସୁମିତାକୁ ମୋର ଏତେ ଅଣ୍ଡର ଏଷ୍ଟିମେଟ୍ କରିବା ଠିକ୍ ହୋଇ ନାହିଁ । ସୁମିତା ଯେ ଏକ ସମ୍ଭ୍ରାନ୍ତ ବଂଶର ଆଉ ଧନୀ ବାପର ଝିଅ ଏହା ନିଶ୍ଚିତ ।

ସୁମିତା ମୋତେ ଦେଖି ଏକପ୍ରକାର ନାଚି ଉଠିଲା । କହିଲା : ବାସ୍ତବିକ୍ ଆପଣଙ୍କର ତୁଳନା ହୁଏ ନାହିଁ ।

ମୁଁ ସୁମିତାକୁ ସଂଗରେ ଧରି ଉପରକୁ ଉଠିଲି । ଗୋଟାଏ ପୁରୁଣା କୋଠା । କାଠଶିଡ଼ି । ସୁମିତା ଉପରକୁ ଉଠିଲା ବେଳକୁ କିପରି ଟିକିଏ ଅଶ୍ୱସ୍ତି ମନେକରୁଥିଲା । ଏଣେତେଣେ ଚାହୁଁଥିଲା । ମୋର ମନେହେଉଥିଲା, ସୁମିତାର ହୁଏତ ଏପରି ଘରମାନଙ୍କୁ ଆସିବାର ଅଭ୍ୟାସ ନାହିଁ ।

ତଥାପି ସୁମିତା ମୋ ସହିତ ଉପରକୁ ଗଲା । ମୋର ଛୋଟ ଦୁଇ ବଖୁରିଆ ଫ୍ଲାଟ୍‌ଟିରେ ପଶି ଏଣେତେଣେ ଚାହିଁଲା । ତା'ପରେ ମୃଦୁ ହସି କହିଲା : ହଁ ବୁଝିଲି ।

କ'ଣ ବୁଝିଲା କେଜାଣି, ସୁମିତା ଗୋଟିଏ ଚେଆର ଉପରେ ବସିପଡ଼ି କହିଲା : ଆପଣ ଏଠି ବୋଧହୁଏ ଏକା ରୁହନ୍ତି ।

: ଆପଣ ଜାଣିଥିଲେ ଆସି ନଥାନ୍ତେ, ନା ?

ସୁମିତା ହୋ ହୋ ହୋଇ ହସିଉଠି କହିଲା : ନା ନା, ଏତେ ଛୋଟ ଭାବନା ମୁଁ କେବେ ଭାବେ ନାହିଁ । ତେବେ ଯା ହେଉ, ଆପଣଙ୍କ ସହିତ ଯେଉଁ ପରିସ୍ଥିତିରେ ମୋର ବନ୍ଧୁତାର ସୂତ୍ରପାତ ହୋଇଛି, ସାଧାରଣତଃ ବାସ୍ତବ କ୍ଷେତ୍ରରେ ସେପରି ହୋଇ ନଥାଏ । ତେଣୁ ଆପଣ ମୋର ଜଣେ ପରମବନ୍ଧୁ ! ଏଇକଥା ଜଣାଇବା ପାଇଁ ମୁଁ ଆସିଛି । ଆଉ ଆସିଛି ନିମନ୍ତ୍ରଣ କରିବା ପାଇଁ । ଆଜି ରାତି ଆଠଟାରେ ସେଇ ରିଜେଣ୍ଟ୍ ହୋଟେଲରେ ମୋର ବନ୍ଧୁବାନ୍ଧବମାନେ ମୋତେ ସମ୍ବର୍ଦ୍ଧନା ଜଣାଇବା ପାଇଁ ଗୋଟିଏ ଭୋଜିସଭାର ଆୟୋଜନ କରିଛନ୍ତି । ଆଉ ସେଇ ସଭାର ମୁଖ୍ୟ ଅତିଥି କିଏ ଜାଣନ୍ତି ?

ସୁମିତା ତା'ର ଭ୍ୟାନିଟି ବ୍ୟାଗରୁ ଗୋଟିଏ ସୁନେଲୀ କାର୍ଡ଼ ବାହାର କରି ମୋ ହାତକୁ ବଢ଼ାଇ ଦେଲା । ଆଉ ହସି ହସି କହିଲା : ସେଇ ସଭାର ମୁଖ୍ୟ ଅତିଥି ହେଉଛନ୍ତି ଆପଣ ।

ମୁଁ ହଠାତ୍ ଯେପରି ଏକ ଗୋଲକ ଧନ୍ଦାରେ ପଡ଼ିଯାଇଥିଲି । କାର୍ଡ଼ଟିରେ ମୁଖ୍ୟ ଅତିଥି ଭାବରେ ମୋ ନାଁ ଛପା ହୋଇଥିଲା ।

କାର୍ଡ଼ ଉପରୁ ମୁହଁ ଉଠାଇ ମୁଁ ସୁମିତା ମୁହଁକୁ ଚାହିଁଲି ।

ସେ ସେହିପରି ହସି ହସି କହିଲା : ଭୟ କରୁଛନ୍ତି ? ଆପଣଙ୍କୁ କିଛି ଭାଷଣ ଦେବାକୁ ପଡ଼ିବ ନାହିଁ । ଏସବୁ ଭୋଜି ସଭାରେ ଖାଲି ଶୁଭକାମନା କରିବାକୁ ହୋଇଥାଏ ।

ଏଥର ମୁଁ ନ ହସି ରହିପାରିଲି ନାହିଁ । ସୁମିତା ହୁଏତ ମୋର ଅସଲ ପରିଚୟ ପାଇ ନାହିଁ । ସେଇଥିପାଇଁ ତା'ର ମୋ ପ୍ରତି ଏହିପରି ଧାରଣା ହୋଇଛି ।

ମୁଁ ନୀରବରେ କେବଳ ସୁମିତା ମୁହଁକୁ ଅନାଇ ରହିଲି । ସେ ମୋ ମୁହଁରୁ ଆଖି ଫେରାଇ ନେଇ କହିଲା : ବାସ୍ତବିକ୍ ଆପଣ କାଲି ମୋର ଦେଖା ହୋଇ ନଥିଲେ, ମୁଁ ଯେ କିପରି ଭାବରେ ଅପମାନିତ ଆଉ ଲାଞ୍ଛିତ ହୋଇଥାଆନ୍ତି, ଆପଣ ସେ କଥା ମୋଟେ ଚିନ୍ତା କରିପାରିବେ ନାହିଁ ମିଷ୍ଟର ରାୟ ।

: କିନ୍ତୁ ଆପଣଙ୍କର କାଲି ଏପରି ଅବସ୍ଥା ହେଲା କାହିଁକି ? ଆପଣଙ୍କର ପାର୍ଟନର କ'ଣ ଇଚ୍ଛା କରି...

: ନା ନା ଇଚ୍ଛା କରି ନୁହେଁ । ମୁଁ ଯାହାକୁ ମୋର ପାର୍ଟନର ରୂପେ ବାଛିଥିଲି, ସେ ଜଣେ ଭଲ ଖେଳୁଆଡ଼ । ବମ୍ବେରେ ରୁହନ୍ତି । କାଲି ପ୍ଲେନ୍‌ରେ ଆସି ଦୁଇଟାବେଳେ ତାଙ୍କର କଲିକତାରେ ପହଞ୍ଚିବାର କଥା ଏବଂ ସେ ପହଞ୍ଚିଛନ୍ତି ମଧ୍ୟ । ତା'ପରେ ଗ୍ରେଟ୍ ଇଷ୍ଟର୍ଣ୍ଣରେ ତାଙ୍କ ପାଇଁ ଯେଉଁ ରୁମ୍ ରିଜର୍ଭ ଥିଲା, ସଂଧ୍ୟା ଚାରିଟାଯାଏ ସେ ସେଠାକୁ ଫେରିଲେ ନାହିଁ । ଘଟଣାଟା ମୁଁ ବି ଏପର୍ଯ୍ୟନ୍ତ ଠିକ୍ ବୁଝିପାରିଲି ନାହିଁ । ଆଜି ଆପଣଙ୍କର ଏଠାକୁ ଆସିବା ପୂର୍ବରୁ ଗ୍ରେଟ୍‌ଇଷ୍ଟର୍ଣ୍ଣକୁ ଫୋନ୍ କରି ବୁଝିଥିଲି । ଭଦ୍ରଲୋକ ଆଜିଯାଏ ବି ଆସିନାହାନ୍ତି ।

: ତା'ହେଲେ ତ ଚିନ୍ତାର ବିଷୟ ନିଶ୍ଚୟ ସୁମିତା ଦେବୀ ।

: ଅବଶ୍ୟ ଚିନ୍ତାର ବିଷୟ । କିନ୍ତୁ ତାଙ୍କ ପାଇଁ ମୁଁ ବିଶେଷ ଚିନ୍ତା କରୁ ନାହିଁ । କାରଣ ସେ ଜଣେ ଖିଆଲୀ ଲୋକ । ଖାଲି ଖିଆଲୀ ଲୋକ କହିଲେ ଭୁଲ୍ ହେବ, ସେ ଜଣେ ବଦ୍‌ଖିଆଲୀ ଲୋକ । କେତେବେଳେ ଯେ ତାଙ୍କ ମୁଣ୍ଡରେ କ'ଣ ପଶେ... ଆଚ୍ଛା, ତାଙ୍କ କଥା ଆପଣଙ୍କୁ ମୁଁ ଆଉଦିନେ କହିବି ।

ମୁଁ ନୀରବରେ କିଛି ସମୟ ଚିନ୍ତା କରି କହିଲି : ଏପରି ତ ହୋଇପାରେ, ଘଟଣାଟାକୁ ଆପଣ ଯେତେ ସହଜ ବୋଲି ଭାବୁଛନ୍ତି ପ୍ରକୃତରେ ତାହା ଏତେଟା ସହଜ ନୁହେଁ ।

: ମାନେ ?

: ଏଇ ଧରନ୍ତୁ ଏହା ପଛରେ ଆପଣଙ୍କ ଶତ୍ରୁପକ୍ଷୀୟ ଲୋକଙ୍କର ହୁଏତ କିଛି ହାତ ଥାଇପାରେ । ସେମାନେ ଆପଣଙ୍କୁ ପରାଜିତ କରିବା ପାଇଁ ଯଦି କୌଣସି କାରସାଦି କରିଥାଆନ୍ତି ?

ହଠାତ୍ ସୁମିତାର ମୁହଁ ବିବର୍ଣ୍ଣ ହୋଇଉଠିଲା । ସେ ଟିକିଏ ଚିନ୍ତା କରି କହିଲା : କିନ୍ତୁ ମିଷ୍ଟର ପାରେଖଙ୍କୁ ସେମାନେ ଅସୁବିଧାରେ ପକାଇଲା ଭଳି ଲୋକ ନୁହନ୍ତି । ତଥାପି ସେ ଦିଗଟା ମୁଁ ଏତେ ତଳେଇ ଚିନ୍ତା କରି ନାହିଁ ।

: ଆପଣଙ୍କର କିନ୍ତୁ ଟିକିଏ ଚିନ୍ତା କରିବା ଉଚିତ ଥିଲା । ଭଦ୍ରଲୋକ ଆପଣଙ୍କ ପାଇଁ ଆସି ହୁଏତ ବିପଦରେ ପଡ଼ିଛନ୍ତି ।

: ତା'ହେଲେ ବର୍ତ୍ତମାନ ଉପାୟ ? ସୁମିତା ପ୍ରକୃତରେ ଚିନ୍ତିତ ହୋଇପଡ଼ିଥିଲା ।

: ମିଷ୍ଟର ପାରେଖଙ୍କର ଆଉ କେହି ବନ୍ଧୁବାନ୍ଧବ କଲିକତାରେ ଅଛନ୍ତି ?

: ହଁ, ତା' ଅବଶ୍ୟ ଅଛନ୍ତି । କିନ୍ତୁ ଅଶୋକ ପାରେଖ ଏକ ସ୍ୱତନ୍ତ୍ର ଚରିତ୍ରର ଲୋକ । ସେ ଯେତେଥର କଲିକତା ଆସିଛନ୍ତି, ସବୁବେଳେ ହୋଟେଲରେ ଉଠନ୍ତି । ସେ କୁହନ୍ତି, କୌଣସି ବନ୍ଧୁବାନ୍ଧବ ଘରେ ରହିଲେ ତାଙ୍କର ସ୍ୱାତନ୍ତ୍ର୍ୟ ରୁହେ ନାହିଁ ।

: ମିଷ୍ଟର ପାରେଖଙ୍କ ସହିତ ଆପଣଙ୍କର ପରିଚୟ କେତେ ଦିନର ?

: ସେ ମୋର ଭାଇଙ୍କର ବନ୍ଧୁ । ଭାଇଙ୍କ ସହିତ ତାଙ୍କର ବନ୍ଧୁତ୍ୱ ଅତି ଅନ୍ତରଙ୍ଗ । ଭାଇ ତ ବମ୍ବେରେ ରୁହନ୍ତି । ବମ୍ବେରେ ତାଙ୍କ ସହିତ ମୋର ପରିଚୟ ହୋଇଥିଲା ଅନେକ ଦିନରୁ । ସେ ମୋତେ ପାର୍ଟନର କରି ଓ ମୁଁ ତାଙ୍କୁ ପାର୍ଟନର କରି କେତେଟା ମ୍ୟାଚ୍ ଆମେ ଖେଳିଛୁ । ଆଉ ଯେତେ ଜାଗା ଖେଳିଛୁ ସବୁଠି ଆମେ ଜିତିଛୁ ।

: ସେ ଯା'ହେଉ, ରିଜେଣ୍ଟ୍ ହୋଟେଲରେ ଆପଣ ଯାହା ସହିତ ଖେଳିଲେ, ସେମାନେ କି ଧରଣର ଲୋକ ?

: ଅନୁପମା ହାଜରା କଥା ଆପଣ କହୁଛନ୍ତି ? ସେ ଝିଅଟା ସମ୍ବନ୍ଧରେ ମୋର ଧାରଣା ଭଲ ନୁହେଁ । ଏପରି କୌଣସି କନ୍‌ଟେଷ୍ଟ ନାହିଁ, ଯେଉଁଠି ସେ ଜଏନ୍ କରେ ନାହିଁ । ଭାରତବର୍ଷ ଭିତରେ ସେ ଫ୍ୟାସନ କନ୍‌ଟେଷ୍ଟ ଠାରୁ ଆରମ୍ଭ କରି ବିଉଟି କନ୍‌ଟେଷ୍ଟ ପର୍ଯ୍ୟନ୍ତ ସବୁଠି ଯୋଗ ଦିଏ । ତା'ର ଯେଉଁ ଗ୍ରୁପ୍‌ଟି ସୋସାଇଟିରେ ସେମାନଙ୍କର ସୁନାମ ନାହିଁ ।

ମୁଁ ଲକ୍ଷ୍ୟ କରୁଥିଲି ସୁମିତା ଧୀରେ ଧୀରେ ଚିନ୍ତିତ ହୋଇ ପଡୁଥିଲା ।

ମୁଁ କହିଲି : ଆପଣ ବରଂ ମିଷ୍ଟର ପାରେଖଙ୍କର ବନ୍ଧୁବାନ୍ଧବ ଏଠାରେ ଯିଏ ଅଛନ୍ତି, ସେମାନଙ୍କ ପାଖକୁ ଫୋନ୍ କରି ଖବର ନିଅନ୍ତୁ । ଅବଶ୍ୟ ମୋ ଭାବନାର କୌଣସି ସତ୍ୟତା ନ ଥାଇ ପାରେ । ତଥାପି...

: ହଁ, ମୁଁ ବର୍ତ୍ତମାନ ଯାଉଛି ଖବର ନେବି । ଆପଣ ତା'ହେଲେ ଠିକ୍ ସଂଧ୍ୟା ସାତଟା ବେଳକୁ ରିଜେଣ୍ଟକୁ ଆସୁଛନ୍ତି ତ !

: ହଁ ହଁ ।

ସୁମିତା ଉଠୁଥିଲା । ମୁଁ କହିଲି : ଆଉ ଟିକିଏ ଅପେକ୍ଷା କରନ୍ତୁ । ଅନ୍ତତଃ ଆଉ କିଛି ନହେଲେ ବି ଚା' କପେ ଆପଣଙ୍କୁ ମୁଁ ଦେଇପାରିବି ।

ସୁମିତା ପୁଣି ବସି କହିଲା : ଆପଣ କିନ୍ତୁ ମୋତେ ଗୋଟାଏ ଦୁର୍ଭାବନାରେ ପକାଇ ଦେଲେ । ଅନୁପମା ହାଜରା ଗ୍ରୁପ୍‌ରେ କେତେଗୁଡ଼ିଏ କୁଖ୍ୟାତ ଲୋକ ଅଛନ୍ତି । ସ୍ୱାର୍ଥସାଧନ ପାଇଁ ସେମାନେ ସବୁ କରିପାରନ୍ତି । ମୋତେ ପରାସ୍ତ କରିବା ପାଇଁ ମୋ ବିରୁଦ୍ଧରେ ଯଦି କିଛି ଚକ୍ରାନ୍ତ କରିଥାନ୍ତି ତା'ହେଲେ ଅବଶ୍ୟ ଚିନ୍ତାର ବିଷୟ । କିନ୍ତୁ ଅଶୋକ ଇମିତିରେ ସିନା ଖିଆଲୀ, ହେଲେ ସେ ତ ଦାୟିତ୍ୱହୀନ ପିଲା ନୁହେଁ ! ତା'ହେଲେ ପ୍ରକୃତରେ ଚିନ୍ତାର ବିଷୟ ମିଷ୍ଟର ରାୟ । ଧରନ୍ତୁ ମୁଁ ତାଙ୍କ ଆତ୍ମୀୟସ୍ୱଜନଙ୍କ ଘରୁ ଅଶୋକର କିଛି ଖବର ପାଇଲି ନାହିଁ । ତା'ପରେ ?

: ତା'ପରେ ଆପଣଙ୍କୁ ତତ୍ପର ହେବାକୁ ହେବ । ଦରକାର ପଡ଼ିଲେ ପୋଲିସ୍‌ରେ ଖବର ଦେବାକୁ ପଡ଼ିବ ।

: କିନ୍ତୁ...

ସୁମିତା କଥା ଅସମାପ୍ତ ରଖି ଟେବୁଲ୍ ଉପରୁ ଟେଲିଫୋନ୍ ରିସିଭରଟା ଉଠାଇଲା ଏବଂ ନମ୍ବର ଡାୟାଲ କଲା ।

କିଛିସମୟ ପରେ କହିଲା : ମୁଁ ସୁମିତା କହୁଛି । ଅଶୋକ ପାରେଖଙ୍କର କିଛି ଖବର ପାଇଲ ?

ଅପର ପ୍ରାନ୍ତରୁ କ'ଣ ଜବାବ ପାଇଲା କେଜାଣି, ସ୍ୱରଟା ସାମାନ୍ୟ ନୀରବ କରି କହିଲା : ତାଙ୍କର କୌଣସି ବିପଦ ଘଟି ନାହିଁ ତ !

ପୁଣି ଅଳ୍ପ ନୀରବତା ପରେ କହିଲା : ତମେ ଟିକିଏ ଖବର ନିଅ ଶଙ୍କର । ପ୍ଲିଜ୍ ! ଆଜି ଦିନକ ଭିତରେ ଯେକୌଣସି ପ୍ରକାର ତାଙ୍କର ଖବର ଖୋଜି ବାହାର କର । ... ହଁ ହଁ । ମୋର କାହିଁକି ସନ୍ଦେହ ହେଉଛି । ମିଷ୍ଟର ରାୟ ବି ସେହି କଥା କହିଲେ । ଅନୁପମା ହାଜରା ଗ୍ରୁପ୍ ସହିତ ତମର ତ ପରିଚୟ ଅଛି । ଟିକିଏ ଚେଷ୍ଟା କରି ଦେଖ ।

ପୁଣି ଅପର ପାର୍ଶ୍ୱର ଉତ୍ତର ଶୁଣିସାରି ସୁମିତା କହିଲା : ହଁ, ତା' ବି ସତ ଯେ ! ସେମାନେ ହାରିଯାଇଛନ୍ତି, ଏହାପରେ ଆଉ ଅଟକେଇ ରଖିବାର ଯଦିଓ କିଛି ମାନେ ହୁଏ ନାହିଁ, ତଥାପି... ଆଚ୍ଛା ତମେ ଟିକିଏ ଧର ଶଙ୍କର ।

ସୁମିତା ମୋ ଆଡ଼କୁ ଚାହିଁ କହିଲା : ଶଙ୍କର କହୁଛି ସେମାନେ ଯଦି କିଛି ଖରାପ ଉଦ୍ଦେଶ୍ୟରେ ଅଶୋକକୁ ଅଟକାଇ ଥାଆନ୍ତେ, ବର୍ତ୍ତମାନ ତ ତାଙ୍କର ପରାଜୟ ହୋଇଛି ଏହାପରେ ସେମାନେ ଅଟକେଇ ରଖନ୍ତେ କାହିଁକି ?

ମୁଁ କହିଲି : ଆପଣ ସେମାନଙ୍କ ମନସ୍ତତ୍ତ୍ୱ ଜାଣନ୍ତି ନାହିଁ ସୁମିତା ଦେବୀ । ଏ ଧରଣର ଅପରାଧୀ ଅତ୍ୟନ୍ତ ହିଂସ୍ର ହୁଅନ୍ତି । ପରାଜିତ ହେଲେ ସେମାନେ ଆହୁରି ନୃଶଂସ ହୋଇ ଉଠନ୍ତି । ତେବେ ଆମେ ଏ କ୍ଷେତ୍ରରେ ଏତେଟା ଆଶା କରିବା ଉଚିତ ନୁହେଁ । ତଥାପି ଆମେ ଟିକିଏ ଉଦ୍ୟମୀ ହେଲେ ହୁଏତ ଅଶୋକ ପାରେଖ ଅଧିକ ଅସୁବିଧାରେ ପଡ଼ିବେ ନାହିଁ ।

ସୁମିତା ପୁଣି ଟେଲିଫୋନ୍ ଆଡ଼କୁ ମୁହଁ ବଢ଼ାଇ କହିଲା : ତମେ ଟିକିଏ ଖବର ନିଅ ଶଙ୍କର । ଦମ୍‌ଦମ୍ ଯାଇ ଖବର ନିଅ, ପ୍ଲେନ୍‌ରୁ ଓହ୍ଲାଇଲା ପରେ ସେ ଏଆର ଲାଇନ୍‌ସ ଗାଡ଼ିରେ ଆସିଥିଲେ କି ସ୍ୱତନ୍ତ୍ର ଗାଡ଼ି କରି ଆସିଥିଲେ ।

ତା'ପରେ ମୁହୂର୍ତ୍ତେ ଅପରପ୍ରାନ୍ତର କଥା ଶୁଣି ରିସିଭରଟା ଯଥା ସ୍ଥାନରେ ରଖିଦେଇ ସୁମିତା କହିଲା : ମୋର ବିଜୟର ସବୁ ଆନନ୍ଦ ଧୀରେ ଧୀରେ ଯେପରି ଶେଷ ହୋଇ ଆସୁଛି । ଆପଣ ଏ କ୍ଷେତ୍ରରେ ମୋତେ ଟିକିଏ ସାହାଯ୍ୟ କରନ୍ତୁ ମିଷ୍ଟର ରାୟ ।

ମୁଁ କହିଲି : ଶଙ୍କର କିଏ ?

ଶଙ୍କର ମୋର ଏକ ଜୁନିଅର ବଂଧୁ କହିପାରନ୍ତି । ମୋର କିନ୍ତୁ ସେ ଭାରି ଭକ୍ତ । ଭୀଷଣ ଚାଲାଖ । ଏସବୁ କାମ ପାଇଁ ସେ ଭାରି ଧୁରନ୍ଧର । ଆପଣ ଦେଖିବେ ସନ୍ଧ୍ୟାବେଳକୁ ସେ ନିଶ୍ଚୟ ଗୋଟାଏ କିଛି ନା କିଛି ଖବର ଆଣି ମୋତେ ଦେବ ।

ଏହିସବୁ କଥାବାର୍ତ୍ତା ଭିତରେ ଚା'ଖିଆ ଶେଷ ହୋଇଥିଲା ।

ସୁମିତା ଉଠୁ ଉଠୁ କହିଲା : ଆପଣ ମୋତେ ଟିକିଏ ସାହାଯ୍ୟ କରିବେ ମିଷ୍ଟର ରାୟ । ଆପଣଙ୍କ ସହିତ ପରିଚୟ ହୁଏତ ନୂତନ । କିନ୍ତୁ ଆପଣଙ୍କ ସହିତ କଥାବାର୍ତ୍ତା କରିବା ବେଳଠୁ ମୋର ମନେହେଉଛି, ଆଜି ସଂଧ୍ୟାବେଳକୁ ଆପଣଙ୍କ ସହିତ ନିଶ୍ଚୟ ଭେଟ ହେଉଛି ।

: ଆଶା କରୁଛି ।

ସୁମିତା ଚାଲିଯାଉଥିଲା । ମୁଁ ପୁଣି ପଛରୁ ଡାକି କହିଲି : କିନ୍ତୁ ଆପଣଙ୍କ ଫଟୋଟା ଦେଇଗଲେ ନାହିଁ ତ ?

ସୁମିତା ଅଟକି ଯାଇ ସ୍ମିତ ହସି କହିଲା : ଆଣିଛି । କିନ୍ତୁ ମୋ ଫଟୋଟା ଆପଣଙ୍କର କି ଦରକାରରେ ଲାଗିବ ?

ସୁମିତା ଭ୍ୟାନିଟି ବ୍ୟାଗ୍‌ରୁ କାଢ଼ି ମୋ ହାତକୁ ବଢ଼ାଇ ଦେଲା ।

ମୁଁ କହିଲି : ଧନ୍ୟବାଦ ।

\+ + +

ରାତି ଆଠଟା ପୂର୍ବରୁ ମୋତେ ରିଜେଣ୍ଟ୍ ହୋଟେଲକୁ ଯିବାକୁ ପଡ଼ିଲା ।

ଯେଉଁ ହଲ୍‌ରେ ସୁମିତା ଚନ୍ଦନ ପାଇଁ ସମ୍ବର୍ଦ୍ଧନା ସଭାର ଆୟୋଜନ କରାହୋଇଥିଲା, ସେ ହଲ୍‌ଟା ଲୋକଗହଳିରେ ଫାଟି ପଡୁଥିଲା ।

ଅସଂଖ୍ୟ ତରୁଣ ତରୁଣୀ । ଅସମ୍ଭବ କଳରୋଳ ।

ସୁମିତା ନିଜେ ମୋତେ ପାଛୋଟି ନେଲା ।

ଏକ ବିଶେଷ ଚେଆରରେ ମୋତେ ବସାଇ ତା'ର କେତେଜଣ ବନ୍ଧୁବାନ୍ଧବୀଙ୍କ ସହିତ ପରିଚୟ କରାଇଦେଲା ।

ମୋ ପାଖକୁ ଗୋଟାଏ ଚେଆର ଛାଡ଼ି ବସିଥିଲା ଶଙ୍କର । ସୁମିତାର ଜୁନିଅର ଫ୍ରେଣ୍ଡ୍ । ଶଙ୍କର କିନ୍ତୁ ଦେଖିବାକୁ ବେଶ୍ ହୃଷ୍ଟପୁଷ୍ଟ, ବଳିଷ୍ଠ ଏବଂ ସୁପୁରୁଷ ।

ସୁମିତା ମୋତେ ବସାଇ ଦେଇ ଅନ୍ୟତ୍ର ଚାଲିଯାଇଥିଲା ।

ମୁଁ ନୀରବରେ କିଛି ସମୟ ବସିବା ପରେ, ମୋ ପାଖରେ ବସିଥିବା ଭଦ୍ରଲୋକ ଜଣଙ୍କୁ କହିଲି : ଆପଣ କେଉଁଠି ରୁହନ୍ତି ?

ଲୋକଟି ମୋ ମୁହଁକୁ ଥରେ ଅନାଇଲା । ଟିକିଏ ହସିଲା । ଚେଆରରୁ ଉଠିପଡ଼ି କହିଲା : ମୁଁ ଟିକିଏ ଆସୁଛି ।

ମୁଁ ଅବାକ୍ ହୋଇ ଚାହିଁଥିଲି ତା' ଆଡ଼େ । ସେ ଆଉ ପଛକୁ ନ ଅନାଇ ଲୋକଗହଳି ଭିତରେ କେଉଁଠି ମିଶିଗଲା । ଖାଲି ଚେଆରଟିରେ ବସିବା ପାଇଁ ମୁଁ ଶଙ୍କରକୁ ଡାକିଲି ।

ଶଙ୍କର ମୋ ପାଖକୁ ଉଠିଆସି କହିଲା : ସୁମିତାଦି ଆପଣଙ୍କର ବହୁତ ପ୍ରଶଂସା କରୁଥିଲେ । ଆପଣ କୁଆଡ଼େ ତାଙ୍କର ଯାହା ଉପକାର କରିଛନ୍ତି, ସେ ଜୀବନରେ କେବେ ଭୁଲି ପାରିବେ ନାହିଁ ।

ମୁଁ କହିଲି : ସୁମିତା ଦେବୀ ଆପଣଙ୍କୁ ଟିକିଏ ବେଶି କହି ଦେଇଛନ୍ତି । ସେସବୁ କଥା ଛାଡ଼ନ୍ତୁ । ଆପଣ ଅଶୋକ ପାରେଖଙ୍କର କିଛି ସନ୍ଧାନ ପାଇଲେ ?

ଶଙ୍କର ବିନୟ ସହକାରେ କହିଲା : ମୋତେ ଆପଣ ଆପଣ କହିବେନି । ଆପଣ ସୁମିତାଦିଙ୍କର ବନ୍ଧୁ, ତେଣୁ ମୋତେ ଆପଣ କହିଲେ ମୁଁ ସହିପାରିବି ନାହିଁ ।

ମୁଁ ଟିକିଏ ହସିଲି । କହିଲି : ଠିକ୍ ଅଛି । ତମେ ତା'ହେଲେ ଏଥର ମୋ ପ୍ରଶ୍ନର ଉତ୍ତର ଦିଅ ।

ଶଙ୍କର କିପରି ଟିକିଏ ଗମ୍ଭୀର ଦେଖାଗଲା । କହିଲା : ଆପଣଙ୍କ ପ୍ରଶ୍ନର ଉତ୍ତର ମୁଁ ବର୍ତ୍ତମାନ ଦେଇପାରୁ ନାହିଁ । ଅଶୋକ ପାରେଖ କଲିକତାକୁ ଆସିଛନ୍ତି ଏହା ସତ୍ୟ, କିନ୍ତୁ ଦମ୍‌ଦମ୍ ଏଆରପୋର୍ଟରୁ ବାହାରି ସେ ଯେ କୁଆଡ଼େ ଗଲେ ଆଉ କିଛି ତାଙ୍କର ଖବର ନାହିଁ । ତେବେ ଖବର ମୁଁ ବାହାର ନ କରି ଛାଡ଼ିବି ନାହିଁ । ତା'ଛଡ଼ା ଅଶୋକ ବାବୁ ଭୀଷଣ

ଅନ୍ୟମନସ୍କ ଲୋକ । ଦାର୍ଶନିକଙ୍କ ପରି କେତେବେଳେ ସେ ଯେ କ'ଣ ଭାବନ୍ତି, ତାଙ୍କ ମତିଗତି ସମ୍ବନ୍ଧରେ କିଛି କଳନା କରିବା ଭାରି କଷ୍ଟ ।

ସୁମିତା ଚନ୍ଦନ ହସି ହସି ଆସି ମୋ ସାମ୍ନାରେ ଠିଆ ହେଲା । କହିଲା : ଆସନ୍ତୁ ମିଷ୍ଟର ରାୟ । ଏଥର ସଭା ଆରମ୍ଭ ହେବ । ଆପଣ ଆସନ ଗ୍ରହଣ କରିବେ ।

ମୁଁ ଉଠିଗଲି । ଶଙ୍କର ଉଠି ଠିଆହୋଇ ମୋତେ ଯେପରି ସମ୍ମାନ ଜଣାଇଲା ।

ମୁଁ ଯାଇ ମଞ୍ଚ ଉପରେ ଏକ ବିଶେଷ ଆସନରେ ବସିଲି । ଆଉ ତିନି ଚାରିଜଣ ବୟସ୍କ ଭଦ୍ରଲୋକ ଆସି ଆସନ ଗ୍ରହଣ କଲେ । ତା'ପରେ ସମ୍ବର୍ଦ୍ଧନା ସଭା ଆରମ୍ଭ ହେଲା । ସଭାପତି ପ୍ରଥମେ ମୋତେ କିଛି କହିବା ପାଇଁ ଅନୁରୋଧ କଲେ ।

ମୁଁ ଉଠିଲି । ସୁମିତା ଚନ୍ଦନର ପ୍ରଶସ୍ତି ଗାଇଲି । ଅନ୍ୟମାନଙ୍କୁ ଧନ୍ୟବାଦ ଜଣାଇଲି । ସଭାରେ ଆହୁରି ଦୁଇ ଚାରିଜଣ କହିଲେ । ଶେଷରେ ସଭାପତିଙ୍କ ଭାଷଣ ଏବଂ ତା'ପରେ ଭୂରିଭୋଜନର ବ୍ୟବସ୍ଥା ।

ହଲ୍ ଘରଟା ପୁଣି ଥରେ କଳରୋଳରେ ଫାଟି ପଡ଼ିଲା । ନାଚ, ଗୀତ ସହିତ ଭୋଜନଟା ବଡ଼ ଆମୋଦ ଦାୟକ ହୋଇ ଉଠିଥିଲା । ସୁମିତା ଆସି ମୋ ଟେବୁଲ ପାଖରେ ବସି ନିଜ ହାତରେ ମୋତେ ଖୁଆଇଲା ଏବଂ ବୋତଲରୁ ପାନୀୟ ଢାଳି ମୋତେ ପିଆଇଲା ।

ମୋର ମନା ମାନିଲା ନାହିଁ । ମୋତେ ପିଆଇବା ପାଇଁ ତାକୁ ଯେପରି ନିଶା ଲାଗି ଯାଇଥିଲା ।

ସମ୍ବର୍ଦ୍ଧନା ସଭା ଶେଷ ହୋଇଥିଲା । କିନ୍ତୁ ଭୋଜି ସଭା କେତେବେଳେ ଶେଷ ହେଲା ମୋତେ ଜଣା ନାହିଁ । ଧୀରେ ଧୀରେ ମୁଁ ଯେପରି ସତ୍ତା ହରାଉଥିଲି । ମୋର ମନେଅଛି ନିଜ ହାତରେ ମୋତେ ସୁମିତା ଚନ୍ଦନ ଗ୍ଲାସ୍‌ରେ ପାନୀୟ ଢାଳି ପିଆଇ ଦେଉଥିଲା । ସେତେବେଳେ ମୋ ମୁଣ୍ଡଟା ଘୂରୁଥିଲା । ଆଖି ଆଗରେ ଲୋକମାନଙ୍କ ମୁଣ୍ଡଗୁଡ଼ାକ ଚରକି ପରି ଘୂରିଲା ଭଳି ମନେହେଉଥିଲା । ମୁଁ ବୋଧହୁଏ ଖୁବ୍ ଜୋର୍‌ରେ ହସୁଥିଲି ଆଉ ଗ୍ଲାସ୍‌ରୁ ପାନୀୟତକ ଢୋକିନେଇ ଫୁ କରି ସୁମିତା ମୁହଁକୁ କୁଳୁକୁଞ୍ଚା କରି ଦେଇଥିଲି ।

ତା'ପରେ ଆଉ କିଛି ମନେ ନଥିଲା ।

ପୁଣି କେତେବେଳେ କେଜାଣି ମୋର ମନେହୋଇଥିଲା, ମୁଁ ଯେପରି କାହାର ବାହୁ ପାଶରେ ଆବଦ୍ଧ ହୋଇ ଶୋଇ ରହିଚି । ବୋଧହୁଏ ଆଖି ଖୋଲି ଚାହିଁବାକୁ ଚେଷ୍ଟା କରିଥିଲି କିନ୍ତୁ ଅନ୍ଧାର ଭିତରେ କିଛି ଦେଖିପାରି ନଥିଲି ।

ଯେତେବେଳେ ମୁଁ ମୋର ଆତ୍ମସତ୍ତା ଫେରି ପାଇଲି, ସେତେବେଳେ ମୁଁ ଜାଣିଲି, ଅନ୍ୟ କେଉଁଠି ମୁଁ ଶୋଇଛି । ସ୍ଥାନଟା ମୋର ଅପରିଚିତ, ଶେଯଟା ଅନ୍ୟ କାହାର । ଧୀରେ ଧୀରେ ଆଖି ଖୋଲି ଚାହିଁଲି, ଅନ୍ଧକାର ଯେପରି ପାତଳ ହୋଇଯାଇଛି । ମୋ ସାମ୍ନା କାନ୍ଥଟାରେ ଗୋଟାଏ ତୈଳଚିତ୍ର ଝୁଲୁଛି ବୋଧହୁଏ । କିନ୍ତୁ ମୁଁ କେଉଁଠି ?

ଧୀରେ ଧୀରେ ମୋର ମନେପଡ଼ିଲା ଗତ ରାତିର ଘଟଣା । ରିଜେଣ୍ଟ୍ ହୋଟେଲ । ଭୋଜି ସଭା । ସୁମିତା ଚନ୍ଦନ ଏବଂ...

ମୁଁ ଶେଯ ଉପରେ ଉଠି ବସିଲି । ଡାନ୍‌ଲୋପିଲୋ ଶେଯ । ଗୋଟାଏ ପ୍ରଶସ୍ତ ଖଟ । ମୁଁ ଏକା, ହଁ ଖଟ ଉପରେ ମୁଁ ଏକା ।

ବୋଧହୁଏ ରାତି ଶେଷ ହୋଇ ଆସୁଥିଲା । ବହଳ ଅନ୍ଧକାର ପାତଳ ହୋଇ ଯାଇଥିଲା । ମୁଁ ଦେଖିପାରୁଥିଲି ଘର ଭିତରଟା ଅପ୍ରଶସ୍ତ ନୁହେଁ । ଚେଆର୍, ସୋଫା, ଆଲମିରା, ସବୁ ଅଛି ।

ମୁଁ ତେବେ କ'ଣ ରିଜେଣ୍ଟ୍ ହୋଟେଲର କୌଣସି କକ୍ଷରେ ଶୋଇ ରହିଛି ? ସୁମିତା କ'ଣ କାଲି ମୋର ଅସମ୍ଭାଳ ଅବସ୍ଥା ଦେଖି ମୋତେ ଏଇ କକ୍ଷରେ ଶୁଆଇ ଦେଇ ଚାଲିଯାଇଛି ?

ମୁଁ ଭାବୁଥିଲି । ମୋର ଏପରି ଅବସ୍ଥା ପାଇଁ ହିଁ ଦାୟୀ ସୁମିତା । ସେଇ ମୁହୂର୍ତ୍ତରେ ସୁମିତା ଉପରେ ମୋର ଖୁବ୍ ରାଗ ହେଲା । ମୁଁ ଜଣେ ସାଂବାଦିକ । ପ୍ରଥମ ଶ୍ରେଣୀର ଗୋଟିଏ ଦୈନିକ ପତ୍ରିକାର ମୁଁ ଜଣେ ସମ୍ମାନନୀୟ ସାଂବାଦିକ । ମୋ ଲେଖା ପଢ଼ିବା ପାଇଁ ଦେଶର ଲକ୍ଷ ଲକ୍ଷ ପାଠକ ଅପେକ୍ଷା କରି ରହିଥାଆନ୍ତି । ଅଥଚ... ଅଥଚ...

ବିଛଣାରୁ ଉଠି ଠିଆ ହୋଇ ଦେଖିଲି, ମୋଜାଇକ୍ ଫ୍ଲୋର୍ ଉପରେ ନୀଳ ରଂଗର ଗୋଟାଏ ବ୍ଲାଉଜ୍ ପଡ଼ିଚି, ଆଉ ଟିକିଏ ଦୂରରେ ଗୋଟାଏ ସାଦା ବ୍ରେସିଅର୍ ।

ଛି, ଛି । ତେବେ କ'ଣ କାଲି ରାତିରେ ଏ ଘରେ କୌଣସି ନାରୀ ଅବସ୍ଥାନ କରିଥିଲା ? ମୋ ଦେହଟା ଶୀତେଇ ଉଠିଲା । ଜୀବନରେ ମୁଁ ବହୁ ସମସ୍ୟାର ସମ୍ମୁଖୀନ ହୋଇଛି, କିନ୍ତୁ ଏପରି ଏକ...

ମୋ ଭାବନା ଶେଷ ହେଲା ନାହିଁ । ବାହାରେ ଦରଜାର କଲିଂ ବେଲ୍‌ଟା ବାଜି ଉଠିଲା ଏବଂ ପର ମୁହୂର୍ତ୍ତରେ ନାରୀ କଣ୍ଠର ସ୍ୱର ଶୁଣାଗଲା : ଗୁଡ୍‌ମର୍ଣ୍ଣିଂ ।

: କିଏ ? ମୁଁ ଚମକି ପଡ଼ି ଚିତ୍କାର କରିଉଠିଲି ଏବଂ ସଂଗେ ସଂଗେ ଫ୍ଲୋର୍ ଉପରେ ପଡ଼ିଥିବା ବ୍ଲାଉଜ୍ ଏବଂ ବ୍ରେସିଅରଟା ଗୋଟେଇ ଆଣି ଶେଯ ତଳେ ଲୁଚାଇ ଦେଲି ।

ପର ମୁହୂର୍ତ୍ତରେ କବାଟ ଠେଲି ଗୋଟିଏ ପରିଚାରିକା ଭିତରେ ପଶିଲା । ସୁସଜ୍ଜିତା, ମୁହଁରେ ସ୍ମିତ ହସ ଏବଂ ହାତରେ ଗୋଟିଏ ଟ୍ରେ । କହିଲା : ବେଡ୍ ଟି ସାର୍ ।

ଟି ଟେବୁଲ ଉପରେ ଟ୍ରେ'ଟି ରଖି ପରିଚାରିକାଟି ସ୍ମିତ ହସି ଠିଆହୋଇ ରହିଲା । ଉଦ୍ଦେଶ୍ୟ ଚା' ସେ ତିଆରି କରି ଦେବ ନା ନାହିଁ ?

ମୁଁ ଟିକିଏ ବିବ୍ରତବୋଧ କରୁଥିଲି । କହିଲି : ଚା' ମୁଁ ନିଜ ହାତରେ କରି ଖାଇବି । ତୁମେ ଯାଇପାର ।

ପରିଚାରିକାଟି ଚାଲିଗଲା । ମୁଁ ଗୋଟାଏ ଦୀର୍ଘନିଶ୍ୱାସ ତ୍ୟାଗ କରି ସଂଗେ ସଂଗେ ଯାଇ ଘରର ଦରଜାଟା ଭିତର ପଟରୁ ବନ୍ଦ କରିଦେଲି । ଦରଜାଟା ତେବେ କ'ଣ କାଲି ରାତିଭରି ଖୋଲା ଥିଲା !!

ଶେଯ ତଳେ ଲୁଚେଇ ଦେଇଥିବା ବ୍ରେସିଅର୍ ଓ ବ୍ଲାଉଜ୍‌ଟାକୁ ଟାଣି ବାହାର କଲି । କିପରି ଏକ ସୁମଧୁର ଗନ୍ଧ ମୋ ନାକରେ ବାଜିଲା । ମୋର ମନେହେଲା କାଲି ଏହିପରି ଏକ ସୁଗନ୍ଧ ସମ୍ବର୍ଦ୍ଧନା ସଭାରେ ବାରମ୍ବାର ମୋ ନାକରେ ବାଜିଥିଲା । କିନ୍ତୁ ଏଇ ବ୍ଲାଉଜ୍, ଏଇ ବ୍ରେସିଅର୍... କାହାର ଏ ? ଏ ଘରକୁ ଆସିଲା କିପରି ଏବଂ କାହିଁକି ?

ପୁଣି କଲିଂବେଲ୍‌ଟା ବାଜି ଉଠିଲା । ମୁଁ ପୁଣି ଥରେ ଚମକି ଉଠିଲି ଏବଂ ବ୍ଲାଉଜ୍ ଓ ବ୍ରେସିଅର୍‌କୁ ଦ୍ରୁତ ହସ୍ତରେ ଶେଯ ତଳେ ଲୁଚାଇ, କବାଟ ଖୋଲିବାକୁ ଆଗେଇଗଲି ।

ଏଥର ସ୍ୱୟଂ ସୁମିତା ଚନ୍ଦନ ।

ମୁହଁରେ ହସ । ଆଖିରେ କ୍ଳାନ୍ତି ।

ହାତଯୋଡ଼ି ନମସ୍କାର ଭଂଗୀରେ କହିଲା : ସୁପ୍ରଭାତ । ରାତିରେ ଆଉ କିଛି ଅସୁବିଧା ହୋଇ ନାହିଁ ତ ?

ମୁଁ ସୁମିତା କଥାର କିଛି ଉତ୍ତର ଦେଇପାରିଲି ନାହିଁ । କେବଳ ବିସ୍ଫାରିତ ଆଖିରେ ତା' ମୁହଁକୁ ଚାହିଁ ରହିଲି ।

ସୁମିତା ଗୋଟାଏ ସୋଫା ଉପରେ ବସିପଡ଼ି କହିଲା : ଆରେ ଆରେ, ଆପଣ ଏତେବେଳଯାଏ ଚା' ପିଇ ନାହାନ୍ତି ?

ନିଜେ ସେ ଚା'ପଟ୍‌ରୁ ଚା' ଢାଳି ଦୁଇଟି କପ୍ ପୂର୍ଣ୍ଣ କଲା ।

ମୁଁ ଯେପରି ବାକ୍‌ଶକ୍ତି ହରେଇ ଥିଲି ।

ସୁମିତା ମୋ ହାତକୁ ଚା' କପେ ବଢ଼ାଇ ଦେଇ କହିଲା : ମିଷ୍ଟର ରାୟ, ବାସ୍ତବିକ ଆପଣ ଜଣେ ଶିଶୁ । କାଲି ଆପଣଙ୍କର ଆଚରଣ ଦେଖି ମୋର ମନେହେଲା, ଆପଣ ଏ ଲାଇନ୍‌ରେ ଏକଦମ୍ ନୂଆ । କାରଣ ଚାରି ପାଞ୍ଚ ପେଗ୍ ପରେ ମୁଁ ଲକ୍ଷ୍ୟ କରିଛି ଆପଣ ଏକଦମ୍ ମାନେ ଏକଦମ୍ ଆଉଟ୍ ହୋଇଯାଇଥିଲେ । ମୁଁ କାଲି ସଜ୍ଞାନରେ ଥିଲେ ଅବଶ୍ୟ ଆପଣଙ୍କ ଉପରେ ଏତେ ଅତ୍ୟାଚାର କରି ନଥାନ୍ତି । କିନ୍ତୁ ମୋର ବି ଟିକିଏ ମାତ୍ରାଧିକ ହୋଇଯାଇଥିଲା । ମୋର କିପରି ମନେହେଲା, ଆଜି ମୁଁ ଆପଣଙ୍କୁ ଆଉଟ ନ କରି ଛାଡ଼ିବି ନାହିଁ । ତା'ପରେ ଆଉ କେତେ ପେଗ୍ ମୁଁ ଢାଳିଛି ମୋର ମନେ ନାହିଁ ।

ସୁମିତା ନୀରବ ରହି ମୋ ମୁହଁକୁ ଥରେ ଚାହିଁ, ମୋର ମୌନ ଓ ଭାବ ଗମ୍ଭୀର ମୂର୍ତ୍ତି ଦେଖି ବୋଧହୁଏ ଟିକିଏ ଶଙ୍କିତ ହୋଇ ପଡ଼ିଥିଲା । ମୋତେ ବୋଧହୁଏ ପ୍ରକୃତିସ୍ଥ କରିବା ପାଇଁ ହସି ହସି କହିଲା : ମୋତେ କ୍ଷମା କରିବେ ମିଷ୍ଟର ରାୟ । ମୁଁ କାଲି ଖୁବ୍ ଅନ୍ୟାୟ କରିଛି ।

ମୋ ମୁଣ୍ଡରେ କିନ୍ତୁ ସେତେବେଳଯାଏ ସେଇ ଗୋଟିଏ କଥା ଖେଳୁଥିଲା, ନୀଳରଙ୍ଗର ସେଇ ବ୍ଲାଉଜ୍ ଆଉ ବ୍ରେସିଅର୍‌ଟା । କାହାର ସେଇ ଦୁଇଟା ? ସୁମିତାର ନୁହେଁ ତ ?

ସୁମିତା ମୋର ନୀରବତା ବୋଧହୁଏ ସହିପାରୁ ନଥିଲା । ଉଠି ଠିଆହୋଇ ପଡ଼ି କହିଲା : ଆପଣ ମୋ ଉପରେ ଖୁବ୍ ରାଗିଛନ୍ତି ଦେଖୁଛି । ମୋର ଭୀଷଣ ଅନ୍ୟାୟ ହୋଇଯାଇଛି । ଦୋଷ ସ୍ୱୀକାର କରୁଛି, ତଥାପି ଆପଣ କ୍ଷମା ଦେବେ ନାହିଁ ?

ମୁଁ ଗୋଟାଏ କ'ଣ କହିବାକୁ ଯାଉଥିଲି । କିନ୍ତୁ ଜୋର୍‌ରେ କବାଟଟା ଖୋଲି ଝଡ଼ ବେଗରେ ଘର ଭିତରକୁ ପଶିଆସିଲା ଶଙ୍କର । ସୁମିତାଦି, ସୁମିତାଦି...

କ'ଣ କହିବାକୁ ଯାଇ ସେ ବି ଅଟକି ଗଲା ।

: ଘଟଣା କ'ଣ ଶଙ୍କର ! ତମେ ଏମିତି ଥକ୍କା ମାରି ଠିଆ ହୋଇଗଲ କାହିଁକି ?

: ଖୁବ୍ ଖରାପ ଖବର ସୁମିତାଦି । ଅଶୋକ ପାରେଖ୍‌ଙ୍କୁ ପୁଲିସ୍ ଆରେଷ୍ଟ କରିଛି । ସେ ବର୍ତ୍ତମାନ ଲକ୍‌ଅପ୍‌ରେ ।

ମୋର ମନେହେଲା ହଠାତ୍ ଯେପରି ସୁମିତାର ସର୍ବାଙ୍ଗ କମ୍ପି ଉଠିଲା । ହାତର ଚା' କପ୍‌ଟା ପ୍ଲେଟ୍ ସହିତ ଝଣଝଣ ହୋଇ ବାଜି ଉଠିଲା । ବହୁତ କଷ୍ଟରେ ସୁମିତାର ରୁଦ୍ଧ କଣ୍ଠରୁ ଯେପରି ବାହାରି ଆସିଲା : କେଉଁଠି ?

ଅଶୋକ ପାରେଖ ସେଦିନ ଦମ୍‌ଦମ୍ ଏଆରପୋର୍ଟରୁ ବାହାରି ଗୋଟିଏ ଟ୍ୟାକ୍‌ସି କରି ଆସୁଥିଲେ । ଭି.ଆଇ.ପି. ରୋଡ଼ରେ ଗୋଟାଏ ପୋଲିସ୍ ଭ୍ୟାନ୍ ଯାଇ ତାଙ୍କ ପଥ ଓଗାଳିଲା ଏବଂ ଟ୍ୟାକ୍‌ସି ସମେତ ସେ ତାକୁ ନେଇଗଲା ଲାଲବଜାରକୁ ।

ସୁମିତା ଆଉ କିଛି କହିଲା ନାହିଁ । ଅଧା ଚା'କପ୍‌ଟା ଟେବୁଲ ଉପରେ ରଖିଦେଇ ଠିଆହେଲା । ମୋ ଆଡ଼େ ନିରୀହ ଭାବରେ ଚାହିଁ ବିନମ୍ର ସ୍ୱରରେ କହିଲା : କ୍ଷମା କରିବେ ମିଷ୍ଟର ରାୟ, ମୁଁ ଟିକିଏ ଆସୁଛି । ଆପଣ ନିତ୍ୟକର୍ମ ଶେଷ କରି ଏଠାରୁ ଚାଲିଯିବେ । ମୁଁ ବରଂ ପରେ ଫୋନ୍‌ରେ ଆପଣଙ୍କ ସହିତ ଯୋଗାଯୋଗ କରିବି ।

ଏହି ଘଟଣା ପରେ ମୋର ଜଡ଼ତା ବୋଧହୁଏ ଆହୁରି ବଢ଼ି ଯାଇଥିଲା । ମୁଁ ମଧ ମୋର ଅସମାପ୍ତ ଚା' କପ୍‌ଟା ହାତରେ ଧରି ନୀରବରେ ବସି ରହିଥିଲି । ଆହୁରି କେତେବେଳ ଯାଏ ବସିରହି ଥାଆନ୍ତି କେଜାଣି, ପରିଚାରିକାଟି ଭିତରକୁ ପଶିଆସି ମୋର ଭାମନା ଭାଂଗି ଦେଲା ।

ସେଇ ଅସମାପ୍ତ ଚା' କପ୍‌ଟା ମୁଁ ଟ୍ରେ' ଉପରେ ରଖିଦେଇ ପରିଚାରିକାକୁ କହିଲି : ତୁମେ ନେଇଯାଅ । ମୁଁ ଆଉ ପିଇବି ନାହିଁ ।

ପରିଚାରିକାଟି ବାହାରି ଯାଉ ଯାଉ କହିଲା : ବ୍ରେକ୍‌ଫାଷ୍ଟ ଆଣିବି ସାର୍ ?

: ହଁ ଆଣିବ । ଟିକିଏ ପରେ ।

ଏଥର ମୁଁ ସ୍ପଷ୍ଟ ବୁଝିପାରିଥିଲି ଯେ, ମୁଁ ରିଜେଣ୍ଟ୍ ହୋଟେଲର ଗୋଟିଏ ରୁମ୍‌ରେ ରାତ୍ରିଯାପନ କରିଛି ଏବଂ ଏତେବେଳଯାଏ ବସି ରହିଛି ।

ପରିଚାରିକାଟି ବାହାରି ଯିବା ପରେ, ମୁଁ ଯାଇ ଦରଜାଟି ବନ୍ଦ କରି ଆସିଲି । ନା, ଏଠାରେ ଆଉ ନୁହେଁ । ଏଠାରୁ ମୋତେ ବାହାରି ଯିବାକୁ ହେବ । ନିତ୍ୟକର୍ମ ଶେଷ କରିବା ପାଇଁ ମୁଁ ବାଥ୍‌ରୁମ୍ ଆଡ଼କୁ ଆଗେଇ ଗଲି । ବାଥ୍‌ରୁମ୍ ଦରଜା ଖୋଲି ଭିତରକୁ ପଶିବା ପୂର୍ବରୁ ଗୋଡ଼ ଦୁଇଟା ମୋର ଅଟକି ଗଲା ।

ପୁଣି ମୋର ମନେପଡ଼ିଲା ସୁମିତା କଥା, ନୀଳ ରଙ୍ଗର ବ୍ଲାଉଜ୍ କଥା ଏବଂ ଶଙ୍କରର ଭୟାଳୁ ମୁହଁଟା ।

ମୁଁ ଧୀରେ ଧୀରେ ବାଥ୍‌ରୁମ୍‌ରେ ପଶି ସାୱାରଟା ଖୋଲିଲି । ବର୍ଷା ପାଣି ପରି ସାୱାରରୁ ପାଣି ଝରିବାକୁ ଲାଗିଲା । କିପରି ଏକ ସୁ ସୁ ଶବ୍ଦରେ କାନଟା ଭରି ଉଠିଲା ।

ମୁଁ ଭାବି ଚାଲିଥିଲି, ଶଙ୍କର ଆସି ସୁମିତାକୁ ଖବର ଦେଲା । ଅଶୋକ ପାରେଖକୁ ପୁଲିସ୍ ଆରେଷ୍ଟ୍ କରିଛି । ସୁମିତା ଡରିଗଲା । କିନ୍ତୁ କୌଣସି ପ୍ରଶ୍ନ କଲା ନାହିଁ ତ ! ଅଶୋକ ପାରେଖକୁ ପୋଲିସ୍ କାହିଁକି ଆରେଷ୍ଟ୍ କଲା, କ'ଣ ତା'ର ଅପରାଧ, କିଛି ତ ପଚାରିଲା ନାହିଁ ଶଙ୍କରକୁ ।

ତେବେ କ'ଣ ଅଶୋକ ପାରେଖର ଆରେଷ୍ଟ୍ ହେବା ଭିତରେ କୌଣସି ରହସ୍ୟ ଅଛି ? ଯେଉଁ ରହସ୍ୟଟାକୁ ସୁମିତା ମୋ ଆଗରେ ଉଦ୍‌ଘାଟନ କରିବାକୁ ଚାହୁ ନଥିଲା ?

ମୁଁ ଗାଧୁଆ ଶେଷ କଲି । ଏଥର ବାହାରି ଆସିଲି ବାହାରକୁ । ସମୟ ଅନେକ ହୋଇଯାଇଥିଲା । ମୋର ତେଣେ ଅନେକ କାମ ବାକି ପଡ଼ିଛି । କାଗଜ ପାଇଁ ପ୍ରବନ୍ଧ ଲେଖିବାକୁ ହେବ, ଖବର ସଂଗ୍ରହ କରିବାକୁ ହେବ । କାଲି ରାତିରେ ରିଜେଣ୍ଟ୍ ହୋଟେଲକୁ ଆସି ଗୋଟାଏ ଆପଏଣ୍ଟ୍‌ମେଣ୍ଟ୍ କାନ୍‌ସେଲ୍ କରିବାକୁ ପଡ଼ିଛି । ଖବରକାଗଜ କାମରେ ଏପରି ଅବହେଳା କରିବା ଉଚିତ ନୁହେଁ, ବିଶେଷ କରି ଜଣେ ସାମ୍ବାଦିକ ପକ୍ଷରେ ।

ଫେରିଆସି ଲୁଗାପଟା ପିନ୍ଧିଲି ।

ଯାହାହେଉ ଏଥର ବାହାରି ଯିବାକୁ ହେବ ।

କିନ୍ତୁ ସେଇ ନୀଳ ରଙ୍ଗର ବ୍ଲାଉଜ୍‌ଟା ପୁଣି ମୋତେ ଭାବନାରେ ପକାଇ ଦେଲା । ଏଇଟା ସୁମିତାର ନୁହେଁ ତ ? ଯଦି ସୁମିତାର ହୋଇଥାଏ, ତେବେ ସୁମିତା କ'ଣ କାଲି ରାତିରେ ଏଇ ଘରେ ଶୋଇଥିଲା ? ମୁଁ ମନେ ପକେଇବାକୁ ଚେଷ୍ଟା କଲି । ଆଚ୍ଛନ୍ନତା ଭିତରେ ମୋର ଥରେ ମନେ ହୋଇଥିଲା । ମୁଁ ଯେପରି କାହାର ବାହୁ ପାଶରେ ଆବଦ୍ଧ ହୋଇ ଶୋଇଛି । କିନ୍ତୁ ବର୍ତ୍ତମାନ ପ୍ରକୃତିସ୍ଥ ଅବସ୍ଥାରେ ସେ ସବୁକିଛି ମନେପଡୁ ନାହିଁ ।

ପୁଣି ଥରେ ମୁଁ ସେଇ ନୀଳ ବ୍ଲାଉଜ୍‌ଟା ଓ ସାଦା ବ୍ରେସିଅର୍‌ଟା ବାହାର କଲି । ଏକ ମଧୁର ଗନ୍ଧ ପୁଣି ମୋ ନାକରେ ବାଜିଲା । ବର୍ତ୍ତମାନ ଯେପରି ଗନ୍ଧଟା ମୋ ପାଖରେ ଆହୁରି ଲୋଭନୀୟ ମନେହେଲା । ମୁଁ ଚିନ୍ତା କରୁଥିଲି, ଆଉ ଟିକକ ପରେ ମୁଁ ତ ଏ ଘର ଛାଡ଼ି ଚାଲିଯିବି, ଏଇ ବ୍ରେସିଅର୍, ଏଇ ବ୍ଲାଉଜ୍ ! ଏ ଦୁଇଟା କ'ଣ ଏଇ ଘରେ ଏମିତି ପଡ଼ିରହିବ । ମୋ ଯିବା ପରେ କେହି ଯଦି ଏ ଯୋଡ଼ାକ ଆବିଷ୍କାର କରେ ଏବଂ ଜାଣେ ଯେ ପ୍ରଥମ ଶ୍ରେଣୀର ଜଣେ ସାମ୍ବାଦିକ କାଲି ରାତିରେ ଏଇ କକ୍ଷରେ ରାତ୍ରିଯାପନ କରିଥିଲେ, ତା'ହେଲେ...

ପୁଣି କଲିଂବେଲ୍‌ଟା ବାଜି ଉଠିଲା । ମୁଁ ତରତରରେ ବ୍ଲାଉଜ୍ ଓ ବ୍ରେସିଅର୍‌ଟାକୁ ବିଛଣା ତଳେ ପୂରାଇ ଦେଇ କବାଟ ଖୋଲିଲି ।

ସେଇ ପରିଚାରିକାଟି ବ୍ରେକ୍‌ଫାଷ୍ଟ ଧରି ଠିଆ ହୋଇଛି ।

ସେ ଭିତରକୁ ଆସିଲା । ଟେବୁଲ୍ ଉପରେ ସବୁ ସଜାଇ ଦେଲା । ରହି ରହି ମୋ ଆଡ଼କୁ ଚାହୁଁଥିଲା । ମୋ ଗମ୍ଭୀର ମୂର୍ତ୍ତି ଦେଖି ସେ ବୋଧହୁଏ କିଛି କହିବାକୁ ସାହସ କରିପାରୁ ନଥିଲା ।

ମୁଁ ବ୍ରେକ୍‌ଫାଷ୍ଟ ଖାଇବାକୁ ବସିଲି ।

ସେ ଧୀରେ ଧୀରେ ଘରୁ ବାହାରି ଯାଉଥିଲା ।

ମୁଁ ତାକୁ ହାତଠାରି ପାଖକୁ ଡାକିଲି ।

ସେ ଲେଉଟି ଆସିଲା ।

ପଚାରିଲି : ତୁମ ନାମ କ'ଣ ?

: ମୋ ନା ଲିଲି । ସେ ଉତ୍ତର ଦେଲା ।

: ତମେ ଏ ହୋଟେଲରେ କେତେଦିନ ହେବ ଅଛ ?

: ଅନେକ ଦିନରୁ । ମୋ ମା' ଏଇଠି କାମ କରୁଥିଲା । ମୋତେ ସେ ଭର୍ତ୍ତି କରିଦେଇଯାଇଛି ।

: ତମେ ସୁମିତା ଚନ୍ଦନକୁ ଚିହ୍ନ ?

ଲିଲି ସ୍ମିତ ହସି ମୁଣ୍ଡ ହଲାଇ ସମ୍ମତି ଜଣାଇଲା । ମୁହଁଖୋଲି କିଛି କହିଲା ନାହିଁ ।

: ସୁମିତା ସହିତ ତମର ପରିଚୟ କେତେ ଦିନର ?

ଲିଲି କହିଲା : ଅନେକ ଦିନର ।

ଏହାପରେ ସୁମିତା ସମ୍ବନ୍ଧରେ ଆଉ ଯାହା ପଚାରିବାର କଥା, ତାହା ପଚାରିବାକୁ କିପରି ଦ୍ୱିଧାବୋଧ କଲି ।

ଲିଲି ସେମିତି ଠିଆ ହୋଇଥିଲା । ମୋ ମୁହଁକୁ ଚାହିଁପାରୁ ନଥିଲା ।

ମୁଁ ନୀରବରେ କିଛି ସମୟ ଖାଇବା ପରେ କହିଲି : ରାତିରେ ତମେ କ'ଣ ଏଇ ହୋଟେଲରେ ରୁହ ?

: ହଁ ।

: ଆଚ୍ଛା କାଲି ରାତିରେ ମୋର ଏଇ ରୁମ୍‌ରେ...

ନା, ଆଉ ତେଣିକି କହିପାରିଲି ନାହିଁ । ଖାଇବା ପ୍ଲେଟ୍‌ରୁ ମୁହଁ ଉଠାଇ ଲିଲି ଆଡ଼କୁ ଚାହିଁ କହିଲି : ମୋର ଆଉ କିଛି ଆବଶ୍ୟକ ନାହିଁ । ତମେ ଏଥର ଯାଇପାର ।

ଲିଲି ଧୀରେ ଧୀରେ ରୁମ୍‌ରୁ ବାହାରି ଚାଲିଗଲା ।

ମୁଁ ଖାଇବା ଶେଷ କରି ଉଠି ଠିଆହେଲି ।

ଆଉ ଏଠାରେ ଡେରି କରିବାର କିଛି କାରଣ ନାହିଁ । ଆଠଟା ବାଜି ଗଲାଣି । ନଅଟା ପଇଁଚାଳିଶରେ ଗୋଟାଏ ଆପଏଣ୍ଟ୍‌ମେଣ୍ଟ୍ ଅଛି । ଏଇ ଆପଏଣ୍ଟ୍‌ମେଣ୍ଟ୍‌ଟା ଫେଲ୍ କରିବା ଉଚିତ ହେବ ନାହିଁ ।

ମୁହଁହାତ ଧୋଇ ବାହାରି ଆସିବା ପାଇଁ ପ୍ରସ୍ତୁତ ହୋଇଗଲି ।

ବାହାରି ଆସୁଥିଲି ମଧ୍ୟ । କିନ୍ତୁ ପୁଣି ମୋର ମନେପଡ଼ିଲା ସେଇ ନୀଳ ବ୍ଲାଉଜ୍ ଆଉ ସାଦା ବ୍ରେସିଅର୍ କଥା । ଫେରିଯାଇ ବିଛଣା ତଳୁ ସେ ଦୁଇଟା ବାହାର କଲି । ଖଣ୍ଡେ ଖବରକାଗଜରେ ସେ ଦୁଇଟିକୁ ବାନ୍ଧିଲି । ସଂଗରେ ନେଇଯିବା ଭଲ । ପରେ କେହିଆସି ଏ ରୁମ୍‌ରେ ରହିଲେ ମୋ ସମ୍ବନ୍ଧରେ ଆଉ କିଛି ଜାଣିପାରିବ ନାହିଁ ।

ରୁମ୍‌ର ଦରଜା ବନ୍ଦ କରି ବାହାରକୁ ବାହାରୁଛି, ପୁଣି ସେଇ ପରିଚାରିକାଟି ଆସି ମୋ ସାମ୍‌ନାରେ ଠିଆ ହେଲା । କହିଲା : ଆପଣଙ୍କର ଫୋନ୍ ଆସିଛି ।

: ମୋର ଫୋନ୍ ? ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।

ପରିଚାରିକାଟି ସହିତ ଆଗେଇ ଗଲି । ଅଳ୍ପ ଦୂରରେ ଗୋଟିଏ ରୁମ୍ ଦେଖାଇ ଦେଇ କହିଲା : ଏଇ ଘରେ ।

ସେଘରେ ତିନି ଚାରିଟା ଫୋନ୍ ଥିଲା । ଜଣେ ଭଦ୍ରଲୋକ ଗୋଟାଏ ଫୋନ୍ ଧରି କାହା ସହିତ କଥାବାର୍ତ୍ତା କରୁଥିଲେ । ଆଉ ଗୋଟିଏ ଫୋନ୍‌ର ରିସିଭର ତଳେ ଥୁଆ ହୋଇଥିଲା । ମୁଁ ସେଇଟିକୁ ଉଠାଇ କାନରେ ଦେଲି ।

: ହ୍ୟାଲୋ ?

: ମୁଁ ସୁମିତା କହୁଛି । ଅପର ପ୍ରାନ୍ତରୁ ସୁମିତାର ବଡ଼ ବିଚଳିତ କଣ୍ଠସ୍ୱର ଶୁଣାଗଲା ।

: କ'ଣ ଖବର ? ଅଶୋକ ପାରେଖ ବର୍ତ୍ତମାନ କେଉଁଠି ? ମୁଁ ପଚାରିଲି ।

: ସେ ଲାଲ ବଜାରରେ ଅଛନ୍ତି ବୋଲି ଶୁଣିଲି ।

: ତାଙ୍କୁ ପୋଲିସ୍ କାହିଁକି ଆରେଷ୍ଟ କରିଛି ?

: ମୁଁ ଏପର୍ଯ୍ୟନ୍ତ ସଠିକ୍ ଖବର କିଛି ଜାଣି ନାହିଁ । ଶଙ୍କରକୁ ପଠାଇଛି । ସେ ଫେରି ନାହିଁ । ମୁଁ ଭୀଷଣ ଦୁଶ୍ଚିନ୍ତାରେ ପଡ଼ିଯାଇଛି ।

: କାହିଁକି ?

: ଅଶୋକ ପାରେଖଙ୍କୁ ପୋଲିସ୍ କାହିଁକି ଆରେଷ୍ଟ କରିଛି ମୁଁ ନ ଜାଣିବା ଯାଏ କାହାରିକୁ କିଛି ଖବର ଦେଇପାରୁ ନାହିଁ । ଆପଣ ମୋତେ ଟିକିଏ ସାହାଯ୍ୟ କରିବେ

ମିଷ୍ଟର ରାୟ ? ମୁଁ ବର୍ତ୍ତମାନ ଦେଖୁଛି, ଆପଣଙ୍କ ଛଡ଼ା ମୋର ଆଉ କେହି ଆପଣାର ବନ୍ଧୁ ନାହାନ୍ତି ।

: କିନ୍ତୁ ମୁଁ ଏ କ୍ଷେତ୍ରରେ ଆପଣଙ୍କୁ କ'ଣ ସାହାଯ୍ୟ କରିପାରିବି ? ତା'ଛଡ଼ା ମୋର ଆଜି କେତେଗୁଡ଼ାଏ ଜରୁରୀ କାମ ଅଛି । ମୋତେ ଯେମିତି ହେଉ ସେ ସବୁ କାମ ଶେଷ କରିବାକୁ ହେବ । ଆପଣ ବରଂ ସବୁ ବୁଝାସୁଝା କରି ଚାରିଟା ବେଳକୁ ମୋ ଘରକୁ ଆସନ୍ତୁ । ମୋର ଜଣେ ଓକିଲ ବନ୍ଧୁ ଅଛନ୍ତି, ତାଙ୍କ ସହିତ ଏ ସମ୍ବନ୍ଧରେ ପରାମର୍ଶ କରିବା ।

ସୁମିତା ମୁହୂର୍ତ୍ତେ ନୀରବ ରହି କହିଲା : ନା ମିଷ୍ଟର ରାୟ । କେସ୍‌ଟା ବଡ଼ ଖରାପ ଆକାର ଧାରଣ କରିଛି । ମୁଁ ଯାହା ଶୁଣିଲି, ପୋଲିସ୍ ତାଙ୍କୁ ଜଣେ ସ୍ମଗଲର ଓ ମର୍ଡ଼ରର ହିସାବରେ ଆରେଷ୍ଟ୍ କରିଛି । ହୁଏତ ଚାରିଟା ପୂର୍ବରୁ ମୋତେ ବି ଆରେଷ୍ଟ୍ କରିପାରେ ।

: ଆପଣଙ୍କୁ ? ମୋ ସ୍ୱରଟା କିପରି ଅସ୍ୱାଭାବିକ ମନେହେଲା ।

: ହଁ ମୋତେ । ଅବଶ୍ୟ ଏ ଅପରାଧରେ ଆମେ କେହି ଅପରାଧୀ ନୋହୁଁ । ମୋର ମନେହେଉଛି ଏଗୁଡ଼ାକ ସବୁ ସେଇ ଅନୁପମା ହାଜରା ଗ୍ରୁପ୍‌ର କାରସାଦି । ଫୋନ୍‌ରେ ସବୁକଥା କହିବା ସମ୍ଭବ ନୁହେଁ । ଆପଣ ହୋଟେଲରେ ଟିକିଏ ଅପେକ୍ଷା କରନ୍ତୁ । ମୁଁ ସଂଗେ ସଂଗେ ଯାଉଛି ।

: କିନ୍ତୁ ମୋର ନଅଟା ପଇଁଚାଳିଶରେ...

ମୋ କଥା ଶେଷ ହେଲା ନାହିଁ । ଅପରପ୍ରାନ୍ତରୁ ରିସିଭରଟା ରଖିଦେବାର ଶବ୍ଦ ହେଲା । ମୁଁ ଦୁଇଥର ହ୍ୟାଲୋ, ହ୍ୟାଲୋ କହି ରିସିଭରଟା ରଖିଦେଲି ।

ଏହାପରେ ମୋର କର୍ତ୍ତବ୍ୟ କ'ଣ ?

ମୁଁ ଯେପରି କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହୋଇଥିଲି ।

\+ + +

ଲିଲି ଆସି କହିଲା : ଆପଣଙ୍କୁ ମ୍ୟାନେଜର ସାହେବ ଡାକୁଛନ୍ତି ।

: ମ୍ୟାନେଜର ?

: ହଁ ।

ରିଜେଣ୍ଟ୍ ହୋଟେଲର ମ୍ୟାନେଜର ମିଷ୍ଟର ସରାଓଗୀ ମୋ ସହିତ କରମର୍ଦ୍ଦନ କରି କହିଲେ : କାଲି ସମ୍ବର୍ଦ୍ଧନା ସଭାରେ ଆପଣଙ୍କ ଲେକ୍‌ଚର ଶୁଣିଲି । ଆପଣ ଯେ ଜଣେ ଗୁଣୀ ଲୋକ ଏଥିରେ ସଂଦେହ ନାହିଁ । ଆପଣ କ'ଣ କୌଣସି କଲେଜର ପ୍ରଫେସର ?

ମୋତେ ମିଷ୍ଟର ସରାଓଗୀ ତାଙ୍କ ପାଖରେ ବସିବାକୁ ଗୋଟାଏ ଚେୟାର ଅଫର କରି, ସିଗାରେଟ୍ କେସ୍‌ଟା ମୋ ଆଗରେ ଖୋଲି ଧରିଲେ ।

ମୁଁ ଗୋଟାଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କରୁ କରୁ କହିଲି : ମୁଁ ଅଧ୍ୟାପକ ନୁହେଁ ମିଷ୍ଟର ସରାଓଗୀ, ମୁଁ ଜଣେ ସାଂବାଦିକ ।

ମିଷ୍ଟର ସରାଓଗୀ ଉଚ୍ଛ୍ୱସିତ ହୋଇ ମୋ ସହିତ ଆଉ ଥରେ କରମର୍ଦ୍ଦନ କରିବା ପାଇଁ ହାତ ବଢ଼ାଇ ଦେଇ କହିଲେ : ତା' ନହେଲେ ଏତେ ଜ୍ଞାନ-ଗମ୍ଭୀର ଲେକ୍‌ଚର ଆଉ କିଏ ଦେଇପାରିବ । ତେବେ କ'ଣ ଜାଣନ୍ତି ମିଷ୍ଟର ରାୟ ! ସାଂବାଦିକମାନଙ୍କୁ ଭୟ ସମସ୍ତଙ୍କର । କିନ୍ତୁ ଆପଣ ଏହି ବ୍ୟସ୍ତ ଜୀବନ ମଧ୍ୟରେ ଖେଳର ହାବିଟ୍‌ଟାକୁ ବଂଚେଇ ରଖିଛନ୍ତି କିପରି ?

ମୁଁ ଏଥର ହସି ଉଠିଲି । କହିଲି : ସେ ଅନେକ କଥା ମିଷ୍ଟର ସରାଓଗୀ, ଆପଣ ହୁଏତ ବିଶ୍ୱାସ କରିପାରିବେ ନାହିଁ । ମୁଁ ମୋ ସ୍କୁଲ୍ ଲାଇଫ୍‌ରେ କେବେ ଖେଳ ଅଭ୍ୟାସ

କରିଥିଲି । ତା'ପରେ ଖେଳ ସହିତ ମୋର କୌଣସି ସଂପର୍କ ନଥିଲା, କିନ୍ତୁ ସେଦିନ ଆପଣଙ୍କର ଏଇଠି ସୁମିତା ସହିତ କିପରି ଯେ ଏତେ ଅଦ୍ଭୁତ ଭାବରେ ଖେଳିପାରିଲି, ମୁଁ ନିଜେ ବି ଆଶ୍ଚର୍ଯ୍ୟ ହେଉଛି ।

ମିଷ୍ଟର ସରାଓଗୀ ମୋତେ କ'ଣ କହିବାକୁ ଯାଉଥିଲେ । କିନ୍ତୁ ଟେଲିଫୋନ୍‌ଟା ବାଜି ଉଠିବାରୁ ସେ ରିସିଭର ଉଠାଇ କଥାବାର୍ତ୍ତା କଲେ । ମୁହୂର୍ତ୍ତକ ପରେ ରିସିଭରଟା ରଖିଦେଇ ଚିତ୍କାର କରି କହିଲେ : ଖାଲି ରୁମ୍ ରୁମ୍ ! ଲୋକଗୁଡ଼ାକ ପାଗଳ ହୋଇଗଲେଣି ନା କ'ଣ ? ଖାଲି ନାହିଁ ମନା କଲେ ବି କେହି ବିଶ୍ୱାସ କରିବାକୁ ଚାହାନ୍ତି ନାହିଁ । ଆଶ୍ଚର୍ଯ୍ୟ, ହୋଟେଲର ମ୍ୟାନେଜରୀ ଗୋଟାଏ ଝକମାରୀ କାମ ମିଷ୍ଟର ରାୟ ! ଲୋକଗୁଡ଼ାକ ଆପଣଙ୍କୁ ପାଗଳ କରିଦେବେ ।

ଇତ୍ୟବସରରେ ମୁଁ ଖସିଯିବାକୁ ବସିଥିଲି ।

ନଅଟା ପଇଁଚାଳିଶରେ ମୋର ଏକ ଜରୁରୀ ଆପଏଣ୍ଟ୍‌ମେଣ୍ଟ୍ ।

ମୁଁ ଉଠି ଠିଆ ହୋଇଥିଲି ।

କିନ୍ତୁ ମିଷ୍ଟର ସରାଓଗୀ ପୁଣି ବସିବାକୁ କହିଲେ : ଆପଣଙ୍କ ସହିତ ମୋର ପ୍ରଥମ ପରିଚୟ ହେଲା, ଅନ୍ତତଃ କଫି କପେ ପିଇ ଯିବାକୁ ହେବ ।

ମୁଁ ବିନୀତ ଭାବରେ କହିଲି : ଆଜି ମୋତେ କ୍ଷମା କରନ୍ତୁ ମିଷ୍ଟର ସରାଓଗୀ, ପରିଚୟ ହେଲାଣି ଯେତେବେଳେ, ଆଉ ଦିନେ ଆସି...

ମୋ କଥା ଶେଷ ହେଲା ନାହିଁ । ସୁମିତା ଝଡ଼ ବେଗରେ ସେଠାରେ ଆବିର୍ଭାବ ହେଲା । ସର୍ବାଙ୍ଗରେ ତା'ର କିପରି ଏକ ଅସ୍ୱାଭାବିକ ରୁକ୍ଷତା ମୁଁ ଲକ୍ଷ୍ୟ କଲି । ସେ ବିଚଳିତ କଣ୍ଠରେ କହିଲା : କ୍ଷମା କରିବେ ମି: ସରାଓଗୀ । ମିଷ୍ଟର ରାୟଙ୍କ ସହିତ ମୋର କେତେ ଜରୁରୀ କଥାବାର୍ତ୍ତା ଅଛି ।

ସୁମିତା ଏକପ୍ରକାର ମୋ ହାତଟା ଧରି ଟାଣି ଘେନି ଆସିଲା । ପୁଣି ପୂର୍ବର ସେଇ ରୁମ୍‌କୁ ମୋତେ ଆସିବାକୁ ହେଲା । କିନ୍ତୁ ଏଥର ସୁମିତା ଦେହରୁ ବାହାରୁଥିବା ଏକପ୍ରକାର ସେଣ୍ଟ୍ ଗନ୍ଧରେ ମୁଁ ଆକୃଷ୍ଟ ହେଲି । ଏ ଯେ ମୋର ସେଇ ପରିଚିତ ଗନ୍ଧ । ଯେଉଁ ଗନ୍ଧ ଏବେ ବି ମୋ ହାତରେ ଥିବା ନୀଳ ବ୍ଲାଉଜ୍ ଆଉ ସାଦା ବ୍ରେସିଅର୍‌ରେ ବନ୍ଦୀ ହୋଇ ରହିଛି ।

ସୁମିତା ରୁମ୍‌ର ଦରଜାଟାକୁ ଧଡ୍ କରି ବନ୍ଦ କରିଦେଲା । ମୋ ହାତଟାକୁ ଧରି ଟାଣି ଗୋଟାଏ ସୋଫା ଉପରେ ବସାଇ ଦେଇ କହିଲା : ମୁଁ ବଡ଼ ବିପଦରେ ପଡ଼ିଗଲି ମି: ରାୟ । ମିଷ୍ଟର ପାରେଖ ଆରେଷ୍ଟ୍ ହୋଇଛନ୍ତି । ତାଙ୍କ ବିରୁଦ୍ଧରେ ଚାର୍ଜ ଭୟଙ୍କର । କୌଣସି ପ୍ରକାର ତାଙ୍କଠାରୁ ଲିଙ୍କ୍‌ଟା ଯଦି ମୋ ପର୍ଯ୍ୟନ୍ତ ଆସେ, ତା'ହେଲେ ମୋର ବିଦେଶ ଭ୍ରମଣ ଆଦି ସବୁ ବିଫଳ ହୋଇଯିବ । ତା'ଛଡ଼ା...

ସୁମିତା ନୀରବ ହୋଇଯିବାରୁ ମୁଁ କହିଲି : ଅଶୋକ ପାରେଖ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ? ପ୍ରକୃତରେ ସେ କ'ଣ ଏ ସବୁ ସମସ୍ୟା ସହିତ ସଂଶ୍ଳିଷ୍ଟ ନୁହନ୍ତି ?

ସୁମିତା କିପରି ବିବ୍ରତ କଣ୍ଠରେ କହିଲା : ଆପଣ ପାଗଳ ହେଲେ ମିଷ୍ଟର ରାୟ । ଅଶୋକ ପାରେଖ ଜଣେ ବୁନିଆଦି ଘରର ପିଲା । ତା'ଛଡ଼ା ତାଙ୍କର ଅଚଳାଚଳ ସମ୍ପତ୍ତି । ସେ ଏସବୁ ଅବାଟରେ ଯିବେ କାହିଁକି ?

ମୁଁ ଟିକିଏ ନୀରବ ରହି କହିଲି : ଆପଣ ମଣିଷର ଚରିତ୍ର ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ ସୁମିତା ଦେବୀ । ମଣିଷ ଯେତେ ଉଚ୍ଚ ବଂଶଜ ହେଲେ ବି ଆଉ ଯେତେ ଧନବାନ ହେଲେ ବି କେତେବେଳେ ଯେ ତା'ର ପ୍ରବୃତ୍ତି କ'ଣ ହୁଏ, ତାକୁ କଳନା କରିବା ଆପଣ ମୋ ପରି ମଣିଷ ପକ୍ଷରେ ସମ୍ଭବ ନୁହେଁ । ସେ ଯା'ହେଉ ଆପଣ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ?

ସୁମିତା କହିଲା : ସେ ତ ମୋରି ପାଇଁ ଏଠାରେ ଆସି ବିପଦରେ ପଡ଼ିଛନ୍ତି । ତାଙ୍କୁ ବେଲ୍‌ରେ ନ ଆଣିଲେ ମୋର ଅପରାଧ ହେବ । ଘଟଣାଟା ମୋ କାନକୁ ଆସିଲାଣି ଯେତେବେଳେ ଏଥିପାଇଁ ବିହିତ ବ୍ୟବସ୍ଥା କିଛି ନ କରିଲେ ଭଗବାନଙ୍କ ପାଖରେ ମୁଁ ଅପରାଧୀ ହେବି ।

ମୁଁ କିନ୍ତୁ ଧୀରସ୍ଥିର ହୋଇ ବସିପାରୁ ନଥିଲି । ମୋର ଆପଏଣ୍ଟ୍‌ମେଣ୍ଟ୍ ସମୟ ପାଖେଇ ଆସୁଥିଲା । ଆଉ ସୁମିତା ଦେହର ସେଣ୍ଟ୍ ଗନ୍ଧଟା ମୋତେ ଅନ୍ୟମନସ୍କ କରିପକାଉଥିଲା ।

ମୁଁ ଉଠି ଠିଆହେବା ବେଳକୁ ସୁମିତା ମୋର ହାତ ଧରି ବସାଇ ଦେଲା । କହିଲା : ଆପଣ ମୋତେ ଟିକିଏ ସାହାଯ୍ୟ କରନ୍ତୁ ମିଷ୍ଟର ରାୟ, ପ୍ଲିଜ୍ । ଏ ସମ୍ବନ୍ଧରେ ମୁଁ ମୋର କୌଣସି ଗୁରୁଜନଙ୍କ ସହିତ ଆଲୋଚନା କରିପାରିବି ନାହିଁ । ଆପଣ ବର୍ତ୍ତମାନ ଚାଲନ୍ତୁ ।

: କେଉଁଠିକି ?

: ଆପଣଙ୍କର ସେହି ଓକିଲ ବନ୍ଧୁଙ୍କ ପାଖକୁ । ତାଙ୍କୁ କହି ମିଷ୍ଟର ପାରେଖଙ୍କୁ ଜାମିନରେ ଆଣିବାର ବ୍ୟବସ୍ଥା କରିବା । ଟଙ୍କା କଥା ଆପଣ ଚିନ୍ତା କରନ୍ତୁ ନାହିଁ ।

: କିନ୍ତୁ ସୁମିତା ଦେବୀ, ମୋର ଜରୁରୀ ଗୋଟାଏ ଆପଏଣ୍ଟ୍‌ମେଣ୍ଟ୍ ଅଛି ନଅଟା ପଇଁଚାଳିଶରେ । ନ ଯାଇପାରିଲେ ମୋର ବହୁତ କ୍ଷତି ହେବ ।

ସୁମିତା ମୋ ମୁହଁ ଆଡ଼େ କିପରି ଏକ ଅସହାୟ ଚାହାଣିରେ ଚାହିଁ କହିଲା : ମୋଠାରୁ କ'ଣ ଆପଣଙ୍କର ବେଶି କ୍ଷତି ହେବ ମିଷ୍ଟର ରାୟ ? ପ୍ଲିଜ୍ । ମୁଁ ଆପଣଙ୍କର ସବୁ କ୍ଷତି ପୂରଣ କରିଦେବି । ମୋତେ ବିଶ୍ୱାସ କରନ୍ତୁ ମିଷ୍ଟର ରାୟ । ମୋତେ...

ସୁମିତା ଆଉ ଟିକକରେ କାନ୍ଦି ପକାଇଥାଆନ୍ତା । ସେ ମୋର ଗୋଡ଼ ଧରି ଲୋଟି ପଡ଼ିଲା ।

ମୁଁ ତାକୁ ତଳୁ ଉଠାଇ ଧରିଲି । ସାନ୍ତ୍ୱନା ଦେବା ପାଇଁ କହିଲି : ଆପଣ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ? ବରଂ ମୁଁ ଆଗ ଯାଇ ଲାଲବଜାରରୁ ଘଟଣାଟା ବୁଝିଆସେ । ତା'ପରେ ଯାହା କରିବାର କଥା କରିବା ।

: ନା ମିଷ୍ଟର ରାୟ । ଶଙ୍କର ସବୁ ବୁଝିଆସିଛି । ସେ ମିଷ୍ଟର ପାରେଖଙ୍କ ସହିତ ଦେଖା କରିଥିଲା । ମିଷ୍ଟର ପାରେଖ ତା' ହାତରେ ମୋ ପାଖକୁ ଖବର ଦେଇ କହିଛନ୍ତି ଘଟଣାଟା ଯେପରି ଅନ୍ୟ କେହି ନ ଜାଣନ୍ତି । ତାଙ୍କର କୌଣସି ଆତ୍ମୀୟଙ୍କ କାନକୁ ଯେପରି ନ ଯାଏ । କିନ୍ତୁ ସେ ଖବର ପଠାଇଛନ୍ତି ତାଙ୍କୁ ଯେପରି ହେଉ ଜାମିନରେ ଛଡ଼ାଇ ନେବା ପାଇଁ । ଆଜି ତାଙ୍କୁ କୋର୍ଟରେ ହାଜିର କରାହେବ । ଦଶଟା ପୂର୍ବରୁ ଆମକୁ ଓକିଲ ଠିକ୍ କରି କୋର୍ଟକୁ ଯିବାକୁ ହେବ ।

ମୁଁ ସୁମିତା ହାତରୁ ଖସି ଯିବାର ଆଉ କିଛି ବାଟ ଖୋଜି ପାଇଲି ନାହିଁ । କି ଅସମ୍ଭବ ଝିଅ ଏହି ସୁମିତା । ମୋତେ ଜୋର୍ କରି ହିପ୍‌ନୋଟାଇଜ୍ କଲା ପରି ବାନ୍ଧି ରଖିଛି ।

ମୋର ଆଉ ବାଟ କିଛି ନଥିଲା ।

ଶେଷରେ ମୁଁ ରାଜି ହେଲି ସୁମିତାକୁ ମୋ ସହିତ ମୋର ସେହି ଓକିଲ ବନ୍ଧୁଟି ପାଖକୁ ନେଇଯିବା ପାଇଁ ।

ଦେଖିଲି ବହୁତ ସମୟ ପରେ ସୁମିତା ମୁହଁରେ ଯେପରି ହସ ଫୁଟିଲା । ସେ କୃତଜ୍ଞତା ସ୍ୱରରେ କହିଲା : ଆପଣ ନଥିଲେ ମୋର ଯେ କ'ଣ ଅବସ୍ଥା ହୋଇଥାଆନ୍ତା ମିଷ୍ଟର ରାୟ ! ଭଗବାନଙ୍କୁ ଧନ୍ୟବାଦ ସେ ମୋତେ ଆପଣଙ୍କ ସହିତ ପରିଚୟ କରାଇଛନ୍ତି ।

ମୁଁ ହାତ ଘଡ଼ିକୁ ଚାହିଁ ଦେଖିଲି, ନଅଟା ବାଜିଗଲାଣି । କିନ୍ତୁ ମୋର ସେଇ ମୂଲ୍ୟବାନ ଆପଏଣ୍ଟ୍‌ମେଣ୍ଟ୍‌ଟା ! ନା, ଆଉ ସେଠାରେ ଯୋଗାଯୋଗ କରିବା ସମ୍ଭବ ନୁହେଁ । କିନ୍ତୁ...

ସୁମିତା ବୋଧହୁଏ ଆଉ ଅପେକ୍ଷା କରିପାରୁ ନଥିଲା । ମୋର ନିରବତାରେ ସେ ଚିନ୍ତିତ ହୋଇ ପଡ଼ିଥିଲା । କହିଲା : ଆଉ ଡେରି କରନ୍ତୁ ନାହିଁ ମିଷ୍ଟର ରାୟ ।

ମୁଁ କହିଲି, ଘଟଣାଟା କ'ଣ ଘଟିଛି କହିଲେ ନାହିଁ ତ ।

ସୁମିତା କହିଲା : ଏକାଥରକେ ସେଇଠି ଓକିଲଙ୍କ ଘରେ ଶୁଣିବେ ଚାଲନ୍ତୁ ।

\+ \+ \+

ସୁକାନ୍ତ ପଟ୍ଟନାୟକ, ମୋର ବନ୍ଧୁ । ଆମେ ଏକା ସାଙ୍ଗରେ ପଢୁଥିଲୁ । କିନ୍ତୁ ପରେ ଦୁଇଜଣଙ୍କର ପ୍ରଫେସନ ହୋଇଛି ଅଲଗା ଅଲଗା । ସେ ଓକିଲ, ମୁଁ ସାଂବାଦିକ ।

ମୋ ସାଙ୍ଗରେ ଜଣେ ମହିଳାଙ୍କୁ ଦେଖି ସୁକାନ୍ତ ପ୍ରଥମେ ମୋ ଆଡ଼େ ସଂଦେହ ଦୃଷ୍ଟିରେ ଚାହିଁଥିଲା ।

ମୁଁ କହିଲି : ଭଦ୍ରମହିଳାଙ୍କ ନାମ ସୁମିତା ଚନ୍ଦନ । ବିପଦରେ ପଡ଼ି ତୋ' ପାଖକୁ ଆସିଛନ୍ତି । ତୁ ଟିକିଏ ତାଙ୍କୁ ସାହାଯ୍ୟ କରିପାରିବୁ ?

ସୁକାନ୍ତ ମୋଟା ଆଇନ ବହିଟାକୁ ବନ୍ଦ କରି, ଆଖିରୁ ଚଷମାଟା ଖୋଲି ଥରେ ସୁମିତା ମୁହଁକୁ ଓ ଥରେ ମୋ ମୁହଁକୁ ଚାହିଁଲା ।

ମୁଁ କହିଲି : ତାଙ୍କର ଜଣେ ବନ୍ଧୁ ବମ୍ବେରୁ ଆସୁଥିଲେ । ପୋଲିସ୍ ତାଙ୍କୁ ଆରେଷ୍ଟ୍ କରିଛି । ସୁମିତା ଦେବୀ ସବୁକଥା କହିବେ । ତାଙ୍କୁ ଜାମିନରେ ଛଡ଼ାଇବାକୁ ହେବ ।

ସୁକାନ୍ତ ମୋ ଆଡୁ ଦୃଷ୍ଟି ଫେରାଇ ନେଇ ସୁମିତା ଚନ୍ଦନ ଆଡ଼େ ଚାହିଁଲା ଏବଂ ଶାନ୍ତ ସ୍ୱରରେ କହିଲା : ଘଟଣାଟା କ'ଣ କୁହନ୍ତୁ ତ ସୁମିତା ଦେବୀ !

ସୁମିତା କହିଲା : ବିସ୍ତୃତ ଭାବରେ ଘଟଣାଟା ମୁଁ କିଛି ଜାଣି ନାହିଁ । ତେବେ ଯାହା ଶୁଣିଲି, ଅଶୋକ ପାରେଖଙ୍କୁ ଜଣେ ସ୍ମଗଲର୍ ଭାବରେ ଆରେଷ୍ଟ୍ କରାହୋଇଛି ଏବଂ ତାଙ୍କ ବିରୁଦ୍ଧରେ କେଉଁଠିକାର ଏକ ମର୍ଡ଼ର ଚାର୍ଜ ଆଣିବାକୁ ଚେଷ୍ଟା କରାହୋଇଛି ।

: ତାଙ୍କୁ ଆରେଷ୍ଟ୍ କରିବାବେଳେ ତାଙ୍କ ସହିତ ସ୍ମଗଲିଂ ଜିନିଷପତ୍ର କିଛି ଥିଲା ? ସୁକାନ୍ତ ପଚାରିଲା ।

: ହଁ ଥିଲା । ସେ ଜିନିଷ କିନ୍ତୁ ତାଙ୍କର ନୁହେଁ ।

: ମାନେ ? ଆପଣ ଘଟଣାଟା ବିସ୍ତୃତ ଭାବରେ କୁହନ୍ତୁ ।

: ଅଶୋକ ପାରେଖ ମୋ ଭାଇଙ୍କର ବିଶେଷ ବନ୍ଧୁ । ସେ ବମ୍ବେରେ ରୁହନ୍ତି । ଟେବଲ୍ ଟେନିସ୍ ଖେଳରେ ସେ ଖୁବ୍ ସୁଖ୍ୟାତି ଅର୍ଜନ କରିଛନ୍ତି । ବେଳେବେଳେ କମ୍ପିଟେସନ୍‌ରେ

ସେ ମୋତେ ଓ ମୁଁ ତାଙ୍କୁ ପାର୍ଟନର କରି ଖେଳୁ । ସେହିପରି ଏକ କମ୍ପିଟେସନରେ ଖେଳିବା ପାଇଁ ଅଶୋକ ପାରେଖଙ୍କୁ ମୁଁ ନିମନ୍ତ୍ରଣ କରିଥିଲି । ବମ୍ବେରୁ ସେ ପ୍ଲେନ୍‌ରେ ଆସିଥିଲେ । ପ୍ଲେନ୍‌ରୁ ଓହ୍ଲାଇ ଗୋଟାଏ ଟ୍ୟାକ୍‌ସି କରି ଗ୍ରେଟ୍‌ଇଷ୍ଟର୍ଣ୍ଣ ହୋଟେଲକୁ ଆସୁଥିଲେ । ଭି.ଆଇ.ପି. ରୋଡ଼ରେ ପୋଲିସ୍ ତାଙ୍କ ଟ୍ୟାକ୍‌ସିକୁ ଅଟକାଇ ତାଙ୍କୁ ଆରେଷ୍ଟ୍ କଲେ ଏବଂ ଟ୍ୟାକ୍‌ସି ପଛରୁ ବାକ୍‌ସ ଭର୍ତ୍ତି ସ୍ମଗ୍‌ଲିଂ ଘଡ଼ି ପାଇଲେ । ପୋଲିସ୍ ଆଗରେ ଟ୍ୟାକ୍‌ସି ଡ୍ରାଇଭର ସାକ୍ଷୀ ଦେଲା ଯେ, ଏ ବାକ୍‌ସଟା ଅଶୋକ ପାରେଖଙ୍କର ଏବଂ ସେ ନିଜେ ଟ୍ୟାକ୍‌ସି ପଛଆଡ଼େ ବାକ୍‌ସଟା ରଖିଛି । ପ୍ରକୃତରେ କିନ୍ତୁ ବାକ୍‌ସଟା ମିଷ୍ଟର ପାରେଖଙ୍କର ନୁହେଁ ।

: ତା'ହେଲେ ? ଏ କେସ୍ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ମୋର ମନେହେଉଛି, ଆମର ଏହି ଟେବଲ୍ ଟେନିସ୍ କମ୍ପିଟେସନରେ ମୋ ବିପକ୍ଷରେ ଯିଏ ଖେଳୁଥିଲେ ସେଇମାନଙ୍କର ଷଡ଼ଯନ୍ତ୍ରରୁ ଏହା ହୋଇଛି । ମୋ ପାର୍ଟନର ଠିକ୍ ସମୟରେ ନ ପହଞ୍ଚି ପାରିଲେ ମୁଁ ଅନ୍ୟ କାହାରିକୁ ପାର୍ଟନର କରି ଖେଳିପାରିବି ନାହିଁ । ବିଜୟ ସେମାନଙ୍କର ନିଶ୍ଚୟ ହେବ ।

: ଏବଂ ତାହାହିଁ ହେଲା ? ସୁକାନ୍ତ ପଚାରିଲା ସୁମିତାକୁ ।

: ନା ସେମାନେ ବିଜୟୀ ହୋଇପାରିଲେ ନାହିଁ । ମଝିରେ ମୋତେ ଗୋଟାଏ ଅସୁବିଧାରେ ପକାଇଲେ । ଅଶୋକ ପାରେଖଙ୍କୁ ଜାମିନ୍‌ରେ ଆଣି ନ ପାରିଲେ ଭଦ୍ରଲୋକ ଭୀଷଣ ଅସୁବିଧାରେ ପଡ଼ିବେ । କାରଣ ଏଠାରେ ତାଙ୍କର ପକ୍ଷ ନେଇ ଲଢ଼ିବାକୁ ସେପରି କେହି ଲୋକ ନାହାନ୍ତି ।

: ହୁଁ, କେସ୍‌ଟା ଟିକିଏ ଅଡୁଆ ମନେହେଉଛି । ତଥାପି ଚେଷ୍ଟା କରିବି । ଆଉ ଯେଉଁ ମର୍ଡ଼ର ଚାର୍ଜ କଥା କହୁଥିଲେ, ସେଇଟା କ'ଣ ?

: ସେଇଟା ସ୍ପଷ୍ଟ କିଛି ଜଣାଯାଇ ନାହିଁ । ତେବେ ଅଶୋକ ପାରେଖଙ୍କ କାନରେ ସେମିତି ଗୋଟାଏ ଖବର ବାଜିଛି । ସେ ଲକ୍‌ଅପ୍‌ରେ ରହି ଶୁଣିଛନ୍ତି । ତାଙ୍କ ବିରୁଦ୍ଧରେ ଦୁଇଟା ଚାର୍ଜ ହୋଇଛି ।

: ଠିକ୍ ଅଛି । ମୁଁ କେସ୍‌ଟା ହାତକୁ ନେଉଛି । ଆଜି ଦଶଟା ପରେ ଆପଣ କୋର୍ଟକୁ ଆସନ୍ତୁ । ମୁଁ ପ୍ରସ୍ତୁତ ହୋଇଯାଉଛି । ଯାହା କରଣୀୟ ମୁଁ ଯାଇ କୋର୍ଟରେ ସବୁ କରିବି ।

ସୁକାନ୍ତ ଉଠି ଠିଆ ହେଲା ।

ମୁଁ କହିଲି : ଏବେ ମୋତେ ଛୁଟି ଦିଅନ୍ତୁ ସୁମିତା ଦେବୀ । ମୋର ତ କୋର୍ଟକୁ ଯିବାର କୌଣସି ପ୍ରୟୋଜନ ନାହିଁ ।

ସୁମିତା ଭ୍ୟାନିଟି ବ୍ୟାଗରୁ ଶହେଟଙ୍କାର ଖଣ୍ଡେ ନୋଟ୍ ବାହାର କରି ସୁକାନ୍ତର ଟେବୁଲ୍ ଉପରେ ରଖି କହିଲା : ମୁଁ ଯାଇ ଠିକ୍ ସମୟରେ ହାଜିର ହେବି ମିଷ୍ଟର ପଟ୍ଟନାୟକ । ଆଉ କିଛି ଅସୁବିଧା ହେବ ନାହିଁ ତ !

ସୁକାନ୍ତ କହିଲା : ମୁଁ କୋର୍ଟକୁ ଯାଇ କେସ୍‌ଟା ନ ଜାଣିବା ପର୍ଯ୍ୟନ୍ତ କିଛି କହିପାରିବି ନାହିଁ । ତେବେ ଖୁବ୍ ସମ୍ଭବ ଜଜ୍ ବେଲ୍ ମଞ୍ଜୁର କରିବେ ।

ମୁଁ କହିଲି : ଦେଖ୍ ଭାଇ ସୁକାନ୍ତ ! ଭଦ୍ରମହିଳା ଖୁବ୍ ବିପଦରେ ପଡ଼ିଛନ୍ତି । ତାଙ୍କର ଭୟ ଯେ ପୋଲିସ୍ ସନ୍ଦେହ କରି ସୂତ୍ର ଖୋଜି ଖୋଜି ଆସି ସୁମିତା ଦେବୀଙ୍କ ପାଖରେ ଯେପରି ନ ପହଞ୍ଚେ ।

: କାହିଁକି, କାହିଁକି ? ଏପରି ସନ୍ଦେହ କରିବାର କାରଣ କ'ଣ ଅଛି ?

ସୁମିତା ନିଜେ ଉତ୍ତର ଦେଲା: ନା, ଏପରି ସନ୍ଦେହ କରିବାର ଅନ୍ୟ କୌଣସି କାରଣ ନାହିଁ ଯେ, ତେବେ ଅଶୋକ ପାରେଖ ମୋର ବନ୍ଧୁ, ସେଇ ସୂତ୍ରଧରି ପୋଲିସ୍ ଯଦି...

ସୁକାନ୍ତ ହୋ ହୋ ହୋଇ ହସିଉଠି କହିଲା : ନା ନା ସୁମିତା ଦେବୀ, ସେପରି ଭୟ କରିବାର କିଛି କାରଣ ନାହିଁ । ଆଉ ଯଦି କିଛି ହୁଏ, ପରେ ଦେଖାଯିବ । ଆପଣ ବର୍ତ୍ତମାନ ଯାଆନ୍ତୁ । ଠିକ୍ ସମୟରେ କୋର୍ଟକୁ ଆସିବେ ।

ସୁକାନ୍ତ ମୋ ଆଡ଼େ ଚାହିଁ କହିଲା : ମୁଁ ଟିକିଏ ଆସୁଛି ଭାଇ, ସମୟ ହୋଇଗଲାଣି । କୋର୍ଟକୁ ଯିବା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ତୁ ବରଂ ପାଞ୍ଚଟା ବେଳକୁ ଆସିବୁ । ବସି ଗପ କରିବା ।

ସୁକାନ୍ତ ଘର ଭିତରକୁ ଚାଲିଗଲା ।

ସୁମିତା ଓ ମୁଁ ବାହାରକୁ ଚାଲିଆସିଲୁ ।

ମୁଁ କହିଲି : ଆପଣ କୋର୍ଟକୁ ଯାଆନ୍ତୁ ସୁମିତା ଦେବୀ । ମୁଁ ପରେ ଯାଇ ଆପଣଙ୍କ ସହିତ ଦେଖା କରିବି ।

ସୁମିତା କିଛି ସମୟ ଅସହାୟ ଦୃଷ୍ଟିରେ ମୋ ମୁହଁକୁ ଅନାଇ ରହି କହିଲା : ହେଉ, ମୁଁ ଯାଉଛି । ଶଙ୍କରକୁ ଧରି କୋର୍ଟକୁ ଯିବି । ଆପଣଙ୍କ ସହିତ ପୁଣି କେତେବେଳେ ଦେଖା ହେବ ?

: ମୁଁ କୋର୍ଟରେ ଆପଣଙ୍କ ସହିତ ଦେଖା କରିବି ।

ମୁଁ ଫେରିଆସିଲି ଅଫିସ୍‌କୁ ।

କାରଣ ମୋ ଆପଏଣ୍ଟମେଣ୍ଟ୍ ସମୟ ଅତିବାହିତ ହୋଇ ଯାଇଥିଲା ।

ଅଫିସ୍‌ରେ ଆସି ସେଦିନର କାଗଜ ପାଇଁ ଗୋଟାଏ ଲେଖା ଲେଖି ବସିଛି, ରଣଜିତ୍ ତାଲୁକଦାର ମୋତେ ଡାକି ପଠାଇଲେ । ରଣଜିତ୍ ତାଲୁକଦାର ଆମର ଦୈନିକ ପତ୍ରିକା 'ନୟାସମାଜ'ର ମାଲିକ ଏବଂ ସଂପାଦକ ।

ଏତେ ସକାଳୁ ସେ କେବେ ଅଫିସ୍‌କୁ ଆସନ୍ତି ନାହିଁ । ଆଜି ହଠାତ୍ ଯେ କାହିଁକି...

ମୁଁ ଯାଇ ତାଙ୍କ ଚେମ୍ବରରେ ପ୍ରବେଶ କଲି । ରଣଜିତ୍ ତାଲୁକଦାର କ'ଣ ଲେଖୁଥିଲେ । ମୋ ମୁହଁକୁ ଚାହିଁ ସ୍ମିତ ହସି କହିଲେ : ଖବର କ'ଣ ? ଅନେକ ଦିନ ହେବ 'ନୟା ସମାଜ'ରେ ଆଉ କିଛି ଚମକପ୍ରଦ ସଂବାଦ ତ ପ୍ରକାଶ ପାଇଲା ନାହିଁ ?

ମୁଁ କହିଲି : ଏ କେତେଦିନ ହେବ ସେପରି କିଛି ବିଶେଷ ଘଟଣା ଘଟି ନାହିଁ । ଘଟିଲେ 'ନୟାସମାଜ'ର ପୃଷ୍ଠା ପ୍ରଥମେ ମଣ୍ଡନ କରାହେବ ।

ରଣଜିତ୍ ବାବୁ ଡ୍ରୟାର ଟାଣି ଭିତରୁ ଖଣ୍ଡିଏ କାଗଜ ବାହାର କରି ଟେବୁଲ୍ ଉପରେ ରଖିଲେ ।

ନୀରବରେ କେତୋଟି ମୁହୂର୍ତ୍ତ ସେହି ଛୋଟ କାଗଜ ଖଣ୍ଡିକ ଆଡ଼େ ଅନେଇ ରହି କହିଲେ : ମୁଁ ଆପଣଙ୍କୁ ଗୋଟିଏ ଚମକପ୍ରଦ ଘଟଣାର ସଂବାଦ ଦେଉଛି । ଏଇ ଦେଖନ୍ତୁ । ଏଇଟା ତା'ର ବ୍ଲୁ ପ୍ରିଣ୍ଟ୍ ।

ମୁଁ କାଗଜଟି ହାତରେ ନେଇ ଦେଖିଲି । ତା' ଭିତରେ କେତେଗୁଡ଼ିଏ ଅଙ୍କାବଙ୍କା ଗାର ପଡ଼ିଛି ଏବଂ କେତେଗୁଡ଼ିଏ ଜାଗାର ନାଁ ଲେଖା ହୋଇଛି । ବ୍ଲୁ ପ୍ରିଣ୍ଟ୍‌ଟି ଉପରୁ ଆଖି ବୁଲାଇ ନେଇ ରଣଜିତ୍ ତାଲୁକଦାରଙ୍କ ମୁହଁକୁ ଚାହିଁଲି ।

ସେ କହିଲେ : କିଛି ବୁଝି ହେଉଛି ?

ମୁଁ କହିଲି : ନା, ତେବେ ସାମାନ୍ୟ ସୂତ୍ର ପାଇଲେ ମୁଁ ଆଗେଇ ଯିବି । ବ୍ଲୁ ପ୍ରିଣ୍ଟଟା ଦେଖି ମନେହେଉଛି ଏ ଯେପରି...

: ହଁ, ଆପଣ ଠିକ୍ ଧରିଛନ୍ତି, ମିଷ୍ଟର ତାଲୁକଦାର କହିଲେ । ତା'ପରେ ବ୍ଲୁ ପ୍ରିଣ୍ଟଟା ଟେବୁଲ ଉପରେ ଥୋଇ, ଲେଖାଗୁଡ଼ିକ ଉପରେ ପେନ୍‌ସିଲ୍ ମାରି ଦେଖାଇ କହିଲେ, ଏଇଟା ହେଲା ଦମ୍‌ଦମ୍ ଏଆର୍ ପୋର୍ଟ । ଏଆର୍‌ପୋର୍ଟରୁ ଏଇ ଯେଉଁ ସରୁ ସରୁ ଲାଇନ୍‌ଗୁଡ଼ିକ ବାହାରିଯାଇଛି, ସବୁଗୁଡ଼ିକ ରାସ୍ତା । ଆଉ ଏ ଯେଉଁ ଗୋଲାକାର ଚିହ୍ନଗୁଡ଼ିକ ଅଛି, ସେଗୁଡ଼ିକ ବୋଧହୁଏ ଟାର୍ଗେଟ୍ । ଆଉ ଏଇ ଯେଉଁ ନାଁ ଚାରି ପାଞ୍ଚଟା ଅଛି, ସେଗୁଡ଼ିକ ମଧ୍ୟ ଟାର୍ଗେଟ୍ ହୋଇପାରେ ଆଉ ଘାଟି ବି ହୋଇପାରେ । ତେବେ 'ଲାଲବଜାର' ନାଁଟା ଏଠାରେ ପ୍ରିଣ୍ଟ୍ ହୋଇଥିବାରୁ ମୁଁ ଟିକିଏ ଦୁଶ୍ଚିନ୍ତାରେ ପଡ଼ିଯାଇଛି ।

ମିଷ୍ଟର ତାଲୁକଦାରଙ୍କ ହାତରୁ ବ୍ଲୁ ପ୍ରିଣ୍ଟଟି ଆଣି ମୁଁ ଆଉଥରେ ଭଲ କରି ଦେଖିଲି । କହିଲି : ମୋର ମନେହେଉଛି ଆର ଥରର ସେହି ଘଟଣା ଅପେକ୍ଷା ଏଥର ଆହୁରି ଭୟଙ୍କର କିଛି ଘଟିବ । ଆପଣ ଏ ବ୍ଲୁ ପ୍ରିଣ୍ଟଟା କେଉଁଠୁ ସଂଗ୍ରହ କଲେ ?

ମିଷ୍ଟର ତାଲୁକଦାର ସ୍ମିତ ହସି କହିଲେ : ଯେଉଁଠୁ ଯୋଗାଡ଼ କରିଥାଏ । ଏଥର ବି ମୋତେ ନୀନା ଦେଇଛି । ତେବେ ସେ ଏ ସମ୍ବନ୍ଧରେ ଆଦୌ କିଛି କହିପାରିଲା ନାହିଁ । ଯାହା ପକେଟ୍‌ରୁ ସେ ଏଇ ଖଣ୍ଡିକ ଆବିଷ୍କାର କଲା, ସେ ଲୋକଟା ନୀନା ପାଖରେ ସଂପୂର୍ଣ୍ଣ ନୂଆ । ତା'ଛଡ଼ା ଲୋକଟା କୁଆଡ଼େ ପ୍ରଥମରୁ ଡାଉନ୍ ହୋଇ ପଡ଼ିଥିଲା । ତେଣୁ ନୀନା ତା ମୁହଁରୁ କିଛି ଶୁଣିପାରିଲା ନାହିଁ । ମୋତେ ସେ କଥା ଦେଇଛି, ଲୋକଟା ସହିତ ଯଦି ଆଉ ତା'ର ଦେଖା ହୁଏ, ତେବେ ସେ କିଛି ନା କିଛି ସୂତ୍ର ଆବିଷ୍କାର କରିବାକୁ ଚେଷ୍ଟା କରିବ ।

ମୁଁ କହିଲି : ଆଜି ମୁଁ ଘଟଣାଟା ସମ୍ବନ୍ଧରେ ଟିକିଏ ଅନୁସନ୍ଧାନ କରେ, କାଲି ଏ ବିଷୟରେ କିଛି ତଥ୍ୟ ଆପଣଙ୍କୁ ଯୋଗାଇ ପାରିବି ।

ମିଷ୍ଟର ତାଲୁକଦାର ମୁହୂର୍ତ୍ତେ ନୀରବ ରହି କହିଲେ : କାଲି ମର୍ଣ୍ଣିଂ ଏଡ଼ିସନ୍‌ରେ କିଛି ଗୋଟାଏ ଚମକପ୍ରଦ ବିବରଣୀ ଛାପି ହୋଇପାରିବ ନାହିଁ ? ଆପଣ ଚେଷ୍ଟା କରି ଦେଖନ୍ତୁ । ମୁଁ ଗୋଟାଏ ଗାଡ଼ି ଆପଣଙ୍କୁ ଦେଉଛି ।

ମୁଁ ମୁହୂର୍ତ୍ତେ ଚିନ୍ତା କରି କହିଲି : ନୀନା ବର୍ତ୍ତମାନ କେଉଁଠି ମିଳିବ ?

: ତା' ଘରେ । ମାନେ କୁଇନ୍‌ସ ମେନସନ୍‌ର ୧୭ ନମ୍ବର ଫ୍ଲାଟ୍‌ରେ ।

: ତା' ଫ୍ଲାଟ୍‌ରେ ଫୋନ୍ ଅଛି ?

: ନା, ବୋଧହୁଏ ନାହିଁ । ତେବେ ଆପଣ ବର୍ତ୍ତମାନ ଚାଲିଗଲେ, ତା' ସହିତ ଦେଖା ହୋଇଯିବ । ତା'ଠାରୁ ବିଶେଷ କିଛି ଖବର ମିଳିବାର ସମ୍ଭାବନା ଅଛି କି ?

ମୁଁ କହିଲି : ନୀନା ଯେତେବେଳେ ମୂଳ ସୂତ୍ର, ମୋର ମନେହେଉଛି ଅନୁସନ୍ଧାନଟା ମୂଳରୁ ଆରମ୍ଭ କଲେ ଭଲ ହେବ ।

: ଠିକ୍ ଅଛି, ଆପଣ ବାହାରି ପଡ଼ନ୍ତୁ । ସାମାନ୍ୟ ସତ୍ୟତା ଉପରେ ସମ୍ବାଦଟା ଗଢ଼ି ଉଠିଲେ ଭଲ ହେବ । ଆପଣ ଚେଷ୍ଟା କରନ୍ତୁ ।

ମିଷ୍ଟର ତାଲୁକଦାର ସଂଗେ ସଂଗେ ମୋ ପାଇଁ ଗୋଟିଏ ଗାଡ଼ିର ବ୍ୟବସ୍ଥା କରିଦେଇ କହିଲେ : ମୁଁ ଆପଣଙ୍କର ଶୁଭକାମନା କରୁଛି ମିଷ୍ଟର ରାୟ ।

ଆଉ ଡେରି ନ କରି ମୁଁ ମିଷ୍ଟର ତାଲୁକଦାରଙ୍କ ଘରୁ ବାହାରି ଆସିଲି । ଦେହ ମନରେ ମୁଁ ମଧ୍ୟ ଉତ୍ତେଜିତ ହୋଇ ଉଠିଥିଲି । କୌଣସି ଅଜଣା ରହସ୍ୟର ଗନ୍ଧ ପାଇଲେ ମୋର ସର୍ବାଙ୍ଗରେ କିପରି ଏକ ଶିହରଣ ଖେଳିଯାଏ ଏବଂ ସେହି ସବୁ ରହସ୍ୟର ସମାଧାନ ନ କରିବା ଯାଏ ମୁଁ ସ୍ଥିର ହୋଇ ବସିପାରେ ନାହିଁ । 'ନୟାସମାଜ'ର ଲୋକପ୍ରିୟତା ଅନେକ ସମୟରେ ମୋରି ପାଇଁ ଚରମକୁ ଉଠିଯାଇଥାଏ । ରାଜନୀତିର ପଟ୍ଟଭୂମି ଅପେକ୍ଷା ଅପରାଧମୂଳକ ପଟ୍ଟଭୂମି ଉପରେ ମୋ ଲେଖାଗୁଡ଼ାକ ଖୁବ୍ ବାସ୍ତବ ହୋଇଥାଏ । ଏହା ପୂର୍ବରୁ ଦୁଇଟି ବ୍ୟାଙ୍କ୍ ଡକେଇତି ଓ ଦୁଇ ତିନୋଟି ମର୍ଡ଼ର କେସ୍ ଉପରେ ମୋର ମନ୍ତବ୍ୟ ଏତେ ବଳିଷ୍ଠ ଆଉ ଏତେ ବାସ୍ତବ ହୋଇଉଠିଥିଲା ଯେ, ସ୍ୱୟଂ ପୋଲିସ୍ କମିସନର ମୋତେ ପ୍ରଶଂସା କରି ଚିଠି ଲେଖିଥିଲେ ।

ମିଷ୍ଟର ତାଲୁକଦାର ବି ଜଣେ ରହସ୍ୟ ସଂଧାନୀ । ରହସ୍ୟର ଗନ୍ଧ ପାଇଲେ ତାଙ୍କୁ ମଧ୍ୟ ନିଦ ହୁଏ ନାହିଁ । ସେ ନିଜେ କିଛି କରି ନ ପାରିଲେ ବି ଅନ୍ୟ ସାହାଯ୍ୟରେ ସେ ଗୋଟାଏ କିଛି ସୂତ୍ର ଆବିଷ୍କାର କରିବା ପାଇଁ ଦୃଢ଼ସଂକଳ୍ପ ହୋଇ ଉଠନ୍ତି ।

ସେଇଥିପାଇଁ 'ନୟାସମାଜ'ରେ ଗୋଟାଏ ସ୍ୱତନ୍ତ୍ର ବିଭାଗ ସେ ରଖିଛନ୍ତି । ପ୍ରତିଦିନ ଅପରାଧମୂଳକ କିଛି କିଛି ଲେଖା 'ନୟାସମାଜ'ରେ ନ ବାହାରିଲେ, ସେ ବିରକ୍ତ ହୁଅନ୍ତି । ତାଙ୍କର ମତ ପ୍ରତି ଦୈନିକ ପତ୍ରିକା ଦେଶର ଓ ଦଶର କଲ୍ୟାଣ କାମନା କରି ଲେଖା ସବୁ ପ୍ରକାଶ କରିବା ଉଚିତ । କିନ୍ତୁ ଆମ ଦେଶର ଦୈନିକ ପତ୍ରିକାଗୁଡ଼ିକ ବେଶି ଭାଗ ରାଜନୀତି ନେଇ ବ୍ୟସ୍ତ ଥାଆନ୍ତି । ସମାଜରେ ରାଜନୀତି ଛଡ଼ା ଆହୁରି ଯେ ଅନେକ ଅନୀତି ଅଛି ଏବଂ ସେସବୁ ଅନୀତିକୁ ଲୋକସମାଜ ଆଗରେ ଉନ୍ମୋଚନ କରିବା ପାଇଁ ଖବରକାଗଜମାନଙ୍କର ପବିତ୍ର ଦାୟିତ୍ୱ ରହିଛି, ସେ କଥା ଆମ ଦେଶର ପତ୍ରିକା ପ୍ରକାଶକମାନେ ଭୁଲିଯାଆନ୍ତି । ବିଦେଶରେ ଏହି ସାମାଜିକ ଅପରାଧ ଓ ଅପରାଧୀଙ୍କ ପାଇଁ ଏକ ଏକ ସ୍ୱତନ୍ତ୍ର ପତ୍ର-ପତ୍ରିକା ରହିଥିବା ସ୍ଥଳେ, ଆମ ଦେଶରେ ସେ କଥା ଏକା ପୋଲିସ୍ ଡିପାର୍ଟମେଣ୍ଟ୍ ଛଡ଼ା ଅନ୍ୟ କେହି ଚିନ୍ତା କରନ୍ତି ନାହିଁ । ସେଥିପାଇଁ ମିଷ୍ଟର ତାଲୁକଦାର ଦୁଃଖ କରି ବିଭିନ୍ନ ସଭା ସମିତିରେ କୁହନ୍ତି ଏବଂ ନିଜେ ସେଥିପାଇଁ କିପରି ଅଗ୍ରଣୀ ହୋଇଛନ୍ତି ତାହାର ଉଦାହରଣ ଦେଇ 'ନୟାସମାଜ'ର ବିଭିନ୍ନ ତାରିଖର ବିଭିନ୍ନ ସମ୍ବାଦର ଉଦାହରଣ ଦିଅନ୍ତି ।

'ନୟାସମାଜ'ର 'ଅପରାଧ ଓ ଅପରାଧୀ' ବିଭାଗଟି ମୋରି ତତ୍ତ୍ୱାବଧାନରେ ପରିଚାଳିତ ହେଲେ ବି, ମିଷ୍ଟର ତାଲୁକଦାର ଏହି ବିଭାଗଟି ପାଇଁ ବେଶି ଲକ୍ଷ୍ୟ ରଖନ୍ତି । ସେଥିପାଇଁ ସେ ବିଭିନ୍ନ ହୋଟେଲ ରେଷ୍ଟୁରେଣ୍ଟ୍ ଏବଂ ଜେଟି ଓ ଏରୋଡ୍ରମ୍‌ରେ ସ୍ଥାନୀୟ କର୍ମଚାରୀମାନଙ୍କୁ କିଛି କିଛି ପଇସା ଦେଇ ଖବର ସଂଗ୍ରହ କରନ୍ତି । ଆଜିର ଏଇ ଖବରଟି ସେହିପରି ଜଣେ ଏଜେଣ୍ଟଙ୍କଠାରୁ ସଂଗୃହୀତ ।

ନୀନା ଜଣେ ସୁନ୍ଦରୀ ନର୍ତ୍ତକୀ । ସ୍ଥାନୀୟ ବଡ଼ ବଡ଼ ହୋଟେଲରେ ସେ ନାଚ କରେ । ତା' ରୂପରେ ଆକର୍ଷିତ ହୋଇ ବହୁ ବଡ଼ ବଡ଼ ଅଫିସରଙ୍କଠାରୁ ଆରମ୍ଭ କରି ଗୁଣ୍ଡା ବଦ୍‌ମାସ ଓ ସ୍ମଗଲର ଯାଏ ତା' ପଛରେ ଘୂରନ୍ତି । ତେଣୁ ଅନେକ ସମୟରେ ନୀନା ବହୁ ଅନାବିଷ୍କୃତ ରହସ୍ୟର ଗନ୍ଧ ପାଏ । ଛୋଟ ବଡ଼ ଖବର ମଧ୍ୟ ମଝି ମଝିରେ ଆମକୁ ସେ ସରବରାହ କରିଥାଏ । ଆଜିର ଏ ଖବରଟି ତା'ରି ପ୍ରଦତ୍ତ ଏବଂ ବ୍ଲୁପ୍ରିଣ୍ଟ୍‌ଟି ତା'ରି ଦ୍ୱାରା ସଂଗୃହୀତ ।

ମିଷ୍ଟର ତାଲୁକଦାର ଏହି ବ୍ଲୁ ପ୍ରିଣ୍ଟ୍‌ଟି ଉପରେ ଅନେକ ଆଶା କରିଛନ୍ତି । ଏହା ଯେ ବଡ଼ ଗୋଟାଏ କିଛି ଅପରାଧ ସଂଗଠନର ପ୍ଲାନ୍ କରାହୋଇଛି, ସେ ବିଷୟରେ ମିଷ୍ଟର ତାଲୁକଦାର ନିଃସନ୍ଦେହ । ହୁଏତ ଏତେବଡ଼ ଗୋଟାଏ ରହସ୍ୟର ଗନ୍ଧ ପାଇ ମିଷ୍ଟର ତାଲୁକଦାର ସ୍ଥିର ହୋଇ ବସିପାରି ନାହାନ୍ତି । ସେଇଥିପାଇଁ ସକାଳୁ ସକାଳୁ ଛୁଟି ଆସିଛନ୍ତି ଅଫିସ୍‌କୁ । କିନ୍ତୁ କ'ଣ ଏହି ରହସ୍ୟ ?

ମୁଁ ମଧ ଟିକିଏ ଚିନ୍ତିତ ହୋଇ ପଡ଼ିଥିଲି ।

ବାରମ୍ବାର ବ୍ଲୁ ପ୍ରିଣ୍ଟ୍‌ଟା ଏପାଖ ସେପାଖ କରି ଦେଖିବା ପରେ ମୁଁ ଅଫିସ୍‌ରୁ ବାହାରି ଆସିଲି । ପ୍ରଥମେ ନୀନା ପାଖକୁ ଯିବାକୁ ହେବ । ନୀନା ଠାରୁ ଜାଣିବାକୁ ହେବ ସେ ଏହି ବ୍ଲୁ ପ୍ରିଣ୍ଟ୍‌ଟି କାହାଠାରୁ ସଂଗ୍ରହ କରିଛି ।

ତଳେ ମୋ ପାଇଁ ଅଫିସ୍‌ର ଗୋଟାଏ ଗାଡ଼ି ଅପେକ୍ଷା କରିଥିଲା ।

ମୁଁ ଗାଡ଼ିର ଦରଜା ଖୋଲି ଡ୍ରାଇଭରକୁ କହିଲି : କୁଇନ୍‌ସ ମେନ୍‌ସନ୍ ।

୧୭ ନମ୍ବର ଫ୍ଲାଟ୍‌ରେ ନକ୍ କରିବାରୁ ଦରଜା ଖୋଲିଗଲା ।

ନିଜେ ନୀନା ଆସି ଦରଜା ଖୋଲି ଦେଲା । ମୋତେ ଦେଖି ନୀନା କହିଲା : ଆସନ୍ତୁ ମିଷ୍ଟର ରାୟ ।

ନୀନା ସ୍ୱରରେ କିନ୍ତୁ ଉତ୍ସାହ ନଥିଲା ।

ମୁଁ କହିଲି : ଅସମୟରେ ଆସି ଆପଣଙ୍କୁ ବିରକ୍ତ କଲି ବୋଧହୁଏ ।

: ନା ନା, ବସନ୍ତୁ । ମୁଁ କଫି ଆଣିବାକୁ କହୁଛି ।

ନୀନା ଫେରିଆସି ମୋ ସାମ୍ନାରେ ଗୋଟାଏ ସୋଫା ଉପରେ ବସିଲା । ମୁଁ କିଛି ପଚାରିବା ଆଗରୁ ସେ କହିଲା : ଲୋକଟାର ଆଉ ସନ୍ଧାନ ପାଇ ନାହିଁ । ସେଦିନ ପ୍ରିନ୍‌ସେସରେ ମୁଁ ତାକୁ ଭେଟିଥିଲି । ଆଗରୁ କେବେ ତାକୁ କେଉଁଠି ଦେଖିଥିଲା ପରି ମନେ ପଡୁ ନାହିଁ । ଲୋକଟା ସଂପୂର୍ଣ୍ଣ ଡାଉନ ହୋଇଯାଇଥିଲା । ମୋତେ ଜଡ଼େଇ ଧରି ଉଚ୍ଛ୍ୱସିତ କଣ୍ଠରେ ମୋର ପ୍ରଶଂସା କରି ପକେଟରୁ ଗୁଡ଼ାଏ ନୋଟ୍ ବାହାର କରି ମୋ ବ୍ଲାଉଜ୍ ଭିତରେ ପୂରାଇ ଦେଲା । ତା'ପରେ ଆଉ ସେ ଠିଆ ହୋଇ ପାରିଲା ନାହିଁ । ଚଟାଣ ଉପରେ ଫ୍ଲାଟ୍ ହୋଇ ପଡ଼ିଯାଇଥିଲା ।

ଏଭଳି ଲୋକଙ୍କ ଚାଲିଚଳନ ସହିତ ଆମେ ଅଭ୍ୟସ୍ତ । ତେଣୁ ସେମାନଙ୍କ ପ୍ରତି ଆମର କୌଣସି ସହାନୁଭୂତି ନଥାଏ । ମୋର ବି କିଛି ନଥିଲା । ମୁଁ ତାକୁ ତଳେ ସେଇଠି ଶୁଆଇ ଦେଇ ଏବଂ ବ୍ଲାଉଜ୍ ଭିତରୁ ନୋଟ୍‌ଗୁଡ଼ାଏ ଭ୍ୟାନିଟି ବ୍ୟାଗ୍‌ରେ ଭରି ଦେଇଥିଲି । ପରଦିନ ସକାଳୁ ଭ୍ୟାନିଟି ବ୍ୟାଗ୍‌ଟି ଖୋଲି, ନୋଟ୍ ସହିତ ସେହି ବ୍ଲୁପ୍ରିଣ୍ଟ୍‌ଟି ଆବିଷ୍କାର କଲି । ତା'ପରେ ସେ ଲୋକଟାକୁ ଆଉ ଖୋଜି ପାଇ ନାହିଁ ।

ନୀନା ନୀରବ ହୋଇ ଗୋଟାଏ ମୁଲାଏମ ତକିଆ କୋଳ ଉପରେ ରଖି ମୋ ଆଡ଼କୁ ଆଗ୍ରହୀ ଆଖିରେ ଅନାଇ ରହିଲା । ନୀନାର ଆଖିରେ କ୍ଳାନ୍ତି ଭରି ରହିଥିଲା । ହୁଏତ ବର୍ତ୍ତମାନ ତା'ର ବିଶ୍ରାମ ଲୋଡ଼ା ।

ମୁଁ କହିଲି : ଏଇ ବ୍ଲୁ ପ୍ରିଣ୍ଟ୍‌ଟା ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

ନୀନା ଗୋଟାଏ ହାଇ ତୋଳି କହିଲା : ମୋର ଏ ସମ୍ବନ୍ଧରେ କିଛି ଧାରଣା ନାହିଁ । ମିଷ୍ଟର ତାଲୁକଦାର ମୋତେ ଥରେ କହିଥିଲେ ଏଇ ଧରଣର କୌଣସି ପଦାର୍ଥ ପାଇଲେ ତାଙ୍କୁ ଦେବା ପାଇଁ । ପରଦିନ ମୁଁ ତାଙ୍କୁ ଦେଇ ଆସିଥିଲି ।

: କିନ୍ତୁ ଏଇ ବ୍ଲୁ ପ୍ରିଣ୍ଟ୍ ଯେ ଗୋଟାଏ କିଛି ଭୟଙ୍କର ପ୍ଲାନ୍‌ର ସୂଚନା ତାହା ମୋର ମନେହେଉଛି । ଆଚ୍ଛା, ସେଇ ଯେଉଁ ଲୋକଟା ପକେଟରେ ଏଇ ବ୍ଲୁ ପ୍ରିଣ୍ଟଟା ଥିଲା, ସେ ଲୋକଟା ଦେଖିବାକୁ କିପରି ? ସେ କି ଧରଣର ଲୋକ ହୋଇପାରେ ବୋଲି ଆପଣଙ୍କର ଧାରଣା ?

ନୀନା ଟିକିଏ ଚିନ୍ତା କଲା । କହିଲା : ଲୋକଟା ଖୁବ୍ ବଳିଷ୍ଠ ଆଉ ହୃଷ୍ଟପୁଷ୍ଟ । ମୋର ମନେହେଉଛି, ଲୋକଟା ସ୍ମଗଲର ହୋଇପାରେ ।

: ତା'ର ଆଉ କେହି ସାଙ୍ଗସାଥୀ ଥିବାର ଆପଣ ଲକ୍ଷ୍ୟ କରିନାହାନ୍ତି ?

: ନା, ଲୋକଟାକୁ ମୁଁ ଏକା ଦେଖିଲି ।

: ହୁଁ, ଆପଣ ତା'ହେଲେ ଟିକିଏ ଲକ୍ଷ୍ୟ ରଖିଥିବେ । ଯଦି ଏହା ମଧ୍ୟରେ କେଉଁଠି ତାକୁ ଭେଟନ୍ତି, ତେବେ ଆମକୁ ଟିକିଏ ଫୋନ୍ କରି ଜଣାଇ ଦେବେ । ମୁଁ କହିଲି ।

ଏହାପରେ ମୋର ଆଉ ନୀନାକୁ ପଚାରିବାର କିଛି ନଥିଲା । ନୀନା କିନ୍ତୁ ନିଜେ ଆଗ୍ରହ ପ୍ରକାଶ କରି ପଚାରିଲା : ସେଇ ଲୋକଟା ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ମିଷ୍ଟର ରାୟ ?

ମୁଁ ନୀନା ମୁହଁକୁ ମୁହୂର୍ତ୍ତେ ଚାହିଁ କହିଲି : ମୋର ମନେହେଉଛି ଲୋକଟା ଗୋଟାଏ ଡକାଏତ ଦଳର । ଏଇ ସହରରେ ଗୋଟାଏ କିଛି ବଡ଼ ଧରଣର ଡକାଏତି କରିବା ପାଇଁ ସେମାନେ ପ୍ରସ୍ତୁତ ହେଉଛନ୍ତି । ଏଇଟା ସେଇ ଡକାଇତିର ପ୍ଲାନ୍ ।

ନୀନାର ଆଖି ଦୁଇଟା ବିସ୍ଫାରିତ ହୋଇ ଉଠିଲା । ସେ ମୋ ମୁହଁକୁ ନିର୍ନିମେଷ ଆଖିରେ କିଛି ସମୟ ଅନାଇ ରହି କହିଲା : ଦିଅନ୍ତୁ ତ ସେଇ ପ୍ଲାନ୍‌ଟା ମୁଁ ଟିକିଏ ଦେଖେ ।

ବ୍ଲୁ ପ୍ରିଣ୍ଟଟା ମୁଁ ନୀନା ହାତକୁ ବଢ଼ାଇ ଦେଲି ।

ସେ କିଛି ସମୟ ଧ୍ୟାନ ସହକାରେ ଦେଖିବା ପରେ କହିଲା : ଏଇ ବ୍ଲୁ ପ୍ରିଣ୍ଟ୍ ଭିତରେ ଯେଉଁ କ୍ଷୁଦ୍ର ଗୋଲାକୃତି ଚିହ୍ନଗୁଡ଼ିକ ଅଛି, ମୋର ମନେହେଉଛି, ସେଗୁଡ଼ିକ ବୋଧହୁଏ ସେମାନଙ୍କର ଲକ୍ଷ୍ୟସ୍ଥଳ ।

: ହଁ, ମୋର ଅନୁମାନ ବି ସେଇଆ ।

: କିନ୍ତୁ ସେଇ ଗୋଲାକୃତି ଚିହ୍ନଗୁଡ଼ିକ କ'ଣ ହୋଇପାରେ ?

: ହୁଏତ ବ୍ୟାଙ୍କ୍ କିମ୍ବା...

ନୀନା ହସି ହସି କହିଲା : ହୋଟେଲ ନୁହେଁ ତ ?

: ନା ନା, ହୋଟେଲରେ ଡକାୟତି କରି ସେମାନେ କ'ଣ ପାଇବେ ? ମୋର ଖୁବ୍ ସମ୍ଭବ ସେଗୁଡ଼ିକ ବ୍ୟାଙ୍କ୍ ।

: କିନ୍ତୁ ଏକା ସାଙ୍ଗରେ ଏତେଗୁଡ଼ିଏ ବ୍ୟାଙ୍କ୍‌କୁ ଲୁଣ୍ଠନ କରିବା କ'ଣ ଏତେ ସହଜ କଥା ?

: ନୁହେଁ, ତଥାପି ଏ ଯୁଗରେ ଅସମ୍ଭବ ତ କିଛି ନାହିଁ । ଏକା ସାଂଗରେ, ଏକା ସମୟରେ କୌଣସି ବୈଜ୍ଞାନିକ ପଦ୍ଧତିରେ ସେମାନେ ଯଦି ଗୋଟାଏ ଆତଙ୍କ ସୃଷ୍ଟି କରି କିଛି କରି ବସନ୍ତି, ତା'ହେଲେ ବିଜୟୀ ହେବା କିଛି ଅସମ୍ଭବ ନୁହେଁ ।

ନୀନା ବ୍ଲୁ ପ୍ରିଣ୍ଟଟି ମୋ ହାତକୁ ଫେରାଇ ଦେଇ କହିଲା : ପୋଲିସ୍‌ରେ କିନ୍ତୁ ମୋ ନାଁ ଠିକଣା କିଛି କହିବେ ନାହିଁ । ଜାଣନ୍ତି ତ ପୋଲିସ୍ ଡିପାର୍ଟମେଣ୍ଟ୍ କଥା, ମୋତେ ନେଇ ଅନେକ ଘଣ୍ଟାଚକଟା କରି ପାରନ୍ତି । ଶେଷରେ ମୋ ପ୍ରଫେସନରେ ବାଧା ସୃଷ୍ଟି ହେବ ।

: ହଠାତ୍ ପୋଲିସ୍ କଥା ଆପଣ ଉଠାଇଲେ କାହିଁକି ?

: ଘଟଣାଟା ଯଦି ଡକେଇତି ବୋଲି ଆପଣଙ୍କର ମନେହୁଏ, ତା'ହେଲେ ଆପଣ ନିଶ୍ଚୟ ପୋଲିସ୍ ସହିତ ପରାମର୍ଶ କରିବେ ଏବଂ ପୋଲିସ୍ ଏହାର ମୂଳ ସୂତ୍ର ଆବିଷ୍କାର କରିବା ପାଇଁ ଚେଷ୍ଟା କରିବ । ସେଇଠୁ ମୁଁ ବିଚାରୀ ଥାନାରୁ ହୋଟେଲ, ହୋଟେଲରୁ ଘର, ପୁଣି ଘରୁ ଥାନା ହୋଇ ହୋଇ ନାକେଦମ୍ ହୋଇପଡ଼ିବି । ଫଳରେ...

: ନା ନା, ଆପଣ ନିଶ୍ଚିନ୍ତ ରୁହନ୍ତୁ ମିସ୍ ନୀନା । ଆପଣଙ୍କୁ ଆମେ ଏହା ଭିତରକୁ ଟାଣିବୁ ନାହିଁ । ବରଂ ଆପଣ ଆମ ପାଇଁ ଟିକିଏ ଉଦ୍ୟମ କରନ୍ତୁ । ଦେଖନ୍ତୁ ସେଇ ଲୋକଟା ତା'ର ସାଙ୍ଗସାଥୀ କାହାରି ସନ୍ଧାନ ପାଉଛନ୍ତି କି ନାହିଁ ।

ମୁଁ ଉଠୁଥିଲି । ନୀନା କହିଲା : ଆପଣ ଗୋଟାଏ କାମ କରିପାରିବେ ମିଷ୍ଟର ରାୟ । ଆଜି ରାତି ଏଗାରଟାରୁ ରିଜେଣ୍ଟ୍‌ରେ ଗୋଟାଏ ବିଶେଷ ପ୍ରୋଗ୍ରାମ ଅଛି । ଅବଶ୍ୟ ନାଚଟା କାବାରେ । ମୁଁ ନାଚିବି । ଅନ୍ୟ ସମୟ ହୋଇଥିଲେ କାବାରେକୁ ମୁଁ ଆପଣଙ୍କୁ ନିମନ୍ତ୍ରଣ କରନ୍ତି ନାହିଁ, କିନ୍ତୁ ଏହି ସବୁ ମିଡ୍‌ନାଇଟ୍ ପ୍ରୋଗ୍ରାମରେ ସେଇ ଧରଣର ଲୋକମାନେ ବିଶେଷ ଭିଡ଼ କରନ୍ତି । ମୋର ଧାରଣା ଏଇ ପ୍ରୋଗ୍ରାମ ଦେଖିବା ପାଇଁ ସେଇ ଲୋକଟା ଓ ତା'ର ସାଙ୍ଗସାଥୀମାନେ ଆସିପାରନ୍ତି । ଆପଣ ଆସନ୍ତୁ । ମୁଁ ଯଦି ସେଇ ଲୋକଟାର ସନ୍ଧାନ ପାଏ, ତେବେ ଇସାରାରେ ଜଣେଇ ଦେବି । ଆପଣ ତା'ପରେ ଯାହା କରିବାର କଥା କରିବେ । ଆପଣ ରାତି ଅଧରେ ଆସିପାରିବେ ?

ମୁଁ ଟିକିଏ ଚିନ୍ତିତ ହୋଇ କହିଲି : ମୋର ଆସିବାର କିଛି ଆପତ୍ତି ନାହିଁ, କିନ୍ତୁ ଟିକେଟ୍ ପାଇବି କେଉଁଠୁ ?

ନୀନା କହିଲା : ମୁଁ ଆପଣଙ୍କୁ ଖଣ୍ଡେ ପ୍ରବେଶପତ୍ର ଦେଉଛି । ଆପଣ ସେଇ ପ୍ରବେଶପତ୍ର ଦେଖାଇ ଭିତରକୁ ଚାଲିଯିବେ । କିନ୍ତୁ ପରିବେଶଟା ଆଦୌ ଭଲ ନୁହେଁ । ଯେତେ ସବୁ ଗୁଣ୍ଡା ବଦ୍‌ମାସ ଆଉ ମାତାଲମାନେ ଆସି ଜୁଟିଥିବେ । ଅବଶ୍ୟ ଆପଣଙ୍କର କେହି କିଛି କ୍ଷତି କରିବେ ନାହିଁ । ତଥାପି ଆପଣଙ୍କୁ ପରିବେଶଟା ଭଲ ନ ଲାଗିପାରେ ।

ନୀନା ଉଠିଯାଇ ମୋ ପାଇଁ କାବାରେ ନାଚର ଏକ ପ୍ରବେଶ ପତ୍ର ଆଣି ଦେଲା । ଏହାପରେ ମୋର ଆଉ ନୀନା ପାଖରେ କିଛି କାମ ନଥିଲା ।

ମୁଁ ବିଦାୟ ନେଇ ଫେରି ଆସିଲି ।

ମୋର ମନେପଡ଼ିଲା ସୁମିତା ଚନ୍ଦନ କଥା । ହୁଏତ ଅଶୋକ ପାରେଖଙ୍କୁ କେନ୍ଦ୍ର କରି ବର୍ତ୍ତମାନ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଛି, ତା' ଭିତରୁ ନୂତନ ରହସ୍ୟର କୌଣସି ଗନ୍ଧ ମିଳିପାରେ ।

ଏହିପରି ନାନା କଥା ଚିନ୍ତା କରି ମୁଁ ଆଗେଉଥିଲି ।

ବର୍ତ୍ତମାନ ଅଫିସ୍‌କୁ ଯିବା କିଛି ଦରକାର ନାହିଁ । ବସାକୁ ଫେରିଯାଇ ଟିକିଏ ବିଶ୍ରାମ କରି, ତା'ପରେ ଯାହା କରିବି ।

ଫୋନ୍‌ରେ ମିଷ୍ଟର ତାଲୁକଦାରଙ୍କ ସହିତ କଥାବାର୍ତ୍ତା କରିଲେ ଚଳିବ ।

ଡ୍ରାଇଭରକୁ କହିଲି : ମୋତେ ଘରେ ଛାଡ଼ି ତୁ ଖାଇବାକୁ ଚାଲିଯିବୁ । ଫେରି ଆସିଲେ ପୁଣି ବାହାରିବାକୁ ହେବ ।

ଡ୍ରାଇଭର ମୋତେ ଘରେ ଛାଡ଼ିଦେଇ ଗଲା ।

ମୁଁ ଘରେ ଲୁଗାପଟା ଖୋଲି ଟିକିଏ ବିଶ୍ରାମ କରିବାକୁ ଯାଉଛି, ମୋର କାହିଁକି ମନେହେଲା, ମୋର ଥରେ କୋର୍ଟକୁ ଯିବା ଉଚିତ ଥିଲା । ସୁମିତା ଚନ୍ଦନକୁ କଥା ଦେଇଥିଲି । ବିଚାରୀ ବିପଦରେ ପଡ଼ିଛି । ମୋଠାରେ ତା'ର ଅନେକ ଆଶା ଭରସା । ଅଥଚ...

ଟେଲିଫୋନ୍‌ଟା କ୍ରିଂ କ୍ରିଂ ହୋଇ ବାଜିଉଠିଲା ।

: ହ୍ୟାଲୋ ?

ଅପର ପ୍ରାନ୍ତରୁ ସୁକାନ୍ତର କଣ୍ଠସ୍ୱର ଶୁଣାଗଲା । ସେ ବିରକ୍ତ ହୋଇ କହିଲା : ଆରେ ସେ ସୁମିତା ଚନ୍ଦନ ଗଲା କୁଆଡ଼େ ? ମୁଁ ତା' ପାଇଁ ସାଢ଼େ ଦଶଟାରୁ ପ୍ରାୟ ଘଣ୍ଟାଏ ସମୟ ନଷ୍ଟ କରି କୋର୍ଟରେ ବସି ରହିଲି । ତୁ ଆଚ୍ଛା କ୍ଲାଏଣ୍ଟ୍ ଦେଲୁ ତ ମୋତେ...

ପ୍ରଥମେ ମୁଁ ସୁକାନ୍ତର କଥା ବିଶ୍ୱାସ କରିପାରିଲି ନାହିଁ । କହିଲି : ତୁ ମୋତେ ଥଟ୍ଟା କରୁଛୁ ସୁକାନ୍ତ । ଆଗ କହିଲୁ ତା' କେସ୍‌ଟା କ'ଣ ହେଲା ? ଅଶୋକ ପାରେଖ ଜାମିନରେ ଛାଡ଼ ପାଇଲେ ତ ?

ସୁକାନ୍ତ କହିଲା : ଆରେ ନା'ରେ, ସୁମିତା ମୋଟେ କୋର୍ଟକୁ ଆସି ନାହିଁ । ଏପାଖ ସେପାଖ କରି ମୁଁ ତାକୁ ବହୁତ ଖୋଜିଲି । କିନ୍ତୁ ତା'ର ଦେଖା ମିଳିଲା ନାହିଁ । ଘଟଣା କ'ଣ କହିଲୁ ?

: ଘଟଣା ସମ୍ବନ୍ଧରେ ମୁଁ ବି ତ ସନ୍ଦିହାନ । ହୁଏତ ସୁମିତାର କିଛି ବିପଦ ଆପଦ ଘଟିଲା । ତା' ନହେଲେ... ଆଚ୍ଛା ମୁଁ ଅନୁସନ୍ଧାନ କରି ପରେ ତତେ ସବୁକଥା ଜଣାଇବି । ରହିଲି ।

ଟେଲିଫୋନ୍ ରିସିଭରଟା ରଖିଦେଇ ମୁଁ ବଡ଼ ଚିନ୍ତିତ ହୋଇ ପଡ଼ିଲି । ସୁମିତା ତା'ହେଲେ ମୋ ପାଖରୁ ଯାଇ ଗଲା କୁଆଡ଼େ ? ବର୍ତ୍ତମାନ କେଉଁଠୁ ତା'ର ଖବର ନେଇ ହେବ ?

ଏକମାତ୍ର ରିଜେଣ୍ଟ୍ ହୋଟେଲର ମ୍ୟାନେଜର ମିଷ୍ଟର ସରାଓଗୀ ହୁଏତ ତା' ସମ୍ବନ୍ଧରେ କିଛି କହିପାରନ୍ତି ।

ମୁଁ ଟେଲିଫୋନ୍‌ରେ ମିଷ୍ଟର ସରାଓଗୀଙ୍କ ସହିତ ଯୋଗାଯୋଗ କଲି ।

ସେ କହିଲେ : ସୁମିତା ଏଗାରଟା ବେଳେ ଥରେ ହୋଟେଲକୁ ଆସିଥିଲା । ତା' ସହିତ ଆଉ ଜଣେ ଭଦ୍ରଲୋକ ଥିଲେ । ମୋର ଅପରିଚିତ । ସେମାନେ ସୁମିତାର ରିଜର୍ଭ ରୁମ୍‌ରେ ଥିଲେ । ତା'ପରେ ମୁଁ ଆଉ କିଛି ଜାଣି ନାହିଁ ।

ମୁଁ କହିଲି : ଆପଣ ଟିକିଏ ଖବର ନେଇ ଦେଖନ୍ତୁ ତ ସେମାନେ ସେଠାରେ ଅଛନ୍ତି କି ଚାଲିଗଲେଣି ।

ମିଷ୍ଟର ସରାଓଗୀ କହିଲେ : ଆପଣ ଫୋନ୍‌ଟା ଧରିଥାଆନ୍ତୁ, ମୁଁ ଖବର ନେଇ କହୁଛି ।

କିଛି ସମୟର ନୀରବତା ପରେ ମିଷ୍ଟର ସରାଓଗୀ ପୁଣି କହିଲେ : ନା, ରୁମ୍‌ରେ କେହି ନାହାନ୍ତି । କିନ୍ତୁ ଘଟଣା କ'ଣ କୁହନ୍ତୁ ତ ମିଷ୍ଟର ରାୟ ?

ମୁଁ କହିଲି : ଘଟଣା କିଛି ନୁହେଁ ଯେ, ମୋର ଟିକିଏ ସୁମିତା ସହିତ କଥାବାର୍ତ୍ତା ଥିଲା । ସେ ଯଦି ଏହା ମଧ୍ୟରେ ଆସନ୍ତି, ଆପଣ କହିବେ ମୋ ସହିତ ଫୋନ୍‌ରେ କଥାବାର୍ତ୍ତା କରିବା ପାଇଁ ।

: ଆଚ୍ଛା, ଆଚ୍ଛା ।

ମୁଁ ପୁଣି କହିଲି : ଆଉ ଗୋଟାଏ କଥା ମିଷ୍ଟର ସରାଓଗୀ । ଆଜି ରାତିରେ ଆପଣଙ୍କ ହୋଟେଲରେ ଏକ ମିଡ଼ନାଇଟ୍ ବିଶେଷ ପ୍ରୋଗ୍ରାମ ଅଛି, ନା ?

: ହଁ, ଅଛି । ଆପଣ ଆସିବେ ? ଗୋଟାଏ ସିଟ୍ ଆପଣଙ୍କ ପାଇଁ ରିଜର୍ଭ ରଖିବି ?

: ମୁଁ ଗୋଟାଏ ପ୍ରବେଶ ପତ୍ର ପାଇଛି । ଆଶା କରୁଛି ଯଥା ସମୟରେ ପହଞ୍ଚିବି । ଆପଣ ଥିବେ ତ ?

ମିଷ୍ଟର ସରାଓଗୀ ହୋ ହୋ ହୋଇ ହସିଉଠି କହିଲେ : ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟେ ମିଷ୍ଟର ରାୟ । ଜଣେ ହୋଟେଲ ମ୍ୟାନେଜରର ଜୀବନ ଯେ କ'ଣ, ଆପଣ ଦିନେ ସମୟ କରି ଆସିଲେ ମୋଠାରୁ ଶୁଣିବେ । ଆଜି ରାତିରେ ଆସନ୍ତୁ । ଆପଣଙ୍କୁ ପାଇଲେ ମୋର ସମୟଟା ଟିକିଏ ଭଲରେ ହୁଏତ କଟିଯିବ ।

ମିଷ୍ଟର ସରାଓଗୀ ଟେଲିଫୋନ୍‌ଟା ରଖିଦେଲେ ।

ମୁଁ ମଧ୍ୟ ରିସିଭରଟା ରଖିଦେଇ ଆଖି ବୁଜି ଟିକିଏ ବିଶ୍ରାମ କରିବାକୁ ଚେଷ୍ଟା କଲି । କିନ୍ତୁ ରହି ରହି ସୁମିତାର ଏକ ଅସହାୟ ମୁହଁ ମୋ ଆଖି ଆଗରେ ଭାସି ଉଠିଲା ।

ସୁମିତା ଚନ୍ଦନ ତେବେ କିଏ ?

କ'ଣ ତା'ର ପରିଚୟ ?

ସେ କୌଣସି ବୁନିଆଦି ଘରର ଝିଅ ନା ରୀନା, ନୀନା ପରି... ଟେଲିଫୋନ୍‌ଟା ବାଜି ଉଠିଲା ।

: ହ୍ୟାଲୋ ?

ଅପରପ୍ରାନ୍ତରୁ ରଣଜିତ ତାଲୁକଦାରଙ୍କ କଣ୍ଠସ୍ୱର ଶୁଣାଗଲା : କିଛି ଖବର ପାଇଲେ ମିଷ୍ଟର ରାୟ ?

: ନା, ନୀନା ବିଶେଷ କିଛି କହିପାରିଲା ନାହିଁ ।

: ତା'ହେଲେ କାଲି ମର୍ଣ୍ଣିଂ ଏଡ଼ିସନ୍‌ରେ କୌଣସି ଖବର ଦେଇ ହେବ ନାହିଁ ? ତାଲୁକଦାରଙ୍କ ସ୍ୱରରେ କିପରି ବ୍ୟର୍ଥତା ଫୁଟି ଉଠୁଥିଲା ।

ମୁଁ କହିଲି : ଆଶା କରୁଛି କାଲି 'ନୟାସମାଜ'ର ମର୍ଣ୍ଣିଂ ଏଡ଼ିସନର ପ୍ରଥମ ପୃଷ୍ଠାରେ ଗୋଟାଏ କିଛି ଚମକପ୍ରଦ ଖବର ଛାପି ହେବ ।

ମିଷ୍ଟର ତାଲୁକଦାର ଉଚ୍ଛ୍ୱସିତ ସ୍ୱରରେ କହିଲେ : ଧନ୍ୟବାଦ ମିଷ୍ଟର ରାୟ । ଆପଣ କ'ଣ ଏବେ ଅଫିସ୍‌କୁ ଆସୁଛନ୍ତି ?

: ନା, ମୋତେ ବର୍ତ୍ତମାନ ଆଉ ଜଣକ ସଂଧାନରେ ବାହାରିବାକୁ ହେବ । ମୁଁ ସେଠାରୁ ଫେରିଆସି ଅଫିସ୍‌କୁ ଯାଇପାରେ ।

ଦୁଇପ୍ରାନ୍ତରୁ ଆମେ ଦୁହେଁ ଟେଲିଫୋନ୍ ରଖି ଦେଇଥିଲୁ ।

କିନ୍ତୁ ଏହାପରେ ମୁଁ ଦୁର୍ଭାବନାରେ ପଡ଼ି ଯାଇଥିଲି ।

ମିଷ୍ଟର ତାଲୁକଦାରଙ୍କୁ ଏପରି ଏକ ନିର୍ଭର ପ୍ରତିଶ୍ରୁତି ଦେବା ମୋ ପକ୍ଷରେ ହୁଏତ ଠିକ୍ ହେଲା ନାହିଁ । 'ନୟାସମାଜ'ର ମର୍ଣ୍ଣିଂ ଏଡ଼ିସନ ପାଇଁ ମୁଁ କି ଚମକପ୍ରଦ ଖବର ଦେଇପାରିବି ?

ଖୁଣ୍ ? ଡକେଇତି ? ଲୁଣ୍ଠନ ?

ଆଚ୍ଛା ଦେଖାଯିବ ।

ମୁଁ ଆଉ ଆରାମରେ ଶୋଇପାରିଲି ନାହିଁ । ମୋର ସାରା ଦେହଟା କିପରି ଅସ୍ୱସ୍ତିରେ ଭରିଗଲା । ଉଠି ବସିଲି ।

ଏଥର ବାହାରିବାକୁ ହେବ ।

ରହସ୍ୟର ସନ୍ଧାନ କରିବାକୁ ହେବ ।

କିନ୍ତୁ କାହା ରହସ୍ୟ ? କେଉଁ ରହସ୍ୟ ?

ସୁମିତା ଚନ୍ଦନ ।

ଆଉଥରେ ସୁମିତା ଚନ୍ଦନର ମୁହଁ ମୋ ଆଖି ଆଗରେ ଭାସି ଉଠିଲା ।

ଗୋଟିଏ ନୀଳ ବ୍ଲାଉଜ୍ ଆଉ ଧଳା ବ୍ରେସିଆର୍ ।

ସେ ଯୋଡ଼ିକ ଯଦି ସୁମିତା ଚନ୍ଦନର ହୋଇଥାଏ, ତା'ହେଲେ ଧରିନେବାକୁ ହେବ ସୁମିତା ଚନ୍ଦନ କୌଣସି ବୁନିଆଦି ଘରର କନ୍ୟା ନୁହେଁ । କିନ୍ତୁ ସେ କାହିଁକି ଯୋଡ଼ିକଯାକ ଖୋଲି ମୋ ଶୋଇବା ଘର ଚଟାଣ ଉପରେ ଫିଙ୍ଗି ଚାଲିଯାଇଥିଲା ?

ମୋତେ ହସ ମାଡ଼ିଲା ।

ସୁମିତା ଚନ୍ଦନକୁ କେନ୍ଦ୍ର କରି ମୋର ଏପରି ଅଶ୍ଳୀଳ ଚିନ୍ତା କରିବା ଉଚିତ ନୁହେଁ ।

ମୁଁ ଉଠି ଠିଆ ହେଲି ।

ଲୁଗାପଟା ପିନ୍ଧି ଓହ୍ଲେଇ ଗଲି ତଳକୁ ।

ଡ୍ରାଇଭର ତଳେ ଗାଡ଼ି ଥୋଇ ମୋତେ ଅପେକ୍ଷା କରିଥିଲା ।

ମୁଁ ଗାଡ଼ିର ଦରଜା ଖୋଲି ଭିତରେ ଉଠି ବସିଲି । ମୋର ମନେହେଲା ସର୍ବପ୍ରଥମେ ସୁମିତା ଚନ୍ଦନ ସମ୍ବନ୍ଧରେ ମୋର ଟିକିଏ ଖବର ନେବା ଉଚିତ । ସେ କୋର୍ଟକୁ ନ ଯାଇ ଗଲା ତେବେ କୁଆଡ଼େ ? ସେ ଆଉ କୌଣସି ବିପଦରେ ପଡ଼ିଲା ନାହିଁ ତ ?

ଡ୍ରାଇଭର ଗାଡ଼ିରେ ଷ୍ଟାର୍ଟ ଦେଇ ମୋତେ ପଚାରିଲା : କୁଆଡ଼େ ଯିବା ସାର୍ ?

ମୁଁ ହଠାତ୍ କହିଦେଲି, ରିଜେଣ୍ଟ୍ ହୋଟେଲ ।

ଗାଡ଼ି ଯାଇ ରିଜେଣ୍ଟ୍ ହୋଟେଲ୍ ସାମ୍ନାରେ ଠିଆ ହୋଇଗଲା । କିନ୍ତୁ ରିଜେଣ୍ଟ୍ ହୋଟେଲକୁ ଯାଇ ଲାଭ ?

ହୁଏତ ସୁମିତା ଫେରିଥିବ । ନହେଲେ ମିଷ୍ଟର ସରାଓଗୀଙ୍କଠାରୁ ତା'ର ଘର ଠିକଣା ନେଇ ତାକୁ ଖୋଜି ବାହାର କରିବାକୁ ହେବ ।

ମୁଁ ଟିକିଏ ଅନ୍ୟମନସ୍କ ହୋଇ ପଡ଼ିଥିଲି ।

ଡ୍ରାଇଭର ଗାଡ଼ିର ଦରଜା ଖୋଲିଦେଇ କହିଲା : ସାର୍, ରିଜେଣ୍ଟ୍ ହୋଟେଲ ହୋଇଯାଇଛି ।

ମୁଁ ଗାଡ଼ିରୁ ଓହ୍ଲାଇ ସିଧା ସଳଖ ରିଜେଣ୍ଟ୍ ହୋଟେଲ ଉପରକୁ ଉଠିଗଲି । ଦୋତାଲାର ଶିଡ଼ି ମୁଣ୍ଡରେ ମିଷ୍ଟର ସରାଓଗୀଙ୍କର ଅଫିସ୍ । ଏଆର କଣ୍ଡିସନ୍‌ଡ଼ । ଦରଜା ଠେଲି ଭିତରେ ଦେଖିଲି, ଜଣେ ଆଂଲୋ ଭଦ୍ର ମହିଳା ବସି ଢୋଳଉଛି ।

ମୋତେ ହଠାତ୍ ଦେଖି ସେ ସକ୍ରିୟ ହୋଇ କହିଲେ : ଇଏସ୍ ସାର୍ ।

ମୁଁ କହିଲି : ମିଷ୍ଟର ସରାଓଗୀ ନାହାନ୍ତି ?

ସେ କହିଲା : ନା, ସେ ଚାରିଟା ପୂର୍ବରୁ ଫେରିବେ ନାହିଁ । ଆପଣଙ୍କର କ'ଣ ରୁମ୍ ଦରକାର ?

ମୁଁ କହିଲି : ନା, ମି. ସରାଓଗୀ ମୋର ବନ୍ଧୁ । ତାଙ୍କ ସହିତ କେତେକ ବ୍ୟକ୍ତିଗତ କଥା ଥିଲା ।

ସେ କହିଲା : ଆପଣ ମି. ସରାଓଗୀଙ୍କର ବନ୍ଧୁ ଜାଣି ଖୁସି ହେଲି । ଆପଣ ବସନ୍ତୁ । ସେ ତାଙ୍କ ରୁମ୍‌ରେ ବର୍ତ୍ତମାନ ବିଶ୍ରାମ କରୁଛନ୍ତି । କହିବେ ଯଦି ଫୋନ୍‌ରେ ତାଙ୍କ ସହିତ ଯୋଗାଯୋଗ କରାଇଦେବି ।

ମୁଁ ହାତଘଡ଼ିକୁ ଚାହିଁଲି । ଅଢ଼େଇଟା ବାଜିଛି ।

ମିଷ୍ଟର ସରାଓଗୀ ହୁଏତ ବର୍ତ୍ତମାନ ଆଖି ବୁଜି ଶୋଇଥିବେ । ଏପରି ଅସମୟରେ ତାଙ୍କୁ ବିରକ୍ତ କରିବା ସମୀଚୀନ ହେବ ନାହିଁ ।

ସେ କହିଲା : ଯଦି କିଛି ମେସେଜ୍ ଥାଏ ଏଠାରେ ଦେଇ ଯାଇପାରନ୍ତି । ସେ ଆସିଲେ ସଂଗେ ସଂଗେ...

ଫୋନ୍‌ଟା ବାଜି ଉଠିଲା ।

ରିସିଭରଟା ଉଠାଇ କହିଲା : ହ୍ୟାଲୋ...

ଅପରପ୍ରାନ୍ତରୁ କିଏ କ'ଣ କହିଲା କେଜାଣି, ସେ ହସି ହସି କହିଲା : ଇଏସ୍ ଇଏସ୍, ମିସ୍ ରୋଜି ସ୍ପିକିଂ । ତା'ପରେ ମୋ ଆଡ଼କୁ ଚାହିଁ ସ୍ମିତ ହସି କହିଲା : ଓ.କେ. । ଜଷ୍ଟ ଆଟ୍ ନାଇନ୍ ।

ରିସିଭରଟା ରଖିଦେଇ ମୋତେ କହିଲା : ଆପଣ ଠିଆହୋଇ ରହିଲେ କାହିଁକି ? ବସନ୍ତୁ ।

ମୁଁ କହିଲି : ଧନ୍ୟବାଦ । ମୁଁ ପରେ ଆସିବି । ମିଷ୍ଟର ସରାଓଗୀଙ୍କୁ କହିଦେବେ ମିଷ୍ଟର ରାୟ ଆସିଥିଲେ ।

: ଓଃ ଆପଣ ମିଷ୍ଟର ରାୟ, ଜର୍ଣ୍ଣାଲିଷ୍ଟ ।

: ଆରେ, ଆପଣ ମୋତେ ଚିହ୍ନନ୍ତି ନା କ'ଣ ? ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

: ନା, ମିଷ୍ଟର ସରାଓଗୀ ମୋତେ ଆପଣଙ୍କ କଥା କହୁଥିଲେ । ଆପଣ କୁଆଡ଼େ କାଲି ସୁମିତା ଚନ୍ଦନଙ୍କ ଅଭ୍ୟର୍ଥନା ସଭାରେ ଖୁବ୍ ଚମତ୍କାର ଭାଷଣ ଦେଇଥିଲେ । ଆଜି ଏଠାରେ ବସି ବସି ସେଇ କଥା ଆଲୋଚନା ହେଉଥିଲା । ଖାଲି ସେତିକି ନୁହେଁ, ଆପଣ ଜଣେ ଏ ଗ୍ରେଡ୍‌ର ଟେବଲ୍-ଟେନିସ୍ ଖେଳୁଆଡ଼ । ମୁଁ ଛୁଟିରେ ଥିଲି । ଆଜି ଜଏନ୍ କରିଛି । ତେଣୁ ଆପଣଙ୍କର କୀର୍ତ୍ତିକଳାପ କିଛି ଦେଖିପାରି ନାହିଁ । ଆଜି ମିଷ୍ଟର ସରାଓଗୀଙ୍କ ମୁହଁରୁ ସବୁ ଶୁଣିଲି ।

: ଶୁଣି ଆପଣଙ୍କର କ'ଣ ମନେହେଲା ?

: ଆପଣଙ୍କୁ ଦେଖିବାକୁ ଇଚ୍ଛା ହେଉଥିଲା ।

: ବର୍ତ୍ତମାନ ଦେଖିବା ପରେ ?

ମିସ୍ ରୋଜି ହସି ହସି ଗଡ଼ିଗଲା । କହିଲା : ବର୍ତ୍ତମାନ ଆପଣଙ୍କୁ ଦେଖିବା ପରେ ମୋର ମନେହେଉଛି, ମୁଁ ଯାହା ଶୁଣିଥିଲି ତାହା ସତ୍ୟ ନୁହେଁ ।

ମୁଁ ରୋଜିର ପରିହାସ ବୁଝିପାରିଲି । କହିଲି : ଆପଣ ଠିକ୍ କହିଛନ୍ତି । ମୁଁ ଜଣେ ସାଧାରଣ ଜର୍ଣ୍ଣାଲିଷ୍ଟ ହୋଇପାରେ, କିନ୍ତୁ ମୋଟେ ଏ' ଗ୍ରେଡ୍‌ର ଟେବଲ୍ ଟେନିସ୍ ଖେଳୁଆଡ଼ ନୁହେଁ । ଆପଣ ମୋତେ ଠିକ୍ ଚିହ୍ନିଛନ୍ତି । ସେଥିପାଇଁ ଆପଣ ମୋର ଧନ୍ୟବାଦ ଗ୍ରହଣ କରନ୍ତୁ ।

ଏହାପରେ ମୁଁ ରୁମ୍‌ରୁ ବାହାରି ଆସୁଥିଲି ।

ରୋଜି କିନ୍ତୁ ନିଜେ ଚେଆରରୁ ଉଠିପଡ଼ି କହିଲା : କ୍ଷମା କରିବେ ମିଷ୍ଟର ରାୟ । ଆପଣ ଏପରି ଚାଲିଗଲେ ମୋର ବସ୍ ଶୁଣିଲେ ଅସନ୍ତୁଷ୍ଟ ହେବେ । ଆପଣ ବସନ୍ତୁ । ଅନ୍ତତଃ ମୋ ତରଫରୁ କଫି କପେ ପିଇବା ପାଇଁ ମୁଁ ଅନୁରୋଧ କରୁଚି ।

ମୁଁ ପ୍ରତିବାଦ କଲି ନାହିଁ । ରୋଜି ସହିତ ଅନେକ କଥା ହେବା ପାଇଁ ମୋ ମନରେ କିପରି ଏକ ସୁପ୍ତ ପ୍ରବୃତ୍ତି ଜାଗି ଉଠିଥିଲା । ରୋଜି ସୁନ୍ଦରୀ, ରୋଜି ଭଦ୍ର, ରୋଜି ଚପଳା । ତା'ଛଡ଼ା ରୋଜି ପାଖରୁ ସୁମିତା ସମ୍ବନ୍ଧରେ ଅନେକ କଥା ଜାଣିବାର ଯଥେଷ୍ଟ ସମ୍ଭାବନା ଥିଲା । ମୁଁ ରୋଜିର ଅନୁରୋଧ ଏଡ଼େଇ ପାରିଲି ନାହିଁ । ପୁଣି ଚେଆର ଉପରେ ରୋଜି ସାମ୍‌ନାରେ ବସି ପଡ଼ିଲି ।

ରୋଜି ମୋ ମୁହଁକୁ କିଛି ସମୟ ଅନାଇଲା । ହୁଏତ ଭାବିଥିଲା ମୁଁ ତା' ସହିତ ପ୍ରଥମେ କଥା ଆରମ୍ଭ କରିବି । କିନ୍ତୁ ମୋଠାରୁ ସେପରି କିଛି ସୂଚନା ନ ପାଇ ସେ କହିଲା : ମିସ୍ ଚନ୍ଦନ ଆପଣଙ୍କର ବନ୍ଧୁ, ନା ?

: ହଁ, ମୁଁ ସମ୍ମତି ଜଣାଇଲି ।

: କାହିଁ ଆଗରୁ ତ କେବେ ମୁଁ ଆପଣଙ୍କୁ ତାଙ୍କ ସହିତ ଦେଖି ନଥିଲି ?

: ମୁଁ ବିଶେଷ ଆସେ ନାହିଁ । ତା'ଛଡ଼ା ସୁମିତା ଚନ୍ଦନ ସହିତ ମୋର ବେଶି ଦିନର ପରିଚୟ ନୁହେଁ । ଆପଣ କେତେଦିନ ହେବ ସୁମିତା ଚନ୍ଦନ ସହିତ ପରିଚିତ ? ମୁଁ ଓଲଟି ପ୍ରଶ୍ନ କଲି ।

ରୋଜି ଅଳ୍ପ ଟିକିଏ ହସି କହିଲା : ଅନେକ ଦିନରୁ । ଯେତେ ଦିନରୁ ସେ ଏଠାରେ ରୁମ୍ ରିଜର୍ଭ କଲେଣି । କିନ୍ତୁ ସେ ମୋର ଖାଲି ପରିଚିତ, ବନ୍ଧୁ ନୁହନ୍ତି ।

: ହୁଁ । ଆପଣଙ୍କ ସହିତ କଥାବାର୍ତ୍ତା କରନ୍ତି ନାହିଁ ?

: କ୍ୱଚିତ୍ । ଦରକାର ପଡ଼ିଲେ ।

: ସୁମିତା ଚନ୍ଦନଙ୍କର ପରିଚୟ ଆପଣ କିଛି ଜାଣିଛନ୍ତି ?

ରୋଜି ଟେଲିଫୋନ୍ ବୋର୍ଡ଼ରେ ଦୁଇଟା ଚାବି ତଳ ଉପର କରୁ କରୁ କହିଲା : ଶୁଣିଛି, ମିସ୍ ଚନ୍ଦନ ଜଣେ ଖୁବ୍ ଧନୀ ପିତାର କନ୍ୟା । ଏହାଛଡ଼ା ଆଉ କିଛି ମୁଁ ଜାଣି ନାହିଁ । ଜାଣିବାର ଆବଶ୍ୟକ ମଧ୍ୟ ହୋଇ ନାହିଁ ।

ଏହାପରେ ରୋଜିକୁ ମୁଁ କ'ଣ ପଚାରିବି ଚିନ୍ତା କରୁଥିଲି । ରୋଜି କିନ୍ତୁ ମୋତେ ପଚାରି ବସିଲା : ଆପଣ ନିଶ୍ଚୟ ଚନ୍ଦନଙ୍କ ଘରକୁ ଯାଇଥିବେ ମିଷ୍ଟର ରାୟ ?

: ମୁଁ ? ହଁ, ମାନେ ସୁମିତା ମୋତେ ଅନେକଥର ଡାକିଛି, ମୁଁ କିନ୍ତୁ କେବେ ଯାଇ ନାହିଁ ।

ମୁଁ ଲକ୍ଷ୍ୟ କଲି ରୋଜି ମୋର ଉତ୍ତର ଶୁଣି ଟିକିଏ ଉଲ୍ଲସିତ ହୋଇ ଉଠିଲା । କହିଲା : ଏ ସହର ବଡ଼ ବିଚିତ୍ର ମିଷ୍ଟର ରାୟ । ଆହୁରି ବିଚିତ୍ର ଏହି ସହରର ଅଧିବାସୀବୃନ୍ଦ ।

: କାହିଁକି, ଏହି ସହର ସମ୍ବନ୍ଧରେ ଆପଣଙ୍କର ଏପରି ଧାରଣ କାହିଁକି ହେଲା ମିସ୍ ରୋଜି ।

ରୋଜି ହସିଲା । କହିଲା : ନା, ମୋ ଧାରଣା ଭୁଲ୍ ହୋଇପାରେ । କିନ୍ତୁ ଏଇ ହୋଟେଲର ରିସେପ୍ସନିଷ୍ଟ ହେବା ଦିନଠାରୁ ଏପରି ସବୁ ବୈଚିତ୍ର୍ୟପୂର୍ଣ୍ଣ ଘଟଣାମାନ ମୋ ଆଖି ଆଗରେ ଘଟି ଯାଉଛି, ଯାହାକୁ ନିଜେ ଦେଖିବି ନିଜ ଆଖିକୁ ବିଶ୍ୱାସ କରିହେଉ ନାହିଁ । ସୁନା ଖାଣ୍ଟିକି ନୁହେଁ ଧରିବାକୁ ଯେପରି କଷଟି ପଥର ଥାଏ, ସେହିପରି ଯଦି ମଣିଷକୁ ପରୀକ୍ଷା କରିବା ପାଇଁ କିଛି ଯନ୍ତ୍ର ଥାଆନ୍ତା, ତା'ହେଲେ ମୁଁ ଆପଣଙ୍କୁ ଦେଖେଇ ଦିଅନ୍ତି ଏ ହୋଟେଲକୁ ଯେତେ ଲୋକ ଆସନ୍ତି, ଯେଉଁ ପରିଚୟ ସେମାନଙ୍କର ଏଠାରେ ଲିପିବଦ୍ଧ ହୁଏ, ସେଥିରୁ ଅନେଶୋତ ଜଣ ମେକି ।

ମୁଁ କହିଲି : ଯଦି ସେଇଆ ହୁଏ, ସେଥିରେ ଆପଣଙ୍କର ବା ମୋର କ୍ଷତି ବୃଦ୍ଧି କ'ଣ ଅଛି ?

ଗୋଟିଏ ବୟ କଫିପଟ୍ ଧରି ଆସି ସେତିକିବେଳେ ପହଞ୍ଚିଲା । ରୋଜି ତା' ହାତରୁ ପଟ୍‌ଟି ଓହ୍ଲାଇ ନେଇ ମୋତେ ପଚାରିଲା : ଚିନି କେତେଚାମଚ ଦେବି ମିଷ୍ଟର ରାୟ ?

: ଦିଅନ୍ତୁ । ଦି' ତିନି ଚାମଚ୍ ଯାହା ପାରୁଛନ୍ତି ଦିଅନ୍ତୁ । ଚିନି ପାଇଁ ମୋର କିଛି ରେଷ୍ଟ୍ରିକ୍ସନ ନାହିଁ ।

ରୋଜି କପ୍‌ରେ କଫି ଗୋଳେଇ ଦେଲା ।

ଢୋକ ଢୋକ କରି ମୁଁ ପିଉଥିଲି, ଆଉ ଚାହିଁଥିଲି ରୋଜିର ଚଞ୍ଚଳ ଆଙ୍ଗୁଳି ଗୁଡ଼ାକୁ । ଟେଲିଫୋନ୍ ବୋର୍ଡ଼ର ଚାବିଗୁଡ଼ାକ ରୋଜି ହାତରେ ତଳ ଉପର ହେଉଥିଲେ ।

କିଛିସମୟର ନୀରବତା ପରେ ରୋଜି କହିଲା : ଆପଣଙ୍କ ସହିତ ପରିଚିତ ହୋଇ ମୁଁ ଖୁବ୍ ଆନନ୍ଦିତ ହେଲି ।

: ଉଁ । ମୁଁ ଯେପରି ଭାବନା ରାଜ୍ୟରୁ ଫେରି ଆସିଲି । ଟିକିଏ ହସିବାକୁ ଚେଷ୍ଟା କରି କହିଲି, ମୋ ସହିତ ପରିଚିତ ହୋଇ ଆପଣ ଯେ ଆନନ୍ଦିତ ହୋଇଛନ୍ତି, ସେଥିପାଇଁ ମୁଁ ଧନ୍ୟବାଦ ଜଣାଉଛି । କାରଣ ମୋ ସହିତ ପରିଚିତ ହୋଇ ଖୁବ୍ କମ୍ ଲୋକ ଆନନ୍ଦିତ ହୋଇଥାଆନ୍ତି ।

: କାରଣ ? ରୋଜି ଏଥର ପ୍ରକୃତରେ ବିସ୍ମିତ ହୋଇ ମୋତେ ପ୍ରଶ୍ନ କରିଥିଲା ।

ମୁଁ କହିଲି : କାରଣଟା ଆଉ ଦିନେ କହିବି । ଆପଣଙ୍କ ସହିତ ପରିଚୟ ହେଲାଣି ଯେତେବେଳେ ବେଳ ଅବେଳରେ ବହୁବାର ଦେଖା ହେବ । କିନ୍ତୁ ବର୍ତ୍ତମାନ ମୁଁ ଗୋଟାଏ ସମସ୍ୟାରେ ପଡ଼ିଛି । ସମସ୍ୟାଟା ହେଉଛି ସୁମିତା ସହିତ ମୋର ଖୁବ୍ ଦରକାର । ଏଇ ମୁହୂର୍ତ୍ତରେ ତା' ସହିତ ମୋର କେଉଁଠି ଦେଖା ହେବ ଆପଣ କହିପାରିବେ ?

ରୋଜି ତା'ର ବାଁ ହାତର କାଣି ଆଙ୍ଗୁଳିଟାକୁ ମୁହଁରେ କାମୁଡ଼ି କିଛି ସମୟ ଚିନ୍ତା କଲା । କହିଲା : ରୁହନ୍ତୁ ମୁଁ ଚେଷ୍ଟା କରି ଦେଖୁଛି ।

ତା'ପରେ ଟେଲିଫୋନ୍ ବୋର୍ଡ଼ରେ ତା' ଆଙ୍ଗୁଳିଗୁଡ଼ାକ ଚଞ୍ଚଳ ହୋଇ ଉଠିଲେ । ନମ୍ବର ପରେ ନମ୍ବର କେତୋଟି ଜାଗାକୁ ସଂଯୋଗ କରି ସୁମିତାର ସେ ଖବର ନେଲା । ଚାରି ପାଞ୍ଚୋଟି ଜାଗାରୁ ଖବର ନେଇସାରି, କିପରି ବିରସ ସ୍ୱରରେ ରୋଜି କହିଲା : ମୋତେ କ୍ଷମା କରନ୍ତୁ ମିଷ୍ଟର ରାୟ । ସମ୍ଭାବ୍ୟ ସମସ୍ତ ସ୍ଥାନରେ ମୁଁ ଖୋଜି ସାରିଲିଣି । ସୁମିତା କେଉଁଠି ନାହିଁ ।

ମୁଁ କହିଲି : ସୁମିତାର ଜୁନିଅର ବନ୍ଧୁ ଶଙ୍କରକୁ ଆପଣ ଚିହ୍ନନ୍ତି ମିସ୍ ରୋଜି ?

ରୋଜି ହସିଲା । କହିଲା : ଶଙ୍କର କିନ୍ତୁ ଏକ ବୁନିଆଦ ଘରର ପିଲା । ସୁମିତା ତା' ମୁଣ୍ଡଟାକୁ ବିଗାଡ଼ି ଦେଇ ବସିଛି । ଶଙ୍କରଠାରୁ ସୁମିତା ଯେ ଚାରି ପାଞ୍ଚବର୍ଷ ବଡ଼ ହେବ ଏହା ନିଃସନ୍ଦେହ । କିନ୍ତୁ ବିଚରା...

ରୋଜି ଚୁପ୍ ହୋଇଗଲା ।

ମୁଁ ବି ଆଉ କିଛି ଉତ୍ସାହ ପ୍ରକାଶ କଲି ନାହିଁ ।

ଆଉ କେତୋଟି ମୁହୂର୍ତ୍ତର ନୀରବତା ପରେ କହିଲି : ଆଚ୍ଛା, ଶଙ୍କର ଏବେ ଫୋନ୍‌ରେ କେଉଁଠି ମିଳିପାରିବ ?

ରୋଜି ମୋ କଥାର କୌଣସି ଉତ୍ତର ନ ଦେଇ ସଂଗେ ସଂଗେ ଡାଏଲ୍ କରିବାକୁ ଲାଗିଲା ।

ଅପର ପ୍ରାନ୍ତରୁ ଉତ୍ତର ପାଇ ରୋଜି ଉଚ୍ଛ୍ୱସିତ ହୋଇ କହିଲା : ଶଙ୍କରକୁ ପାଇଛି । ତା' ସହିତ କଥାବାର୍ତ୍ତା କରନ୍ତୁ ।

ମୁଁ ରିସିଭରଟା କାନରେ ଦେଇ କହିଲି : ମୁଁ ମିଷ୍ଟର ରାୟ କହୁଛି । ସୁମିତା ଚନ୍ଦନ ସହିତ ମୋର ଖୁବ୍ ଦରକାର । ବର୍ତ୍ତମାନ ତାଙ୍କୁ କେଉଁଠି ପାଇବି ?

ଅପର ପ୍ରାନ୍ତରୁ ଶଙ୍କର କହିଲା : ମୁଁ ବି ତାଙ୍କୁ ଖୋଜୁଛି ମିଷ୍ଟର ରାୟ । ସକାଳ ନଅଟା ଠାରୁ ତାଙ୍କର କିଛି ଖବର ପାଉ ନାହିଁ । ଆଜି ଦଶଟା ବେଳେ କୋର୍ଟକୁ ଯାଇ ଅଶୋକ ପାରେଖଙ୍କ ପାଇଁ ଜାମିନର ବ୍ୟବସ୍ଥା କରିବାର ଥିଲା । କିନ୍ତୁ...

: ତା'ହେଲେ ? କୌଣସି ଦୁର୍ଘଟଣା ଘଟିଲା ନାହିଁ ତ ?

ଅପରପ୍ରାନ୍ତରୁ ଶଙ୍କର ନୀରବ ରହିଥିଲା ।

ମୁଁ ପୁଣି କହିଲି : ଆପଣ ତାଙ୍କ ଘରେ ଖୋଜିଥିଲେ ?

: ଖାଲି ଘରେ କାହିଁକି ମିଷ୍ଟର ରାୟ ! ସମ୍ଭାବ୍ୟ ସମସ୍ତ ସ୍ଥାନରେ ମୁଁ ତାଙ୍କୁ ଖୋଜିଛି । କିନ୍ତୁ କେହି ତାଙ୍କର ଖବର ଦେଇପାରି ନାହାନ୍ତି । ମୁଁ ବି ଖୁବ୍ ଚିନ୍ତିତ । ଆପଣଙ୍କ ଘରକୁ ମଧ୍ୟ ଦୁଇଥର ଫୋନ୍ କରିଥିଲି ।

: ଆପଣ ମୋତେ ତାଙ୍କର ଘର ଠିକଣାଟା କହିବେ ?

ଶଙ୍କର କହିଲା : ଠିକଣା କହିବାରେ କିଛି ଅସୁବିଧା ନାହିଁ । କିନ୍ତୁ ସୁମିତା ଦେବୀ ବାରଣ କରିଛନ୍ତି । ତାଙ୍କ ଘର ଖୁବ୍ ଆରୋଷ୍ଟକେଟ୍ ଘର ତ ! ସେମାନେ ଖୁବ୍ ବଡ଼ଲୋକ । ସୁମିତାର ବାବା ଜଣେ ବିରାଟ ବ୍ୟବସାୟୀ । ତେଣୁ ତାଙ୍କ ଘରେ କାଇଦା କଟକଣା ଖୁବ୍ କଡ଼ା । ସେଇଥିପାଇଁ ଯେ କେହି ସୁମିତା ଦେବୀଙ୍କୁ ଯାଇ ଘରେ ଖୋଜିବେ, ଏକଥା ସୁମିତା ଦେବୀଙ୍କ ବାବା ପସନ୍ଦ କରନ୍ତି ନାହିଁ । ତେଣୁ ତାଙ୍କ ଘର ଠିକଣା କାହାରିକୁ ଦେବାକୁ ମୋତେ ସେ ମନା କରିଛନ୍ତି । ମୁଁ ଅତ୍ୟନ୍ତ ଦୁଃଖିତ ମିଷ୍ଟର ରାୟ । ଆପଣ ଯେପରି ମୋତେ ଅନ୍ୟ କିଛି ନ ଭାବନ୍ତି ।

ମୁଁ ଶଙ୍କରର କଥା ଶୁଣି ଅବାକ୍ ହୋଇଯାଇଥିଲି ।

ଜଣେ ଭଦ୍ରମହିଳାଙ୍କ ଘରକୁ କେହି ଯିବାରେ ଯେ ଏପରି ବାଧା ବନ୍ଧନ ଥାଏ ଏଇ ପ୍ରଥମେ ମୁଁ ଶୁଣିଲି ।

ମୋର ନୀରବତାରେ ଶଙ୍କର ବୋଧହୁଏ ବ୍ୟସ୍ତ ହୋଇ ଉଠିଥିଲା । କହିଲା : ସୁମିତା ଦେବୀଙ୍କ ବାପା ଖୁବ୍ ରାଗି ଲୋକ । ସେ ଯଦି କାହାରି ଉପସ୍ଥିତିକୁ ଅବାନ୍ତର ବୋଲି ମନେକରିଛନ୍ତି, ତେବେ ତା' ପ୍ରତି ସେ ଯଥେଷ୍ଟ ଦୁର୍ବ୍ୟବହାର କରିପାରନ୍ତି । ଏପରିକି ଥରେ ସେ ସୁମିତା ଦେବୀଙ୍କୁ ଖୋଜିବାକୁ ଯାଇଥିବା ଜଣେ ଲୋକକୁ ବନ୍ଧୁକ ଉଠାଇଥିଲେ । ସୁମିତା ଦେବୀ ଠିକ୍ ସମୟରେ ଘଟଣା ସ୍ଥଳରେ ପହଞ୍ଚିଯାଇ ନ ଥିଲେ ଗୋଟାଏ ଦୁର୍ଘଟଣା ଘଟିଯାଇଥାଆନ୍ତା ।

ମୁଁ କହିଲି : ଆଚ୍ଛା, ଆପଣଙ୍କୁ ଧନ୍ୟବାଦ । ସୁମିତା ଦେବୀଙ୍କ ଖବର ପାଇଲେ ମୋତେ କିନ୍ତୁ ଶୀଘ୍ର ଜଣାଇବେ ।

ମୁଁ ରିସିଭରଟା ରଖିଦେଇ ଉଠି ଠିଆ ହେଲି ।

ରୋଜି କହିଲା : ଆପଣ କିନ୍ତୁ ପୁଣି ଆସିବେ ।

x x x x x

ପୁଣି ମୋତେ ଆସିବାକୁ ହେଲା ରିଜେଣ୍ଟ୍ ହୋଟେଲକୁ । ରାତି ଏଗାରଟାରେ ।

ସେତେବେଳଯାଏ ମୁଁ ସୁମିତାର ଆଉ କିଛି ଖବର ପାଇ ନଥିଲି । ଚେଷ୍ଟାକରି ବି ଆଉ ଯୋଗାଯୋଗ କରିପାରି ନ ଥିଲି ଶଙ୍କର ସହିତ । ରଣଜିତ୍ ତାଲୁକଦାରଙ୍କୁ ପ୍ରତିଶ୍ରୁତି ଲେଖା ମଧ୍ୟ କିଛି ଲେଖିପାରି ନଥିଲି । ଅତି ଜୋର୍ ରାତି ଗୋଟାଏ ମଧ୍ୟରେ ପ୍ରେସ୍‌କୁ କୌଣସି ସଂବାଦ ନ ଦେଲେ ପରଦିନ ମର୍ଣ୍ଣିଂ ଏଡ଼ିସନ୍‌ରେ ସେ ସଂବାଦ ଛପା ହେବା ସମ୍ଭବପର ନୁହେଁ । କିନ୍ତୁ ସମ୍ବାଦ କାହିଁ ? ଦିନଯାକ ସମସ୍ତ ପ୍ରକାର ଉଦ୍ୟମ କରି ମଧ୍ୟ କୌଣସି ସଂବାଦ ସଂଗ୍ରହ କରିପାରିଲି ନାହିଁ ।

ରିଜେଣ୍ଟ୍ ହୋଟେଲରେ ପହଞ୍ଚିଲି । ଘଡ଼ିରେ ଏଗାରଟା ବାଜୁଥିଲା । ମିଷ୍ଟର ସରାଓଗୀ ଅଫିସ୍‌ରେ ଥିଲେ । ମୋତେ ଦେଖିବା ମାତ୍ରକେ କହି ଉଠିଲେ : ଆସନ୍ତୁ ମିଷ୍ଟର ରାୟ ! ଆପଣଙ୍କୁ ମୁଁ ଅପେକ୍ଷା କରୁଥିଲି ।

ମୁଁ ମିଷ୍ଟର ସରାଓଗୀଙ୍କ ସାମ୍‌ନାରେ ବସିଲି ।

ସେ ମୋ ମୁହଁକୁ କିଛି ସମୟ ଅନାଇ ରହି କ'ଣ କରିବେ ନ କରିବେ ହୋଇ ଚିନ୍ତା କରୁଥିଲେ ।

ମୁଁ କହିଲି : ଏଗାରଟା ବାଜିଲାଣି । ନାଚ କେତେବେଳେ ଆରମ୍ଭ ହେବ ?

ମିଷ୍ଟର ସରାଓଗୀ କହିଲେ : ଅସଲ ନାଚ ବର୍ତ୍ତମାନ ପ୍ରାୟ ଏକଘଣ୍ଟା ଡେରି ଅଛି । ଆପଣ ବସନ୍ତୁ । ମୁଁ ଟିକିଏ ଖାତାପତ୍ର କାମ ଶେଷ କରିଦିଏ, ଏକା ସାଙ୍ଗରେ ଯିବା ।

ମୁଁ ବସିଲି । ମିଷ୍ଟର ସରାଓଗୀ ଖାତାପତ୍ର ଯାଞ୍ଚ କରିବାରେ ମନ ଦେଲେ ।

ଟିକିଏ ପରେ କହିଲେ : ରୋଜିଠାରୁ ଶୁଣିଲି, ଆପଣ ଆଉଥରେ ଆସିଥିଲେ । ଖବର କ'ଣ ?

: ଖବର ମାନେ ମୁଁ ସୁମିତା ଚନ୍ଦନକୁ ଖୋଜୁଛି । ତା'ର କିଛି ଖବର ପାଉ ନାହିଁ । ତା' ସହିତ ଆପଣଙ୍କର ଆଉ ଦେଖା ହୋଇଥିଲା ?

: ନା, ସେ ଆସି ନାହିଁ । ମିଷ୍ଟର ସରାଓଗୀ ହିସାବ ଖାତା ଉପରେ ଆଖି ରଖି ମୋ ସହିତ କଥାବାର୍ତ୍ତା କରୁଥିଲେ ।

ଯଦିଓ ମିଷ୍ଟର ସରାଓଗୀଙ୍କଠାରୁ ସୁମିତା ଚନ୍ଦନ ସମ୍ବନ୍ଧରେ ଅନେକ କଥା ଜାଣିବା ପାଇଁ ମୋ ମନରେ ଆଗ୍ରହ ଜମି ଉଠିଥିଲା, କିନ୍ତୁ ସେ ବ୍ୟସ୍ତ ଥିବାରୁ ତାଙ୍କୁ ମୁଁ କିଛି ପଚାରି ପାରୁ ନଥିଲି ।

ମୁଁ ନୀରବରେ ଟେବୁଲ୍ ଉପରୁ ସେଦିନର ଖବରକାଗଜ ଖଣ୍ଡିକ ଟାଣିଆଣି ପଢ଼ିବାକୁ ଯାଉଚି, ମି: ସରାଓଗୀ ପୁଣି କହିଲେ : ସୁମିତା ଚନ୍ଦନ ପାଇଁ ଦୁଇ ଚାରୋଟି ଫୋନ୍ ଇତି ପୂର୍ବରୁ ଆସିଥିଲା । ସେମାନେ ମଧ୍ୟ ସୁମିତାକୁ ଖୋଜୁଚନ୍ତି । ଘଟଣା କ'ଣ କୁହନ୍ତୁ ତ ମିଷ୍ଟର ରାୟ !

ମିଷ୍ଟର ସରାଓଗୀ ହିସାବ ଖାତାଟି ବନ୍ଦ କରି ସଜାଡ଼ି ହୋଇ ବସି ମୋତେ ପଚାରିଲେ ।

ମୁଁ ଟିକିଏ ହସିଲି । କହିଲି : ସୁମିତା ଚନ୍ଦନ ସମ୍ବନ୍ଧରେ ମୁଁ ଆଉ କେତେଟିକେ ଜାଣେ ! ବରଂ ଆପଣ ମୋତେ କହିବେ ।

ମିଷ୍ଟର ସରାଓଗୀ କହିଲେ : ସେମାନେ ହେଲେ ନବ ସଭ୍ୟତାର ଅଗ୍ରଦୂତ । ସେମାନଙ୍କ ସମ୍ବନ୍ଧରେ ଟିକିନିଖି ଖବର ରଖିବା ଆମ ଭଳି ବ୍ୟସ୍ତ ହୋଟେଲ ମ୍ୟାନେଜରଙ୍କ ପକ୍ଷରେ ସମ୍ଭବ ନୁହେଁ । ତେବେ ମୁଁ ଯେତେଟା ଜାଣେ, ସୁମିତା ଏକ ଧନୀ ପରିବାରର କନ୍ୟା । ଅବଶ୍ୟ ସୁମିତାର ବାପା ମା'ଙ୍କ ସହିତ ମୋର ପରିଚୟ ନାହିଁ । ରହିବା ବି କିଛି ଆବଶ୍ୟକ ନାହିଁ । ଟଙ୍କା ସହିତ ଆମର ସମ୍ବନ୍ଧ । ଯେଉଁମାନେ ଆମକୁ ଠିକ୍ ସମୟରେ ଆମର ପ୍ରାପ୍ୟ ମେଣ୍ଟେଇ ଦେଇପାରିଲେ, ସେମାନେ ଆମର ଗ୍ରାହକ-ଦେବତା । ସେ ଦୃଷ୍ଟିରୁ ସୁମିତା ଚନ୍ଦନ ଏ' ଗ୍ରେଡ୍‌ର । ହଁ, ଏଥର କୁହନ୍ତୁ, ରାତ୍ରି ଭୋଜନଟା ଆଗେ ଶେଷ କରି ଯିବେ ନା ପରେ ଶେଷ କରିବେ ।

ଏପରି ଏକ ପ୍ରଶ୍ନ ପାଇଁ ମୁଁ ମୋଟେ ପ୍ରସ୍ତୁତ ନଥିଲି । କହିଲି, ରାତ୍ରି ଭୋଜନ ମୁଁ ଶେଷ କରି ଆସିଛି । ଆପଣ ବରଂ ଶେଷ କରି ନିଅନ୍ତୁ । ମୋର କପେ କଫି ହେଲେ ଚଳିବ ।

ମିଷ୍ଟର ସରାଓଗୀ କହିଲେ : ବର୍ତ୍ତମାନ ବାରଟା ବାଜିଲାଣି । ଆପଣ ତା'ହେଲେ ଟିକେ ଅପେକ୍ଷା କରନ୍ତୁ । ସଂଗେ ସଂଗେ ମୁଁ ଆସୁଛି । ସେ ଉଠି ଠିଆହେଲେ ।

ମୁଁ କହିଲି : ନୀନା କ'ଣ ବର୍ତ୍ତମାନ ଗ୍ରୀନ୍ ରୁମ୍‌ରେ ଥିବ ?

: ହଁ ନିଶ୍ଚୟ । କିନ୍ତୁ ଆପଣ ତ ବର୍ତ୍ତମାନ ଆଉ ତା' ସହିତ ଦେଖା କରିବା ସମ୍ଭବ ହେବ ନାହିଁ । ବରଂ ଗୋଟାଏ କଥା କରନ୍ତୁ । ଟେଲିଫୋନ୍‌ରେ ତା' ସହିତ କଥା ହେଉଥାଆନ୍ତୁ । ଇତ୍ୟବସରରେ ମୁଁ ଭୋଜନ ଶେଷ କରି ଆସୁଛି ।

ମିଷ୍ଟର ସରାଓଗୀ ନୀନା ସହିତ ଫୋନ୍‌ରେ ମୋତେ ଯୋଗାଯୋଗ କରାଇଦେଲେ ।

ନୀନା କହିଲା : ଆପଣ ଆସି ଭଲ କରିଛନ୍ତି ମିଷ୍ଟର ରାୟ । ଖୁବ୍ ସମ୍ଭବତଃ ସେଇ ଲୋକଟା ଆଜି ଏଠାକୁ ଆସିବ ।

ମୁଁ ପଚାରିଲି : ଆଉ ନୂଆ କିଛି ଖବର ନାହିଁ ?

ନୀନା କହିଲା : ଅଛି, କିନ୍ତୁ ବର୍ତ୍ତମାନ ଫୋନ୍‌ରେ ସେ ଖବର ଦେବା ମୋଟେ ସମ୍ଭବ ନୁହେଁ । ମୋ ଆଖ ପାଖରେ ଅନେକ ଲୋକ । ତେଣୁ...

ନୀନା କଥା ଅସମାପ୍ତ ରଖି ନୀରବ ହୋଇଗଲା । ମୁଁ ଶୁଣିଲି ସେ କାହା ସହିତ ଆଜିର ପ୍ରୋଗ୍ରାମ ସମ୍ବନ୍ଧରେ କଥାବାର୍ତ୍ତା କରୁଛି । ତା'ପରେ ସେ କହିଲା, ହ୍ୟାଲୋ ମିଷ୍ଟର

ରାୟ । ବର୍ତ୍ତମାନ ସମୟ ହୋଇଗଲାଣି । ମୋତେ ବାହାରି ଯିବାକୁ ହେବ । ଆଉ ଅଧିକ କିଛି କଥା କହିପାରୁ ନାହିଁ । ମୋ କଥା ଆପଣଙ୍କର ମନେ ଅଛି ତ ?

: କୋଉ କଥା ?

: ମୁଁ ଯଦି ସେଇ ଲୋକଟାକୁ ଆସରରେ ପାଏ, ତେବେ ଇଂଗିତରେ ଜଣାଇ ଦେବି । ଇଂଗିତ ଅର୍ଥ ହେଉଛି ଲୋକଟାକୁ ବସିବା ଜାଗାରୁ ଉଠାଇ ଠିଆ କରାଇଦେବି, ପୁଣି ବସାଇ ଦେଇ ଅନ୍ୟତ୍ର ଚାଲିଯିବି । ଆପଣ ସେଇଥିରୁ ମୋର ଇଂଗିତ ବୁଝିପାରିବେ ।

: ଧନ୍ୟବାଦ ମିସ୍ ନୀନା । କିନ୍ତୁ ଅନ୍ୟ ଦରକାରୀ ଖବର ?

: କାଲି ମୁଁ ପହଞ୍ଚାଇ ଦେବି ।

ନୀନା ଟେଲିଫୋନ୍ ରିସିଭର ରଖିଦେଲା । ମୁଁ ବି ।

ସାମ୍ନାକୁ ଚାହିଁ ଦେଖିଲି ଶଙ୍କର ଠିଆ ହୋଇଛି ।

ମୋତେ କହିଲା : ସୁମିତାଦିଙ୍କର କିଛି ଖବର ପାଇଲେ ?

: ଖବର ତ ତମ ପାଖରେ ରହିବା କଥା ।

: କିନ୍ତୁ ବିଶ୍ୱାସ କରନ୍ତୁ ସାର୍, ମୁଁ ଆଜି ସକାଳ ନଅଟା ଠାରୁ ସୁମିତାଦିଙ୍କର କିଛି ଖବର ପାଉ ନାହିଁ । ବଡ଼ ଆଶ୍ଚର୍ଯ୍ୟ କଥା । ସେ' ତ ଆଉ ହାଉଆରେ ମିଶିଯାଇ ପାରନ୍ତି ନାହିଁ ।

: ତମେ କୋର୍ଟକୁ ଯାଇଥିଲ ? ମୁଁ ଶଙ୍କରକୁ ପଚାରିଲି ।

: ସାଢ଼େ ଦଶଟା ବେଳେ ମୋର କୋର୍ଟକୁ ଯିବାର ଥିଲା । ମୁଁ ଯାଇଥିଲି ବି । କିନ୍ତୁ ସୁମିତାଦି କାହିଁ ? ବାରଟାବେଳ ଯାଏ ଏପାଖ ସେପାଖ ହୋଇ ଫେରିଆସିଲି ।

: ଆଉ ଅଶୋକ ପାରେଖ ?

: ତାଙ୍କ ଖବର ଆଉ ନେଲି କେତେବେଳେ । କିନ୍ତୁ ଘଟଣା କ'ଣ କୁହନ୍ତୁ ତ ମିଷ୍ଟର ରାୟ । ସୁମିତାଦିଙ୍କର କିଛି ଦୁର୍ଘଟଣା ଘଟିଲା ନାହିଁ ତ ।

ମୁଁ ମଧ୍ୟ ଚିନ୍ତିତ ହୋଇ ପଡ଼ିଥିଲି । ବାସ୍ତବିକ୍ ସୁମିତା ଚନ୍ଦନର ହଠାତ୍ ଏପରି ରହସ୍ୟମୟ ଅନ୍ତର୍ଦ୍ଧାନ ମୋ ମନରେ ମଧ୍ୟ ଆଲୋଡ଼ନ ସୃଷ୍ଟି କରିଥିଲା ।

ଶଙ୍କରକୁ କହିଲି : ତମେ ଏଠାରେ କେତେବେଳଯାଏ ରହିବ ?

: ସଂଗେ ସଂଗେ ଚାଲିଯିବି । ଖାଲି ଦେଖିବାକୁ ଆସିଥିଲି, କାଳେ ସୁମିତାଦି ଏଠାକୁ ଫେରିଥିବେ ।

ମୋ ସହିତ କଥା ଶେଷ କରି ଶଙ୍କର ଯିବାକୁ ବାହାରୁଥିଲା । ମୁଁ କହିଲି : କାଲି ସକାଳ ଆଠଟା ଭିତରେ ଯଦି ସୁମିତାର କିଛି ଖବର ନ ପାଅ, ତେବେ ମୋତେ ଜଣାଇବ । ଆଚ୍ଛା, ସୁମିତାର ବାବା ଏ ଖବର ଜାଣନ୍ତି ?

ଶଙ୍କର ନୀରବରେ ଠିଆହୋଇ କିଛି ସମୟ ଚିନ୍ତା କରି କହିଲା : ହଁ, ଜାଣିଥିବେ ନିଶ୍ଚୟ ।

: ତମେ ତା'ହେଲେ ସୁମିତାର ଘରକୁ ଯାଇ କିଛି ଖବର ନେଇ ନାହଁ ?

: ହଁ, ଖବର ନେଇଛି । କିନ୍ତୁ ସୁମିତାର ବାବାଙ୍କ ସହିତ ଦେଖା ହୋଇ ନାହିଁ ।

: ତାଙ୍କ ସହିତ ଦେଖା କଲ ନାହିଁ ?

: ସେ ଭୀଷଣ ରାଗୀ ଲୋକ । ତେଣୁ ତାଙ୍କ ଆଗକୁ ଯିବାକୁ ମୋର ସାହସ ହୁଏ ନାହିଁ । କାଲି ପୁଣି ଥରେ ଯାଇ ଖବର ନେଇ ମୁଁ ଆପଣଙ୍କୁ ଜଣାଇବି ।

ଏହାପରେ ଶଙ୍କର ଚାଲିଯାଇଥିଲା ।

ହାତଘଡ଼ିକୁ ଚାହିଁ ଦେଖିଲି, ବାରଟା ବାଜି ଯାଇଛି ।

ଆଉ ସମୟ ମାତ୍ର ହାତରେ ଘଣ୍ଟାଟିଏ । ଏହି ଘଣ୍ଟାକ ଭିତରେ କ'ଣ ଏପରି ଘଟଣା ଘଟିବ, ଯାହା ମୁଁ ନୟା ସମାଜର ପ୍ରଭାତ ସଂସ୍କରଣ ପାଇଁ ପଠାଇବି ?

କିନ୍ତୁ ରଣଜିତ୍ ତାଲୁକଦାରଙ୍କୁ କଥା ଦେଇଛି । କଥା ରଖି ନ ପାରିଲେ ଖୁବ୍ ଅସୁନ୍ଦର ହେବ ।

ମୁଁ ବସି ବସି ଚିନ୍ତା କରୁଥିଲି । ତା'ହେଲେ ଏକ ଖବର ସୃଷ୍ଟି କରିବାକୁ ହେବ । ସାମ୍ବାଦିକମାନଙ୍କର ଧର୍ମ ହେଲା, ସାମାନ୍ୟ ସୂତ୍ର ଧରି ଆଗେଇଯିବା କଥା । କିନ୍ତୁ ମୁଁ ଆଜି ପର୍ଯ୍ୟନ୍ତ କୌଣସି ଭିତ୍ତିହୀନ ସମ୍ବାଦ ପରିବେଷଣ କରି ନାହିଁ । ଆଜି କ'ଣ ନିହାତି ବାଧ ହୋଇ...

ମୋ ଚିନ୍ତା ଅସମାପ୍ତ ରହିଗଲା ।

ପୋଲିସ୍ ଇନିସ୍‌ପେକ୍ଟର ମନୋରଂଜନ ମହାପାତ୍ରଙ୍କୁ ହସି ହସି ସାଦା ପୋଷାକରେ ପ୍ରବେଶ କରୁଥିବାର ଦେଖିଲି ।

ମୋତେ ଦେଖି ହାତ ବଢ଼ାଇ ସେ କରମର୍ଦ୍ଦନ କରି କହିଲେ : ଆଜି ମୁଁ ଆପଣଙ୍କୁ ଅନେକ ଖୋଜିଲିଣି । ଦୁଇ ତିନିଥର ଆପଣଙ୍କ ଅଫିସ୍‌କୁ ଫୋନ୍ କରିଛି । କିନ୍ତୁ ଆଜି ହଠାତ୍ ଏଇଠି ଏପରି ଦେଖା ହେବ ବିଶ୍ୱାସ କରିପାରି ନଥିଲି ।

ମୁଁ ଅତ୍ୟନ୍ତ ଆଗ୍ରହରେ ପଚାରିଲି : ଆପଣ ମୋତେ ହଠାତ୍ ଏପରି ଖୋଜିଲେ କାହିଁକି ?

: ଆପଣଙ୍କ ସହିତ ବିଶେଷ ଦରକାର ଅଛି ମିଷ୍ଟର ରାୟ । ଆମ ବଡ଼ ସାହେବ ମଧ ଆପଣଙ୍କ ସହିତ କଥା କହିବାକୁ ଆଗ୍ରହୀ । ବାଲିଗଞ୍ଜର ସେହି 'ମୀରା ମର୍ଡ଼ର କେସ୍' ସମ୍ବନ୍ଧରେ ଆପଣଙ୍କ ଅନୁସନ୍ଧାନ ଧାରାକୁ ଆମ ବଡ଼ ସାହେବ ଲକ୍ଷ୍ୟ କରିଛନ୍ତି । ଦୁଇଦିନ ତଳେ ଆପଣ 'ମୀରା ମର୍ଡ଼ର କେସ୍' ସମ୍ବନ୍ଧରେ ଏକ ପ୍ରବନ୍ଧ 'ନୟାସମାଜ'ରେ ଲେଖିଥିଲେ, ତାହା ମଧ ଆମ ବଡ଼ ସାହେବ ପଢ଼ିଛନ୍ତି । ମୁଁ ବି ପଢ଼ିଛି । ଆପଣଙ୍କ ପ୍ରବନ୍ଧ ସମ୍ବନ୍ଧରେ ଆମେ ଏକାଠି ବସି ଆଲୋଚନା କରିଥିଲୁ । ତହିଁରେ ଯେଉଁ ଦୁଇ ତିନୋଟି କ୍ଲୁ ଆପଣ ଧରିଛନ୍ତି, ବାସ୍ତବିକ୍ ତାହା ଅତ୍ୟନ୍ତ ମୂଲ୍ୟବାନ । ମୀରା ମର୍ଡ଼ର କେସ୍ ତଦନ୍ତ ପକ୍ଷରେ ତାହା ଯେକୌଣସି ତଦନ୍ତକାରୀକୁ ଯଥେଷ୍ଟ ସହାୟକ ହେବ । କିନ୍ତୁ ଅନିରୁଦ୍ଧ ଗାଙ୍ଗୁଲି ସମ୍ବନ୍ଧରେ ଆପଣଙ୍କ ମତାମତ ଯାହା, ସେଥିରୁ ମନେହୁଏ, ସେ ଏହି କେସ୍ ସହିତ ଆଦୌ ସଂପୃକ୍ତ ନୁହେଁ । ଆମେ କିନ୍ତୁ ଅନିରୁଦ୍ଧ ଗାଙ୍ଗୁଲିକୁ ମୀରାର ମର୍ଡ଼ରର ଭିତରୁ ଜଣେ ବୋଲି ଆରେଷ୍ଟ୍ କରିଛୁ । ଏଇଠି କିନ୍ତୁ ଆପଣଙ୍କ ମତ ସହିତ ଆମ ଅନୁସନ୍ଧାନକାରୀ ଅଫିସରଙ୍କ ମତ ପାର୍ଥକ୍ୟ ହେଉଛି । ଆଉ ମର୍ଡ଼ର ଦିନ ରାତିରେ ମୀରା ଘରେ ଯେଉଁମାନେ ଥିଲେ, ସେମାନଙ୍କ ସଂଖ୍ୟା ଚାରି ଥିବା ସ୍ଥଳେ ଆପଣଙ୍କ ରିପୋର୍ଟରେ ପାଞ୍ଚ ହୋଇଥିବାରୁ, ସେହି ପଞ୍ଚମ ବ୍ୟକ୍ତିଟି ସମ୍ବନ୍ଧରେ ଆମେ କୌଣସି ସୂତ୍ର ପାଉ ନାହୁଁ । ତେଣୁ ଆମର ଦୁର୍ଶ୍ଚିନ୍ତା । ଏଇ କେସ୍‌ଟାର ତଦନ୍ତକାର୍ଯ୍ୟ ଶୀଘ୍ର ଶେଷ କରିବା ପାଇଁ ଉପର ମହଲରୁ ଭୀଷଣ ତାଗିଦା ଆସୁଛି । ତେଣୁ ଏଥିପାଇଁ ଆମ ବଡ଼ ସାହେବ ଆପଣଙ୍କ ସହିତ କେତେକ ଆଲୋଚନା କରିବାକୁ ଚାହାନ୍ତି । ଆପଣ ଟିକିଏ ସମୟ କରି କାଲି ଆସନ୍ତୁ !

ମୁଁ କହିଲି : ମୋର ଯିବାରେ କିଛି ଆପତ୍ତି ନାହିଁ । କିନ୍ତୁ ମୀରା ମର୍ଡ଼ର କେସ୍‌ର ସେହି ପଞ୍ଚମ ବ୍ୟକ୍ତିଟିର ଉପସ୍ଥିତି ମୀରା ଘରେ ସେଦିନ ଯଦିଓ ମୁଁ ଅନୁଭବ କରିଛି, କିନ୍ତୁ ତା'ର ସନ୍ଧାନ ମୁଁ ମଧ୍ୟ ଆଜି ଯାଏ କରିପାରି ନାହିଁ । ଏହି ପଞ୍ଚମ ବ୍ୟକ୍ତିଟିର ସନ୍ଧାନରେ ମୁଁ ଦୁଇଥର ଆପଏଣ୍ଟ୍‌ମେଣ୍ଟ୍ କରି ମଧ୍ୟ ଫେଲ୍ କରିଛି । ଏଠାରେ ଏକ ନୂତନ ସମସ୍ୟାରେ ଜଡ଼ିତ ହୋଇପଡ଼ିଛି ଯେ, ମୀରା ମର୍ଡ଼ର କେସ୍ ସମ୍ବନ୍ଧରେ ଚିନ୍ତା କରିବାର ଆଉ ସମୟ ହୋଇ ଉଠି ନାହିଁ । ଆଚ୍ଛା ମିଷ୍ଟର ମହାପାତ୍ର ! ମୀରା ସମ୍ବନ୍ଧରେ ଆଉ କିଛି ନୂତନ ତଥ୍ୟ ପାଇଲେ ?

: ମିଳିଛି, ଧୀରେ ଧୀରେ ମିଳୁଛି ମଧ୍ୟ । ମୀରାକୁ ଆମେ ସମାଜର ଯେଉଁ ତଳ ସ୍ତରର ଝିଅ ବୋଲି ଭାବିଥିଲୁ, ସେ ମୋଟେ ତାହା ନୁହେଁ । ମୀରାକୁ କେନ୍ଦ୍ର କରି ଏଇ ସହରରେ କେତେକ ଲକ୍ଷପତି ଓ କୋଟିପତିଙ୍କ ଭିତରେ ଏକ ମଧୁଚକ୍ର ଗଢ଼ି ଉଠିଥିଲା । ଆପଣ ପ୍ରବନ୍ଧରେ ଯାହା ଲେଖିଥିଲେ ମୀରାର ହତ୍ୟା ରହସ୍ୟ ଉଦ୍‌ଘାଟନ ହୋଇପାରିଲେ ଏଇ ସହରର ଗୋଟାଏ ବିରାଟ ରହସ୍ୟଚକ୍ର ଉଦ୍‌ଘାଟିତ ହୋଇପାରିବ, ତାହା ଅକ୍ଷରେ ଅକ୍ଷରେ ସତ୍ୟ ଏବଂ ମୀରାକୁ କେନ୍ଦ୍ର କରି କେତେଜଣ ବିରାଟ ବ୍ୟବସାୟୀଙ୍କର ବ୍ୟବସାୟିକ ଫାଇଦା ଥିଲା । ଫଳରେ ସେଇମାନେ ମୀରାର ହତ୍ୟା ରହସ୍ୟ ଉଦ୍‌ଘାଟନ କରିବା ପାଇଁ ଉପରୁ ଚାପ ସୃଷ୍ଟି କରୁଛନ୍ତି । ଆଉ ଯେଉଁମାନଙ୍କର କ୍ଷତିସାଧନ ହେବ, ସେମାନେ ଏଇ କେସ୍‌ଟାକୁ ଚାପିଦେବା ପାଇଁ ସବୁ ପ୍ରକାର ପ୍ରଚେଷ୍ଟା କରୁଛନ୍ତି । ଆପଣ କିନ୍ତୁ ଏ କ୍ଷେତ୍ରରେ ଟିକିଏ ସାବଧାନ ଥିବେ ମିଷ୍ଟର ରାୟ । ଆପଣଙ୍କ ଉପରେ ମଧ୍ୟ ଦୁଷ୍କୃତକାରୀଙ୍କର ନଜର ରହିଛି ।

ପ୍ରକୃତରେ ମୁଁ ଏପର୍ଯ୍ୟନ୍ତ ମୋ କଥାଟା ଚିନ୍ତା କରି ନଥିଲି । ଏହି ମୀରା ହତ୍ୟା ରହସ୍ୟ ସମ୍ବନ୍ଧରେ ମୋର ଭୂମିକା କୌଣସି ଗୁଣରେ କମ୍ ନୁହେଁ । କାରଣ ମୁଁ ହିଁ ସର୍ବପ୍ରଥମ କେସ୍‌ଟା ଲୋକଲୋଚନକୁ ଆଣିଲି । ଯେଉଁଦିନ ମୀରା ମର୍ଡ଼ର କେସ୍ ସମ୍ବାଦ 'ନୟାସମାଜ'ରେ ପ୍ରକାଶ ପାଇଲା, ସେଦିନ କାଗଜର କି କାଟ୍‌ତି ।

ମିଷ୍ଟର ମହାପାତ୍ର ପୁଣି ମୋତେ କହିଲେ : ଆପଣ ସେହି ପଞ୍ଚମ ବ୍ୟକ୍ତିଟିକୁ ଏହା ଭିତରେ ପ୍ରବେଶ କରାଇ, ଆମର ଚିନ୍ତାଧାରା ସବୁ ଗୋଳମାଳିଆ କରିଦେଇଛନ୍ତି । ପ୍ରଥମେ ଆମେ ଭାବୁଥିଲୁ, ଯେଉଁ ଚାରିଜଣ ଆରେଷ୍ଟ୍ ହୋଇଛନ୍ତି, ସେଇ ଚାରିଜଣ ହିଁ ଏ ହତ୍ୟା ସହିତ ସଂପୃକ୍ତ । କିନ୍ତୁ ପରେ କେତେକ ସୂତ୍ରରୁ ଆମେ ପଞ୍ଚମ ବ୍ୟକ୍ତିର ପଦଧ୍ୱନି ମଧ୍ୟ ଶୁଣିବାକୁ ପାଉଛୁ । କିନ୍ତୁ ସେହି ପଞ୍ଚମ ବ୍ୟକ୍ତିଟି କିଏ ? ଯିଏ ଆମ ସମସ୍ତଙ୍କ ଆଖିର ଅନ୍ତରାଳରେ ରହିଯାଇପାରିଲା ?

: ଆପଣ ଠିକ୍ କହିଛନ୍ତି ମିଷ୍ଟର ମହାପାତ୍ର । ସେଇ ପଞ୍ଚମ ବ୍ୟକ୍ତିଟିକୁ ଖୋଜି ବାହାର କରିବା ଆମର ସର୍ବାଗ୍ରେ କର୍ତ୍ତବ୍ୟ । ମୋର ମଧ୍ୟ । ମାତ୍ର ମୁଁ ଘଟଣାଚକ୍ରରେ ପଡ଼ି ମୋର ଦୁଇଟିଯାକ ମୂଲ୍ୟବାନ ଆପଏଣ୍ଟ୍‌ମେଣ୍ଟ୍ ଫେଲ୍ କରିଛି । ଯାହାକି ଫେଲ୍ କରିବା ମୋ ପକ୍ଷରେ ଆଦୌ ଉଚିତ ନଥିଲା ।

ଇନିସ୍‌ପେକ୍ଟର ମିଷ୍ଟର ମହାପାତ୍ର ସ୍ୱର ଗମ୍ଭୀର କହି କହିଲେ : ଏଇ ହତ୍ୟା ମାମଲାରେ ଆପଣଙ୍କର ଭୂମିକାର ଗୁରୁତ୍ୱ କେତେ ଆପଣ ମୋଟେ ବୁଝିପାରୁ ନାହାନ୍ତି ମିଷ୍ଟର ରାୟ । ଏକ ପ୍ରକାରର କହିବାକୁ ଗଲେ ଆପଣଙ୍କ ଦୃଷ୍ଟିଭଂଗୀରେ ଆମେ ଏ କେସ୍‌ର ତଦନ୍ତ କରିବାକୁ ବାହାରିଛୁ । ତେଣୁ ଆପଣ ବର୍ତ୍ତମାନ ଆମର ପଥପ୍ରଦର୍ଶକ । ଆପଣ ଏପରି ଅବହେଳା

କଲେ ଆଉ ଚଳିବ ନାହିଁ । ଆପଣଙ୍କ ସହିତ ଆମ ବଡ଼ ସାହେବ ଆଲୋଚନା କରିବା ପାଇଁ ଖୁବ୍ ବ୍ୟସ୍ତ ହୋଇ ପଡ଼ିଲେଣି । କାଲି ଟିକିଏ ସମୟ କରି ଆସନ୍ତୁ ।

: ଠିକ୍ ଅଛି । ମୁଁ କାଲି ଏଗାରଟା ବାରଟା ବେଳକୁ ଆପଣଙ୍କ ଅଫିସକୁ ଯିବି । ତା'ପରେ ଆପଣଙ୍କ ବଡ଼ ସାହେବଙ୍କ ପାଖକୁ ଯିବା ।

: ଓ.କେ. । ପୋଲିସ୍ ଇନିସ୍‌ପେକ୍ଟର ମିଷ୍ଟର ମହାପାତ୍ର ଉଠି ଠିଆ ହେଲେ । କହିଲେ, କାଲି ଯେପରି ନ ଭୁଲନ୍ତି ।

ମୁଁ ପୁଣି ଦୁଶ୍ଚିନ୍ତାରେ ପଡ଼ିଗଲି । ପ୍ରକୃତରେ ମୀରା ମର୍ଡ଼ର କେସ୍‌ର ରହସ୍ୟମୟ ତଥ୍ୟ ଉଦ୍‌ଘାଟନ କରିବାର ସୂତ୍ର ମୋ ହାତରେ ଯଥେଷ୍ଟ ଅଛି । କିନ୍ତୁ...

ମୁଁ ପୁଣି ଚିନ୍ତିତ ହୋଇ ପଡ଼ିଲି ।

ରୋଜି ହସି ହସି ଘର ଭିତରକୁ ପଶିଆସି କହିଲା : ଆପଣ ଆସିଯାଇଛନ୍ତି ମିଷ୍ଟର ରାୟ !

: ହଁ, କିନ୍ତୁ ଆପଣ... ମୁଁ ସ୍ୱପ୍ନରୁ ଉଠିଲା ପରି ରୋଜି ମୁହଁକୁ ଚାହିଁଥିଲି ।

: ମୋର ଆଜି ନାଇଟ୍ ଡିଉଟି । ଆପଣ ସୁମିତାର ଖବର କିଛି ପାଇଲେ ?

: ନା । ଆପଣ ଆଉ କିଛି ଖବର ପାଇଛନ୍ତି ?

: ନା, ତେବେ ଦୁଇ ତିନିଟା ଫୋନ୍ ଆସିଥିଲା । ସେମାନେ ସମସ୍ତେ ସୁମିତାକୁ ଖୋଜୁଥିଲେ । ଶଙ୍କର ସହିତ ମୋର ଭେଟ ହୋଇଥିଲା । ସେ ବି ପାଗଳାଙ୍କ ପରି ସୁମିତାକୁ ଖୋଜୁଛି ।

ମିଷ୍ଟର ସରାଓଗୀ ସେତିକିବେଳେ ଆସି ପହଞ୍ଚିଥିଲେ । ରୋଜିକୁ କହିଲେ : ତମେ ଏତେ ଡେରି କଲ ଯେ ରୋଜି ।

ରୋଜି ତଳକୁ ମୁହଁପୋତି ଅଳ୍ପ ହସି କହିଲା : ଆଜି ଦଶଟା ବେଳେ ଆମର ଗୋଟାଏ ପାର୍ଟି ଥିଲା । ଶେଷ ହେଉ ହେଉ ଟିକିଏ ଡେରି ହୋଇଗଲା ।

: ଆଚ୍ଛା, ଆଚ୍ଛା, ତମେ ବସ । ମୁଁ ମିଷ୍ଟର ରାୟଙ୍କୁ ନେଇ ଯାଉଛି ମିଡ୍‌ନାଇଟ୍ ପ୍ରୋଗ୍ରାମ୍ ଦେଖେଇ ଆଣେ । ଭଦ୍ରଲୋକ ଏ ଲାଇନ୍‌ରେ ନୂଆ ତ, ତେଣୁ...

ରୋଜି ହସିଲା । ମିଷ୍ଟର ସରାଓଗୀ ହସିଲେ । ଶେଷରେ ମୁଁ ବି ହସି ପକାଇଲି ।

ଆମେ ଚାଲିଲୁ ଅସଲ ଜାଗାକୁ । ସେ ଏକ ବିରାଟ ହଲ୍‌ଘର । ବାହାରକୁ ଘୋ ଘୋ ଶବ୍ଦ ଶୁଭୁଛି । ବୋତଲ ଗ୍ଲାସ୍‌ର ଟୁଣ୍‌ଟାଣ୍ ଶବ୍ଦ କିପରି ଏକ ନୂତନ ମିଉଜିକ୍ ସୃଷ୍ଟି କରୁଛି ।

ଲୋକମାନେ ଅଧିକାଂଶ ଅସମ୍ଭାଳ ! କିଏ କେତେ ପ୍ରକାର ଅଙ୍ଗଭଙ୍ଗୀ କରି ବିଚରଣ କରୁଛନ୍ତି । ଷ୍ଟେଜ୍ ମୁକୁଳା । ମିଉଜିକ୍ ଚାଲିଛି । ଅସଲ ନୃତ୍ୟ ଏ ପର୍ଯ୍ୟନ୍ତ ଆରମ୍ଭ ହୋଇ ନାହିଁ ।

ଆମେ ଯାଇ ଷ୍ଟେଜ୍ ପାଖରେ ଦୁଇଟି ଖାଲି ଚେଆର୍ ଦଖଲ କରି ବସିଲୁ । ମିଷ୍ଟର ସରାଓଗୀ ମୋ ମୁହଁକୁ ଚାହିଁ କହିଲେ, ଦେଖୁଛନ୍ତି । ଏଇ ହେଉଛି ଆମର ଜୀବନ । ଏଇ ଅର୍ଦ୍ଧପାଗଳମାନଙ୍କ ସହିତ ଦିନ ପରେ ଦିନ ଆମକୁ ସହାବସ୍ଥାନ କରିବାକୁ ପଡୁଛି । ଶୃଙ୍ଖଳିତ ଭାବରେ ମୁଣ୍ଡ ଠିକ୍ ରଖି ଏମାନଙ୍କୁ ପରିଚାଳନା କରି ନ ପାରିଲେ ହୋଟେଲର ବଦ୍‌ନାମ ହେବ । ବ୍ଲାକ୍‌ସଟ୍ ପଡ଼ିଯିବ ଆମ ନାଁ ପାଖରେ ।

ଧୀରେ ଧୀରେ ଷ୍ଟେଜ୍ ଉପରେ ଲାଇଟ୍ ଜଳି ଉଠିଲା ।

ମିଷ୍ଟର ସରାଓଗୀ କହିଲେ : ଏଥର ନାଚ ଆରମ୍ଭ ହେବ କାବାରେ । ମାନେ ଏକ ପ୍ରକାର ଉଲଙ୍ଗ ନୃତ୍ୟ । ଏଇ ନୃତ୍ୟ ଦେଖିବା ପାଇଁ ଏଠାକାର ଅଭିଜାତ ସମାଜ କିପରି ଆସି ଭିଡ଼ କରିଛନ୍ତି, ଆପଣ ନିଜ ଆଖିରେ ଦେଖନ୍ତୁ । ଏମାନେ ଯେଉଁମାନେ ଏଠାରେ ଅର୍ଦ୍ଧପାଗଳ ହୋଇ ବସିଛନ୍ତି, ଏମାନେ ସମସ୍ତେ ବିବାହିତ । ସମସ୍ତଙ୍କର ଘରେ ହୁଏତ ସୁନ୍ଦରୀ ସ୍ତ୍ରୀ ଅଛନ୍ତି । କିନ୍ତୁ ତଥାପି ଏମାନେ ଅସନ୍ତୁଷ୍ଟ । ହୋଟେଲକୁ ଆସି କୌଣସି ଏକ ସହସ୍ର ଶଯ୍ୟାର ନାୟିକାର ଉଲଙ୍ଗ ଅଙ୍ଗ-ପ୍ରତ୍ୟଙ୍ଗ ଦେଖିବା ପାଇଁ ଏମାନେ ଲାଳାୟିତ । ହେଇ ଦେଖନ୍ତୁ ନର୍ତ୍ତକୀ ନୀନା...

ନର୍ତ୍ତକୀ ନୀନା ଷ୍ଟେଜ୍ ଉପରକୁ ଓହ୍ଲେଇ ଆସିଲା ।

ଖୁବ୍ ତୀବ୍ର ଆଲୋକ ଷ୍ଟେଜ୍‌ଟାକୁ ଆହୁରି-ଆଲୋକିତ କରି ପକାଇଲା ।

ନୀନାର ଆବିର୍ଭାବରେ ସମଗ୍ର ଦର୍ଶକମଣ୍ଡଳୀରେ ଏକ ତୀବ୍ର ଉତ୍ତେଜନା ସୃଷ୍ଟି ହୋଇଗଲା । ନାନା ପ୍ରକାର ବିକୃତ ଧ୍ୱନିରେ ହଲ୍ ଘରଟା ମନେହେଲା ଯେପରି ଗୋଟାଏ ଅରଣ୍ୟ । ପଶୁ-ପକ୍ଷୀମାନଙ୍କର ଚରାଭୂଇଁ ।

ଷ୍ଟେଜ୍ ଉପରେ ନୃତ୍ୟର ତାଳେ ତାଳେ ନୀନାର ଅର୍ଦ୍ଧଉଲଙ୍ଗ ଦେହଟା ଯେପରି ତରଙ୍ଗାୟିତ ହୋଇ ଉଠିଲା ।

ଧୀରେ ଧୀରେ ନୀନା ଷ୍ଟେଜ୍ ଛାଡ଼ିଲା । ଦେହରୁ ଖଣ୍ଡ ଖଣ୍ଡ କରି ଅଙ୍ଗବାସ ବାହାର କରି ଫିଙ୍ଗିବାରେ ଲାଗିଲା ଏବଂ ଧୀରେ ଧୀରେ ଆଗେଇ ଆସିଲା ଦର୍ଶକମଣ୍ଡଳୀଙ୍କ ମେଳକୁ ।

ଆଃ... ସେ କି ପୈଶାଚିକ ଉତ୍ତେଜନା ।

କିନ୍ତୁ ଆଖି ପିଛୁଳାକେ ଦେଖିଲି, ନୀନା ଗୋଟାଏ ଲୋକକୁ ତା' ମୁଣ୍ଡର ବାଳକୁ ମୁଠା କରି ଧରି ଚେଆରରୁ ଉଠାଇ ଠିଆ କରାଇଦେଲା ଏବଂ ସଂଗେ ସଂଗେ ପୁଣି ଚେଆର୍ ଉପରେ ବସାଇଦେଇ ଛୁଟି ପଳାଇଲା ଷ୍ଟେଜ୍ ଉପରକୁ ।

ମୁଁ ଚଞ୍ଚଳ ହୋଇ ଉଠିଲି ।

ତା'ହେଲେ ? ଏଇ ସେଇ ଲୋକଟା ? ନୀନା ଏହାରି ପକେଟରୁ ଉଦ୍ଧାର କରିଥିଲା ସେଇ ବ୍ଲୁପ୍ରିଣ୍ଟ୍‌ଟା ?

ମୁଁ ଉଠି ଠିଆ ହେଲି ।

ମିଷ୍ଟର ସରାଓଗୀ ମୋର ହାତ ଧରି ଟାଣି ବସାଇଲେ । କହିଲେ : ଆପଣ ଏତିକିବେଳୁ ଉଠନ୍ତୁ ନାହିଁ ମିଷ୍ଟର ରାୟ । ନୃତ୍ୟର ଚରମ ମୁହୂର୍ତ୍ତ ବର୍ତ୍ତମାନ ଅନେକ ଡେରି । ନୀନା ଧୀରେ ଧୀରେ ତା'ର ପ୍ରତିଟି ଅଙ୍ଗବାସ ଖୋଲି ଫିଙ୍ଗିଦେବ । ଶେଷରେ ସୂତା ଖଣ୍ଡିଏ ବି ରହିବ ନାହିଁ ତା' ଦେହରେ । ଆପଣ ଅପେକ୍ଷା କରନ୍ତୁ ମିଷ୍ଟର ରାୟ । ଏତିକିବେଳୁ ଏପରି ଅସ୍ଥିର ହେଲେ ଚଳିବ କିମିତି ?

ମୋର କିନ୍ତୁ ଆଖି ଥିଲା ସେଇ ଭୀମକାୟ ଲୋକଟା ଉପରେ । ଯେଉଁ ଲୋକଟାକୁ ନୀନା ଚେଆରରୁ ଉଠାଇ ପୁଣି ବସାଇ ଦେଇ ଯାଇଥିଲା । ସେ ଲୋକଟା କିନ୍ତୁ ନିର୍ବିକାର ଚିତ୍ତରେ ବୋତଲରୁ ପାନୀୟ ଢାଳି ଗ୍ଲାସ୍ ପରେ ଗ୍ଲାସ୍ ପିଇ ଚାଲିଥିଲା ।

ମିଷ୍ଟର ସରାଓଗୀ ମୋତେ ଆହୁରି କ'ଣ କହୁଥିଲେ, ଦର୍ଶକମଣ୍ଡଳୀ ମଧ୍ୟରେ ଗୁଞ୍ଜରଣ ସୃଷ୍ଟି ହୋଇ ଯାଇଥିଲା । ଷ୍ଟେଜ୍ ଉପରେ ନୀନା ଦେହରୁ ଅଙ୍ଗବାସ ଧୀରେ ଧୀରେ ଖସି ଖସି ପଡୁଥିଲା । ମୁଁ କିନ୍ତୁ ଅନ୍ୟମନସ୍କ ହୋଇ ପଡ଼ିଥିଲି । ସେଇ ଲୋକଟାର ଗତିବିଧି

ମୋତେ ଲକ୍ଷ୍ୟ କରିବାକୁ ହେବ । ଦରକାର ହେଲେ ତା' ପଛରେ ମୋତେ ଛୁଟିବାକୁ ହେବ ଅଣନିଃଶ୍ୱାସୀ ହୋଇ ।

କିନ୍ତୁ ଲୋକଟା ଯେ...

ହଠାତ୍ ଉଠି ଠିଆହୋଇପଡ଼ି ଗ୍ଲାସ୍‌ଟାକୁ ନିଃଶେଷ କରି ଦୂରକୁ ଫିଙ୍ଗି ଦେଇ ଦୁଇ ହାତରେ କରତାଳି ଦେଉ ଦେଉ ଧୀରେ ଧୀରେ ଆଗେଇବାକୁ ଲାଗିଲା । ଷ୍ଟେଜ୍ ଆଡ଼କୁ ନୁହେଁ, ଷ୍ଟେଜ୍‌ର ବିପରୀତ ଦିଗକୁ ।

ତା'ହେଲେ ଲୋକଟା କ'ଣ ହଲ୍ ଛାଡ଼ି ଚାଲିଯାଉଛି ?

ମୁଁ ବି ଉଠି ଠିଆ ହେଲି ।

ମିଷ୍ଟର ସରାଓଗୀ ଷ୍ଟେଜ୍ ଆଡ଼କୁ ନିର୍ନିମେଷ ଆଖିରେ ଚାହିଁଥିଲେ । ବୋଧହୁଏ ନୃତ୍ୟର ଚରମ ମୁହୂର୍ତ୍ତ ଆଗେଇ ଆସୁଥିଲା ।

କିନ୍ତୁ ସେଇ ଅରସିକ ଭୀମକାୟ ଲୋକଟା ହଲ୍ ଛାଡ଼ି ଆଗେଇ ଯାଉଥିଲା ବାହାରକୁ । ମୁଁ ବି ଉଠି ଆସିଥିଲି ତା'ର ପଛେ ପଛେ । ମିଷ୍ଟର ସରାଓଗୀ ବୋଧହୁଏ ମୋର ଅନୁପସ୍ଥିତି ବୁଝିପାରି ନଥିଲେ ।

ହଲ୍ ଘରଟା ମତ୍ତ ଆନନ୍ଦରେ ପୂରିଯାଇଥିଲା । ସେଇ ଅସମ୍ଭବ କୋଳାହଳ ଭିତରେ ମୁଁ ଲୋକଟା ପଛେ ପଛେ ଆଗେଇ ଚାଲିଥିଲି । ଲୋକଟା ବୋଧହୁଏ ନିଜର ଆୟତ୍ତରେ ନଥିଲା । ପଡ଼ିଉଠି, ଚେଆର୍ ସହିତ ବାଡ଼େଇ ହୋଇ ଦିଆଲ ଧରି ଧରି ସେ ବାହାରି ଯାଉଥିଲା ହଲ୍ ଘର ଭିତରୁ ।

ଶେଷରେ ଶିଡ଼ି ମୁଣ୍ଡରେ ପହଞ୍ଚି ସେ ଯେପରି ଅସହାୟ ହୋଇପଡ଼ିଲା । ହାତ ବଢ଼ାଇ କାହାର ସାହାଯ୍ୟ ଲୋଡୁଥିଲା ହୁଏତ ।

ମୁଁ ଆଗେଇ ଗଲି ସେଇ ଭୀମକାୟ ଲୋକଟା ପାଖକୁ ।

ମୋ ଦେହରେ ତା'ର ହାତ ବାଜିବା କ୍ଷଣି ମୋତେ ଶକ୍ତ ହାତରେ ଯାବୁଡ଼ି ଧରିଲା । ମୋର୍ ମନେହେଲା ଏଇ ହେଉଛି ଉପଯୁକ୍ତ ସୁଯୋଗ । ଏଇ ସୁଯୋଗରେ ମୁଁ ଲୋକଟାର ଆସ୍ତାନ ଯାଏ ପହଞ୍ଚି ଯାଇ ପାରିବି ।

ସେ ମୋ ହାତ ଧରିଲା । ଖାଲି ହାତ ନୁହେଁ, ଅର୍ଦ୍ଧେକ ଦେହଭାର ମୋ ଉପରେ ରଖି ଧୀରେ ଧୀରେ ଶିଡ଼ିର ପାହାଚ ଅତିକ୍ରମ କରୁଥିଲା । ଶେଷରେ ଆମେ ତଳେ ପହଞ୍ଚିଲୁ । ଲୋକଟା ରାସ୍ତା ଉପରେ ଟଳି ଟଳି ହାତ ହଲାଇ ଟ୍ୟାକ୍‌ସିକୁ ଡାକିଲା । ଆଉ ମୋତେ ବି ଡାକିଲା ହାତଠାରି ।

ଟ୍ୟାକ୍‌ସି ଆସିଲା । ଲୋକଟା ଟ୍ୟାକ୍‌ସିକୁ ଉଠିବାବେଳେ ମୋର ହାତ ଧରି ଟାଣିଲା ଟ୍ୟାକ୍‌ସି ଭିତରକୁ । ମୋର ମନେହେଲା, ସୁଯୋଗଟା ନିଜେ ଇଚ୍ଛା କରି ଆସିଛି ଯେତେବେଳେ, ମୋର ଏତେ ସହଜରେ ଛାଡ଼ିଦେବା ଉଚିତ ହେବ ନାହିଁ । ଆଶଙ୍କା ଓ ଉତ୍ତେଜନା ମିଶ୍ରିତ କିପରି ଏକ ଭାବ ମୋ ସମଗ୍ର-ଶରୀରରେ ଫୁଟି ଉଠିଥିଲା । ମୁଁ ଯାଇ ସେଇ ଲୋକଟା ସହିତ ଟ୍ୟାକ୍‌ସିରେ ଉଠିଲି ।

ଟ୍ୟାକ୍‌ସିବାଲାକୁ ଲୋକଟା କ'ଣ ଗୋଟାଏ ଶବ୍ଦ ଉଚ୍ଚାରଣ କରି କହିଲା ଯେଉଁଟା କି ମୁଁ ବୁଝିପାରିଲି ନାହିଁ । ଟ୍ୟାକ୍‌ସି ଆଗେଇ ଚାଲିଲା ଆଗକୁ ।

ଏକ ସମୟରେ ଲୋକଟା ମୋତେ ଜାବୁଡ଼ି ଧରି ଅସଂଲଗ୍ନ ଭାଷାରେ କହିଲା : ତମେ ମୋର ପରମ ବନ୍ଧୁ । ତମକୁ ମୁଁ ଆଉ ଛାଡ଼ିବି ନାହିଁ ।

କିନ୍ତୁ ଟ୍ୟାକ୍ସିଟା ମେନ୍‌ରୋଡ଼ ଛାଡ଼ି ଏଥର ଗୋଟାଏ ଗଳି ରାସ୍ତାରେ ପଶିଲା ଏବଂ ଆଉ କିଛି ସମୟ ଚାଲିବା ପରେ ଗୋଟାଏ ଉପଗଳି ମୁଣ୍ଡରେ ଯାଇ ଠିଆ ହେଲା ।

ଟ୍ୟାକ୍ସିବାଲା ବାହାରି ଆସି ଦରଜା ଖୋଲି ଦେଲା । ଲୋକଟା ଟ୍ୟାକ୍ସିରୁ ଓହ୍ଲାଇ ପକେଟରୁ ଗୋଟାଏ ଶହେଟଙ୍କିଆ ନୋଟ୍ ବାହାର କରି, ଟ୍ୟାକ୍ସି ଚାଳକ ହାତକୁ ବଢ଼ାଇ ଦେଲା । ଟ୍ୟାକ୍ସି ଚାଳକ ଜୋର୍ ଗୋଟାଏ ସାଲ୍ୟୁଟ୍ ଦେଇ ମୋ ଆଡ଼କୁ ଚାହିଁଲା ।

ମୁଁ ସ୍ଥିର କରିପାରୁ ନଥିଲି, ରାତି ଦେଢ଼ଟା ବେଳେ ଏପରି ଏକ ଅପରିଚିତ ସଂକୀର୍ଣ୍ଣ ଗଳି ଭିତରେ, ଏକ ଭୀମକାୟ ମଦ୍ୟପ ବ୍ୟକ୍ତି ସହିତ ଆଗେଇବି କି ନାହିଁ ।

ଲୋକଟା କିନ୍ତୁ କେଇ ପାହୁଣ୍ଡ ଆଗେଇ ଯାଇ ପୁଣି ଫେରିଆସି, ଟ୍ୟାକ୍ସି ଭିତରକୁ ହାତ ବଢ଼ାଇ ମୋ ହାତ ଧରି ଟାଣିବାକୁ ଲାଗିଲା । ସେହିପରି ଅସଂଲଗ୍ନ ସ୍ୱରରେ କହିଲା : ଇଉ ଆର୍ ମାଇ ଫ୍ରେଣ୍ଡ, ଗୁଡ୍‌ଫ୍ରେଣ୍ଡ । ପ୍ଲିଜ୍, କମ୍ ଉଇଥ୍ ମି ।

ମୁଁ ଟ୍ୟାକ୍ସିରୁ ଓହ୍ଲାଇଗଲି । ଦେଖାଯାଉ କପାଳରେ ଯାହା ଥିବ ।

ଲୋକଟା ମୋ ହାତ ଧରି ମୋ ଉପରେ ଅର୍ଦ୍ଧେକ ଦେହଭାର ନଦି କେତେ ମିନିଟ୍ ଆଗେଇ ଯାଇ ଗୋଟାଏ କୋଠା ଦୁଆର ମୁହଁରେ ଠିଆ ହେଲା । କୋଠାଟା ନୀରବ, ନିସ୍ତବ୍ଧ, ଅନ୍ଧକାର । ପ୍ରାୟ ଦୁଇ ତିନି ମିନିଟ୍ ନୀରବରେ ଠିଆ ହେବା ପରେ ଦରଜାର କଡ଼ା ହଲେଇବାରେ ଲାଗିଲା । ଏତେ ଜୋର୍‌ରେ କଡ଼ା ହଲିଲା ଯେ, ମୁଁ ଭାବିଲି ଆଖପାଖ ଘରର ଲୋକମାନେ ନିଦରୁ ଉଠି ଆମ ଉପରେ ନିଶ୍ଚୟ ଚଢ଼ାଉ କରିବେ ।

କିନ୍ତୁ ସେପରି କିଛି ଅପ୍ରୀତିକର ଘଟଣା ଘଟିଲା ନାହିଁ । ଅଳ୍ପ ସମୟ ପରେ ସେଇ ଦରଜାଟା ଭିତରୁ ଖୋଲିଗଲା ଏବଂ ଲୋକଟି ମୋ ହାତଧରି ଟଳି ଟଳି ମୋତେ ଟାଣି ଟାଣି ଭିତରକୁ ପଶିଗଲା ।

ଘର ଭିତରେ ନୀଳ ଆଲୋକର ବନ୍ୟା ଖେଳି ବୁଲୁଥିଲା ।

ଗୋଟିଏ ସ୍ତ୍ରୀଲୋକ ଆସି ଆମକୁ ଦରଜା ଖୋଲି ଦେଇଥିଲା । ଆମେ ଭିତରକୁ ପଶିବା ମାତ୍ରକେ ଦରଜାଟା ସେ ଭିତରୁ ବନ୍ଦ କରି ଦେଇ ଅଙ୍ଗବାସ ସଜାଡୁ ସଜାଡୁ ଅନ୍ୟ ଘରକୁ ଚାଲିଗଲା ।

ଲୋକଟି ସେଇ ଘରେ ଗୋଟିଏ ସୋଫା ଉପରେ, ସେଇ ଅବସ୍ଥାରେ ଟଳି ପଡ଼ିଲା ।

ମୁଁ ନିର୍ବୋଧଙ୍କ ଭଳି ଘର ମଝିରେ କିଛି ସମୟ ଠିଆ ହୋଇ ଏଣେତେଣେ ଚାହିଁଲି ।

ଘର ଭିତରଟା ଗୋଟିଏ ଡ୍ରଇଂରୁମ୍ ପରି ମନେ ହେଉଥିଲା ଏବଂ ଘରଟା ନିଶ୍ଚୟ ଜଣେ ରୁଚିଶୀଳ ଭଦ୍ରଲୋକର ହୋଇଥିବ ବୋଲି ମୋର ଧାରଣା ହୋଇଥିଲା । କିନ୍ତୁ ଏତେ ରାତିରେ ବର୍ତ୍ତମାନ ମୁଁ ଯିବି କୁଆଡ଼େ ? ସେ ଲୋକଟା ସୋଫା ଉପରେ ହୁଏତ ଶୋଇ ପଡ଼ିଲାଣି । ଘର ଭିତରେ ଅନ୍ୟ କିଏ ଅଛନ୍ତି ମୋର ଧାରଣା ନାହିଁ । ମୁଁ ଚାରି ପାଞ୍ଚ ମିନିଟ୍ ସ୍ତବ୍ଧ ହୋଇ ଠିଆ ହେବା ପରେ ସ୍ଥିର କଲି କବାଟ ଖୋଲି ଘରୁ ବାହାରି ଚାଲିଯିବି ।

କିନ୍ତୁ ମୋ ସିଦ୍ଧାନ୍ତ କାର୍ଯ୍ୟକାରୀ କରିବା ପୂର୍ବରୁ ଜଣେ ମହିଳା ଘରେ ପ୍ରବେଶ କଲେ । ଖୁବ୍ ସଂଯତ ବେଶଭୂଷା । ମୋ ପାଖକୁ ଆଗେଇ ଆସି କହିଲେ : ଆପଣ ଆଜି ୟାଙ୍କୁ ସାହାଯ୍ୟ କରି ନଥିଲେ, ୟାଙ୍କର ଅବସ୍ଥା କ'ଣ ଯେ ହୋଇଥାଆନ୍ତା... ଏକପ୍ରକାର କାନ୍ଦ କାନ୍ଦ ସ୍ୱରରେ ସେହି ମହିଳା ପୁଣି କହିଲେ, ପ୍ରାୟ ଅଧିକାଂଶ ଦିନ ୟାଙ୍କର ଏହି ଅବସ୍ଥା । ଦିନେ ଦିନେ ମୋତେ ଯାଇ ରାସ୍ତାକଡ଼ରୁ ୟାଙ୍କୁ ଗୋଟେଇ ଆଣିବାକୁ ହୋଇଥାଏ ।

ଆପଣ ବସନ୍ତୁ । ଏତେ ରାତିରେ ଆପଣ ଆଉ ଯିବେ କୁଆଡ଼େ ! ଆପଣ ମୋର ଆଜି ଯେଉଁ ଉପକାର କରିଛନ୍ତି, ମୁଁ ଜୀବନରେ ଭୁଲିପାରିବି ନାହିଁ ।

ଭଦ୍ର ମହିଳାଙ୍କର ସଂଯମ ଓ ବିନୀତ ବ୍ୟବହାର ମୋତେ ମୁଗ୍ଧ କରିଥିଲା । ମୁଁ କହିଲି : ନା, ରାତି ଅଧିକ ହୋଇଥିଲେ ବି ମୁଁ ଚାଲିଯାଇପାରିବି । ଆପଣ ମୋ ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣ ବରଂ ଆପଣଙ୍କ ସ୍ୱାମୀଙ୍କୁ ଧରି ଘର ଭିତରକୁ ନେଇ ଯାଆନ୍ତୁ ।

ଭଦ୍ରମହିଳା ଏତେ ଦୁଃଖରେ ବି ହସି ପକାଇଲେ । କହିଲେ : ସେ କାଲି ଦିନ ଦଶଟା ଏଗାରଟା ଯାଏ ଏଇଠି ପଡ଼ି ରହିବେ । ଏଠୁ ଆଉ ତାଙ୍କୁ ଉଠେଇବାର ଶକ୍ତି କାହାରି ନାହିଁ । ଆମର ଆହୁରି ଅନେକ ଘର ଅଛି । ଆପଣ ମୋ କଥା ମାନି ଆଜି ରାତିଟା ରହିଯାଆନ୍ତୁ । ଆଜିକାଲି ସହରର ପରିସ୍ଥିତି ଯାହା, ଆପଣ ଏତେ ରାତିରେ ଚାଲିଯିବା ବୋଧହୁଏ ସମୀଚୀନ ହେବ ନାହିଁ ।

ଭଦ୍ର ମହିଳାଙ୍କ କଥା ମିଥ୍ୟା ନୁହେଁ ।

କିଛି ସମୟ ଚିନ୍ତା କରି କହିଲି : ମୁଁ ବରଂ ଏଇ ଘରେ ଏଇ ସୋଫା ଉପରେ ବସି ବସି ଶୋଇ ପଡୁଛି । ପ୍ରାୟ ଦୁଇଟା ତ ବାଜିଲାଣି, ଆଉ ଦୁଇ ଅଢ଼େଇ ଘଣ୍ଟା ପରେ ରାତି ପାହିଯିବ । ତେଣୁ ଆପଣ ମୋ ପାଇଁ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ ।

ମୁଁ ଗୋଟାଏ ସୋଫା ଉପରେ ବସିଲି ।

ଭଦ୍ରମହିଳା କିନ୍ତୁ ମୋ ସାମ୍ନାରେ ଠିଆ ହୋଇ ରହିଲେ । ତାଙ୍କର ସଂଯତ ବେଶବାସ ଓ ଭଦ୍ର ବ୍ୟବହାରରେ ମୋର ମନେ ହୋଇଥିଲା, ଭଦ୍ରମହିଳା ହୁଏତ କୌଣସି ଭଦ୍ର ଘରର କନ୍ୟା । ଏପରି ଏକ ସ୍ୱାମୀର ଘର କରିବାକୁ ଆସିଛନ୍ତି, ଶେଷରେ ତାଙ୍କର କପାଳ ପୋଡ଼ିଛି । ତଥାପି ନିରୁପାୟ । ତାଙ୍କର ହୁଏତ ପରିସ୍ଥିତି ବିରୁଦ୍ଧରେ କରିବାର କିଛି ନାହିଁ ।

ଭଦ୍ରମହିଳାଙ୍କୁ ଛିଡ଼ା ହୋଇ ରହିଥିବାର ଦେଖି ମୋତେ ଭଲ ଲାଗିଲା ନାହିଁ । ମୁଁ କହିଲି : ଆପଣ ବିଶ୍ରାମ କରିବେ ଯାଆନ୍ତୁ । ମୋ ପାଇଁ ଅଯଥାରେ...

ମୋର କଥା ଶେଷ ହେଲା ନାହିଁ । ଦରଜାରେ ବାହାରୁ କିଏ କରାଘାତ କରିବାର ଶୁଣାଗଲା । ଭଦ୍ରମହିଳା ହଠାତ୍ ବିଚଳିତ ହୋଇ ପଡ଼ିଲେ । ସେ ମୁହୂର୍ତ୍ତେ ବିଳମ୍ୱ ନ କରି ମୋ ପାଖକୁ ଛୁଟିଆସି, ମୋର ହାତଟାକୁ ଧରି ପକାଇ କହିଲେ : ନା ନା, ଆପଣ ଅନ୍ୟ ଘରକୁ ଚାଲିଯାଆନ୍ତୁ । ସେମାନେ ଆସିଗଲେଣି । ସେମାନେ ହୁଏତ ଆପଣଙ୍କର ଅସମ୍ମାନ କରିବେ ।

ମୁଁ ହଠାତ୍ କିଛି ବୁଝିପାରିବା ପୂର୍ବରୁ ଭଦ୍ରମହିଳା ମୋତେ ଟାଣି ଟାଣି ନେଇ ଭିତରେ ଗୋଟାଏ ଅନ୍ଧକାର ଘରେ ମୋତେ ଛାଡ଼ିଦେଇ ଆସିଲେ । ମନେହେଲା ବାହାରୁ ବୋଧହୁଏ ଦରଜାର ଶିକୁଳି ଲଗାଇ ଦେଇଗଲେ ।

ମୁଁ ଏକ ସମସ୍ୟାରେ ପଡ଼ିଗଲି ।

ଅନ୍ଧକାର ସେଇ ଘର ଭିତରେ ନୀରବରେ କିଛି ସମୟ ଠିଆ ହୋଇ ରହିବା ପରେ, ମୁଁ ଦରଜାଟାକୁ ଟାଣିବାକୁ ଚେଷ୍ଟା କଲି । ହଁ, ଦରଜାଟା ବାହାରୁ ବନ୍ଦ । ବାହାରେ କିନ୍ତୁ କେଉଁମାନଙ୍କର ପାଟିଗୋଳ ଶୁଭୁଥିଲା ।

ଧୀରେ ଧୀରେ ଅନ୍ଧକାରରେ ମୋ ଆଖି ଅଭ୍ୟସ୍ତ ହୋଇଯିବା ପରେ ମୁଁ ପଛକୁ ଚାହିଁ ଦେଖିଲି, ଘରଟା ବୋଧହୁଏ ଭଦ୍ରମହିଳାଙ୍କର ଶୋଇବା ଘର । ଗୋଟାଏ ଖଟ ପଡ଼ିଛି,

ଆଲମାରୀ ଅଛି ଏବଂ...

ମୁଁ ହଠାତ୍ ଚମକି ପଡ଼ିଲି । ଖଟ ଉପରୁ କିଏ ଜଣେ ଉପରକୁ ହାତ ଟେକିବା ପରି ମୋର ମନେହେଲା ।

ଆଉ କେତୋଟି ମୁହୂର୍ତ୍ତ ନୀରବରେ ଠିଆ ହୋଇ ଯେତେବେଳେ ମୁଁ ଖଟ ପାଖରେ ଯାଇ ଠିଆ ହେଲି, ମୁଁ ସେଇ ଖଟ ଉପରେ ଶୋଇଥିବା ଜଣେ କାହାର ଅସ୍ତିତ୍ୱ ଅନୁଭବ କଲି । ଶ୍ୱାସ ପ୍ରଶ୍ୱାସର ଶବ୍ଦ ବାରିଲି । ଆଶ୍ଚର୍ଯ୍ୟ । ମୁଁ ତେବେ କ'ଣ...

ବାହାରେ ସେଇ ଭଦ୍ରମହିଳାଙ୍କର କଣ୍ଠସ୍ୱର ଶୁଣାଗଲା । ସେ ଯେପରି କାହା ସହିତ ଖୁବ୍ ବିରୋଧୀତା କରୁଛନ୍ତି ।

ଅନ୍ୟ ଦୁଇଟି ପୁରୁଷର କର୍କଶ ସ୍ୱର : ନା, ନା, ତୁମେ ତାକୁ ଘଣ୍ଟ ଘୋଡ଼ାଇ ରଖିପାରିବ ନାହିଁ । ଆମେ ତାକୁ ନେବାକୁ ଆସିଛୁ । ନେଇକରି ଯିବୁ ।

ଭଦ୍ର ମହିଳା କହୁଛନ୍ତି : ଅନ୍ତତଃ ମୋ ଘରେ ଭଦ୍ରଲୋକଙ୍କ ପ୍ରତି କୌଣସି ପ୍ରକାର ଅଶୋଭନ ଆଚରଣ ମୁଁ କରାଇ ଦେବି ନାହିଁ । ଆପଣମାନେ ଯାଆନ୍ତୁ । ଅନ୍ୟଦିନ ଅନ୍ୟ ସ୍ଥାନରେ...

ହଠାତ୍ ଭଦ୍ରମହିଳାଙ୍କ କଥା ବନ୍ଦ ହୋଇଗଲା ଏବଂ ଦରଜାଟା ଝଣଝଣ ହୋଇ ଖୋଲିଯିବାର ଶବ୍ଦ ଶୁଣାଗଲା । ମୁଁ ଖଟତଳେ ପଶିଯିବାକୁ ଚେଷ୍ଟା କରୁଥିଲି, କିନ୍ତୁ ଘର ଭିତରେ ଆଲୋକର ବନ୍ୟା ଖେଳିଗଲା ।

ଦୁଇଜଣ ଲୋକଙ୍କ ପଛରେ ମୋର ଆଶ୍ରୟଦାତ୍ରୀ ଭଦ୍ରମହିଳା । ମନେହେଉଥିଲା ସେ ଯେପରି ଏଇ ଲୋକ ଦୁଇଜଣଙ୍କ ଉପରେ ଖୁବ୍ ଅସନ୍ତୁଷ୍ଟ । ଘର ଭିତରେ ସେମାନଙ୍କୁ ଦୂରକୁ ଠେଲି ଦେଇ ମୋ ସାମ୍ନାକୁ ଆଗେଇ ଆସି, ଦୁଇହାତ ବିସ୍ତାର କରି ମୋତେ ଘଣ୍ଟ ଘୋଡ଼େଇ ଠିଆ ହେଲା ପରି କହିଲେ : ଆପଣମାନେ ମୋ ଘରେ ମୋ ଅତିଥିଙ୍କ ସହିତ କୌଣସି ଦୁର୍ବ୍ୟବହାର କରିପାରିବେ ନାହିଁ ।

ମୁଁ ଦେଖିଲି ଲୋକ ଦୁଇଟିଙ୍କୁ । ବେଶ ପୋଷାକରେ ବେଶ୍ ସମ୍ଭ୍ରାନ୍ତ । ମୋର ଆଗରୁ କେବେ କୌଣସିଠାରେ ପରିଚୟ ନାହିଁ ଏମାନଙ୍କ ସହିତ । ଆଜି ହଠାତ୍... ଏତେ ରାତିରେ... ମୋ ପଛେ ପଛେ... କାରଣ କ'ଣ ?

ମୁଁ ବରଂ ସାହସ କରି ପାଦେ ଆଗେଇ ଯାଇ ଲୋକ ଦୁଇଜଣଙ୍କୁ ପଚାରିଲି : ଘଟଣା କ'ଣ ?

ସେମାନଙ୍କ ଭିତରୁ ଜଣେ ମୋତେ ପ୍ରଶ୍ନ କଲା : ଆପଣଙ୍କ ନାମ ସଞ୍ଜୀବ ରାୟ ?

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

ପୁଣି ସେ ପ୍ରଶ୍ନ କଲା : ଆପଣ 'ନୟାସମାଜ'ର ରିପୋର୍ଟର ?

ମୁଁ ଆଉଥରେ ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

: ଆପଣ ଅଞ୍ଜନା ସାନ୍ୟାଲ୍‌କୁ ଚିହ୍ନନ୍ତି ?

: ଅଞ୍ଜନା ସାନ୍ୟାଲ ? ନାଁଟା ମୋର ଅପରିଚିତ । ତେଣୁ ସ୍ତବ୍ଧ ହୋଇ ମୁଁ ଲୋକଟା ମୁହଁକୁ ଚାହିଁଥିଲି ।

ଆର ଲୋକଟି କହିଲା : ଅଞ୍ଜନାକୁ ସେ ଚିହ୍ନି ନାହିଁ ? ତମେ ଏପରି ବୋକାଙ୍କ ପରି କ'ଣ ତାକୁ ପଚାରୁଛ ?

ପ୍ରକୃତରେ ମୁଁ ସ୍ତବ୍ଧ ହୋଇଯାଇଥିଲି । ଯେତେ ମନେକରି ମଧ୍ୟ ଅଞ୍ଜନା ନାମ୍ନୀ କୌଣସି ଝିଅକୁ ମୋର ମନେ ପଡୁ ନଥିଲା ।

ଲୋକଟି ପୁଣି କହିଲା : ଆମ ସହିତ ଚାଲିଆସନ୍ତୁ । ଅଞ୍ଜନାର ବାପା ଆମକୁ ପଠାଇଛନ୍ତି । ଘଟଣାଟାକୁ ବେଶି ଘଣ୍ଟାଚକଟା କରିବା ଆଦୌ ଭଲ ନୁହେଁ । ଆପଣ ସମାଜରେ ଜଣେ ସମ୍ମାନନୀୟ ଲୋକ । ତେଣୁ ଭଲରେ ଭଲରେ ସମସ୍ୟାଟାର ସମାଧାନ ହୋଇଯିବା ଭଲ ।

ଲୋକଟାର କଥାବାର୍ତ୍ତାରୁ ମୁଁ କିଛି ବୁଝିପାରୁ ନଥିଲି । କିନ୍ତୁ ମନେମନେ ମୁଁ ଭୟ ପାଇଯାଉଥିଲି । ମୋର ମନେହେଉଥିଲା, ଯେପରି ଗୋଟାଏ କିଛି ଦୁର୍ଘଟଣା ଘଟିବାକୁ ଯାଉଛି ।

ଆମର କଥାବାର୍ତ୍ତା ମଝିରେ ଭଦ୍ରମହିଳା ଧୀରେ ଧୀରେ ଆଡ଼େଇ ହୋଇ ଯାଉଥିଲେ । ଏପରିକି ଏକ ସମୟରେ ସେ ଆମ ମଝିରୁ ଘୁଞ୍ଚିଯାଇ ଦରଜା ପାଖରେ ଠିଆ ହେଲେ ।

ମୁଁ କହିଲି : ମୋତେ ଆପଣମାନେ କେଉଁଠାକୁ ଯିବାକୁ କହୁଛନ୍ତି ?

: ଅଞ୍ଜନା ଘରକୁ ।

: ଅଞ୍ଜନା କେଉଁଠି ରୁହେ ?

ଆର ଲୋକଟି ମୋ ପ୍ରଶ୍ନର ଉତ୍ତରରେ ହସିଉଠି କହିଲା : ଆବେ ଗୁରୁ, ମୁଁ ଦେଖୁଛି ରାୟସାହେବ ସବୁ ଭୁଲିଗଲେଣି । ଅଞ୍ଜନା ସହିତ ଏତେ ଦହରମ ମହରମ, ଏବେ କ'ଣ ନା ଅଞ୍ଜନାକୁ ମୁଁ ଚିହ୍ନି ନାହିଁ । ଆବେ ଗୁରୁ, ଆବେ ଏଇଟା ଇସ୍‌ପାତବେ, ଇସ୍‌ପାତ । ଭାଂଗିବ ପଛକେ ନଇଁବ ନାହିଁ ।

ବାହାରୁ ଗୋଟାଏ କ'ଣ ଚିତ୍କାର ଶୁଭିଲା ।

ମୁଁ ଦେଖିଲି ମୋର ଏକମାତ୍ର ସହାୟିକା ସେହି ମହିଳା ଜଣକ ଘରୁ ବାହାରି ଚାଲିଗଲେ । ମୋ ସାମ୍‌ନାରେ ଦୈତ୍ୟ ପରି ଦୁଇଜଣ ଲୋକ । ଏହାପରେ ମୋର ଆତ୍ମସମର୍ପଣ କରିବା ଛଡ଼ା ଅନ୍ୟ ଉପାୟ ନଥିଲା । ମୁଁ ମନେ ମନେ ପରିସ୍ଥିତିର ଜଟିଳତା ଅନୁଭବ କରି ଆତ୍ମସମର୍ପଣ ପାଇଁ ପ୍ରସ୍ତୁତ ହେଉଥିଲି । ପଚାରିଲି : ଅଞ୍ଜନାର ବାବା ବର୍ତ୍ତମାନ କେଉଁଠି ଅଛନ୍ତି ?

: ସେ ଠିକଣା ଜାଗାରେ ଅଛନ୍ତି । ଆମେ ଗାଡ଼ିରେ ନେଇ ତମକୁ ସେଠି ପହଞ୍ଚେଇ ଦେବୁ । ତେଣୁ ଦୁଶ୍ଚିନ୍ତାର କିଛି କାରଣ ନାହିଁ ।

ମୁଁ ଯିବି କି ନାହିଁ କିଛି ଠିକ୍ କରିବା ପୂର୍ବରୁ ହଠାତ୍ ଖଟ ଉପରେ ଶୋଇଥିବା ତରୁଣୀଟି କଡ଼ ଲେଉଟାଇଲା ।

ମୁଁ ଚମକି ଉଠିଲି : ଏଁ... ଏ ଯେ ସୁମିତା...

ଭଲକରି ସେଇ ତରୁଣୀଟିର ମୁହଁଟି ଦେଖିବା ପୂର୍ବରୁ ଘରର ଲାଇଟ୍ ଲିଭିଗଲା ଏବଂ ଅନ୍ଧକାର ଭିତରେ ମୁଁ ଅନୁଭବ କଲି, ପୂର୍ବରୁ ଘରେ ଠିଆ ହୋଇଥିବା ସେଇ ଲୋକ ଦୁଇଜଣ ଆସି ମୋର ହାତ ଦୁଇଟି ଧରି ଠିଆ ହୋଇଛନ୍ତି ।

ମୁଁ ଆଉ ଦ୍ୱିତୀୟ କଥା ଚିନ୍ତା ନ କରି କହିଲି : ଚାଲନ୍ତୁ ।

ସେମାନେ ମୋର ହାତ ଛାଡ଼ିଦେଲେ ।

ମୋର ଦୁଇ ପାଖରେ ମୋତେ ଗାର୍ଡ଼ କଲା ପରି ମୋ ସାଂଗେ ସାଂଗେ ଆଗେଇବାରେ ଲାଗିଲେ । ଆମେ ପୁଣି ସେଇ ଡ୍ରଇଂ ରୁମ୍ ଭିତରେ ପଶିଲୁ । ରିଜେଣ୍ଟ ହୋଟେଲରୁ ଯେଉଁ

ଲୋକଟି ପଛେ ପଛେ ମୁଁ ଏତେବାଟ ଯାଏ ଛୁଟି ଆସିଥିଲି, ସେ ଲୋକଟା ପୂର୍ବ ପରି ସୋଫା ଉପରେ ଅଚେତ୍ ହୋଇ ପଡ଼ିଥିଲା । ଡ୍ରଇଂ ରୁମ୍‌ରେ ସେହିପରି ନୀଳ ଆଲୋକ ଜଳୁଥିଲା ।

କିନ୍ତୁ ସେହି ମହିଳାଟି !

ଯିଏ ମୋ ସହିତ ଖୁବ୍ ଆନ୍ତରିକ ବ୍ୟବହାର କରିଥିଲେ !

ଏଣେତେଣେ ଚାହିଁ ସେ ମହିଳାଙ୍କୁ ଆଉ କେଉଁଠି ଦେଖିଲି ନାହିଁ । ବାଧ୍ୟ ହୋଇ ଲୋକ ଦୁଇଜଣଙ୍କ ସହିତ ଘରୁ ବାହାରକୁ ବାହାରିଗଲି ।

ରାତ୍ରିର ନିସ୍ତବ୍ଧତା ପୂର୍ବ ପରି ବିରାଜମାନ କରୁଥିଲା ।

ଗଳି, ଶାଖାଗଳି, ଉପଗଳି, ତା'ପରେ ରାଜପଥ ।

ବଡ଼ ରାସ୍ତା ଉପରେ ଗୋଟାଏ କଳା ମଟର ଗାଡ଼ି ଠିଆ ହୋଇଥିଲା । ପଛ ସିଟ୍‌ରେ ମୋର ଦୁଇ ପାଖରେ ସେମାନେ ଦୁଇଜଣ ବସିଲେ । ଡ୍ରାଇଭର ଗାଡ଼ି ଛାଡ଼ିଦେଲା ।

ମୋର ଭୟଠାରୁ ଦୁର୍ଭାବନା ବେଶି ବଢ଼ି ଯାଇଥିଲା ।

ସେଇ ଘର ଭିତରେ, ଗୋଟିଏ ମୁହୂର୍ତ୍ତ ପାଇଁ ଯେଉଁ ମୁହଁଟି ମୋ ମାନସ ପଟରେ ଭାସି ଉଠିଲା, ମୋର ମନେହେଲା ସେ ମୁହଁଟା ସୁମିତା ଚନ୍ଦନର । ସୁମିତା ଚନ୍ଦନ ସେଠାରେ ସେପରି ଶୋଇଥିଲା କାହିଁକି ? ସେଇ ତେବେ କ'ଣ ସୁମିତା ଚନ୍ଦନର ଘର ?

କିନ୍ତୁ ସୁମିତା ଚନ୍ଦନ ଖୁବ୍ ଜଣେ ଧନୀ ପିତାର କନ୍ୟା । ସୁମିତା ଚନ୍ଦନର ପିତା ନିଶ୍ଚୟ ସେଇ ମାତାଲ ସ୍ମଗଲର ଲୋକଟା ହୋଇ ନ ପାରେ । କିନ୍ତୁ ସେଇ ଠିକ୍ ସୁମିତା ଚନ୍ଦନ ତ ? ସୁମିତା ଚନ୍ଦନ ତା'ହେଲେ କ'ଣ ସେଠାରେ ବନ୍ଦୀ ଜୀବନ ଅତିବାହିତ କରୁଛି ?

ମୁଁ ମୋ ପରିସ୍ଥିତିର କଥା ଭୁଲି ଯାଇଥିଲି ।

ମୁଁ ଯେ ଏକ ନାଗଫାଶରେ ଛନ୍ଦି ହୋଇ ପଡ଼ିଛି, ସେ କଥା ଧୀରେ ଧୀରେ ମୁଁ ହୃଦୟଙ୍ଗମ କରିପାରୁଥିଲି । ମୋର ହୁଏତ ସେଇ ମାତାଲ ଲୋକଟା ପଛରେ ଏତେବାଟ ଆଗେଇ ଆସିବା ଉଚିତ ହୋଇ ନାହିଁ । କିନ୍ତୁ ଘଟଣାଟା ଯେ ଗୋଲକ ଧନ୍ଦା ପରି ମନେହେଉଛି । ଏ ଘଟଣାର ମୂଳ କେଉଁଠି ?

\+ \+ \+

ଗାଡ଼ି ଯାଇ ଗୋଟିଏ ବଗିଚା ଭିତରେ ପଶିଲା ।

ପ୍ରଚୁର ଗଛବୃଛ ବେଷ୍ଟିତ ସେଇ କୋଠାଟି । ବଂଲୋ ପାଟର୍ଣ୍ଣର ଘର ପରି ମନେହେଉଥିଲା ।

ଆମେ ତିନିଜଣ ଗାଡ଼ିରୁ ଓହ୍ଲାଇଲୁ ।

ସେମାନେ ଦୁଇଜଣ ମୋର ଦୁଇ ପାଖରେ ଚାଲୁଥିଲେ । ସୁନ୍ଦର ପରିଚ୍ଛନ୍ନ ଗୋଟାଏ ଘର ଭିତରକୁ ମୋତେ ନେଇ ଛାଡ଼ିଦେଲେ । ବାହାରୁ ଦରଜା ବନ୍ଦ ହୋଇଗଲା । ସେମାନେ କେହି ଆଉ ଭିତରକୁ ଗଲେ ନାହିଁ ।

ମୁଁ ଦେଖିଲି ଘରଟି ଖୁବ୍ ସୁନ୍ଦର । ସାଜସଜ୍ଜା ନିଖୁଣ । ଗୋଟାଏ ବେଡ୍‌ରୁମ୍ । ଘର ଭିତରେ ଧୀର ଆଲୋକ ଜଳୁଥିଲା । ଖଟ ଉପରେ ସଫା ଚାଦର ବିଛା ହୋଇଥିଲା ।

ଗୋଟିଏ ସୋଫାସେଟ୍ ବି ପଡ଼ିଥିଲା । ଦୁଇଟି ପୁସ୍ତକପୂର୍ଣ୍ଣ ଆଲମିରା ବି ଘର ଭିତରେ ଥିଲା ।

ମୁଁ ସ୍ତବ୍ଧ ହୋଇ କିଛି ସମୟ ଠିଆହୋଇ ରହିଲି ଘର ଭିତରେ ।

ଚାରିଆଡ଼କୁ ଚାହିଁଲି କିଛି ସମୟ । ତା'ପରେ ଧୀରେ ଧୀରେ ଯାଇ ବସିଲି ଗୋଟିଏ ସୋଫା ଉପରେ ।

ଘରେ କେହି ନାହିଁ । କୌଣସି ଶବ୍ଦ ନାହିଁ । ମୁଁ ଯେପରି ମୋ ନିଜ ଘରେ ନିଶ୍ଚିନ୍ତରେ ବିଚରଣ କରୁଛି ।

ହାତଘଡ଼ିକୁ ଚାହିଁ ଦେଖିଲି, ସାଢ଼େ ତିନିଟା ।

କିନ୍ତୁ ମୁଁ ବୁଝିପାରୁ ନଥିଲି ମୋତେ କାହିଁକି ଏଠାକୁ ଅଣା ହୋଇଛି । ଏ ଘର କାହାର । ଅଞ୍ଜନା ସାନ୍ୟାଲ କିଏ ଏବଂ ଅଞ୍ଜନା ସାନ୍ୟାଲ ସହିତ ମୋତେ ବା କାହିଁକି ଜଡ଼େଇ ଧରା ହୋଇଛି ।

ନୀରବରେ କେତୋଟି ମୁହୂର୍ତ୍ତ ଅତିବାହିତ ହୋଇଗଲା । ମୁଁ ଭୀଷଣ ଦୁଶ୍ଚିନ୍ତାରେ ପଡ଼ି ଯାଇଥିଲି । ମୋର ମନେ ହେଉଥିଲା, କୌଣସି ଅଦୃଶ୍ୟ ଶକ୍ତି ମୋତେ ହୁଏତ ବନ୍ଦୀ କରି ସାରିଛି । ବର୍ତ୍ତମାନ ମୁଁ ନିରୁପାୟ ।

ମୁଁ ଉଠି ଠିଆ ହେଲି । ଦରଜା ପାଖକୁ ଯାଇ ପରୀକ୍ଷା କରି ଦେଖିଲି ।

: ନା, ଦରଜାଟା ବାହାରୁ ବନ୍ଦ ମିଷ୍ଟର ରାୟ ।

ବୁଲି ଅନାଇଲି । ଜଣେ ବୟସ୍କ ସମ୍ଭ୍ରାନ୍ତ ବ୍ୟକ୍ତି । ରାତ୍ରି ପୋଷାକରେ ଅଙ୍ଗ ଆବୃତ୍ତ କରି ଆଉ ଏକ ପଥ ଦେଇ ଘର ଭିତରେ ପ୍ରବେଶ କରିଛନ୍ତି । ଠିକ୍ ମୋରି ପଛରେ, ସୋଫା ପାଖରେ ଠିଆ ହୋଇଛନ୍ତି ।

ମୁଁ ଧୀରେ ଧୀରେ ସେହି ଭଦ୍ରଲୋକଙ୍କ ପାଖକୁ ଆଗେଇ ଆସିଲି ।

ଭଦ୍ରଲୋକ ପାଟିରୁ ପାଇପ୍ କାଢ଼ି ଗୋଟିଏ ସୋଫା ଉପରେ ବସୁ ବସୁ କହିଲେ : ମୋ ନାଁ ପ୍ରଣବ ସାନ୍ୟାଲ ।

: ମୁଁ ସ୍ତବ୍ଧ ହୋଇ ଠିଆ ହୋଇଥିଲି । ଘଟଣାଗୁଡ଼ାକ ଏପରି ଅପ୍ରତ୍ୟାଶିତ ଭାବରେ ଏବଂ ଏତେ ଦ୍ରୁତ ଗତିରେ ଘଟୁଥିଲା ଯେ, ମୁଁ କୌଣସିଟାକୁ ବୁଝିପାରୁ ନଥିଲି ।

ପ୍ରଣବ ସାନ୍ୟାଲ ପୁଣି କହିଲେ : ବସ ସଞ୍ଜୀବ । ତମ ସହିତ ମୋର ଅନେକ କଥା ଅଛି । ତମେ ମୋର ପୁତ୍ର ବୟସ୍କ । ତେଣୁ ଆଜ୍ଞା ଆପଣ କହି ତୁମକୁ ଲଜ୍ଜା ଦେଉ ନାହିଁ ।

ମୁଁ କିନ୍ତୁ ଭଦ୍ରଲୋକଙ୍କ ମୁହଁକୁ ନିର୍ନିମେଷ ଆଖିରେ ଚାହିଁଥିଲି । ପ୍ରଶସ୍ତ କପାଳ, ଚଉଡ଼ା ଭ୍ରୁରୁ, ଗୋଟାଏ ମୋଟା ଲେନ୍ସର ଚଷମା ତଳେ ଯେଉଁ ତୀକ୍ଷ୍ଣ ଚାହାଣି ଜଳି ଉଠୁଥିଲା, ସେପରି ଚାହାଣିର କେବେ ମୁଁ ସମ୍ମୁଖୀନ ହୋଇ ନଥିଲି ।

ପୁଣି ପ୍ରଣବ ସାନ୍ୟାଲ ମୋତେ ବସିବାକୁ କହିଲେ । ଏଥର କିନ୍ତୁ ଗଳାର ସ୍ୱର ତାଙ୍କର କର୍କଶ ମନେହେଲା । ମୁଁ ଚୁପ୍ କରି ଗୋଟାଏ ସୋଫା ଉପରେ ବସି ପଡ଼ିଲି ।

ପ୍ରଣବ ସାନ୍ୟାଲ ପୁଣି କହିଲେ : ଘରଟି ତମର ପସନ୍ଦ ହୋଇଛି ସଞ୍ଜୀବ ?

: ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

ପ୍ରଣବ ସାନ୍ୟାଲଙ୍କ ମୁହଁରେ ଯେପରି ପ୍ରସନ୍ନତା ଫୁଟି ଉଠିଲା । ସେ କହିଲେ : ମୁଁ ଜାଣେ ଏ ଘର ତମର ପସନ୍ଦ ହେବ । କାରଣ ମୁଁ ମୋ ନିଜ ତତ୍ତ୍ୱାବଧାନରେ ଘରଟିକୁ

ସଜାଇଛି । ଆଲମାରୀର ବହି ସବୁ ଦେଖିଛ ? ସବୁ ମୋ ନିଜ ହାତରେ କିଣା । ତମେ ଜଣେ ଜର୍ଣ୍ଣାଲିଷ୍ଟ । ବାଛି ବାଛି ଦେଶବିଦେଶର ଜର୍ଣ୍ଣାଲିଜିମ୍ ସମ୍ବନ୍ଧରେ ବହି ସବୁ କିଣି ଆଣିଛି । ଅବସର ସମୟରେ ବହି ପଢ଼ି ସମୟ କଟାଇ ଦେବି । ତମର ଏଠାରେ ମୋଟେ କୌଣସି ଅସୁବିଧା ହେବ ନାହିଁ । ତମେ ମନ ଖୁସିରେ ଲେଖାପଢ଼ା କରି ସମୟ କଟାଇ ପାରିବ ।

: କିନ୍ତୁ ସାର୍...

ପ୍ରଣବ ସାନ୍ୟାଲଙ୍କ ବ୍ୟକ୍ତିତ୍ୱ ମୋତେ ସାର୍ କହିବାକୁ ବାଧ କରିଥିଲା । ମୋର ଅଜାଣତରେ ମୋ ମୁହଁରୁ 'ସାର୍' ବାହାରି ଯାଇଥିଲା ।

ପ୍ରଣବ ସାନ୍ୟାଲ ବାଧା ଦେଇ କହିଲେ : ମୁଁ ତମର କୌଣସି କଥା ଶୁଣିବି ନାହିଁ ସଞ୍ଜୀବ । ମୁଁ ତୁମକୁ ଜାଣେ, ତମ ସମ୍ବନ୍ଧରେ ମୁଁ ଅନେକ କଥା ଶୁଣିଛି । ତମ କର୍ତ୍ତବ୍ୟ ନିଷ୍ଠା ସମ୍ବନ୍ଧରେ ମୁଁ ମଧ୍ୟ ସନ୍ତୁଷ୍ଟ । ମୋର ଅକଳନ ସମ୍ପତ୍ତି । ସମାଜରେ ଯଥେଷ୍ଟ ପ୍ରତିପତ୍ତି । ତମର ସମ୍ମାନ ହାନିକର କିଛି ହେବ ନାହିଁ । ଖାଲି ସେତିକି ନୁହେଁ, ମୁଁ ଆଧୁନିକ ଯୁଗର ଜଣେ ନାଗରିକ । ଆଧୁନିକ ଚିନ୍ତାଧାରାରେ ମୁଁ ଉଦ୍‌ବୁଦ୍ଧ । ତଥାପି ସଞ୍ଜୀବ, ମୋତେ ଥରେ ତମର ପଚାରିବା ଉଚିତ ଥିଲା ।

: କିନ୍ତୁ ସାର୍...

ପୁଣି ପ୍ରଣବ ସାନ୍ୟାଲ ମୋତେ ବାଧା ଦେଲେ । କିଛି କୁହାଇ ଦେଲେ ନାହିଁ । ସେ କହିଲେ : ହୁଏତ ତମର ମୋ ସହିତ ସିଧା ସଳଖ କଥା ହେବାର ସତ୍ ସାହସ ନଥିଲା । ହୁଏତ ତମେ ମୋ ସାମ୍‌ନାକୁ ଆସିବାକୁ ଭରସା କରିପାରି ନଥିଲ, କିନ୍ତୁ ସମାଜରେ ତମର ପେଶା ସତ୍ ଓ ମହତ୍ ହୋଇଥିବାରୁ, ତମେ ସମସ୍ତଙ୍କୁ ସେହି ଦୃଷ୍ଟିରୁ ଦେଖିବା ଉଚିତ ଥିଲା । କିନ୍ତୁ ତମେ କାହିଁକି ଯେ...

ପ୍ରଣବ ସାନ୍ୟାଲ କଥା ଅସମାପ୍ତ ରଖି ପାଇପ୍‌ରେ ଅଗ୍ନି ସଂଯୋଗ କଲେ ।

ମୁଁ କହିଲି : କ୍ଷମା କରିବେ ସାର୍ । ମୁଁ ଆପଣଙ୍କ କଥାରୁ କିଛି ବୁଝିପାରୁ ନାହିଁ । ମୋତେ ଆଉ ଟିକିଏ ଖୋଲା ଖୋଲି ଭାବରେ ସବୁ କଥା କୁହନ୍ତୁ ।

ପ୍ରଣବ ସାନ୍ୟାଲ ପାଇପ୍‌ରୁ ଦୁଇ ତିନିଥର ଧୂଆଁ ଛାଡ଼ି, ଘରଟାକୁ ସାମାନ୍ୟ ଧୂମାୟିତ କରି କହିଲେ : ମୁଁ ଅଞ୍ଜନା କଥା କହୁଛି । ଅଞ୍ଜନା ମୋର ଝିଅ ।

: କିନ୍ତୁ ଅଞ୍ଜନା, ଆପଣ ବିଶ୍ୱାସ କରନ୍ତୁ ସାର୍, ଅଞ୍ଜନା ନାଁଟା ମୋ ପାଖରେ ଅପ୍ରତ୍ୟାଶିତ ।

ମୁଁ ଲକ୍ଷ୍ୟ କଲି ପ୍ରଣବ ସାନ୍ୟାଲ ମୋଠାରୁ ଏପରି ଉତ୍ତର ଶୁଣି ରାଗିଲେ ନାହିଁ । ଖାଲି ତାଙ୍କ କପାଳର ରେଖାଗୁଡ଼ିକ କୁଞ୍ଚିତ ହୋଇ ଉଠିଲା । ସେ ପାଇପ୍‌ରେ ଆଉ ଦୁଇଟାଣ ଦେଇ କହିଲେ : ସଞ୍ଜୀବ ! ତମେ ଗରିବ ଘରର ପିଲା ହୋଇପାର, ମୁଁ ଆଶା କରୁଛି ତମେ ଭଦ୍ର ସନ୍ତାନ ହୋଇଥିବ । ମୁଁ ଅଞ୍ଜନାର ବାପା । ଅଞ୍ଜନାର ଭବିଷ୍ୟତ କଥା ନିଶ୍ଚୟ ମୁଁ ଚିନ୍ତା କରିବା କଥା । ମୁଁ ଇଚ୍ଛା କଲେ ଅଞ୍ଜନାକୁ କୌଣସି କୋଟିପତିର ସନ୍ତାନ ସହିତ ବିବାହ କରାଇ ଦେଇପାରନ୍ତି, କିନ୍ତୁ ଅଞ୍ଜନାର ଇଚ୍ଛା ତାହା ନୁହେଁ । ସେ ମୋ ଆଗରେ ତମର ନାମ ପ୍ରସ୍ତାବ କରିଛି । ଅଞ୍ଜନାର ଇଚ୍ଛା ବିରୁଦ୍ଧରେ ମୁଁ କିଛି କରିପାରିବି ନାହିଁ । କାରଣ ସେ ମୋର ଏକମାତ୍ର ସନ୍ତାନ । ସାତ ବର୍ଷ ବୟସରୁ ତା'ର ମା'କୁ ହରାଇଛି । ମୋରି କୋଳରେ ସେ

ବଢ଼ିଛି ଆଜିଯାଏ । ତା' ପ୍ରତି ମୋର ଯଥେଷ୍ଟ ଦୁର୍ବଳତା ଅଛି । ତେଣୁ ତା' କଥା ଭାଂଗିବା ମୋ ପକ୍ଷରେ ଅସମ୍ଭବ, ଅସମ୍ଭବ ସଞ୍ଜୀବ ।

ପ୍ରଣବ ସାନ୍ୟାଲଙ୍କ ଆଖି ବୋଧହୁଏ ଛଳଛଳ ହୋଇ ଆସିଲା । ଚଷମା କାଢ଼ି ରୁମାଲରେ ସେ ଆଖି ପୋଛିଲେ ।

ତା'ପରେ ନୀରବତା ।

ସେଇ ନୀରବତା ଭିତରେ ମୁଁ ବିବ୍ରତ ବୋଧ କଲି ।

ପ୍ରଣବ ସାନ୍ୟାଲ ମୋ ସହିତ ତାଙ୍କ ଝିଅ ଅଞ୍ଜନାର ବିବାହ ଦେବାକୁ ଚାହାନ୍ତି ! ଅଞ୍ଜନା ମୋତେ ବିବାହ କରିବା ପାଇଁ ତା' ବାପା ପାଖରେ ପ୍ରସ୍ତାବ ବାଢ଼ିଛି ।

କିନ୍ତୁ କିଏ ଏହି ଅଞ୍ଜନା ?

ତେବେ କ'ଣ ମୋର କୌଣସି ପରିଚିତ ଗୋଟିଏ ଝିଅର ଅନ୍ୟ ନାମ ଅଞ୍ଜନା ? ଅଞ୍ଜନା ସୁମିତା ନୁହେଁ ତ ? କିନ୍ତୁ ସେ ତ ସାନ୍ୟାଲ ନୁହେଁ, ଚନ୍ଦନ । ତେବେ ଆଉ କିଏ ହୋଇପାରେ ?

ପ୍ରଣବ ସାନ୍ୟାଲ ରୁମାଲରେ ଆଖି ପୋଛିସାରି ଆର୍ଦ୍ର କଣ୍ଠରେ କହିଲେ : ତେଣୁ ସଞ୍ଜୀବ ତମେ ଅରାଜି ହେବାର କିଛି କାରଣ ନାହିଁ । ଅବଶ୍ୟ ଯେଉଁ ଉପାୟରେ ତୁମକୁ ମୁଁ ଏଠାକୁ ଆଣିଛି, ସେ ଉପାୟ ଓ ପଥଟା କଥା ଚିନ୍ତା କରି ତମ ଧାରଣା ମୋ ପ୍ରତି ଖରାପ ହୋଇପାରେ । କିନ୍ତୁ ଏଇ ପଥ ଛଡ଼ା ଅନ୍ୟ କୌଣସି ପଥ ସେଇ ମୁହୂର୍ତ୍ତରେ ଆଉ ମୋତେ ମିଳିଲା ନାହିଁ । ମିଳିଥିଲେ ବି ଏତେ ସହଜରେ ହୋଇପାରି ନଥାନ୍ତା । ଯାହାହେଉ ତୁମକୁ ମୁଁ ସାତଦିନ ସମୟ ଦେଉଛି । ତମେ ଚିନ୍ତା କର, ମୋ ସମ୍ବନ୍ଧରେ ତମର ଧାରଣା ଦୃଢ଼ ହେଉ । ତା'ପରେ ତମର ମତାମତ ମୋତେ ଜଣାଅ ।

: କିନ୍ତୁ ସେଇ ସାତଦିନ ମୋତେ କ'ଣ ଏଇ ଘରେ କଟାଇବାକୁ ହେବ ?

ପ୍ରଣବ ସାନ୍ୟାଲ ହସିଲେ । କହିଲେ : ମୁଁ ଦୁଃଖିତ ସଞ୍ଜୀବ । କିନ୍ତୁ ଏଇ ଘରେ ତମର ପୂର୍ଣ୍ଣ ସ୍ୱାଧୀନତା ରହିବ । ଏଇ ସମଗ୍ର କୋଠାଟାରେ ତମେ ମନଇଚ୍ଛା ବିଚରଣ କରିପାରିବ । ବାହାରର ସମସ୍ତ କାଗଜପତ୍ର ଯାହା ତମେ ଚାହିବ ଯୋଗାଇ ଦିଆଯିବ । ବାହାର ସହିତ ଯୋଗାଯୋଗ କରିବା ପାଇଁ ଉପର ଘରେ ଟେଲିଫୋନ୍ ଅଛି । ତମେ ସବୁ ବ୍ୟବହାର କରିବ । ଏଇ କୋଠାରେ ତମ ପାଇଁ ଦୁଇଜଣ ପରିଚାରକ ଓ ଜଣେ ପରିଚାରିକା ରହିବେ । କିନ୍ତୁ ତମେ ଏଇ କୋଠା ଛାଡ଼ି ବାହାରକୁ ଯାଇପାରିବ ନାହିଁ । ଆହୁରି ମଧ୍ୟ ମୁଁ ସାବଧାନ କରାଇ ଦେଉଛି, ବାହାରକୁ ବାହାରି ଯିବା ପାଇଁ ଚେଷ୍ଟା କରିବ ନାହିଁ । କାରଣ ସେଥିରେ ବିପଦ ଅନେକ । ଜୀବନହାନିର ବି ଆଶଙ୍କା ରହିଛି । ସାତଦିନ ପରେ ମୁଁ ତମର ମତାମତ ଜାଣିବାକୁ ଚାହିବି । ତା'ପରେ ତମେ ମୁକ୍ତି ପାଇବ । ଏ ଘରୁ ତମେ ନିର୍ବିଘ୍ନରେ ବାହାରି ଯାଇପାରିବ ।

ପ୍ରଣବ ସାନ୍ୟାଲଙ୍କ ସମସ୍ତ କଥା ଶୁଣି ସାରିବା ପରେ ପ୍ରକୃତରେ ମୁଁ ସ୍ତମ୍ଭିତ ହୋଇଯାଇଥିଲି । ଏପରି ଏକ ଆକସ୍ମିକ ବିପଦ ଯେ ମୋ ଉପରେ ଆସିପାରେ ମୁଁ ଏହା କେବେ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରିପାରି ନଥିଲି ।

ପ୍ରଣବ ସାନ୍ୟାଲ ଏଥର ଉଠି ଠିଆ ହେଲେ । ମୋତେ କହିଲେ : ଆସ ସଞ୍ଜୀବ, ମୁଁ ତୁମକୁ ଏହି କୋଠାଟା ସହିତ ପରିଚୟ କରାଇ ଦିଏ ।

ମୁଁ ବାଧ୍ୟ ହୋଇ ଉଠି ଠିଆ ହେଲି ।

ସେ ମୋତେ ସାଙ୍ଗରେ ନେଇ ଗୃହ ସଂଲଗ୍ନ ବାଥ୍‌ରୁମ୍ ଦେଖେଇ ଦେଲେ । ଡାଇନିଂ ରୁମ୍ ଦେଖେଇ ଦେଲେ । ଘର ବାହାରେ ତଳତାଲାରେ ଆହୁରି ଚାରିଟା ଘର । ସବୁ ଘରଗୁଡ଼ିକ ନିଖୁଣ ଭାବରେ ସଜ୍ଜିତ । ତା'ପରେ ଦୋତାଲାକୁ ଉଠୁଉଠୁ କହିଲେ : ଏଇ ଘରଟା ନାଁ 'ପିକ୍‌ନିକ୍ ହାଉସ୍' । ଆମେ ମୋଟ୍‌କଥା ବେଳେବେଳେ ଏଠାରେ ଅବସର ବିନୋଦନ ପାଇଁ ଆସୁ । ଏ ଘରଟା ସହରଠାରୁ ଅନେକ ଦୂରରେ । ତେଣୁ ଛୁଟିଦିନମାନଙ୍କରେ ଆସି ଟିକିଏ ମନ ଫୂର୍ତ୍ତି କରି ଫେରିଯାଉ ।

ଦୋତାଲାର ପ୍ରଥମ ଘରଟା ଦେଖେଇ କହିଲେ : ଏଇଟାକୁ ଗୋଟାଏ ଅଫିସ୍ ଘର କହିପାର । ବ୍ୟବସାୟରେ କୌଣସି ଜଟିଳ ପରିସ୍ଥିତି ଉପୁଜିଲେ, ମୁଁ ଏଇ ଘରେ ବସି ସେ ସବୁର ସମାଧାନ କରେ । ଆଜିକାଲି ଶ୍ରମିକ ସମସ୍ୟା ତ ଜାଣିଛ, ଆମର ଦୁଇତିନିଟା ଟି' ଗାର୍ଡ଼େନର ଦାୟିତ୍ୱ ଯେ କେତେ ଅସ୍ୱସ୍ତିକର ତମେ ଚିନ୍ତା କରିପାରିବ ନାହିଁ । ସବୁ ଜଟିଳ ପରିସ୍ଥିତିର ସମାଧାନ ମୁଁ ଏଇ ଘରେ ବସି କରିଛି । ତେଣୁ ତମେ ଇଚ୍ଛାକଲେ, ଏଇ ଘରେ, ମୋର ଏଇ ଚେୟାର ଉପରେ ବସି ତମ ଜୀବନର ଜଟିଳ ସମସ୍ୟାର ସମାଧାନ କରିପାର । ହେଇ, ଏଇଠି ଏଇ ଫୋନ୍‌ଟା ଅଛି । ବାହାର ସହିତ ଯୋଗାଯୋଗ କରିପାରିବ ।

ଏହାପରେ ଉପରେ ଥିବା ଆହୁରି ତିନୋଟି ଘର ବୁଲେଇ ଦେଖେଇଲେ । ସବୁଗୁଡ଼ିକ ସୁନ୍ଦର ଏବଂ ରୁଚିପୂର୍ଣ୍ଣ ।

ଶେଷ ମୁଣ୍ଡରେ ଉପରକୁ ଉଠି ଯାଇଥିବା ଗୋଟାଏ ଗୋଲେଇ ଲୁହା ଶିଡ଼ିକୁ ଦେଖେଇ କହିଲେ : ଏଇ ଶିଡ଼ିବାଟେ ଛାତକୁ ଯିବାର ବାଟ । ଛାତରେ ଚାକରବାକରମାନେ ରୁହନ୍ତି । ସେମାନେ ସବୁବେଳେ ତମର ଆଦେଶ ପାଳନ ପାଇଁ ଅପେକ୍ଷା କରି ରହିଥିବେ । କିନ୍ତୁ ଗୋଟାଏ କଥା ପ୍ରତି ତମେ ସବୁବେଳେ ଧ୍ୟାନ ଦେଇଥିବ ସଂଜୀବ । ତମେ ଯେପରି ଏ ଘରର ଚାକର-ବାକରମାନଙ୍କୁ ତାଙ୍କ ମାଲିକ ବିରୋଧୀ କୌଣସି କଥା ନ କୁହ ବା ଆଦେଶ ନ ଦିଅ । ତା'ହେଲେ ସେମାନେ ହୁଏତ ତମର କ୍ଷତିସାଧନ କରିପାରନ୍ତି । କାରଣ ଏ ଘରେ ଯେଉଁ ଚାକର-ବାକରମାନେ ଅଛନ୍ତି, ସେମାନଙ୍କୁ ଏପରି ଶିକ୍ଷା ଦିଆଯାଇଛି ଯେ, ଏ କୋଠାରେ ଯେଉଁମାନଙ୍କୁ ରଖାଯାଏ, ସେମାନେ ସବୁବେଳେ ସେଇ ଲୋକକୁ ମାଲିକର ଶତ୍ରୁ ବୋଲି ମନେକରନ୍ତି । ତେଣୁ ତମେ ତ ବୁଝିପାରୁଥିବ ସଞ୍ଜୀବ, ସେମାନଙ୍କ ସହିତ ତମର ବ୍ୟବହାର କିପରି ହେବା ଉଚିତ ।

ତା'ପରେ ଆମେ ପୁଣି ଦୋତାଲାର ଅଫିସ୍ ଘରକୁ ଆସିଲୁ ।

ମୋତେ ବସିବାକୁ କହି ପ୍ରଣବ ସାନ୍ୟାଲ ନିଜେ ବସି, ପାଇପ୍‌ରେ ଅଗ୍ନି ସଂଯୋଗ କରି କହିଲେ : ତୁମକୁ କେନ୍ଦ୍ର କରି ମୋର ମଧ୍ୟ ଗୋଟାଏ ଗୋପନ ଇଚ୍ଛା ଅଛି ସଞ୍ଜୀବ । ଅବଶ୍ୟ ମୋର ଏଇ ସୁପ୍ତ ଇଚ୍ଛାଟା ଜାଗ୍ରତ କରିବା ପାଇଁ କେହି କେବେ ଚେଷ୍ଟା କରି ନାହାନ୍ତି । ମୁଁ ଆଜି ତୁମକୁ ଅତି ଆପଣାର ମନେକରି ସେଇ କଥାଟା କହୁଛି । କାରଣ ତମେ ସେଇ ଲାଇନ୍‌ର ଲୋକ ।

ମୋର ଇଚ୍ଛା ଅଛି, ମୁଁ ଏଇ କ୍ଷେତ୍ରରୁ ଗୋଟାଏ 'ଏ' କ୍ଲାସ୍‌ର ଦୈନିକ ସଂବାଦପତ୍ର ପ୍ରକାଶ କରିବି । ସେଥିପାଇଁ ଯେତେ ଟଙ୍କା ଖର୍ଚ୍ଚ ହେବ ତଥାପି ମୋର ଚିନ୍ତା ନାହିଁ । କିନ୍ତୁ ପତ୍ରିକାଟା 'ଏ' କ୍ଲାସ୍‌ର କରିବାକୁ ହେବ । ଅବଶ୍ୟ ଚିନ୍ତା ଆଉ କାର୍ଯ୍ୟ ମଧ୍ୟରେ ତଫାତ୍

ଆକାଶ ପାତାଳର । କାରଣ ମୁଁ ଏ ଲାଇନ୍‌ର ଲୋକ ଆଦୌ ନୁହେଁ । ତେଣୁ ଜଣେ ବିଶ୍ୱାସୀ ଆଉ ଉପଯୁକ୍ତ ଲୋକ ପାଇଲେ ମୁଁ ମଧ୍ୟ ଏ ଦିଗରେ ଆଗେଇବାକୁ ପ୍ରସ୍ତୁତ ଅଛି । ଇଚ୍ଛା କଲେ, ତମେ ମତେ ଗୋଟାଏ ସ୍କିମ୍ ଦେଇପାର । ଏଇ ସାତଦିନ ମଧ୍ୟରେ କିଛି କିଛି ସମୟ କରି ଗୋଟାଏ ସ୍କିମ୍ ତିଆରି କରନା ! ବର୍ତ୍ତମାନ ତମେ ଯୁବକ । ତମ ଆଗରେ ସମ୍ଭାବନାମୟ ଭବିଷ୍ୟତ । ନିଜେ ତ ତମେ ଗଢ଼ିବ ତମର ଭବିଷ୍ୟତ । ଚାକିରି କରି ସମ୍ଭାବନାମୟ ଭବିଷ୍ୟତ ଗଠନ କରାଯାଏନା ସଞ୍ଜୀବ । ମୋତେ ତମେ ଜାଣିନାହଁ । ମୁଁ ନିଜେ ଥିଲି ଜଣେ ସାଧାରଣ ଲୋକ । ଛୋଟରୁ ବଡ଼ ହୋଇଛି । ତେଣୁ ମଣିଷ ଯଦି ତା'ର ସମ୍ଭାବନାମୟ ଭବିଷ୍ୟତକୁ ଆଖି ଆଗରେ ରଖି କର୍ମଯୋଗୀ ହୁଏ, ତେବେ ତା'ର ଜୟ ସୁନିଶ୍ଚିତ । ସେ ଜୀବନ ଯୁଦ୍ଧରେ ଜିତିବ ହିଁ ଜିତିବ ।

ତେବେ ହଁ, ପ୍ରଥମ ଜୀବନରେ ତା'ର ଜଣେ ସହାୟକ ଆବଶ୍ୟକ, ଯିଏ ତାକୁ ମନ ପ୍ରାଣରେ ସାହାଯ୍ୟ କରିବ ।

ମୋ କର୍ମମୟ ଜୀବନ କଥା ତମେ ଜାଣି ନାହଁ ସଞ୍ଜୀବ । ମୁଁ ସମାଜର ଏକ ନିମ୍ନ ମଧ୍ୟବିତ୍ତ ପରିବାରର ସନ୍ତାନ । ମୋତେ ଅତି ଅଳ୍ପ ବୟସରୁ ଜୀବନ ଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ପଡ଼ିଛି ।

ତମେ ହୁଏତ ଆଜି ମୋର ସଂସର୍ଗରେ ଆସି, ମୋର ବିଭବ ଦେଖି, ମୋର ପ୍ରତିପତ୍ତି ଦେଖି ମୋତେ ହୁଏତ ବିଶ୍ୱାସ କରିପାରିବ ନାହିଁ ଯେ, ମୁଁ ଜଣେ ସାଧାରଣ ଅଢ଼େଇଶ ଟଙ୍କାର କିରାଣୀ ଥିଲି । ସେତେବେଳେ ମୋର ପରିବାର ଭରଣ ପୋଷଣ ମୋ ପକ୍ଷରେ ଦୁରୂହ ହୋଇ ପଡୁଥିଲା । କିନ୍ତୁ ମୋ ମନରେ ଜୋର୍ ଥିଲା, ମୋର ଆଶା ଥିଲା ଜୀବନ ଯୁଦ୍ଧରେ ମୁଁ ଜୟୀ ହେବି ହିଁ ଏବଂ ଜୟୀ ହେଲି ମଧ୍ୟ । ଆଜି ମୋର ଏ ଯେଉଁସବୁ ବିଭବ ଦେଖୁଛ, ତାହା ମୋର ମାତ୍ର କୋଡ଼ିଏଟି ବର୍ଷର ସାଧନାର ଫଳ । ତିନୋଟି ଚା' ବଗିଚା, ଦୁଇଟି ଆଇରନ୍ ଫାଉଣ୍ଡ୍ରୀ ଏବଂ ଆହୁରି ଅନେକ ଜୁଟ୍‌ମିଲ୍ ଓ କଟନ୍ ମିଲ୍‌ର ମୁଁ ମ୍ୟାନେଜିଂ ଡାଇରେକ୍ଟର । ସେ ଯା'ହେଉ, ମୁଁ ଏକଥା କହିବାର ଅର୍ଥ ଏହା ନୁହେଁ ଯେ, ମୁଁ ତମ ପାଖରେ ଗର୍ବ ଦେଖାଉଛି । ତମ ଭଳି ୟଙ୍ଗମ୍ୟାନ୍‌ମାନଙ୍କୁ ଦେଖିଲେ ତାଙ୍କ ଭିତରେ ସୃଷ୍ଟିର ବାସନାକୁ ଜାଗ୍ରତ କରିବା ପାଇଁ ମୁଁ ଚେଷ୍ଟା କରେ ।

ପ୍ରଣବ ସାନ୍ୟାଲ ଏକା ନିଶ୍ୱାସରେ ଏତେଗୁଡ଼ାଏ କଥା କହି ଯାଇ ଆଉଥରେ ପାଇପ୍ ଟାଣିଲେ । ହାତଘଡ଼ିକୁ ଚାହିଁ କହିଲେ : ପ୍ରାୟ ସକାଳ ହୋଇ ଆସିଲାଣି । ମୋତେ ଏଥର ବାହାରିବାକୁ ହେବ । ମୁଁ କେବଳ ତମରି ପାଇଁ ଆଜି ଏଠାରେ ରାତ୍ରିବାସ କରିଥିଲି । ମୋ କଥା ମୁଁ ସବୁ କହିଗଲି । ପୁଣି ମୁଁ ଆସିବି ସାତଦିନ ପରେ । ହୁଏତ ମଝିରେ ଥରେ ଅଧେ ଆସିପାରେ, ତେବେ ନ ଆସିବାର ସମ୍ଭାବନା ଅଧିକ ।

ଏହି ସାତଦିନ ମଧ୍ୟରେ ଅନ୍ୟ କେହି ଲୋକ ବା ଅନେକ ଲୋକ ଏଠାକୁ ଆସିପାରନ୍ତି, କିନ୍ତୁ ସେମାନଙ୍କ ସହିତ ତମର କୌଣସି ସଂପର୍କ ନାହିଁ । ସେ ଯା'ହେଉ, ଆଶା କରୁଛି ତମେ ମୋ କଥା ରଖିବ ଏବଂ ମୋର ଏକମାତ୍ର କନ୍ୟାର ଇଚ୍ଛା ପୂରଣ କରିବ ।

ପ୍ରଣବ ସାନ୍ୟାଲ ଉଠି ଠିଆ ହେଲେ ।

ମୁଁ କହିଲି : କିନ୍ତୁ ସାର୍, ମୋର ଦୁଇ ତିନୋଟି ପ୍ରଶ୍ନ ଅଛି । ଆପଣ ଯଦି ସେଗୁଡ଼ିକର ଉତ୍ତର ଦିଅନ୍ତି, ତେବେ ମୁଁ ଖୁସି ହୁଅନ୍ତି ।

ପ୍ରଣବ ସାନ୍ୟାଲ ପୁଣି ଚେଆର୍‌ରେ ବସିଲେ । କହିଲେ : ହଁ, ପଚାର । ତମ ପ୍ରଶ୍ନର ଯଥାସାଧ୍ୟ ଉତ୍ତର ଦେବାକୁ ମୁଁ ଚେଷ୍ଟା କରିବି ।

ମୁଁ କହିଲି : ମୋତେ ଯେଉଁମାନେ ଆଜି ଏଠାକୁ ଧରି ଆଣିଲେ ସେମାନେ ନିଶ୍ଚୟ ଆପଣଙ୍କର କର୍ମଚାରୀ ।

: ହଁ ।

: ସେମାନେ କ'ଣ ଜାଣିଥିଲେ ମୁଁ ଆଜି ରାତିରେ ଏହିପରି ଭାବରେ ଘଟଣା ସ୍ରୋତରେ ଭାସିଯାଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବି ଏବଂ...

ପ୍ରଣବ ସାନ୍ୟାଲ ହୋ ହୋ ହୋଇ ହସିଉଠିଲେ । କହିଲେ : ତମେ ଏ ଲାଇନ୍‌ରେ ନିହାତି ଶିଶୁ ସଞ୍ଜୀବ । ଆଜିକାଲିର ଏ ଦୁନିଆରେ ବଡ଼ ହେବାକୁ ହେଲେ ଖାଲି ସତ୍ ଓ ମହତ୍ ହୋଇ ରହି ହେବ ନାହିଁ । ମନ୍ଦିର ମସ୍‌ଜିଦ୍ ଗଢ଼ିବା ପାଇଁ ଦାନ କରିବାକୁ ହେବ, ଦରକାର ହେଲେ ମଣିଷ ବି ମାରିବାକୁ ହେବ । ଯା'ହେଉ, ସେ ସବୁ ଏତେ ଗଭୀରତା ଭିତରକୁ ବର୍ତ୍ତମାନ ତମେ ପଶିବାକୁ ଚେଷ୍ଟା କର ନାହିଁ ସଞ୍ଜୀବ । ତେବେ ଏତିକି ଜାଣିରଖ ଯେ, ତୁମକୁ ମୋ ପାଖକୁ ଧରି ଆଣିବା ପାଇଁ ମୁଁ ଲୋକ ନିଯୁକ୍ତ କରିଥିଲି ।

: କିନ୍ତୁ ସାର୍, ମୋତେ ଯଦି ଆପଣ ଭଲ ଭାବରେ ଡାକିଥାଆନ୍ତେ, ମୋ ଘରକୁ ବା ମୋ ଅଫିସ୍‌କୁ ଯଦି ଲୋକ ପଠାଇ ଡକାଇ ଥାଆନ୍ତେ, ତା'ହେଲେ ଭାବୁଛନ୍ତି ମୁଁ କ'ଣ ଆସି ନଥାନ୍ତି ?

ପ୍ରଣବ ସାନ୍ୟାଲଙ୍କ ମୁହଁରେ କିପରି ଏକ କୁଟୀଳ ହସ ଫୁଟି ଉଠିଲା । ସେ କହିଲେ : ସତକଥା କହିବାକୁ ଗଲେ, ସହଜ ପଥରେ କୌଣସି କାମ ହାସଲ କରିବାକୁ ମୋତେ ମୋଟେ ଭଲ ଲାଗେ ନାହିଁ । ତା'ଛଡ଼ା ତୁମକୁ ଇଚ୍ଛା କରିଥିଲେ ମୁଁ ସହଜ ଉପାୟରେ ମୋ ଘରକୁ ଡାକିପାରି ଥାଆନ୍ତି, କିନ୍ତୁ ତାହା ମୁଁ କରି ନାହିଁ । କାରଣ ସେପରି କରିବାରେ କେତେକ ପ୍ରତିବନ୍ଧକ ଥିଲା ।

ମୁଁ ପୁଣି କହିଲି : ତା'ହେଲେ ରିଜେଣ୍ଟ୍ ହୋଟେଲର ଯେଉଁ ଲୋକଟା ପଛେ ପଛେ ମୁଁ ତା'ର ଘର ଯାଏ ଛୁଟି ଆସିଲି, ସେ ଲୋକଟାକୁ କ'ଣ ଆପଣ ବି ନିଯୁକ୍ତ କରିଥିଲେ ।

ପ୍ରଣବ ସାନ୍ୟାଲଙ୍କ ମୁହଁରେ ପୁଣି ଥରେ କୁଟୀଳ ହସ ଫୁଟି ଉଠିଲା । ସେ କହିଲେ : ଏତେ ସହଜରେ ସବୁକଥା ଜାଣିବାକୁ ଚେଷ୍ଟା କର ନାହିଁ ସଞ୍ଜୀବ । ଲୋକ ହିସାବରେ ମୁଁ ଭଲ ଯେତିକି ଖରାପ ତା'ଠାରୁ ଅଧିକ । କିନ୍ତୁ ଅଞ୍ଜନାକୁ ମୁଁ ପ୍ରାଣଠାରୁ ବଳି ଭଲପାଏ । ତା' ସ୍ୱାର୍ଥବିରୋଧୀ କୌଣସି କାମ ମୁଁ କରିପାରିବି ନାହିଁ । ଏତିକି ମନେରଖି ତମେ ଚିନ୍ତାକର ସଞ୍ଜୀବ । ପୁଣି ତମ ସହିତ ମୋର ଦେଖାହେବ ।

ଆମେ ଦୁହେଁ ସେଇ ଘରୁ ବାହାରି ଚାଲିଆସୁଥିଲୁ ।

କିନ୍ତୁ ଟେଲିଫୋନ୍‌ଟା ବାଜି ଉଠିବାରୁ, ପ୍ରଣବ ସାନ୍ୟାଲ ମୋତେ ବାରଣ୍ଡାରେ ଛିଡ଼ା ହେବାକୁ କହି ଭିତରକୁ ପଶିଗଲେ । ମାତ୍ର କେତୋଟି ସେକେଣ୍ଡ ପରେ ମୋ ପାଖକୁ ଫେରି ଆସିଲେ । କହିଲେ : ମୋର ଗୋଟାଏ ଜରୁରୀ କାମର ଡାକରା ଆସିଲାଣି । ମୁଁ ଚାଲିଯାଉଛି । ତମେ ତମ ନିର୍ଦ୍ଦିଷ୍ଟ ଘରକୁ ଚାଲିଯାଅ । ବିଶ୍ରାମ କର । କିନ୍ତୁ ମନେରଖ ସୀମାର ବାହାରେ କିଛି କରିବାକୁ ଚେଷ୍ଟା କରିବ ନାହିଁ । ତା'ହେଲେ ବିପଦରେ ପଡ଼ିଯାଇପାର ।

ପ୍ରଣବ ସାନ୍ୟାଲ ଦ୍ରୁତ ବେଗରେ ଅନ୍ୟ ଏକ ଘର ଆଡ଼କୁ ଆଗେଇ ଗଲେ । ମୁଁ ତାଙ୍କର ଯିବା ପଥକୁ କିଛି ସମୟ ନୀରବରେ ଅନାଇ ରହି ଚିନ୍ତା କରୁଥିଲି, ମୋର ପରିସ୍ଥିତି ମୋଟେ ଭଲ ନୁହେଁ । କିନ୍ତୁ...

ମୋର ଆପାତତଃ କରିବାର କିଛି ଉପାୟ ନଥିଲା । ମୋତେ ଫେରିଯିବାକୁ ହେବ ମୋର ନିର୍ଦ୍ଦିଷ୍ଟ ରୁମ୍ ଭିତରକୁ ।

ବାଧ୍ୟ ଶିଶୁଟି ଭଳି ଚଳିବାକୁ ହେବ ମୋତେ ।

ତା'ପରେ ଯଦି କିଛି ଉପାୟ ଉଦ୍‌ଭାବନ କରିହୁଏ ବା କୌଣସି ସୁଯୋଗ ଆସି ପହଞ୍ଚେ, ସେତେବେଳେ ଦେଖାଯିବ ।

କିନ୍ତୁ ଅଞ୍ଜନା ଝିଅଟି କିଏ ? ସେ ବା ମୋ ପ୍ରତି ମୋ ଅଜଣାରେ ଏପରି ଆକୃଷ୍ଟ ହେଲା କାହିଁକି ? ମୋତେ ବିବାହ କରି ତା'ର କି ଲାଭ ହେବ ? ସେ ତ ମୋ ପାଖରେ ସିଧାସଳଖ ପ୍ରସ୍ତାବଟା ବାଢ଼ିପାରି ଥାଆନ୍ତା ?

ମୁଁ ଧୀରେ ଧୀରେ ମୋର ନିର୍ଦ୍ଦିଷ୍ଟ ରୁମ୍ ଆଡ଼କୁ ଆଗଉଥିଲି । ମୋ ଚଲାପଥରେ କାହାରିକୁ ଦେଖିପାରୁ ନଥିଲି । ଯେତେବାଟ ଯାଏ ଦୃଷ୍ଟି ଯାଉଥିଲା, ସେହି ସ୍ଥାନ ଭିତରେ କୌଣସି ଲୋକ ଦେଖାଯାଉ ନଥିଲା । ତଥାପି ଛୁଟି ବାହାରି ଯିବାର ସାହସ ହେଉ ନଥିଲା । ପ୍ରଣବ ସାନ୍ୟାଲଙ୍କର ଜ୍ୱଳନ୍ତ ଆଖି ଯୋଡ଼ାକ ମନେହେଉଥିଲା, ଯେପରି ମୋ ପଛେ ପଛେ କୁରାଳ ଚକ୍ର ପରି ଘୂରି ବୁଲୁଛି ।

\+ + +

ମୁଁ ମୋର ନିତ୍ୟକର୍ମ ଶେଷ କଲି ।

ପ୍ରଚୁର ପାନ ଭୋଜନର ଆୟୋଜନ ହୋଇଥିଲା ମୋ ପାଇଁ । ଜଣେ ପରିଚାରକ ଓ ଜଣେ ପରିଚାରିକା ମୋର ସେବାରେ ଲାଗିଥିଲେ ।

କିନ୍ତୁ ମୁଁ ବହୁତ ଚେଷ୍ଟା କରି ମଧ୍ୟ ସେମାନଙ୍କ ମୁହଁରୁ ପଦେ କଥା ବାହାର କରିପାରିଲି ନାହିଁ । ସେମାନେ କିଛି କହିଲେ ନାହିଁ । କେବଳ ସେମାନେ ଆଦେଶ ପାଳନ ପାଇଁ ଅପେକ୍ଷା କରୁଥିଲେ ।

ସେତେବେଳକୁ ଦିନ ନଅଟା ହେବ । ମୁଁ ଖିଆପିଆ ଶେଷ କରି ଗୋଟିଏ ଆରାମ ଚଉକି ଉପରେ ଶୋଇ ଖବରକାଗଜ ପଢୁଥିଲି । ଦୁଇଟି ଇଂରେଜୀ ଦୈନିକ ପତ୍ରିକା ମୋ ପାଇଁ ଅଣା ହୋଇଥିଲା ।

ମୁଁ ଦେଖିଲି ପରିଚାରକ ଓ ପରିଚାରିକା ଦୁଇଜଣ ଯେପରି ମୋ ଆଦେଶକୁ ଅପେକ୍ଷା କରି ଠିଆ ହୋଇଛନ୍ତି । ମୋତେ ଭାରି ଖରାପ ଲାଗିଲା । ମୋର ମନେହେଲା, ସେମାନେ ଯେପରି ମୋର ଗତିବିଧି ଲକ୍ଷ୍ୟ କରିବା ପାଇଁ ନିଯୁକ୍ତ ହୋଇଛନ୍ତି ।

ମୁଁ ସେମାନଙ୍କୁ ପାଖକୁ ଡାକି କହିଲି : ତୁମେମାନେ ଚାଲିଯାଅ । ବର୍ତ୍ତମାନ ମୋର କିଛି କାମ ନାହିଁ । ପୁଣି ବାରଟା ବେଳକୁ ଆସିବ ।

ଦୁହେଁ ମୁହଁ ଚାହାଁଚାହିଁ ହେଲେ । ତା'ପରେ ବାଧ୍ୟ ଦୁଇଟି ଶିଶୁ ପରି ଧୀରେ ଧୀରେ ଘରୁ ବାହାରି ଚାଲିଗଲେ ।

ମୁଁ ଖବର କାଗଜଟା ଟେବୁଲ୍ ଉପରେ ଥୋଇ ଦରଜାଟା ଭିତରୁ ବନ୍ଦ କଲି । ମୋତେ କିଛି ଭଲ ଲାଗୁ ନଥିଲା । ମନେପଡ଼ିଲା ଅନେକ କଥା । ସୁମିତା ଚନ୍ଦନ ଠାରୁ ଆରମ୍ଭ କରି ନୀନା ପର୍ଯ୍ୟନ୍ତ ସମସ୍ତେ ମୋ ଆଖି ଆଗରେ ଭାସି ଉଠିଲେ । ସବୁପରେ ପୋଲିସ୍ ଇନିସ୍‌ପେକ୍ଟର ମନୋରଞ୍ଜନ ମହାପାତ୍ରଙ୍କ କଥା ମନେପଡ଼ିଲା । ମୋର ଆଜି ଥାନାକୁ ଯିବାର କଥା । ଏଗାରଟାରୁ ବାରଟା ଭିତରେ ପହଞ୍ଚିବି । ମୋ ସହିତ ଆଲୋଚନା କରିବା ପାଇଁ ହୁଏତ ପୋଲିସ୍ କମିସନର ଅପେକ୍ଷା କରିଥିବେ । 'ମୀରା ମର୍ଡ଼ର କେସ୍'ର ପଞ୍ଚମ ବ୍ୟକ୍ତି ସମ୍ବନ୍ଧରେ ତଥ୍ୟ ଯୋଗାଇ ଦେବାକୁ ମୁଁ ପ୍ରତିଶ୍ରୁତି ଦେଇଥିଲି । କିନ୍ତୁ...

ନା, ସବୁ ଯେମିତି ମୋତେ ଭୌତିକ କାଣ୍ଡ ପରି ମନେହେଉଥିଲା । ଏଗୁଡ଼ାକ ଯାହା ଘଟିଯାଇଛି ତାହା ବାସ୍ତବ ବୋଲି ମୁଁ ସ୍ୱୀକାର କରିବାକୁ ଚାହୁଁନଥିଲି । ମୋର ମନେହେଉଥିଲା, ମୁଁ ହୁଏତ ଶୋଇ ଶୋଇ ସ୍ୱପ୍ନ ଦେଖୁଛି । ଗଳ୍ପ ଉପନ୍ୟାସର ପ୍ଲଟ୍ ମୋ କଳ୍ପନା ଲୋକରେ ଭାସି ବୁଲୁଛି ।

ପୁଣି ପର ମୁହୂର୍ତ୍ତରେ ମନେହେଲା, ଦୀର୍ଘ ସାତଦିନ ମୋତେ ଏଇଠି ଏହିପରି ବନ୍ଦୀ ଜୀବନ କଟାଇବାକୁ ହେବ । ଏଇ ସାତଦିନରେ ପୃଥିବୀର ମାନଚିତ୍ର ବଦଳି ଯାଇପାରେ । ମୀରା ମର୍ଡ଼ର କେସ୍‌ର ପଞ୍ଚମ ଅପରାଧୀ ଦେଶ ଛାଡ଼ି ବିଦେଶକୁ ଚାଲିଯାଇପାରେ କିମ୍ବା ସେ ତା'ର ଅପରାଧର ସମସ୍ତ କ୍ଲୁ ଲିଭେଇ ଦେଇ ସମାଜର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ହିସାବରେ ବିଚରଣ କରିପାରେ ।

କିନ୍ତୁ କିଛି ଉପାୟ ନାହିଁ । ବରଂ ଏଇ ସାତଦିନ ବସି ବସି ବହି ପଢ଼ିବା ଭଲ ।

ମୁଁ ଉଠି ଠିଆହେଲି । ପୁସ୍ତକପୂର୍ଣ୍ଣ ଆଲମିରାଗୁଡ଼ିକ ମୋର ଏକମାତ୍ର ସହାୟ ପରି ମନେହେଲା । ଗୋଟିଏ ପରେ ଗୋଟିଏ ଅନେକଗୁଡ଼ିଏ ବହି କାଢ଼ି ଦେଖିଲି । ପୃଷ୍ଠାଏ ଦି'ପୃଷ୍ଠା ଓଲଟାଇ ପୁଣି ରଖିଦେଲି । କୌଣସି ବହି ବା କୌଣସି ଲେଖା ମୋତେ ଆକୃଷ୍ଟ କରିପାରୁ ନଥିଲା ।

ତା'ପରେ ପାଇଲି ଯେଉଁ ବହିଟି, ସେଇଟିର ନାମ 'ସାମ୍ବାଦିକର ଡାଇରୀ' । ଆମେରିକାର ଜଣେ ସାମ୍ବାଦିକ । ବହି ପଛରେ ସେହି ସାମ୍ବାଦିକଙ୍କର ଫଟୋ ସହ ତାଙ୍କ ଦୁଃସାହସିକ ସାମ୍ବାଦିକତାର ସମ୍ୟକ୍ ପରିଚୟ ଦିଆ ହୋଇଥିଲା । ମୁଁ ସେହି ବହିଟି ଧରି ଫେରିଆସିଲି ପୁଣି ମୋର ପୂର୍ବସ୍ଥାନକୁ ।

ପୃଷ୍ଠା ଓଲଟେଇ ପଢ଼ିଲି । ସାମ୍ବାଦିକ ଭଦ୍ରଲୋକଙ୍କର ନାମ ଜନ୍ ଡିକେନ୍‌ସନ । ତାଙ୍କର ବାଲ୍ୟ ଜୀବନରେ ସେ ଅତ୍ୟନ୍ତ ଦରିଦ୍ର ଥିଲେ । କିନ୍ତୁ ବଡ଼ ଦୁଃସାହସୀ ଥିଲେ । ସ୍କୁଲ୍ ପାଠ୍ୟ ଶେଷ କରିବା ପରେ ଆଉ ଅଧିକ ଅଧ୍ୟୟନ ପାଇଁ ସମ୍ବଳ ନଥିଲା । ସେତେବେଳେ ନିଜର ପେଟ ପୋଷିବା ତାଙ୍କ ପକ୍ଷରେ କଷ୍ଟ ହୋଇଉଠିଲା । ଶେଷରେ ଜନ୍ ଡିକେନ୍‌ସନଙ୍କୁ ହୋଟେଲ୍‌ର ଗୋଟିଏ ବୟ ଭାବରେ ଜଏନ୍ କରିବାକୁ ପଡ଼ିଥିଲା ।

ସେଇ ହୋଟେଲରେ ଥରେ ଗୋଟିଏ ଶିକାରୀ ଦଳ ପହଞ୍ଚିଲେ । ସେମାନେ ରାତ୍ରିଯାପନ ପରେ ସକାଳୁ ଉଠି ଶିକାରକୁ ଯିବାର କଥା । କିନ୍ତୁ ଏ ଅଞ୍ଚଳରେ ପଥଘାଟ ଓ ବଣଜଂଗଲ ସହିତ ସେହି ଶିକାରୀ ଦଳଟା ବିଶେଷ ପରିଚିତ ନଥିଲେ । ସେମାନେ ଜଣେ ସ୍ଥାନୀୟ ଲୋକର ଅଭାବ ଅନୁଭବ କରୁଥିଲେ ।

ଜନ୍ ଡିକେନ୍‌ସନ୍ ସେମାନଙ୍କ ଦଳରେ ଭିଡ଼ିଗଲେ । ସେଇ ଯେ ସେମାନଙ୍କ ସହିତ ଗଲେ ଆଉ ତାଙ୍କୁ ହୋଟେଲକୁ ଫେରି ଆସିବାକୁ ହେଲା ନାହିଁ । ଶିକାରୀ ଦଳର ନେତା, ଡିକେନ୍‌ସନ୍‌ଙ୍କର ଦୁଃସାହସିକତାରେ ମୁଗ୍ଧ ହୋଇ ତାଙ୍କୁ ନିଜ ଦଳର ଜଣେ କରି ନେଲେ ।

ସେଉଠୁ ଡିକେନ୍‌ସନ୍‌ଙ୍କର ଭାଗ୍ୟ ପରିବର୍ତ୍ତନ ହେଲା । ଶିକାରୀ ଭଦ୍ରଲୋକ ଡିକେନ୍‌ସନ୍‌ଙ୍କୁ ଖୁବ୍ ଭଲପାଇବସିଲେ ଏବଂ ତାଙ୍କୁ ନିଜର ପୁଅ ପରି ପାଳନ କଲେ । ପାଠ ପଢ଼ାଇଲେ ।

କିଛିକାଳ ପରେ ଡିକେନ୍‌ସନ୍ କିଛି କିଛି ଲେଖାଲେଖି କରିବାକୁ ଅଭ୍ୟାସ କଲେ । ପ୍ରଥମେ ସେ ତାଙ୍କ ଅଙ୍ଗନିଭା ଶିକାର କାହାଣୀ ସବୁ ଲେଖିବସିଲେ । ଦିନେ ସେହି ଶିକାର କାହାଣୀଗୁଡ଼ିକ ଧରି ସେ ଗୋଟିଏ ଦୈନିକ ପତ୍ରିକା ଅଫିସକୁ ଗଲେ ଏବଂ ସେଠାକାର ସହ-ସଂପାଦକଙ୍କ ସହିତ ଦେଖା କରି, ଲେଖାଗୁଡ଼ିକୁ ତାଙ୍କୁ ପଢ଼ିବା ପାଇଁ ଅନୁରୋଧ ଜଣାଇଲେ ।

ସହ ସଂପାଦକ ଭଦ୍ରଲୋକ, ଲେଖାଗୁଡ଼ିକୁ ରଖିଲେ । ଡିକେନ୍‌ସନ୍‌ଙ୍କୁ କହିଲେ, ପରେ ଆସି ସେ ତାଙ୍କର ଲେଖା ସମ୍ବନ୍ଧରେ ବୁଝିଯିବେ ।

ଡିକେନ୍‌ସନ୍‌ଙ୍କର ଭାଗ୍ୟ ଖୋଲିଲା । ଲେଖାଟି ଖୁବ୍ ରୋମାଞ୍ଚକର ହୋଇଥିଲା ଏବଂ ସେହି ଦୈନିକ ପତ୍ରିକାର ରବିବାସରୀୟ ସଂଖ୍ୟାରେ କ୍ରମଶଃ ବାହାରିବାକୁ ଲାଗିଲା । ଲେଖାଟି ଏତେ ବାସ୍ତବ ଆଉ ଏତେ ରୋମାଞ୍ଚକର ଯେ, ପାଠକେ ସେଇ ଲେଖା ପଢ଼ିବା ପାଇଁ ରବିବାର କେବେ ଆସିବ ବୋଲି ପ୍ରତୀକ୍ଷା କରି ବସି ରହିଲେ । ଫଳରେ ପତ୍ରିକାର ବିକ୍ରି ଯଥେଷ୍ଟ ବଢ଼ିଗଲା ଏବଂ ଡିକେନ୍‌ସନ୍ ସେଇ ଲେଖା ପ୍ରକାଶ ପର ଠାରୁ ସେହି ପତ୍ରିକାରେ ବିଭାଗୀୟ ଲେଖା ଲେଖିବା ପାଇଁ ନିଯୁକ୍ତି ପାଇଲେ ।

କିଛିଦିନ ପରେ ଜନ୍ ଡିକେନ୍‌ସନ୍ ହେଲେ ସେହି ପତ୍ରିକାର ଜଣେ ଖ୍ୟାତ ଓ ଦୁଃସାହସିକ ସାମ୍ବାଦିକ । ସେତେବେଳେ ଆମେରିକାରେ ଅପରାଧ ଓ ଅପରାଧୀମାନଙ୍କର ସଂଖ୍ୟା ଯଥେଷ୍ଟ ବଢ଼ିଯାଇଥିଲା । ଜନ୍ ଡିକେନ୍‌ସନ୍ ବାଛି ନେଇଥିଲେ ସେଇ ପଥ । ଯେଉଁ ଅପରାଧୀମାନଙ୍କୁ ପୋଲିସ୍ ଧରିପାରୁ ନଥିଲେ, ଯେଉଁ ଅପରାଧର ମୂଳ ଇଣ୍ଟେଲିଜେନ୍‌ସ ବ୍ୟୁରୋ ଖୋଜି ପାଉ ନଥିଲେ, ଡିକେନ୍‌ସନ୍ ଲାଗି ଯାଉଥିଲେ ସେହି ତଥ୍ୟ ଅନୁସନ୍ଧାନରେ ।

ଧୀରେ ଧୀରେ ଆମେରିକାରେ ଜନ୍ ଡିକେନ୍‌ସନ୍‌ଙ୍କ ନାମ ସବୁ ସହରରେ ପହଞ୍ଚିଲା । ଅପରାଧୀମାନେ ଡିକେନ୍‌ସନ୍‌ଙ୍କୁ ଶତ୍ରୁ ମନେ କରି ତାଙ୍କର ପ୍ରାଣନାଶ ପାଇଁ ଲାଗିପଡ଼ିଲେ ।

ଅନେକଥର ତ ସେ ଶତ୍ରୁ କବଳରେ ପଡ଼ିଥିଲେ । କିନ୍ତୁ ଥରେ ସେ ଯେପରି ଏକ ଦୁର୍ଦ୍ଦାନ୍ତ ଶତ୍ରୁ ଶିବିରରେ ବନ୍ଦୀ ହୋଇଥିଲେ, ସେଥିରେ ତାଙ୍କର ମନେହୋଇଥିଲା, ଆଉ ସେ ଜୀବନରେ ହୁଏତ ସୂର୍ଯ୍ୟାଲୋକ ଦେଖିବେ ନାହିଁ । ଜୀବନ ତାଙ୍କର ସେଇଠି ଶେଷ ହୋଇଯିବ ।

ମୁଁ ଏତେବେଳ ଯାଏ ଜନ୍ ଡିକେନ୍‌ସନ୍‌ଙ୍କର ଜୀବନୀ ଉପରେ ଖାଲି ଆଖି ବୁଲେଇ ଦେଇ ଯାଉଥିଲି । କିନ୍ତୁ ସେ ଯେଉଁଦିନ ଶତ୍ରୁ କବଳରେ ପଡ଼ିଲେ, ହଠାତ୍ ସେଇଠି ମୁଁ ଅଟକି ଗଲି । ମୋର ମନେହେଲା, ଯେପରି ଡିକେନ୍‌ସନ୍‌ଙ୍କ ଜୀବନ ସହିତ ମୋ ଜୀବନର ଯଥେଷ୍ଟ ସାମଞ୍ଜସ୍ୟ ରହିଛି ।

ମୁଁ ଏଥର ଧୀରସ୍ଥିର ହୋଇ ପ୍ରତିଟି ଲାଇନ୍ ପଢ଼ିବାକୁ ଲାଗିଲି ।

.... ମୋର ଗାଡ଼ି ସେମାନଙ୍କ ପଛରେ ଛୁଟିଥିଲା । ସେତେବେଳେ ସ୍ପିଡ଼ୋମିଟର ଆଡ଼େ ଚାହିଁବାର ଅବକାଶ ନଥିଲା । ସେମାନେ ଗାଡ଼ିରେ ଥିଲେ ଦୁଇଜଣ । ମୋର ଧାରଣା ହୋଇଥିଲା, ଏଇ ଦୁଇଜଣ ହେଉଛନ୍ତି ଗତ ସପ୍ତାହ ନିଉୟର୍କରେ ଘଟିଯାଇଥିବା ବିରାଟ 'ବ୍ୟାଙ୍କ ରବରୀ'ର ମୁଖ୍ୟ ।

ମୁଁ ଏକା । ମୋର ସମ୍ବଳ ଭିତରେ ଗୋଟିଏ କ୍ୟାମେରା ଏବଂ ସେହି କ୍ୟାମେରା ସହିତ ଗୋଟିଏ ରିଭଲଭର କାଇଦାରେ ଫିଟ୍ କରା ହୋଇଥିଲା । ଏକା ସାଂଗରେ ଦୁଇକାମ କରିହେବ । ସଟର ଟିପି ଫଟୋ ଉଠାଇ ହେବ ଏବଂ ସଟର ଟିପି ଗୁଳିଟି ଚଳେଇ ହେବ । ବାହାରୁ ମୋର ସେଇ କ୍ୟାମେରାକୁ ଦେଖି ଏହା ସହିତ ଯେ ଏକ ରିଭଲଭର ସଂଯୁକ୍ତ ଅଛି କେହି ବିଶ୍ୱାସ କରିପାରିବେ ନାହିଁ ।

ମୋ ଗାଡ଼ି ସେମାନଙ୍କ ଗାଡ଼ି ପଛରେ ଛୁଟିଥିଲା ।

ସହର ଛାଡ଼ି ସେମାନେ ସହରତଳି ଅଞ୍ଚଳକୁ ବାହାରି ଯାଇଥିଲେ । ମୁଁ ବି ଛୁଟିଥିଲି ସେମାନଙ୍କ ପଛେ ପଛେ । କାରଣ ଜୀବନରେ ସେଦିନ ପର୍ଯ୍ୟନ୍ତ ମୁଁ କେଉଁଠି ହାରି ନଥିଲି ଏବଂ ଭୟଭ୍ରାନ୍ତି ମୋର କିଛି ନଥିଲା ।

ହଠାତ୍ ସେମାନଙ୍କ ଗାଡ଼ିଟା ଗୋଟାଏ ଢାଲୁ ପାହାଡ଼ ଭିତରେ ଗଳିଗଲା । ମୁଁ ଏକ ଦୋଛକି ରାସ୍ତାରେ ଯାଇ ଅଟକି ଗଲି । ପାହାଡ଼ କାଟି ରାସ୍ତା ତିଆରି ହୋଇଛି । ସାମ୍ନାରେ ଗୋଟାଏ ପାହାଡ଼ କିନ୍ତୁ ବାଁ ଡାହାଣ ଦୁଇ ପାଖକୁ ଦୁଇଟି ରାସ୍ତା ଚାଲିଯାଇଛି । ମୁଁ ଯେଉଁଠି ଅଟକିଗଲି, ସେଇଠି ମୁଁ ଜାଣିପାରିଲି ନାହିଁ ସେମାନଙ୍କର ଗାଡ଼ିଟା ଗଲା କୁଆଡ଼େ, ବାଁକୁ ନାଁ ଡାହାଣକୁ ?

ମୁଁ କିଛି ଠିକ୍ କରିବା ପୂର୍ବରୁ ମୋର କାହିଁକି ମନେହେଲା ବାଁ ପାଖ ରାସ୍ତାରେ ଅନେକ ଦୂରରେ ଯେପରି ଧୂଳି ଉଡୁଛି । ମୁଁ ଭଲ ମନ୍ଦ ବିଚାର ନ କରି ମୋ ଗାଡ଼ିଟା ସେଇ ଆଡ଼େ ମୁହାଁଇ ଦେଲି ।

ତା'ପରେ ମାତ୍ର ପାଞ୍ଚ କି ସାତ ମିନିଟ୍ ଅତିକ୍ରମ କରିଛି ହଠାତ୍ ମୋ ଗାଡ଼ିଟା ଗୋଟାଏ ପଙ୍କ ପୋଖରୀ ଭିତରେ ପଶିଗଲା । କିନ୍ତୁ ଦୂରରୁ ତାହା ପଙ୍କ ପୋଖରୀ ପରି ଦେଖାଯାଉ ନଥିଲା । ମନେହେଉଥିଲା ରାସ୍ତାଟା ଦୂରରୁ ଦୂରକୁ ଲମ୍ବିଯାଇଛି ।

ସେହି ପଙ୍କ ପୋଖରୀ ଭିତରେ ଗାଡ଼ିଟା ଏପରି ଦ୍ରୁତ ନିମ୍ନଗାମୀ ହେବାକୁ ଲାଗିଲା ଯେ, ଆଉ ମୁହୂର୍ତ୍ତେ ବିଳମ୍ବ କରିଥିଲେ ଗାଡ଼ି ସହିତ ମୋର ସେଇଠି ସମାଧି ହୋଇଯାଇଥାଆନ୍ତା । ଭାଗ୍ୟକ୍ରମେ ମୋ ଗାଡ଼ିର ଛାତଟା ଖୋଲା ଥିଲା । ମୁଁ ମୋ କ୍ୟାମେରାଟାକୁ ବାଁ ହାତରେ ଧରିନେଇ ଦ୍ରୁତ ବେଗରେ ବାହାରକୁ ଡେଇଁ ପଡ଼ିଲି । ମୋର ପାଦ ଯୋଡ଼ାକ ଶକ୍ତ ମାଟି ଉପରେ ପଡ଼ିଯାଇଥିଲା । ପଛକୁ ଚାହିଁ ଦେଖିଲି, ମୋ ଗାଡ଼ିର କୌଣସି ସରା ନାହିଁ । କେବଳ ପଙ୍କ ଉପରେ କେତୋଟି ଫୋଟକା ଫୁଟି ପୁଣି ମିଳେଇ ଯାଉଛି ।

ମୁଁ ଆଉ ମୁହୂର୍ତ୍ତେ ବିଳମ୍ବ କଲି ନାହିଁ । ସଂଗେ ସଂଗେ ପାହାଡ଼ର ଏକ ଉହାଡ଼ିଆ ଜାଗା ଭିତରକୁ ଛୁଟି ପଳାଇଲି । କାରଣ ମୋର ମନେହେଉଥିଲା, ସେମାନେ ବର୍ତ୍ତମାନ ଛୁଟିଆସିବେ ଏବଂ ମୋର ପରିଣତି ଦେଖି ମନ ଆନନ୍ଦରେ ନାଚିଉଠିବେ ।

ମୋର ଅନୁମାନ ସତ୍ୟ ହେଲା । କିଛି ସମୟ ପରେ ସେମାନଙ୍କ ଗାଡ଼ି ଆସି ପଙ୍କ ପୋଖରୀର ସାମାନ୍ୟ ଦୂରରେ ଠିଆ ହେଲା ।

ଗାଡ଼ିରୁ ଓହ୍ଲାଇଲେ ତିନିଜଣ ପୁରୁଷ ଓ ଦୁଇଜଣ ମହିଳା । ସେମାନେ କିନ୍ତୁ ମତ୍ତ ଆନନ୍ଦରେ ନାଚିଉଠିଲେ ନାହିଁ । ଦୁଇଜଣ ପଙ୍କ ପୋଖରୀ ପାଖକୁ ଆଗେଇ ଗଲେ । ଜଣେ ଗାଡ଼ି ପାଖରେ ଠିଆହୋଇ ରହିଲା । ଆଉ ଦୁଇଜଣ ମାଗ୍ନିଫାଇଂ ଗ୍ଲାସ୍ ପରି ଦୁଇଟା ବଡ଼ ବଡ଼ ଗ୍ଲାସ୍ ଧରି ଆଖପାଖ ଚାରିଆଡ଼େ କ'ଣ ଯେପରି ମାଟି ଉପରେ ଖୋଜିବାକୁ ଲାଗିଲେ ।

ମୋର ମନେହେଲା, ହୁଏତ ସେମାନେ ମୋର ପାଦଚିହ୍ନ ଅନୁସନ୍ଧାନ କରୁଛନ୍ତି । ସେମାନେ ହୁଏତ ଭାବିଛନ୍ତି, ଗାଡ଼ି ସହିତ ଗାଡ଼ିର ମାଲିକ ପଙ୍କ ତଳରେ ସମାଧି ନେଇ ନ ପାରିଥାଏ ।

ସେମାନେ ମାଗ୍ନିଫାଇଂ ଗ୍ଲାସ୍ ସାହାଯ୍ୟରେ ଅନୁସନ୍ଧାନ କରି କରି ଆଗେଇ ଆସୁଥିଲେ । ଗାଡ଼ି ଉପରୁ ଡେଇଁ ଯେଉଁ ଜାଗାରେ ପ୍ରଥମେ ମୁଁ ପଡ଼ିଥିଲି, ସେମାନେ ସେଇ ଜାଗାକୁ ଆସିବା କ୍ଷଣି ମୋର ସର୍ବାଙ୍ଗ କମ୍ପି ଉଠିଲା । ଭାବିଲି ଏଥର ଆଉ ରକ୍ଷା ନାହିଁ । ସେମାନଙ୍କ ଗାଡ଼ି ଉପରେ ଦୁଇଟା ବନ୍ଧୁକ ଡେରା ହୋଇଥିବା ସ୍ପଷ୍ଟ ମୋତେ ଦେଖାଯାଉଥିଲା ।

କିନ୍ତୁ ଏଠାରେ ମୋତେ ହୁଏତ ଭଗବାନ ରକ୍ଷା କଲେ । ସେମାନେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପୂର୍ବରୁ ଜଣେ ମହିଳା ଛୁଟିଆସି ସେହି ଲୋକ ଦୁଇଟିଙ୍କ ଆଗରେ ଠିଆ ହୋଇ ହସି ହସି କ'ଣ କହିଲା । ସେମାନେ ସେଇଠୁ ଫେରିଗଲେ । ସମସ୍ତେ ଏକାଠି ଠିଆ ହୋଇ ଏଣେତେଣେ ଟିକିଏ ଚାହିଁ କଥାବାର୍ତ୍ତା ହୋଇ ହସାହସି କଲେ । ତା'ପରେ ସେମାନଙ୍କ ଭିତରୁ ଜଣେ ବିରାଟକାୟ ଲୋକ ଗୋଟିଏ ମହିଳାକୁ ଟେକୁ ଉଠାଇ କାନ୍ଧରେ ବସାଇ ନାଚିବାରେ ଲାଗିଲା । ଅନ୍ୟମାନେ ତାଳିପାରି ହୋ ହୋ ହୋଇ ନାଚି ନାଚି ହସିବାରେ ଲାଗିଲେ ଏବଂ ହାତ ଧରାଧରି ହୋଇ ସମସ୍ତେ ଯାଇ ଗାଡ଼ିରେ ବସିଲେ ।

ସେମାନେ ଚାଲିଗଲେ ।

ମୁଁ ଧୀରେ ଧୀରେ ବୁଦା ପାହାଡ଼ରୁ ବାହାରି ଆସି ରାସ୍ତା ଉପରେ ଠିଆ ହେଲି । ଏହାପରେ ?

ଚାରିଆଡ଼େ ପାହାଡ଼ ପର୍ବତ ଘେରା ଜଂଗଲ । ଏ ପଥଟା ଏଇଠୁ ବନ୍ଦ । ଅନ୍ୟ ଆଡ଼କୁ ଯେଉଁ ପଥଟା ବାହାରି ଯାଇଛି, ସେଇଟା ମୋର ସଂପୂର୍ଣ୍ଣ ଅପରିଚିତ । ତେଣୁ ବିପଦ ଯେ ମୋର ପଛେପଛେ ଧାଇଁ ଧାଇଁ ଚାଲିଛି । ଏହା ନିଃସନ୍ଦେହ ।

ତଥାପି ମୋତେ ସାହସିକତାର ସହିତ ଆଗେଇବାକୁ ହେବ । କାମ ହାସଲ କରିବାକୁ ହେବ । ବ୍ୟାଙ୍କ ରବରୀ କେସ୍‌ର ମୂଳ ଆସାମୀମାନଙ୍କ ସମ୍ବନ୍ଧରେ ତଥ୍ୟ ବାହାର କରିବାକୁ ହେବ ।

ମୁଁ ସିଧା ବାଟରେ ନ ଯାଇ ଅବାଟରେ ଜଂଗଲ ଭିତରେ ଆଗଉଥିଲି । ଠିକଣା କରିପାରୁ ନଥିଲି କୁଆଡ଼େ ଯିବି । ଏହାପରେ କ'ଣ କରିବି ।

ହଠାତ୍ ମୋ କାନ ପାଖ ଦେଇ ସଁ କରି କ'ଣ ଗୋଟାଏ ଛୁଟିଗଲା । ମୁଁ ଠିଆହୋଇ ପଡ଼ିଲି । ଦେଖିଲି ସାମ୍ନା ଗଛରେ ଗୋଟାଏ ତୀର ପୋତି ହୋଇଗଲା । ମୁଁ ହତଚକିତ ହୋଇ ଠିଆ ହୋଇପଡ଼ିଲି ।

ଶତ୍ରୁ ତା'ହେଲେ ମୋର ପିଛା ଧରିଛି ।

ପର ମୁହୂର୍ତ୍ତରେ ଦେଖିଲି, ତୀର ଆଗରେ ଗୋଟାଏ କାଗଜ ଝୁଲୁଛି ।

ମୁଁ ଛୁଟିଯାଇ କାଗଜଟା ଛିଡ଼େଇ ଆଣିଲି ।

ସେଥିରେ ଲେଖାଥିଲା : ଆଗନ୍ତୁକ ମହାଶୟ ! ଆପଣ ଜୀବନ ପଣ ରଖି ଆଉ ଆଗାନ୍ତୁ ନାହିଁ । ଆମେ ଆପଣଙ୍କର ଉପସ୍ଥିତି ବୁଝିପାରିଛୁ । ଆମର ଏହି ନିଷିଦ୍ଧ ଅଞ୍ଚଳ ଭିତରେ ପ୍ରବେଶ କରି ଆପଣ ଖୁବ୍ ଭୁଲ୍ କରିଛନ୍ତି । ଆପଣ ବର୍ତ୍ତମାନ ଆମ ହାତରେ ବନ୍ଦୀ । ପଳେଇ ଯିବାକୁ ଚେଷ୍ଟା କରିବେ ନାହିଁ । ଯଦି ନିଜର ମଙ୍ଗଳ ଚାହାନ୍ତି, ତେବେ ଏଇ କାଗଜ ପଛରେ ଅଙ୍କା ହୋଇଥିବା ମାନଚିତ୍ର ଦେଖି, ଏଥିରେ ନିର୍ଦ୍ଦେଶିତ ପଥରେ ଆଗେଇ ଆସନ୍ତୁ । ଅବଜ୍ଞା କଲେ ମୃତ୍ୟୁ ଆପଣଙ୍କର ସୁନିଶ୍ଚିତ ।

ଲେଖା ପଢ଼ିସାରି କାଗଜଟି ଓଲଟେଇ ଦେଖିଲି । ଅଙ୍କାବଙ୍କା ଗାର ଟଣା ହୋଇ ଗୋଟାଏ ମାନଚିତ୍ର ଅଙ୍କା ହୋଇଛି ଏବଂ ତୀର ସାହାଯ୍ୟରେ ପଥ ଦେଖେଇ ଦିଆ ହୋଇଛି । ମୁଁ ବହୁତ ବେଳ ଯାଏ ନିରୀକ୍ଷଣ କଲାପରେ, ମୋର ମନେହେଲା ଏଇ ମାନଚିତ୍ରର ପଥଟା ପାହାଡ଼ ଉପରକୁ ଉଠିବା ପାଇଁ, ଧୀରେ ଧୀରେ ପୁଣି ପାହଡ଼ ତଳକୁ ଓହ୍ଲେଇ ଯିବା ପାଇଁ ।

ମୁଁ ସ୍ତବ୍ଧ ହୋଇ ନୀରବରେ ଚିନ୍ତା କଲି ।

ହାତଘଡ଼ିକୁ ଚାହିଁ ଦେଖିଲି ସଂଧ୍ୟା ହେବାକୁ ମାତ୍ର ଦୁଇଘଣ୍ଟା ବାକି ଅଛି । ମୁଁ ସହରଠାରୁ ଅନେକ ଦୂରକୁ ଚାଲିଆସିଛି ।

ମୁଁ ଠିଆ ହୋଇ ଚିନ୍ତା କରୁଥିଲି ।

ହଠାତ୍ ପଛଆଡୁ ପିଠିରେ କାହା ହାତର ସ୍ପର୍ଶ ପାଇ ଚମକି ଉଠିଲି । ବୁଲି ଅନେଇଲି ।

ଗୋଟିଏ ଅର୍ଦ୍ଧ ଉଲଙ୍ଗ ତରୁଣୀ ମୋ ଆଡ଼େ ଚାହିଁ ମୁହଁ ଚିପି ଚିପି ହସୁଛି । ତା'ର କଟିଦେଶରେ ଖାଲି ସାମାନ୍ୟ ବସ୍ତ୍ର । ବକ୍ଷ ଦେଶରେ କାଞ୍ଚୁଲୀ । ସମଗ୍ର ଦେହଟା ମୁକୁଳା । ଗଳାଟା ନାନା ଜାତିର ପଥର ଓ ପୋହଳାର ମାଳରେ ଭର୍ତ୍ତି ହୋଇଛି ।

ସେ ମୋତେ କ'ଣ କହିଲା ।

ମୁଁ କିଛି ବୁଝିପାରିଲି ନାହିଁ ।

ପୁଣି ମୋତେ ଆଙ୍ଗୁଳି ଦେଖାଇ ପାହାଡ଼ର ଚୂଡ଼ା ଦେଖାଇଲା । ଇଙ୍ଗିତରେ ସଂଗରେ ଯିବା ପାଇଁ ଡାକିଲା ।

ମୁଁ ତାକୁ ଗଛରେ ଲାଗିଥିବା ତୀର ଦେଖାଇଲି ଏବଂ ହାତରେ ଧରିଥିବା କାଗଜ ଖଣ୍ଡିକ ଦେଖାଇଲି ।

ସେ ମୋ ହାତରୁ କାଗଜ ଖଣ୍ଡିକ ଟାଣିନେଇ ଦୂରକୁ ଫିଙ୍ଗିଦେଲା । ରାଗିଯାଇ କ'ଣ ଗୁଡ଼ାଏ କହିଗଲା । ମୁଁ ତା' ଭାଷା ବୁଝିପାରୁ ନଥିଲି । ମୋର ମନେହେଉଥିଲା ଝିଅଟି ଆଦିବାସୀ ଜଙ୍ଗଲୀ ଝିଅ । ସେ ରାଗି ଗଲାଣି । ଏହାପରେ ହୁଏତ କିଛି ଦୁର୍ଘଟଣା ଘଟିପାରେ ।

ତା'ର ଆକାର ଇଙ୍ଗିତରୁ ମୋର ମନେହେଉଥିଲା, ସେ ମୋତେ ତା' ସାଙ୍ଗରେ ଯିବାକୁ କହୁଛି । ଶେଷରେ ସେ ମୋ ହାତ ଧରି ଟାଣିଲା ।

ଏହାପରେ ମୋର ଆଉ କରଣୀୟ କିଛି ନଥିଲା ।

ମୁଁ ତା' ପଛେ ପଛେ ଆଗେଇଲି । କିଛିବାଟ ଆଗେଇ ଯିବା ପରେ ସେହି ପାହାଡ଼ ଭିତରେ ସରୁ ଏକ ଚଲାପଥ ମୋର ଦୃଷ୍ଟିଗୋଚର ହେଲା । ମୋର ମନେହେଲା ହୁଏତ ଏଠାରେ ଦୂରରେ କେଉଁଠି ମଣିଷ ବସତି ଅଛି । ଏ ଝିଅଟି ହୁଏତ ସେଇଠି ରୁହେ । ମୋତେ ଏକା ଓ ନିଃସହାୟ ଅବସ୍ଥାରେ ଦେଖି ସାହାଯ୍ୟ କରିବା ପାଇଁ ଆଗେଇ ଆସିଛି ।

ତରୁଣୀଟି ଆଗେ ଆଗେ ଚାଲିଥିଲା । କେଇପାଦେ ଆଗେଇ ଯାଇ ପଛକୁ ପଛକୁ ଚାହୁଁଥିଲା । ଉଠାଣିଆ ପଥରେ ସେ ଆଗ ପାହାଡ଼ ଉପରକୁ ଉଠିଯାଇ ମୋ ହାତଧରି ମୋତେ ଟାଣି ଉଠାଉଥିଲା ।

ଏକ ସମୟରେ ଆମେ ପାହାଡ଼ର ଶୀର୍ଷ ଦେଶକୁ ଉଠିଲୁ । ତା'ପରେ ଧୀରେ ଧୀରେ ତଳକୁ ଓହ୍ଲେଇବାରେ ଲାଗିଲୁ ।

ତଳକୁ ଖସିଲା ବେଳକୁ ସଂଧ୍ୟା ହୋଇ ଆସୁଥିଲା । ମୁଁ ତରୁଣୀଟିର ପଛେ ପଛେ ଚାଲିଥିଲି । ମୋର ମନେହେଉଥିଲା, ତରୁଣୀଟି ଖୁବ୍ ଖୁସି । ବାଟଯାକ ଆନନ୍ଦରେ ସେ ମୋତେ କ'ଣ ସବୁ କହି କହି ଚାଲିଥିଲା ।

ଆମେ ପାହାଡ଼ରୁ ସମତଳ ଭୂମିକୁ ଓହ୍ଲେଇଲା ବେଳକୁ, ପୂର୍ଣ୍ଣ ଅନ୍ଧକାର ଜମି ଆସୁଥିଲା । ଦୂରରେ କେଉଁଠି କେଉଁଠି ନିଆଁ ଜଳିଲା ପରି ମନେହେଉଥିଲା । ଏଥର ତରୁଣୀଟି ମୋ ହାତ ଧରି ମୋତେ ଆଗେଇ ଯିବାରେ ସାହାଯ୍ୟ କରୁଥିଲା ।

ଏକ ସମୟରେ ଆମର ପଥଚଲା ଶେଷ ହେଲା ।

ମୋତେ ତରୁଣୀଟି ଗୋଟିଏ ଘର ଭିତରେ ଛାଡ଼ିଦେଇ ହୋ ହୋ ହୋଇ ହସିବାରେ ଲାଗିଲା । ଘର ଭିତରେ ଅନେକ ମହମବତି ଜଳୁଥିଲା । ଘରଟି ସୁଦୃଶ୍ୟ ସାଜସଜ୍ଜାରେ ସଜ୍ଜିତ ହୋଇଥିଲା ।

ମୁଁ ଘରର ଚାରିଆଡ଼କୁ ଚାହିଁ ଅବାକ୍ ହୋଇଗଲି ।

ଆଶ୍ଚର୍ଯ୍ୟ ! ଜଙ୍ଗଲ ଭିତରେ, ଏହି ଜଙ୍ଗଲୀ ଆଦିବାସୀମାନେ ସଭ୍ୟ ଜଗତର ଆଦର୍ଶରେ ଅନୁପ୍ରାଣିତ ହେଲେ କିପରି !!

ତରୁଣୀଟି ମୋର ବିସ୍ମୟ-ଅନୁଭୂତିକୁ ହୁଏତ ଲକ୍ଷ୍ୟ କରୁଥିଲା । ସେ ଏଥର ହସି ହସି ମୋତେ କହିଲା : ଆପଣଙ୍କୁ ଏଠାରେ କିଛି ଅସୁବିଧା ହେବ ନାହିଁ, ଆପଣ ଆରାମରେ...

ମୁଁ ସ୍ତବ୍ଧ ହୋଇ ତରୁଣୀଟି ମୁହଁକୁ ଅନାଇ ରହିଲି । ଏଥର ସେ ପରିଷ୍କାର ଇଂରାଜୀ କହୁଛି ଏବଂ ତା' କଥା ବୁଝିବାକୁ ମୋତେ ସାମାନ୍ୟତମ ବି କଷ୍ଟ ହେଉ ନାହିଁ ।

ତରୁଣୀଟି କହିଲା : ମୋ ନାଁ ମାନିଲା । ମୁଁ ଦସ୍ୟୁ ଦଳର ଜଣେ ସହକର୍ମିଣୀ । ଯେଉଁ ଦସ୍ୟୁ ଦଳର 'ରବରୀ' କେସ୍‌ର ଅନୁସନ୍ଧାନରେ ଆପଣ ଜୀବନ ପଣ କରି ବାହାରିଛନ୍ତି, ମୁଁ ସେହି ଦସ୍ୟୁ ଦଳର ଜଣେ । ତେଣୁ ବର୍ତ୍ତମାନ ଆପଣ ନିଶ୍ଚୟ ବୁଝିପାରୁଛନ୍ତି ଯେ, ଆପଣ ଠିକ୍ ଜାଗାରେ ଆସି ପହଞ୍ଚିଛନ୍ତି । ଅବଶ୍ୟ ଆପଣ ଯଦି ଏଠାରେ ସ୍ୱଚ୍ଛନ୍ଦରେ ରହିବାକୁ ଚାହିବେ, ଆପଣଙ୍କର କୌଣସି ଅସୁବିଧା ହେବ ନାହିଁ । କାରଣ ଆପଣଙ୍କୁ ଆମେ ଆମର ବନ୍ଧୁ ରୂପରେ ବରଣ କରିଛୁ । ମାତ୍ର ପନ୍ଦରଟି ଦିନ ଆପଣ ଏଠାରେ ଅଜ୍ଞାତବାସ କରିବେ । ତା'ପରେ ଆମେ ନେଇ ଆପଣଙ୍କୁ ସହରରେ ପହଞ୍ଚାଇ ଦେଇ ଆସିବୁ । ତା'ପରେ ଆପଣ ଆପଣଙ୍କ ଅଜ୍ଞାତବାସର ରୋମାଞ୍ଚକର କାହାଣୀ ଲେଖି, ସଭ୍ୟ ସମାଜକୁ ଚମକାଇ ଦେବେ ।

ମାନିଲା ଅତି ସହଜ କଣ୍ଠରେ ମୋତେ କହି ଚାଲିଥିଲା ।

ମୁଁ ଖାଲି ଘରର ଚାରିଆଡ଼କୁ ଚାହିଁ ଦେଖୁଥିଲି ।

ମାନିଲା ପୁଣି କହିଲା : ଏଇ ଗୋଟିଏ ଘର ନୁହେଁ, ଏହା ସହିତ ଆହୁରି ଦୁଇଟି ଘର ଅଛି । ସବୁ ଆପଣଙ୍କ ବ୍ୟବହାର ପାଇଁ ଛାଡ଼ି ଦିଆଯିବ । ଚାରିଜଣ ପରିଚାରିକା ଆପଣଙ୍କ ସେବା ପାଇଁ ନିଯୁକ୍ତି ପାଇଛନ୍ତି । ସେମାନେ ମୋଠାରୁ ଆହୁରି ସୁନ୍ଦରୀ । ସେମାନଙ୍କର ବୟସ ମଧ୍ୟ ମୋଠାରୁ ଆହୁରି କମ୍ ।

ମାନିଲା ପୁଣି ହସୁ ହସୁ ହାତରେ ଦୁଇଥର ତାଳି ବଜାଇଲା । ଗୋଟିଏ ତରୁଣୀ ହସି ହସି ଆସି ମୋ ସାମ୍ନାରେ ଠିଆ ହେଲା । ତା' ଦେହର ଅଙ୍ଗବାସ ମଧ୍ୟ ସୀମିତ । କେବଳ ବକ୍ଷ ଓ କଟିଦେଶ ବେଷ୍ଟନ କରି ରହିଛି ଛୋଟ ଛୋଟ ବସ୍ତ୍ରରେ ।

ମାନିଲା କହିଲା : ଦେଖିଲେ, ଏମାନେ ଆପଣଙ୍କୁ ସବୁ ପ୍ରକାର ସାହାଯ୍ୟ କରିବେ । କିନ୍ତୁ ଆପଣଙ୍କ ପ୍ରତି ଗୋଟିଏ ବିଧି ନିଷେଧ ହେଉଛି, ଆପଣ ଏ ଘର ଛାଡ଼ି ବାହାରକୁ ବାହାରି ପାରିବେ ନାହିଁ । ପଳାଇ ଯିବାକୁ ଚେଷ୍ଟା କରିବେ ନାହିଁ । ତା'ହେଲେ ଆପଣଙ୍କର ପ୍ରାଣହାନି ସୁନିଶ୍ଚିତ ।

ମାନିଲା ଏଥର ମୋତେ ଆଉ ଗୋଟିଏ ଘର ଆଡ଼କୁ ଡାକିନେଇ କହିଲା : ଏଇଟି ଆପଣଙ୍କର ଶୋଇବା ଘର । ଆପଣଙ୍କ ସ୍ୱାଚ୍ଛନ୍ଦ୍ୟ ପାଇଁ ଏଠାରେ ସବୁ ପ୍ରକାର ସୁବିଧା କରି ରଖାହୋଇଛି । ଲେଖାଲେଖି ଓ ପଢ଼ାପଢ଼ି ବି ଆପଣ ଇଚ୍ଛାନୁସାରେ କରିପାରିବେ । ଧରି ନିଅନ୍ତୁ ଆପଣ ଏକ ପନ୍ଦରଦିନିଆ ଛୁଟି ଉପଭୋଗ କରୁଛନ୍ତି ଏକ ଶୈଳନିବାସରେ । ତା'ପରେ ଆପଣ ଫେରିଯିବେ କର୍ମମୟ ଜୀବନ ଭିତରକୁ ।

ମାନିଲା ମୋ ହାତ ଦୁଇଟାକୁ ଧରି ହଲେଇ ଦେଲା । ହସିଲା ଏବଂ କହିଲା : ଆପଣ ବଡ଼ କ୍ଳାନ୍ତ, ଏଥର ବିଶ୍ରାମ କରନ୍ତୁ । ମୁଁ ଚାଲିଲି । ପୁଣି ହୁଏତ ମଝିରେ ମଝିରେ ଦେଖାହେବ ।

ମାନିଲା ଚାଲିଯାଉଥିଲା । ଫେରିଆସି ମୋତେ ଚୁମ୍ବନ କଲା । ତା'ପରେ କହିଲା : ମୁଁ ଆପଣଙ୍କର ସୌଭାଗ୍ୟ କାମନା କରୁଛି ।

ମାନିଲା ମୋର ସୌଭାଗ୍ୟ କାମନା କରି ଚାଲିଗଲା । କିନ୍ତୁ ମୋର ଯେଉଁ ଜୀବନ ଆରମ୍ଭ ହେଲା, ତାହା ସୌଭାଗ୍ୟର କି ଦୁର୍ଭାଗ୍ୟର, ମୋତେ ଚିନ୍ତା କରିବାକୁ ଅବସର ମିଳି ନଥିଲା ।

ମୁଁ ନୀରବରେ ଗୋଟିଏ ଚେଆର୍‌ରେ ବସି ଚିନ୍ତା କରିବାକୁ ଲାଗିଲି । ଯେଉଁମାନଙ୍କ ପଛରେ ମୁଁ ତଥ୍ୟ ଅନୁସନ୍ଧାନ ପାଇଁ ଘୂରି ବୁଲୁଥିଲି, ମୋର ଅଜାଣତରେ ସେଇମାନଙ୍କ ହାତରେ ମୁଁ ବନ୍ଦୀ ?

ହଠାତ୍ ମୋ ହାତରୁ ବହିଟା ଖସି ପଡ଼ିଲା ।

ଆମେରିକାର ସାମ୍ବାଦିକ ଜନ୍ ଡିକେନ୍‌ସନ୍‌ଙ୍କ ସାମ୍ବାଦିକ ଜୀବନ ସହିତ ମୋ ଜୀବନର ଯୋଗସୂତ୍ର ଯେ ଏତେ ମିଶିଯାଇପାରେ, ମୁଁ ବିଶ୍ୱାସ କରିପାରିଲି ନାହିଁ । ଏଥର ମୋର କାହିଁକି ଦୃଢ଼ ଧାରଣା ଜନ୍ମିଲା ଯେ, ଜନ୍ ଡିକେନ୍‌ସନ୍‌ଙ୍କ ପରି ମୁଁ ମଧ୍ୟ 'ମୀରା ମର୍ଡ଼ର କେସ୍'ର ଅପରାଧୀମାନଙ୍କ ହାତରେ ବନ୍ଦୀ ହୋଇପଡ଼ିଛି । ମୋତେ ହୁଏତ 'ପଞ୍ଚମ ଆସାମୀ'କୁ ଖୋଜି ବାହାର କରିବା ପାଇଁ ଏମାନେ ଆଉ ସୁଯୋଗ ଦେବେ ନାହିଁ ।

ତଳେ ପଡ଼ିଯାଇଥିବା 'ସାମ୍ବାଦିକର ଡାଇରୀ' ବହିଟା ମୁଁ ଗୋଟାଇ ଆଣି ଜନ୍ ଡିକେନ୍‌ସନ୍‌ଙ୍କର ପରବର୍ତ୍ତୀ ଜୀବନର ଘଟଣା ପଢ଼ିବାକୁ ଯାଉଥିଲି ।

କିନ୍ତୁ ମୋ ଘରେ ପରିଚାରକ ଓ ପରିଚାରିକା ଦୁଇଜଣ ପ୍ରବେଶ କଲେ । ସେମାନେ ମୋତେ ମନେପକାଇ ଦେଲେ ଯେ, ଏହା ଭିତରେ ଖାଇବା ବେଳ ହୋଇଯାଇଛି ଏବଂ ପାଖ ଡାଇନିଂ ରୁମ୍‌ରେ ମୋ ପାଇଁ ଖାଇବାର ବ୍ୟବସ୍ଥା ହୋଇ ରହିଛି ।

ମୋର ଇଚ୍ଛା ନଥିଲେ ବି, ବହିଟିକୁ ବନ୍ଦ କରି ରଖି ମୋତେ ଉଠିବାକୁ ପଡ଼ିଲା । ଖାଇ ପିଇ ଜୀବନ ଧାରଣ କରି ବଂଚି ରହିବାକୁ ହେବ । ପରବର୍ତ୍ତୀ ଘଟଣାଗୁଡ଼ିକ ଗଭୀର ଭାବରେ ଅନୁଧ୍ୟାନ କରିବାକୁ ହେବ । ସବୁ ବିଷୟର ତ ଗୋଟାଏ ପରିଣତି ଅଛି । ଦେଖାଯାଉ, ଜିତ୍ କାହାର ହେଉଛି ।

ମୁଁ ହାତଘଡ଼ିକୁ ଚାହିଁ ଦେଖିଲି, ବାରଟା ବାଜୁଛି ।

ମୋର ମନେପଡ଼ିଲା ପୋଲିସ୍ ଇନିସ୍‌ପେକ୍ଟର ମନୋରଂଜନ ମହାପାତ୍ରଙ୍କ କଥା । ତାଙ୍କ ସହିତ ମୋର ଆପଏଣ୍ଟମେଣ୍ଟ୍ ଥିଲା ଏଗାରଟାରୁ ବାରଟା ମଧ୍ୟରେ । ଭଦ୍ରଲୋକ ତାଙ୍କ ଅଫିସରମାନଙ୍କ ଗହଣରେ ମୋତେ ହୁଏତ ଅପେକ୍ଷା କରି କରି ନିରାଶ ହୋଇଥିବେ । ହୁଏତ ଟେଲିଫୋନ୍ କରି ମୋତେ କେଉଁଠୁ ନ ପାଇ ତାଙ୍କ ମନରେ ବିରୂପ ଧାରଣା ଜନ୍ମିଥିବ । କିନ୍ତୁ ଯେତେ ଯାହା ଦୁର୍ଭାବନା ତାଙ୍କ ମନରେ ଜନ୍ମିଲେ ମଧ୍ୟ, ସେ କ'ଣ ମୋତେ ଖୋଜି ପାଇବେ ? ସେ ମୋର ଏହିପରି ପରିଣତି କଥା ହୁଏତ କଳ୍ପନା ବି କରିପାରି ନଥିବେ ।

ମୁଁ ଧୀରେ ଧୀରେ ଯାଇ ଡାଇନିଂ ଟେବୁଲ ପାଖରେ ପହଞ୍ଚିଲି ।

ଷୋଡ଼ଶ ଉପଚାରରେ ଖାଦ୍ୟସାମଗ୍ରୀ ସଜା ହୋଇ ରହିଛି ।

ମୋତେ ହସ ମାଡ଼ିଲା । ଏତେ ଆଦର ଯତ୍ନ, ଏତେ ସତ୍‌କାର । ଉଦ୍ଦେଶ୍ୟ କ'ଣ ଖାଲି ଅଞ୍ଜନାର ପାଣିଗ୍ରହଣ ନା ପଛରେ ଅନ୍ୟ କିଛି ପରିକଳ୍ପନା ରହିଛି ?

ମୁଁ ଖାଇ ବସିଲି ।

ଖାଦ୍ୟ ସାମଗ୍ରୀ ସବୁ ସୁସ୍ୱାଦୁ । ଯେପରି ମୋ ମନ ଜାଣି କିଏ ରୋଷେଇ କରିଛି । ପ୍ରୟୋଜନରୁ ବେଶି ମୁଁ ଖାଇ ଯାଇଥିଲି ।

ମୁହଁ ହାତ ଧୋଇ ଟିକିଏ ବିଶ୍ରାମ କଲାପରେ ମୋର ମନେହେଲା, ବାହାର ସହିତ ଯୋଗାଯୋଗ କଲେ କେମିତି ହୁଅନ୍ତା ? ପ୍ରଣବ ସାନ୍ୟାଲ କହୁଥିଲେ, ଉପରେ ଯେଉଁ ଫୋନ୍‌ଟା ଅଛି, ସେଇଟା ସାହାଯ୍ୟରେ ମୁଁ ବାହାର ସହିତ ଯୋଗାଯୋଗ କରିପାରିବି । କିନ୍ତୁ ଏହା କ'ଣ ସତରେ ସମ୍ଭବ ?

ମୁଁ ଉଠି ଠିଆହେଲି ଏବଂ ସିଧା ଅଫିସ୍ ଘରକୁ ଯାଇ ଦେଖିଲି, ଘରେ ତାଲା ପଡ଼ିଛି ।

ଜଣେ ପରିଚାରକକୁ ତାଲା ଖୋଲିଦେବା ପାଇଁ କହିଲି ।

ସେ ଚାବି ଆଣି ଅଫିସ୍ ଘର ଖୋଲିଦେଲା ।

ସାମ୍‌ନାରେ ଟେଲିଫୋନ୍ । କିନ୍ତୁ ଡାଇରେକ୍ଟ ନୁହେଁ । ତଥାପି ରିସିଭର ଉଠାଇଲି ।

\+ \+ \+

: ନମ୍ବର ପ୍ଲିଜ୍ । ବୋଧହୁଏ ଅପରେଟରର କଣ୍ଠସ୍ୱର ଶୁଣାଗଲା ।

ମୁଁ ଖୁସିହୋଇ ଯାଇଥିଲି । ପ୍ରଥମେ ମୁଁ ଆମ ଅଫିସ୍‌ର ଟେଲିଫୋନ୍ ନମ୍ବରଟା ଅପରେଟରକୁ କହିଲି ।

ଅଳ୍ପ ସମୟ ପରେ ଅପର ପ୍ରାନ୍ତରେ ରିଂ ହେବାକୁ ଲାଗିଲା- କ୍ରିଂ... କ୍ରିଂ... କ୍ରିଂ... କ୍ରିଂ...

ମୋ ମନରେ ଅପାର ଆନନ୍ଦ । ଅନ୍ତତଃ ମୋର ଅସହାୟ ଅବସ୍ଥା କଥା ମୁଁ ରଣଜିତ୍ ତାଲୁକଦାରଙ୍କୁ ଜଣାଇପାରିବି । ସେ ପୋଲିସ୍ ଇନିସ୍‌ପେକ୍ଟରଙ୍କୁ ଖବରଟା ଦେବେ । ପୋଲିସ୍ ଇନିସ୍‌ପେକ୍ଟର ମୋର ଉଦ୍ଧାରର ଚେଷ୍ଟା କରିବେ ।

କ୍ରିଂ... କ୍ରିଂ... କ୍ରିଂ... କ୍ରିଂ...

ଟେଲିଫୋନ୍‌ଟା ବାଜି ଚାଲିଥିଲା ।

ଗୋଟାଏ ସମ୍ବାଦପତ୍ର ଅଫିସ୍‌ରେ ଏତେବେଳଯାଏ ଫୋନ୍‌ଟା କେହି ନ ଧରିବା ତ ବିସ୍ମୟର କଥା !

ହଠାତ୍ ଅପର ପ୍ରାନ୍ତରୁ ଗୋଟାଏ କଡ଼କଡ଼ ଶବ୍ଦ ଶୁଣାଗଲା ଏବଂ ପର ମୁହୂର୍ତ୍ତରେ ଏକ କୋମଳ କଣ୍ଠସ୍ୱରରୁ ଭାସିଆସିଲା : ହ୍ୟାଲୋ...

ମୁଁ ମୁହୂର୍ତ୍ତେ ସ୍ଥିର ହୋଇଗଲି । ଆମ ଅଫିସ୍‌ରେ ଯଦିଓ ଦୁଇ ତିନିଜଣ ମହିଳା କର୍ମଚାରୀ ଅଛନ୍ତି, କିନ୍ତୁ ଫୋନ୍ ସହିତ ସେମାନଙ୍କର ସଂପର୍କ ତ କିଛି ନାହିଁ । ଅଥଚ...

ପୁଣି ସେହି କୋମଳ କଣ୍ଠସ୍ୱର ଶୁଣାଗଲା : ହ୍ୟାଲୋ, ହ୍ୟାଲୋ... ଆପଣ କାହାକୁ ଖୋଜୁଛନ୍ତି ?

: ମୁଁ ମିଷ୍ଟର ତାଲୁକଦାରଙ୍କୁ ଖୋଜୁଛି । ଆପଣ କିଏ କହୁଛନ୍ତି ?

: ମୁଁ ମିସ୍ ସାନ୍ୟାଲ, ମାନେ ଅଞ୍ଜନା ସାନ୍ୟାଲ କହୁଛି । ରଂ କନେକ୍‌ସନ୍ ହୋଇଯାଇଛି ବୋଧହୁଏ । ଆପଣ କିଏ କହୁଛନ୍ତି ?

ମୋ ପାଟିରୁ ଆଉ କଥା ବାହାରିଲା ନାହିଁ ।

ଅଞ୍ଜନା ସାନ୍ୟାଲ ! ପ୍ରଣବ ସାନ୍ୟାଲଙ୍କ ଝିଅ ! ଯିଏ ମୋତେ ବିବାହ କରିବା ପାଇଁ ତା' ବାପା ପାଖରେ ପ୍ରସ୍ତାବ ଦେଇଛି । ସେଇ, ଏ କ'ଣ ସେଇ ଅଞ୍ଜନା !

ଅପରପ୍ରାନ୍ତରୁ ଶୁଣାଗଲା : ରଂ ନମ୍ବର ମିଷ୍ଟର । ସେ ବୋଧହୁଏ ରିସିଭରଟା ରଖି ଦେବାକୁ ଯାଉଥିଲା । ମୁଁ କିନ୍ତୁ ଉତ୍ସାହିତ ହୋଇ କହିଲି : ମିସ୍ ସାନ୍ୟାଲ୍, ମୁଁ ମିଷ୍ଟର ରାୟ କହୁଛି ।

: ମିଷ୍ଟର ରାୟ ! ପୂରା ନାଁଟା କୁହନ୍ତୁ । ମୁଁ ଠିକ୍ ଚିହ୍ନି ପାରୁ ନାହିଁ ।

: ସଞ୍ଜୀବ ରାୟ ।

: ଓଃ ମିଷ୍ଟର ରାୟ । କ୍ଷମା କରିବେ । ମୁଁ ଆପଣଙ୍କୁ ଏଇ ମୁହୂର୍ତ୍ତରେ ମୋଟେ ଆଶା କରି ନଥିଲି । ହଠାତ୍, ମୋତେ କାହିଁକି ଆପଣଙ୍କର ମନେପଡ଼ିଲା ।

: ମିସ୍ ସାନ୍ୟାଲ୍, ମୁଁ କଣ୍ଠସ୍ୱର ଅତି ସରଳ କରି କହିଲି, କେଜାଣି କାହିଁକି ହଠାତ୍ ଆପଣଙ୍କୁ ମନେପଡ଼ିଲା, ମୁଁ ବି ଠିକ୍ କହିପାରୁ ନାହିଁ । ତେବେ ମୋର ଭାରି ଇଚ୍ଛା ହେଉଛି, ଆପଣଙ୍କ ସଂଗେ ବସି ଆଳାପ କରିବା ପାଇଁ । ନିର୍ଜନରେ, ନିରୋଳାରେ । ଆଜି ଖାଲି ଆପଣଙ୍କ କଥା ମନେପଡୁଛି । ଆପଣ ଥରେ ଆସନ୍ତେ ନାହିଁ ?

ହସର ଲହରୀ ଭାସି ଆସିଲା ଅପର ପ୍ରାନ୍ତରୁ । ଅଞ୍ଜନା ହସ ଥମେଇ କହିଲା : ଆପଣ ବଡ଼ ଇଏ ମିଷ୍ଟର ରାୟ । ଆପଣ ମୋତେ ନ ଡାକିଥିଲେ ବି ଆଜି ମୁଁ ଯାଇଥାଆନ୍ତି ଦେଖା କରିବା ପାଇଁ ଏବଂ ମୁଁ ଯିବି ମଧ, କିନ୍ତୁ ଗୋଟାଏ ସର୍ତ୍ତରେ ।

: ସର୍ତ୍ତଟା ଶୁଣେ ।

: ଆପଣ ମୋତେ ଆପଣ କହିପାରିବେ ନାହିଁ ।

: ଓଃ, ଏଇ ସର୍ତ୍ତ । ମୁଁ ରାଜି । କିନ୍ତୁ ଅଞ୍ଜନା, ଗୋଟାଏ କଥା ମୁଁ ବୁଝିପାରୁ ନାହିଁ । ଏତେବଡ଼ ବିଶାଳ ପୃଥିବୀ, ତହିଁରେ ଅସଂଖ୍ୟ ରଥୀ ମହାରଥୀମାନଙ୍କର ବସବାସ । କିନ୍ତୁ ତମେ ହଠାତ୍ ମୋ ପ୍ରତି ଏପରି କରୁଣା କଲ କାହିଁକି ?

ପୁଣି ହସର ମଧୁଲହରୀ ଆସି ମୋ କାନ ପାଖରେ ଲହଡ଼ି ଭାଂଗିଲା । କିଛିସମୟ ପରେ ମଧୁର କଣ୍ଠରେ ଅଞ୍ଜନା କହିଲା : ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ରାୟ । ଆପଣଙ୍କୁ ସେଦିନ ମୋତେ ଭାରି ଭଲ ଲାଗିଲା । ମୋର ମନେହେଲା, ଆପଣ ହିଁ ଏକମାତ୍ର ଲୋକ, ଯାହା ଉପରେ ଯେ କେହି ଆସ୍ଥା ସ୍ଥାପନ କରିପାରେ ।

: କିନ୍ତୁ ଅଞ୍ଜନା, ତମେ କୋଉଦିନର କଥା କହୁଛ ?

: ଆରେ ଆପଣ ଏତେଶୀଘ୍ର ଭୁଲିଗଲେ ! ସେଦିନ ରାତିଟା ମୋ ଜୀବନର ଏକ ସ୍ମରଣୀୟ ରାତି ହୋଇ ରହିଚି । ଅଥଚ...

: କିନ୍ତୁ ଅଞ୍ଜନା । ଜୀବନଟା ଖାଲି ତ ଏକା ତମର ନୁହେଁ, ଆଉ ଜଣକର ଅଛି । ତା' କଥା କ'ଣ ତମେ ଚିନ୍ତା କରିଥିଲ ? ତା'ର ଇଚ୍ଛା ଅନିଚ୍ଛାର କଥା ଭାବିଥିଲ ?

: ଦରକାର ହୁଏ ନାହିଁ । ଆପଣ ପୁରୁଷ ଲୋକ । ଆପଣ ଆମ ନାରୀମାନଙ୍କର ଇଚ୍ଛା ଅନିଚ୍ଛାର କଥା ଏତେ ସହଜରେ ବୁଝିପାରିବେ ନାହିଁ । ଯା'ହେଉ, ଆପଣଙ୍କୁ ମୁଁ ଅସୁଖୀ କରିବି ନାହିଁ । ଏତିକି ଅନ୍ତତଃ କଥା ଦେଉଛି । ରହିଲି ।

ଅଞ୍ଜନା... ଅଞ୍ଜନା...

ଅପରପ୍ରାନ୍ତରୁ ରିସିଭରଟା ଥୋଇ ଦେବାର ଶବ୍ଦ ହେଲା । ମୁଁ ବି ରିସିଭରଟା ରଖିଦେଲି ।

ଅଞ୍ଜନା ଆଉ କିଏ ହୋଇପାରେ ? ମୁଁ ବୋଧହୁଏ ଦେଖିଛି ତାକୁ । ଅଞ୍ଜନା କେଉଁ ଦିନର ରାତି କଥା କହୁଛି ? ସେଦିନ ଏକମାତ୍ର ରାତ୍ରି ମୋର କଟିଥିଲା ହୋଟେଲ ରିଜେଣ୍ଟରେ, ଯେଉଁ ରାତିଟା ମୋ ଅକ୍ତିଆର ବାହାରେ ଥିଲା । କ'ଣ ଘଟଣ ଅଘଟଣ ଘଟିଥିଲା ମୁଁ ପରେ ଠିକ୍ ମନେକରିପାରି ନଥିଲି । କିନ୍ତୁ ସେ ରାତିରେ ଅଞ୍ଜନା...

ନା ନା, ଅଞ୍ଜନା ସୁମିତା ହୋଇ ନ ପାରେ । ସୁମିତାର କଣ୍ଠସ୍ୱର, ତା' କହିବା ଭଂଗୀ ସହିତ ଅଞ୍ଜନାର ବାଚନ ଭଂଗୀର ଆଦୌ ମେଳ ନାହିଁ । ତେବେ ? ଅଞ୍ଜନା କିଏ ? ଟେଲିଫୋନ୍‌ଟା ସତରେ କ'ଣ ରଂ କନେକ୍‌ସନ୍ ହୋଇଗଲା, ନା ଇଚ୍ଛା କରି ମୋତେ ଅଞ୍ଜନା ସହିତ କନେକ୍ଟ କରାଇ ଦିଆହେଲା ?

ମୁଁ ଆଉଥରେ ରିସିଭର ଉଠାଇଲି ।

କିଛି ସମୟ ପରେ ପୁଣି ଶୁଣିଲି : ନମ୍ବର ପ୍ଲିଜ୍ ।

ମୁଁ ପୁଣି ଆମର ଅଫିସ୍ ନମ୍ବରଟା କହିଲି ।

କେତୋଟି ସେକେଣ୍ଡ ପରେ କ୍ରିଂ... କ୍ରିଂ.. ହୋଇ ଘଣ୍ଟା ବାଜିଲା । କ୍ରିଂ.... କ୍ରିଂ... କ୍ରିଂ... କ୍ରିଂ... ଏବଂ ଅନେକ ସମୟ ଯାଏ କ୍ରିଂ.... କ୍ରିଂ... ବାଜି ଚାଲିଲା ।

ମୁଁ ବିରକ୍ତ ହେଇ ପଡ଼ିଥିଲି ।

ଅପରେଟର କିନ୍ତୁ ମୋତେ ଜଣାଇ ଦେଲା : ନୋ ରିପ୍ଲାଇ ସାର୍ ।

ଅସମ୍ଭବ । ଗୋଟାଏ ଖବରକାଗଜ ଅଫିସରେ, ବର୍ତ୍ତମାନ ଦିନ ଗୋଟାଏ ବେଳେ 'ନୋ ରିପ୍ଲାଇ' ହୋଇପାରେନା । ଟେଲିଫୋନ୍‌ଟାରେ ବୋଧହୁଏ କିଛି କାରସାଦି ଅଛି । ଏହି ଫୋନ୍‌ଟା ବୋଧହୁଏ ପ୍ରଣବ ସାନ୍ୟାଲଙ୍କର ନିଜର ଇଚ୍ଛା ଅନୁସାରେ ପରିଚାଳିତ । ତେଣୁ କୌଣସିଦିନ ହଜାରେ ଚେଷ୍ଟା କରି ମଧ ବାହାର ସହିତ ଯୋଗାଯୋଗ କରି ହେବ ନାହିଁ ।

ମୁଁ ଆଉଥରେ ରିସିଭର ଉଠାଇଲି । ସତ୍ୟତା ପ୍ରମାଣ କରିବା ପାଇଁ ଆଉ ଗୋଟାଏ ନମ୍ବର ସଂଯୋଗ କରିବା ପାଇଁ କହିଲି । ନମ୍ବରଟା ସୁକାନ୍ତ ପଟ୍ଟନାୟକର ।

ପୁଣି ପୂର୍ବ ରୀତିରେ ଅପରପ୍ରାନ୍ତରେ ଟେଲିଫୋନ୍‌ଟା କ୍ରିଂ... କ୍ରିଂ... ହୋଇ ବାଜିଲା । ଅନେକ ସମୟ । ମୁଁ ଭାବିଥିଲି ଏଥର ବୋଧହୁଏ ଅପରେଟର କଣ୍ଠସ୍ୱର ଶୁଣିବି ଏବଂ ସେ କହିବ 'ନୋ ରିପ୍ଲାଇ ସାର୍ ।'

କିନ୍ତୁ ତାହା ହେଲା ନାହିଁ । କିଏ ଜଣେ ରିସିଭର ଉଠାଇ ଅପରପ୍ରାନ୍ତରୁ କହିଲା : ହ୍ୟାଲୋ ?

ମୁଁ ଉତ୍ସାହିତ ହୋଇ କହିଲି : କିଏ ସୁକାନ୍ତ ?

: ନା, ସା'ବ୍ କୋର୍ଟକୁ ଚାଲିଗଲେଣି । ମା' ଅଛନ୍ତି, ଡାକିବି ।

ମୋର ଯେପରି ଏକ ଅକଥନୀୟ ଆନନ୍ଦରେ କଣ୍ଠରୁଦ୍ଧ ହୋଇ ଆସିଲା । ମନେହେଲା, ଏତେବେଳଯାଏ ମୋ ମନରେ ଯେତେ ଅବାନ୍ତର ଚିନ୍ତା ଭାବନା ବସା ବାନ୍ଧିଥିଲା ସବୁ ଭୁଲ୍ । ମୁଁ ପ୍ରଣବ ସାନ୍ୟାଲଙ୍କୁ ଏପରି ସନ୍ଦେହ କରିବାଟା ଉଚିତ ହୋଇ ନାହିଁ ।

କିନ୍ତୁ ମୋ ଭାବନା ଶେଷ ହେବା ପୂର୍ବରୁ ଅପର ପ୍ରାନ୍ତରୁ ରିସିଭରଟା ରଖି ଦେବାର ଶବ୍ଦ ମୁଁ ଶୁଣିଲି । ବୋଧହୁଏ ମୋ ଦୀର୍ଘ ନୀରବତାରେ ସୁକାନ୍ତର ଚାକରଟା ବିରକ୍ତ ହୋଇ ରିସିଭରଟା ରଖି ଦେଇଥିଲା । ମୁଁ ବି ରିସିଭର ରଖିଦେଲି । କିନ୍ତୁ ମୁଁ ଜାଣିପାରିଲି ଯେ, ଏଇ ଟେଲିଫୋନ୍ ସମ୍ବନ୍ଧରେ ମୋର ଯେଉଁ ଧାରଣା ଥିଲା ତାହା ଭୁଲ୍ ।

ମୁଁ ବସି ବସି ଚିନ୍ତା କଲି ।

ଏହାପରେ କ'ଣ ମୋର କର୍ତ୍ତବ୍ୟ । ଏହାପରେ କାହା ସହିତ କଥାବାର୍ତ୍ତା କରାଯାଇପାରେ । କେଉଁ ସମ୍ବନ୍ଧରେ କିପରି ଭାବରେ କଥା କହିଲେ, ମୋର ଗୋପନୀୟତା ରକ୍ଷା କରି ହେବ ।

ଅନେକ ବେଳ ଯାଏ ବସି ବସି ଚିନ୍ତା କଲି ।

ମୋର ମନ ହେଉଥିଲା ଏଇ ମୁହୂର୍ତ୍ତରେ ମୁଁ ପୋଲିସ୍ ଇନିସ୍‌ପେକ୍ଟର ମନୋରଂଜନ ମହାପାତ୍ରଙ୍କ ସହିତ ଯୋଗାଯୋଗ କରି, ତାଙ୍କୁ ସବୁ କଥା କହିବି । କିନ୍ତୁ ସେଇଟା କ'ଣ ନିରାପଦ ହେବ ? ଏମାନେ ନିଶ୍ଚୟ କୌଶଳକ୍ରମେ ମୋର କଥାବାର୍ତ୍ତା ଶୁଣୁଥିବେ ।

ତା'ହେଲେ ଅନ୍ୟ କେଉଁଠାକୁ ଫୋନ୍ କରି ମୋ ଅବସ୍ଥା ସମ୍ବନ୍ଧରେ ଜଣାଇ ହେବ ?

ମୋର ମନେପଡ଼ିଲା ସୁମିତା ଚନ୍ଦନ କଥା । ତା'ପରେ ଅଶୋକ ପାରେଖ ଏବଂ ପରେ ପରେ ଶଙ୍କର, ମିଷ୍ଟର ସରାଓଗୀ ଓ ଅନ୍ୟ ଅନେକଙ୍କ କଥା ।

କାଲି ରାତିରେ ଯାହାକୁ ମୁଁ ସେହି ଘର ଭିତରେ ଶୋଇଥିବାର ଦେଖିଲି, ସେ କ'ଣ ସତରେ ସୁମିତା ଚନ୍ଦନ ନା ଅନ୍ୟ କେହି ? ସେ ଯଦି ସୁମିତା ଚନ୍ଦନ ହୋଇଥାଏ, ତା'ହେଲେ ବିଚାରୀ ମୋ ପରି ବନ୍ଦୀ ଜୀବନଯାପନ କରୁଛି ହୁଏତ ।

କିନ୍ତୁ...

ପୁଣି ଟେଲିଫୋନ୍ ରିସିଭରଟା ଉଠାଇଲି । ଏଥର ଅପରେଟରକୁ କହିଲି ରିଜେଣ୍ଟ ହୋଟେଲ ସହିତ ସଂଯୋଗ କରାଇ ଦେବା ପାଇଁ ।

କିଛି ସମୟ ପରେ କ୍ରିଂ... କ୍ରିଂ... ଶବ୍ଦ ହେଲା ଏବଂ ସଂଗେ ସଂଗେ ରିସିଭରଟା ଉଠିଲା, ନାରୀ କଣ୍ଠର ସ୍ୱର ଶୁଣିଲି : ହୋଟେଲ ରିଜେଣ୍ଟ ।

: ମିଷ୍ଟର ସରାଓଗୀ ଅଛନ୍ତି ?

: ନାଁ, ଚାରିଟା ପରେ ସେ ଆସିବେ । ଆପଣ ?

: ମୁଁ ସଂଜୀବ ରାୟ ।

ମୁଁ ରୋଜି କହୁଛି । ଆପଣଙ୍କର ଖବର କ'ଣ ? ଆଜି ଆପଣଙ୍କୁ ଖୋଜିବାକୁ ଅନେକ ଲୋକ ଆସିଲେଣି । ଫୋନ୍ ବି ଆସିଲାଣି କେତୁଟା । ଆପଣ କ'ଣ ଅଜ୍ଞାତବାସ କରିଛନ୍ତି ନା କ'ଣ ? ରୋଜି କହିଲା ।

: ହଁ, ସେଇଆ ଧରିନିଅନ୍ତୁ । କିଏ ସବୁ ମୋତେ ଖୋଜିବାକୁ ଆସିଥିଲେ ?

: ସମସ୍ତଙ୍କ ପରିଚୟ ଅବଶ୍ୟ ମୁଁ ପଚାରି ନାହିଁ । ତେବେ ବିଶେଷ ଭାବରେ ପୋଲିସ୍ ଇନିସ୍‌ପେକ୍ଟର ମିଷ୍ଟର ମହାପାତ୍ର ଆପଣଙ୍କୁ ଫୋନ୍‌ରେ ଖୋଜୁଥିଲେ । ହଁ ଶଙ୍କର ବି ଆସିଥିଲା ଖୋଜିବାକୁ । କିନ୍ତୁ ଘଟଣା କ'ଣ ମିଷ୍ଟର ରାୟ ।

ମୁଁ ରୋଜିକୁ କି ଉତ୍ତର ଦେବି ଭାବିପାରୁ ନଥିଲି । କାରଣ ମୋ ଫୋନ୍ କିପରି ଭାବରେ ଟ୍ୟାପ୍ ହେଉଛି ଜାଣିପାରୁ ନଥିଲି । ତେଣୁ ସବୁଆଡୁ ସୁହାଇବା ଭଳି କହିଲି : ଘଟଣା ଯଦିଓ ଦୁର୍ଘଟଣା ନୁହେଁ, ତଥାପି ମୁଁ ଅଜ୍ଞାତବାସରେ ଅଛି । ଆଚ୍ଛା ଆପଣ ସୁମିତା ଚନ୍ଦନର କିଛି ଖବର ପାଇଥିଲେ ?

: ଆରେ ହଁ । ମିସ୍ ଚନ୍ଦନ ବି କିଛି ସମୟ ପୂର୍ବରୁ ଆପଣଙ୍କୁ ଖୋଜିବାକୁ ଆସିଥିଲେ । ସେ କହୁଥିଲେ ଆପଣଙ୍କ ସହିତ ତାଙ୍କର ଅତି ଜରୁରୀ ପ୍ରୟୋଜନ । ଆପଣ କେଉଁଠି ଅଛନ୍ତି ଜାଣିଲେ ଯେପରି ତାଙ୍କୁ ତୁରନ୍ତ ଜଣାଇ ଦେଇପାରେ, ସେଥିପାଇଁ ମୋତେ ସେ ବିଶେଷ ଅନୁରୋଧ କରିଥିଲେ । ତାଙ୍କୁ ତା'ହେଲେ କ'ଣ କହିବି ? ଆପଣଙ୍କ ଫୋନ୍ ନମ୍ବରଟା କୁହନ୍ତୁ ତ ।

: ଫୋନ୍ ନମ୍ବର । ମୁଁ ଫୋନ୍‌କୁ ଚାହିଁଲି । କିଛି ଲେଖା ନାହିଁ । ଏଣେତେଣେ ଦେଖିଲି, କେଉଁଠି ହେଲେ ଫୋନ୍ ନମ୍ବର ଦିଶିଲା ନାହିଁ । ମହା ସମସ୍ୟା ତ !

ମୋର ନୀରବତାରେ ରୋଜି ବ୍ୟସ୍ତ ହୋଇ ପଚାରିଲା : ହ୍ୟାଲୋ, ହ୍ୟାଲୋ !

ମୁଁ କହିଲି : ଆପଣ ବରଂ ସୁମିତାର ଫୋନ୍ ନମ୍ବରଟା କହନ୍ତୁ । ମୁଁ ତାକୁ ଫୋନ୍ କରିବି ।

ରୋଜି ମୋତେ ଗୋଟାଏ ନମ୍ବର କହିଲା ଏବଂ ମୁଁ ତାହା ନୋଟ୍ କଲି ।

ସାମାନ୍ୟ ନୀରବତା ପରେ କହିଲି : ହ୍ୟାଲୋ, ମିସ୍ ରୋଜି, ଶୁଣନ୍ତୁ । ପୋଲିସ୍ ଇନିସ୍‌ପେକ୍ଟର ମି: ମହାପାତ୍ରଙ୍କୁ ଆପଣ ଟିକିଏ ଫୋନ୍ କରି କହିଦେବେ ଯେ, ମୁଁ ଏକ ବିଶେଷ ଅସୁବିଧାରେ ପଡ଼ିଥିବାରୁ ତାଙ୍କ ସହିତ ଯୋଗାଯୋଗ କରିପାରି ନାହିଁ । ସେ ଯେପରି ଯଥାସମ୍ଭବ ଶୀଘ୍ର ନିଉଆଲିପୁରର ବରଦାକାନ୍ତ ମହଲାନବିଶଙ୍କ ସହିତ ଯଥାଶୀଘ୍ର ଯୋଗାଯୋଗ କରନ୍ତି । ତାଙ୍କ ଠିକଣା ଟେଲିଫୋନ୍ ଡିରେକ୍ଟରୀରେ ଅଛି । ମନେରହିଲା । ହ୍ୟାଲୋ, ହ୍ୟାଲୋ... ମିସ୍ ରୋଜି ।

: ଇଏସ୍, ଇଏସ୍ ମିଷ୍ଟର ରାୟ । ମୁଁ ଲେଖି ରଖିଲି । ବର୍ତ୍ତମାନ ସଂଗେ ସଂଗେ ଫୋନ୍ କରି ଜଣାଇ ଦେବି । ଫୋନ୍‌ଟା କାହିଁକି ବଡ଼ ଡିଷ୍ଟର୍ବ ହେଉଛି । ଆଉ କିଛି...

ରୋଜିର କଥା ଶେଷ ହେଲା ନାହିଁ । ଲାଇନ୍‌ଟା ହଠାତ୍ କଟିଗଲା ।

ମୁଁ ରିସିଭରଟା ରଖିଦେଇ ଚାରିଆଡ଼କୁ ଥରେ ଚାହିଁଲି । କେହି ମୋର କଥାବାର୍ତ୍ତା ଶୁଣିନାହିଁ ତ ?

ମୋର କପାଳରେ ଝାଳ ଜକେଇ ଆସିଥିଲା । ମୋର ମନେହେଉଥିଲା, ମୁଁ ଯେପରି ବିରାଟ କିଛି ଗୋଟାଏ ଅପରାଧ କରି ବସିଛି । ଠିଆହୋଇ ଫ୍ୟାନ୍‌ଟାକୁ ଆଉ ଟିକିଏ ସ୍ପିଡ୍‌ରେ ଚଳାଇ ଦେଲି । ସୁମିତା ଚନ୍ଦନର ଟେଲିଫୋନ୍ ନମ୍ବରଟା ଓଲଟପାଲଟ କରି ଦେଖିଲି ।

ସୁମିତା ତା'ହେଲେ ଫେରିଛି ।

କିନ୍ତୁ କାଲି ରାତିରେ ସେଇ ଯେଉଁ ଝିଅଟାକୁ ଦେଖି ସୁମିତା ବୋଲି ମୋର ମନେହୋଇଥିଲା, ସେ ଅନ୍ୟ କେହି ହୋଇପାରିଥାଏ । ଆଖିର ପଲକ ମାତ୍ର ଦେଖା ତ !

ମୋ କପାଳରୁ ଝାଳ ଶୁଖି ଯାଇଥିଲା ।

ମୁଁ ପୁଣି ପ୍ରକୃତିସ୍ଥ ହୋଇଥିଲି । କିନ୍ତୁ ଏଇ ମୁହୂର୍ତ୍ତରେ ସୁମିତାକୁ ଫୋନ୍ କରିବି କି ନାହିଁ ଚିନ୍ତା କରୁଥିଲି । ପରିଚାରକଟି ମୋତେ ଆସି ପଚାରିଲା : କଫି ନା ଚା' ଆଣିବି ସା'ବ୍ ?

ସେତେବେଳେ ମୋର କଫି କିମ୍ବା ଚା' କୌଣସିଟିର ପ୍ରୟୋଜନ ନଥିଲା । ମୁଁ ଗଭୀର ଭାବରେ ଚିନ୍ତା କରୁଥିଲି ସୁମିତା କଥା । ସୁମିତାର ଆବିର୍ଭାବ ମୋ ଜୀବନରେ ଏକ ପରିବର୍ତ୍ତନ ଆଣିଛି । ସୁମିତାର ସଂସର୍ଗ ମୋତେ ଦିନକୁ ଦିନ ବିପଦ ଶଙ୍କୁଳ ପଥରେ ଟାଣି ନେଇଯାଉଛି । କିନ୍ତୁ ସୁମିତା ପ୍ରତି ମୋର ସହାନୁଭୂତି ଟିକିଏ ହେଲେ ତ କମି ଆସୁ ନାହିଁ ।

ପରିଚାରକଟି ସାମ୍‌ନାରେ ଠିଆ ହୋଇଥିଲା । ତା' ଆଡ଼କୁ ଚାହିଁ ମୁଁ କହିଲି : ଚାରିଟା ବେଳକୁ ମୋର କଫି ଦରକାର ହେବ । ବର୍ତ୍ତମାନ ତୁମେ ଯାଇପାର ।

ପରିଚାରକଟି ଦ୍ୱିତୀୟ କଥା ନ କହି ଚାଲିଯାଇଥିଲା ।

ମୁଁ ପୁଣି ଫୋନ୍‌ର ରିସିଭର ଉଠାଇଲି ଏବଂ ଅପରେଟରକୁ ସୁମିତାର ନମ୍ବରଟି ଦେଇ ଡାୟାଲ କରିବାକୁ କହିଲି ।

କିଛି ସମୟ ପରେ ଅପର ପ୍ରାନ୍ତରେ କ୍ରିଂ... କ୍ରିଂ... ହୋଇ ଫୋନ୍ ବାଜିବାରେ ଲାଗିଲା । କିଏ ଜଣେ ରିସିଭର ଉଠାଇ କହିଲା : ହ୍ୟାଲୋ !

ମୁଁ ଏକ ନାରୀ କଣ୍ଠ ଆଶା କରିଥିଲି । କିନ୍ତୁ ପୁରୁଷର କଣ୍ଠସ୍ୱର ଶୁଣି ପ୍ରଥମେ ଟିକିଏ ଦ୍ୱନ୍ଦ୍ୱରେ ପଡ଼ିଗଲି । ପରେ କହିଲି : ସୁମିତା ଚନ୍ଦନଙ୍କୁ ଟିକିଏ ଡାକିଦେବେ ?

ଲୋକଟି ରିସିଭରଟା ତଳେ ଥୋଇ ଦେଇ ବୋଧହୁଏ ସୁମିତା ଚନ୍ଦନକୁ ଡାକିବାକୁ ଗଲା ।

ମୁଁ ରିସିଭରଟା କାନରେ ଦେଇ ବସିଥିଲି ।

ସେକେଣ୍ଡ କେତୋଟି ପରେ ମଧ୍ୟ ମିନିଟ୍ କେତୋଟି ଅତିକ୍ରାନ୍ତ ହୋଇଗଲା । ଅପର ପ୍ରାନ୍ତରୁ କେହି ଆସି ରିସିଭରଟା ଉଠାଇଲେ ନାହିଁ । ପ୍ରାୟ ପାଞ୍ଚ ମିନିଟ୍ ପରେ ବିରକ୍ତ ହୋଇ ରିସିଭର ରଖିଦେବାକୁ ଯାଉଛି, ଶୁଣିଲି ବଲ୍‌ଡାନ୍‌ସର ମିଉଜିକ୍ । ସେହି ଘରେ

କେହି ବୋଧହୁଏ ରେଡ଼ିଓଗ୍ରାମ୍‌ରେ ବଲ୍‌ଡାନ୍‌ସର ରେକର୍ଡ଼ ଲଗାଇ ଶୁଣୁଛି ଅଥବା କୌଣସି ପ୍ଲେଆର ରେକର୍ଡ଼ ବଜାଇ ବଲ୍‌ଡାନ୍‌ସ କରୁଛନ୍ତି । କିନ୍ତୁ ସୁମତା ଚନ୍ଦନ !

ବିରକ୍ତିରେ ମୁଁ ଅସ୍ଥିର ହୋଇ ପଡ଼ିଥିଲି । ଲୋକଟା ବଡ଼ ଅସଭ୍ୟ । ଫୋନ୍‌ଟା ଧରି ରିସିଭରଟା ତଳେ ଥୋଇଦେଇ କୁଆଡ଼େ ଯେ ଚାଲିଗଲା ।

ମୁଁ କିନ୍ତୁ ଅପର ପ୍ରାନ୍ତରୁ ବଲ୍ ଡାନ୍‌ସର ମିଉଜିକ୍ ଶୁଣୁଥିଲି ।

ଆଉ ଧୈର୍ଯ୍ୟ ନଥିଲା ଶୁଣିବା ପାଇଁ । ରିସିଭରଟା କଚାଡ଼ି ଦେଲି ଟେଲିଫୋନ୍ ଉପରେ ।

ନା, ଆଉ ନୁହେଁ । ଏହାପରେ କ'ଣ କରିବାକୁ ହେବ ପରେ ଚିନ୍ତା କରି ଦେଖାଯିବ ।

ମୁଁ ଉଠି ଠିଆ ହେଲି । ଘର ଭିତରେ ଦୁଇଟି ଆଲମାରୀ ଥିଲା । ଦୁଇଟି ଯାକର ଦରଜା ପୂରାପୂରି କାଠର ହୋଇଥିବାରୁ, ଭିତରେ କ'ଣ ଥିଲା ଜଣାପଡୁ ନଥିଲା । ତାଲାରେ ହାତମାରି ଦେଖିଲି, ବନ୍ଦ । ଆଲମାରୀ ଖୋଲି ମୋର ବା କ'ଣ ଲାଭ ହେବ ?

ବାଁ ପାଖର ୱାଲ୍‌କ୍ଲକ୍‌ଟାରେ ପାଞ୍ଚଟା ବାଜିଥିଲା ।

ମୁଁ ଚମକି ହାତ ଘଡ଼ିକୁ ଚାହିଁ ଦେଖିଲି, ନା ଭୁଲ୍ । ଓଃ ୱାଲ୍‌କ୍ଲକ୍‌ଟା ଅଚଳ । କେଉଁଦିନୁ ଚାଲୁନାହିଁ କେଜାଣି ।

କେଜାଣି କାହିଁକି ମୁଁ ଆଗେଇ ଯାଇ ଘଡ଼ିଟାର ତାଲା ଖୋଲିଲି । ଭିତରୁ ଚାବିଟା ବାହାର କରି ଘଡ଼ିରେ ଚାବି ଦେଲି । ତା'ପରେ ମୋ ଘଣ୍ଟା ସହିତ ସମୟ ମିଳାଇ ଦେଇ ପୁଣି ଆସି ଚେଆର୍‌ରେ ବସିଲି ।

ଆଉ ଏଠାରେ ମୋର କ'ଣ କରିବାର ଅଛି ?

ଟେବୁଲ୍ ଉପରେ ପଡ଼ିଥିବା କାଚ ପ୍ଲେଟ୍‌ଟାକୁ ଟେକି ଉଠାଇଲି, କାଚ ପ୍ଲେଟ୍ ତଳେ କେଇଖଣ୍ଡି ସାଦା କାଗଜ ଛଡ଼ା ଆଉ କିଛି ନଥିଲା ।

ନା, ଆଉ ଏଠାରେ ବସି ଅଯଥା ସମୟ ନଷ୍ଟ କରି କିଛି ଲାଭ ନାହିଁ । ବରଂ ଜନ୍ ଡିକେନ୍‌ସନ୍‌ଙ୍କର ଦୁଃସାହସିକ ଜୀବନ ବୃତ୍ତାନ୍ତ ପଢ଼ିବା ଭଲ । ସେ ବନ୍ଦୀ ହୋଇଥିଲେ ଡକାଏତ ଦଳ ହାତରେ । ତା'ପରେ ତାଙ୍କର ପରିଣତି କ'ଣ ହେଲା ?...

\+ \+ \+

... ରାତିରେ ପୁଣି ମାନିଲା ଆସିଲା । ଏଥର କିନ୍ତୁ ସେ ଭିନ୍ନରୂପ ଧାରଣ କରିଥିଲା । ସେ ଆଉ ସେହି ଆଦିବାସୀ ମହିଳା ନୁହେଁ । ସେ ଏଥର 'କୁଇନ୍' । ପ୍ରଥମେ ମୁଁ ମାନିଲାକୁ ଚିହ୍ନିପାରିଲି ନାହିଁ । ମାନିଲା କିନ୍ତୁ ମୋ ପାଖକୁ ଆସି, ଦେହକୁ ଲାଗିବସି କହିଲା : କିଛି ଅସୁବିଧା ହୋଇ ନାହିଁ ତ ମିଷ୍ଟର ଡିକେନ୍‌ସନ୍ !

ମୁଁ ମ୍ଳାନ ହସ ହସିଲି । କହିଲି : ତମର ତତ୍ତ୍ୱାବଧାନ ଯେଉଁଠି, ସେଠି କାହାରି ଅସୁବିଧା ହୋଇପାରେ ?

ମାନିଲା ମୋ ଦେହ ଉପରେ ତା'ର ଦେହଭାର ନଦି, ମୋର ଆହୁରି ନିକଟତର ହୋଇ କହିଲା : ଏଥର ମୋତେ ଆମ ସର୍ଦ୍ଦାର ପଠାଇଛନ୍ତି । ସେ କହିଛନ୍ତି, ଆପଣଙ୍କ

ସହିତ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରିବା ପାଇଁ । ଆପଣ ଯଦି ରାଜି ହୁଅନ୍ତି, ତେବେ କାଲି ସକାଳୁ ଆପଣ ମୁକ୍ତି ପାଇଯିବେ ।

ମୁକ୍ତିର ନାଁ ଶୁଣି ମୁଁ ଚଞ୍ଚଳ ହୋଇ ଉଠିଲି ।

ମାନିଲାକୁ ଦୁଇ ହାତରେ ଜାବୁଡ଼ି ଧରି ତା' ମୁହଁରେ ଚୁମ୍ବନ ଦେଇ କହିଲି : ମୁଁ ଜାଣେ ମାନିଲା, ତୁମେ ଖୁବ୍ ଭଲ ଝିଅ । ଅନ୍ୟ ଝିଅମାନଙ୍କ ପରି ତମେ ନିଷ୍ଠୁର ନୁହଁ । ତମର ହୃଦୟ ଅଛି । ତମେ ଚାହିଁଲେ ଯେକୌଣସି ପୁରୁଷକୁ ଧନ୍ୟ କରିପାର ।

ନାରୀ ସବୁବେଳେ ନିଜର ପ୍ରଶଂସା ଶୁଣିବାକୁ ଚାହେ ଏବଂ ବିଶେଷ କରି ପୁରୁଷ ମୁହଁରୁ ପ୍ରଶଂସା ଶୁଣିଲେ ସେ ଗର୍ବ ଅନୁଭବ କରେ । ମାନିଲା କ୍ଷେତ୍ରରେ ମୋର ଏହି ସ୍ତୋକବାକ୍ୟ କେତେଦୂର କ'ଣ କାମ କଲା କେଜାଣି, ସେ ଆଖି ବୁଜି ଉତ୍ତରରେ ଦୁଇ ବାହୁରେ ମୋତେ ଜଡ଼େଇ ଧରିଲା ଏବଂ ମୁହଁ ସହିତ ମୁହଁ ରଖି ମୋର ଆଶ୍ଳେଷ କାମନା କରୁଥିଲା ।

ମୁଁ ମାନିଲାର ମନସ୍କାମ ପୂରଣ ପାଇଁ ଚେଷ୍ଟା କରି ଜଡ଼ିତ କଣ୍ଠରେ କହିଲି : ମାନିଲା ! ତମେ ନିଶ୍ଚୟ କୌଣସି ଭଦ୍ର ପରିବାରର କନ୍ୟା । ତମେ ଭଦ୍ର, ତମେ ଅଭିଜାତ ବଂଶଜ । ତମେ କାହିଁକି ତମର ଜୀବନଟାକୁ ଏପରି ନଷ୍ଟ କରୁଚ ।

ମାନିଲା ମୋ ପ୍ରଶ୍ନର କୌଣସି ଉତ୍ତର ଦେଇପାରିଲା ନାହିଁ । ସେ ଯେପରି ମୋ ସହିତ ମିଶିଯିବାକୁ ଚାହୁଁଥିଲା ଆହୁରି ଗଭୀର, ଆହୁରି ନିବିଡ଼ ଭାବରେ ।

କିନ୍ତୁ ବାଧା ଦେଲା ପରିଚାରିକାଟି ।

ସେ ଟ୍ରେ'ରେ ରାତ୍ରିଭୋଜନ ଆଦି ଧରି ଘରକୁ ପଶିଆସୁଥିଲା । ମାନିଲା ଓ ମୋତେ ଏପରି ଏକ ପରିସ୍ଥିତିରେ ଦେଖିବାକୁ ସେ ବୋଧହୁଏ କାମନା କରି ନଥିଲା । ତେଣୁ ହତଚକିତ ହୋଇ ଠିଆହୋଇଯିବା କ୍ଷଣି ତା' ହାତରୁ ଟ୍ରେ'ଟି ଖସିପଡ଼ିଥିଲା ଏବଂ ବିରାଟ ଏକ ବିକଟାଳ ଶବ୍ଦ ଶୁଣି ଆମେ ଚମକି ଉଠିଥିଲୁ । ମାନିଲା ମୋ ବାହୁ ପାଶରୁ ମୁକ୍ତି ନେଇ ଦୂରେଇ ଯାଇଥିଲା । ସାମ୍ନାରେ ପରିଚାରିକାଟିକୁ ଦେଖି ନିଜେ ସେ ଲଜ୍ଜିତ ହୋଇଥିଲା । ପରିଚାରିକାଟି ଖାଦ୍ୟ ସାମଗ୍ରୀ ସବୁ ନଷ୍ଟ କରିଦେଇ ଥିବାରୁ ଭୟରେ ଜଡ଼ସଡ଼ ହୋଇ ଠିଆ ହୋଇଥିଲା ।

ମାନିଲା କିନ୍ତୁ ଅବସ୍ଥାଟାକୁ ସମ୍ଭାଳି ନେଇଥିଲା ।

ସେ ମୋ ପାଖରୁ ଉଠିଯାଇ, ପରିଚାରିକାଟି ପିଠିରେ ହାତ ବୁଲାଇ କହିଲା : କିଛି ଚିନ୍ତା କରନା । ମୁଁ ଅନ୍ୟ ଖାଦ୍ୟ ସାମଗ୍ରୀର ବନ୍ଦୋବସ୍ତ କରୁଛି ।

ପରିଚାରିକାଟି ଯେପରି ମାନିଲା ପାଖରେ କୃତଜ୍ଞତାରେ ନଇଁ ପଡ଼ିଥିଲା । ମାନିଲା ଟ୍ରେ'ଟି ତଳୁ ଉଠାଇ ପରିଚାରିକା ହାତରେ ଦେଇ କହିଲା : ତୁ ଯା, ମୁଁ ଅନ୍ୟ ବ୍ୟବସ୍ଥା କରୁଛି ।

ପରିଚାରିକାଟି ଚାଲିଗଲା ।

ମାନିଲା ପୁଣି ମୋ ପାଖକୁ ଫେରିଆସି ହସହସ ମୁହଁରେ କହିଲା : ଜୀବନଟା ବେଳେବେଳେ ବଡ଼ ଦୁର୍ବିସହ ହୋଇଉଠେ ମିଷ୍ଟର ଡିକେନ୍‌ସନ୍ । ସେତେବେଳେ ମନହୁଏ ସବୁ ଛାଡ଼ିଛୁଡ଼ି ଦେଇ କୁଆଡ଼େ ପଳେଇ ଯିବାକୁ । ମୋ ଜୀବନରେ ଟିକିଏ ସ୍ୱାତନ୍ତ୍ର୍ୟ ନାହିଁ । ସାମାନ୍ୟ ସ୍ୱାଧୀନତା ନାହିଁ । ମନ ଖୋଲି କାହା ସହିତ ପଦେ କଥା କହିବାର ବି ଅଧିକାର ନାହିଁ ।

: ମୁଁ ଜାଣେ ମାନିଲା, ତୁମେ ଖୁବ୍ ଦୁଃଖୀ । ତୁମକୁ ଦେଖିଲା ବେଳୁ ମୁଁ ବୁଝିପାରିଛି । ସେମାନେ ତୁମକୁ ଯେତେ ବିଳାସ ବ୍ୟସନ ଭିତରେ ରଖିଲେ ବି ତମ ମନର ଶାନ୍ତି ସେମାନେ ଫେରାଇ ପାରିବେ ନାହିଁ । କିଛି ଉପାୟ ନାହିଁ ମାନିଲା, ତୁମକୁ ଦିନ ପରେ ଦିନ ତମର ଇଚ୍ଛା ବିରୁଦ୍ଧରେ କାମ କରିଯିବାକୁ ହେବ ।

ମାନିଲା କହିଲା : ନା ମିଷ୍ଟର ଡିକେନ୍‌ସନ୍, ମୁଁ ଆଉ ପାରୁ ନାହିଁ । ମୋତେ ଆପଣ...

ମାନିଲାର କଥା ଅସମାପ୍ତ ରହିଗଲା । ଘର ଭିତରେ ପ୍ରବେଶ କଲା ଜଣେ ପରିଚାରକ । ସେ ଆସି ମାନିଲା ପାଖରେ ଠିଆ ହେଲା । ଜଳ ଜଳ କରି ମାନିଲା ମୁହଁକୁ ଓ ମୋ ମୁହଁକୁ ଚାହିଁ ଇଙ୍ଗିତରେ କ'ଣ କହି ଫେରି ଯାଉଥିଲା ।

ମାନିଲା ଉଠିଗଲା ତା' ପଛେ ପଛେ । ଘରୁ ବାହାରକୁ ବାହାରି ଗଲା ।

ମୋ ମନରେ ସାମାନ୍ୟ ଆଶାର ସଂଚାର ହେଲା ।

ମାନିଲା ଏକ ବିକ୍ଷୁବ୍ଧ ଆତ୍ମା । ସୁଯୋଗ ପାଇଲେ ସେ ତା' ଜୀବନର ସମସ୍ତ ଘଟଣା ହୁଏତ ପ୍ରକାଶ କରିଦେବ । ଏପରିକି ଡକାଏତ ଦଳର ଦୋଷ ଦୁର୍ବଳତା ପ୍ରକାଶ କରିଦେବ । କିନ୍ତୁ ମାନିଲା ମନରେ ବିଶ୍ୱାସ ଜନ୍ମାଇବା ହେବ ବଡ଼ କଥା, ପ୍ରଧାନ କଥା । ମୋ ଆଖିରେ ଆଶାର ଆଲୋକ ଫୁଟି ଉଠିଲା । କ୍ଷୀଣ ଏକ ମୁକ୍ତିର ପଥ ଦେଖାଗଲା । ମାନିଲା, ହଁ ମାନିଲା ।

ମାନିଲା ହସି ହସି ପୁଣି ଘର ଭିତରେ ପ୍ରବେଶ କଲା ।

ମୋ ପାଖକୁ ଆସି, ମୋ ଖଟ ଉପରେ ସାମାନ୍ୟ ଦୂରତ୍ୱ ରକ୍ଷା କରି ବସିଲା । କହିଲା : ହଁ, ମୁଁ ଆପଣଙ୍କୁ ଯାହା କହିବାକୁ ଆସିଛି । ମୋତେ ଆପଣଙ୍କ ପାଖକୁ ଆମ ସର୍ଦ୍ଦାର ପଠାଇଛନ୍ତି ମିତ୍ର ଭାବରେ । ତାଙ୍କର କହିବାର କଥା ହେଉଛି, ସେ ଶୁଣିଛନ୍ତି ସେଦିନର 'ନିୟୁୟର୍କ ବ୍ୟାଙ୍କ୍ ରବରୀ' ବେଳେ ଆପଣ ଦୈବ କ୍ରମେ ସ୍ପଟ୍‌ରେ ଥିଲେ ଏବଂ ସେହି ସମୟରେ ଆପଣଙ୍କ କ୍ୟାମେରାର ଫ୍ଲାସ୍ ଦୁଇ ତିନିଥର ଜଳି ଉଠିଥିବାର ସେ ରିପୋର୍ଟ ପାଇଛନ୍ତି । ପରଦିନ ଖବର କାଗଜରୁ ମଧ 'ନିୟୁୟର୍କ ବ୍ୟାଙ୍କ ରବରୀ' ଉପରେ କାଗଜରେ ଆପଣଙ୍କ ପ୍ରବନ୍ଧ ସେ ପଢ଼ିଛନ୍ତି । ସେହି ପ୍ରବନ୍ଧରେ ଏକ ପ୍ରଚ୍ଛନ୍ନ ଇଙ୍ଗିତ ଅଛି । ଆଉ ପୋଲିସ୍ ଡିପାର୍ଟମେଣ୍ଟକୁ ଚାଲେଞ୍ଜ୍ କରାହୋଇଛି ଯେ, ଦେଶରେ ଛଅମାସ ଭିତରେ ଏହିପରି ତିନୋଟି ବ୍ୟାଙ୍କ୍ ଡକେଇତି ଘଟିଗଲାଣି । ଡକେଇତିର ଧରଣରୁ ମନେହେଉଛି, ଏହି ତିନୋଟିଯାକ ଡକେଇତି କୌଣସି ଗୋଟିଏ ଡକାଏତ ଦଳ ଦ୍ୱାରା ହେଉଛି । ଅଥଚ ପୋଲିସ୍ ଡିପାର୍ଟମେଣ୍ଟ୍ ପଛରେ କୋଟି କୋଟି ଡଲାର ଖର୍ଚ୍ଚ ହେଉଥିବା ବେଳେ ଦେଶରେ ନିରାପତ୍ତା କାହିଁ ?

ଏହି 'ନିୟୁୟର୍କ ବ୍ୟାଙ୍କ ରବରୀ' ଏହି ଦଶକର ସବୁଠାରୁ ବଡ଼ ଡକେଇତି । ଏହି ଡକେଇତିର କୌଣସି ସୁସମାଧାନ ନ କରି ପାରିଲେ, ଦେଶର ପ୍ରଶାସନ ଅଚଳ ହୋଇଯାଇଛି ବୋଲି ଧରି ନେବାକୁ ହେବ । ଯଦି ତାହାହିଁ ସତ୍ୟ ହୁଏ, ତେବେ ଏହି ଡକେଇତିର ସମାଧାନ ଦାୟିତ୍ୱ ଆମେ ହାତକୁ ନେବାକୁ ବାଧ୍ୟ ହେବୁ ।

ତେଣୁ ଆମ ସର୍ଦ୍ଦାରଙ୍କର ଆଶଙ୍କା ଯେ, ଏକମାତ୍ର ଆପଣଙ୍କ ଛଡ଼ା ଆଉ ପୃଥିବୀରେ କୌଣସି ସ୍ଥାନରେ ବା କାହାରି ପାଖରେ ଏହି ବ୍ୟାଙ୍କ ରବରୀର ସାମାନ୍ୟତମ କ୍ଲୁ ବି ନାହିଁ । ସେ ଆଶଙ୍କା କରୁଛନ୍ତି, ଡକେଇତି ବେଳେ ଆପଣଙ୍କ କ୍ୟାମେରାର ଫ୍ଲାସ୍ ଯେଉଁ ଦୁଇ

ତିନିଥର ଜଳିଛି, ସେଥିରେ କାହାର ଛବି ଯେ କି ଅବସ୍ଥାରେ ରହିଛି ତାଙ୍କର ଆଶଙ୍କା ସେଇଠି । କାରଣ ଆମର ଏହି ଡକାଏତ ଦଳ ସହିତ ଦେଶର ବହୁ ଖ୍ୟାତି ସଂପନ୍ନ ଲୋକମାନେ ଜଡ଼ିତ । ତେଣୁ...

ମାନିଲା ଅଟକି ଯାଇ ମୋ ମୁହଁକୁ ଚାହିଁଲା ।

ମନେ ମନେ ମୁଁ ଉତ୍ତେଜିତ ହୋଇ ପଡ଼ିଥିଲି । ଧୀରେ ଧୀରେ ମୋ ଆଖି ଆଗରେ ମୋ ମୁକ୍ତିର ପଥ ସ୍ପଷ୍ଟ ହୋଇ ଉଠୁଥିଲା ।

ମୁଁ ମାନିଲା ମୁହଁକୁ ଚାହିଁ ସାମାନ୍ୟ ହସିଲି ଏବଂ କହିଲି : ତା'ହେଲେ ତମେ ମତେ କ'ଣ କହୁଛ ମାନିଲା ?

: ମୁଁ ନୁହେଁ । ଆମ ସର୍ଦ୍ଦାର କହୁଛନ୍ତି, ଆପଣ ସେହି ନିର୍ଦ୍ଦିଷ୍ଟ ଫଟୋ କେଇଖଣ୍ଡ ନେଗେଟିଭ୍ ସହ ଆମକୁ ଫେରେଇ ଦିଅନ୍ତୁ, ବଦଳରେ ଆପଣ ମୁକ୍ତି ତ ପାଇବେ ଏବଂ ଯଥେଷ୍ଟ ଅର୍ଥ ଆପଣଙ୍କୁ ସର୍ଦ୍ଦାର ଦେବାର ପ୍ରତିଶ୍ରୁତି ଦେଇଛନ୍ତି ।

ମୁଁ ସାମାନ୍ୟ ନୀରବତା ପରେ, ମୁହଁରେ ହସ ଫୁଟାଇ କହିଲି : ଏ କ୍ଷେତ୍ରରେ ତମର ମତ କ'ଣ ମାନିଲା ?

: ମୋର ମତ ! ମାନିଲା ଯେମିତି ଚମକି ଉଠିଲା ।

ମୁଁ ସେହିପରି ଶାନ୍ତ ସରଳ କଣ୍ଠରେ କହିଲି : ହଁ ମାନିଲା । ମୁଁ ତୁମକୁ ମୋର ଅତି ଆପଣାର ଲୋକ ମନେକରି ପଚାରୁଛି । ଏହା ସତ ଯେ, ମୋ ପାଖରେ ତିନିଖଣ୍ଡି ଏପରି ଫଟୋଗ୍ରାଫ୍ ରହିଛି, ଯହିଁରେକି ପାଞ୍ଚଜଣ ଲୋକଙ୍କୁ ସ୍ପଷ୍ଟ ଚିହ୍ନି ହେଉଛି ଏବଂ ସେମାନେ ଗଦା ଗଦା ନୋଟ୍ ନେଇ ଭ୍ୟାନ୍‌ରେ ଭର୍ତ୍ତି କରୁଛନ୍ତି । ସେହି ଫଟୋଗ୍ରାଫ୍ ତିନିଖଣ୍ଡି ଏ ଡକାୟତିର ଜ୍ୱଳନ୍ତ ପ୍ରମାଣ । ଦୈବକ୍ରମେ ନିଉୟର୍କ ବ୍ୟାଙ୍କର ସାମ୍ନା ବିଲ୍ଡିଂର ଦୋତାଲାରେ ମୁଁ ସେତେବେଳେ ଥିଲି ଏବଂ ଅତ୍ୟନ୍ତ ଦକ୍ଷତାର ସହିତ ଯଥେଷ୍ଟ ରିସ୍କି ନେଇ ମୁଁ ସେଇ ଫଟୋ ତିନିଖଣ୍ଡି ଉଠାଇଛି । କିନ୍ତୁ ସବୁଠାରୁ ମୁଁ ଆଶ୍ଚର୍ଯ୍ୟ ହେଉଛି, ତମ ସର୍ଦ୍ଦାରଙ୍କର ଚତୁରତାରେ । ଏତେ ଲୋକ ଗହଳି ଓ ଗୁଳିଗୁଳା ଭିତରେ ସେ ମୋର ଏହି ଅପକର୍ମର ସଂବାଦ ସଂଗ୍ରହ କଲେ କିପରି ?

ଏଥର ମାନିଲା ହସିଲା । କହିଲା : ଆମ ସର୍ଦ୍ଦାରଙ୍କୁ ଆମେ ଭଗବାନ ବୋଲି ମନେକରୁ । ଅନ୍ତର୍ଯ୍ୟାମୀଙ୍କ ପରି ସେ ସବୁକଥା ଜାଣିପାରନ୍ତି । ଆମର ଦୋଷ ଦୁର୍ବଳତା ମଧ୍ୟ ତାଙ୍କ ନଖ ଦର୍ପଣରେ । ସେ ଯା ହେଉ, ଆପଣ କିନ୍ତୁ ମୋତେ ବଡ଼ ସମସ୍ୟାରେ ପକାଇଲେ ମିଷ୍ଟର ଡିକେନ୍‌ସନ୍ ।

: ନା ମାନିଲା, ଏହା ମୋତେ ସମସ୍ୟା ନୁହେଁ । ମୁଁ ତୁମକୁ ମୋର ଅତି ଆପଣାର ମନେକରି ତମର ପରାମର୍ଶ ଲୋଡ଼ିଛି । ତମେ କୁହ, ଏ କ୍ଷେତ୍ରରେ ମୋର କର୍ତ୍ତବ୍ୟ କ'ଣ ! ଏକ ଦିଗରେ ସେହି ଫଟୋ ତିନିଖଣ୍ଡ ମୋର ଖ୍ୟାତି, ଯଶ ଓ ଦୁଃସାହସିକତା ପୃଥିବୀ ସାରା ପ୍ରଚାର କରିବ । ଅନ୍ୟ ଦିଗରେ ଏହି ଫଟୋ ତିନିଖଣ୍ଡି ମୋତେ ଅଗାଧ ଧନ ସଂପତ୍ତିର ଅଧିକାରୀ କରିବ । କୁହ ମାନିଲା, ତମର କ'ଣ ଲୋଡ଼ା । ତମେ କ'ଣ ଚାହ ?

: ମୋର ? ଆପଣ କ'ଣ ପାଗଳ ହୋଇଗଲେ ମିଷ୍ଟର ଡିକେନ୍‌ସନ୍ । ସମସ୍ୟା ଆପଣଙ୍କର, ସମାଧାନ ଆପଣ କରିବେ । ମୋର ଇଚ୍ଛା ଅନିଚ୍ଛା ସହିତ ଆପଣଙ୍କର ଯାଏ ଆସେ କ'ଣ ?

ମୁଁ ହସିଲି । କହିଲି : ତମେ ଜାଣ ନାହିଁ ମାନିଲା, ମୋ ଜୀବନର ଛନ୍ଦ ସହିତ ତୁମକୁ ମୁଁ ସାମିଲ୍ କରି ନେଇଛି । ମୁଁ ଚାହେ ତମର ଅଶାନ୍ତ ଆତ୍ମାର ମୁକ୍ତି । ସେଇଥିପାଇଁ ମୁଁ ତମର ସାହାଯ୍ୟ ଲୋଡ଼ୁଛି । ସହଯୋଗ କାମନା କରୁଛି । ସେଇଥିପାଇଁ ଏ କ୍ଷେତ୍ରରେ ତମର ମତାମତର ମୂଲ୍ୟ ଯଥେଷ୍ଟ ।

ମାନିଲା ମୋ ପାଖକୁ ଆହୁରି ଲାଗି ବସିଲା । ବିକଳ ସ୍ୱରରେ କହିଲା : ମୋତେ ଆଉ ନବ ଜୀବନର ଆଶା ଦେଖାନ୍ତୁ ନାହିଁ ମିଷ୍ଟର ଡିକେନ୍ସନ୍ । ମୋର ମୁକ୍ତିର କୌଣସି ପଥ ନାହିଁ । ନା ନା ମିଷ୍ଟର ଡିକେନ୍ସନ୍, ମୋର ମୁକ୍ତି ମୃତ୍ୟୁରେ, ବଂଚି ଥାଉ ଥାଉ ନୁହେଁ ।

ମାନିଲା ମୋ ଜଙ୍ଘ ଉପରେ ମୁଣ୍ଡପିଟି କାନ୍ଦି ଉଠିଲା ।

ମୁଁ ତା' ଆଖିର ଲୁହ ପୋଛି ଦେଲି । ସାନ୍ତ୍ୱନା ଦେଇ କହିଲି : ମଣିଷର କିଛି ଅସାଧ୍ୟ ନାହିଁ ମାନିଲା । ଇଚ୍ଛା କଲେ ମୁଁ ତୁମକୁ ମୁକ୍ତି ଦେଇପାରିବି । ତମର ନିରାପଦ ଜୀବନଯାତ୍ରାର ବ୍ୟବସ୍ଥା କରିପାରିବି । କିନ୍ତୁ ତୁମେ ମୋ ସର୍ତ୍ତରେ ରାଜି ହୋଇପାରିବ ତ ?

: ସର୍ତ୍ତ ! ମାନିଲା ମୁହଁରେ ଯେପରି ଆତଙ୍କ ଫୁଟି ଉଠିଲା । ସେ କହିଲା, ନା ମିଷ୍ଟର ଡିକେନ୍ସନ୍, ଆମ କାହାରି କୌଣସି ସ୍ୱତନ୍ତ୍ର ସତ୍ତା ନାହିଁ । ସର୍ଦ୍ଦାରଙ୍କୁ ନ ପଚାରି, ଆମେ କାହାରିକୁ କୌଣସି କଥା ଦେଇପାରିବୁ ନାହିଁ । ତେଣୁ ଆପଣଙ୍କର କୌଣସି ସର୍ତ୍ତ...

ମୁଁ ହୋ ହୋ ହୋଇ ହସିଉଠିଲି । ମାନିଲାର ଗାଲ ଆଉଁଶି ଦେଇ, ଆଖିରୁ ଲୁହ ପୋଛି ଦେଇ କହିଲି, ସର୍ତ୍ତ ମାନେ ଶପଥ ନୁହେଁ, ମୁଁ କେବଳ ତମର ମତାମତ ଜାଣିବାକୁ ଚାହେ । ମୁଁ ଜାଣିବାକୁ ଚାହେ, ଦରକାର ହେଲେ ତମେ ମୋର ହାତ ଧରି ଏଠାରୁ ବାହାରି ଚାଲିଯାଇପାରିବ ତ ?

ଏଥର କିନ୍ତୁ ମାନିଲା ଆହୁରି ଆତଙ୍କରେ ଶିହରୀ ଉଠିଲା । ଆର୍ତ୍ତନାଦ କଲା ପରି କହିଲା : ଆପଣ ସେ କଥା ମୋତେ ଚିନ୍ତା କରନ୍ତୁ ନାହିଁ ମିଷ୍ଟର ଡିକେନ୍ସନ୍ । ଏଠାରୁ ପଳାଇବାର ଇଚ୍ଛା ପ୍ରକାଶ କରିବା ମାନେ ହିଁ ମୃତ୍ୟୁ । ତେଣୁ...

ମୁଁ ମୁହୂର୍ତ୍ତେ ନୀରବ ରହି ମାନିଲା ମୁହଁକୁ ଏକ ଦୃଷ୍ଟିରେ ଅନାଇ ରହିଲି । ତା'ପରେ ଧୀରେ ଧୀରେ କହିଲି : ମାନିଲା, ତମେ ମୋର ଉଦ୍ଦେଶ୍ୟ ବୁଝିପାରୁ ନାହଁ । ଆମେ ଏଠାରୁ ଲୁଚି ଲୁଚି ପଳାଇବା ନାହିଁ । ତମ ସର୍ଦ୍ଦାରଙ୍କର ଅନୁମତି ନେଇ, ଆଶୀର୍ବାଦ ନେଇ ଯିବା ।

: ଅସମ୍ଭବ ! ଅସମ୍ଭବ ମିଷ୍ଟର ଡିକେନ୍ସନ୍ । ଆପଣ ଯଦି ଏପରି ଆଶା ପୋଷଣ କରିଥାନ୍ତି, ତା'ହେଲେ ଭୁଲ୍ କରୁଛନ୍ତି । ଆପଣ ଆମ ସର୍ଦ୍ଦାରଙ୍କୁ ଚିହ୍ନି ନାହାନ୍ତି । ସେ ଆପଣଙ୍କ ପ୍ରସ୍ତାବରେ ରାଜି ହେବେ ନାହିଁ ।

ମୁଁ ହସିଲି । କହିଲି : ହେବେ ମାନିଲା । ସେ ରାଜି ହେବାର ଗୋଟାଏ ପଥ ଅଛି । ତମେ କୁହ ସେ ଯଦି ଅନୁମତି ଦିଅନ୍ତି, ହସି ହସି ମୋ ହାତ ଧରି ଚାଲିଯାଇପାରିବ କି ନାହିଁ ?

ମାନିଲା କିନ୍ତୁ ମୋ କଥା ଉପରେ ମୋଟେ ଭରସା କରିପାରୁ ନଥିଲା । ସେ କହିଲା : ଆପଣ ସର୍ଦ୍ଦାରଙ୍କୁ ଏପରି ସର୍ତ୍ତରେ ମୋଟେ ରାଜି କରାଇ ପାରିବେ ନାହିଁ । ବରଂ...

ମୁଁ କହିଲି : ତମେ ଶୁଣ ମାନିଲା । ମୋ ପ୍ରସ୍ତାବଟା ତମେ ନ ଶୁଣି ଏପରି ହତାଶ ହେଉଛ କାହିଁକି ?

ମାନିଲା ନୀରବ ହେଲା ।

ପୁଣି ମୁଁ କହିଲି : ମୋର ତମ ସର୍ଦ୍ଦାରଙ୍କ ପାଖରେ ପ୍ରସ୍ତାବ ହେଉଛି, 'ନିଉୟର୍କ ରବରୀ' ଦିନ ଯେଉଁ ଫଟୋ ମୁଁ ଉଠାଇଥିଲି, ସେହି ଅମୂଲ୍ୟ ପ୍ରମାଣର ନେଗେଟିଭ ସହ ମୁଁ ସବୁ ତମର ସର୍ଦ୍ଦାରଙ୍କ ହାତରେ ଅର୍ପଣ କରିଦେବି । କିନ୍ତୁ...

ମାନିଲା ମୋର କଥା ଶେଷ ହେବାକୁ ଦେଲା ନାହିଁ । ସେ ଯେପରି ଆନନ୍ଦରେ ନାଚିଉଠି ଦୁଇ ହାତରେ ତାଳି ବଜାଇ, ଆତ୍ମହରା ହେଲା ପରି କହିଲା : ଆପଣ ସତରେ ଦେଇଦେବେ ମିଷ୍ଟର ଡିକେନ୍‌ସନ୍, ବଦଳରେ କେତେ ସହସ୍ର ଡଲାର ମୁଁ ଚାହିବି ?

: ଗୋଟିଏ ଡଲାର ବି ମୁଁ ଚାହେନି ମାନିଲା । ମୁଁ ଚାହେ...

: ଆପଣ କ'ଣ ଚାହାନ୍ତି ମିଷ୍ଟର ଡିକେନ୍‌ସନ୍ ?

: ବଦଳରେ ମୁଁ ଚାହେ ତୁମକୁ । ମାନିଲାକୁ ମୁଁ ଭିଡ଼ିନେଇ ଦୁଇ ବାହୁ ପାଶରେ ବନ୍ଦୀ କଲି ।

କିନ୍ତୁ ମାନିଲା ସ୍ତବ୍ଧ ହୋଇଯାଇଥିଲା । ସେ ଯେପରି ପାଷାଣ ହୋଇ ଯାଇଥିଲା । ତା' ଦେହରେ କୌଣସି ସ୍ପନ୍ଦନ ନଥିଲା । ମୁହଁରେ ଭାଷା ନଥିଲା । ଚାହାଣିରେ ପଲକ ପଡୁ ନଥିଲା ।

କେତୋଟି ମୁହୂର୍ତ୍ତ ସେ ଜଡ଼ ପାଲଟି ଯାଇଥିଲା ।

ସେ ମୋତେ ବିଶ୍ୱାସ କରିପାରୁ ନଥିଲା । ଏତେ ବଡ଼ ତ୍ୟାଗ, ମାନିଲା ପାଇଁ, ଗୋଟାଏ ନଷ୍ଟ-ନାରୀ ପାଇଁ, ପୃଥିବୀର କୌଣସି ଲୋକ କରିପାରେ ?

ମୁଁ ପୁଣି କହିଲି : ହଁ ମାନିଲା, ତମେ ସର୍ଦ୍ଦାରଙ୍କୁ କୁହ । ମୁଁ ତାଙ୍କୁ ବ୍ୟାଙ୍କ ଡକେଇତିର ସମସ୍ତ ପ୍ରମାଣ ଫେରେଇ ଦେବି । ଏକମାତ୍ର ସର୍ତ୍ତ ସେ ମୋତେ ମାନିଲାକୁ ଦେଇଦେବେ । ମାନିଲା ସ୍ୱାଧୀନ ହେବ । ମାନିଲା ମୋର ହେବ ।

ମାନିଲା ଥରି ଥରି ଖଟ ଉପରେ ବସିପଡ଼ିଲା । ତା' ଆଖି ଦୁଇଟା ସ୍ଫୀତ ହୋଇ ଉଠିଲା । ଆଖିରୁ ଆନନ୍ଦାଶ୍ରୁ ଝରିବାକୁ ଲାଗିଲା । ସେ ଆନନ୍ଦ ଆତିଶଯ୍ୟରେ ଦୁଇ ହାତରେ ମୋତେ ଜାବୁଡ଼ି ଧରି କେବଳ ଆଖିରୁ ଲୁହ ଝରେଇବାରେ ଲାଗିଲା । କଇଁ କଇଁ ହୋଇ କାନ୍ଦିବାରେ ଲାଗିଲା ।

ମୁଁ କହିଲି : ତୁମେ ଶାନ୍ତ ହୁଅ ମାନିଲା । ତୁମେ ପ୍ରକୃତିସ୍ଥ ହୁଅ । ସର୍ଦ୍ଦାରଙ୍କୁ ମୋର ଏହି ପ୍ରସ୍ତାବ ଦିଅ । ମୁଁ ଧନ ଚାହେନା, ଯଶ, ଖ୍ୟାତି କିଛି ଚାହେନା । ମୁଁ ଖାଲି ଚାହେ ମାନିଲାକୁ, ଅତି ଆପଣାର କରିବାକୁ ଚାହେ ମାନିଲାକୁ ।

ସେଦିନ ବହୁତ ସମୟ ପରେ ମାନିଲା ପ୍ରକୃତିସ୍ଥ ହେଲା ଏବଂ ବିଶ୍ୱାସ କରିଥିଲା ଯେ, ପ୍ରକୃତରେ ମୁଁ ତାକୁ ଭଲପାଇ ବସିଛି ଏବଂ ତାକୁ ପାଇବା ପାଇଁ ମୁଁ ମୋର ସମସ୍ତ ସ୍ୱାର୍ଥ ତ୍ୟାଗ କରିବାକୁ ପ୍ରସ୍ତୁତ ।

ମାନିଲା ଚାଲିଯିବା ପରେ ବିଜୟ ଆନନ୍ଦରେ ମୁଁ ଉଲ୍ଲସିତ ହୋଇ ଉଠିଥିଲି । ମୁଁ ଜାଣିଥିଲି, ସବୁ ଯୁଗରେ ସବୁ କାଳରେ ନାରୀମାନେ ଦୁର୍ବଳ । ନାରୀର ସେଇ ଦୁର୍ବଳତାର ସୁଯୋଗ ନେଇ ବହୁ ଅସାଧ ସାଧନ ହୋଇଛି ଏବଂ ବହୁ ଦୁଷ୍କର୍ମ ସଂଘଟିତ ହୋଇଛି ଏଇ ପୃଥିବୀରେ ।

ସେହିପରି ଏହି ବନ୍ଦୀଶାଳାରୁ ମୁକ୍ତିର ଏକମାତ୍ର ପଥ ଭାବରେ ମୁଁ ଧରି ନେଇଥିଲି ମାନିଲାକୁ ଏବଂ ମାନିଲା ମୋତେ ଆହୁରି ନିଶ୍ଚିନ୍ତ କରିଦେଲା ଗୋଟାଏ ସଂବାଦ ଦେଇ ।

'ନିଉୟର୍କ ବ୍ୟାଙ୍କ ରବରୀ' ବେଳରେ ମୁଁ ସେଠାରେ ଉପସ୍ଥିତ ନଥିଲି କିମ୍ବା ମୋ କ୍ୟାମେରାର ଫ୍ଲାସ୍ ଜଳି ଉଠିବାର କୌଣସି ସୁଯୋଗ ନଥିଲା । କିନ୍ତୁ ମାନିଲା ଯେଉଁ ପ୍ରସ୍ତାବ ମୋ ପାଖରେ ବାଢ଼ିଲା, ତା'ର ଅପବ୍ୟବହାରର ସୁଯୋଗ ଦେବା ମାନେ ମୃତ୍ୟୁ ବରଣ କରିବା । ସେଇଥିପାଇଁ ମାନିଲା ସହିତ ମୋର ଅତ୍ୟନ୍ତ ଅନ୍ତରଙ୍ଗତାର ଅଭିନୟ କରିବାକୁ ହେଲା । ଏହାପରେ ମାନିଲା ଯେ ମୋ ମୁକ୍ତି ପାଇଁ ନିଶ୍ଚୟ ସାହାଯ୍ୟ କରିବ, ଏଥିରେ ସନ୍ଦେହର ଅବକାଶ କାହିଁ ?

ମୁଁ ମଧ୍ୟ ମନେ ମନେ ଉତ୍ତେଜିତ ହୋଇ ଉଠିଥିଲି ।

ମୁକ୍ତିର ପଥ ମୋର ଉନ୍ମୁକ୍ତ ହୋଇ ଆସିଥିଲା ।

ହୁଏତ ଆଉ ଦିନେ ଦୁଇଦିନ ପରେ ମୁଁ ମୁକ୍ତି ପାଇବି । ହୁଏତ ସର୍ଦ୍ଦାର ଆସି ମୋର ସତ୍ୟତା ସମ୍ବନ୍ଧରେ ଯଚେଇ କରିବ ।

ଏହାପରେ କେହି ମୋତେ ଆଉ ଅଟକେଇ ପାରିବେ ନାହିଁ । ମାନିଲା ମନରେ ମୁଁ ଯେଉଁ ଆଶା ସଂଚାର କରିଛି, ମାନିଲା ଜୀବନ ପଣ କରି ମୋତେ ଉଦ୍ଧାରର ଚେଷ୍ଟା କରିବ ।

ନାରୀ ରହସ୍ୟମୟୀ, ନାରୀ ଛଳନାମୟୀ ଏବଂ ନାରୀ ପ୍ରାଣସଂଗିନୀ...

\+ \+ \+

: ସା'ବ୍ କଫି ।

ମୋ ସାମ୍ନାରେ ପରିଚାରିକାଟି ଟ୍ରେ' ହାତରେ ଧରି ଠିଆ ହୋଇଥିଲା । ମୁଁ ବିରକ୍ତ ହୋଇ ଉଠିଲି । 'ସାମ୍ବାଦିକର ଡାଇରୀ' ବହିଟା ମୋ ହାତରୁ ଖସି ତଳେ ପଡ଼ିଗଲା ।

ମୁଁ ଦେଖିଲି, ପରିଚାରିକାଟି ଜଡ଼ସଡ଼ ହୋଇ ଅପରାଧୀଙ୍କ ଭଳି ଠିଆ ହୋଇଛି ।

ମୋର ମନରେ ପ୍ରତିଧ୍ୱନିତ ହେଲା, ଡିକେନ୍ସନ୍‌ଙ୍କର ସେଇ ଲାଇନ୍ କେଇଟି । 'ନାରୀ ରହସ୍ୟମୟୀ, ନାରୀ ଛଳନାମୟୀ, ନାରୀ ପ୍ରାଣସଙ୍ଗିନୀ ।'

ମୋ ମୁହଁରେ ବୋଧହୁଏ ହସ ଫୁଟି ଉଠିଥିଲା ।

ପରିଚାରିକାଟିକୁ କଫି ଥୋଇବା ପାଇଁ କହିଲି ।

ସେ କଫି କପ୍‌ଟି ଟେବୁଲ୍ ଉପରେ ରଖି ଦେଇ ଚାଲିଗଲା ।

ଧୂମାୟିତ କଫି କପ୍ ଆଡ଼େ ଚାହିଁ ମୁଁ ଭାବୁଥିଲି, ନାରୀ... ରହସ୍ୟମୟୀ, ନାରୀ ଛଳନାମୟୀ... ନାରୀ ପ୍ରାଣସଙ୍ଗିନୀ ।

କଫି କପ୍‌ର ଧୂଆଁ ଭିତରେ ଯେପରି ଧୀରେ ଧୀରେ ଗୋଟିଏ ନାରୀର ମୁହଁ ଭାସି ଉଠିଲା । ସେ ମୁହଁଟି ମୋର ଅତି ପରିଚିତ । ସୁମିତା ଚନ୍ଦନ । ସେ ମୋ ଆଡ଼େ ଚାହିଁ ହସିଲା । ବିଦ୍ରୂପର ହସ । ସେ ମୁହଁ ଲୁଚିଗଲା । ତା'ପରେ ଭାସି ଉଠିଲା ନୀନାର ମୁହଁ, ନୀନା ନର୍ତ୍ତକୀ । ସେ ବି ମୋତେ ଚାହିଁ ହସିଲା, ତାଚ୍ଛଲ୍ୟର ହସ । ସେ ମୁହଁ ବି ଉଭେଇ ଗଲା । ତା'ପରେ ଭାସି ଉଠିଲା ରୋଜିର ମୁହଁ । ସେ ବି ମୋ ମୁହଁକୁ ଚାହିଁ ହସିଲା, ସହାନୁଭୂତିର ହସ । ସେ ମୁହଁ ବି ମିଳେଇଗଲା ।

ଏବଂ ତା'ପରେ ଭାସି ଉଠିଲା ଯେଉଁ ମୁହଁଟି... ସେ ମୁହଁରୁ ଭାସି ଆସିଲା ଯେଉଁ ଉଚ୍ଛଳ ହସ, ସେ ମୁହଁଟି କାହାର ?

ହଁ, ସେ ମୁହଁ ଦର ଦର ଚିହ୍ନା । ସେ ମୁହଁ ସହିତ ମୋର ପରିଚୟ ଅଛି । ସେ ମୁହଁ ମୋର ଅଚିହ୍ନା ନୁହେଁ ।

ହଠାତ୍ ମୁଁ ବିଶ୍ୱାସ କରିପାରିଲି ନାହିଁ । ଉଚ୍ଛଳ ହସରେ ମୋର ରୁମ୍‌ଟା କମ୍ପି ଉଠିଥିଲା ।

ମୁଁ ତା' ମୁହଁକୁ ଚାହିଁଥିଲି, ଆଉ ସେ ହସୁଥିଲା ।

ହସି ହସି ହସ ଥମେଇ କହିଲା : ଆପଣ କ'ଣ ଜଡ଼ ପାଲଟି ଗଲେ ମିଷ୍ଟର ରାୟ ? ମୋତେ ଚିହ୍ନିପାରୁ ନାହାନ୍ତି ? ମୁଁ ପରା ଅଞ୍ଜନା । ଆପଣଙ୍କର ପ୍ରିୟ ସଙ୍ଗିନୀ, ପ୍ରାଣସଙ୍ଗିନୀ ଅଞ୍ଜନା ।

ପ୍ରକୃତରେ ମୁଁ ବିଶ୍ୱାସ କରିପାରୁ ନଥିଲି । ମୁଁ ସ୍ୱପ୍ନ ଦେଖୁ ନାହିଁ ତ ?

କିନ୍ତୁ ସ୍ୱପ୍ନ ମୁଁ ଦେଖୁ ନଥିଲି ।

ଅଞ୍ଜନା ଆସି ମୋତେ ସ୍ପର୍ଶ କରି, ମୋର ହାତ ଦୁଇଟା ହଲେଇ ଦେଇ କହିଲା : ସତରେ ଆପଣ ବଡ଼ ଇଏ ମିଷ୍ଟର ରାୟ । ବେଳେବେଳେ ଆପଣ କ'ଣ ଯେ ଭାବନ୍ତି, ମୋର ମନେହୁଏ ଆପଣ ଯେପରି ଏ ଲୋକର ଲୋକ ନୁହନ୍ତି । ସେଦିନ ଆପଣଙ୍କ ସହିତ କଥା କହିଲାବେଳେ ମୁଁ ଲକ୍ଷ୍ୟ କରିଛି, ଆପଣ, ମାନେ ବଡ଼ ଇଏ ମିଷ୍ଟର ରାୟ ।

ମୋର ଆଉଥରେ ମନେପଡ଼ିଲା ଡିକେନ୍‌ସନ୍‌ଙ୍କର ସେଇ ଲାଇନ୍ କେତୋଟି, ନାରୀ ରହସ୍ୟମୟୀ, ନାରୀ ଛଳନାମୟୀ, ନାରୀ ପ୍ରାଣସଙ୍ଗିନୀ ଏବଂ ଆହୁରି ମନେପଡ଼ିଲା, ନାରୀ ହିଁ ମୁକ୍ତିଦାୟିନୀ ।

ହଠାତ୍ ମୋର ସମଗ୍ର ଶରୀରରେ ଏକ କମ୍ପନ ଖେଳିଗଲା । ଅଞ୍ଜନା, ହଁ ଅଞ୍ଜନା ସାନ୍ୟାଲ ବି ନାରୀ । ତା'ହେଲେ ଅଞ୍ଜନା କ'ଣ ମୋର ମୁକ୍ତିଦାତ୍ରୀ ଭାବରେ ଏଠାରେ ଆବିର୍ଭାବ ହୋଇଛି ?

ମୋର ସମସ୍ତ ଜଡ଼ତା କଟିଗଲା ।

ମୁଁ ମୁହଁରେ ହସ ଫୁଟାଇବାର ଚେଷ୍ଟା କରି କହିଲି : କିନ୍ତୁ ଅଞ୍ଜୁ, ତୁମକୁ ମୁଁ ଆହୁରି ପରେ ଆଶା କରିଥିଲି । ମାନେ ଗଭୀର ରାତ୍ରିରେ । ଯେତେବେଳେ ପୃଥିବୀ ଶୋଇ ପଡ଼ିଥିବ, ଠିକ୍ ସେତିକିବେଳେ ମୁଁ ଚାହିଥିଲି ତମର ଆବିର୍ଭାବ । ଖାଲି ତମେ ଆଉ ମୁଁ, ମୁଁ ଆଉ ତମେ ।

ମୋର କଥା ଶେଷ ହେଲା ନାହିଁ ।

ଅଞ୍ଜନା ହସି ହସି ଗଡ଼ିଗଲା । କହିଲା : ଆପଣ କ'ଣ ସେଇ ନିରୋଳା ମୁହୂର୍ତ୍ତ ପର୍ଯ୍ୟନ୍ତ ଅଞ୍ଜୁକୁ ଅଟକେଇ ପାରିବେ ନାହିଁ ? ଅଞ୍ଜୁ ଯେ ଆଜି ମନ ପ୍ରାଣରେ ଆପଣଙ୍କର !

: ନା ଅଞ୍ଜୁ, ଛି । ମତେ ଆଉ ଆପଣ କହି ଲଜ୍ଜା ଦିଅ ନାହିଁ । ମୁଁ ତମର, ତମେ ମୋର । ଦୁହେଁ ଦୁହିଁଙ୍କର । ଅତି ଆପଣାର । ଆସ ଅଞ୍ଜୁ, ଆଜି ରାତିଟାକୁ ଆମ ଜୀବନର ପ୍ରଥମ ସ୍ମରଣୀୟ ରାତି କରି କଟାଇବା । ଖାଲି ତମେ କହିବ ଆଉ ମୁଁ ଶୁଣିବି, ମୁଁ କହିବି ଆଉ ତମେ ଶୁଣିବ । ଜୀବନର ଅଶେଷ କାହାଣୀ ଭିତରୁ, ଆମେ ଖାଲି କହିବା ଶୁଣିବା, ଆଉ ଶୁଣିବା କହିବା । ଜୀବନର ସାର୍ଥକତା ତ ସେଇଠି !!

ଅଞ୍ଜୁ ଟେବୁଲ ଉପରୁ କଫି କପ୍‌ଟା ଉଠାଇ ମୋ ହାତକୁ ବଢ଼ାଇ ଦେଇ କହିଲା : ଜୀବନଟା ହେଉଛି ବାସ୍ତବ ସଞ୍ଜୀବ, ତମେ ସବୁବେଳେ କଳ୍ପନା ଲୋକରେ ଭାସି ବୁଲିଲେ ଚଳିବ୍ ନାହିଁ । କଫି ଥଣ୍ଡା ହୋଇଗଲାଣି । ପିଅ ।

: ଆରେ ସତେ ତ ! ଏକଦମ୍ ଭୁଲିଯାଇଥିଲି । ଅଞ୍ଜନା ହାତରୁ କଫି କପ୍‌ଟା ଆଣି ପିଇବାକୁ ଆରମ୍ଭ କରିଦେଲି ।

ଅଞ୍ଜନା କହିଲା : ସତରେ ସଞ୍ଜୀବ, ତୁମକୁ ମୋତେ ଭାରି ଭଲ ଲାଗିଛି । ସେଦିନ ହୋଟେଲ ରିଜେଣ୍ଟ୍‌ରେ ମୁଁ ତମର ବକ୍ତୃତା ଶୁଣି ମୁଗ୍ଧ ହୋଇଯାଇଥିଲି । ସେଇଥିପାଇଁ ସେଦିନ ମୁଁ ତମର ସାନ୍ନିଧ ଏକାନ୍ତ ଭାବରେ କାମନା କରିଥିଲି, ଆଉ ପାଇଥିଲି ମଧ୍ୟ । ତମେ ଯେ ଏତେ ସୁନ୍ଦର ଆଉ ଏତେ ମହତ ହେଇପାର, ମୁଁ ଭାବିଲେ ମୋ ଆଖି ବୁଜି ହୋଇଯାଏ ।

ମୋର ମନେପଡ଼ିଲା ରିଜେଣ୍ଟ୍ ହୋଟେଲରେ ସେଦିନ ମୋର ବିଶେଷ ଭାଷଣର କଥା । ସେହି ଆସରକୁ ଅଞ୍ଜନା ପରି ବହୁ ଝିଅ ଆସିଥିଲେ । କିନ୍ତୁ ଅଞ୍ଜନା ବିଶେଷ ଭାବରେ ଯେ ମୋତେ...

: ତମେ ଯାହା ଭାବ ସଞ୍ଜୀବ, ମୁଁ ସେଦିନ ମନ ସ୍ଥିର କରିନେଲି । ଜୀବନରେ ସାଥୀ ଜଣେ ଦରକାର ଏବଂ ସେ ସାଥୀ ଅତ୍ୟନ୍ତ ଅନ୍ତରଙ୍ଗ ହେବା ଦରକାର । ମୁଁ ସବୁ ଦିଗରୁ ବିବେଚନା କରି ବାପାଙ୍କ ପାଖରେ ପ୍ରସ୍ତାବ ବାଢ଼ିଲି । ତା' ପରର ଘଟଣା ମୋତେ ଜଣା ନାହିଁ ।

: ତା' ପରର ଘଟଣା ଅତି ସଂକ୍ଷିପ୍ତ ଅଞ୍ଜୁ । ତମର ବାପା ମୋର ଅନୁସନ୍ଧାନ ପାଇଁ ଚାରିଦିଗକୁ ଚର ପଠାଇଲେ ଏବଂ ମୋତେ ଧରିଆଣି ତମର ଏହି ପ୍ରେମ ମନ୍ଦିରରେ ନଜରବନ୍ଦୀ କରି ରଖିଲେ ।

: ଆଚ୍ଛା ସତ କହିଲ ସଞ୍ଜୀବ, ତମେ କ'ଣ ମୋତେ ଜୀବନ ସଙ୍ଗିନୀ କରିବାକୁ ଚାହ ନାହିଁ ? ମୁଁ କ'ଣ ତମର ଯୋଗ୍ୟା ହୋଇପାରିବି ନାହିଁ ?

ମୁଁ ହସିଲି । କହିଲି : ତମର ଲକ୍ଷ୍ୟ ଅବ୍ୟର୍ଥ ଅଞ୍ଜୁ । କିନ୍ତୁ ମୋର ଗୋଟିଏ ଜାଗାରେ ସନ୍ଦେହ ହେଉଛି । ସେଦିନ ରାତିରେ, ମାନେ ଯେଉଁଦିନ ମୁଁ ରିଜେଣ୍ଟ ହୋଟେଲରେ ସମ୍ବର୍ଦ୍ଧନା ସଭାରେ ଭାଷଣ ଦେଇଥିଲି, ସେଦିନ ତମ ସହିତ ମୋର ଆଳାପ ହେବାର ତ ମନେପଡୁ ନାହିଁ ?

ଅଞ୍ଜନା ସଂଗେ ସଂଗେ ମୁହଁ ଭାରି କରି ଅଭିମାନ କଣ୍ଠରେ କହିଲା : ମୁଁ ଜାଣେ ପରା, ତମେ ଭୁଲା ଲୋକ । କିଛି ତମର ମନେ ରହେ ନାହିଁ । ସେଦିନ ସମସ୍ତ ରାତିଟା ତମ ସହିତ କଟାଇବା ପରେ ବି ତମେ ଆଜି କହୁଛ କ'ଣ ନା...

: ସମସ୍ତ ରାତି ? ମୁଁ ସତରେ ଚମକି ଉଠିଥିଲି ।

ଅଞ୍ଜନା ଧୀରେ ଧୀରେ ତା'ର ଭ୍ୟାନିଟି ବ୍ୟାଗ୍‌ଟି ଖୋଲିଲା ଏବଂ ଭିତରୁ ଦୁଇ ତିନିଖଣ୍ଡି ଫଟୋଗ୍ରାଫ୍ ବାହାର କରି ହସି ହସି ମୋ ହାତକୁ ବଢ଼ାଇ ଦେଇ କହିଲା : ଦେଖିଲ, ଏଥର ମନେପଡ଼ିବ କି ନାହିଁ ?

ମୁଁ ଫଟୋ ତିନିଖଣ୍ଡ ଦେଖି ସ୍ତବ୍ଧ ହୋଇ ଯାଇଥିଲି ।

ଗୋଟିଏ ଶେଯରେ ଅଞ୍ଜନା ଆଉ ମୁଁ । ଅଞ୍ଜନା ମୋର ବାହୁ ବନ୍ଧନ ଭିତରେ । କାହାରି ଦେହରେ ଅଙ୍ଗବାସ ନାହିଁ ।

ଇସ୍... ଲାଜରେ ମୋ ମୁଣ୍ଡ ନଇଁ ଯାଇଥିଲା ।

ମୁଁ ସିଧା ଭାବରେ ଅଞ୍ଜନା ମୁହଁକୁ ଚାହିଁପାରି ନଥିଲି । ଫଟୋଯାକ ପୁଣି ଅଞ୍ଜନା ହାତକୁ ଫେରେଇ ଦେଇଥିଲି ।

ମୋର ମନେପଡ଼ିଲା, ରିଜେଣ୍ଟ୍ ହୋଟେଲରେ ସେଦିନ ରାତ୍ରିଯାପନର କଥା ଏବଂ ମନେପଡ଼ିଲା ଫ୍ଲୋର୍ ଉପରୁ ଗୋଟେଇ ପାଇଥିବା ଗୋଟିଏ ନୀଳ ରଙ୍ଗର ବ୍ଲାଉଜ୍ ଆଉ ସାଦା ବ୍ରେସିଅର କଥା । ସେ ଦୁଇଟି ତା'ହେଲେ ଅଞ୍ଜନାର ? ଅଞ୍ଜନା ତେବେ ଦୁଇଟିଯାକ ସେଇ ରୁମ୍‌ରେ ଫିଙ୍ଗି ଚାଲିଆସିଥିଲା ?

ଲାଜରେ ମୁଁ ନଇଁ ପଡ଼ିଥିଲି ।

ଅଞ୍ଜନା କିନ୍ତୁ ହସି ହସି ଲୋଟି ଯାଉଥିଲା ।

କହିଲା : ଏବେ ମନେପଡୁଚି ସଞ୍ଜୀବ ! ସେଦିନ ରାତିରେ ଆମେ ପ୍ରତିଜ୍ଞା କଲେ, ଜୀବନରେ ଦୁହେଁ ଦୁହିଙ୍କର ହେବା ଏବଂ ଆମରଣ ଆମେ ଆମର ଜୀବନ-ତରୀ ବାହି ଚାଲିବା ।

ମୋର କିଛି ମନେ ନଥିଲା, କିଛି ମନେପଡୁ ନଥିଲା । ଏହିପରି ଯେ ଗୋଟାଏ ପରିସ୍ଥିତିର ସମ୍ମୁଖୀନ ସେଦିନ ରାତିରେ ମୁଁ ହୋଇଥିଲି, ତାହା ବି ମୋତେ ଜଣା ନଥିଲା । ବର୍ତ୍ତମାନ ଫଟୋ ଦେଖି ମୋର ମନେହେଲା, ଏହା ସବୁ ଜଣେ କାହାର ପୂର୍ବ କଳ୍ପିତ ଏବଂ ପୂର୍ବରୁ ଯୋଜନା ହୋଇ କରାହୋଇଛି । ତା' ନହେଲେ ଏଇ ଫଟୋ... ଏଇ ବିଭତ୍ସ ଫଟୋ ଉଠାଇବାର ଆବଶ୍ୟକତା କ'ଣ ଥିଲା ? ହୁଏତ ମୋତେ ବ୍ଲାକ୍‌ମେଲିଂ କରିବା ପାଇଁ ଏହିପରି ଏକ ଚକ୍ରାନ୍ତ କରାହୋଇଛି । ତଥାପି...

ମୁଁ ପ୍ରକୃତିସ୍ଥ ହେବାକୁ ଚେଷ୍ଟା କଲି ।

ମୋର ମନେପଡ଼ିଲା ଜନ ଡିକେନ୍‌ସନ୍‌ଙ୍କର ସେଇ ଲାଇନ୍ କେତୁଟା । ନାରୀ ରହସ୍ୟମୟୀ, ନାରୀ ଛଳନାମୟୀ ଏବଂ ନାରୀ ପ୍ରାଣସଙ୍ଗିନୀ ।

ତା'ହେଲେ ? ଅଞ୍ଜନା ସହିତ ମୋତେ ବୁଦ୍ଧିର ଲଢ଼ାଇ କରିବାକୁ ହେବ । ଯେତେହେଲେ ଅଞ୍ଜନା ନାରୀ । ତା' ଜୀବନରେ ବହୁ ଦୋଷ ଦୁର୍ବଳତା ରହିଥିବ । ଅଞ୍ଜନା ନିଶ୍ଚୟ ମୋ ପାଖରେ ନତି ସ୍ୱୀକାର କରିବ ଏବଂ ମୋର ଉଦ୍ଧାରର ବାଟ ନିଜେ ସେ ଖୋଲି ଦେଖାଇ ଦେବ ।

ଏଥର ଅଞ୍ଜନା ମୁହଁକୁ ଚାହିଁ ମୁଁ ବି ହସିଲି ।

ଦୁହେଁ ହସି ହସି ଗଡ଼ିଗଲୁ ।

ହସ ଥମେଇ ମୁଁ ପଚାରିଲି : ହୁଁ, ଆଉ ଅଞ୍ଜନା ! ତମ ବାନ୍ଧବୀର ଖବର କ'ଣ ?

: ବାନ୍ଧବୀ ? ହଠାତ୍ ଯେପରି ଅଞ୍ଜନାର ମୁହଁ ଗମ୍ଭୀର ହୋଇ ଆସିଲା । କୋଉ ବାନ୍ଧବୀ କଥା କହୁଚ ?

: ସୁମିତା, ମାନେ ସୁମିତା ଚନ୍ଦନ କଥା ମୁଁ କହୁଛି ।

ଅଞ୍ଜନା ମୁହୂର୍ତ୍ତେ ନୀରବ ରହି କହିଲା : ସୁମିତା ଭଲ ଅଛି । ସେ ବୋଧହୁଏ ଏଇ ସପ୍ତାହ ମଧ୍ୟରେ ବିଦେଶ ଭ୍ରମଣରେ ବାହାରିଯିବ ।

: ବିଦେଶ ଭ୍ରମଣ ? ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

: ହଁ, ବିଦେଶ ଭ୍ରମଣରେ । ସେ ଯେ 'ରିଜେଣ୍ଟ୍ ବିଜୟୀ' । ଆପଣ ତାକୁ ଖେଳରେ ଜିତେଇଲେ, ଏତେ ଶୀଘ୍ର ଭୁଲି ଯାଉଛନ୍ତି ।

ମୋର ମନେ ପଡ଼ିଲା । ସୁମିତା ମୋତେ କହିଥିଲା । ମାସେ ନା ଦୁଇମାସ ହୋଟେଲ ରିଜେଣ୍ଟ୍ ଖର୍ଚ୍ଚରେ ସେ ବିଦେଶ ଭ୍ରମଣ କରିବ । କିନ୍ତୁ ତା' ପୂର୍ବରୁ ସୁମିତା ସହିତ ମୋର କ'ଣ ଦେଖା ହୋଇପାରିବ ନାହିଁ ?

ମୁଁ କହିଲି : ସୁମିତା ସହିତ ତମର ସମ୍ବନ୍ଧ କିପରି ?

: ଭଲ । ଅଞ୍ଜନା ନିରଳସ କଣ୍ଠରେ କହିଲା । ମୋର ମନେହେଲା ସୁମିତା ସମ୍ବନ୍ଧରେ ସେ ଯେପରି ଅଧିକ ଗୋଟିଏ ଶବ୍ଦ ବି କହିବାକୁ ପ୍ରସ୍ତୁତ ନୁହେଁ ।

ମୁଁ ପୁଣି ପଚାରିଲି : ସୁମିତାର ଆଉ କିଏ ସବୁ ଅଛନ୍ତି ?

: ବାପା, ମା', ଭାଇ ବନ୍ଧୁ ସମସ୍ତେ ଅଛନ୍ତି । ଅଞ୍ଜନାର ସେହି ସଂକ୍ଷିପ୍ତ ଉତ୍ତର ।

ଅଞ୍ଜନାର ମନୋଭାବ ସୁମିତା ପ୍ରତି ଅନୁକୂଳ ନ ଦେଖି ମୁଁ ପ୍ରସଙ୍ଗ ବଦଳାଇଲି । କହିଲି : ଅଞ୍ଜୁ, ଦିନକର ଦେଖା ଆଉ ରାତିକର ପରିଚୟରେ ମୋତେ ତୁମେ ଜୀବନସାଥୀ କରିବା ପାଇଁ ପ୍ରସ୍ତୁତ ହୋଇଗଲ ? ଥରେ ତ ମୋ କଥା ଭାବିଲ ନାହିଁ । ମୋତେ ଚିନ୍ତା କରିବାର ସୁଯୋଗ ଦେଲ ନାହିଁ । ମୁଁ ଜଣେ ମଣିଷ, ଏହି ବିବାହ ସମ୍ବନ୍ଧରେ ମୋର ତ କିଛି ମତାମତ ଥାଇପାରେ ।

ଏଥର ଅଞ୍ଜନା ହସିଲା । କହିଲା : ଥାଇପାରେ, କିନ୍ତୁ ମୁଁ ଜାଣେ ଆପଣଙ୍କର ନାହିଁ । କାରଣ ସେଦିନ ରାତ୍ରିରେ ଆପଣଙ୍କର ଅନ୍ତରଙ୍ଗତାରୁ ମୁଁ ଆପଣଙ୍କ ମନର କଥା ବୁଝି ପାରିଛି ।

: ଆଚ୍ଛା ! ମୁଁ ଅଞ୍ଜନା ମୁହଁରେ ଛୋଟ ଚାପୁଡ଼ାଟିଏ ଲଗାଇଲି ।

ଅଞ୍ଜନା କହିଲା : ବାପା ତୁମକୁ କ'ଣ କହିଲେ ?

: ତମରି କଥା ।

: ତମେ ତାଙ୍କୁ କି ଉତ୍ତର ଦେଲ ?

: ଦେଇ ନାହିଁ ।

: ତା'ହେଲେ ?

: ସେ ମୋତେ ସାତଦିନ ସମୟ ଦେଇଛନ୍ତି । ସାତଦିନ ଭିତରେ ମୁଁ ମନ ସ୍ଥିର କରି ତାଙ୍କୁ ଉତ୍ତର ଦେବି । ଆଚ୍ଛା ଅଞ୍ଜୁ....

ମୁଁ କଥା ଶେଷ ନ କରି ଅଟକି ଗଲି ।

: ଉଁ ।

: ଆଚ୍ଛା ମୁଁ ଯଦି ଆଜି ବା କାଲି ଭିତରେ ତାଙ୍କ ପ୍ରସ୍ତାବର ଉତ୍ତର ଦିଏ, ତା'ହେଲେ ଏଠାରେ ସାତଦିନ ଅପେକ୍ଷା କରି ଲାଭ କ'ଣ ହେବ । ବରଂ ଆମେ...

ଅଞ୍ଜନା ଉଲ୍ଲସିତ ହୋଇ ନାଚିଉଠି ମୋ ହାତଟାକୁ ଜୋର୍‌ରେ ହଲାଇ ଦେଇ କହିଲା : ତା'ହେଲେ ବାପାଙ୍କ ପ୍ରସ୍ତାବରେ ତମେ ରାଜି ?

: ଉଁ, ହୁଁ ଅଞ୍ଜୁ । ରାଜି ନ ହୋଇ ଯେ ଅନ୍ୟ ବାଟ ନାହିଁ ।

: ଅନ୍ୟ ବାଟ ଥିଲେ କ'ଣ ରାଜି ହୋଇ ନଥାନ୍ତ ? ଅଞ୍ଜନାର ସ୍ୱରରେ କିପରି ନିରାଶ ଭାବ ଫୁଟି ଉଠିଲା ।

ମୁଁ ଉଦ୍‌ଫୁଲ୍ଲ ହୋଇ କହିଲି : ନା, ଅଞ୍ଜୁ ନା, ଆଉ ନା କରିବାର ଅବକାଶ ନାହିଁ । ତମେ ମୋର ସ୍ୱର୍ଗ, ତମେ ମୋର ପ୍ରାଣ, ତମେ ମୋର ପ୍ରିୟ ବାନ୍ଧବୀ ଅଞ୍ଜୁ । ତୁମକୁ ଛାଡ଼ି ଆଉ ମୁଁ ବଂଚିପାରିବି ନାହିଁ ।

ଅଞ୍ଜନା ମୁହଁରେ କିନ୍ତୁ ଖୁବ୍ ଗୋଟାଏ ପ୍ରସନ୍ନତା ଦେଖାଦେଲା ନାହିଁ ।

ତଥାପି ସେ ମୋର ହାତ ଦୁଇଟାକୁ ତା' କାନ୍ଧ ଉପରେ ଥୋଇ ଶାନ୍ତ ସ୍ୱରରେ କହିଲା : ମୁଁ ତା'ହେଲେ ବାପାଙ୍କୁ ତମର ସମ୍ମତିର କଥା ଜଣେଇ ଦେଉଛି ସଞ୍ଜୀବ । ପରେ ପୁଣି...

: ଆରେ ନା ନା । ପରେ ଆଉ ମତ ପରିବର୍ତ୍ତନ ହେବ ନାହିଁ । ହାତୀକା ଦାନ୍ତ, ମରଦ୍‌କା ବାତ୍ ।

: ସତ ? ଅଞ୍ଜନା ଚାହାଣିରେ ଚଟୁଳତା ଫୁଟାଇ ପଚାରିଲା ।

: ସତ । ମୁଁ ଅଞ୍ଜନାର ଗାଲରେ ଗୋଟିଏ ଚୁମ୍ବନ ଆଙ୍କି ଦେଲି ।

ଅଞ୍ଜନା ଉଠି ଠିଆ ହେଲା । କହିଲା : ତା'ହେଲେ ମୁଁ ଚାଲିଲି ସଞ୍ଜୀବ । ହୁଏତ କାଲି ସକାଳୁ ଆସି ତମକୁ ଏଠାରୁ ନେଇ ଚାଲିଯିବି । ତା'ପରେ ବିବାହ ।

ବିବାହ ପରେ ହନିମୁନ୍ ପାଇଁ ଦରିଆପାରି ଯାତ୍ରା । ଟା-ଟା । ଅଞ୍ଜନା ଚାଲିଗଲା । ମୁଁ ତା' ଯିବା ପଥକୁ ଚାହିଁଥିଲି ।

\+ \+ \+

ମୋ ମନରେ ପ୍ରତିଧ୍ୱନିତ ହେଉଥିଲା- ତା'ପରେ ବିବାହ ଏବଂ ବିବାହ ପରେ ହନିମୁନ୍ ପାଇଁ ଦରିଆପାରି ଯାତ୍ରା । ମାନେ ?

ତା'ହେଲେ ସେମାନେ କ'ଣ ମୋର ସଂପୂର୍ଣ୍ଣ ମୁକ୍ତି ଚାହାନ୍ତି ନାହିଁ ? ଯେକୌଣସି ଉପାୟରେ ମୋତେ କବଳିତ କରି ମୋର ସମସ୍ତ ପ୍ରକାର ଗତିବିଧି ରୋଧ କରିବାକୁ ଚାହାନ୍ତି ? ତା' ନହେଲେ ଅଞ୍ଜନା ସହିତ ମୋର ବିବାହ ଦେଇ ମୋତେ ଦରିଆ ସେପାରି ପଠାଇବାର ପରିକଳ୍ପନା କରନ୍ତେ କାହିଁକି ?

କିନ୍ତୁ ଏହାର ମୂଳ ରହସ୍ୟ କ'ଣ ?

ମୁଁ ଚିନ୍ତା କରୁଥିଲି ଆଉ ଭାବୁଥିଲି, ଅଞ୍ଜନା କ'ଣ ସତରେ କାଲି ସକାଳେ ଆସି ମୋତେ ଏଠାରୁ ମୁକ୍ତ କରି ନେଇଯିବ ?

କିନ୍ତୁ କୁଆଡ଼େ ? ଏଠୁ ସିନା ମୁଁ ମୁକ୍ତି ପାଇବି, ତା'ପରେ ? ମୋର ସ୍ୱଚ୍ଛନ୍ଦ ଗତିବିଧି ପାଇଁ ସେମାନେ କ'ଣ ମୋତେ ଛାଡ଼ିଦେବେ ? ଅଞ୍ଜନା ସହିତ ମୋତେ ବିବାହ ଦେବା

ପାଇଁ ବା ଏମାନଙ୍କର ଏତେ ଝୁଙ୍କ୍ କାହିଁକି ? ସତରେ କ'ଣ ଅଞ୍ଜନା ମୋତେ ଭଲପାଏ ? ମୋଟେ ନୁହେଁ । ତା'ହେଲେ ଅଞ୍ଜନା ସହିତ ମୋତେ ଯୁକ୍ତ କରି ମୋର ଦୁର୍ବଳ ମୁହୂର୍ତ୍ତର ଏପରି ଫଟୋ ସେମାନେ ଉଠାଇ ନଥାନ୍ତେ । ମୋତେ କେବଳ ବ୍ଲାକ୍ ମେଲିଂ କରିବା ପାଇଁ ଏପରି ବ୍ୟବସ୍ଥା କରାହୋଇଛି ।

କିନ୍ତୁ ଯେପରି ହେଉ ମୋତେ ଏହି ମାୟାଜାଲ ଛିନ୍ନ କରି ବାହାରିଯିବାକୁ ହେବ । ଆଜି ଯଦି ରୋଜି ପୋଲିସ୍ ଇନିସ୍‌ପେକ୍ଟରଙ୍କୁ ଖବରଟା ଦେଇଥାଏ, ତା'ହେଲେ ଅନେକ କାମ ହେବ । ବରଦାକାନ୍ତ ମହଲାନବିଶ ମୀରା ମର୍ଡ଼ର କେସ୍‌ର ଜଣେ ପ୍ରତ୍ୟକ୍ଷଦର୍ଶୀ । ଏକଥା ମୁଁ ବିଶ୍ୱସ୍ତ ସୂତ୍ରରୁ ଜାଣିପାରିଥିଲି, କିନ୍ତୁ ତାଙ୍କ ସହିତ ଆଉ ଯୋଗାଯୋଗ କରିବା ସମ୍ଭବ ହୋଇପାରିଲା ନାହିଁ । ସାକ୍ଷାତ କରିବାର ଆପଏଣ୍ଟ୍‌ମେଣ୍ଟ୍ କରି ମଧ ଦେଖା କରିବାକୁ ଯାଇପାରିଲି ନାହିଁ ।

ମୋ ମନଟା ନାନା ପ୍ରକାର ଦୁର୍ଭାବନାରେ ଭରି ଯାଇଥିଲା ।

ମୁଁ ସ୍ଥିର ହୋଇ ବସିପାରୁ ନଥିଲି ।

ବିଶେଷ କରି ଅଞ୍ଜନା ସହିତ ମୋର ସେହି ଅଶ୍ଳୀଳ ଫଟୋ କେତେଖଣ୍ଡି ମୋର ମାନସିକ ଅବସ୍ଥାକୁ ବିବ୍ରତ କରିଦେଇଥିଲା ।

ମୁଁ ଅନେକ ବେଳଯାଏ ଆରାମ ଚେଆରରେ ଆଖି ବୁଜି ଶୋଇଲି । ଖଣ୍ଡ ଖଣ୍ଡ ବିକ୍ଷିପ୍ତ ଭାବନା ମୋ ମନ ଭିତରେ ଖଣ୍ଡିଉଡ଼ା ଦେଇ ଉଭେଇଗଲେ । ମୁଁ କ'ଣ କରିବି ? ଏହାପରେ ମୋର କ'ଣ କର୍ତ୍ତବ୍ୟ ? କାଲି ସକାଳେ ଯଦି ଅଞ୍ଜନା ଆସି ମୋତେ ସଂଗରେ ଡାକି ନେଇଯାଏ ଏବଂ ପ୍ରଣବ ସାନ୍ୟାଲ ବିବାହର ଯଦି ସମସ୍ତ ଆୟୋଜନ କରନ୍ତି, ମୋର ତ ଆଉ ପଛଘୁଞ୍ଚା ଦେବାକୁ ବାଟ ନଥିବ । ବିବାହ ପରେ ଯଦି ସତରେ ହନିମୁନ୍ ନାଁରେ ସେମାନେ ଆମକୁ ଦରିଆ ସେପାରି କୌଣସିଠାକୁ ପଠାଇ ଦିଅନ୍ତି, ତେବେ...

ମୁଁ ଆଖି ଖୋଲି ଚାହିଁଲି ।

ଘରଟା ଅନ୍ଧକାରରେ ଭରି ଯାଇଥିଲା । ମୋ ମନର ସମସ୍ତ ଉତ୍ସାହ ମରିଯାଇଥିଲା । ହଁ, ଏଇ ଅନ୍ଧକାର ହିଁ ଭଲ । ମୋ ଜୀବନ ପାଇଁ ଅନ୍ଧକାର ହିଁ ପ୍ରୟୋଜନ ।

ମୁଁ ଘରେ କାହାର ପାଦଶବ୍ଦ ଶୁଣିଲି ଏବଂ ଅଳ୍ପ ସମୟ ପରେ ଘରେ ଆଲୋକ ଜଳି ଉଠିଲା ।

ସେଇ ପରିଚାରିକାଟି, ଯିଏ ମୋର ଖବର ବୁଝିବା ପାଇଁ ନିଯୁକ୍ତି ପାଇଛି । ତା' ହାତରେ ଗୋଟିଏ ଟ୍ରେ' ଥିଲା । ବୋଧହୁଏ ଖାଇବା ଜିନିଷ କିଛି ଆଣିଥିଲା ମୋତେ ଖୁଆଇବା ପାଇଁ ।

ମୋ ସାମ୍‌ନାରେ ଟି ଟେବୁଲ୍ ଉପରେ ଖାଦ୍ୟ ସାମଗ୍ରୀତକ ଓହ୍ଲେଇ ରଖି ସେ ନୀରବରେ ଠିଆ ହୋଇ ରହିଲା ।

ଯେମିତି ସେ ଏକ ଚାବିଦିଆ କଣ୍ଢେଇ । ତା'ର ନିଜତ୍ୱ କିଛି ନାହିଁ । ମାଲିକର ଇଚ୍ଛା ଅନୁସାରେ ତା'ର ଗତି ।

ମୁଁ ତାକୁ ହାତଠାରି ପାଖକୁ ଡାକିଲି ।

ସେ ସତେକି ଅଚଳ ମେରୁ । ସେଇଠି ସେମିତି ଠିଆ ହୋଇ ରହିଥିଲା ।

ମୁଁ ଆଉ କ'ଣ କହି ଥାଆନ୍ତି ? ଖାଦ୍ୟପଦାର୍ଥ ତକ ଟାଣିନେଇ ଖାଇବାକୁ ଆରମ୍ଭ କରିଦେଲି ।

ପରିଚାରିକାଟି ଧୀରେ ଧୀରେ ଘରୁ ବାହାରି ଚାଲିଗଲା ।

କ୍ରମେ ରାତି ଘନେଇ ଆସିଲା । ବାହାରେ ନିଶାଚରମାନଙ୍କର କୋଳାହଳ ଶୁଭିଲା । ମୁଁ କିନ୍ତୁ ଏକା, ଏକାନ୍ତ ଭାବରେ ଏକା ।

ଅନେକ ରାତିଯାଏ ସେଇ ଆରାମ ଚେଆରରେ ଆଖିବୁଜି ଶୋଇ ରହିଥିଲି । ପକ୍ଷାଘାତ ରୋଗୀଟି ପରି ।

ପୁଣି ରାତ୍ରି ଭୋଜନ ଆସିଲା ।

ପରିଚାରିକାଟି ମୋ ସାମ୍ନାରେ ଥୋଇ ଦେଇ ଦୂରରେ ଠିଆ ହେଲା । ମୁଁ ଖାଇ ସାରିବା ପରେ ସେ ଚାବିଦିଆ କଣ୍ଢେଇ ପରି ଧୀରେ ଧୀରେ ଘରୁ ବାହାରି ଚାଲିଗଲା ।

ହଁ, ମୁଁ ବନ୍ଦୀ । ବନ୍ଦୀ ନୁହେଁ ତ ଆଉ କ'ଣ ?

ଘରର ହତା ଡେଇଁ ବାହାରି ଯିବା ପାଇଁ ମୋ ଉପରେ ନିଷେଧାଜ୍ଞା ରହିଚି । ହୁଏତ ସେପରି ଦୁଃସାହସ କଲେ ଜୀବନହାନି ହୋଇପାରେ । ପ୍ରଣବ ସାନ୍ୟାଲ ମୋତେ ବାରମ୍ବାର ସେଇ କଥା କହିଯାଇଛନ୍ତି ।

ଅଞ୍ଜନା ସାନ୍ୟାଲକୁ ବି ମୁଁ ଧରିପାରିଲି ନାହିଁ । ତା'ର ଦୁର୍ବଳତା ଖୋଜି ବାହାର କରିବା ପୂର୍ବରୁ ସେ ଚାଲିଗଲା । ନା, ମୁକ୍ତିର ଆଉ ବାଟ ନାହିଁ, କୌଣସି ବାଟ ନାହିଁ ।

ରାତି ବଢୁଥିଲା । ମୁଁ ଆଖିବୁଜି ଶୋଇବାକୁ ଚେଷ୍ଟା କରୁଥିଲି । ସକାଳ ହେଉ । ଅଞ୍ଜନା ଆସୁ । ତା'ପରେ ନୂଆ ଭାବରେ ଚେଷ୍ଟା କରିବାକୁ ହେବ ।

କେଉଁଠି ଗୋଟାଏ ଦିଆଲ ଘଡ଼ିରେ ଠନ୍‌ଠନ୍ ହୋଇ ଅନେକ ଗୁଡ଼ାଏ ବାଜିଗଲା । ଏଗାରଟା କିମ୍ବା ବାରଟା ହେବ । ରାତି ଅଧଯାଏ ମୋ ଆଖିକୁ ନିଦ ଆସିଲା ନାହିଁ ।

ଆହୁରି କେତେବେଳ ଯାଏ ଛଟପଟ ହେଲି । କର ଲେଉଟାଇଲି । ଘର ଭିତରଟା ମୋତେ ଭାରି ଅସ୍ୱସ୍ତି ଲାଗିଲା । ଦମ୍ ବନ୍ଦ ହୋଇଯିବା ପରି ମୁଁ ଅନୁଭବ କଲି । ସେଇ ଅନ୍ଧକାର ଭିତରେ ମୁଁ ଧୀରେ ଧୀରେ ଉଠି ଆସି, ଘରର ଦରଜା ଖୋଲି ବାରଣ୍ଡାରେ ଠିଆ ହେଲି ।

ଅନ୍ଧକାର, ଚାରିଆଡ଼େ ଭୀଷଣ ଅନ୍ଧକାର ।

ନିଶା ଗର୍ଜୁଛି, ସମସ୍ତେ ଶୋଇ ପଡ଼ିଲେଣି ।

ବାହାରେ ମୁକ୍ତ ଆକାଶ ତଳେ, ମୁକ୍ତ ପବନ ଦେହରେ ବାଜି ମୋତେ ଟିକିଏ ଭଲ ଲାଗିଲା ।

ମୁଁ ଘର ଭିତରୁ ଖଣ୍ଡିଏ ଚେଆର ଉଠାଇ ଆଣି ବାରଣ୍ଡାରେ ପକାଇ ଚୁପ୍‌ଚାପ୍ ବସି ରହିଲି । ଆକାଶକୁ ଚାହିଁ ତାରା ଗଣିଲି । ଅନେକ ତାରା । ମେଘମୁକ୍ତ ଆକାଶ ।

ବୋଧହୁଏ ଖୋଲା ପବନ ଲାଗି ମୋ ଆଖି ଟିକିଏ ଲାଗି ଆସୁଥିଲା, ମୁଁ ଚମକି ପଡ଼ିଲି ।

କିଏ ? କିଏ ଯେପରି କଇଁକଇଁ ହୋଇ କାନ୍ଦୁଚି କେଉଁଠି ।

ମୋ ଦେହରେ ହଠାତ୍ ଯେପରି ତଡ଼ିତ୍ ପ୍ରବାହ ଖେଳିଗଲା । ତଂନ୍ଦ୍ରା ଉଭେଇ ଗଲା । ମୁଁ କାନ ପାରିଲି ।

କିଛି ସମୟ ଚୁପ୍‌ଚାପ୍ । ତା'ପରେ ଖିଲି ଖିଲି ହସର ଲହରୀ । କେଉଁଠୁ ? ମନେହେଲା ଯେପରି ଉପର ତାଲାରେ କିଏ ଜଣେ ହସୁଛି । ମୁଁ ଶୁଣିଲି । ଚୁପ୍‌ଚାପ୍ ବସି ରହି ଶୁଣିଲି । ପୁଣି ସେ କାନ୍ଦିଲା, ପୁଣି ସେ ହସିଲା । ହସ ଆଉ କାନ୍ଦ, କାନ୍ଦ ଆଉ ହସ । କିନ୍ତୁ ଖୁବ୍ ଧୀର, ଖୁବ୍ ଅସ୍ପଷ୍ଟ ।

ଆଉ ଏକ ନୂଆ ଅଧ୍ୟାୟ ।

ମୋ ଆଖିକୁ ଆଉ ନିଦ ଆସିଲା ନାହିଁ । ମନ ହେଲା ଥରେ ଯାଇ ଉପରେ ଦେଖି ଆସିବାକୁ । କିଏ ହସୁଚି, କିଏ କାନ୍ଦୁଚି ।

କିନ୍ତୁ ଉପରକୁ ଯିବା ପାଇଁ ଶିଡ଼ିଟା ଯାଇ ସେ ଅଫିସ୍ ଘର ପାଖରେ । ସେ ମୁଣ୍ଡରେ । ଯିବି କି ନାହିଁ, ଅନେକ ସମୟ ଚିନ୍ତା କଲି । ରହି ରହି ହସ କାନ୍ଦର ଲହରୀ ଭାସି ଆସୁଥିଲା । ମନରେ ଅଶେଷ କୌତୂହଳ ଜନ୍ମିଲା । ନା, ଥରେ ଯାଇ ଦେଖି ଆସେ ।

ଧୀରେ ଆଗେଇଲି ସେଇ ଅନ୍ଧକାର ଭିତରେ । ସବୁ ଆଡ଼ ନୀରବ, ନିଶ୍ଚଳ । ବାରଣ୍ଡାଟା ନିଶୂନ୍ । ମୁଁ ଯାଇ ଶିଡ଼ି ପାଖରେ ପହଞ୍ଚିଲି । ଦୁଇଟି କି ତିନୋଟି ପାହାଚ ଅତିକ୍ରମ କରିଛି, ଦିଆଲ ଘଣ୍ଟାଟା ଠନ୍‌ଠନ୍ ହୋଇ ବାଜିଲା । ଦୁଇ ଥର । ବୋଧହୁଏ ଦୁଇଟା । ମୁଁ ଆଉ ଦୁଇ ଚାରିପାହାଚ ଉଠିଗଲି । ତା'ପରେ ଅଫିସ୍ ଘର । ବନ୍ଦ । ଦୁଆର ମୁହଁରେ ଠିଆ ହେଲି ମୁହୂର୍ତ୍ତେ । ଭିତରୁ ଖାଲି ଟକ୍ ଟକ୍ ଶବ୍ଦ ଶୁଭୁଥିଲା । ମୁଁ ଯେଉଁ ଦିଆଲ ଘଡ଼ିଟାରେ ଚାବି ଦେଇ ଆସିଥିଲି, ସେଇ ଘଡ଼ିଟା ବୋଧହୁଏ ଭିତରେ ଚାଲୁଥିଲା ।

ଉପରଟା ବି ଅନ୍ଧକାର । ସୂଚୀଭେଦ୍ୟ ଅନ୍ଧକାର । ସବୁ ଘରଗୁଡ଼ିକର ଦରଜା ଭିତରୁ ବନ୍ଦ । ମୁଁ ପାଦ ଚିପିଚିପି ଯାଇ ସେଇ ଘର ପାଖରେ ପହଞ୍ଚିଲି, ଯେଉଁ ଘରଟାରୁ କାହାର ହସ କାନ୍ଦର ଲହରୀ ଆସି ମୋ କାନରେ ବାଜିଥିଲା ।

ସେଇ ଘରଟା ବି ନୀରବ । ଭିତରେ କେହି ଥିଲା ପରି ମନେହେଉ ନଥିଲା । ଦରଜା ପାଖରେ କାନ ଡେରିଲି । ନା, ସବୁ ଶୂନ୍‌ଶାନ୍ । ତା'ହେଲେ କ'ଣ ମୁଁ ଭୁଲ୍ ଶୁଣିଥିଲି ।

ଯାହାହେଉ ବାହାରେ ଆଉ ଏତେ ସମୟ ରହିବା ନିରାପଦ ନୁହେଁ । କେତେବେଳେ କେଉଁ ଫାଙ୍କରୁ କି ଯେ ଅଘଟଣ ଘଟି ବସିବ... ମୁଁ ଫେରି ଆସୁଥିଲି ।

ପୁଣି ମୋ କାନରେ କାନ୍ଦଣା ଶବ୍ଦ ବାଜିଲା । ହଁ କିଏ କାନ୍ଦୁଚି, ଧୀରେ, ଖୁବ୍ ଧୀରେ । ମୁଁ ପୁଣି ପାଦ ଚିପି ଚିପି ସେଇ ଘର ପାଖକୁ ଆଗେଇ ଗଲି । ହଁ, ଭିତରେ କିଏ କାନ୍ଦୁଚି । ଦରଜା ବନ୍ଦ ଥିଲା । ହାତମାରି ଦେଖିଲି । ଖୋଲା ।

ମୁହୂର୍ତ୍ତେ ଚିନ୍ତା କଲି । ଭିତରକୁ ଯିବି ନା ନାହିଁ ?

ଆଉ କାନ୍ଦଣା ଶୁଭୁ ନଥିଲା ।

ମୋର ଅଜାଣତରେ ମୁଁ ଘର ଭିତରେ ପ୍ରବେଶ କରି ସାରିଥିଲି । ଭୟରେ ମୋର ସମଗ୍ର ଶରୀରଟା କମ୍ପି ଉଠିଥିଲା । ଅନ୍ଧକାର ଭିତରେ ମୁଁ କିଛି ଦେଖିପାରୁ ନଥିଲି, କାହାରିକୁ ଦେଖିପାରୁ ନଥିଲି । କିନ୍ତୁ କେଉଁ ଆଡ଼େ ପାଦ ବଢ଼ାଇବାକୁ ସାହସ କରୁ ନଥିଲି ।

ସେଇ ଘର ଭିତରୁ ପୁଣି ସେ କାନ୍ଦି ଉଠିଲା । ଅଳ୍ପ ସମୟ ପରେ ପୁଣି ହସି ଉଠିଲା । ଯେମିତି ମୁଁ ତଳେ ବସି ଶୁଣୁଥିଲି, ଠିକ୍ ସେହିପରି, ସେହି ସ୍ୱର ।

ମୁଁ କ'ଣ କରିବି ନ କରିବି କିଛି ଠିକ୍ କରିବା ଆଗରୁ ଘର ଭିତରେ ଏକ କ୍ଷୀଣ ଆଲୋକ ଜଳିଉଠିଲା । ମୁଁ ଦେଖିଲି ଗୋଟିଏ ନାରୀ ମୂର୍ତ୍ତି ଖଟ ଉପରେ ଶୋଇଛି । ସେ ଡିଆସିଲି ଜାଳି ମହମବତି ଲଗାଉଛି ।

ମୋତେ ଚାହିଁ ସେ ହସି ଉଠିଲା । ହିସ୍ ହିସ୍ ହସ । ମୁହଁ ତା'ର ବିକୃତ ଦିଶିଲା । ମୋତେ ହାତଠାରି ପାଖକୁ ଡାକିଲା ।

ମୁଁ ଡରି ଯାଇଥିଲି ।

ସ୍ତ୍ରୀ ଲୋକଟି ମଧ୍ୟବୟସ୍କା । ସ୍ୱାସ୍ଥ୍ୟ ସୁନ୍ଦର । କିନ୍ତୁ...

ମୁଁ କମ୍ପିତ ପାଦରେ ତା' ପାଖକୁ ଗଲି । ଠିଆ ହେଲି । ସେ ମୋ ମୁହଁକୁ ଚାହିଁଲା । ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ପୁଣି ହସି ଉଠିଲା ।

ମୁଁ କହିଲି : ତୁମେ କିଏ ? ଇମିତି ହସୁଛ କାହିଁକି ?

ସେ ହସ ଥମେଇ ମୋତେ ତା' ଖଟର ଆହୁରି ପାଖକୁ ଯିବାକୁ ଇଂଗିତରେ ଡାକି କହିଲା : ମୋ ନାଁ ରାଧା । ମୁଁ ଏକ ପକ୍ଷାଘାତ ରୋଗୀ । ମୋର ବାଁ ପାଖ ଅଙ୍ଗ ଅଚଳ । ମୁଁ ଉଠିପାରେ ନାହିଁ, ଚାଲିପାରେ ନାହିଁ । ସେଇଥିପାଇଁ ମୁଁ କାନ୍ଦେ । କିନ୍ତୁ ତମେ କାହିଁକି ଆସିଛ ଏଠାକୁ ?

: ମୁଁ । ସତେତ ! ହଠାତ୍ ମୁଁ କିଛି ଉତ୍ତର ଖୋଜି ପାଇଲି ନାହିଁ । କହିଲି, ମୋତେ ଏମାନେ ଆଣିଛନ୍ତି । ମୁଁ ଇଚ୍ଛା କରି ଆସି ନାହିଁ ।

ରାଧା ପୁଣି ହସି ଉଠିଲା । ମୁହଁରେ ଆଙ୍ଗୁଳି ଦେଇ ନୀରବ ହେବାର ଇସାରା ଦେଇ କହିଲା : ଚୁପ୍, ଚୁପ୍ । ସେ କଥା ଏଠି କହିବ ନାହିଁ । ଦିଆଲର ବି କାନ ଅଛି ।

ସେ ମୋତେ ତା' ଖଟ ଉପରେ ବସିବାକୁ କହିଲା । ମୋ କାନ ଆହୁରି ନୁଆଁଇ ନେବାକୁ କହିଲା ତା' ମୁହଁ ପାଖକୁ ।

ମୁଁ କାନ ନୁଆଁଇଲି । ସେ ମୋତେ ଚୁପ୍‌ଚୁପ୍ କହିଲା : ମୁଁ ବି ଦିନେ ଅଣା ହୋଇଥିଲି ଏଠାକୁ । ଅନେକ ଆଶା ନେଇ । କିନ୍ତୁ ଶେଷରେ ମୋର ଏଇ ପରିଣତି । ତୁମେ ପଳାଅ ଏଠାରୁ । ଯେତେ ଶୀଘ୍ର ପାର ପଳେଇ ଯାଅ ଏ ଅଭିଶପ୍ତ 'ଭିଲା' ଛାଡ଼ି ।

ମୁଁ ନାରୀଟିର କହିବାର ଉଦ୍ଦେଶ୍ୟ କିଛି ବୁଝିପାରିଲି ନାହିଁ । ଅଳ୍ପ ଆଲୋକରେ ଘରର ଚାରିଆଡ଼କୁ ଚାହିଁ ଦେଖିଲି, ଘରେ ଆଉ କେହି ନାହିଁ । ଘରେ ଆସବାବ ପତ୍ର କିଛି ନାହିଁ । ଗୋଟାଏ ଭଙ୍ଗା ଟେବୁଲ । ତା' ଉପରେ ଗୋଟାଏ ଅଇଁଠା ଥାଳି ।

ନାରୀଟି ବୋଧହୁଏ ମୋ ଚାହାଣିର ଉଦ୍ଦେଶ୍ୟ ବୁଝିପାରି ମୋତେ ସେହିପରି ଆସ୍ତେ ଆସ୍ତେ କହିଲା : ଏ ଘରେ ମୁଁ ଏକା ରହେ । ପରିଚାରିକା ଆସି ଘର ସଫା କରିଦେଇ ଯାଏ । ଦୁଇବେଳା ଖାଇବାକୁ ଦେଇଯାଏ । ଆଉ କ'ଣ । ମୁଁ ପକ୍ଷାଘାତ ରୋଗୀ, ତେଣୁ ମୋର ଏଇ ଖଟ ଉପରେ ପଡ଼ିରହିବା ଛଡ଼ା ଅନ୍ୟ ଉପାୟ କିଛି ନଥାଏ ।

: କିନ୍ତୁ...

ନାରୀଟି ମୋତେ ପୁଣି ଚୁପି ଚୁପି କହିଲା : ମୋ ଘର ଉପରେ ଏମାନଙ୍କର ବେଶି ନଜର ନଥାଏ । କାରଣ ସେମାନେ ଜାଣନ୍ତି ମୁଁ ଚଳତ୍‌ଶକ୍ତି ରହିତ । କିଛି କରି ପାରିବି ନାହିଁ । କୁଆଡ଼େ ପଳେଇ ଯାଇ ପାରିବି ନାହିଁ ।

: କିନ୍ତୁ ଏମାନେ କିଏ ? ମୁଁ ସେଇ ନାରୀଟିକୁ ପଚାରିଲି । ସେ ମୋତେ କିଛି ଉତ୍ତର ନ ଦେଇ ହଠାତ୍ ମହମବତିଟି ଲିଭେଇ ଦେଲା ଏବଂ ଧୀର କଣ୍ଠରେ କହିଲା : ଚୁପ୍ ! ବାହାରେ ପାଦଶବ୍ଦ ଶୁଣି ପାରୁଛ ?

ମୁଁ ଭୟରେ ଥରି ଉଠିଥିଲି ।

ସେ ପୁଣି କାନ୍ଦି ଉଠିଲା ଏବଂ କିଛି ସମୟ ପରେ ହସି ଉଠିଲା ହୋ ହୋ ହୋଇ ।

ତା'ପରେ କେତୋଟି ମୁହୂର୍ତ୍ତ ନୀରବରେ କଟିଗଲା ।

ସେ ଅନ୍ଧାରରେ ମୋ ଦେହରେ ହାତମାରି କହିଲା : ତମେ ଯେମିତି ଆସିଥିଲ, ସେମିତି ଧୀରେ ଧୀରେ ଚାଲିଯାଅ । ସେମାନେ ବୋଧହୁଏ ତୁମକୁ ଖୋଜୁଛନ୍ତି । ଧରାପଡ଼ିଲେ କହିବ, ଉପରେ କାହାର କାନ୍ଦଣା ଶୁଣି ଉଠିଯାଇଥିଲି । ଏହାଠାରୁ ଅଧିକ କିଛି କହିବ ନାହିଁ ।

ମୁଁ ଅପରାଧୀ ଆସାମୀଟି ପରି ପାଦ ଚିପିଚିପି ରାଧା ଘରୁ ବାହାରି ଆସିଲି । ଶିଡ଼ିରେ ଓହ୍ଲାଇ ତଳକୁ ଖସିଲି । ତା'ପରେ ମୋ ନିର୍ଦ୍ଦିଷ୍ଟ ଘରେ ଯାଇ ଖଟ ଉପରେ ଶୋଇ ପଡ଼ିଲି ।

ମୋ ଦେହରୁ ଗମ୍ ଗମ୍ ହୋଇ ଝାଳ ବହିଗଲା ।

ସେଦିନ ରାତିରେ ଆଉ କୌଣସି ଅଘଟଣ ଘଟି ନାହିଁ । ସକାଳୁ ସୂର୍ଯ୍ୟାଲୋକ ଦେଖି ମୋର ନିଦ ଭାଂଗିଲା ।

ଗତ ରାତିର ଘଟଣାଗୁଡ଼ା ମୋତେ କିପରି ଦୁଃସ୍ୱପ୍ନ ପରି ମନେହେଲା । ମୁଁ ଉଠି ଖଟ ଉପରେ ବସିଲି ।

ପରିଚାରିକା ବ୍ରେକ୍‌ଫାଷ୍ଟ୍ ଧରି ଘର ଭିତରକୁ ପଶୁଥିଲା ।

ହାତଘଡ଼ିକୁ ଚାହିଁ ଦେଖିଲି ଆଠଟା ବାଜିଲାଣି । ଏହି ଜୀବନ ମରଣ ସମସ୍ୟା ଭିତରେ ଏତେବେଳଯାଏ ଶୋଇ ପଡ଼ିଥିବା କଥା ଚିନ୍ତାକରି ମୁଁ ଆଶ୍ଚର୍ଯ୍ୟ ହେଲି । ତଥାପି ଶାନ୍ତ ଶିଶୁଟି ପରି ଉଠି ଚାଲିଗଲି ବାଥ୍ ରୁମ୍‌କୁ । ନିତ୍ୟ ନୈମିତିକ କାମ ସବୁ ଯଥାରୀତି କରିଯିବାକୁ ହେବ ।

ଫେରିଆସିଲି ଅଳ୍ପ ସମୟ ପରେ ।

ପରିଚାରିକା ଖାଦ୍ୟ ସାମଗ୍ରୀ ସଜାଡ଼ି ରଖି ସାରିଥିଲା ଟି'ଟେବୁଲ୍ ଉପରେ । ସେ ଯନ୍ତ୍ର ପରି ସବୁ କରିଯାଉଥିଲା ଆଉ ମୁଁ ଯନ୍ତ୍ରଚାଳିତ ପରି ଗୋଟିକ ପରେ ଗୋଟିଏ ପ୍ଲେଟ୍ ଖାଲି କରି ଚାଲିଥିଲି ।

ମୋର ଆଶା ଥିଲା, ଅଞ୍ଜନା ହୁଏତ ଏଇକ୍ଷିଣା ଆସି ପହଞ୍ଚିବ । କାଲି ସେ ମୋଠାରୁ କଥା ନେଇଯାଇଛି । ପ୍ରଣବ ସାନ୍ୟାଲ ନିଜେ ହୁଏତ ଆସିପାରନ୍ତି । କିନ୍ତୁ ତଥାପି ମୋର ମୁକ୍ତି କାହିଁ ?

ଆଠଟା ପରେ ନଅଟା ବାଜିଲା । ନଅଟା ପରେ ଦଶଟା । ମୁଁ ଘନ ଘନ ଘଡ଼ିକୁ ଚାହୁଁଥିଲି, ପ୍ରତି ଦଶ ମିନିଟ୍ ମୋ ପାଖରେ ମନେହେଲା ଏକଘଣ୍ଟା ପରି । ସାଢ଼େ ଦଶଟା

ବାଜିଲା, କିନ୍ତୁ ଅଞ୍ଜନା କାହିଁ ?

ଜଣେ ପରିଚାରକ ଦଉଡ଼ି ଦଉଡ଼ି ଆସି ମୋତେ କହିଲା : ଆପଣଙ୍କର ଫୋନ୍ ସା'ବ୍ ।

ମୁଁ ଅସ୍ଥିର ହୋଇ ଉଠିପଡ଼ିଲି । ମୋର ଫୋନ୍ । ମାନେ...

ପର ମୁହୂର୍ତ୍ତରେ ଉତ୍ସାହଟା ଦବିଗଲା । କାରଣ ମୋର ଫୋନ୍ ନମ୍ବର ମୋର ହିତାକାଂକ୍ଷୀ ଲୋକେ କେହି ଜାଣନ୍ତି ନାହିଁ । ତେଣୁ...

ଅଳସ ପାଦ ଚଳେଇ ଯାଇ ରିସିଭର ଉଠାଇଲି ।

: ହ୍ୟାଲୋ...

ଅପରପ୍ରାନ୍ତରୁ ମଧୁର ହସର ଲହରୀ ଭାସି ଆସିଲା : ମୁଁ ଅଞ୍ଜନା ମାନେ ଅଞ୍ଜୁ କହୁଛି । ଆଜି ତମ ପାଖକୁ ଯିବାର ଥିଲା । କିନ୍ତୁ ବାପା ନାହାନ୍ତି । କାଲି ତମ ପାଖରୁ ଫେରିଆସି ଶୁଣିଲି, ବାପା ଦିଲ୍ଲୀ ଚାଲିଯାଇଛନ୍ତି । ଆଜି ସଂଧ୍ୟା ସୁଦ୍ଧା ଫେରିବେ । ତାଙ୍କ ସହିତ କଥା ହୋଇ, ତୁମକୁ ଯାଇ ଘେନି ଆସିବି । ଆଉ ତମର ଖବର କ'ଣ ? ସବୁ ଭଲ ତ !

: କିନ୍ତୁ ଅଞ୍ଜୁ ! ମୋତେ କାଲି ରାତିରେ ଭାରି ଡର ମାଡ଼ିଲା । ମୋର ମନେହେଲା ରାତିରେ କିଏ ଯେପରି ମୋ ଶେଯ ପାଖରେ ବସି କାନ୍ଦୁଛି, ପୁଣି ହସି ହସି ମୋତେ ବିଦ୍ରୂପ କରୁଛି ।

ଅଞ୍ଜନା ସତେ ଯେମିତି ହସି ହସି ଗଡ଼ିଗଲା । କହିଲା : ତମେ ଠିକ୍ ଶୁଣିଛ ସଞ୍ଜୀବ । କିନ୍ତୁ ତମ ଶେଯ ପାଖରେ କେହି ବସି ନଥିଲା । ଠିକ୍ ତମେ ରହିଥିବା ଉପର ଘରେ ଗୋଟାଏ ପାଗଳୀ ଅଛି । ସେ ଯେ କେତେବେଳେ ହସେ, କେତେବେଳେ କାନ୍ଦେ, ତା'ର ଠିକ୍ ଠିକଣା ନଥାଏ । କିନ୍ତୁ ତମର କିଛି ଭୟ ନାହିଁ । ସେ ଗୋଟାଏ ପକ୍ଷାଘାତ ରୋଗୀ । ତମ ଶେଯ ପାଖକୁ କୌଣସିଦିନ ଆସିପାରିବ ନାହିଁ ।

: ମୁଁ କିନ୍ତୁ କାଲି ରାତିଭରି ଶୋଇପାରିନାହିଁ ଅଞ୍ଜୁ । ତମେ ଚାଲିଆସ । ମୋତେ ଏଠି ମୋଟ ଭଲ ଲାଗୁ ନାହିଁ । ବରଂ ତମେ ମୋତେ ନେଇଯାଅ ଏଠାରୁ । ଆମେ ଦିନସାରା ମନଇଚ୍ଛା ବୁଲିବା । ତା'ପରେ ବାପା ଆସିଲେ ତମେ ମୋତେ ଏଇଠି ଛାଡ଼ିଦେଇ ଫେରିଯିବ ଘରକୁ ।

ଅଞ୍ଜୁ କହିଲା : ମୋର ବି ସେମିତି ପ୍ରବଳ ଇଚ୍ଛା ଥିଲା ସଞ୍ଜୀବ, କିନ୍ତୁ ମା'ଙ୍କ ଅସୁସ୍ଥତା ପାଇଁ ତାଙ୍କୁ ଛାଡ଼ି ଯାଇ ହେବ ନାହିଁ । କଷ୍ଟର ଦିନ ତମର ଶେଷ ହୋଇ ଆସିଲାଣି । ଆଜି ଦିନଟା । ଖୁବ୍ ବେଶି ହେଲେ ଆଜି ରାତିଟା ତମେ ଟିକିଏ ସୁଖ ଦୁଃଖରେ କଟାଇ ଦିଅ । ତା'ପରେ ତମେ ମୁକ୍ତ, ମୁଁ ବି ମୁକ୍ତ । ଉଡ଼ିବୁଲିବା ମୁକ୍ତ ଆକାଶରେ । ତେଣା ନ ଘୋଳେଇ ହେବା ଯାଏ ।

: କିନ୍ତୁ ଅଞ୍ଜୁ...

: ଉଁ ।

: ମୋତେ ଯେ ଏଠି କିଛି ଭଲ ଲାଗୁ ନାହିଁ । ମୁଁ କ'ଣ କରିବି କହିଲ ?

ଅଞ୍ଜନା ମୋତେ କିଛି ଉତ୍ତର ଦେବା ପୂର୍ବରୁ, ମୁଁ ଶୁଣିଲି ଆଉ ଜଣେ କାହାର କଣ୍ଠସ୍ୱର । ସେ ଅଞ୍ଜନାର ନାଁ ଧରି ଡାକିଲା ଏବଂ ଅଞ୍ଜନା ମୋତେ ଆଉ କିଛି ଉତ୍ତର ନ ଦେଇ ବୋଧହୁଏ ରିସିଭରଟା ରଖିଦେଲା । ମୁଁ ଅପରପ୍ରାନ୍ତରୁ ଆଉ କିଛି ଖବର ପାଇଲି ନାହିଁ ।

ଯା ପରେ ?

ମୋର ମନେହେଲା ଆଜି ଆଉଥରେ ସୁମିତା ସହିତ ଫୋନ୍‌ରେ ଯୋଗାଯୋଗ କଲେ କେମିତି ହୁଅନ୍ତା ?

ମୁଁ ଅପରେଟରକୁ ନମ୍ବରଟି କହିଲି ।

କିଛି ସମୟ ପରେ କ୍ରିଂ.... କ୍ରିଂ.... ଶବ୍ଦ ଶୁଣିଲି ଏବଂ ଅପରପ୍ରାନ୍ତରୁ ରିସିଭର ଉଠାଇ କିଏ ଜଣେ କହିଲା : ହ୍ୟାଲୋ ?

: ସୁମିତା ଚନ୍ଦନ ଅଛନ୍ତି ?

: ମୁଁ ସୁମିତା କହୁଛି । ଆପଣ... ମିଷ୍ଟର ରାୟ ନା କ'ଣ ?

: ହଁ ମୁଁ ସଞ୍ଜୀବ ରାୟ କହୁଛି । ତମେ ସୁମିତା...

ସୁମିତା ଯେପରି ହାତରେ ସ୍ୱର୍ଗ ପାଇଛି । ସେ ଚିତ୍କାର କରି କହିଲା : ମିଷ୍ଟର ରାୟ ! ଆପଣ କେଉଁଠି ? ଦୁଇଦିନ ହେବ ମୁଁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସବୁଠି ଆପଣଙ୍କୁ ଖୋଜି ସାରିଲିଣି । କିନ୍ତୁ ଆପଣ କେଉଁଠି ଯେ ଅଜ୍ଞାତବାସ କରିଛନ୍ତି...

: ହଁ ଅଜ୍ଞାତବାସ ସୁମିତା । ମୁଁ କେଉଁଠି ରହିଛି, ତା' ମୁଁ ନିଜେ ବି ଜାଣେ ନାହିଁ । ମୋ କଥା ଛାଡ଼ିଦିଅ । ତମ ଖବର କ'ଣ ?

: ମୁଁ ଶନିବାର ଦିନ ବିଦେଶ ଯାଉଛି । ଚାରିଟା ପଇଁଚାଳିଶରେ ପ୍ଲେନ୍ । ତମେ ମୋତେ ସି'ଅଫ୍ କରିବା ପାଇଁ ଯିବ ନାହିଁ ?

: ମୁଁ ଶୁଣିଥିଲି ।

: ଶୁଣିଥିଲ ମାନେ ?

: ଅଞ୍ଜନା ମୋତେ କହୁଥିଲା ।

: ଅଞ୍ଜନା, କୋଉ ଅଞ୍ଜନା ?

: ଅଞ୍ଜନା ସାନ୍ୟାଲ ।

: ସେ କିଏ ?

: ପ୍ରଣବ ସାନ୍ୟାଲଙ୍କ ଝିଅ ।

: ଦେଖନ୍ତୁ ମିଷ୍ଟର ରାୟ । ଆପଣ ମୋ ସହିତ ଖେଳନ୍ତୁ ନାହିଁ । ଆପଣ ମୋତେ ସି'ଅଫ୍ କରିବାକୁ ଆସିବେ କି ନାହିଁ କୁହନ୍ତୁ । ଆପଣ ନ ଆସିଲେ କିନ୍ତୁ ମୁଁ ଭୀଷଣ କଷ୍ଟ ପାଇବି ।

: ତମେ ଯଦି ଦୟା କରିବ ତା'ହେଲେ ମୁଁ ନିଶ୍ଚୟ ଯାଇ ତମର ବିଦେଶ ଭ୍ରମଣର ସଫଳତା କାମନା କରି ଆସିବି ।

: ମିଷ୍ଟର ରାୟ ! ସୁମିତାର କଣ୍ଠରେ ଅଭିମାନର ସ୍ୱର । ସେ କହିଲା, ଆପଣ ଯେ ଦୁଇ ତିନୋଟି ଦିନରେ ଏପରି ବଦଳିଯିବେ ମୁଁ ମୋଟେ ଭାବିପାରି ନଥିଲି ! କ'ଣ ହେଇଚି ଆପଣଙ୍କର ?

: ସବୁ ତମରି ଦୟା ସୁମିତା । ତମେ ଯେପରି ଦୟା କରିଚ, ମୁଁ ସେହିପରି ଅଛି ।

: ଯାଃ, ମୁଁ ଆପଣଙ୍କ ସଂଗରେ ଆଉ କଥା କହିବି ନାହିଁ । ଆପଣ ସହଜ ଭାବରେ କିଛି କହିବାକୁ ରାଜି ନୁହନ୍ତି । ଆପଣଙ୍କର ଯଦି ଅସୁବିଧା ଥାଏ, ଆପଣ କେଉଁଠି ଅଛନ୍ତି କହିଲେ, ମୁଁ ନିଜେ ଯାଇ ଆପଣଙ୍କ ସହିତ ଦେଖା କରି ଆସିବି ।

ମୋତେ ହସ ମାଡ଼ିଲା । ମୁଁ ହସି ହସି କହିଲି : ତମେ ତ ସବୁ ଜାଣ ସୁମିତା । ମୁଁ କେଉଁଠି ଅଛି ବରଂ ମୋ ଅପେକ୍ଷା ତମେ ବେଶି ଜାଣ । ମୋ ସଂଗରେ ତମେ ଯେପରି କପଟ ପଶା ଖେଳିଛ ସୁମିତା, ମୁଁ ହାରି ଯାଇଛି । ଜିତ୍ ହେଇଚି ତମର ।

ତଥାପି ସୁମିତା ଯେପରି କିଛି ବୁଝିବାକୁ ଚାହୁ ନଥିଲା ।

ସେ ସେହିପରି ଅଭିମାନ ମିଶା ସ୍ୱରରେ କହିଲା : ମିଷ୍ଟର ରାୟ ! ଆପଣ ମୋ ପ୍ରତି ଅବିଚାର କରୁଛନ୍ତି । ବିଦେଶ ଯିବା ପୂର୍ବରୁ ମୁଁ ଚାହେ ଆପଣଙ୍କର ଶୁଭେଚ୍ଛା । ଆପଣଙ୍କର ଶୁଭକାମନା ହିଁ ମୋ ବିଦେଶ ଯାତ୍ରାର ହେବ ଏକମାତ୍ର ସମ୍ବଳ ।

: ମୁଁ ତମର ଶୁଭକାମନା କରୁଛି ସୁମିତା । ତମ ଯାତ୍ରା ସଫଳ ହେଉ । ତମେ ସୁଖୀ ହୁଅ ।

ଅପରପ୍ରାନ୍ତର ଆଉ କୌଣସି ଉତ୍ତରକୁ ଅପେକ୍ଷା ନ କରି ମୁଁ ରିସିଭରଟା ରଖିଦେଲି ।

ଦିଆଲ ଘଡ଼ିଟା ବାଜି ଉଠିଲା ।

ଏକ୍, ଦୁଇ, ତିନି...

ଚାରି... ପାଞ୍ଚ... ଛ'...

ମୁଁ ଟେବୁଲ ଉପରେ ମୁଣ୍ଡଥୋଇ ଆଖିବୁଜି ଶବ୍ଦ ଗଣୁଥିଲି ।

ଏବଂ ସାତ... ଆଠ... ନଅ... ଦଶ... ଏଗାର ।

ଏଗାରଟା ବାଜିଲା । ଏଥର ମୁଣ୍ଡ ଉଠାଇ ଚାହିଁ ଦେଖିଲି । ହଁ, ଏଗାରଟା ହିଁ ବାଜିଚି । ଘଡ଼ି ତା'ର କାମ କରି ଚାଲିଚି । ଯେ ଯାହାର କାମ କରି ଚାଲିଛନ୍ତି । କିନ୍ତୁ ମୁଁ, ମୁଁ କ'ଣ ମୋ କର୍ତ୍ତବ୍ୟ ଠିକ୍ ଭାବରେ ସଂପାଦନ କରିପାରୁଚି ?

ଟେବୁଲ ଉପରେ ଗୋଟାଏ ସାଦା ପ୍ୟାଡ୍ ପଡ଼ିଥିଲା ।

ଟାଣି ଆଣି, ପେନ୍‌ସିନ୍ ଉଠାଇ ଲେଖିଲି ।

ମୀରା ମର୍ଡ଼ର କେସ୍ ।

ମୋର ଧାରଣା ସ୍ପଷ୍ଟ ହୋଇ ଉଠିଥିଲା ଯେ, ମୀରା ମର୍ଡ଼ର କେସ୍‌କୁ କେନ୍ଦ୍ର କରି ଏହି ସମସ୍ତ ଘଟଣା ଘଟି ଚାଲିଛି । ହୁଏତ ମୀରା ମର୍ଡ଼ର କେସ୍‌ର ରହସ୍ୟ ଉଦ୍‌ଘାଟନ ହୋଇ ପଡ଼ିଲେ ସମାଜର କେତେକ ପଦସ୍ଥ ବ୍ୟକ୍ତି ଅପଦସ୍ଥ ହୋଇପଡ଼ିବେ । ସେମାନଙ୍କର ସର୍ବମୟ ନାମ, ଯଶ, ସୁଖ ସୁବିଧା ଶେଷ ହୋଇଯିବ ।

କିନ୍ତୁ ଯେଉଁ ଚାରିଜଣ ମୀରା ମର୍ଡ଼ର କେସ୍ ଚାର୍ଜରେ ଧରା ହୋଇଛନ୍ତି ସେମାନଙ୍କ ମୁହଁରୁ ପୋଲିସ୍ କ'ଣ କୌଣସି ସୂତ୍ର ଆବିଷ୍କାର କରିପାରି ନାହିଁ ?

ମୀରା !

ମୀରା ଗୋଟିଏ ସୌଦାଗରୀ ଫାର୍ମରେ ଟାଇପିଷ୍ଟ୍ ଥିଲା ।

ପ୍ରମୋସନ ପାଇ ପ୍ରାଇଭେଟ୍ ସେକ୍ରେଟାରୀ ହୋଇଥିଲା । ତିନୋଟି ବର୍ଷରେ ମୀରାର ଉନ୍ନତି ହୋଇଥିଲା ଯଥେଷ୍ଟ । ସୌଦାଗରୀ ଫାର୍ମର ମ୍ୟାନେଜିଂ ପାର୍ଟନର ମିଷ୍ଟର ଢାଢୋଡ଼ିଆଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ମୀରା । ତା'ର ଉନ୍ନତି ହୋଇଥିଲା ।

ମିଷ୍ଟର ଢାଢୋଡ଼ିଆ ଜଣେ ମଧ୍ୟବୟସ୍କ ଭଦ୍ରଲୋକ । ବ୍ୟବସାୟରେ ଦକ୍ଷ । ଢାଢୋଡ଼ିଆ ବ୍ରଦର୍ସର ସେ ମ୍ୟାନେଜିଂ ପାର୍ଟନର ହୋଇ ଆସିବା ଦିନରୁ ଫାର୍ମର ଯଥେଷ୍ଟ ଉନ୍ନତି ହୋଇଛି । ସଂଗେ ସଂଗେ ଉନ୍ନତି ହୋଇଥିଲା ମୀରାର ।

ମିଷ୍ଟର ଢାଢୋଡ଼ିଆ କେବଳ ମୀରା ସହିତ 'ଟପ୍ ସିକ୍ରେଟ୍' ବିଷୟ ଆଲୋଚନା କରୁଥିଲେ । ଦରକାର ସ୍ଥଳରେ ମୀରା ସେଗୁଡ଼ିକୁ କାର୍ଯ୍ୟକାରୀ କରୁଥିଲା । ସେହି ସୁଯୋଗରେ ମୀରାକୁ ମିଷ୍ଟର ଢାଢୋଡ଼ିଆଙ୍କ ସହିତ ଦେଶ ବିଦେଶରେ ଘୂରିବାକୁ ହେଉଥିଲା । କେବେ କେବେ ମଧ୍ୟ ମିଷ୍ଟର ଢାଢୋଡ଼ିଆ ମୀରାକୁ ଏକା ଏକା ପଠାଉଥିଲେ ଦେଶ ବିଦେଶକୁ ।

ତେଣୁ ସମାଜର ଦଳେ ଉଚ୍ଚସ୍ତରର ବ୍ୟକ୍ତିଙ୍କ ସହିତ ମୀରା ପରିଚିତ ହୋଇଥିଲା । କିନ୍ତୁ ହଠାତ୍ ଯେ କାହିଁକି ମୀରାର ଏପରି ଦୁର୍ଦ୍ଦଶା ଘଟିଲା ।...

ଫୋନ୍‌ଟା ବାଜି ଉଠିବାରୁ ଭାବନାରେ ମୋର ବାଧା ସୃଷ୍ଟି ହେଲା ।

ରିସିଭର ଉଠାଇଲି : ହ୍ୟାଲୋ ? ... କିଏ ଅଞ୍ଜୁ ! ହଁ ମୁଁ ଜାଣିଥିଲି, ତମ ଛଡ଼ା ଆଉ ଫୋନ୍ କରିବା ଲୋକ ମୋର କିଏ ଅଛି ?

ଅଞ୍ଜନା ମୋ କଥାରେ କାନ ନ ଦେଇ କହିଲା : ଶୁଣ ସଞ୍ଜୀବ ! ଗୋଟାଏ ଶୁଭ ଖବର ଅଛି । ବାପା ଆଜି ଦିଲ୍ଲୀରୁ ଫୋନ୍ କରିଥିଲେ । ମୁଁ ତାଙ୍କୁ ସବୁକଥା କହିଦେଇଛି । ସେ ଶୁଣି ଭାରି ଖୁସି । କିନ୍ତୁ ଦୁଃଖର କଥା ହେଉଛି, ସେ ଆଜି ଆସି ପାରୁ ନାହାନ୍ତି, କାଲି ବି ଆସି ପାରିବେ ନାହିଁ । ତାଙ୍କ ବଣିକ ସଙ୍ଘର କ'ଣ ଗୋଟାଏ ଜରୁରୀ ମିଟିଂ ଅଛି । ତେଣୁ ସେ ଅଟକି ଯାଇଛନ୍ତି ।

ଅଞ୍ଜନା ଯେମିତି ଏକା ନିଃଶ୍ୱାସରେ ସବୁ କଥା କହି ପକାଇ ନୀରବ ହୋଇଗଲା ।

ମୁଁ କହିଲି : ତମେ ତା'ହେଲେ ମୋତେ କ'ଣ କହୁଛ ?

: ଗୋଟାଏ କିଛି ପ୍ରୋଗ୍ରାମ କରିବାର କଥା ମୁଁ ଚିନ୍ତା କରୁଛି ।

ମୁଁ ଉତ୍ସାହିତ ହୋଇ କହିଲି : ମୁଁ ତ ତମକୁ ସେତେବେଳେ ସେଇକଥା କହୁଥିଲି ଅଞ୍ଜୁ । ଏଠାରେ ମୋତେ ଏହି ବନ୍ଦୀ ଜୀବନ ଆଦୌ ଭଲ ଲାଗୁ ନାହିଁ । ମୁଁ କାଲିଠାରୁ ଏକଦମ୍ ବିବ୍ରତ ହୋଇ ପଡ଼ିଲିଣି ।

: ଶୁଣ ସଞ୍ଜୀବ । ଆଜିକ ମୋତେ କ୍ଷମା କର । କାରଣ ଆଜି ସନ୍ଧ୍ୟାବେଳେ ଡାକ୍ତର ଆସିବେ । ମା'ଙ୍କ ଅସୁସ୍ଥତା ପାଇଁ ମୁଁ ବଡ଼ ଅଡୁଆରେ ପଡ଼ିଯାଇଛି । ସେ ମୋତେ ସବୁବେଳେ ଖୋଜୁଛନ୍ତି । ଯାହାହେଉ ମୁଁ କାଲି ସକାଳ ଆଠଟା ଭିତରେ ପହଞ୍ଚିବି । ତମେ ପ୍ରସ୍ତୁତ ହୋଇଥିବ । କୁଆଡ଼େ ଯିବା କହିଲ ?

: ଯେଣିକି ତମେ ନେଇଯିବ । କାରଣ ଏଠି ମୋର ଇଚ୍ଛା ତ ତମର ଇଚ୍ଛା । ତେଣୁ...

ଅପର ପ୍ରାନ୍ତରୁ ଅଞ୍ଜନା ହସି ଉଠିଲା । କହିଲା : ଏଇ ଅଧିକାର ମୋତେ ସବୁଦିନେ ଦେଲେ ହେଲା ।

ମୁଁ କହିଲି : ଅଧିକାର କେହି କାହାକୁ ଦିଏ ନାହିଁ ଅଞ୍ଜୁ । ନିଜ ଗୁଣରେ ଆଦାୟ କରିବାକୁ ହୁଏ । ହେଉ ଥାଉ ସେ ସବୁ ନୀରସ କାହାଣୀ । ଆଉ କ'ଣ କୁହ ?

: ତମେ ଏଇକ୍ଷିଣା କ'ଣ କରୁଚ ଅଞ୍ଜୁ ?

: ମୁଁ, ଆଚ୍ଛା କହିଲ ମୁଁ କ'ଣ କରୁଚି ?

: କାହିଁକି ? ନା ଅଞ୍ଜୁ, ଟେଲିଫୋନ୍‌ରେ ଟେଲିଭିଜନ ଖଞ୍ଜା ହୋଇ ନାହିଁ । ତେଣୁ ତୁମେ ଫୋନ୍‌ରେ ମୋ ସହିତ କଥା କହିବା ଛଡ଼ା ଯେ ଆଉ କ'ଣ କରୁଛ କହିପାରିବି ନାହିଁ, କିନ୍ତୁ ମନେ ମନେ ଏଇ ମୁହୂର୍ତ୍ତରେ କ'ଣ ଭାବୁଛ କହିଦେବି ।

: ସତ କହୁଚ ? ମୁଁ ଏଇ ମୁହୂର୍ତ୍ତରେ ଯାହା ଭାବୁଚି ତମେ କହିଦେଇ ପାରିବ ? ଆଚ୍ଛା କହିଲ, କହିଲ ?

: ତମେ ଭାବୁଛ ... ନା, ଥାଉ । କହିଲେ ତମେ କଷ୍ଟ ପାଇବ ।

: ନା ସଞ୍ଜୀବ, ତମେ ନ କହିଲେ ବରଂ କଷ୍ଟ ପାଇବି ।

: ତମେ ଭାବୁଚ ମୁଁ ପ୍ରଥମଥର ପଶାକାଠି ଗଡ଼େଇ ଏତେ ସହଜରେ ଯେ ଏପରି ବାଜିମାତ୍ କରିପାରିବି, ମୋଟେ ଭାବିପାରି ନଥିଲି ।

: ସଞ୍ଜୀବ !

ମୋର ମନେହେଲା ଅଞ୍ଜନା କଣ୍ଠରେ ଯେପରି ଅଭିମାନ ଫୁଟି ଉଠିଲା । ସେ ପୁଣି କହିଲା : ନା ସଞ୍ଜୀବ, ତମେ ବଡ଼ ଇଏ । ମାନେ... ନା, ଫୋନ୍‌ରେ ତମର ଅଭିମାନ ଭାଂଗି ପାରିବି ନାହିଁ । କାଲି ସକାଳ ଆଠଟାରେ ପହଞ୍ଚିବି । ଦେଖିବି ତମେ କେଡ଼େ ଅଭିମାନୀ ।

: ଅଞ୍ଜୁ !

ଅଞ୍ଜନା ଆଉ ମୋ କଥା ଶୁଣିପାରି ନଥିଲା । ତା' ପୂର୍ବରୁ ସେ ଫୋନ୍‌ଟା ଛାଡ଼ି ଦେଇଥିଲା ।

ମୁଁ ପୁଣି କିଛି ସମୟ ନୀରବରେ ବସି ରହି ଚିନ୍ତା କଲି । ମନୋରଞ୍ଜନ ମହାପାତ୍ରଙ୍କୁ କ'ଣ ରୋଜି ମୋ ଖବରଟା ପହଞ୍ଚାଇଲା ନାହିଁ ? ପହଞ୍ଚାଇଥିଲେ ବି ମୁଁ ବା ଜାଣିବି କିପରି ?

ଫେର୍ ଇଚ୍ଛା ହେଲା, ରୋଜିଠାରୁ ଖବରଟା ବୁଝିବା ପାଇଁ । କିନ୍ତୁ ଖୋଲାଖୋଲି ଭାବରେ ଏ ସମ୍ବନ୍ଧରେ ରୋଜି ସହିତ କିଛି କଥାବାର୍ତ୍ତା କରିହେବ ନାହିଁ ।

ତଥାପି...

ଅପରେଟରକୁ ମୁଁ ରିଜେଣ୍ଟ୍ ହୋଟେଲର ଫୋନ୍ ନମ୍ବର କହିଲି । ସେ ସଂଯୋଗ କରିଦେଲେ ।

ହଁ, ରୋଜି ହିଁ ଫୋନ୍ ଧରିଲା । ସେ ମୋର କଣ୍ଠସ୍ୱର ଚିହ୍ନିପାରି ସଂଗେ ସଂଗେ କହିଲା : ମିଷ୍ଟର ରାୟ, ଇନିସ୍‌ପେକ୍ଟର ମିଷ୍ଟର ମହାପାତ୍ର ଆପଣଙ୍କ ପାଇଁ ଏଠାରେ ଜଣେ ଲୋକ ବସାଇଛନ୍ତି । ଆପଣ ତାଙ୍କ ସହିତ କଥା କୁହନ୍ତୁ ।

ଆଃ... ମୁଁ ଯେପରି ପୁନର୍ଜୀବନ ପାଇଲି ।

ଉତ୍ସାହିତ ହୋଇ କହିଲି : ହ୍ୟାଲୋ...

ଅପର ପ୍ରାନ୍ତରୁ ଉତ୍ତର ଆସିଲା : ମୁଁ ସାଦ୍ଦିକ କହୁଛି । ମିଷ୍ଟର ମହାପାତ୍ରଙ୍କ ଆସିଷ୍ଟାଣ୍ଟ । ଆପଣ ବର୍ତ୍ତମାନ କେଉଁଠି ଅଛନ୍ତି ?

: ସେ କଥା ପରେ, ଆଚ୍ଛା ମିଷ୍ଟର ସାଦ୍ଦିକ ! ମିଷ୍ଟର ମହାପାତ୍ର କ'ଣ ବରଦାକାନ୍ତ ମହଲାନବିଶ୍‌ଙ୍କ ସହିତ ଯୋଗାଯୋଗ କରିଥିଲେ ?

ହଠାତ୍ ଯେମିତି ଲାଇନ୍‌ଟା କଟିଗଲା ।

ଅପର ପ୍ରାନ୍ତରୁ ଆଉ କୌଣସି ଉତ୍ତର ଶୁଣାଗଲା ନାହିଁ । ମୁଁ ହ୍ୟାଲୋ ହ୍ୟାଲୋ ହୋଇ ଚିତ୍କାର କରି ଉଠିଲି ।

କିନ୍ତୁ ଟେଲିଫୋନ୍‌ରୁ କେବଳ ଗୋଟାଏ କଡ଼କଡ଼ ଶବ୍ଦ ମୋ କାନରେ ବାଜିବା ଛଡ଼ା ଆଉ ମୁଁ କିଛି ଶୁଣିପାରୁ ନଥିଲି ।

ନା, ଏଠାରେ ସମସ୍ତେ ସଜାଗ ପ୍ରହରୀ । କାହାରିକୁ ଫାଙ୍କିଦେଇ ହେବ ନାହିଁ । ସମସ୍ତେ ଯେପରି ଲୁଚି ରହି ମୋର ଗତିବିଧି ଲକ୍ଷ୍ୟ କରୁଛନ୍ତି । ତେଣୁ ବୃଥା ଚେଷ୍ଟା କରି କିଛି ଲାଭ ନାହିଁ । ବର୍ତ୍ତମାନ ମୋର ଏକମାତ୍ର ମୁକ୍ତିଦାତ୍ରୀ ହେଉଛି ଅଞ୍ଜନା ସାନ୍ୟାଲ ।

ଅଞ୍ଜନା ମୋ ଗତି, ଅଞ୍ଜନା ମୋର ମୁକ୍ତି ।

ମୁଁ ଉଠି ଠିଆ ହେଲି ।

ମୋର ମନେ ପଡ଼ିଲା ରାଧା କଥା । ଆଜି ସକାଳୁ ଏତେବେଳଯାଏ ତ ତା'ର କଣ୍ଠସ୍ୱର ମୁଁ ଶୁଣି ନାହିଁ । ସେ କ'ଣ ଶୋଇପଡ଼ିଛି । ଇଚ୍ଛା ହେଲା ଥରେ ଯାଇ ଦେଖି ଆସିବି । ଆଗେଇ ଯାଇଥିଲି ମଧ୍ୟ । କିନ୍ତୁ ଜଣେ ପରିଚାରକ ପଛରୁ ଡାକିଲା : ସା'ବ୍ ।

ମୁଁ ବୁଲି ଅନେଇଲି ।

ସେ ବିନୀତ ଭାବରେ କହିଲା : ଲଞ୍ଚ୍ ଟାଇମ୍ ହୋଇ ଯାଇଛି ସା'ବ୍ । ଖାନା ରେଡ଼ି ।

ମୁଁ ମୋର ସମସ୍ତ ଇଚ୍ଛାକୁ ଦମନ କରି ଫେରି ଆସିଲି ।

ସମସ୍ତ କୌତୂହଳ ଦମନ କରି ଏଠାରେ ନୀରବ ରହିବାକୁ ହେବ ।

ମୁଁ ଧୀରେ ଧୀରେ ତଳକୁ ଓହ୍ଲାଇଲି ।

ମୋ ପଛେ ପଛେ ପରିଚାରକଟି ଆସୁଥିଲା । ମୋର ମନେହେଉଥିଲା, ସେ ଯେପରି ମୋର ପ୍ରତିଟି ପାଦଶବ୍ଦକୁ ଜଗି ଜଗି ଚାଲିଛି ।

\+ \+ \+

ଆହୁରି ଦିନେ । ଆହୁରି ଦି'ଦିନ ବିତିଗଲା ।

ଅଞ୍ଜନା ଆସିଲା ନାହିଁ । ବେଳେବେଳେ ସେ ଫୋନ୍ କରେ ଏବଂ ମା'ଙ୍କ ଅସୁସ୍ଥତା ସଂବାଦ ଜଣାଇ ଦୁଃଖ ପ୍ରକାଶ କରେ । କୁହେ ବାପା ଦିଲ୍ଲୀରୁ ଫେରି ଆସିଲେ ସେ ନିଶ୍ଚୟ ମୋତେ ଆସି ଦେଖା କରିବ ।

ଉପରୁ ରାତି ଅଧରେ ରାଧାର କଣ୍ଠସ୍ୱର ଭାସିଆସେ । କେତେବେଳେ ହସର ପୁଣି କେତେବେଳେ କାନ୍ଦର । ସେଥିରେ ନୂତନତ୍ୱ କିଛି ନଥାଏ । ମୋ ମନରେ ବି ଆଉ କିଛି କୌତୂହଳ ରାଧା ସୃଷ୍ଟି କରିପାରେ ନାହିଁ ।

ମୁଁ କିନ୍ତୁ ନୀରବରେ, ଦିନକୁ ଦିନ ଅତି ନୀରବରେ ସମୟ କଟାଇବାକୁ ବାଧ୍ୟ ହୁଏ । ମୋର ମନେହୁଏ ମୋର ପ୍ରତିଟି ପଦପାତ ଉପରେ କାହାର ଯେପରି ତୀକ୍ଷ୍ଣ ନଜର ଘୂରି ବୁଲୁଛି ।

ଏହା ଭିତରେ ବାହାର ସହିତ ଆଉ କୌଣସି ଯୋଗାଯୋଗ କରିପାରି ନାହିଁ । ଯେତେବେଳେ ଫୋନ୍‌ରେ ନମ୍ବର ଚାହୁଁଛି, କେତେବେଳେ ଇଂରାଜିର ସାଉଣ୍ଡ ଶୁଣିଛି ତ ଆଉ କେତେବେଳେ କୌଣସି ସାଉଣ୍ଡ୍ ଶୁଣି ନାହିଁ ।

ସାରାଦିନ ମୋର ସାଥି କେହି ନାହିଁ । କଥା ପଦେ କହିବାକୁ ଲୋକଟିଏ ନାହିଁ । କେବଳ ବହି ଆଉ ଖବରକାଗଜ ଧରି କେତେ ସମୟ କଟାଇ ଦିଆଯାଇପାରେ । ନା, ବିଧିବଦ୍ଧ ଗୋଟାଏ କିଛି ବ୍ୟବସ୍ଥା ନ କରିଲେ, ଆଉ ଏଠାରେ ବଂଚିହେବ ନାହିଁ ।

ଅଞ୍ଜନା ଉପରେ ଯେଉଁ ଆସ୍ଥା ଥିଲା, ତାହା ଧୀରେ ଧୀରେ ମଉଳିବାକୁ ଲାଗିଲା । ଅଞ୍ଜନା ଯେ ମୋର ମୁକ୍ତିଦାତ୍ରୀ ହୋଇ ମୋତେ ଉଦ୍ଧାର କରିବ, ସେ ଆଶା ବି ମୋର ମଉଳି ପଡ଼ିଲା ।

ତେବେ ବର୍ତ୍ତମାନ ଉପାୟ ?

ଉପାୟ ଗୋଟିଏ କିଛି ଉଦ୍‌ଭାବନ କରିବାକୁ ପଡ଼ିବ ।

ମୋର ବିପନ୍ନ ଅବସ୍ଥା କଥା ରଣଜିତ୍ ତାଲୁକଦାର ଆଉ ମନୋରଞ୍ଜନ ମହାପାତ୍ର ନିଶ୍ଚୟ ଜାଣିପାରିଥିବେ । ସେମାନେ ହୁଏତ ମୋର ଉଦ୍ଧାର ପାଇଁ କିଛି ନା କିଛି ଗୋଟାଏ ଚେଷ୍ଟା କରୁଥିବେ । କିନ୍ତୁ ସେମାନେ କିପରି ଜାଣିବେ ମୁଁ କେଉଁଠି ଅଛି, କିପରି ସମୟ କଟାଉଛି ?

ତଥାପି ମୋତେ ମଧ୍ୟ ଉଦ୍ୟମ କରିବାକୁ ହେବ । ମୁଁ କେଉଁଠି ବନ୍ଦୀ ହୋଇ ରହିଛି, ସେ କଥା ନିଜେ ମୋତେ ଜଣା ନାହିଁ । କେବେ ମୁଁ ଏଠାରୁ ପଳାଇବାକୁ ଚେଷ୍ଟା ମଧ୍ୟ କରି ନାହିଁ । ଥରେ ଯଦି...

ହଠାତ୍ ମନେପଡ଼ିଲା ସୁମିତା ଚନ୍ଦନ କଥା । କାଲି ଶନିବାର । ସେ କାଲି ଭାରତ ଛାଡ଼ି ଚାଲିଯିବ । ସୁମିତା ଚନ୍ଦନ ଏକା ନା ତା' ସହିତ ଅନ୍ୟ କେହି ମଧ୍ୟ ଯାଉଛନ୍ତି ? ଯଦି ସମସ୍ତେ, ଯେଉଁମାନେ ମୀରା ମର୍ଡ଼ର କେସ୍ ସହିତ ସଂପୃକ୍ତ, ସେମାନେ ସମସ୍ତେ ଯଦି ବିଦେଶକୁ କିଛିଦିନ ପାଇଁ ଚାଲିଯାଆନ୍ତି, ତେବେ ?

ରାତି ଘନେଇ ଆସୁଥିଲା । ମୋର ଖିଆପିଆ ଶେଷ ହୋଇଥିଲା । ମୁଁ ଶୋଇ ଶୋଇ ଚିନ୍ତା କରୁଥିଲି । ଆଜିକୁ ଲଗାଇ ମୋର ଏଠାରେ ହେବ ଛଅଟି ରାତ୍ରିଯାପନ । ଏହି ଛଅଦିନ ଭିତରେ ପୃଥିବୀ ମାନଚିତ୍ର ବି ବଦଳିଯାଇ ପାରିଥାଏ । କିନ୍ତୁ ମୋ ଜୀବନଯାତ୍ରାର ଧାରା ସାମାନ୍ୟ ଟିକିଏ ବି ବଦଳି ପାରିଲା ନାହିଁ ।

ଶେଷରେ ହୁଏତ ଅଞ୍ଜନାକୁ ମୋତେ ବିବାହ କରିବାକୁ ପଡ଼ିବ । ଆଇନତଃ ସେ ହେବ ମୋର ସ୍ତ୍ରୀ । ମୋର ଇଚ୍ଛା ଅନିଚ୍ଛାର କୌଣସି କଥା ଶୁଣାଯିବ ନାହିଁ । ଅଞ୍ଜନା ହେବ ମୋର ପଥ ପ୍ରଦର୍ଶକ, ନୀତି ନିର୍ଦ୍ଧାରକ । ତା'ରି କଥା ଅନୁସାରେ ମୋତେ ଚାଲିବାକୁ ହେବ ।

ଏହିପରି ନାନା ପ୍ରକାର ଭାବନା ଦୁର୍ଭାବନା ଭିତରେ ମୁଁ କ୍ଲାନ୍ତ ହୋଇ ପଡ଼ିଥିଲି । ମୋ ଆଖିକୁ କେତେବେଳେ ନିଦ ଆସିଯାଇଥିଲା । ମୁଁ ଶୋଇ ପଡ଼ିଥିଲି ।

ପୁଣି କେତେବେଳେ କେଜାଣି, କାହା ହାତର ସ୍ପର୍ଶ ପାଇ ମୁଁ ସଚେତନ ହୋଇ ଉଠିଲି । ମୋ ଘରେ ଲାଇଟ୍ ଜଳୁଥିଲା । ଲାଇଟ୍‌ର ଆଲୋକରେ ଦେଖିଲି, ଅଞ୍ଜନା ମୋ ଦେହରେ ହାତ ବୁଲାଉଛି ।

ଅଞ୍ଜନାକୁ ମୁଁ ଦେଖି ବି ଦେଖିଲି ନାହିଁ । କଡ଼ ଲେଉଟାଇ ଶୋଇବାକୁ ଚେଷ୍ଟା କଲି ।

ଅଞ୍ଜନା କିନ୍ତୁ ମୋ ଅଣ୍ଟାରେ କୁତୁକୁତୁ ଦେଇ ମୋତେ ଉଠାଇବାକୁ ଚେଷ୍ଟା କଲା ।

ମୁଁ କହିଲି : ନା ଅଞ୍ଜୁ, ଆଉ ତମ ସହିତ ମୋର କିଛି ସଂପର୍କ ନାହିଁ । ତମେ ମୋର ଏତେ ଆପଣାର ହୋଇ ମଧ ମୋ ପାଇଁ କିଛି କରିଲ ନାହିଁ । ମୋତେ ଏଇ ନରକ ଯନ୍ତ୍ରଣାରୁ ଉଦ୍ଧାର କଲ ନାହିଁ । ତେବେ ତମେ ମୋର କି ଆପଣାର ?

ଅଞ୍ଜନା ଏଥର ମୋତେ ଦୁଇ ହାତରେ ଉଠାଇବାକୁ ଚେଷ୍ଟା କରି କହିଲା : ମୁଁ ଅତ୍ୟନ୍ତ ଲଜ୍ଜିତ ସଞ୍ଜୀବ । ଦୁଃଖିତ ମଧ । ମୁଁ କି ଅବସ୍ଥାରେ ଥିଲି, ତମେ ଯଦି ମୋର ପ୍ରକୃତ ଅବସ୍ଥା କଥା ଜାଣିଥାଆନ୍ତ, ତେବେ ମୋତେ ଏପରି କୁହନ୍ତ ନାହିଁ । ଦୁଃଖର ଦିନ ତମର ଆଉ ମୋର ଶେଷ ହୋଇଛି । ଏଥର ବାହାର । ମୁଁ ସାଂଗରେ ଗାଡ଼ି ଆଣିଛି । ଆମେ ଚାଲିଯିବା ।

: କୁଆଡ଼େ ?

: ଆମ ମନ ଯୁଆଡ଼େ ହେବ ।

: କେହି ବାଧା ଦେବେ ନାହିଁ ?

: ବାଧା ଅବଶ୍ୟ ଟିକିଏ ଅଛି । ସେଇ ବାଧାଟା ଶେଷ ହୋଇଯିବ ଆମର ବିବାହରେ । କାଲି ଦଶଟା ବେଳେ କୋର୍ଟ ଖୋଲିବ । ବାପା ସମସ୍ତ ବନ୍ଦୋବସ୍ତ କରି ରଖିଛନ୍ତି । ମ୍ୟାରେଜ୍ ରେଜିଷ୍ଟ୍ରି ଖାତାରେ ଆମେ ଦୁହେଁ ସହି କରିବା । ତା'ପରେ ଆମେ ସ୍ୱାଧୀନ । ମୁକ୍ତ ଆକାଶର ବିହଙ୍ଗ ।

ଅଞ୍ଜନା ମୋତେ ଭାବପ୍ରବଣଙ୍କ ପରି ଜାବୁଡ଼ି ଧରିଲା ।

ମୁଁ ଉଠି ବସିଲି ।

ବାହାରେ ଅନ୍ଧକାର । ରାତି । ସକାଳ ହୋଇନି । ଏତେ ରାତିରେ ଅଞ୍ଜନା ଛୁଟି ଆସିଛି ମୋ ପାଖକୁ କାହିଁକି ?

ପଚାରିଲି : ବାପା ଫେରିଲେଣି ?

: ହଁ, ସେ କାଲି ଫେରିଛନ୍ତି । ଫେରିବା ସଂଗେ ସଂଗେ ଆମ ବିବାହର ସମସ୍ତ ଆୟୋଜନ ଶେଷ କରିଛନ୍ତି ।

: ବିବାହ ପରେ ଆମେ କ'ଣ କରିବା ?

: ସେଇ କଥା ତ ମୁଁ ତୁମକୁ ପଚାରିବାକୁ ଆସିଛି । ହନିମୁନ୍ ପାଇଁ ସୁଇଜରଲାଣ୍ଡ ଯିବା ପାଇଁ ମୋର ଇଚ୍ଛା । ତମର ?

: ମୋର ? ଅଞ୍ଜନା ମୁହଁକୁ ଚାହିଁ ମୁଁ ଟିକିଏ ହସି କହିଲି, ମୋର ଇଚ୍ଛା, ନା, ମୋର ଏ କ୍ଷେତ୍ରରେ କୌଣସି ଇଚ୍ଛା ନାହିଁ । ତମରି ଇଚ୍ଛା ହିଁ ହେବ ମୋର ଇଚ୍ଛା ।

: ତେବେ ଉଠ । ଅଞ୍ଜନା ମୋତେ ବିଛଣାରୁ ଉଠେଇବାକୁ ଚେଷ୍ଟା କଲା ।

: କୁଆଡ଼େ ?

: ଘରକୁ ଯିବା ଯେ !

: ଏଇ ରାତିରେ ! ସକାଳ ହେଉ ! ତା'ପରେ...

: ନା, ରାତି ଆଉ ବେଶି ନାହିଁ ସଞ୍ଜୀବ ! ଚାରିଟା ବାଜିଲାଣି । ଆଉ ଘଣ୍ଟାଏ କିମ୍ୱା ଅଧଘଣ୍ଟା ପରେ ସକାଳ ହେବ । ତା' ପୂର୍ବରୁ ଆମକୁ ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବାକୁ ପଡ଼ିବ ।

: ନିର୍ଦ୍ଦିଷ୍ଟ ସ୍ଥାନ ମାନେ ?

ଅଞ୍ଜନା ସତେ ଯେମିତି ମୋର ନିର୍ବୋଧତାରେ ହୋ ହୋ ହୋଇ ହସି ଉଠିଲା । କହିଲା : ସତରେ ସଞ୍ଜୀବ, ତୁମକୁ ନେଇ ଘର କରିବା ମୋ ପକ୍ଷରେ କଷ୍ଟକର ହୋଇ ଉଠିବ ।

ସେ ମୋ ହାତ ଧରି ମୋତେ ଉଠାଇ ବସାଇଲା । କହିଲା, ଶୀଘ୍ର ସଞ୍ଜୀବ । ଶୀଘ୍ର ଶୀଘ୍ର ରେଡ଼ି ହୋଇ ପଡ଼ । ସାମାନ୍ୟ ଟିକିଏ ଜଳଖିଆ ଖାଇନେଇ ଆମକୁ ବାହାରି ପଡ଼ିବାକୁ ହେବ । ବାପା ନିଦରୁ ଉଠିବା ଆଗରୁ ଆମକୁ ଯାଇ...

ବାହାରେ କାହାର ପାଦଶବ୍ଦ ଶୁଣି ଅଞ୍ଜନା ବୁଲି ଅନେଇଲା । ନା, ସେଇ ପରିଚାରିକାଟି । ଅତ୍ୟନ୍ତ ବିଶ୍ୱସ୍ତ, ଏକାନ୍ତ ଆଜ୍ଞାଧୀନ । ଗୋଟିଏ ଟ୍ରେ'ରେ କଫି ଧରି ଆସି ପହଞ୍ଚିଛି ।

ଅଞ୍ଜନା ତା' ହାତରୁ କଫି ପଟ୍‌ଟି ଓହ୍ଲେଇ ରଖି ଚାଲିଯିବା ପାଇଁ କହିଲା । ପରିଚାରିକାଟି ଚାଲିଗଲା ।

ମୁଁ ବାଧ୍ୟ ହୋଇ ଉଠି ବସିଲି ।

ବାଥ୍‌ରୁମ୍‌ରୁ ଯାଇ ମୁହଁ ହାତ ଧୋଇ ଆସିଲି ।

ଅଞ୍ଜନା ହାତରୁ ଧୂମାୟିତ କଫି କପ୍‌ଟି ନେଇ ମୁହଁରେ ଲଗାଉ ଲଗାଉ କହିଲି : ଆଚ୍ଛା ଅଞ୍ଜୁ, ମୁଁ ତୁମକୁ ଗୋଟିଏ କଥା ପଚାରିବି । ତମେ ମତେ ସତ କହିବ ?

ଅଞ୍ଜନା କଫି କପ୍‌ଟା ମୁହଁରେ ଲଗାଇବାକୁ ନେଉଥିଲା, ଓହ୍ଲେଇ ଡିସ୍ ଉପରେ ଥୋଇ କହିଲା : ଅବିଶ୍ୱାସ ହେଉଛି ?

: ନା, ତେବେ ମୋର ମନେହେଉଛି, ତମେ ସତକଥା କହିବ ନାହିଁ ।

: ଥରେ ପଚାରି ଦେଖନା !

: ଆଚ୍ଛା କହିଲ ଅଞ୍ଜୁ, ମୋତେ ତୁମେ ବିବାହ କରି ତମର ଲାଭ କ'ଣ ହେବ ?

ଅଞ୍ଜନା ହସିଲା । କହିଲା : ଲାଭ କ୍ଷତିର ହିସାବ କଷି ମୁଁ ତୁମକୁ ବିବାହ କରୁ ନାହିଁ ସଞ୍ଜୀବ । ମୋତେ ତୁମକୁ ଭଲ ଲାଗିଛି, ସେଇଥିପାଇଁ...

ମୁଁ କହିଲି : ମୁଁ ଜାଣେ ତମେ ସତକଥା କହିବ ନାହିଁ । ସତକଥା କହିବାର ସତ୍‌ସାହସ ତମର ନାହିଁ । ଇଚ୍ଛା ଥିଲେ ବି ସତକଥା କହିପାରିବା ଭଳି ଶକ୍ତି ତମର ନାହିଁ । ମୁଁ ଆହୁରି ଜାଣେ ଅଞ୍ଜୁ, ମୋତେ ତୁମେ ବିବାହ କରୁଛ ବାଧ୍ୟ ହୋଇ । କୌଣସି ଗୋଟାଏ ଶକ୍ତିର ତାଡ଼ନାରେ ।

ମୁଁ ଦେଖିଲି ଅଞ୍ଜନା ମୋ କଥା ଶୁଣି ଟିକିଏ ଦବିଗଲା । କିନ୍ତୁ ଅବସ୍ଥା ସମ୍ଭାଳିବାକୁ ଯାଇ କହିଲା : ସଞ୍ଜୀବ ! ତମେ ଭୁଲ୍ କରୁଛ । ମୋର ବୟସ ବାଇଶି ଡେଇଁଛି । ମୁଁ ଆଉ ନାବାଳିକା ନୁହେଁ । ତେଣୁ ମୋତେ କେହି ଜୋର୍ କରି ବିବାହ ଦେବ ବା ମୋ ଇଚ୍ଛା ବିରୁଦ୍ଧରେ କେହି କିଛି କାମ କରିବ, ସେ କଥା ତମେ୍ କାହିଁକି ଭାବୁଛ !

: ଅଞ୍ଜୁ ! ମଣିଷ ସାବାଳକ ହେଲେ ସେ ସ୍ୱାଧୀନ ହୁଏ ନାହିଁ । ତମେ ମୋ ପାଖରେ ଆଉ ଛଳନା କର ନାହିଁ ଅଞ୍ଜୁ ! ଦିନେ ନା ଦିନେ ସତ୍ୟ ଉଦ୍‌ଘାଟିତ ହୋଇ ପଡ଼ିବ । ସେତେବେଳେ ତମର ମୋର ସଂପର୍କ...

: ନା ନା ସଞ୍ଜୀବ ! ତମେ ଚୁପ୍ କର । ତମର ମୋର ସଂପର୍କରେ କେହି କାଳି ବୋଳି ପାରିବେ ନାହିଁ । ତୁମକୁ ମୁଁ ମୋର କରି ହିଁ ଛାଡ଼ିବି, ଯଦି ଜୀବନ ଭରି ତପସ୍ୟା କରିବାକୁ ପଡ଼େ, ତେବେ ବି କରିବି ।

: ଆଚ୍ଛା !

ଅଞ୍ଜନା ମୋ କୋଳରେ ମୁହଁ ଗୁଞ୍ଜି ଦେଇଥିଲା । ମୁଁ ଦୁଇ ହାତରେ ମୁହଁଟାକୁ ଉପରକୁ ଉଠାଇଲି । କହିଲି : ତପସ୍ୟା ତୁମକୁ କରିବାକୁ ପଡ଼ିବ ନାହିଁ ଅଞ୍ଜୁ । ମୁଁ କଥା ଦେଉଛି, ମୁଁ ତମର ହୋଇ ରହିବି । ବାହାରକୁ ଚାହିଁଲ, ଅନ୍ଧକାର ଦୂରେଇ ଗଲାଣି । ଏଥର ନୂତନ ସୂର୍ଯ୍ୟୋଦୟ ହେବ । ନୂତନ ଦିନ ଆରମ୍ଭ ହେବ । ଆଉ ଆମ ଜୀବନର ନୂତନ ପଥରେ ଆମେ ଆଗେଇ ଚାଲିବା । ଏଥର ଉଠ ଅଞ୍ଜୁ ।

ଅଞ୍ଜନା ପ୍ରକୃତିସ୍ଥ ହୋଇ ଉଠି ବସିଲା ।

ଆମେ କଫି ପିଇଲୁ ।

ତା'ପରେ ଅଞ୍ଜନାର ହାତ ଧରି ମୁଁ ଆଗେଇ ଗଲି, କେଉଁ ଏକ ଅଜ୍ଞାତ ପଥର ଯାତ୍ରୀ ହୋଇ ।

+ + +

ଗାଡ଼ି ଚାଲିଥିଲା ।

ସାମ୍ନାରେ ଡ୍ରାଇଭର ବସି ଗାଡ଼ି ଚଳାଉଥିଲା ।

ପଛ ସିଟ୍‌ରେ ବସିଥିଲୁ ମୁଁ ଆଉ ଅଞ୍ଜନା । ମୋ ମନରେ ଦ୍ୱନ୍ଦ୍ୱ ଥିଲା, ସମସ୍ୟା ଥିଲା । ଅଞ୍ଜନା ମନରେ ବି ଉତ୍‌କଣ୍ଠା ଥିଲା, ଉଦ୍‌ବେଗ ଥିଲା ।

ଦୁହେଁ ଅନେକ ସମୟ ନୀରବରେ ବସି ରହିବା ପରେ ମୁଁ ପଚାରିଲି : ଆଚ୍ଛା ଅଞ୍ଜୁ ! ଆମେ ଯେ ବିବାହ କରିବା, ଘର ସଂସାର କରିବା, ହଠାତ୍ ଏପରି ଏକ ଭାବନା ତମ ମନରେ ପଶିଲା କାହିଁକି ?

ଅଞ୍ଜନା କ'ଣ କହିବାକୁ ଯାଉଥିଲା । କିନ୍ତୁ ବାହାରକୁ ଚାହିଁ ଗାଡ଼ିର ଗତି ବୋଧହୁଏ ବେଗତିକ ଦେଖି ଡ୍ରାଇଭରକୁ ଡାକି କହିଲା : ଆବ୍‌ଦୁଲ୍ଲା, ତୁମେ ଗାଡ଼ି କୁଆଡ଼କୁ ନେଉଛ ?

ଆବଦୁଲ୍ଲା ସେହିପରି ଷ୍ଟିୟରିଂ ଉପରେ ହାତ ପକାଇ ବାହାରକୁ ଚାହିଁ କହିଲା : ଗାଡ଼ି

ମୁଁ ଠିକ୍ ଜାଗାକୁ ନେଇ ଯାଉଛି ଦିଦିମଣି । ଆଉ ଅଳ୍ପ ସମୟ ପରେ ନିର୍ଦ୍ଦିଷ୍ଟ ଜାଗାରେ ପହଞ୍ଚାଇ ଦେବି ।

ଅଞ୍ଜନା ଦେହ ମୁହଁରେ କିପରି ବିବ୍ରତ ଭାବ ଫୁଟି ଉଠିଥିଲା । ଗାଡ଼ି ଆସି ପହଞ୍ଚିଥିଲା ଶାମବଜାର ଛକରେ । ଆମେ ଯେ ଏହା ଭିତରେ କଲିକତାରେ ପହଞ୍ଚି ସାରିଛୁ, ଏତେବେଳଯାଏ ମୁଁ ଲକ୍ଷ୍ୟ କରି ନଥିଲି ।

ଅଞ୍ଜନା କହିଲା : ଆବ୍‌ଦୁଲ୍ଲା, ମୁଁ ଭାବୁଚି ତମେ ଭୁଲ୍ ପଥରେ ଆଗେଇ ଚାଲିଚ । ସର୍ଦ୍ଦାରଙ୍କର ନିର୍ଦ୍ଦେଶ ଅମାନ୍ୟ କରୁଚ ।

ଆବ୍‌ଦୁଲ୍ଲା କିନ୍ତୁ କୌଣସି ଉତ୍ତର ଦେଲା ନାହିଁ । ସେ ବାହାରକୁ ଚାହିଁ ଗାଡ଼ି ଚଳାଉଥିଲା ।

ଗାଡ଼ି ଚିତ୍ତରଞ୍ଜନ ଏଭିନିଉକୁ ମୋଡ଼ିବା ମାତ୍ରକେ ଅଞ୍ଜନା ଖୁବ୍ ଜୋର୍‌ରେ ଚିତ୍କାର କରି କହିଲା : ଆବ୍‌ଦୁଲ୍ଲା, ତୁମେ ଏଥିପାଇଁ ଶାସ୍ତି ପାଇବ ।

ଆବଦୁଲ୍ଲା ଆଉ ଅଞ୍ଜନାର କଥାବାର୍ତ୍ତା ଶୁଣି ମୁଁ କିନ୍ତୁ ବିବ୍ରତ ବୋଧ କରୁଥିଲି । ଗାଡ଼ିର ସ୍ପିଡ୍ କମି ନଥିଲା । ଅଞ୍ଜନା ଗାଡ଼ି ଭିତରେ ଛଟପଟ ହେଉଥିଲା ।

ମୁଁ କହିଲି : ଏପରି ବ୍ୟସ୍ତ ହେଉଛ କାହିଁକି ଅଞ୍ଜୁ ! ଆବଦୁଲ୍ଲା ତ ଆମକୁ ବିପଦରେ ପକାଇବ ନାହିଁ । ସେ ତ କହୁଚି ଠିକଣା ଜାଗାରେ ନେଇ ପହଞ୍ଚାଇ ଦେବ ।

: ନା ସଞ୍ଜୀବ ! ମୋର ମନେ ହେଉଛି...

ମୁଁ ଲକ୍ଷ୍ୟ କଲି ଅଞ୍ଜନା ଗାଡ଼ିର ଦରଜା ଖୋଲୁଚି ।

ସାମ୍‌ନାରୁ ଆବଦୁଲ୍ଲା କହିଲା : ସେପରି ଦୁଃସାହସ କରିବ ନାହିଁ ଦିଦିମଣି । ମୁଁ ଭିଉ ଫାଉଣ୍ଡର ଗ୍ଲାସ୍‌ରୁ ସବୁ ଦେଖିପାରୁଛି ।

ଏଥର ଅଞ୍ଜନାର ମୁହଁ ଫିକା ପଡ଼ିଗଲା । ମନେହେଲା ଯେପରି ଅଞ୍ଜନା ଦେହରୁ ସମସ୍ତ ରକ୍ତ ଶୁଖିଯାଇଛି । ସେ ଅସହାୟ ଦୃଷ୍ଟିରେ ମୋ ମୁହଁକୁ ଅନାଇ ପ୍ରଶ୍ନ କଲା : ଏଥର ଆମର କ'ଣ ହେବ ସଞ୍ଜୀବ !

ମୁଁ ଦେଖିଲି ଗାଡ଼ି ଗୋଟାଏ ବିରାଟ କୋଠା ଦୁଆରେ ଯାଇ ଠିଆ ହେଲା ଏବଂ ସଂଗେ ସଂଗେ ବାହାରି ଆସିଲେ ପୋଲିସ୍ ଇନିସ୍‌ପେକ୍ଟର ମନୋରଂଜନ ମହାପାତ୍ର । ପଛେପଛେ ଆଉ ଦୁଇଜଣ କନେଷ୍ଟବଳ ।

ମୁଁ ବି ହତବାକ୍ ହୋଇ ଯାଇଥିଲି । ଏପରି ଏକ ଅଭାବନୀୟ ଘଟଣା ପାଇଁ ମୁଁ ମୋଟେ ପ୍ରସ୍ତୁତ ନଥିଲି ।

ଅଞ୍ଜନା ସାମ୍‌ନାରେ ପୋଲିସ୍ ଇନିସ୍‌ପେକ୍ଟରଙ୍କୁ ଦେଖି ଭୟରେ ମୋ ପାଖକୁ ଲାଗି ଆସିଥିଲା ।

ମନୋରଞ୍ଜନ ମହାପାତ୍ର ମୋ ସହିତ କରମର୍ଦ୍ଦନ କରି, ଅଞ୍ଜନା ଆଡ଼େ ଚାହିଁ କହିଲେ : ଆପଣ ଭୟ କରନ୍ତୁ ନାହିଁ ଅଞ୍ଜନା ଦେବୀ । ଉପରଟା ମ୍ୟାରେଜ ରେଜିଷ୍ଟ୍ରେସନ ଅଫିସ୍ । ସେଠାରେ ପ୍ରଣବ ସାନ୍ୟାଲ, ତାଙ୍କର ବନ୍ଧୁବାନ୍ଧବଙ୍କ ମେଳରେ ଆପଣଙ୍କ ପଥ ଚାହିଁ ବସିଛନ୍ତି । ଆମେ ସମସ୍ତ ବନ୍ଦୋବସ୍ତ କରି ରଖିଛୁ । ଆପଣମାନେ ଖାଲି ମ୍ୟାରେଜ୍ ରେଜିଷ୍ଟ୍ରେସନ ବହିରେ ସହି କରିଲେ ହେଲା ।

ମୁଁ ତଳକୁ ଓହ୍ଲାଇ ଗଲି । ଅଞ୍ଜନା କିନ୍ତୁ ସେଇଠି ସେମିତି ବସି ରହିଥିଲା ।

ମନୋରଞ୍ଜନ ମହାପାତ୍ର କହିଲେ : ଆପଣଙ୍କର ଅଭିନୟ ଶେଷ ହୋଇଯାଇଛି ଅଞ୍ଜନା ଦେବୀ । ଏଥର ବାହାରି ଆସନ୍ତୁ । ଉପରେ ଆପଣଙ୍କର ଦଳବଳ ସମସ୍ତେ ଅପେକ୍ଷା କରି ବସିଛନ୍ତି ।

ଆମେ ଧୀରେ ଧୀରେ ଉପରକୁ ଉଠିଗଲୁ ।

ଗୋଟାଏ ବିରାଟ ହଲ୍ ଘର । ଘର ଭିତରେ ଚେଆର୍ ସଜା ହୋଇଛି । ମୁଁ ଭିତରେ ପାଦ ଦେବା ମାତ୍ରେ ଗୋଟାଏ ଗୁଞ୍ଜରଣ ଉଠି ହଠାତ୍ ବନ୍ଦ ହୋଇଗଲା ।

ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖିଲି, ସେଠାରେ ବସିଛନ୍ତି ମୋର ପରିଚିତ ବହୁତ ଲୋକ । ପ୍ରଥମ ଧାଡ଼ିରେ ପ୍ରଣବ ସାନ୍ୟାଲ, ତାଙ୍କ ପାଖକୁ ସୁମିତା ଚନ୍ଦନ, ମି: ସରାଓଗୀ, ମିସ୍ ରୋଜି, ନୀନା ଏବଂ...

ନା, ଆଉ ଯେଉଁ ପାଞ୍ଚ ସାତଜଣ ବସିଛନ୍ତି, ସେମାନଙ୍କ କାହାରି ସହିତ ମୋର ପରିଚୟ ନାହିଁ । ମନୋରଞ୍ଜନ ମହାପାତ୍ର ମୋତେ ଓ ଅଞ୍ଜନାକୁ ଦୁଇଟି ଖାଲି ଚେଆର୍ ଦେଖେଇ ଦେଲେ ବସିବାକୁ ।

ଆମେ ବସିଲୁ ।

ମନୋରଞ୍ଜନ ମହାପାତ୍ର ମୋ ପାଖକୁ ଆଗେଇ ଆସି କହିଲେ : ଆଜିର ଏହି ସମାବେଶ ଦେଖି ଆପଣ ନିଶ୍ଚୟ ଆଶ୍ଚର୍ଯ୍ୟ ହୋଇଥିବେ ମିଷ୍ଟର ରାୟ । କିନ୍ତୁ ଏହି ସମାବେଶର କୃତିତ୍ୱ ଯେ ସଂପୂର୍ଣ୍ଣ ଆପଣଙ୍କର, ଏକଥା ହୁଏତ ଆପଣ ବିଶ୍ୱାସ କରିପାରୁ ନଥିବେ । ଘଟଣାଟା ମୁଁ ମୂଳରୁ କହୁଛି । ଏଠାରେ ଯେଉଁମାନେ ଉପସ୍ଥିତ ଅଛନ୍ତି, ସମସ୍ତଙ୍କ ସହିତ ମୁଁ ଆପଣଙ୍କର ପରିଚୟ କରାଇ ଦେଉଛି ।

ମନୋରଞ୍ଜନ ମହାପାତ୍ର ମୋ ପାଖରୁ ଚାଲିଯାଇ ଜଣକ ପାଖରେ ଠିଆହୋଇ କହିଲେ : ମିଷ୍ଟର କପୁର ! ଆମ ପୋଲିସ୍ ଡିପାର୍ଟମେଣ୍ଟର ଅଧିକର୍ତ୍ତା ! ତାଙ୍କ ପାଖରେ ଯିଏ ବସିଥିଲେ, ତାଙ୍କ ଆଡ଼େ ଆଙ୍ଗୁଳି ଦେଖାଇ କହିଲେ, ବରଦାକାନ୍ତ ମହଲାନବିଶ, ନିଉ ଆଲିପୁରରେ ରହନ୍ତି । ତା'ପରେ କହିଲେ, ଏ ମିଷ୍ଟର ଜାଜୋଡ଼ିଆ । ଜାଜୋଡ଼ିଆ ବ୍ରଦର୍ସର ମ୍ୟାନେଜିଂ ପାର୍ଟନର । ମିଷ୍ଟର ଜାହାଙ୍ଗୀର, ରିଜେଣ୍ଟ୍ ହୋଟେଲର ଅନ୍ୟତମ ପ୍ରୋପ୍ରାଇଟର । ପ୍ରଣବ ସାନ୍ୟାଲ, ଆସାମ ଟି ଏଷ୍ଟେଟ୍‌ର ପ୍ରୋପ୍ରାଇଟର, ମିଷ୍ଟର ସରାଓଗୀ, ରିଜେଣ୍ଟ୍ ହୋଟେଲର ମ୍ୟାନେଜର । ସୁମିତା ଚନ୍ଦନ, ଏ ବର୍ଷର ରିଜେଣ୍ଟ୍ ଆୱାର୍ଡ଼ ବିଜୟୀ । ମିସ୍ ନୀନା, ଜଣେ ଖ୍ୟାତି ସମ୍ପନ୍ନ ନର୍ତ୍ତକୀ । ମିସ୍ ରୋଜି, ରିଜେଣ୍ଟ୍ ହୋଟେଲର ରିସେପ୍‌ସନିଷ୍ଟ ଏବଂ ଅନ୍ୟ ଯେଉଁମାନେ ବାକି ରହିଲେ ସେମାନେ ଆମ ପୋଲିସ୍ ଡିପାର୍ଟମେଣ୍ଟର ଲୋକ ।

ତା'ପରେ ମନୋରଞ୍ଜନ ମହାପାତ୍ର ମୋତେ ଟାଣିନେଇ ଯାଇ ସାମ୍ନାରେ ଠିଆ କରେଇ କହିଲେ : ୟାଙ୍କ ନାଁ ସଞ୍ଜୀବ ରାୟ, 'ନୟାସମାଜ'ର ଜଣେ ସାଂବାଦିକ ଏବଂ ଏହି ନାଟକର ହିରୋ । କିଛି ସମୟର ନୀରବତା ପରେ ମନୋରଞ୍ଜନ ମହାପାତ୍ର ପୁଣି ଆରମ୍ଭ କଲେ : ଆଜିକୁ ପନ୍ଦର ଦିନ ତଳେ, ନିଶାର୍ଦ୍ଧରେ ନିଉ ଆଲିପୁରର ବି ବ୍ଲକ୍‌ର ୬୪ ନମ୍ବର ଫ୍ଲାଟ୍‌ରେ ଗୋଟିଏ ଖୁଣ୍ ହୁଏ । ଜଣେ ଭଦ୍ରମହିଳା । ନାଁ ମୀରା ଲାହିଡ଼ୀ ।

ମୀରା ଲାହିଡ଼ୀ ଜାଜୋଡ଼ିଆ ବ୍ରଦର୍ସରେ ଚାକିରି କରୁଥିଲେ । ଜାଜୋଡ଼ିଆ ବ୍ରଦର୍ସ ତରଫରୁ ବି ବ୍ଲକ୍‌ର ୬୪ ନମ୍ବର ଫ୍ଲାଟ୍‌ଟି ମୀରା ଲାହିଡ଼ୀଙ୍କୁ ଦିଆ ହୋଇଥିଲା । ସେ ସେଠାରେ

ଏକା ରହୁଥିଲେ । ତାଙ୍କ ପାଇଁ ଚାକର ଚାକରାଣୀ ଦୁଇଜଣ ମଧ୍ୟ କମ୍ପାନୀ ଖର୍ଚ୍ଚରେ ରଖା ହୋଇଥିଲା ।

ମୀରା ଲାହିଡ଼ୀ ଜାଜୋଡ଼ିଆ ବ୍ରଦର୍ସର ମ୍ୟାନେଜିଂ ପାର୍ଟନର ମିଷ୍ଟର ଜାଜୋଡ଼ିଆଙ୍କର ପାର୍ସନାଲ ଆସିଷ୍ଟାଣ୍ଟ ଥିଲେ । ଜାଜୋଡ଼ିଆ ବ୍ରଦର୍ସର ବହୁ ଗୋପନ ତଥ୍ୟ ତାଙ୍କୁ ଜଣା ଥିଲା ।

କିନ୍ତୁ ହଠାତ୍ ଯେଉଁଦିନ ରାତିରେ ୬୪ ନମ୍ବର ଫ୍ଲାଟ୍‌ରେ ଦୁର୍ଘଟଣା ଘଟିଲା ମାନେ ମୀରା ଲାହିଡ଼ୀ ଖୁଣ୍ ହେଲେ, ସେଦିନ ୬୪ ନମ୍ବର ଫ୍ଲାଟ୍‌ରେ ଗୋଟିଏ ଛୋଟ ଭୋଜିସଭାର ଆୟୋଜନ ହୋଇଥିଲା । ସେହି ଭୋଜିସଭାକୁ ଯେଉଁମାନେ ନିମନ୍ତ୍ରିତ ହୋଇ ଆସିଥିଲେ, ସେମାନଙ୍କର ସଂଖ୍ୟା ସର୍ବମୋଟ ପାଞ୍ଚ ଏବଂ ମୀରା ଲାହିଡ଼ୀଙ୍କୁ ଲଗାଇ ଛଅ ।

ଭୋଜି ସଭାରେ ପାନ ଭୋଜନର ଯଥେଷ୍ଟ ଆୟୋଜନ ହୋଇଥିଲା । ମୀରା ଲାହିଡ଼ୀ ନିଜେ ଅତିଥିମାନଙ୍କୁ ଆପ୍ୟାୟିତ କରିଥିଲେ । ଏକ ସମୟରେ ମୀରା ଲାହିଡ଼ୀଙ୍କର ୬୪ ନମ୍ବର ଫ୍ଲାଟ୍ ନୀରବ ହୋଇ ଯାଇଥିଲା ଏବଂ ଅତିଥିମାନେ ବିଦାୟ ହୋଇ ଯାଇଥିଲେ ।

ସକାଳୁ ଜଣାଯାଇଥିଲା ଯେ, ମୀରା ଲାହିଡ଼ୀ ଖୁଣ୍ ହୋଇଛନ୍ତି । ତାଙ୍କୁ କେହି ବିଷ ଦେଇ ହତ୍ୟା କରିଛି । ଅର୍ଥାତ୍ ମୀରା ଲାହିଡ଼ୀ ରାତିରେ ଶୋଇବା ଶେଯରୁ ଆଉ ଉଠି ନାହାନ୍ତି ।

ପୋଲିସ୍ ଆସିଲେ । ତନା ଘନା ତଦନ୍ତ ହେଲା । ମୀରାର ଚାକର ଚାକରାଣୀ ଦୁଇଜଣଙ୍କୁ ଖୋଜି ଖୋଜି ଆଉ ମିଳିଲେ ନାହିଁ । ପାଖ ଫ୍ଲାଟ୍‌ମାନଙ୍କରେ କେହି କିଛି କହିପାରିଲେ ନାହିଁ । ସେମାନେ ଖାଲି କହିଲେ ଯେ, ୬୪ ନମ୍ବର ଫ୍ଲାଟ୍ କଥା ଆମମାନଙ୍କୁ ନ ପଚାରିବା ହିଁ ଭଲ । କାରଣ ସେଠାରେ ପ୍ରତିଦିନ ନାନା କାଣ୍ଡ ହୁଏ, ଯାହାକି କୌଣସି ଭଦ୍ର ଘରେ ଘଟିବା ସମ୍ଭବ ନୁହେଁ ।

ତେଣୁ ମୀରା ହତ୍ୟାକାଣ୍ଡର ଆସାମୀ ଅନ୍ଧକାରରେ ଲୁଚି ରହିଲେ ।

ଏହି ହତ୍ୟାକାଣ୍ଡ ସମ୍ବନ୍ଧରେ ପ୍ରଥମ ଆଲୋକପାତ କରିଲେ ସଞ୍ଜୀବ ରାୟ । ସେ 'ନୟାସମାଜ'ରେ ଗୋଟିଏ ଲେଖା ପ୍ରକାଶ କଲେ । ଯହିଁରେ କି ମୀରା ହତ୍ୟାକାଣ୍ଡ ସମ୍ବନ୍ଧରେ ଏକ ଚାଞ୍ଚଲ୍ୟକର ତଥ୍ୟ ପ୍ରକାଶ ପାଇଲା ।

ସେ ଲେଖିଲେ, ନିଉ ଆଲିପୁରରେ ଏହି ୬୪ ନମ୍ବର ଫ୍ଲାଟ୍‌ଟି ଥିଲା ସ୍ମଗଲରମାନଙ୍କର ଏକ ଗୋପନ ଘାଟି । ଯେଉଁଠିକି ଏକ ଆନ୍ତର୍ଜାତିକ ସ୍ମଗଲରମାନଙ୍କର ଏକ ଗୋପନଚକ୍ର ଗଢ଼ି ଉଠିଥିଲା ଏବଂ ସେହି ଚକ୍ରର ନାୟିକା ଥିଲା ମୀରା ଲାହିଡ଼ୀ । ମୀରା ଲାହିଡ଼ୀର ମର୍ଡ଼ର କୌଣସି ଏକ ବିଶେଷ କାରଣରୁ ହୋଇଛି । ଏହି ବିଶେଷ କାରଣ ଅନୁସନ୍ଧାନ କରି ଶୀଘ୍ର ବାହାର ନ କଲେ ଏବଂ ମୀରାର ହତ୍ୟାକାରୀମାନଙ୍କୁ ଖୋଜି ବାହାର ନ କଲେ, ଭାରତୀୟ ସ୍ୱାର୍ଥର ବିଶେଷ ହାନି ହେବ । ଖୁବ୍ ସମ୍ଭବତଃ ଭାରତର ସ୍ୱାର୍ଥ ବିରୋଧୀ କୌଣସି ଏକ ଗୋପନ ଷଡ଼ଯନ୍ତ୍ର ଏଠାରେ ହେଉଥିଲା । ଅନ୍ୟ ରାଷ୍ଟ୍ର ପାଖରେ ଭାରତର ଏକ ଗୋପନ ଦଲିଲ ଚଢ଼ା ଦାମ୍‌ରେ ବିକ୍ରୟ କରିବା ପାଇଁ ସମସ୍ତ ବନ୍ଦୋବସ୍ତ ହୋଇଥିଲା । କିନ୍ତୁ ମୀରା ସେହି ପ୍ରସ୍ତାବରେ ରାଜି ହେଲା ନାହିଁ । ମୀରା ନିଜ ଦେଶର ସ୍ୱାର୍ଥ ବିରୋଧୀ କାମ କରିବା ପାଇଁ ଅମତ ହେବାରୁ ତାକୁ ଗୋପନରେ ହତ୍ୟା କରାହେଲା ।

ସଞ୍ଜୀବ ରାୟଙ୍କର ଏହି ତଥ୍ୟ ମୂଳରେ କୌଣସି ସତ୍ୟତା ଥିଲା କି ନାହିଁ, ସେ ପରର କଥା । କିନ୍ତୁ ତାଙ୍କର ଏହି ଲେଖାଟି 'ନୟାସମାଜ'ରେ ପ୍ରକାଶ ପାଇବା ପରେ ପରେ ସରକାରୀ ମହଲରେ ଖୁବ୍ ତତ୍ପରତା ଦେଖା ଦେଇଥିଲା । ତନାଘନା ଗୋପନ ତଦନ୍ତ ଇତ୍ୟାଦି ପରେ, ମୀରା ଲାହିଡ଼ୀର ଚାକରଟିକୁ ଧରା ହୋଇଥିଲା । ସେ ପ୍ରକାଶ କରିଥିଲା ଯେ, ସେଦିନ ରାତିରେ ମୀରା ଲାହିଡ଼ୀ ଫ୍ଲାଟ୍‌ରେ ଯେଉଁ ଭୋଜିସଭା ହୋଇଥିଲା, ସେଥିରେ ସେ ଉପସ୍ଥିତ ନଥିଲା । ତେବେ ସେ ଚାରିଜଣ ଲୋକଙ୍କୁ ଭୋଜି ସଭାରେ ଯୋଗ ଦେବାର ଦେଖିଛି । ତା'ପରେ ସେ ସେଠାରୁ ଚାଲି ଆସିଥିଲା । ଯେଉଁ ଚାରିଜଣ ସେ ଭୋଜି ସଭାରେ ଯୋଗ ଦେଇଥିଲେ, ସେମାନଙ୍କୁ ସେ ଚିହ୍ନେ ଏବଂ ଦେଖିଲେ ଚିହ୍ନାଇ ଦେଇ ପାରିବ ।

ମୀରା ଲାହିଡ଼ୀର ସେହି ଚାକର ସାହାଯ୍ୟରେ ସେଦିନ ଭୋଜି ସଭାରେ ଯୋଗ ଦେଇଥିବା ଚାରିଜଣ ଲୋକଙ୍କୁ ଆମେ ଆରେଷ୍ଟ୍ କରିଥିଲୁ । ସେମାନେ ସମାଜର ଜଣେ ଜଣେ ପ୍ରସିଦ୍ଧ ଲୋକ । ଯା'ହେଉ ସେମାନଙ୍କ ପ୍ରସଙ୍ଗ ଏଠାରେ ବର୍ତ୍ତମାନ ଉଠାଇ ଲାଭ ନାହିଁ । କାରଣ ସେମାନଙ୍କୁ ଯେତେ ପ୍ରକାର ସମ୍ଭବ ଜେରା କରି ମଧ୍ୟ ମୀରା ମର୍ଡ଼ର କେସ୍‌ର ଅସଲ ତଥ୍ୟ ଉଦ୍‌ଘାଟନ କରିପାରିଲୁ ନାହିଁ । ସେଦିନ ରାତିରେ ଯେ ୬୪ ନମ୍ବର ଫ୍ଲାଟ୍‌ରେ ଗୋଟିଏ ଭୋଜି ସଭା ହୋଇଥିଲା ଏବଂ ସେମାନେ ଯୋଗ ଦେଇଥିଲେ, ସେ କଥା ମଧ୍ୟ ସେମାନେ ସ୍ୱୀକାର କଲେ ନାହିଁ ।

ମୀରା ଲାହିଡ଼ୀର ବସ୍ ମିଷ୍ଟର ଜାଜୋଡ଼ିଆ ମଧ୍ୟ କୌଣସି ସଠିକ୍ ତଥ୍ୟ ପରିବେଷଣ କରିପାରିଲେ ନାହିଁ । ମୀରାର ମୃତ୍ୟୁ ସମ୍ବାଦ ଶୁଣି ସେ ବିଶେଷ ଦୁଃଖିତ ହୋଇଥିଲେ ଏବଂ ଭାଂଗି ପଡ଼ିଥିଲେ ।

ଆମ ଅନୁସନ୍ଧାନ ଚାଲିଥିଲା ।

ସଞ୍ଜୀବ ରାୟଙ୍କ ସହିତ ଯୋଗାଯୋଗ କରି ଜାଣିଲୁ ଯେ, ସେଦିନ ରାତିରେ ମୀରା ଘରେ ଯେଉଁ ଭୋଜି ସଭାର ଆୟୋଜନ ହୋଇଥିଲା, ସେଥିରେ ଚାରିଜଣ ଅତିଥି ନଥିଲେ, ସେ ସଭାରେ ଥିଲେ ପାଞ୍ଚଜଣ ଅତିଥି ।

ଆପଣମାନେ ଚାରିଜଣଙ୍କୁ ଧରିଛନ୍ତି କିନ୍ତୁ ପଞ୍ଚମ ବ୍ୟକ୍ତିଟିକୁ ଧରି ନ ପାରିଲେ ଏ ରହସ୍ୟର ସମାଧାନ କରିହେବ ନାହିଁ । ସେଇ ପଞ୍ଚମ ବ୍ୟକ୍ତିଟି ହେଉଛି ଅସଲ ଲୋକ ଏବଂ ତାହାକୁ ଯଥା ସମ୍ଭବ ଶୀଘ୍ର ଖୋଜି ବାହାର କରିବାକୁ ହେବ । ନହେଲେ ଭାରତବର୍ଷର ସେହି ଅମୂଲ୍ୟ ଗୋପନ ଦଲିଲଟି ଅନ୍ୟ ରାଷ୍ଟ୍ର ହାତକୁ ଚାଲିଯିବ ।

ବାରମ୍ବାର 'ନୟା ସମାଜ'ରେ ଏହିପରି ବିଭିନ୍ନ ଲେଖା ପ୍ରକାଶ ହେବା ଦ୍ୱାରା, ଅପରାଧୀମାନଙ୍କର ଦୃଷ୍ଟି ପଡ଼ିଲା ସଞ୍ଜୀବ ରାୟଙ୍କ ଉପରେ । ସେମାନେ ଭାବିଲେ, ସଞ୍ଜୀବ ରାୟ ହିଁ ହେଉଛି, ଏ ଘଟଣାର ସୂତ୍ରଧର । ସଞ୍ଜୀବ ରାୟ ନିରାପଦରେ ବାହାରେ ବୁଲିଲେ ହୁଏତ ସେ ଧୀରେ ଧୀରେ ସେମାନଙ୍କର ଗୋପନ ତଥ୍ୟ ଖୋଜି ବାହାର କରିବ ।

ତେଣୁ ତାକୁ କାର୍ଯ୍ୟ ହାସଲ ହେବା ଯାଏ କୌଣସି ପ୍ରକାର ଭୁଲାଇ ରଖିବାକୁ ହେବ । ହତ୍ୟା କରିଦେଲେ ମଧ୍ୟ ସେମାନେ ସନ୍ଦେହର ପାତ୍ର ହୋଇପାରନ୍ତି । ତେଣୁ ସଞ୍ଜୀବ ରାୟଙ୍କୁ ଖାପଚାରେ ପକାଇବା ପାଇଁ ଷଡ଼ଯନ୍ତ୍ର ଚାଲିଲା ଏବଂ ସଞ୍ଜୀବ ରାୟ ଦିନେ ସେଇ ଷଡ଼ଯନ୍ତ୍ରର ଶିକାର ହେଲେ ।

ସଞ୍ଜୀବ ରାୟଙ୍କୁ ଖାପ୍‌ଚାରେ ପକାଇବାରେ ଅଦ୍ଭୁତ ସାଫଲ୍ୟ ଅର୍ଜନ କରିଥିଲେ ସୁମିତା ଚନ୍ଦନ । ଯେଉଁପରି ଭାବରେ ଏବଂ ଯେଉଁ ମୁହୂର୍ତ୍ତରେ ସେ ସଞ୍ଜୀବ ରାୟଙ୍କ ପାଖରେ ଅସହାୟତା ପ୍ରକାଶ କରି ସଞ୍ଜୀବ ରାୟଙ୍କୁ ଟେବଲ ଟେନିସ୍ ବ୍ୟାଟ୍ ଧରାଇଲେ, ବାସ୍ତବିକ୍ ତାହା ଅଭୂତପୂର୍ବ !

ଏହାଯେ ପୂରାପୂରି ଷଡ଼ଯନ୍ତ୍ର ଏକଥା ସଞ୍ଜୀବ ରାୟ କାହିଁକି ଭଗବାନ ବି ବିଶ୍ୱାସ କରିପାରନ୍ତେ ନାହିଁ । ସଞ୍ଜୀବ ରାୟ ସୁମିତା ଚନ୍ଦନଙ୍କର ଖାପ୍‌ଚାରେ ପଡ଼ିଗଲେ । ଜଣେ ଅସହାୟା ମହିଳାଙ୍କୁ ସାହାଯ୍ୟ କରି, ତାଙ୍କୁ ଖେଳରେ ଜିତେଇ, ରିଜେଣ୍ଟ ପୁରସ୍କାର ଦିଆଇ, ସଞ୍ଜୀବ ରାୟ ଗର୍ବ ଅନୁଭବ କଲେ । କିନ୍ତୁ ଏହା ଯେ ଥିଲା ନିଛକ ଷଡ଼ଯନ୍ତ୍ର ଏବଂ ମୀରା ମର୍ଡରର କେସ୍ ତଥ୍ୟ ସଂଗ୍ରହରୁ ତାଙ୍କୁ ବିରତ କରାଇବା, ସେକଥା ସଞ୍ଜୀବ ରାୟ ଆଦୌ ବୁଝିପାରି ନଥିଲେ ।

ସେଉଠୁ ଆରମ୍ଭ ହୋଇଗଲା ସୁମିତା ଚନ୍ଦନଙ୍କର ଖେଳ । ସେ ସଞ୍ଜୀବ ରାୟଙ୍କୁ ଭୁଲାଇ ରଖିବା ପାଇଁ ଆପ୍ରାଣ ଚେଷ୍ଟା କଲେ ଏବଂ ସବୁବେଳେ ତାଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରେଇବା ପାଇଁ ନାନା ପ୍ରକାର କୌଶଳ ଅବଲମ୍ବନ କଲେ ।

ସଞ୍ଜୀବ ରାୟ ବୁଝିପାରିଲେ ନାହିଁ ସୁମିତା ଚନ୍ଦନଙ୍କର କୌଶଳ, ଫଳରେ ସେ ଛନ୍ଦିହୋଇ ପଡ଼ିଲେ ସୁମିତା ଚନ୍ଦନଙ୍କର ଜାଲରେ ।

ଦିନେ ରାତିରେ ରିଜେଣ୍ଟ୍ ହୋଟେଲରେ ମୋର ଦେଖାହେଲା ସଞ୍ଜୀବ ରାୟଙ୍କ ସହିତ । ତାଙ୍କ ସହିତ ମୋର ମୀରା ମର୍ଡ଼ର କେସ୍ ସମ୍ବନ୍ଧରେ କେତେକ ବିଷୟରେ ଆଲୋଚନା ହେଲା । କଥାହେଲା ଆରଦିନ ଦଶଟାରୁ ଏଗାରଟା ମଧ୍ୟରେ ସେ ଥାନାକୁ ଆସିଲେ ମୀରା ମର୍ଡ଼ର କେସ୍ ସମ୍ବନ୍ଧରେ ବିଶଦ ଭାବରେ ଆଲୋଚନା କରି, ଆମେ ଅନୁସନ୍ଧାନର ନୂତନ ଧାରା ଅନୁସରଣ କରିବୁ ।

କିନ୍ତୁ ସଞ୍ଜୀବ ରାୟ ଆଉ ଆସିଲେ ନାହିଁ । ସେଦିନ ନିର୍ଦ୍ଦିଷ୍ଟ ସମୟ ଅତିବାହିତ ହେବା ପରେ ମଧ୍ୟ ଯେତେବେଳେ ସେ ଆସିଲେ ନାହିଁ, ମୁଁ ଚିନ୍ତିତ ହୋଇ ପଡ଼ିଲି । ସମ୍ଭାବ୍ୟ ସମସ୍ତ-ସ୍ଥାନକୁ ଫୋନ୍ କରି ଜାଣିଲି ଯେ, ସବୁଠି ସେ ଅନୁପସ୍ଥିତ ।

ମୁଁ ଭୀଷଣ ଚିନ୍ତାରେ ପଡ଼ିଗଲି ।

ସଞ୍ଜୀବ ରାୟଙ୍କୁ 'ନୟାସମାଜ' ଅଫିସ୍‌ରେ ଯାଇ ଖୋଜିଲି ।

ସେମାନେ ମଧ୍ୟ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଥିଲେ । ମିଷ୍ଟର ତାଲୁକଦାର ସବୁଠୁ ବେଶି ଚିନ୍ତିତ ମନେ ହେଉଥିଲେ । ସେ କହିଲେ : ସଞ୍ଜୀବ ରାୟଙ୍କର ଆଜି କାଗଜରେ ଗୋଟାଏ ପ୍ରବନ୍ଧ ଲେଖିବାର ଥିଲା, କିନ୍ତୁ କାହିଁ ? ତାଙ୍କର ତ ଏପରି ଅବହେଳା କେବେ ହୁଏ ନାହିଁ !

ତାପରେ ମୁଁ ସଞ୍ଜୀବ ରାୟଙ୍କ ଘରକୁ ଗଲି ।

ସେଠାରେ ଚାକର କହିଲା, କାଲିଠାରୁ ସେ ଫେରି ନାହାନ୍ତି ।

ତା'ପରେ ତାଙ୍କର ଟେବୁଲ ଉପରୁ ଗୋଟିଏ ଡାଇରୀ ପାଇଲି । ଖେଳେଇ ଦେଖିଲି । କେତେଗୁଡ଼ିଏ ଏନ୍‌ଗେଜ୍‌ମେଣ୍ଟର ବିବରଣୀ ରହିଛି । କିନ୍ତୁ ଦୁଇ ତିନୋଟି ଏନ୍‌ଗେଜ୍‌ମେଣ୍ଟରେ ସେ ଯୋଗାଯୋଗ କରି ନାହାନ୍ତି । ତହିଁରୁ ଗୋଟିଏ ନାଁ ପାଇଲି ବରଦାକାନ୍ତ ମହଲାନବିଶ ।

ନିଉ ଆଲିପୁର । ତା' ତଳେ ଛୋଟ ଗୋଟିଏ ନୋଟ୍ ଥିଲା । ମୀରା ମର୍ଡ୍ଡର କେସ୍ ସମ୍ବନ୍ଧରେ କେତେକ ମୂଲ୍ୟବାନ ତଥ୍ୟ ମିଳିବାର ସମ୍ଭାବନା ।

ତା'ପରେ ମୁଁ ତତ୍ପର ହୋଇ ଉଠିଲି ।

ବରଦାକାନ୍ତ ମହଲାନବିଶ୍ !

ମୁଁ ଯାଇ ତାଙ୍କ ଫ୍ଲାଟ୍‌ରେ ନକ୍ କଲି ।

ବରଦାକାନ୍ତ ବାବୁ ନିଜେ ଆସି ଦରଜା ଖୋଲିଦେଲେ । ମୋତେ ଦେଖି ସେ ପ୍ରଥମେ ଟିକିଏ ବିବ୍ରତ ହୋଇପଡ଼ିଲେ । ମୋ ମୁହଁକୁ ଅନେକ ବେଳଯାଏ ଅନାଇ ରହି କହିଲେ : ଆପଣ...

ମୋ ନାଁ ମନୋରଞ୍ଜନ ମହାପାତ୍ର । ମୁଁ ଥାନାରୁ ଆସିଛି ।

: ଓଃ ! ଆସନ୍ତୁ ।

ସେ ମୋତେ ବାଟ କଢ଼େଇ ଭିତରକୁ ନେଇଗଲେ । ଡ୍ରଇଂ ରୁମ୍‌ରେ ମୋତେ ବସାଇ ଦେଇ କହିଲେ : ଆପଣ ଟିକିଏ ବସନ୍ତୁ । ମୁଁ ବର୍ତ୍ତମାନ ଆସୁଛି ।

ସେ ଭିତରକୁ ଚାଲିଗଲେ । ସେତେବେଳେ ରାତି ଆଠଟା ହେବ । ମୁଁ ତାଙ୍କ ଡ୍ରଇଂ ରୁମ୍‌ରେ ବସିରହିଲି ।

ପ୍ରାୟ ପନ୍ଦର କୋଡ଼ିଏ ମିନିଟ୍ ଅତିବାହିତ ହୋଇଗଲା । ତଥାପି ସେ ଫେରିଲେ ନାହିଁ ।

ମୋ ମନରେ ସନ୍ଦେହ ହେଲା । ମୁଁ ଦ୍ୱନ୍ଦ୍ୱରେ ପଡ଼ିଗଲି । ବରଦା ବାବୁ କ'ଣ ମୋତେ ବସେଇ ଦେଇ କୁଆଡ଼େ ଖସି ଚାଲିଗଲେ କି ଆଉ !

ନା ସେ ପୁଣି ଫେରି ଆସିଲେ । ଠିକ୍ ଅଧଘଣ୍ଟା ପରେ ।

କିନ୍ତୁ ତାଙ୍କ ଚେହେରାରେ ଏ କି ଅଦ୍ଭୁତ ପରିବର୍ତ୍ତନ ! ମୁଁ ଦ୍ୱିତୀୟ ଥର ଦେଖି ତାଙ୍କୁ ହଠାତ୍ ଚିହ୍ନିପାରିଲି ନାହିଁ । ସେ ମୋ ସାମ୍‌ନାରେ ଗୋଟାଏ ସୋଫା ଉପରେ ବସି ପତ୍ରୁ ପତ୍ରୁ କହିଲେ : ମିଷ୍ଟର ମହାପାତ୍ର, ଆପଣ ଆସି ଭଲ କରିଛନ୍ତି । ମୁଁ ଏହା ଭିତରେ ମନ ସ୍ଥିର କରିନେଇଛି । ଏ କେତେଦିନ ମୁଁ ଯେ କିପରି ମାନସିକ ଯନ୍ତ୍ରଣା ଭିତରେ ସମୟ କଟାଇଛି, ଆପଣ ବିଶ୍ୱାସ କରିପାରିବେ ନାହିଁ । ମୁଁ ଅନେକ ଥର ଥାନାକୁ ଫୋନ୍ କରିବା ପାଇଁ ରିସିଭର ଉଠାଇଛି, କିନ୍ତୁ ପାରି ନାହିଁ ।

ବରଦାକାନ୍ତ ମହଲାନବିଶ ନୀରବ ହେଲେ । ସେ ଯେପରି ଆକାଶ ପାତାଳ କେତେ କ'ଣ ଭାବୁଥିଲେ ।

ପୁଣି ଏକ ସମୟରେ ନୀରବତା ଭଂଗ କରି କହିଲେ : ନା ମିଷ୍ଟର ମହାପାତ୍ର ! ଆପଣ ଆସିଛନ୍ତି ଭଲ କରିଛନ୍ତି । ମୋର ଗୋଟିଏ କଥା ରଖିବେ ? ଆପଣ ମୋତେ ଥାନାକୁ ନେଇ ପାରିବେ ? ଥାନାରେ ଯାଇ ମୁଁ ସବୁ କଥା କହିବି । ଆପଣ ନିଶ୍ଚୟ ମୋ ପାଖକୁ ଆସିଛନ୍ତି ମୀରା ମର୍ଡ୍ଡର କେସ୍‌ର ଖିଅ ଧରି । ହଁ, ମୁଁ ସ୍ୱୀକାର କରୁଛି, ମୁଁ ମୀରା ମର୍ଡ୍ଡର କେସ୍‌ର ଜଣେ ପ୍ରତ୍ୟକ୍ଷଦର୍ଶୀ । ମୁଁ, ମୁଁ...

ହଠାତ୍ ବରଦାକାନ୍ତ ମହଲାନବିଶ ଅଟକିଗଲେ । ତାଙ୍କ ମୁହଁ ଆଶଙ୍କାରେ ଭରି ଉଠିଲା । ସେ କମ୍ପିତ କଣ୍ଠରେ କହିଲେ : ମୁଁ ପ୍ରସ୍ତୁତ ହୋଇ ଆସିଛି ମିଷ୍ଟର ମହାପାତ୍ର । ମୋତେ ଆପଣ ଥାନାକୁ ନେଇ ଚାଲନ୍ତୁ । ଏଇ ଦେଶରେ ଜନ୍ମ ହୋଇ ଏଇ ଦେଶ ପ୍ରତି ଏତେ ବିଶ୍ୱାସଘାତକତା ମୁଁ କରିପାରିବି ନାହିଁ ।

ବରଦାକାନ୍ତ ମହଲାନବିଶଙ୍କ ଆଖିରେ ଆଶଙ୍କା ପୂରି ରହିଥିଲା । ସେ ଉଠି ଠିଆ ହେଲେ । ଚାରିଆଡ଼େ ଥରେ ଭୟାଳୁ ଦୃଷ୍ଟି ବୁଲାଇ ନେଇ କହିଲେ : ଆପଣ ଚାଲି ଆସନ୍ତୁ, ଏଠାରେ ମୋର ଶ୍ୱାସରୁଦ୍ଧ ହୋଇ ଆସୁଛି । ମୁଁ ଆଉ ଏଠାରେ ମୁହୂର୍ତ୍ତେ ବଂଚି ରହିପାରିବି ନାହିଁ ।

ମୁଁ ଲକ୍ଷ୍ୟ କଲି, ବରଦାକାନ୍ତ ମହଲାନବିଶ କୌଣସି ଅଜ୍ଞାତ ଲୋକଙ୍କୁ ଭୀଷଣ ଭୟ କରୁଛନ୍ତି । ହୁଏତ ଯେକୌଣସି ମୁହୂର୍ତ୍ତରେ ସେ ତା'ର ଉପସ୍ଥିତି ଅନୁଭବ କରି ଏଠାରୁ ଖସି ଯିବାକୁ ଚାହୁଛନ୍ତି । ମୁଁ ତାଙ୍କର ମନୋଭାବ ବୁଝିପାରି, ବରଦାକାନ୍ତ ବାବୁଙ୍କୁ ଗାଡ଼ିରେ ବସାଇ ଥାନାକୁ ଘେନି ଆସିଲି ।

ଥାନାରେ ପହଞ୍ଚି ସେ ଯେପରି ସ୍ୱସ୍ତିର ନିଶ୍ୱାସ ପକାଇଲେ । କହିଲେ : ଆପଣଙ୍କର ଋଣ ମୁଁ ଜୀବନରେ ଶୁଝିପାରିବି ନାହିଁ ମିଷ୍ଟର ମହାପାତ୍ର । ଆପଣ ମୋତେ ବଂଚାଇ ଦେଲେ । ଏ କେତେଦିନ ମୁଁ ଯେ କିପରି ମନସ୍ତାପରେ ସମୟ କଟାଉଥିଲି, ଆପଣ ବିଶ୍ୱାସ କରିପାରିବେ ନାହିଁ ।

ତା'ପରେ ସେ ମୀରା ମର୍ଡ଼ର କେସ୍ ସମ୍ବନ୍ଧରେ ଯାହା ବିବରଣୀ ଦେଲେ, ଆମେ ଶୁଣି ସ୍ତମ୍ଭିତ ହୋଇଗଲୁ । ସେ କହିଲେ : ମୀରାକୁ ଯେଉଁଦିନ ବିଷ ଦେଇ ହତ୍ୟା କରାଗଲା, ସେଦିନ ମୀରା ଘରେ ଏକ ଭୋଜିସଭା ହୋଇଥିଲା । ସେ ଭୋଜି ସଭାରେ ପାଞ୍ଚଜଣ ସଦସ୍ୟ ଉପସ୍ଥିତ ଥିଲେ ଏବଂ ସେଇ ପାଞ୍ଚଜଣଙ୍କ ମଧ୍ୟରୁ ବରଦାକାନ୍ତ ମହଲାନବିଶ ହେଉଛନ୍ତି ଜଣେ ।

ସେ ସେଦିନ ଭୋଜି ଖାଇଥିଲେ । ଆଲୋଚନାରେ ଭାଗ ନେଇ ଥିଲେ । ଦୁଷ୍କର୍ମର ଭାଗୀଦାର ହୋଇଥିଲେ । କିନ୍ତୁ ସେ ଜାଣି ନଥିଲେ ମୀରାଠାରୁ ସମସ୍ତ ତଥ୍ୟ ଆଦାୟ କରିସାରିବା ପରେ, ତା'ର ଖାଦ୍ୟ ପଦାର୍ଥରେ ଉଗ୍ର ବିଷ ମିଶାଇ ଏପରି ହତ୍ୟା କରାଯିବ । ବରଦାକାନ୍ତ ମହଲାନବିଶ ଯଦି ସେଇକଥା ଆଉ କିଛିକ୍ଷଣ ପୂର୍ବରୁ ଜାଣିପାରି ଥାଆନ୍ତେ ତା'ହେଲେ ସେ ନିଶ୍ଚୟ ସେମାନଙ୍କର ଏହି କାର୍ଯ୍ୟରେ ବାଧା ଦେଇଥାଆନ୍ତେ । କିନ୍ତୁ ସେ ଯେତେବେଳେ ଅସଲ ଘଟଣା ଜାଣିଲେ, ସେତେବେଳକୁ ମୀରାର ପାକସ୍ଥଳୀରେ ଉତ୍କଟ ବିଷର କ୍ରିୟା ଆରମ୍ଭ ହୋଇଯାଇଥିଲା ଏବଂ ମୀରାକୁ ବଂଚାଇବା ପାଇଁ ଆଉ କୌଣସି ବାଟ ନଥିଲା ।

ମୀରାକୁ ହତ୍ୟା କରିବାର ମୂଳ କାରଣ ହେଉଛି ଏମାନେ ଯେଉଁମାନେ ମୀରାକୁ ନିଜର ସ୍ୱାର୍ଥ ହାସଲ କାମରେ ଲଗାଇଥିଲେ ସେ ସ୍ୱାର୍ଥ ଦେଶ ପକ୍ଷରେ, ଜାତି ପକ୍ଷରେ ଏପରି ଆତ୍ମଘାତୀ ଯେ ଆପଣମାନେ ଶୁଣିଲେ ବିଶ୍ୱାସ କରିପାରିବେ ନାହିଁ ।

ମୀରାର ପ୍ରତିରକ୍ଷା ବିଭାଗର ଜଣେ ଦାୟିତ୍ୱସମ୍ପନ୍ନ ବ୍ୟକ୍ତିଙ୍କ ସହିତ ଘନିଷ୍ଠତା ଥିଲା । ଏମାନେ ସେଇ ସୁଯୋଗରେ ମୀରାକୁ ବହୁ ପ୍ରଲୋଭନ ଦେଖାଇ ସେହି ଅଫିସରଙ୍କଠାରୁ

ଆମ ପ୍ରତିରକ୍ଷା ବିଭାଗର ବହୁ ତଥ୍ୟ ସଂଗ୍ରହ କରିଥିଲେ ଏବଂ କେତେଗୁଡ଼ିଏ ମୂଲ୍ୟବାନ ଦଲିଲ ହସ୍ତଗତ କରିଥିଲେ । ମୀରା ସେହି ଅଫିସରଙ୍କୁ ଭୁଲାଇ, ତାଙ୍କର ଜ୍ଞାତ ସାରରେ ଓ ଅଜ୍ଞାତସାରରେ ସବୁ ତଥ୍ୟ ଓ ଦଲିଲ ଆଣି ଏମାନଙ୍କ ହାତରେ ସେଇ ଭୋଜି ସଭା ରାତିରେ ଅର୍ପଣ କରିଥିଲା ।

ତା'ପରେ ମୀରା ଯେତେବେଳେ ଜାଣିପାରିଲା ଯେ, ଆମ ପ୍ରତିରକ୍ଷା ବିଭାଗର ଏହି ସମସ୍ତ ଗୋପନ ତଥ୍ୟ ଓ ମୂଲ୍ୟବାନ ଦଲିଲ ସେମାନେ ଅନ୍ୟ ରାଷ୍ଟ୍ର ପାଖରେ ବିକ୍ରୟ କରି ପ୍ରଚୁର ଅର୍ଥ ଉପାର୍ଜନ କରିବେ, ମୀରା ସେତେବେଳେ ସଚେତନ ହୋଇ ଉଠିଥିଲା ଏବଂ ଏମାନଙ୍କର ଦେଶ ପ୍ରତି ବିଶ୍ୱାସଘାତକତାକୁ ଧିକ୍କାର ଦେଇ ଧମକ ଦେଇଥିଲା । ସେମାନଙ୍କର ଚକ୍ରାନ୍ତ ସେ ପଣ୍ଡ କରିଦେବ ବୋଲି କହିଥିଲା ।

ସେମାନେ ମୀରାର ଏହି ଧମକରେ ହସିଥିଲେ ଏବଂ କହିଥିଲେ : ଆଜି ଆମେମାନେ ଯାଉଛୁ । ଆମର ଏହି ପାପ କାର୍ଯ୍ୟର ସାକ୍ଷୀ ହୋଇ ତମେ ଯେପରି ରହିପାରିବ ନାହିଁ, ତା'ର ବ୍ୟବସ୍ଥା ଆମେ କରିସାରିଛୁ । ଆଉ କିଛି ସମୟ ପରେ ତମେ ଆଉ ଏ ଇହ ଜଗତରେ ନଥିବ । ତେଣୁ...

ସେମାନେ ହୋ ହୋ ହୋଇ ହସି ଉଠିଥିଲେ ।

ଠିକ୍ ସେଇ ମୁହୂର୍ତ୍ତରେ ମୀରା ଯନ୍ତ୍ରଣା ଅନୁଭବ କରିଥିଲା ଏବଂ ବିକଳ ସ୍ୱରରେ ବରଦାବାବୁଙ୍କ ଆଡ଼େ ହାତ ବଢ଼ାଇ କହିଥିଲା : ମୋତେ ବଞ୍ଚାନ୍ତୁ, ବଞ୍ଚାନ୍ତୁ, ମୋର ସମସ୍ତ ଶରୀରଟା କିପରି ଅବଶ ହୋଇ ଆସୁଛି । ମୋତେ ଏମାନେ ବି...ଷ... ଦେ...

ମୀରା ଆଉ କିଛି କହିପାରି ନଥିଲା । ସେଇ ସେଇଠି ଢଳି ପଡ଼ିଥିଲା । ଏମାନେ ତାଳି ମାରି ହସିଥିଲେ । ବରଦାବାବୁଙ୍କୁ କହିଥିଲେ : ଆପଣଙ୍କର କାମ ଏଥର ଶେଷ ହୋଇଛି, ଆପଣ ଚାଲିଯାଆନ୍ତୁ । ଚୁପ୍‌ଚାପ୍ ଘରେ କବାଟ କିଳି କିଛିଦିନ ଶୋଇ ରହିବେ । ଆପଣଙ୍କ ଭାଗ ଯଥା ସମୟରେ ଆପଣଙ୍କ ବ୍ୟାଙ୍କ୍‌ରେ ଜମା ହୋଇଯିବ ।

ତା'ପରେ ସମସ୍ତେ ନିଉ ଆଲିପୁରର ସେହି ୬୪ ନମ୍ବର ଫ୍ଲାଟ୍‌ରୁ ଚାଲିଯାଇଥିଲେ । ବରଦାବାବୁ ମଧ୍ୟ ନିଜ ଘରକୁ ଫେରିଯାଇ ପ୍ରକୃତରେ ସେଇଦିନୁ କବାଟ କିଳି ଶୋଇ ପଡ଼ିଥିଲେ । କିନ୍ତୁ ସେ ଶୋଇପାରୁ ନଥିଲେ କିମ୍ବା ବସିପାରୁ ନଥିଲେ । କିନ୍ତୁ ଖାଲି ଅନୁତାପ ଅଗ୍ନିରେ ଦଗ୍‌ଧ ହେଉଥିଲେ ।

ବରଦାବାବୁ ଜାଣିଥିଲେ, ସେ ଅନ୍ୟାୟ କରୁଛନ୍ତି । ଦେଶ ଦ୍ରୋହୀତାର କାର୍ଯ୍ୟ କରୁଛନ୍ତି । ନିଜ ଦେଶର ପ୍ରତିରକ୍ଷା ଶକ୍ତିକୁ ଅନ୍ୟ ଦେଶ ପାଖରେ ବିକ୍ରୟ କରି, ନିଜ ଦେଶକୁ ସେ ଶତ୍ରୁ କବଳକୁ ଠେଲି ଦେଉଛନ୍ତି । କିନ୍ତୁ ତଥାପି ତାଙ୍କୁ ପାଟି ବୁଜି ନୀରବରେ ପଡ଼ିରହିବାକୁ ହେଉଥିଲା, କାରଣ ସେ ଜାଣିଥିଲେ, ସେ ପାଟି ଖୋଲିଲେ ତାଙ୍କ ପ୍ରାଣବାୟୁ ଅକାଳରେ ଉଡ଼ିଯିବ ।

ଆଉ ସେମାନେ ଜାଣିଥିଲେ, ମୀରା ମର୍ଡ଼ର କେସ୍ ସମ୍ବନ୍ଧରେ ସେମାନେ କୌଣସି କ୍ଲୁ ଛାଡ଼ି ଆସିନାହାନ୍ତି । କିନ୍ତୁ ଯେତେବେଳେ ଜାଣିଲେ ଯେ ସଞ୍ଜୀବ ରାୟ ନାମକ ଜଣେ ସାମ୍ବାଦିକ ତାଙ୍କର ଗତିବିଧି ବିଶେଷ ଭାବରେ ଲକ୍ଷ୍ୟ କରୁଛି, ସେମାନେ ମଧ୍ୟ ସଞ୍ଜୀବ ରାୟଙ୍କ ଗତିବିଧି ଉପରେ ଲକ୍ଷ୍ୟ ରଖିଲେ ଏବଂ ତାଙ୍କୁ ଖାପ୍‌ଚାରେ ପକାଇ କିଛିଦିନ ଅଟକାଇ

ରଖିପାରିଲେ, ସେମାନଙ୍କ ଉଦ୍ଦେଶ୍ୟ ସାଧନ ସହଜରେ ହୋଇଯିବ, ତା'ପରେ ଯେ ଯାହା ବାଟରେ ଚାଲିଯିବେ । ତେଣିକି ସଞ୍ଜୀବ ରାୟ ତାଙ୍କର କୌଣସି ଅନିଷ୍ଟ କରିପାରିବେ ନାହିଁ ।

କିନ୍ତୁ ଉଦ୍ଦେଶ୍ୟ ତାଙ୍କର ସଫଳ ହୋଇପାରିଲା ନାହିଁ । ବରଂ ସଞ୍ଜୀବ ରାୟଙ୍କୁ ସେମାନେ ଅଜ୍ଞାତ ସ୍ଥାନରେ ଲୁଚାଇ ରଖି ଚାଲ୍‌ରେ ଭୁଲ୍ କଲେ । ସଞ୍ଜୀବ ରାୟଙ୍କ ସହିତ ଆମର ଯୋଗାଯୋଗ ଥିଲା, ସେ କଥା ବୋଧହୁଏ ସେମାନେ ଜାଣିପାରି ନଥିଲେ ।

ଫଳରେ ସଞ୍ଜୀବ ରାୟଙ୍କ ଅନୁପସ୍ଥିତି ଆମ ମନରେ ସନ୍ଦେହ ଜାଗ୍ରତ କରାଇଲା । ଆମେ ସଞ୍ଜୀବ ରାୟଙ୍କୁ ଖୋଜିବା ପାଇଁ ବାହାରି ପଡ଼ିଲୁ । ତା'ପରେ ଯାଇ ପହଞ୍ଚିଗଲୁ ଅସଲ ଜାଗାରେ, ମାନେ ବରଦାକାନ୍ତ ମହଲାନବିଶଙ୍କ ପାଖରେ ।

ସବୁଠାରୁ ମୁଁ ଆଶ୍ଚର୍ଯ୍ୟ ହେଉଛି, ସଞ୍ଜୀବ ବାବୁ ବରଦାକାନ୍ତଙ୍କ ନାମ କେଉଁଠୁ ପାଇଲେ ଏବଂ ତାଙ୍କ ନୋଟ୍ ବୁକ୍‌ରେ ସେଇ ନାମଟି କିପରି ନୋଟ୍ ହେଲା ? ଏ ସମ୍ବନ୍ଧରେ ସଞ୍ଜୀବ ବାବୁ ସଂକ୍ଷେପରେ କହି ଆମର ସନ୍ଦେହ ମୋଚନ କରିବେ, ଆଶା କରୁଛି । ମନୋରଞ୍ଜନ ମହାପାତ୍ର ଏତକ କହି ମୋ ଆଡ଼କୁ ଚାହିଁ, ଅଳ୍ପ ହସି ନିଜ ଚେଆର୍‌ରେ ବସିଲେ ।

ତା'ପରେ ମୁଁ ଉଠି ଠିଆ ହେଲି ଏବଂ କହିଲି : ମନୋରଂଜନ ବାବୁଙ୍କ ପ୍ରଶ୍ନର ସଂକ୍ଷିପ୍ତ ଉତ୍ତର ହେଉଛି, ମୀରା ମର୍ଡ଼ର କେସ୍ ସମ୍ବନ୍ଧରେ ମୋର ପ୍ରବନ୍ଧ 'ନୟାସମାଜ'ରେ ବାହାରିବା ପରଦିନ ସଂଧ୍ୟାବେଳେ ମୁଁ ଗୋଟିଏ ଫୋନ୍ ପାଇଲି । ଫୋନ୍‌ଟା କିଏ କରିଥିଲା ଜାଣି ନାହିଁ । କିନ୍ତୁ ଫୋନ୍‌ରେ କିଏ ଜଣେ କମ୍ପିତ କଣ୍ଠରେ କହିଥିଲା : ମୀରା ମର୍ଡ଼ର କେସ୍‌ର ଜଣେ ପ୍ରତ୍ୟକ୍ଷଦର୍ଶୀ ହେଉଛନ୍ତି ବରଦାକାନ୍ତ ମହଲାନବିଶ । ସେ ନିଉ ଆଲିପୁରରେ ରହନ୍ତି । ତା'ପରେ ଫୋନ୍‌ର ଲାଇନ୍‌ଟା କଟି ଯାଇଥିଲା ଏବଂ ମୁଁ ସଂଗେ ସଂଗେ ନାମଟା ମୋ ଡାଇରୀରେ ନୋଟ୍ କରି ରଖିଥିଲି । ତା' ପରଦିନ ମୋର ବରଦାକାନ୍ତଙ୍କ ସହିତ ଦେଖା କରିବାର ଥିଲା । ମୁଁ ବାହାରି ଯାଇଥିଲି ମଧ୍ୟ । କିନ୍ତୁ ବାଟରେ ରିଜେଣ୍ଟ୍ ହୋଟେଲକୁ ଯାଇ ଏପରି ଏକ ସମସ୍ୟାରେ ପଡ଼ିଗଲି, ଯେଉଁଠୁ ଉଧୁରି ଆସିବା ଆଉ ସହଜ ହେଲା ନାହିଁ । ସେ କଥା ମିଷ୍ଟର ମହାପାତ୍ର ସବୁ ଜାଣିଛନ୍ତି ।

ତା'ପରେ ମୁଁ ମୋ ସିଟ୍‌ରେ ବସିପଡ଼ିଲି ।

ମନୋରଞ୍ଜନ ମହାପାତ୍ର ଉଠି ଠିଆ ହୋଇଥିଲେ । କିନ୍ତୁ ବରଦାକାନ୍ତ ମହଲାନବିଶ ଠିଆ ହୋଇ କହିଲେ: ଏଠାରେ ଗୋଟିଏ କଥା ମୁଁ ପରିଷ୍କାର କରିଦେବାକୁ ଚାହେଁ । ମି: ରାୟଙ୍କ ପାଖକୁ ନିଜେ ମୁଁ ଫୋନ୍ କରିଥିଲି ଏବଂ ମୋ ନାଁଟା ମୁଁ ଥରିଲା କଣ୍ଠରେ ଉଚ୍ଚାରଣ କରି କହିଥିଲି ଏଇଥିପାଇଁ, କାଳେ ଯଦି ସେ ମୋ ପାଖକୁ ଆସିପାରନ୍ତି, ତେବେ ତାଙ୍କ ପାଖରେ ସମସ୍ତ ତଥ୍ୟ ମୁଁ ପ୍ରକାଶ କରିଦେବି । ସେ ତ ପୋଲିସ୍ ଲୋକ ନୁହନ୍ତି, ତେଣୁ ସେ ଆମ ଘରକୁ ଆସିଲେ ଏମାନେ ହୁଏତ ସନ୍ଦେହ କରି ନ ପାରନ୍ତି ।

ବରଦାକାନ୍ତ ମହଲାନବିଶ ବସିପଡ଼ିଲେ ।

ମନୋରଞ୍ଜନ ମହାପାତ୍ର ପୁଣି କହିଲେ : ତା'ହେଲେ ଏଥିରୁ ପରିଷ୍କାର ବୁଝାପଡୁଛି ଯେ, ବରଦାବାବୁ ସେମାନଙ୍କ ଖାପ୍‌ଚାରେ ପଡ଼ି ବିପଥଗାମୀ ହୋଇଥିଲେ ମଧ୍ୟ, ମନ

ପ୍ରାଣରେ ସେ ସେଥିରୁ ନିବୃତ୍ତି ଚାହୁଁଥିଲେ । ଯା'ହେଉ, ତାଙ୍କ କଥା ଅଦାଲତ ବିଚାର କରିବ । ବର୍ତ୍ତମାନ ମୁଁ ଏହାର ପରବର୍ତ୍ତୀ ଘଟଣା ଯାହା ଘଟିଲା କହୁଛି ଶୁଣନ୍ତୁ ।

ବରଦାବାବୁ ଥାନାକୁ ଆସି ପ୍ରକୃତରେ ସ୍ୱସ୍ତିର ନିଶ୍ୱାସ ପକାଇଥିଲେ ଏବଂ ତାଙ୍କର ନିରାପତ୍ତା ସମ୍ବନ୍ଧରେ ନିଶ୍ଚିନ୍ତ ହୋଇ ସେ ଯେଉଁ ଚାଞ୍ଚଲ୍ୟକର ତଥ୍ୟ ପ୍ରକାଶ କରିଥିଲେ, ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବେ ।

ଯେଉଁମାନଙ୍କୁ ମୁଁ ଏତେବେଳଯାଏ 'ସେମାନେ' ବୋଲି ସମ୍ବୋଧନ କରିଆସୁଛି, ସେମାନେ କିଏ ଜାଣନ୍ତି ? ସେମାନେ ହେଉଛନ୍ତି ଏଇମାନେ, ଦେଶର ଜଣେ ଜଣେ ମାନ୍ୟଗଣ୍ୟ ପଦସ୍ଥ ବ୍ୟକ୍ତି । ସମାଜରେ ସେମାନଙ୍କର ସମ୍ମାନ ଅଛି, ପ୍ରତିପତ୍ତି ଅଛି ।

ସେମାନଙ୍କ ଭିତରୁ ମିଷ୍ଟର ଜାହାଙ୍ଗୀର ହେଉଛନ୍ତି ଜଣେ, ଯିଏକି ଏହି ଚକ୍ରର ପ୍ରଧାନ ନାୟକ । ତାଙ୍କରି ନେତୃତ୍ୱରେ ବହୁ ଅପକର୍ମ ସାଧିତ ହେଉଛି । ତାଙ୍କ ଦଳର ଅନ୍ୟତମ ସଦସ୍ୟ ହେଉଛନ୍ତି ପ୍ରଣବ ସାନ୍ୟାଲ । ଯିଏ ଆସାମ ଟି' ଏଷ୍ଟେଟ୍‌ର ପ୍ରୋପ୍ରାଇଟର ରୂପେ ପରିଚିତ । ପ୍ରକୃତରେ ଭଦ୍ରଲୋକଙ୍କର ଟି' ଏଷ୍ଟେଟ୍ ଫେଷ୍ଟେଟ୍ କିଛି ନାହିଁ, କେବଳ ଗୋଟାଏ ଛଳନା କରି ସେ ସମାଜରେ ଜଣେ ମୁଖ୍ୟ ଲୋକ ହୋଇ ଚାଲିଛନ୍ତି । ଅଞ୍ଜନା ସାନ୍ୟାଲ ତାଙ୍କର ଝିଅ ନୁହେଁ, ତାଙ୍କ ଦଳର ଜଣେ କର୍ମୀ । ଅଭିନୟ ନିପୁଣା । ଯେତେବେଳେ ଯେଉଁ ଭୂମିକାରେ ଅଭିନୟ ପ୍ରୟୋଜନ ହୁଏ, ସେ କରିଯାଏ । ଅନ୍ୟତମା ଚତୁରୀ ଅଭିନେତ୍ରୀ ହେଉଛନ୍ତି ସୁମିତା ଚନ୍ଦନ । ଏହି ଦଳର ମୁଖ୍ୟ ନାୟିକା ଯାଙ୍କୁ କୁହାଯାଇପାରେ । ତା'ଛଡ଼ା ମିଷ୍ଟର ସରାଓଗୀ, ନୀନା ଓ ମିସ୍ ରୋଜୀ ଇତ୍ୟାଦି ସମସ୍ତେ ଜଣେ ଜଣେ ପାର୍ଶ୍ୱନାୟକ ଓ ନାୟିକା । ଏଇମାନଙ୍କର ସମୂହ ପ୍ରଚେଷ୍ଟାରେ ଦେଶରେ ବହୁ କୁକର୍ମ ଏମାନେ ଘଟାଇ ଚାଲିଛନ୍ତି । ଏମାନଙ୍କର ମୁଖ୍ୟ କାର୍ଯ୍ୟସ୍ଥଳୀ ହେଉଛି ହୋଟେଲ ରିଜେଣ୍ଟ୍ ।

ଏଥର ଏମାନଙ୍କର ଏହି ଚକ୍ରାନ୍ତକୁ ଭେଦ କରିବାକୁ ଯାଇ ସଂଜୀବ ରାୟ ତାଙ୍କର ଖାପ୍‌ଚାରେ ପଡ଼ିଯାଇଥିଲେ । ଯେଉଁଦିନ ସଞ୍ଜୀବ ରାୟଙ୍କର ମୋ ପାଖକୁ ଆସିବାର ଥିଲା ଏବଂ ଯଥେଷ୍ଟ ସମୟ ଅପେକ୍ଷା କରିବା ପରେ ମଧ ସେ ଆସିଲେ ନାହିଁ, ମୁଁ ଜାଣିପାରିଲି ଯେ ଗୋଟାଏ କିଛି ଅଘଟଣ ଘଟିଛି ।

ତା'ପରେ ମୋର ଅଭିଯାନ ଆରମ୍ଭ ହୋଇଗଲା । ମୁଁ ବରଦାକାନ୍ତ ମହଲାନବିଶଙ୍କୁ ପାଇଲି । ତାଙ୍କରି ଜରିଆରେ ଏହି କୁଚକ୍ରୀ ଦଳର ସମସ୍ତ ତଥ୍ୟ ଅନୁସନ୍ଧାନ କରି ଜାଣିଲି ଯେ, ସଞ୍ଜୀବ ରାୟ ଏମାନଙ୍କ ହାତରେ ବନ୍ଦୀ । ଏହାପରେ ଉପାୟ ? କେଉଁଠି ପାଇବି ତାଙ୍କୁ ?

ଦିନେ ହୋଟେଲ ରିଜେଣ୍ଟରୁ ଟେଲିଫୋନ୍ କରି ମିସ୍ ରୋଜି ମୋତେ କହିଲେ ଯେ, ସଞ୍ଜୀବ ରାୟ ଟେଲିଫୋନ୍ କରିଥିଲେ । କିନ୍ତୁ କେଉଁଠୁ କରିଥିଲେ ସେ ନିଜେ କହିପାରିଲେ ନାହିଁ ଏବଂ ସେ କେଉଁଠି ଗୋଟାଏ ଜାଗାରେ କାହା ସହିତ ଦେଖା କରିବାକୁ କହିଲେ, ତାହା ମଧ ମୁଁ ଶୁଣିପାରିଲି ନାହିଁ । ଟେଲିଫୋନ୍‌ଟା ଡିଷ୍ଟର୍ବ ହେଲା ଏବଂ ପରେ ପରେ ଲାଇନ୍ କଟିଗଲା ।

ମିସ୍ ରୋଜିଙ୍କଠାରୁ ଏହିପରି ଏକ ଅଧଖଣ୍ଡିଆ ଖବର ପାଇ ମୁଁ ଟିକିଏ ଚିନ୍ତିତ ହୋଇ ପଡ଼ିଲି । ମୋର ରୋଜିକୁ ସନ୍ଦେହ ହେଲା ଏବଂ ରିଜେଣ୍ଟ୍ ହୋଟେଲର ସମସ୍ତ ଫୋନ୍‌କୁ ଟ୍ୟାବ୍ କରିବାର ବନ୍ଦୋବସ୍ତ କଲି ।

ତା'ପରେ ହଠାତ୍ ଦିନେ ଜାଣିଲି, ରୋଜି ସହିତ ତ ନୁହେଁ, ମିଷ୍ଟର ଜାହାଙ୍ଗୀରଙ୍କ ସହିତ ପ୍ରଣବ ସାନ୍ୟାଲ କଥା ହେଉଥିଲେ । ପ୍ରଣବ ସାନ୍ୟାଲ କହୁଥିଲେ : ସଞ୍ଜୀବ ରାୟ ମୋ ଖାପ୍‌ଚାରୁ ଖସିଯିବାର କିଛି ଉପାୟ ନାହିଁ । ମୁଁ ତାକୁ ବ୍ୟାରେକ୍‌ପୁରର 'ଡେଥ୍‌ଭିଲା'ରେ ରଖିଛି । ଅଞ୍ଜନା ତା' ଉପରେ ନଜର ରଖିଛି । ଅଞ୍ଜନା ପ୍ରତି ସେ ଆକୃଷ୍ଟ ହୋଇଛି । ତେଣୁ ଅସୁବିଧାର କିଛି ନାହିଁ । ଆଉ ତ ଚାରି ପାଞ୍ଚଦିନ । ଶନିବାର ଦିନ ଆମେ ଚାଲିଯିବା ଦୀର୍ଘଦିନ ପାଇଁ ଭାରତ ଛାଡ଼ି । ତେଣିକି ସଞ୍ଜୀବ ରାୟଙ୍କୁ ଅଞ୍ଜନା ଦେଖିବ । ସେ ସେଠାରୁ ମୁକୁଳି ଗଲେ ବି ଆମର କିଛି କ୍ଷତି କରିବାର ଆଉ ବାଟ ନଥିବ ।

ସେଉଠୁ ମୁଁ ତତ୍ପର ହୋଇ ଉଠିଲି ।

ବୁଝିପାରିଲି ସଞ୍ଜୀବ ରାୟ ବନ୍ଦୀ ଏବଂ ବ୍ୟାରାକପୁରର ଡେଥ୍‌ଭିଲ୍ଲାରେ ।

କିନ୍ତୁ କେଉଁଠି ସେଇ ଡେଥ୍‌ଭିଲ୍ଲା ?

ଅନୁସନ୍ଧାନ କରି କିଛି ଖବର ପାଇଲି ନାହିଁ ।

ପୁଣି ମୋତେ ଟ୍ୟାପ୍ କରିବାକୁ ହେଲା ପ୍ରଣବ ସାନ୍ୟାଲଙ୍କର ଫୋନ୍ ।

ହଠାତ୍ ଦିନେ ଜାଣିଲି ଯେ, ଅଞ୍ଜନା ସାନ୍ୟାଲ ଯାଉଛି ସେଇ ଡେଥ୍‌ଭିଲ୍ଲାକୁ ଏବଂ ସେଠାରୁ ସେ ସଞ୍ଜୀବ ରାୟଙ୍କୁ ସଂଗରେ ଧରି ଆଉ ଏକ ଅନିର୍ଦ୍ଦିଷ୍ଟ ସ୍ଥାନକୁ ନେଇଯିବ । ସେମାନେ ବିଦେଶ ଯିବା ଆଗରୁ ସଞ୍ଜୀବ ରାୟଙ୍କୁ କେତେକ ପ୍ରଶ୍ନ କରିବାକୁ ଚାହାନ୍ତି ଏବଂ ଦରକାର ହେଲେ ସେମାନେ ତାଙ୍କୁ ଏ ପୃଥିବୀରୁ ବିଦାୟ ଦେଇ ନିଶ୍ଚିତ ହେବେ ।

ମୋ ମୁଣ୍ଡଟା ଗୋଳମାଳ ହୋଇଗଲା ।

ଉପାୟ ? ଯେପରି ହେଉ ସଞ୍ଜୀବ ରାୟଙ୍କୁ ବଂଚେଇବାକୁ ହେବ । ମୁଁ ମୋର ସହକାରୀ ସାଦ୍ଦିକଙ୍କୁ ଡାକି ସବୁ କଥା କହିଲି । ସେ କହିଲେ : ଆପଣ ନିଶ୍ଚିତ ରୁହନ୍ତୁ । ସେ ଦାୟିତ୍ୱ ମୋର । ମୁଁ ସଞ୍ଜୀବ ରାୟଙ୍କୁ ଉଦ୍ଧାର କରିବି ।

ତା'ପରେ ସାଦ୍ଦିକ ପ୍ରଣବ ସାନ୍ୟାଲଙ୍କ ଘରକୁ ଯାଇଥିଲେ । ପ୍ରଣବ ସାନ୍ୟାଲଙ୍କ ଗାଡ଼ିର ଲଗେଜ୍ କ୍ୟାରିଅର୍‌ରେ ଲୁଚି ରହି, ସେ ବ୍ୟାରେକପୁରର 'ଡେଥ୍‌ଭିଲ୍ଲା' ପର୍ଯ୍ୟନ୍ତ ଯାଇଥିଲେ । ଅଞ୍ଜନା ଯେତେବେଳେ ଗାଡ଼ିରୁ ଓହ୍ଲାଇ ଚାଲିଗଲା, ସାଦ୍ଦିକ ଧୀରେ ଧୀରେ ଲଗେଜ୍ କ୍ୟାରିଅରରୁ ବାହାରି ଗାଡ଼ିର ଡ୍ରାଇଭର ଆବଦୁଲ୍ଲାକୁ କାବୁ କରି ତା'ର ହାତଗୋଡ଼ ବାନ୍ଧି ତାକୁ ଲଗେଜ୍ କ୍ୟାରିଅର୍‌ରେ ଭର୍ତ୍ତି କରି, ନିଜେ ଆବ୍‌ଦୁଲ୍ଲାର ପୋଷାକପତ୍ର ପିନ୍ଧି ଗାଡ଼ିର ଷ୍ଟିଅରିଂ ଧରି ଅପେକ୍ଷା କରି ବସି ରହିଥିଲେ ।

ଏକ ସମୟରେ ଅଞ୍ଜନା ସଞ୍ଜୀବ ରାୟଙ୍କୁ ଧରି ଫେରି ଆସିଲା । ସେମାନେ ପଛ ସିଟ୍‌ରେ ବସିଲେ ଏବଂ ଆବ୍‌ଦୁଲ୍ଲା ରୂପୀ ସାଦ୍ଦିକ ଗାଡ଼ି ଚଳାଇ ଆଣି ଏଠାରେ ସଞ୍ଜୀବ ରାୟ ଓ ଅଞ୍ଜନା ସାନ୍ୟାଲଙ୍କୁ ପହଞ୍ଚାଇ ଦେଇ ଯାଇଛନ୍ତି । ବର୍ତ୍ତମାନ ସଭାକକ୍ଷ ପୂର୍ଣ୍ଣ । ପ୍ରତ୍ୟେକଟି ଆସାମୀ ଏଠାରେ ହାଜିର ଅଛନ୍ତି । ଯେଉଁ ଚାରିଜଣ ହାଜତରେ ଅଛନ୍ତି, ସେମାନେ ବି ଏଇ ଦଳର ଜଣେ ଜଣେ ବିଶ୍ୱସ୍ତ କର୍ମୀ ।

ତା'ପରେ ମନୋରଞ୍ଜନ ମହାପାତ୍ର କିଛି ସମୟ ନୀରବରେ ଠିଆ ହୋଇ ସମସ୍ତଙ୍କ ମୁହଁ ଉପରେ ତୀର୍ଯ୍ୟକ ଦୃଷ୍ଟି ବୁଲାଇ ନେଇ କହିଲେ : ଦେଶରେ ନାନା ଧରଣର ଅପରାଧୀ ଅଛନ୍ତି । ଚୋରି କରନ୍ତି, ଡକାଇତି କରନ୍ତି, ଖୁଣ୍ କରନ୍ତି । କିନ୍ତୁ ଏହି ଧରଣର ଅପରାଧୀ

ଖୁବ୍ କମ୍ ଅଛନ୍ତି । ଯିଏ ନିଜର ଦେଶକୁ, ନିଜର ମାଆକୁ ଅନ୍ୟ ରାଷ୍ଟ୍ର ପାଖରେ ବିକ୍ରୟ କରିବାକୁ ଟିକିଏ ବି ଦ୍ୱିଧାବୋଧ କରନ୍ତି ନାହିଁ ।

ମିଷ୍ଟର ଜାହାଙ୍ଗୀର ଓ ତାଙ୍କ ଦଳବଳର କାର୍ଯ୍ୟକଳାପ ଖୁବ୍ ମାରାତ୍ମକ । ସେମାନଙ୍କୁ ଜାତି କ୍ଷମା ଦେଇପାରିବ ନାହିଁ ।

ଏମାନେ । ମାନେ ମିଷ୍ଟର ଜାହାଙ୍ଗୀର, ମିଷ୍ଟର ସାନ୍ୟାଲ ଓ ସୁମିତା ଚନ୍ଦନ ଆଜି ପ୍ଲେନ୍‌ରେ ବିଦେଶ ଚାଲିଯିବାର କଥା । ଅବଶ୍ୟ ବର୍ତ୍ତମାନ ସୁଦ୍ଧା ପ୍ଲେନ୍ ଛାଡ଼ିବାର ସମୟ ହୋଇ ନାହିଁ । କିନ୍ତୁ ତାଙ୍କର ଦୁର୍ଭାଗ୍ୟ ସେମାନେ ଯାଇପାରିଲେ ନାହିଁ ।

ଏଇ ଦେଖନ୍ତୁ ଏଇ ମାନଚିତ୍ର ।

ମନୋରଞ୍ଜନ ମହାପାତ୍ର ଗୋଟିଏ ମୋଡ଼ା କାଗଜ ଖୋଲି ଦେଖାଇଲେ । ଏଇ ମାନଚିତ୍ର ଖଣ୍ଡିକ ଆମ ଭାରତବର୍ଷର । ଆମ ପ୍ରତିରକ୍ଷା ବିଭାଗର ସମସ୍ତ ଖବର ଏହା ଭିତରେ ଅଛି । କେଉଁଠି ଆମର ଯୁଦ୍ଧ ସାମଗ୍ରୀ ତିଆରି ହେଉଛି, କେଉଁଠି ଆମର ସେନା ଛାଉଣୀ, କେଉଁଠି ଆମର ଉଡ଼ାଜାହାଜ କାରଖାନା, କେଉଁଠି କେତେ ସୈନ୍ୟ ରହନ୍ତି, ବନ୍ଧୁକ ଗୁଳାବାରୁଦ କେଉଁଠି ତିଆରି ହେଉଛି, ଏପରିକି ସେଗୁଡ଼ିକର ପରିମାଣ କେତେ, ଇତ୍ୟାଦି ଇତ୍ୟାଦି ବିଷୟର ବିଶଦ ବିବରଣୀ ଏହା ଭିତରେ ରହିଛି । ସବୁଠାରୁ ମାରାତ୍ମକ କଥା ହେଉଛି, ଆମ ଦେଶରେ ଇଉରାନିୟମ ଖଣି କେଉଁଠି ଅଛି, ତା'ର ବିଶଦ ବିବରଣୀ ମଧ୍ୟ ଏମାନେ ସଂଗ୍ରହ କରିଛନ୍ତି ଏବଂ ଏହି ମୂଲ୍ୟବାନ ତଥ୍ୟ ସେମାନେ ବିଦେଶରେ ବିକ୍ରୟ କରିବା ପାଇଁ ଆଜି ବାହାରି ଯାଉଥିଲେ ।

ଆମର ସୌଭାଗ୍ୟ, ସେମାନେ ସଫଳତା ଅର୍ଜନ କରିପାରି ନାହାନ୍ତି । ଆମେ ସେମାନଙ୍କୁ ଆରେଷ୍ଟ୍ କରିବାକୁ ସମର୍ଥ ହୋଇଛୁ ।

ଦଳର ମୁଖ୍ୟ ମିଷ୍ଟର ଜାହାଙ୍ଗୀରଙ୍କ ସହ ସବୁ ସଦସ୍ୟ ଏଠାରେ ଉପସ୍ଥିତ ଅଛନ୍ତି । ଏଥର ମୋର କର୍ତ୍ତବ୍ୟ ଶେଷ ହୋଇଛି । ଏମାନଙ୍କୁ ଶାସ୍ତି ବିଧାନ କରିବ ଅଦାଲତ ଏବଂ ଦେଶବାସୀମାନେ ।

କିନ୍ତୁ ଏ କ'ଣ...

ମନୋରଞ୍ଜନ ମହାପାତ୍ର ଚିତ୍କାର କରି ଉଠିଲେ । ମିଷ୍ଟର ଜାହାଙ୍ଗୀର ଯେ...

ସେ ଛୁଟିଗଲେ ମିଷ୍ଟର ଜାହାଙ୍ଗୀରଙ୍କ ପାଖକୁ । ହଁ, ସେ ଆତ୍ମହତ୍ୟା କରିଛନ୍ତି । ବସିବା ଜାଗାରେ ଟଳି ପଡ଼ିଛନ୍ତି ।

ଆଉ ଅନ୍ୟମାନେ ?

ଅନ୍ୟମାନେ ସେପରି ସୁଯୋଗ ପାଇଲେ ନାହିଁ ।

ସୁମିତା ଚନ୍ଦନ ତଳକୁ ମୁହଁପୋତି ବସିଥିଲା । ଅଞ୍ଜନା ସାନ୍ୟାଲ ମୁହଁରେ କିନ୍ତୁ କୌଣସି ପରିବର୍ତ୍ତନର ଆଭାସ ନଥିଲା ।

ମୁଁ ସୁମିତା ଚନ୍ଦନ ପାଖକୁ ଯାଇ ଠିଆହୋଇ ଡାକିଲି : ସୁମିତା ଦେବୀ ?

ସୁମିତା ମୁହଁ ଟେକି ମୋ ଆଡ଼କୁ ଚାହିଁଲା । ଥରେ ହସିବାକୁ ଚେଷ୍ଟା କଲା, କିନ୍ତୁ ହସି ପାରିଲା ନାହିଁ । ସେ ପୁଣି ତଳକୁ ମୁହଁ ପୋତି ଦେଇ ବସିଲା । ସେ ଯେପରି ଲଜ୍ଜା, ଦୁଃଖ ଓ କ୍ଷୋଭରେ ଶେଷ ହୋଇଯାଇଛି ।



ସତ୍ୟବ୍ରତ ଉଠି ନଥିଲା । ମୁଁ ସେଇକ୍ଷିଣା ଉଠି ଗରମ ଚା' କପ୍‌ଟା ଶେଷ କରି ସମ୍ବାଦପତ୍ରଟା ହାତକୁ ଉଠାଇ ନେଇଥିଲି । ଅବଶ୍ୟ ଘଣ୍ଟାରେ ସାତଟା ବାଜି ଯାଇଥିଲା । ରାତିରେ ଅନେକ ଡେରିରେ ଫେରିଥିବାରୁ ଆଖିଟା ତଥାପି ବୁଜି ବୁଜି ହୋଇ ପଡୁଥିଲା ।

ସେଦିନ ସମ୍ବାଦପତ୍ରର ପ୍ରଥମ ସମ୍ବାଦ ଥିଲା 'କ୍ରାଇମ୍ କ୍ଲବ୍'ର ବାର୍ଷିକ ଅଧିବେଶନର ରିପୋର୍ଟ । କ୍ରିମିନଲୋଜିଷ୍ଟମାନଙ୍କର ଭାଷଣ । ଲୋକଙ୍କ ମନରେ ଅପରାଧ ମନୋବୃତ୍ତି ଦିନକୁ ଦିନ କାହିଁକି ବଢ଼ି ଉଠୁଚି ବିଭିନ୍ନ ଦୃଷ୍ଟିକୋଣରୁ ତା'ର ଆଲୋଚନା ଓ ସେଇସବୁ ଅପରାଧ ମନୋବୃତ୍ତି ଘୁଞ୍ଚେଇବା ପାଇଁ ଉପାୟ ଅବଲମ୍ବନ ।

ତିନିଦିନ ଧରି ସେଇସବୁ ଭାଷଣ ଶୁଣି ଶୁଣି ମୋର ଆଉ ଖବରକାଗଜ ପୃଷ୍ଠାରୁ ସେଗୁଡ଼ାକ ପଢ଼ିବା ପାଇଁ ମୋଟେ ଆଗ୍ରହ ନଥିଲା । ମୁଁ ଖୁସି ହୋଇଥିଲି ଯେ ଅଧିବେଶନ ଶେଷ ହୋଇଛି, ଏଣିକି ଦୁଇ ତିନିଦିନ ମନ ଖୁସିରେ ବୁଲିସାରି ଫେରିଯିବା କଥା । ଆଜି ଅନ୍ତତଃ ଗୋଟିଏ ସିନେମା ପ୍ରୋଗ୍ରାମ ନିଶ୍ଚୟ । କଲିକତା ଆସି ତିନିଟା ଦିନ କେବଳ ଥିଓରୀ ଶୁଣି ଶୁଣି କଟିଗଲା ।

ମୁଁ କ୍ଷିପ୍ର ହସ୍ତରେ ସିନେମା ପୃଷ୍ଠା ଓଲଟାଇବାରେ ଲାଗିଥିଲି ।

ହଠାତ୍ ଦରଜାରେ ନକ୍ ହେଲା । ଏ' ତ ୟୁସୁଫ୍ ନୁହେଁ, ତାହେଲେ ଏତେ ସକାଳୁ... କହିଲି, କମ୍ ଇନ୍ ।

ଦରଜା ଖୋଲିଗଲା । ଜଣେ ସମ୍ଭ୍ରାନ୍ତ ଯୁବକଙ୍କର ଆବିର୍ଭାବ ଦେଖି ମୁଁ ସଜାଡ଼ି ହୋଇ ବସିବାକୁ ଚେଷ୍ଟା କଲି ।

: ମୋ ନାଁ ଦୀପକ ଚୌଧୁରୀ । ମୁଁ ନିଶ୍ଚୟ ମିଷ୍ଟର ମହାପାତ୍ରଙ୍କ ସହିତ କଥା କହୁଛି ।

: ନା, ମୋ ନାଁ ସବ୍ୟସାଚୀ ଦାସ । ସତ୍ୟବ୍ରତ ମହାପାତ୍ର ଶୋଇଛନ୍ତି । କାଲି ଅନେକ ରାତିରେ ଫେରିଥିଲୁ ତ, ସେଇଥିପାଇଁ...

: ଗୁଡ୍‌ମର୍ଣ୍ଣିଂ ମିଷ୍ଟର ଚୌଧୁରୀ । ଆପଣ ଅପେକ୍ଷା କରନ୍ତୁ । ମୁଁ ସଂଗେ ସଂଗେ ଆସୁଛି ।

ଭିତରୁ ସତ୍ୟବ୍ରତର କଣ୍ଠସ୍ୱର ଶୁଣି ମୋର ସ୍ୱର ସ୍ଥିର ହୋଇଗଲା । ମୁଁ ଖବରକାଗଜ ଖଣ୍ଡିକ ଭଦ୍ରଲୋକଙ୍କ ହାତକୁ ବଢ଼ାଇ ଦେବାକୁ ଯାଇ ଦେଖିଲି, ସେ ବି ଖଣ୍ଡିଏ ଷ୍ଟେଟସ୍‌ମ୍ୟାନ୍ ଧରିଛନ୍ତି ।

ଭଦ୍ରଲୋକ ଅଳ୍ପ ହସି କହିଲେ : ଆପଣଙ୍କ ନାଁ ବି ମୁଁ ଖବରକାଗଜରେ ପଢ଼ିଛି ମିଷ୍ଟର ଦାସ ।

: ମୋ ନାଁ ?

: ହଁ, ଆପଣଙ୍କ ନାଁ । ଆପଣ ମିଷ୍ଟର ମହାପାତ୍ରଙ୍କର ବଂଧୁ, ସହକାରୀ ଏବଂ ଜଣେ ସ୍ୱନାମଧନ୍ୟ ରହସ୍ୟ ଔପନ୍ୟାସିକ । କ'ଣ ମୁଁ ସତ କହୁଛି ?

ଭଦ୍ରଲୋକ ମୋତେ ଅବାକ୍ କରି ଅଳ୍ପ ଅଳ୍ପ ହସୁଥିଲେ ।

: ଆପଣ ତାହେଲେ ସତ୍ୟବ୍ରତର ବଂଧୁ ! କାହିଁ ତା' ମୁହଁରୁ ତ ମୁଁ କେବେ ଆପଣଙ୍କ ନାଁ ଶୁଣି ନାହିଁ ?

: ନା ମିଷ୍ଟର ଦାସ, ମୁଁ ତାଙ୍କର କ୍ଲାଏଣ୍ଟ୍ କହିପାରନ୍ତି । ବଂଧୁ ନୁହେଁ ।

: ତାହେଲେ... ?

ସତ୍ୟବ୍ରତ ପଛଆଡୁ ଆସି ମୋ କାନ୍ଧଟା ହଲେଇ ଦେଇ କହିଲା : ତୁ ଏଥର ବ୍ରେକ୍‌ଫାଷ୍ଟର ବ୍ୟବସ୍ଥା କର । ମୁଁ ମିଷ୍ଟର ଚୌଧୁରୀଙ୍କ କଥା ବୁଝୁଛି ।

ସେ ମୋ ପାଖକୁ ଲାଗି ବସିଲା ସୋଫା ଉପରେ ।

: ତା'ପରେ ମିଷ୍ଟର ଚୌଧୁରୀ ! ଆଶା କରୁଛି ଘଟଣାଟା ସେପରି କିଛି ସିରିଅସ୍ ନୁହେଁ ।

: ସିରିଅସ୍ ନ ହେଲେ ବି କିପରି ଏକ, ମାନେ ଆପଣଙ୍କୁ ମୁଁ କିପରି ବୁଝାଇବି ମିଷ୍ଟର ମହାପାତ୍ର, ମାନେ ସିଚୁଏସନ୍‌ଟା କିପରି ଆବନୋରମାଲ୍ ମନେହେଉଛି ।

: ହଁ, ଝିଅଟିର ନାମ କ'ଣ ?

: ମାନେ ? ଦୀପକ ଚୌଧୁରୀ ହଠାତ୍ କିପରି ହତଭମ୍ବ ହୋଇ ମୋ ଆଡ଼େ ଚାହିଁ କହିଲେ, ଆପଣ ରଂଜିତା କଥା ପଚାରୁଛନ୍ତି ?

: ହଁ, ସେଇ ରଂଜିତା, ଯାହା କଥା କହିବା ପାଇଁ ଆପଣ ମୋ ପାଖକୁ ଛୁଟି ଆସିଛନ୍ତି ।

: କିନ୍ତୁ ଆପଣ କିପରି ଜାଣିଲେ ମୁଁ ରଂଜିତା କଥା କହିବାକୁ ଛୁଟି ଆସିଛି ?

: ଜାଣିବାକୁ ହୁଏ ମିଷ୍ଟର ଚୌଧୁରୀ । ଅନ୍ୟର ମନକଥା ଜାଣିବା ଆମର ହେଲା ପେଷା । କିନ୍ତୁ ମୋର ପ୍ରଶ୍ନ ହେଉଛି, କଲିକତାରେ ବର୍ତ୍ତମାନ ଠିକ୍ ଏଇ ସମୟରେ ଅନେକ ସ୍ୱନାମଧନ୍ୟ କ୍ରିମିନଲୋଜିଷ୍ଟ, ସାଇକଲୋଜିଷ୍ଟ ଥାଉ ଥାଉ ଆପଣ କାହିଁକି ମୋ ପାଖକୁ ଛୁଟି ଆସିଲେ ?

ଦୀପକ ଚୌଧୁରୀ ମୁହୂର୍ତ୍ତେ ନୀରବ ରହି କହିଲେ : ଆପଣ ଯେଉଁ ପ୍ରଶ୍ନ କରିଛନ୍ତି, ତା'ର ଉତ୍ତର ହୁଏତ ଅନେକ ହୋଇପାରେ, କିନ୍ତୁ ଆପଣଙ୍କର ପ୍ରଶଂସା ମୁଁ କରିବାକୁ ଆସି ନାହିଁ । ଆପଣଙ୍କୁ ମୋତେ ଭଲ ଲାଗିଲା, ସେଇଥିପାଇଁ ଆସିଛି ।

: ବେଶ୍, ଏଥର ଆପଣଙ୍କ କଥା କୁହନ୍ତୁ ।

: ଆପଣଙ୍କୁ ଟିକେ ମୋ ସାଙ୍ଗରେ ଯିବାକୁ ହେବ ।

: କେଉଁଠାକୁ ?

: ଟିଟାଗଡ଼ ।

: କାହିଁକି ?

: ମୁଁ ସେଇଠି ରହେ ।

: ରଂଜିତା ? ସତ୍ୟବ୍ରତ ପଚାରିଲେ ।

ଦୀପକ ଚୌଧୁରୀ ହସିବାକୁ ଚେଷ୍ଟା କରି କହିଲେ : ସମସ୍ତେ କହୁଛନ୍ତି ସେ ଏକ ଅଶରୀରୀ, ମୁଁ କିନ୍ତୁ ସେମାନଙ୍କ କଥା ବିଶ୍ୱାସ କରିପାରୁ ନାହିଁ ।

: ମାନେ ? ସତ୍ୟବ୍ରତର ସ୍ୱରଟା କିପରି ଅସ୍ୱାଭାବିକ ଶୁଣାଗଲା ।

: ହଁ ମିଷ୍ଟର ମହାପାତ୍ର । ସେଇଭଳି ଏକ ସମସ୍ୟାର ସମ୍ମୁଖୀନ ହୋଇ ମୁଁ ଆପଣଙ୍କ ପାଖକୁ ଛୁଟି ଆସିଛି । ତା' ନ ହୋଇଥିଲେ ମୋର କିଛି ଆବଶ୍ୟକ ନଥିଲା । ମୋର ଏଇ ସତେଇଶ ବର୍ଷର ଜୀବନକାଳ ଭିତରେ ମୁଁ ବୋଧହୁଏ ପ୍ରଥମ କରି ଏପରି ଏକ ଘଟଣାର ସମ୍ମୁଖୀନ ହୋଇଛି ।

: ଘଟଣାଟା ମୂଳରୁ କୁହନ୍ତୁ ।

: ଟିଟାଗଡ଼ ପେପର ମିଲ୍‌ର ମୁଁ ଜଣେ ପଦସ୍ଥ ଅଫିସର । ରୁହେ ବି ସେଇ ଟିଟାଗଡ଼ରେ । ଗଙ୍ଗା କୂଳକୁ ଲାଗି ଏକ ସୁନ୍ଦର ବଂଲୋ ପାଟର୍ଣ୍ଣର ଘର ମୁଁ ଭଡ଼ା ନେଇଛି । ମୋ ଘର ପଛଆଡ଼େ ବଗିଚା । ଦୁଇ ପାଖରେ ଦୁଇଟା ଦୋତାଲା କୋଠା । ସେ ଦୁଇଟିଯାକ କୋଠାରେ ସାତ ଆଠଟି ପରିବାର ବାସ କରନ୍ତି । କୋଠାଗୁଡ଼ିକର ଅଧିବାସୀମାନଙ୍କ କଥା ମୁଁ ପରେ କହିବି ।

ମୁଁ ଯେଉଁ ଘରେ ରହୁଛି, ସେ ଘରର ନାଁ 'ମାଧବୀ ଭିଲା' । ଅବଶ୍ୟ ନାଁଟା ଆଗରୁ ଦିଆ ହୋଇଥିଲା । ସେ ଘରର ମାଲିକ ଜଣେ ବିଧବା ମହିଳା । ତାଙ୍କ ନାଁ ମାଧବୀ କି ନୁହେଁ ମୁଁ ଜାଣି ନାହିଁ । ପ୍ରତିମାସ ଦୁଇ ତାରିଖରେ ଜଣେ ଦାଢ଼ିଆ ବୁଢ଼ା ଆସି ମୋ ପାଖରୁ ଘର ଭଡ଼ା ନେଇଯାଏ । ତେଣୁ ଘରର ମାଲିକ ସମ୍ବନ୍ଧରେ ମୋର ବିଶେଷ କିଛି କୌତୂହଳ ନାହିଁ ।

ଅବଶ୍ୟ ଏଇ ମାଧବୀ ଭିଲାରେ ମୋ ପୂର୍ବରୁ ଆମରି ମିଲ୍‌ର ଆଉଜଣେ ଅଫିସର ରହୁଥିଲେ । ମୁଁ ତାଙ୍କରି ସ୍ଥାନରେ ଆସିବାରୁ ଏବଂ ସେ ଅନ୍ୟତ୍ର ବଦଳି ହୋଇଯିବାରୁ, ତାଙ୍କର କାର୍ଯ୍ୟଭାର ସଂଗେ ସଂଗେ ବାସ ସ୍ଥାନଟି ବି ମୋତେ ଦେଇ ଯାଇଛନ୍ତି । ଘରଟା ଏବେ ବି ତାଙ୍କରି ନାମରେ ଅଛି ଏବଂ ଘରଭଡ଼ା ରସିଦ୍ ତାଙ୍କରି ନାମରେ କଟା ହେଉଛି । ତେଣୁ ଘର ସମ୍ବନ୍ଧରେ ପୂର୍ବ ଇତିହାସ ମୁଁ କିଛି ଜାଣି ନାହିଁ ।

ମୁଁ ଜଣେ ବେଚଲର । ମୋର କିଛି ଝଞ୍ଜଟ ନାହିଁ । ଘରେ ଗୋଟିଏ ଚାକର ଥାଏ । ସେଇ ଦିନଯାକ ରହେ । ବେଳେବେଳେ ଘରୁ ମା' ଆସନ୍ତି । ସାନ ସାନ ଭାଇଭଉଣୀମାନେ ପୂଜା ପାର୍ବଣରେ ଆସି ଭିଡ଼ କରନ୍ତି । ବାସ୍ ସେତିକି । ବର୍ଷରେ ମାତ୍ର ସାମାନ୍ୟ କେତୋଟି ଦିନ 'ମାଧବୀ ଭିଲା' କୋଳାହଳ ମୁଖରିତ ହୋଇ ଉଠେ, ତା'ପରେ ପୁଣି ଶାନ୍ତ ନୀରବ ।

ମୋର ମାଧବୀ ଭିଲାରେ ବସବାସ କରିବାର ପ୍ରାୟ ଏକବର୍ଷ ଶେଷ ହୋଇଯାଇଛି । ଆଗରୁ କୌଣସି ଦିନ କୌଣସି ପ୍ରକାର ଅସ୍ୱାଭାବିକତା ମୁଁ ଅନୁଭବ କରି ନଥିଲି ।

ଯେଉଁଦିନ କଥା କହୁଛି, ସେଦିନ ମୋ ଦେହ ଭଲ ନଥିଲା । ମୁଁ ସଅଳ ସଅଳ ଅଫିସ୍‌ରୁ ଫେରି ଆସିଥିଲି । ଚାକରଟା କେତେଦିନ ପୂର୍ବରୁ ଘରକୁ ଚାଲିଯାଇଥିଲା । ମୁଁ ଏକା ଥିଲି । ମୋର କିଛି ଅସୁବିଧା ମନେ ହୋଇ ନଥିଲା ।

କିନ୍ତୁ ହଠାତ୍ ରାତି ଅଧରେ ମୋତେ ଝାଡ଼ା ଲାଗିଲା । ପାଇଖାନାଟା ଟିକିଏ ଦୂରରେ । ମୁଁ ଯେତେବେଳେ ଉଠିବାକୁ ଚେଷ୍ଟା କଲି, ମୋର ମନେହେଲା, ମୁଣ୍ଡ ବୁଲାଉଛି । ଦେହରେ ଅସମ୍ଭବ ତାତି, ବୋଧହୁଏ ଟେମ୍ପରେଚର ବଢ଼ି ଯାଇଥିଲା । କିନ୍ତୁ ଯେପରି ହେଉ ମୋତେ ପାଇଖାନାକୁ ଯିବାକୁ ହେବ । ଚେଷ୍ଟା କରି ପାଇଖାନା ଯାଏ ଗଲି । କିନ୍ତୁ ଫେରିବା ବେଳେ ମୋର ମୁଣ୍ଡ ଖୁବ୍ ଜୋର୍‌ରେ ବୁଲାଇ ଦେଲା । ମୁଁ ତଳେ ପଡ଼ିଯାଇଥିଲି, ମୋର ସେତିକି ମନେଅଛି । ତା'ପରେ ଅଜ୍ଞାନ ହୋଇ ପଡ଼ିଥିଲି ।

ମୋର ଯେତେବେଳେ ଜ୍ଞାନ ହେଲା, ସେତେବେଳକୁ ଦିନ ପ୍ରାୟ ଆଠଟା ହୋଇ ଯାଇଥିଲା । ମୁଁ ଆଖି ମେଲି ପ୍ରଥମେ ଯାହାକୁ ଦେଖିଲି, ସେ ଜଣେ ତରୁଣୀ । ମୋରି ଶେଯ ତଳକୁ ବସିଛି । ମୋ ଆଖି ଖୋଲିବା ଦେଖି, ତା' ମୁହଁରେ ହସ ଫୁଟିଲା । ମୋ ମୁଣ୍ଡ ପାଖକୁ ଆସି ପଚାରିଲା : ବର୍ତ୍ତମାନ ଟିକିଏ ଭଲ ଲାଗୁଛି ?

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି । କିନ୍ତୁ ତରୁଣୀଟି କିଏ ? ଇତି ପୂର୍ବରୁ କେଉଁଠି ଥରେ ଅଧେ ଦେଖିଲା ପରି ମନେ ହେଉଥିଲା ।

ସେ କିନ୍ତୁ କହିଲା : ମୋ ନାଁ ରଂଜିତା । ଆପଣଙ୍କ ପାଖ କୋଠାରେ ଥାଏ । ଆପଣଙ୍କର ଭାବିବାର କିଛି ନାହିଁ । ଆପଣ ବିଶ୍ରାମ କରନ୍ତୁ ।

ରଂଜିତାଙ୍କୁ ମୁଁ ଆଉ କିଛି କହିପାରିଲି ନାହିଁ । ମୋ ଆଖିଟା ଆପଣା ଛାଏଁ ବନ୍ଦ ହୋଇଯାଇଥିଲା । ମୁଁ ମୋ ଅସହାୟ ଅବସ୍ଥାର କଥା ଚିନ୍ତା କରି ଲଜ୍ଜିତ ହେଉଥିଲି । ରଂଜିତା ମୋତେ ପାଇଖାନା ପାଖରୁ ଉଠାଇ ଆଣି ଶେଯରେ ଶୁଆଇ ଦେଇଛି । ମୋର ସେବା କରିଛି । ହୁଏତ ମୋତେ ଜଗି ବସିଛି । ସତରେ ରଂଜିତା ପାଖରେ ମୁଁ ଛୋଟ ହୋଇଯାଇଥିଲି ।

ସେଥର ମୁଁ ପ୍ରାୟ ପାଞ୍ଚ ଛଅ ଦିନ ବିଛଣାରେ ଶୋଇ ରହିଥିଲି । ରଂଜିତା ମୋର ଅନେକ ସେବା କରିଥିଲା । ତା'ର ବାପାମା' ବି ଆସିଥିଲେ । ତାଙ୍କ ଚାକରଟାକୁ ପଠାଇଥିଲେ ରାତିରେ ମୋ ଘରେ ଶୋଇବା ପାଇଁ । ସତରେ ରଂଜିତା ପରିବାର ନିକଟରେ ସେଥର ମୁଁ କୃତଜ୍ଞ ହୋଇ ପଡ଼ିଥିଲି ।

ରଂଜିତା ପ୍ରାୟ ଦିନଯାକ ମୋ ପାଖରେ ରହୁଥିଲା । ଔଷଧ ଖୁଆଇବା ଠାରୁ ଆରମ୍ଭ କରି ପଥ୍ୟ ଓ ବିଛଣା ସଜାଡ଼ି ଦେବା ପର୍ଯ୍ୟନ୍ତ ସବୁ ସେ ନିର୍ବିକାର ଚିତ୍ତରେ କରିଯାଉଥିଲା । ମୁଁ ସେଇଥର ପ୍ରଥମେ ଅନୁଭବ କଲି ଯେ, ଜୀବନରେ ନାରୀ ଏକ ଅପରିହାର୍ଯ୍ୟ ପଦାର୍ଥ ।

ରଂଜିତାକୁ ମୋତେ ଭଲ ଲାଗିଥିଲା । ଚେହେରାଟି ବି ମନ୍ଦ ନଥିଲା । ଚାଲିଚଳଣ କଥାବାର୍ତ୍ତା ସବୁଥିରୁ ମୁଁ ଏକ ଆତ୍ମୀୟତାର ଗନ୍ଧ ପାଉଥିଲି । ଅସୁସ୍ଥତା ଭିତର ଦେଇ ଯେଉଁ ଦିନ କେତୋଟି ସେଥର ମୋର କଟିଥିଲା, ସେଇ ଦିନ କେତୋଟି ମୋ ଜୀବନର ଅବିସ୍ମରଣୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ରଂଜିତା କିନ୍ତୁ ସଂଧ୍ୟା ବେଳକୁ ଚାଲି ଯାଉଥିଲା । ଆଠଟା ପରେ ଆସୁଥିଲା ତାଙ୍କ ଘରର ଚାକରଟି, ମୋର ସୁବିଧା ଅସୁବିଧା କଥା ବୁଝିବା ପାଇଁ ।

ରଂଜିତା ଚାଲିଯିବା ପରେ ମୋତେ କିଛି ଭଲ ଲାଗୁ ନଥିଲା । ମୁଁ ଆଖିବୁଜି ଦେଇ ଶୋଇ ପଡ଼ିବାକୁ ଚେଷ୍ଟା କରୁଥିଲି । ନିଦ ବି ଭରି ଯାଉଥିଲା ଆଖିରେ ।

ସକାଳୁ ପୁଣି ଆସୁଥିଲା ରଂଜିତା । ଗୋଟିଏ ଫ୍ଲାସ୍କରେ ଚା' ଭରି ସ୍ମିତ ହସି ମୋତେ ନିଦରୁ ଉଠାଉଥିଲା ।

ତା'ପରେ ଦିନ କେତେଟାରେ ସୁସ୍ଥ ହୋଇ ମୁଁ ଅଫିସ୍‌ରେ ଯୋଗ ଦେଲି । ପୁଣି ମୋର ସେଇ ନିତ୍ୟ ନୈମିତିକ ଜୀବନ ଫେରି ଆସିଲା । ଅବଶ୍ୟ ଅଫିସ୍ ଯିବା ସମୟଟା ଟିକିଏ ବଢ଼ିଗଲା । ସକାଳ ଆଠଟା ପରିବର୍ତ୍ତେ ନଅଟାରେ ମୁଁ ଘର ଛାଡ଼ିଲି । କାରଣ ରଂଜିତା ମୋ ଜୀବନର ଏକ ଆକର୍ଷଣ ହୋଇ ଉଠିଥିଲା । ତା' ସଂଗରେ ଗପ କରୁ କରୁ ଘଣ୍ଟାଟିଏ ମୋର କଟି ଯାଉଥିଲା । ଫେରୁଥିଲି କିନ୍ତୁ ସେଇ ରାତି ନଅରେ । ଖିଆପିଆ ଶେଷ କରି ଆସୁଥିଲି ସିଆଡ଼ୁ । କେବଳ ବିଛଣାରେ ଶୋଇ ପଡ଼ିବା କଥା ।

କିନ୍ତୁ କିଛିଦିନ ପରେ ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କଲି, ଯେପରି ମୋ ବିଛଣା କିଏ ସଜାଡ଼ି ଦେଇ ଯାଉଛି । ଘରଗୁଡ଼ିକ ସଜେଇ ଦେଇ ଯାଉଛି ।

ମନେ ମନେ ହସିଲି । ସବୁ ସେଇ ରଂଜିତାର କାଣ୍ଡ । ମୋର ମନେ ହେଲା ରଂଜିତା ଧୀରେ ଧୀରେ ମୋ ଆଡ଼କୁ ଆକର୍ଷିତ ହେଉଛି ଏବଂ ତା' ସୁପ୍ତ ମନରେ ଯେଉଁ ଆଶାର ସଂଚାର ହେଉଛି, ଏଗୁଡ଼ିକ ତା'ର ପରିପ୍ରକାଶ ।

ମୁଁ ଆଉ ଏ କଥାଗୁଡ଼ା ରଂଜିତାକୁ ଖୋଲାଖୋଲି ଭାବରେ ପଚାରି ପାରିଲି ନାହିଁ । ଇଚ୍ଛା ଥିଲେ ବି ମୁହଁ ଖୋଲିଲା ନାହିଁ ।

ଆଉଦିନେ ମୋର ଘରକୁ ଫେରିବାକୁ ଟିକିଏ ଅଧିକ ରାତି ହୋଇ ଯାଇଥିଲା । ସେଦିନ ମୁଁ ବଂଧୁମାନଙ୍କ ସହିତ ସିନେମା ଦେଖି ଫେରୁଥିଲି । ଘରର ଦରଜା ଖୋଲି ପ୍ରଥମେ ଘର ଭିତରେ ପଶି କିପରି ଏକ ଚନ୍ଦନ ଗନ୍ଧ ବାରିଲି । ଆଲୋକ ଜଳାଇ ଦେଖିଲି, ମୋରି ଶୋଇବା ଶେଯ ପାଖରେ ଧୂପ ଜଳୁଛି । ଶେଯ ଉପରେ ଦୁଇଟା ବଉଳ ଫୁଲର ମାଳା ରଖା ହୋଇଛି ।

ମୁଁ ସ୍ତବ୍ଧ ହୋଇ ଠିଆ ହୋଇଯାଇଥିଲି ଅନେକ ସମୟ ।

ରଂଜିତା ଧୀରେ ଧୀରେ ଏସବୁ କ'ଣ ଆରମ୍ଭ କରିଛି ?

ଶେଷରେ ମୋତେ କ'ଣ ରଂଜିତା ପାଖରେ ନତିସ୍ୱୀକାର କରିବାକୁ ପଡ଼ିବ ?

ଧୀର ଏକ ଅସ୍ପଷ୍ଟ ହାସ୍ୟ ଧ୍ୱନି ଯେପରି ମୋର କର୍ଣ୍ଣକୁହରରେ ପ୍ରବେଶ କଲା । ମୁଁ ଚଞ୍ଚଳ ହୋଇ ଉଠିଲି ।

କିଏ ?

ମୋର ମନେହେଲା ସେ ହାସ୍ୟଧ୍ୱନି ସେଇ ମୁହୂର୍ତ୍ତରେ ନୀରବ ହୋଇଗଲା ।

ଅଥଚ...

ମୁଁ ବିଚଳିତ ହୋଇ ଏଣେତେଣେ ଚାହିଁଲି । କେହି ତ କୁଆଡ଼େ ନାହିଁ । ହାତରେ ଗୋଟାଏ ଟର୍ଚ୍ଚ ଧରି ବାହାରି ଗଲି ବଗିଚାକୁ ।

ନା, କିଏ କାହିଁ ?

ତେବେ ବଉଳ ଗଛ ତଳେ, ସିମେଣ୍ଟ ଚଟାଣ ଉପରେ ଅନେକ ବଉଳ ଫୁଲ । ଗନ୍ଧରେ ନାକ ଭରି ଯାଉଛି ।

ଆଉ ଟିକିଏ ଦୂରକୁ ଗଙ୍ଗା କୂଳ । ଗଙ୍ଗା କୂଳର ସିମେଣ୍ଟ ପାହାଚ ଉପରେ ବି କେତୋଟି ବଉଳ ଫୁଲ ଝରି ପଡ଼ିଚି । ଗଙ୍ଗା ଗର୍ଭରେ ରାତ୍ରିର ଗଭୀର ନିସ୍ତବ୍ଧତା ଭଂଗ କରି ବି ଆହୁଲାର ଶବ୍ଦ ଶୁଭୁଚି ।

ମୁଁ ପୁଣି ଫେରି ଆସିଲି ।

ଭାବିଲି ହୁଏତ ମୋ ମନର ଭ୍ରମ । ସ୍ପଷ୍ଟ ତ ଶୁଣିପାରିନି କାହାରି ହାସ୍ୟଧ୍ୱନି ।

କିନ୍ତୁ ଯାହା ସତ୍ୟ, ତାହା ହେଉଛି ଏଇ ଧୂପ ଆଉ ବଉଳ ଫୁଲର ମାଳା ।

ରଂଜିତା ତେବେ ଆସିଥିଲା କିଛି ସମୟ ପୂର୍ବରୁ । କେତେ ଆଗରୁ ହୋଇପାରେ ? ଅବଶ୍ୟ ଲମ୍ବା ଲମ୍ବା ଆଉ ମୋଟା ମୋଟା ଧୂପଗୁଡ଼ିକ ଶେଷ ହୋଇ ଆସିଲାଣି । ଖୁବ୍ ବେଶି ହେଲେ ଘଣ୍ଟାଏ ହେବ ।

ତା'ହେଲେ ବି ରାତି ସାଢ଼େ ଏଗାରଟାରୁ କମ୍ ହେବ ନାହିଁ ।

ରଂଜିତା କ'ଣ ଏତେବେଳ ଯାଏ ଅପେକ୍ଷା କରିଥିଲା ?

ଅବଶ୍ୟ ଏଇଟା ଆଜି ରଂଜିତା ପକ୍ଷରେ ଏକ ନୂଆ କଥା ।

ସେଦିନ ରାତିରେ ମୁଁ ଶୋଇପାରି ନଥିଲି । ବଉଳ ଫୁଲର ମାଳା ଦୁଇଟିକୁ ଛାତି ଉପରେ ଚାପିଧରି ଅନେକ ରାତିଯାଏ ବସି ଚିନ୍ତା କରିଥିଲି । ରଂଜିତାର ମନକୁ ବିଶ୍ଳେଷଣ କରିଥିଲି ।

ରଂଜିତା କ'ଣ ଚାହେ ?

ମୋତେ ପାଇଲେ ସେ କ'ଣ ସୁଖୀ ହୋଇପାରିବ ?

ମୁଁ କ'ଣ ରଂଜିତାକୁ ପାଇ ଘର ବାନ୍ଧି ପାରିବି ?

ଏହିପରି ନାନା ଅସଂଲଗ୍ନ ପ୍ରଶ୍ନରେ ମୋର ମନ ଭରି ଯାଇଥିଲା । ଆଖି ବି ଲାଗି ଯାଇଥିଲା କେତେବେଳେ ଅଜାଣତରେ ।

ଯେତେବେଳେ ଆଖି ଖୋଲିଲା, ଦେଖିଲି ରଂଜିତା ମୋ ସାମ୍ନାରେ ଠିଆ ହୋଇ ହସୁଛି ।

ମୁଁ ହଠାତ୍ ତାକୁ କିଛି ପଚାରି ପାରିଲି ନାହିଁ ।

ସେ କିନ୍ତୁ ମୋ ଶେଯ ଉପରେ ବଉଳ ମାଳା ଦେଖି କହିଲା, ଧୀରେ ଧୀରେ ଆପଣଙ୍କର ମନର ରଂଗ ବଦଳୁଚି ଯେ ।

ମୁଁ କହିଲି : କିପରି ?

: ନୁହେଁ ? ଆପଣ ସତ କହିଲେ ! ପ୍ରଥମେ ଯେଉଁଦିନ ଆପଣ ମୋ ସହିତ କଥା କହିଲେ, ସେଦିନ ତ ଆପଣଙ୍କ କଣ୍ଠସ୍ୱର ଶୁଣି ମୋ ଛାତିଟା ଥରି ଉଠିଥିଲା । ଆଉ ଆପଣଙ୍କ ଆଚରଣରେ ଏତେ ରୁକ୍ଷତା ଥିଲା ଯେ, ମୁଁ ଭାବୁଥିଲି ଆପଣ କୌଣସି ଦିନ କୌଣସି ଝିଅ ସହିତ ମିଶି ନାହାନ୍ତି ।

: ଆଉ ଆଜି ? ମୁଁ ହସି ହସି ପଚାରିଲି ।

: ଶେଯ ଉପରେ ବଉଳ ଫୁଲର ମାଳା, ମୁଖରେ ସ୍ମିତ ହାସ୍ୟ । ସେଦିନ ଆଉ ଆଜି ଭିତରେ ଆକାଶ ପାତାଳ ତଫାତ୍ । ରଂଜିତା ଫ୍ଲାସ୍କରୁ ଚା' ଢାଳୁ ଢାଳୁ କହୁଥିଲା ।

: କିନ୍ତୁ ଜଣକର ମନର ପରିବର୍ତ୍ତନ ମୂଳରେ ନିଶ୍ଚୟ ଆଉ ଜଣକର ହାତ ଥାଏ ।

: ହୁଏତ ଥିବ ।

: ମୁଁ ଯଦି କହେ ତମରି ।

ରଂଜିତା ହାତରୁ କପ୍‌ଟା ଖସି ପଡ଼ିଥାନ୍ତା । ସେ ସମ୍ଭାଳି ନେଇ, ବୋଧହୁଏ ନିଜକୁ ପ୍ରକୃତିସ୍ଥ କରି, ସ୍ମିତ ହସି କହିଲା : ମୁଁ ହୁଁ, ଆପଣଙ୍କ ମନ ପରିବର୍ତ୍ତନ ମୂଳରେ ମୋର କୌଣସି ହାତ ନାହିଁ ।

: ତା'ହେଲେ କାହାର ଅଛି ?

: ମୁଁ ଜାଣିଲି କିମିତି !

: ଏ ଫୁଲମାଳା, ଘରେ ଧୂପବତୀ, କିଏ ଜାଳି ପ୍ରତୀକ୍ଷା କରୁଛି ?

: ହୁଏତ କେହି ଥିବ ପ୍ରତୀକ୍ଷମାଣା ।

: କିନ୍ତୁ ତମେ...

: ନା ନା ଦୀପକ ବାବୁ, ସେ ସବୁ ପିଲାଳିଆମୀର ବୟସ ମୋର ଅନେକ ଦିନରୁ ଚାଲିଗଲାଣି ।

: ରଂଜିତା !

ରଂଜିତା କିନ୍ତୁ ଆଉ କିଛି ଶୁଣିଲା ନାହିଁ । ସେହିପରି ହସି ହସି ଧୀରେ ଧୀରେ ଘରୁ ବାହାରି ଚାଲିଗଲା ।

ମୁଁ ବିଛଣା ଉପରେ ବସିରହି ଚା' କପ୍‌ଟି ଶେଷ ହେବା ଯାଏ ଚିନ୍ତା କରୁଥିଲି । ଏସବୁ ଏଇ ରଂଜିତାର କୀର୍ତ୍ତି । ମନର ଅତଳ ଗହ୍ୱରରେ ଭଲପାଇବାର ଯେଉଁ ଶିଖାଟି ଜଳି ଉଠୁଚି, ତା'ର ପ୍ରକାଶ ଆପଣା ଛାଏଁ ବିକଶି ଉଠୁଚି ଆଖି ଆଗରେ । ରଂଜିତା ଯେତେ ଲୁଚେଇବାକୁ ଚେଷ୍ଟା କଲେ ବି ପାରିବ ନାହିଁ ।

ସେଇଦିନ ଠାରୁ ମୋ ମନଟାରେ ଏକ ଅପୂର୍ବ ଆଲୋଡ଼ନ ସୃଷ୍ଟି ହୋଇଗଲା । ବେଳ ଅବେଳ ସ୍ଥାନ ଅସ୍ଥାନରେ ଦେହ ମନରେ ମୁଁ କିପରି ପରିବର୍ତ୍ତନ ଲକ୍ଷ୍ୟ କଲି ।

ଆଉ ଗୋଟିଏ ରାତିର ଘଟଣା ।

ସେତେବେଳକୁ ଦୁଇଟା ବାଜିଥିଲା ।

ହଠାତ୍ ମୁଁ କାହାର ସ୍ପର୍ଶ ଅନୁଭବ କଲି ।

ନିଦ ଭାଂଗିଗଲା ।

ଅପୂର୍ବ ଏକ ଗନ୍ଧରେ ମନଟା ଭରିଗଲା ।

ଉଠି ବସିଲି । ମୋ ଗଳାରେ ଗୋଟାଏ ବଉଳ ଫୁଲର ମାଳା ଝୁଲୁଥିଲା ।

କିଏ ? କିଏ ଆସି ପିନ୍ଧାଇ ଦେଇଗଲା ମାଳାଟା ?

ଘର ଖୋଜିଲି, ବାହାର ଖୋଜିଲି । କେହି ତ କେଉଁଠି ନାହିଁ ।

ତେବେ ?

ପୁଣି ଯାଇ ବିଛଣାରେ ବସିଲି ସ୍ତବ୍ଧ ହୋଇ । ରଂଜିତା ଲୁଚି ଲୁଚି ରହିଛି କାହିଁକି ? ଏପରି ଲୁଚକାଳି ଖେଳିବାକୁ ସେ କ'ଣ ଭଲପାଏ ?

ଥାଉ, ଲୁଚିଥାଉ ସେ । ଯେତେଦିନ ଯାଏ ମୋ ଆଖି ଆଗକୁ ନ ଆସୁଚି ସେତେଦିନ ଯାଏ ମୁଁ ତାକୁ ଏ ସମ୍ବନ୍ଧରେ କିଛି କହିବି ନାହିଁ ।

ପୁଣି ସେଇ ଅସ୍ପଷ୍ଟ ହାସ୍ୟଧ୍ୱନି ।

ମୁଁ ତଡ଼ିତ୍ ବେଗରେ ଉଠି ବସିଲି ।

ହାସ୍ୟ ଧ୍ୱନିଟା ଧୀରେ ଯେପରି ତରଙ୍ଗାୟିତ ହୋଇ ମିଳେଇ ଗଲା ।

ମୁଁ ଧାଇଁଲି ବାଡ଼ି ବଗିଚାକୁ ।

ବଉଳ ଗଛ ମୂଳେ ପୁଣି ମେଞ୍ଚାଏ ଫୁଲ ଜମା ହୋଇଛି ।

କିନ୍ତୁ ରଂଜିତା ଗଲା କୁଆଡ଼େ ?

ମୁଁ ବିମର୍ଷ ମନରେ ଫେରି ଆସିଲି ।

ଆରଦିନ ସକାଳେ ରଂଜିତାକୁ କିଛି କହିଲି ନାହିଁ । ଗମ୍ଭୀର ହୋଇ ବସି ରହିଲି । ରଂଜିତା କିନ୍ତୁ ହସହସ ମୁହଁରେ ମୋତେ ଅନେକ କଥା ପଚାରିଗଲା ।

ଆଖି ଫୁଲିଚି କାହିଁକି ? ଆଜିକାଲି ରାତି ଜାଗରଣ ବଢ଼ିଯାଇଛି ବୋଧେ । ରୁହନ୍ତୁ ମୁଁ ଆପଣଙ୍କ ମା'ଙ୍କୁ ଚିଠି ଲେଖିଦେବି । ଆପଣ ଆଜିକାଲି ବଡ଼ ଦୁଷ୍ଟ ହୋଇଗଲେଣି । ଏହିପରି ଆହୁରି କେତେ କ'ଣ ।

ମୁଁ ସବୁ ଶୁଣୁଥିଲି । ଗମ୍ଭୀର ହୋଇ ବସିଥିଲି ।

ଶେଷରେ କିନ୍ତୁ ରଂଜିତା ଆସି ମୋ ହାତ ଦୁଇଟାକୁ ହଲାଇ ଦେଇ କହିଲା : କାଠ ନା ପଥର ନା ଜଡ଼ ?

ମୁଁ କହିଲି : ତମ ସଙ୍ଗରେ ମୁଁ କଥା କହିବି ନାହିଁ ରଂଜିତା ।

: ମୁଁ ଆଗରୁ ଜାଣିଥିଲି ।

: କ'ଣ ଜାଣିଥିଲ ?

: ମାନେ ଆପଣ ଦିନେ ନା ଦିନେ ମୋଠାରୁ ସଂପର୍କ ତୁଟେଇ ଦେବେ ।

: ସବୁ ଝିଅମାନେ ତମ ପରି ନା ତମେ ଅନନ୍ୟା ?

: ମାନେ ?

: ଆହୁରି ବୁଝାଇବାକୁ ପଡ଼ିବ ?

: କିଛି ବୁଝିବା ମୋର ଦରକାର ନାହିଁ ।

: ପୁଣି ହସି ହସି ରଂଜିତା ସେଦିନ ଘରୁ ବାହାରି ଚାଲିଗଲା ।

ରଂଜିତାର ଚାଲିଯିବାର ଭଂଗୀ ଓ ଚାହାଣି ଆଡ଼େ ମୁଁ ସେଦିନ ଚାହିଁ ସର୍ବାଙ୍ଗରେ ପୁଲକ ଅନୁଭବ କରିଥିଲି ।

ରଂଜିତାର ଘରୁ ନିମନ୍ତ୍ରଣ ପାଇ ଯେଉଁଦିନ ପ୍ରଥମେ ମୁଁ ଯାଇଥିଲି, ସେଦିନ ରଂଜିତାର ଘର, ବଂଶର ଇତିହାସ ଏବଂ ସେମାନଙ୍କର ଆଦର ଅଭ୍ୟର୍ଥନାରେ ମୁଁ ମୁଗ୍ଧ ହୋଇ ଯାଇଥିଲି ।

ରଂଜିତାର ବାପା ଜଣେ ମଧ୍ୟମ ଧରଣର ବ୍ୟବସାୟୀ । ମା' ଖୁବ୍ ସ୍ନେହପ୍ରବଣା । ରଂଜିତା ତଳର ଭାଇ ଗୋଟାଏ କଲେଜରେ ପଢ଼େ । ଆଉ ଜଣେ ସ୍କୁଲରେ । ସେମାନେ ସେଠାକାର ପୁରୁଣା ଅଧିବାସୀ ।

ପରିବାରଟି ସ୍ୱଚ୍ଛଳ ନ ହେଲେ ବି ଦାରିଦ୍ର୍ୟ ନାହିଁ ।

ମୁଁ ଫେରିଆସିଲା ବେଳେ ରଂଜିତାର ମା' କହିଲେ : ତମେ ମଝିରେ ମଝିରେ ଆସିବ ବାବା । ରଂଜିତାର କେହି ସାଙ୍ଗ ନାହାନ୍ତି । ସେ ବି କାହା ସହିତ ମିଳାମିଶା କରିବାକୁ ଭଲ ପାଏ ନାହିଁ । ତମେ ଦେଖୁ ନଥିବ ବାବା । ସେଇ ସକାଳେ ଚା' କପେ ଦେଇ ଆସିବାକୁ ଯିବା ପାଇଁ ମୋତେ କ'ଣ ତା' ପଛରେ କମ୍ ଲାଗିବାକୁ ହୋଇଥାଏ ! କେଜାଣି କାହିଁକି ବାବା, ରଂଜିତାଟା ଆଉ ପାଞ୍ଚଟା ଝିଅ ପରି ନୁହେଁ ।

ସେଦିନ ମୁଁ ଫେରିଲା ବେଳେ ମନେମନେ ହସିଥିଲି ।

ରଂଜିତା ଦୁନିଆରେ ଆଉ ପାଞ୍ଚଟା ଝିଅ ଭଳି ନୁହେଁ !! ସବୁ ବାପାମା' ମାନେ କ'ଣ ସନ୍ତାନର ଆଚରଣ ପାଖରେ ଅନ୍ଧ ?

ସେଦିନ ତାଙ୍କ ଘରୁ ଫେରୁ ଫେରୁ ବେଶି ରାତି ହୋଇ ନଥିଲା । ବାହାରେ ଆସି ଦେଖିଲି ସାଢ଼େ ଆଠଟା ବାଜିଛି । ଏତିକିବେଳୁ ଯାଇ ଶୋଇ ପଡ଼ିବାକୁ ଭଲ ଲାଗିବ ନାହିଁ ।

ତା'ହେଲେ ?

କ୍ଲବ୍‌ରେ ଯାଇ ତାସ୍ ଖେଳିଲେ ମନ୍ଦ କ'ଣ ?

ଗୋଟିଏ ରିକ୍‌ସାରେ ବସି କ୍ଲବ୍ ଆଡ଼କୁ ଆଗେଇଲି ।

ଖେଳ ବି ଜମିଲା ବେଶ୍ ! ଫେରୁ ଫେରୁ ପ୍ରାୟ ଏଗାରଟା ବାଜି ଯାଇଥିଲା । ଲୁଗାପଟା ବଦଳେଇ ମୁଁ ଯାଇ ବିଛଣାରେ ଶୋଇ ପଡ଼ିଲି ।

ମୋ ମନ ଭିତରେ କେଜାଣି କାହିଁକି କାହାର ପଦଧ୍ୱନି ପ୍ରତିଧ୍ୱନିତ ହେଲା ପରି ମନେ ହେଉଥିଲା । ରଂଜିତା ହୁଏତ ଆସିବ । ଆସିବା ବେଳ ତା'ର ହୋଇ ନାହିଁ । ଆସିଲେ ଆଜି ତାକୁ ଅନ୍ଧାରରୁ ଟାଣି ବାହାର କରିବି । ମୋ ସଙ୍ଗରେ ଲୁଚକାଳି ଖେଳି କେତେଦିନ ସେ ଅନ୍ଧାରରେ ଲୁଚି ରହିପାରିବ ?

ବସି ବସି ଗୋଟାଏ ସିଗାରେଟ୍‌ରେ ଅଗ୍ନି ସଂଯୋଗ କଲି ।

ଜୀବନର ଏଇ ଦୀର୍ଘଯାତ୍ରା ପରେ ଏ କେତେଦିନ ହେବ କାହିଁକି ମନପ୍ରାଣରେ କିପରି ଏକ ବ୍ୟତିକ୍ରମ ଦେଖା ଦେଇଥିଲା । ଗୋଟାଏ ଆଶା, ଗୋଟାଏ ପ୍ରତୀକ୍ଷା ମନ ଭିତରେ ଜିଇ ରହିଥିଲା । କାହା ପାଇଁ ? କେଉଁଥି ପାଇଁ ?

ଆଖିକି ନିଦ ଆସୁ ନଥିଲା ।

ରଂଜିତା କ'ଣ ଏଇକ୍ଷିଣା ଚେଇଁ ଚେଇଁ ମୋ' କଥା ଭାବୁଥିବ ?

ଧେତ୍ । ଯେତେସବୁ ବାଜେ ଚିନ୍ତା ଭାବନା ।

ମୁଁ ବିଛଣାରୁ ଉଠି ଠିଆ ହେଲି । କିଛି ଭଲ ଲାଗିଲା ନାହିଁ । ବାହାରିଗଲି ବାହାରକୁ । ଗାଢ଼ ଅନ୍ଧକାର ।

ମନେମନେ ମୁଁ ବୋଧହୁଏ କାହାର ପ୍ରତୀକ୍ଷା କରୁଥିଲି ।

ବଉଳ ଫୁଲର ଗନ୍ଧ ପାଇବା ପାଇଁ ମନ ଭିତରଟା ମୋର ବୋଧହୁଏ ବ୍ୟାକୁଳ ହେଉଥିଲା ।

ରଂଜିତା କ'ଣ ବଉଳ ମୂଳକୁ ଆସିଥିବ ?

ବାହାରେ ଅନ୍ଧକାର ।

ତଥାପି ସେଇ ଅନ୍ଧକାର ଭିତରେ ମୁଁ ପାଦ ଚିପିଚିପି ବଉଳ ମୂଳକୁ ଆଗେଇଲି । ଆଜି ଧରା ପଡ଼ିଲେ ରଂଜିତାକୁ ମୁଁ ସଫା ସଫା ପଚାରିବି । ସେ ମୋତେ ସତରେ ଚାହେଁ ନା ମୋ ସହିତ ଖେଳୁଛି ?

କିନ୍ତୁ ବଉଳ ମୂଳ ଯେ ଫାଙ୍କା ।

ସିମେଣ୍ଟ ଚଟାଣ ଉପରେ ଯାଇ ବସିଲି ।

ହୁଏତ ଆସିବ । ଆଉ କିଛିସମୟ ପରେ ଆସିପାରେ ତ ରଂଜିତା । ଅନ୍ଧାରରେ ମୋତେ ଦେଖି ଡରିଯିବ ନାହିଁ ତ !

ଗଙ୍ଗା ବକ୍ଷରୁ ବେଳେବେଳେ ଷ୍ଟିମର୍‌ର ହୁଇସିଲ୍ ଶୁଭୁଥିଲା ।

ମାଝିମାନଙ୍କର ପାଟିତୁଣ୍ଡ ବି ଶୁଭୁଥିଲା ।

କିନ୍ତୁ ଯେଉଁ ପାଦଶବ୍ଦ ପାଇଁ ମୁଁ ଉଦ୍‌ଗ୍ରୀବ ହୋଇ ପ୍ରତୀକ୍ଷା କରିଛି ସେ ଗଲା କୁଆଡ଼େ ?

ଦୂରରୁ କେଉଁ ଗିର୍ଜା ଘଡ଼ିରେ ବାରଟା ବାଜିବାର ଘଣ୍ଟା ଶୁଭିଲା ।

ନା, ରଂଜିତା ଆଉ ଆସିବ ନାହିଁ ।

ମୁଁ ଧୀରେ ଧୀରେ ଲେଉଟିଲି ଘର ଭିତରକୁ । ଶେଯ ଉପରକୁ ।

କିନ୍ତୁ ଘରଟା ଅନ୍ଧାର ଯେ ! ମୁଁ ଘରର ଲାଇଟ୍ ଲିଭେଇ ଦେଇ ଯାଇଥିଲି । କାହିଁ, ମନେପଡୁ ନାହିଁ ତ !

ସୁନ୍ଦର ଚନ୍ଦନର ଗନ୍ଧ ଆସି ନାକରେ ବାଜିଲା ।

ଲାଇଟ୍ ଜଳେଇଲି ।

ଆଶ୍ଚର୍ଯ୍ୟ !

ମୋ ବିଛଣାର ଅଳ୍ପ ଦୂରରେ ଗୋଟାଏ ଧୂପଦାନିରେ ଧୂପ ଜଳୁଛି । ମୁଁ ସ୍ତବ୍ଧ ହୋଇଗଲି । ରଂଜିତା ତେବେ ମୋ ସଂଗରେ ଲୁଚକାଳି ଖେଳୁଛି । ମୁଁ ତାକୁ ପ୍ରତୀକ୍ଷା କରି ବସି ରହିଚି ବଉଳ ମୂଳେ । ଅଥଚ...

ଖୁବ୍ ଧୀରେ ଅସ୍ପଷ୍ଟ ହୋଇ ହାସ୍ୟରୋଳ ପୁଣି ମୋ କାନରେ ବାଜିଲା ।

ମୋର ସମସ୍ତ ଦେହରେ ଯେପରି ତଡ଼ିତ୍ ପ୍ରବାହ ଖେଳିଗଲା । ମନେହେଲା ରଂଜିତା ମୋତେ ବିଦ୍ରୂପ କରୁଛି । ମୋ ପୌରୁଷକୁ ପରିହାସ କରୁଛି ।

ମୁଁ କ୍ଷିପ୍ତ ହୋଇ ଉଠିଥିଲି ।

ଆଜି ଯେପରି ହେଉ ରଂଜିତାକୁ ମୁଁ ଅନ୍ଧକାରରୁ ଟାଣି ବାହାର କରିବି । ଦରକାର ହେଲେ ତା' ଘରଯାଏ ଛୁଟିଯିବି ।

ଅନେକ ବେଳୁ ସେହି ହାସ୍ୟଧ୍ୱନି ନୀରବ ହୋଇ ଯାଇଥିଲା । ଯେପରି ଅନ୍ଧକାରରେ ମିଶି ଯାଇଥିଲା । ରଂଜିତା ମଧ୍ୟ ।

ମୁଁ ଅପମାନିତ ବୋଧ କଲି ।

ଧୂପଶିଖା ମୋ ଆଖି ଆଗରେ କୁଣ୍ଡଳୀ ସୃଷ୍ଟି କରି ମୋତେ ବିଦ୍ରୂପ କରୁଥିବା ପରି ମୋର ମନେହେଲା ।

ମୁଁ ଆଉ ଆତ୍ମସଂବରଣ କରିପାରିଲି ନାହିଁ ।

ଉଠିଗଲି ସାଙ୍ଗେ ସାଙ୍ଗେ । ରଂଜିତା ଘରଯାଏ ଛୁଟି ଯାଇଥିଲି । କିନ୍ତୁ ତାଙ୍କ ଦୁଆର ମୁହଁରେ ଠିଆ ହୋଇ ଅନୁଭବ କଲି ଏକ ଶାନ୍ତ ନୀରବତା ।

ରଂଜିତା ହୁଏତ ସେଇ ନୀରବତା ଭିତରେ ଆତ୍ମଗୋପନ କରି ସାରିଥିଲା । କିନ୍ତୁ...

ନା, ଦରଜା ବାଡ଼େଇ କାହାରି ନିଦ୍ରାଭଙ୍ଗ କରିବା ପାଇଁ ମନ ଭିତରୁ ମୁଁ ଉତ୍ସାହ ପାଇଲି ନାହିଁ ।

ଧୀରେ ଧୀରେ ପରାଜିତ ସୈନିକ ପରି ପାଦ ଲେଉଟାଇଲି ।

ରଂଜିତାର ଏଇ ଲୁଚକାଳି ଖେଳ ମୂଳରେ ଯେଉଁ ଗର୍ବ ବା ଗୌରବବୋଧ ଲୁଚି ରହିଚି, ସେତକ ମୁଁ ଚୂର୍ଣ୍ଣ ନ କରିବା ଯାଏ ତା' ସହିତ କଥା କହିବି ନାହିଁ । ମନେମନେ ପ୍ରତିଜ୍ଞା କରି ଫେରିଆସିଲି ।

କିନ୍ତୁ ମୋ ଘର ଭିତରଟା ପୁଣି ଅନ୍ଧକାର କଲା କିଏ ?

ମୋର ତ ସ୍ପଷ୍ଟ ମନେପଡୁଚି ମୁଁ ଲାଇଟ୍ ଲିଭାଇ ଯାଇ ନଥିଲି ।

ମୁଁ ସ୍ତବ୍ଧ ହୋଇ ଶେଯ ଉପରେ ବସିପଡ଼ିଲି ।

ସେଦିନ ରାତିରେ ଆଉ କିଛି ଘଟି ନଥିଲା ।

ସକାଳୁ ନିଦ ଭାଂଗିଲା ବେଳକୁ ଦେଖିଲି ସବୁଦିନ ପରି ରଂଜିତା ଫ୍ଲାସ୍କରୁ ଚା' ଢାଳି କପ୍‌ରେ ଭରୁଚି ।

ମୋତେ କହିଲା : ବେଳ କେତେ ହେଲାଣି ଜାଣନ୍ତି ?

ମୁଁ ମୁହଁ ବୁଲେଇ ଶୋଇଲି ।

ରଂଜିତା କିନ୍ତୁ କିଛି ମନେ କଲା ନାହିଁ । ପାଖକୁ ଯାଇ ଦେହରେ ହାତମାରି ଡାକି ଉଠାଇଲା ।

ମୁଁ ଶୁଣିଲି ନାହିଁ ।

ସେ କହିଲା : ନ ଶୁଣିବେ ଯଦି ଚା' ଯାକ ଢାଳି ଦେବି ଆପଣଙ୍କ ଉପରେ ।

ତଥାପି ମୁଁ ନିରୁତ୍ତର ।

ରଂଜିତା ସତରେ ମୋ ଉପରେ ଦି'ଟୋପା ଗରମ ଚା' ଢାଳି ଦେଲା । ମୁଁ ତଡ଼ିତ୍ ବେଗରେ ଉଠି ପଡ଼ିଲା ବେଳକୁ ରଂଜିତା ହାତରୁ ଚା' କପ୍‌ଟା ଖସିପଡ଼ିଲା । ଗରମ ଚା'ଯାକ ଢାଳି ହୋଇଗଲା ରଂଜିତା ଦେହରେ । କପ୍‌ଟା ପଡ଼ିଲା ବୋଧହୁଏ ତା' ଗୋଡ଼ ଉପରେ ।

ସେ ଚିତ୍କାର କରି ଉଠିଲା ।

କିପରି ଏକ ଅସହ୍ୟ ଯନ୍ତ୍ରଣାରେ ସେ କାତର ହୋଇ ପଡ଼ିଥିଲା ।

ମୁଁ ଗତ ରାତିର ସମସ୍ତ ଅଭିମାନ ଭୁଲିଯାଇ ରଂଜିତାକୁ ତଳୁ ଉଠାଇଲି । ତା' ଲୁଗାରୁ ଫାଳେ ତିନ୍ତି ଯାଇଥିଲା । ଦେହରେ ଗରମ ପାଣି ପଡ଼ି ଜ୍ୱାଳା କରୁଥିଲା । ଡାହାଣ ପାଦରେ ନଖ ପାଖଟା କପ୍ ଆଘାତରେ କଟି ଯାଇଥିଲା ।

ସେ କିପରି କରୁଣ ଦୃଷ୍ଟିରେ ମୋ ମୁହଁକୁ ଚାହିଁଥିଲା ।

ରଂଜିତାକୁ ଉଠାଇ ନେଇ ମୋ ଶେଯ ଉପରେ ଶୁଆଇଦେଲି । କିନ୍ତୁ କ୍ଷତ ସ୍ଥାନରେ କି ପ୍ରଲେପ ଦେବି ?

ଡେଟଲ ଶିଶିଟା ଆଣି ଡେଟଲ ଢାଳି ଦେଇଥିଲି ରଂଜିତା ପାଦରେ । ବୋଧହୁଏ ଜ୍ୱାଳା ବଢ଼ି ଯାଇଥିଲା । ସେ ଯନ୍ତ୍ରଣାରେ କାତର ହୋଇ ମୋତେ ଜଡ଼ାଇ ଧରିଥିଲା ।

ଅବଶ୍ୟ ଦୁର୍ଘଟଣାଟା ଅତି ସାମାନ୍ୟ ହୋଇଥିବାରୁ କିଛି ସମୟ ପରେ ରଂଜିତା ସେଦିନ ସୁସ୍ଥ ହୋଇ ଉଠିଥିଲା ।

ତା'ପରେ ମୁଁ କିନ୍ତୁ ଗତ ରାତିର କଥା କିଛି ଆଉ ପଚାରି ପାରି ନଥିଲି ରଂଜିତାକୁ । ମୋ ଅଫିସ୍ ଯିବା ପୂର୍ବରୁ ଏଣୁତେଣୁ ଦି'ଚାରି କଥା ହୋଇ ସେ ଫେରିଯାଇଥିଲା ତାଙ୍କ ଘରକୁ ।

ତା'ପର ଦିନ କେତୋଟି ସ୍ୱାଭାବିକ ଭାବରେ କଟି ଯାଇଥିଲା ।

ହଠାତ୍ ଦିନେ ସକାଳୁ ରଂଜିତାର ମା'ଙ୍କୁ ଫ୍ଲାସ୍କ ହାତରେ ମୋ ଘରେ ପ୍ରବେଶ କରିବାର ଦେଖି, ମୁଁ ସମ୍ଭ୍ରମ ସହକାରେ ଉଠି ବସିଲି ।

ସେ ହସି ହସି କହିଲେ : ରଂଜିତାର ଦେହଟା ଟିକିଏ ଭଲ ନାହିଁ ବାବା । ସେଇଥିପାଇଁ ମୋତେ ଆସିବାକୁ ହେଲା ।

: ଆପଣ ନ ଆସିଥିଲେ ବି ଚଳିଥାଆନ୍ତା । ଦିନେ ଚା' ନ ପିଇଲେ ମୋର ଏପରି କିଛି ଅସୁବିଧା ହୋଇଯାଇ ନଥାନ୍ତା ।

: ନା ବାବା, ମଣିଷର ଗୋଟାଏ ଆଶା ତ ! ହୁଏତ ଚା' କପ୍‌ଟା ମଣିଷ ଜୀବନ ପାଖରେ ଅତି ତୁଚ୍ଛ, ତଥାପି ଆଶାଟା ରହିଯାଇଥାଆନ୍ତା ।

ମୁଁ ଆଉ କିଛି କହିଲି ନାହିଁ ।

ସେ ଚା'ତକ ଫ୍ଲାସ୍କରୁ ଢାଳି ମୋ ହାତକୁ ବଢ଼ାଇ ଦେଇ ଖଟ ପାଖରେ ଠିଆହୋଇ ରହିଲେ ।

ମୋତେ ଟିକିଏ ଅଡୁଆ ଅଡୁଆ ଲାଗୁଥିଲା ।

କିଛି ସମୟ ପରେ ସେ କହିଲେ : ବାବା, ତୁମକୁ ମୁଁ ଗୋଟିଏ କଥା ପଚାରିବି ଭାବିଛି । କିଛି ମନେକରିବ ନାହିଁ ତ !

: ନା, ମନେ କାହିଁକି କ'ଣ କରିବି ? ଆପଣ ପଚାରନ୍ତୁ ।

: ଆଚ୍ଛା ବାବା, ରଂଜିତା ତୁମକୁ କେମିତି ଲାଗୁଛି ?

ମୁଁ ମୁହୂର୍ତ୍ତେ ନୀରବ ରହି କହିଲି : ଭଲ ।

ସେ କହିଲେ : ରଂଜିତାର ଗୋଟାଏ ବିବାହ ପ୍ରସ୍ତାବ ତା' ମାମୁ ଆଣିଛନ୍ତି । ପାତ୍ରଟି ବି.ଏ. ପାସ୍ କରିଛି । ଗୋଟିଏ ସୌଦାଗରୀ ଅଫିସ୍‌ରେ ତଳିଆ ଅଫିସର୍ । ଭବିଷ୍ୟତ ଅଛି ପିଲାଟିର ।

ମୁଁ ନୀରବ ରହିଲି । ମୋ ମନ ଭିତରେ କିପରି ଚାଞ୍ଚଲ୍ୟ ସୃଷ୍ଟି ହୋଇଯାଇଥିଲା ।

ସେ ପୁଣି କହିଲେ : ପାତ୍ରଟିର ବାବା ନାହାନ୍ତି । ମା' ଆଉ ଗୋଟିଏ ସାନ ଭଉଣୀ । ବରାହ ନଗରରେ ତାଙ୍କର ନିଜ ଘର ଅଛି । ସବୁ ଦିଗରୁ ଭଲ !

ମୁଁ କହିଲି : ତା'ହେଲେ ପ୍ରସ୍ତାବଟା ପକ୍‌କା କରି ନିଅନ୍ତୁ ।

ସେ ସେହିପରି ଶାନ୍ତ କଣ୍ଠରେ କହିଲେ : ଆଜି ବରଘର ତରଫରୁ ରଂଜିତାକୁ ଦେଖିବାକୁ ଆସିବେ ।

ମୁଁ ଆଉ କ'ଣ ଉତ୍ତର ଦେଇଥାଆନ୍ତି !

କିଛି ସମୟ ନୀରବରେ କଟିଗଲା ।

ଚା' କପ୍‌ଟି ଶେଷ କରି ମୁଁ ଟେବୁଲ୍ ଉପରେ ରଖିଦେଲି ।

ସେ ସେହିପରି ଠିଆହୋଇ ରହି କ'ଣ ଚିନ୍ତା କରୁ କରୁ କହିଲେ : ମୋର କିନ୍ତୁ ଇଚ୍ଛା ନୁହେଁ ରଂଜିତାକୁ ସେଠାରେ ବାହା ଦେବା ପାଇଁ ।

: କାହିଁକି ? ମୁଁ ପଚାରି ଦେଲି ।

: ରଂଜିତାଟା କିଛି ଜାଣି ନାହିଁ । ତା'ଛଡ଼ା...

ସେ ନୀରବ ହୋଇ ଚା' କପ୍‌ଟା ଟେବୁଲ୍ ଉପରୁ ଉଠାଇ ଆଣି କହିଲେ : ତମେ ବାବା ଟିକିଏ ଆଜି ଚାରିଟା ବେଳକୁ ଆସିପାରିବ ?

: କାହିଁକି ?

: ସେମାନେ ରଂଜିତାକୁ ଦେଖିବାକୁ ଆସିବେ । ସେମାନଙ୍କ ସହିତ କଥା କହିବାକୁ କେହି ନାହାନ୍ତି ।

ମୁଁ କହିଲି : ମଉସା, ରଂଜିତାର ମାମୁ, ଏମାନେ ସବୁ ନିଶ୍ଚୟ ଥିବେ ।

: ହଁ, କିନ୍ତୁ ସେମାନେ କେହି ପ୍ରତିବାଦ କରିବେ ନାହିଁ । ସମସ୍ତେ ଯେପରି ରଂଜିତାକୁ ପରଗୋତ୍ରୀ କରି ଦେବା ପାଇଁ ବ୍ୟସ୍ତ ହୋଇ ଲାଗିପଡ଼ିଛନ୍ତି ।

: ମୁଁ ଆସି କ'ଣ କରିବି ? ପଚାରିଲି ।

: ତମେ ବାବା ପ୍ରତିବାଦ କରିବ । କହିବ, ରଂଜିତାର ବିବାହ ସେଠାରେ ହେବ ନାହିଁ ।

ମନେମନେ ମୁଁ ହସିଲି । କହିଲି : ମୋ କଥା ସେମାନେ ଶୁଣିବେ କାହିଁକି ?

: ଶୁଣିବେ ବାବା, ତମେ ଟିକିଏ ଚାରିଟା ବେଳକୁ ଆସିବ ।

ମୁଁ ଆସିବାକୁ ସମ୍ମତି ଜଣାଇ ଉଠି ଗାଧୁଆ ଘରକୁ ଚାଲିଗଲି । ମୋ ମନ ଭିତରେ ବି ଦ୍ୱନ୍ଦ୍ୱ ସୃଷ୍ଟି ହୋଇଯାଇଥିଲା ।

ଯେତେ ଯାହାହେଉ, ମନରେ କୌଣସି ଆଶା ଆକାଂକ୍ଷା ଥାଉ ନ ଥାଉ ରଂଜିତାକୁ ମୋତେ ଭଲ ଲାଗିଥିଲା ।

ହଠାତ୍ ବାହାଘର ପ୍ରସ୍ତାବଟା ନ ଆସିଥିଲେ କ'ଣ ଚଳି ନଥାନ୍ତା ! ତେବେ ଗୋଟାଏ ସାନ୍ତ୍ୱନା ଯେ, ଏ ପ୍ରସ୍ତାବରେ ମା' ଏକମତ ନୁହନ୍ତି । ତେଣୁ ପ୍ରସ୍ତାବଟା ହୁଏତ ଭାଂଗିଯାଇପାରେ ।

କିନ୍ତୁ... ତାଙ୍କର ଅମତ ହେବାର କ'ଣ ଅଛି ? ବର ଭଲ, ଘର ଭଲ । ଏପରି ସୁଯୋଗ କେତେଜଣ ମା'ବାପାଙ୍କ କପାଳରେ ଯୁଟେ ? ତା'ହେଲେ ରଂଜିତାର ମା' ଦ୍ୱିଧାବୋଧ କରୁଛନ୍ତି କାହିଁକି ? ସେ କ'ଣ ରଂଜିତାକୁ ଆହୁରି କୌଣସି ସୁପାତ୍ରରେ ଅର୍ପଣ କରିବାକୁ ଚାହାନ୍ତି ?

ମୁଁ ଗାଧୋଇ ପାଧୋଇ ଫେରିଆସି ଦେଖିଲି, ରଂଜିତାର ମା' ସେତେବେଳଯାଏ ଯାଇ ନାହାନ୍ତି ।

ମୋତେ ଦେଖି କହିଲେ : ବାବା, ତୁମକୁ ଗୋଟିଏ କଥା ପଚାରିବି ପଚାରିବି ହୋଇପାରୁ ନାହିଁ ।

: କ'ଣ ପଚାରନ୍ତୁ, ମୁଁ କହିଲି ।

: ରଂଜିତାକୁ ତ ତମେ ଅନେକ ଦିନରୁ ଦେଖୁଚ । ତା'ର ଚାଲିଚଳଣ, କଥାବାର୍ତ୍ତା, କେଉଁଥିରେ କିଛି ଅସ୍ୱାଭାବିକ ମନେହେଉଛି ?

: ନା ତ ! ମୁଁ ସଂଗେ ସଂଗେ ଉତ୍ତର ଦେଲି ।

: ବାବା, ରଂଜିତାର ମନଟା କିନ୍ତୁ ପଥର । କ'ଣ ଯେ ତା' ଭିତରେ ଅଛି ମୁଁ ମା' ହୋଇ ବି ଆଜିଯାଏ ବୁଝିପାରିଲି ନାହିଁ । ଅବଶ୍ୟ ଆଗରୁ ସବୁ ଭଲ ଥିଲା । ଏଇ ତିନି ଚାରିବର୍ଷ ହେବ କ'ଣ ଯେ ତା'ର ହୋଇଯାଇଛି, ସେ କାହାରି ସହିତ କଥା କୁହେ ନାହିଁ କିମ୍ବା କାହାରି ଆଡ଼କୁ ଚାହେଁ ନାହିଁ । ଦୀର୍ଘ ଚାରିବର୍ଷ ପରେ ସେ ପ୍ରଥମେ ତମରି ସହିତ କଥା କହୁଛି । ତମପାଇଁ ଚା' ଘେନି ଆସୁଛି । ଦୁଇ ତିନିଘଣ୍ଟା ତମ ପାଖରେ କଟାଇ କରି ଯାଉଛି, ନୋହିଲେ, ବାବା...

ହଠାତ୍ ରଂଜିତାର ମା' କାନ୍ଦ କାନ୍ଦ ହୋଇ ଉଠିଲେ ।

ମୁଁ କହିଲି : ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି, ସବୁ ଠିକ୍ ହୋଇଯିବ ।

: କିଛି ଠିକ୍ ହେବ ନାହିଁ ବାବା । ରଂଜିତା ସେଠି ବାହା ହେଲେ ଆତ୍ମହତ୍ୟା କରିବ ।

ଆତ୍ମହତ୍ୟା ? ଆତ୍ମହତ୍ୟା ନାଁ ଶୁଣି ମୁଁ ଚମକି ଉଠିଲି ।

ରଂଜିତା ଝିଅ ହୋଇ ଜନ୍ମ ହୋଇଛି ଯେତେବେଳେ, ଯେଉଁଠି ହେଲେ ତାକୁ ବାହା ହେବାକୁ ହେବ । କିନ୍ତୁ ଆତ୍ମହତ୍ୟା କରିବା ମୂଳରେ କୌଣସି ଯୁକ୍ତି ମୁଁ ଖୋଜି ପାଉ ନଥିଲି ।

ଏଥର ସେ ଭୋ ଭୋ ହୋଇ କାନ୍ଦି ଉଠିଲେ । ମୋ ହାତ ଦୁଇଟାକୁ ମୁଠେଇ ଧରି କହିଲେ : ଏ କ୍ଷେତ୍ରରେ ଏକମାତ୍ର ତୁମେ ମୋର ସାହା ଭରସା ବାବା । ଏକମାତ୍ର ତୁମେ ରଂଜିତାକୁ ବଂଚେଇ ପାରିବ ।

ମୁଁ ସ୍ତବ୍ଧ ହୋଇ ଯାଇଥିଲି ।

କ'ଣ କହୁଛନ୍ତି ଏହି ଭଦ୍ର ମହିଳା !

ରଂଜିତାକୁ ଏକମାତ୍ର ମୁଁ ବଂଚାଇ ପାରିବି ! ଏ କଥାର ଅର୍ଥ କ'ଣ ?

ସେ ହାତଟାକୁ ସେହିପରି ମୁଠାଇଧରି କହିଲେ : ତମେ ଖାଲି ରଂଜିତାର ବାପା ଆଉ ମାମୁ ଆଗରେ କହିବ ରଂଜିତାର ଦାୟିତ୍ୱ ତମେ ଗ୍ରହଣ କରିବ । ଖାଲି ଏତିକି ବାବା, ମୋର ଏହି ଅନୁରୋଧଟି ତୁମକୁ ରଖିବାକୁ ହେବ ।

ଭଦ୍ରମହିଳାଙ୍କ ପ୍ରସ୍ତାବରେ ହଠାତ୍ ମୋ ଦେହଟାରେ ଏକ ବିଦ୍ୟୁତ୍ ପ୍ରବାହ ଖେଳିଗଲା । କ'ଣ ଏ କହୁଛନ୍ତି ! ମୋ ମତାମତର ଏହାଙ୍କ ପାଖରେ କ'ଣ କୌଣସି ମୂଲ୍ୟ ନାହିଁ ? ରଂଜିତାର ଦାୟିତ୍ୱ ମୁଁ ବା ବହନ କରିବି କାହିଁକି ? କେଉଁ ସ୍ୱାର୍ଥରେ ?

ମୋର ନୀରବତା ବୋଧହୁଏ ତାଙ୍କୁ ଆହୁରି ବିଚଳିତ କରି ପକାଇଲା । ସେ ଅଶ୍ରୁ ବିଜଡ଼ିତ କଣ୍ଠରେ କହିଲେ : ତୁମଛଡ଼ା ରଂଜିତାର ଆଉ ଅନ୍ୟବାଟ କିଛି ନାହିଁ ବାବା । ତମେ ରଖିଲେ ରଖିବ, ମାରିଲେ ମାରିବ । କିନ୍ତୁ ଗୋଟିଏ କଥା ବାବା, ରଂଜିତା ଯେବେ ଆତ୍ମହତ୍ୟା କରେ, ତା'ପରଦିନ ଦେଖିବ ମୋ ଦେହଟା ବି ଶୂନ୍ୟରେ ଝୁଲୁଛି ।

ମୁଁ ଆହୁରି ଶଙ୍କିତ ହୋଇ ପଡ଼ିଲି ।

ରଂଜିତା ଆତ୍ମହତ୍ୟା କଲେ ସଂଗେ ସଂଗେ ତା'ର ମା' ବି ଆତ୍ମହତ୍ୟା କରିବେ ।

ମୁଁ ମହା ସମସ୍ୟାରେ ପଡ଼ିଯାଇଥିଲି ।

ଏତେ ସହଜରେ ସମଗ୍ର ଜୀବନ ପାଇଁ ଏକ ନିଷ୍ପତ୍ତି ନେବା କ'ଣ ଉଚିତ । ତା'ଛଡ଼ା ମୋର ବାପାମା' ଆତ୍ମୀୟସ୍ୱଜନ ଅଛନ୍ତି । ସେମାନଙ୍କର କେତେ ଆଶା ଭରସା ମୋ ଉପରେ ।

ହଠାତ୍ କିଛି ଉତ୍ତର ଦେବା ମୋ ପକ୍ଷରେ ସମ୍ଭବ ହୋଇ ଉଠି ନଥିଲା ।

ମୋ ଜଡ଼ତା ଘୁଞ୍ଚାଇଲେ ନିଜେ ରଂଜିତାର ମା' ।

ସେ ପୁଣି କହିଲେ : ତମ ମନର କଥା ମୁଁ ବୁଝିପାରୁଛି ବାବା । ଏତେ ଚଞ୍ଚଳ ତମେ ତମ ଜୀବନର ଶେଷ ନିଷ୍ପତ୍ତି କରିବା ସମ୍ଭବ ନୁହେଁ । ତା'ଛଡ଼ା ତମର ଗୁରୁଜନମାନେ ଅଛନ୍ତି । ସବୁ ଦୃଷ୍ଟିରୁ ବିଚାର କରି ଦେଖିଲେ, ତମର ନୀରବ ରହିବା ଛଡ଼ା ଅନ୍ୟ ବାଟ ନାହିଁ । ତଥାପି ବାବା, ଆଜି ମୋତେ ଟିକିଏ ସାହାଯ୍ୟ କରିବାକୁ ପଡ଼ିବ । ମୁଁ କହୁନାହିଁ ତମେ ରଂଜିତାର ଭାର ସମଗ୍ର ଜୀବନ ପାଇଁ ବହନ କର । ଆଜି ରଂଜିତାର ବାପା ଆଉ ମାମୁ ଯେଉଁ ଶେଷ ନିଷ୍ପତ୍ତି କରିବାକୁ ଯାଉଛନ୍ତି ତାହା ରଂଜିତା ପକ୍ଷରେ ଶୁଭ ନୁହେଁ ଜାଣି ମୁଁ ତମ ପାଖରେ ଗୁହାରି କରୁଛି । ଅନ୍ତତଃ ଆଜିର ଏହି ମହାସଂକଟରୁ ତମେ ରଂଜିତାକୁ ବଂଚେଇ ଦିଅ, ତାପରେ ମୁଁ ଆଉ ରଂଜିତା କଥା ତୁମକୁ କହିବି ନାହିଁ । ତା' ବୋଝ

ବୋହିବାର ଦାୟିତ୍ୱ ମୁଁ ତୁମକୁ ଦେବି ନାହିଁ । ଆଚ୍ଛା କହିଲ ବାବା, ମୁଁ ଯଦି ତମର ମା' ହୋଇଥାଆନ୍ତି, ତମେ କ'ଣ ମୋ କଥା ରଖନ୍ତ ନାହିଁ ।

ମୁଁ ଓଦା ଟାଓ୍ୱେଲ୍ ଖଣ୍ଡେ ପିନ୍ଧି ସେହିପରି ଠିଆ ହୋଇଥିଲି ।

ଭଦ୍ରମହିଳା ମୋଠାରୁ କଥା ଆଦାୟ ନ କରି ଯେପରି ଛାଡ଼ିବେ ନାହିଁ, ବୋଧହୁଏ ଦୃଢ଼ ପ୍ରତିଜ୍ଞ ହୋଇ ଆସିଥିଲେ ।

ଶେଷରେ ମୁଁ କହିଲି : ଆପଣ ଯାଆନ୍ତୁ, ମୁଁ ଚାରିଟା ବେଳକୁ ଆପଣଙ୍କ ଘରକୁ ଆସିବି । ରଂଜିତାର ଦାୟିତ୍ୱ ବହନ କରିବା କଥା ସ୍ୱୀକୃତି ଜଣାଇବି । କିନ୍ତୁ ମୋର ରଂଜିତା ପ୍ରତି କୌଣସି ଦାୟିତ୍ୱ ନାହିଁ ।

: ନା ବାବା, ରଂଜିତା ପ୍ରତି ତମର କୌଣସି ଦାୟିତ୍ୱ ନାହିଁ । ସେ ଯେପରି ମୋ ସ୍ୱୀକୃତିରେ କୃତ୍ୟକୃତ୍ୟ ହୋଇଯାଇଥିଲେ । ମୋ ମୁଣ୍ଡରେ ହାତ ବୁଲେଇ କହିଲେ, ମୋତେ ଏକ ମହା ଦୁଃଶ୍ଚିନ୍ତାରୁ ଉଦ୍ଧାର କଲ ବାବା । ଭଗବାନ ତମର ମଙ୍ଗଳ କରିବେ ।

ସେ ଚାଲିଯିବା ପୂର୍ବରୁ ମୋତେ ଆଉଥରେ କହିଗଲେ, ଚାରିଟା ବେଳେ ନିଶ୍ଚୟ ଆସି ତାଙ୍କ ଘରେ ପହଞ୍ଚିବା ପାଇଁ ।

ମୁଁ ସମ୍ମତି ଜଣାଇଲି ।

ସେ ଚାଲିଗଲେ ।

ମୁଁ ଘରର ଦରଜା ବନ୍ଦ କରି ଆସି ସେହି ଓଦା ଟାଓ୍ୱେଲ୍‌ରେ ଇଜି ଚେୟାର୍ ଉପରେ ଶୋଇପଡ଼ିଲି । ମୋ ଦେହରୁ ଗମ୍‌ଗମ୍ ହୋଇ ଝାଳ ବହିଗଲା ।

ଆଶ୍ଚର୍ଯ୍ୟ !!

କ'ଣ ଏଇ ରଂଜିତା ରହସ୍ୟ ! ବାପା ମାମୁ ବିବାହ ଦେବାକୁ ଚାହାନ୍ତି ରଂଜିତାର ଗୋଟିଏ ଭଲ ପାତ୍ର ସହିତ । କିନ୍ତୁ ମା' ଷଡ଼ଯନ୍ତ୍ର କରି ଭାଂଗି ଦେବାକୁ ଚାହାନ୍ତି ସେ ପ୍ରସ୍ତାବଟା । ମା'ମାନେ ସବୁଦିନ ସନ୍ତାନମାନଙ୍କ ପାଇଁ କଲ୍ୟାଣମୟୀ । ଅଥଚ ଏ କ୍ଷେତ୍ରରେ...

ନିଶ୍ଚୟ କୌଣସି ରହସ୍ୟ ଲୁଚି ରହିଛି ଏହା ପଛରେ ।

କିନ୍ତୁ ମୋର ବର୍ତ୍ତମାନ କ'ଣ କରଣୀୟ !

ରଂଜିତାର ବିବାହ ପ୍ରସ୍ତାବ କାର୍ଯ୍ୟକାରୀ ହେଲେ ସେ ଆତ୍ମହତ୍ୟା କରିବ ।

ସତରେ ରଂଜିତା ଆତ୍ମହତ୍ୟା କରିବ ?

ରଂଜିତାର ଭସା ଭସା ବୋକା ବୋକା ଆଖି ଦୁଇଟି ମୋ ସାମ୍‌ନାରେ ଭାସି ଉଠିଲା । ସତରେ କ'ଣ ରଂଜିତା ବିବାହ ଚାହେଁନି ?

କାହିଁକି ବା ଚାହେଁନି ?

ନାରୀ ଆଉ ପୁରୁଷର ଧର୍ମ ହେଲା ଉପଯୁକ୍ତ ବୟସରେ ବିବାହ କରିବା । ବିବାହ ବୟସ ଆସିଗଲେ ଦେହ ମନରେ ପ୍ରତ୍ୟେକ ନରନାରୀ ସେଇ ଦିନଟିର ପ୍ରତୀକ୍ଷାରେ ରୁହନ୍ତି । ଯିଏ ଚାହେଁ ନାହିଁ, ସେ ନିଶ୍ଚୟ ଏକ ବ୍ୟତିକ୍ରମ । ମାନେ ଆବନୋରମାଲ ।

ରଂଜିତା କ'ଣ ସେଇଆ ?

କାହିଁ ? ତା'ର ଚାଲିଚଳଣ, ଆଚାର ଆଚରଣ, କେଉଁଥିରେ ତ ତାହା ପ୍ରକାଶ ପାଏ ନାହିଁ ।

ଗଭୀର ରାତିରେ ଲୁଚି ଲୁଚି ଆସି ମୋ ଘରେ ଧୂପ ଜାଳିବା, ମୋ ବିଛଣା ଉପରେ ବଉଳ ଫୁଲର ମାଳା ସଜେଇ ରଖିବା ନିଶ୍ଚୟ କୌଣସି ଆବନୋରମାଲିଟିର ଲକ୍ଷଣ ନୁହେଁ । ସବୁ ନାରୀ ଯାହା ଚାହାନ୍ତି, ରଂଜିତା ମନରେ ବି ସେଇ କାମନା ଜିଇ ରହିଛି । ସେ କଥା କ'ଣ ତା'ର ମା' ହୋଇ ସେ ବୁଝିପାରୁ ନାହାନ୍ତି ।

ତା'ଛଡ଼ା ସେ ଇଂଗିତ ଦେଇଗଲେ, ରଂଜିତା ଅନେକ ଦିନ ପରେ ମୋ ସହିତ କଥା କହିଲା । ଆଉ କାହାରି ସହିତ ଆଜିଯାଏ କଥାବାର୍ତ୍ତା କରୁ ନଥିଲା । ଅବଶ୍ୟ ଏ ରହସ୍ୟର ସଂଧାନ ମୋତେ କରିବାକୁ ହେବ । ରଂଜିତା କ'ଣ କୌଣସି ଏକ ଶକ୍ତ ରୋଗରେ ଆକ୍ରାନ୍ତ ହୋଇଥିଲା ?

ଜୀବନରେ କ'ଣ ବଡ଼ ଗୋଟାଏ ଧକ୍‌କା ଖାଇଥିଲା ?

ଯାହାହେଉ, ସମୟ ସେ ସବୁ ସମସ୍ୟାର ସମାଧାନ କରିବ ।

ମୁଁ ପ୍ରକୃତିସ୍ଥ ହେବାକୁ ଚେଷ୍ଟା କଲି ଏବଂ ଲୁଗାପଟା ବଦଳେଇ ଅଫିସ୍‌କୁ ବାହାରି ପଡ଼ିଲି । ମୁଣ୍ଡଟା କିନ୍ତୁ ଗୋଳମାଳିଆ ହୋଇ ଯାଇଥିଲା ।

ସବୁ କିପରି ଅସଂଲଗ୍ନ ମନେ ହେଉଥିଲା ।

ସେଦିନ ବହୁ କଷ୍ଟରେ ଅଫିସ୍‌ରେ କେତୋଟି ଘଣ୍ଟା କଟେଇଲି । ମୋ ରୁମ୍‌ର ଦିଆଲ ଘଡ଼ିଟାରେ ବାରଟା, ଗୋଟାଏ, ଦୁଇଟା ବାଜିଗଲା ।

ଆଉ ମୁଁ ସ୍ଥିର ହୋଇ ବସିପାରିଲି ନାହିଁ ।

ଚା' ଆଉ କଫି ସେତେବେଳକୁ ପ୍ରଚୁର ପିଆ ସରିଥିଲା । ମୋର ସହକାରୀମାନେ ମୋ ଆଚରଣରେ ବୋଧହୁଏ ସନ୍ଦିଗ୍ଧ ହୋଇଥିଲେ ।

କିନ୍ତୁ ଦୁଇଟା ପରେ ମୁଁ ଆଉ ସିଟ୍‌ରେ ବସିପାରିଲି ନାହିଁ ।

ଚାରିଟାବେଳେ ମୋତେ ରଂଜିତା ଘରେ ପହଞ୍ଚିବାକୁ ହେବ । ସର୍ବସମ୍ମୁଖରେ ରଂଜିତାର ଦାୟିତ୍ୱ ବହନ କରିବାର ପ୍ରସ୍ତାବରେ ମୋତେ ସମ୍ମତି ଜ୍ଞାପନ କରିବାକୁ ହେବ ।

ହୁଏତ ସେଠାରେ ରଂଜିତା ଉପସ୍ଥିତ ଥିବ ।

ତା' ସମ୍ମୁଖରେ ତା' ଜୀବନର ଦାୟିତ୍ୱ ବହନ କରିବାର ସ୍ୱୀକୃତି ଦେଇ ପରେ କ'ଣ ମୁଁ ଅସ୍ୱୀକାର କରିପାରିବି ?

ରିକ୍‌ସାବାଲାଟା ମୋତେ କୁଆଡ଼େ ନେଇଯାଉଥିଲା କେଜାଣି ! ତା'ର ଯୁଆଡ଼େ ଇଚ୍ଛା ମୋତେ ନେଇଯାଉ । ରଂଜିତା ଘରଠାରୁ ଦୂରକୁ ଆହୁରି ଅନେକ ଦୂରକୁ ନେଇଯାଉ । ମୁଁ ଯେପରି ଇଚ୍ଛା କରି ବି ଆଉ ଚାରିଟା ବେଳକୁ ଫେରିଆସି ନ ପାରେ ।

ରିକ୍‌ସାବାଲାଟା ଗାନ୍ଧି ଘାଟରେ ରିକ୍‌ସା ଠିଆ କରି ମୋତେ ଡାକି ଉଠାଇଲା । ମୁଁ କୁଆଡ଼େ ଶୋଇ ପଡ଼ିଥିଲି ।

ସେତେବେଳେ ଗାନ୍ଧି ଘାଟରେ ବିଶେଷ କେହି ଲୋକ ନଥିଲେ । ମୁଁ ଯାଇ ଗଙ୍ଗା ବକ୍ଷକୁ ଚାହିଁ ଠିଆ ହେଲି ।

ଅସଂଖ୍ୟ ଲହରୀ । ଚୂନା ଚୂନା ହୋଇ ଭାଂଗି ଭାଂଗି ମିଳେଇ ଯାଉଛି ।

ଠିକ୍ ମଣିଷ ମନର ଆଶା ଆକାଂକ୍ଷା ପରି ।

ଆହୁରି କେତେବେଳଯାଏ ସେଇ ଗଙ୍ଗା ଗର୍ଭକୁ ଚାହିଁ ଠିଆହୋଇ ଥାଆନ୍ତି କେଜାଣି ହଠାତ୍ କେତେଗୁଡ଼ାଏ ମିଳିତ କଣ୍ଠର ଚିତ୍କାରରେ ମୋର ଧ୍ୟାନଭଂଗ ହେଲା । ମୋଠାରୁ

ଖଣ୍ଡେ ଦୂରରେ କେତେଗୁଡ଼ାଏ ଲୋକ ରୁଣ୍ଡ ହୋଇ ଗଙ୍ଗା ବକ୍ଷରୁ କାହାକୁ ଯେପରି ଟାଣି ଉଠାଉଥିଲେ ।

ମୁଁ ପାଖକୁ ଯାଇ ଦେଖିଲି, ଗୋଟିଏ ତରୁଣୀ । ଅର୍ଦ୍ଧଚେତନ ଅବସ୍ଥାରେ ଶୋଇ ରହିଛି । ଲୋକମାନେ ଘେରି ତାକୁ ପ୍ରଶ୍ନବାଣରେ ବିବ୍ରତ କରି ପକାଉଛନ୍ତି । ସେ ରହି ରହି ଅସଂଲଗ୍ନ କଣ୍ଠରେ ଉତ୍ତର ଦେଉଛି ।

ତରୁଣୀଟି ଗଙ୍ଗାକୁ ଡେଇଁ ଆତ୍ମହତ୍ୟା କରିବାର ଚେଷ୍ଟା କରିଥିଲା । କିନ୍ତୁ ଶେଷ ପର୍ଯ୍ୟନ୍ତ ତା'ର ଉଦ୍ଦେଶ୍ୟ ସଫଳ ହେଲା ନାହିଁ । ଲୋକେ ତାକୁ ଗଙ୍ଗା ବକ୍ଷରୁ ମୃତ୍ୟୁଦୁଆରୁ ଫେରାଇ ଆଣିଲେ ।

ତା'ହେଲେ ?

ହଠାତ୍ ମୋର ମନେପଡ଼ିଗଲା ରଂଜିତା କଥା ।

ମୁଁ ତାଙ୍କ ଘରେ ଠିକ୍ ସମୟରେ ନ ପହଞ୍ଚିଲେ ସେ ହୁଏତ ଏହାରି ପରି ଆତ୍ମହତ୍ୟା କରିବାକୁ ଉଦ୍ୟମ କରିବ ।

ହାତଘଡ଼ିକୁ ଚାହିଁଲି । ଅବଶ୍ୟ ତିନିଟା ବାଜି ଯାଇଥିଲା ।

ଚେଷ୍ଟା କଲେ ଯାଇ ଠିକ୍ ସମୟରେ ରଂଜିତା ଘରେ ପହଞ୍ଚି ହେବ ।

ଗୋଟିଏ ତରୁଣ ହସି ହସି ଆସି ମୋ ପାଖରେ ପରିହାସ ମିଶା କଣ୍ଠରେ କହିଲା : ସେ ଝିଅଟା କାହିଁକି ଆତ୍ମହତ୍ୟା କରୁଥିଲା ଜାଣନ୍ତି ଆପଣ ?

ମୁଁ ପ୍ରଶ୍ନବାଚୀ ଆଖିରେ ତା' ମୁହଁକୁ ଅନାଇଲି ।

ତା'ର ପ୍ରେମିକ ପାଇଁ, ତରୁଣଟି କହି ଚାଲିଥିଲା । ଝିଅଟା ଭଲ ପାଇଥିଲା ଜଣକୁ । ଦୁହିଁଙ୍କ ଭିତରେ ବିବାହର ପ୍ରତିଶ୍ରୁତି ଥିଲା । କିନ୍ତୁ ଝିଅର ବାପା ତାହା ଜାଣି ମଧ୍ୟ ଅନ୍ୟ ଗୋଟିଏ ପାତ୍ର ସହିତ ବିବାହ ସ୍ଥିର କଲେ । ଆଜି ରାତିରେ ବିବାହ । ବର ହୁଏତ ଆସିବ ଆଉ ଦି'ଘଣ୍ଟା ପରେ । କିନ୍ତୁ...

ମୋର ଆଉ ଲୋକଟିର କଥା ଶୁଣିବାକୁ ଧୈର୍ଯ୍ୟ ନଥିଲା । ସାମ୍ନାରେ ଗୋଟାଏ ଟ୍ୟାକ୍ସି ଯାଉଥିବାର ଦେଖି ଡାକି ଅଟକାଇଲି ।

ନା ନା, ରଂଜିତାର ଜୀବନ ମୋତେ ରକ୍ଷା କରିବାକୁ ହେବ । ନ ହେଲେ କାଲି ସକାଳୁ ତା'ର ମୃତଦେହ ଦେଖି ମୁଁ କ'ଣ ଜୀବନସାରା ନିଜକୁ ସୁସ୍ଥ ରଖିପାରିବି ? ପରେ ଯାହାହେଉ, ଆଜି ଅନ୍ତତଃ ରଂଜିତାର ଦାୟିତ୍ୱ ବହନର ପ୍ରତିଶ୍ରୁତି ମୋତେ ସର୍ବ ସମକ୍ଷରେ ଦେବାକୁ ହେବ ।

ଟ୍ୟାକ୍ସି ଚାଲିଥିଲା ।

ଟ୍ୟାକ୍ସି ଚକ ପରି ମୋ ମୁଣ୍ଡର ଭାବନା ଗୁଡ଼ାକ ଘୂରୁଥିଲେ । ରଂଜିତାର ମା' କ'ଣ ରଂଜିତାର ମନକଥା ଜାଣି ପାରିଛନ୍ତି ? ସେ କ'ଣ ବୁଝି ପାରିଛନ୍ତି ରଂଜିତା ମୋତେ ଭଲପାଏ । ମୋ ପାଇଁ ଫୁଲ ଗୁନ୍ଥେ, ଧୂପ ଜାଳେ । ମୋତେ ମନ ପ୍ରାଣରେ ଚାହେଁ !

ରଂଜିତା କ'ଣ ମା' ଆଗରେ ଖୋଲାଖୋଲି ଭାବରେ ସବୁ କଥା କହିଛି ଏବଂ ଆହୁରି କ'ଣ କହିଛି, ମୋତେ ଯଦି ଅନ୍ୟତ୍ର ବିବାହ ଦିଅ ତା'ହେଲେ ମୁଁ ଆତ୍ମହତ୍ୟା କରିବି !!

ଅସମ୍ଭବ ନୁହେଁ ।

ଆଜିକାଲିକା ଝିଅମାନଙ୍କ ପକ୍ଷରେ ସବୁ ସମ୍ଭବ ।

କିନ୍ତୁ ରଂଜିତା ତ ମୋତେ ଖୋଲାଖୋଲି ଭାବରେ ପଚାରି ପାରି ଥାଆନ୍ତା । ରଂଜିତା ତ ମୋଠାରୁ ପ୍ରତିଶ୍ରୁତି ଆଦାୟ କରି ପାରି ଥାଆନ୍ତା !

କାଲି ରଂଜିତା ସହିତ ଏ ସମ୍ବନ୍ଧରେ ମୁଁ ଖୋଲାଖୋଲି ଭାବରେ କଥାବାର୍ତ୍ତା କରିବି । ତାକୁ ପଚାରିବି ଯାହାକୁ ସେ ଜୀବନ ସାଥୀ କରିବାକୁ ଚାହୁଁଛି, ତା' ସହିତ ଲୁଚକାଳି ଖେଳି ଲାଭ କ'ଣ ?

ଟ୍ୟାକ୍ସି ଯାଇ ଠିଆହେଲା ନିର୍ଦ୍ଦିଷ୍ଟ ସ୍ଥାନରେ ।

ମୁଁ ଗାଡ଼ିରୁ ଓହ୍ଲାଇଲି ।

ରଂଜିତାର ମା' ତାଙ୍କ ଦୁଆର ମୁହଁରେ ଠିଆ ହୋଇଥିଲେ ।

ବୋଧହୁଏ ମୋରି ପ୍ରତୀକ୍ଷାରେ । ମୋତେ ଦେଖିବା ମାତ୍ରକେ ତାଙ୍କ କଣ୍ଠରେ କୃତଜ୍ଞତା ଫୁଟି ଉଠିଲା । କହିଲେ : ଆସିଲ ବାବା ! ମୁଁ ବଡ଼ ଦୁର୍ଭାବନା ଭିତରେ ଥିଲି । ରଂଜିତାର ବାପା ଆଉ ମାମୁ ତମରି ପ୍ରତୀକ୍ଷାରେ ବସିଛନ୍ତି । ତମଠାରୁ ପ୍ରତିଶ୍ରୁତି ପାଇଲେ ସେମାନେ ତେଣେ ଆଉ ଜବାବ ଦେବେ ନାହିଁ ।

ମୋ ଛାତିରୁ ଅତଡ଼ା ଖସି ପଡ଼ିଲା ।

ରଂଜିତାର ବାପାଙ୍କୁ ମୁଁ ଚିହ୍ନିଚି । ବହୁତ ଥର ତାଙ୍କ ସହିତ କଥାବାର୍ତ୍ତା ହୋଇଛି । କିନ୍ତୁ ରଂଜିତାର ମାମୁ ! କି ପ୍ରକୃତିର ହୋଇଥିବେ କେଜାଣି ? ସେଇ ଯେତେବେଳେ ବିବାହ ପ୍ରସ୍ତାବଟା ଆଣିଥିଲେ, ନିଶ୍ଚୟ ବର ତରଫରୁ ତାଙ୍କର କୌଣସି ସ୍ୱାର୍ଥ ଥିବ । ମୁଁ ତାଙ୍କ ସ୍ୱାର୍ଥରେ ବାଧା ଦେଉଛି । ମୋତେ ସେ କି ଦୃଷ୍ଟିରେ ଦେଖିବେ କିଏ କହିବ !!

ସେମାନେ ବସିଥିଲେ । ଆହୁରି ଦୁଇ ତିନିଜଣ ଭଦ୍ରଲୋକ ବସିଥିଲେ ସେଠାରେ । ମୁଁ ପହଞ୍ଚିବା ମାତ୍ରେ ସମସ୍ତଙ୍କ ଆଖି ଏକାଥରେ ଆସି ନିବଦ୍ଧ ହେଲା ମୋରି ଉପରେ ।

ମୁଁ ଆଉ ଥରେ ବିଚଳିତ ହୋଇ ପଡ଼ିଲି ।

ଶୂଳିକାଠକୁ ଠେଲି ନେଲାପରି ସେତେବେଳେ ମୋର ଅବସ୍ଥା ।

ଚାରି ପାଖକୁ ଚାହିଁଲି, କେହି କୁଆଡ଼େ ନାହିଁ ।

କିନ୍ତୁ ଉପର ବାରଣ୍ଡାରେ ଅନେକ ମୁଖ । ସମସ୍ତେ କିପରି ଏକ କୌତୂହଳ ଦୃଷ୍ଟିରେ ଚାହିଁଛନ୍ତି ତଳକୁ ।

ଅପରାଧୀଟି ପରି ମୁଁ ଯାଇ ବସିଲି ନିର୍ଦ୍ଦିଷ୍ଟ ଏକ ଆସନରେ ।

ସେ ରଂଜିତାର ମାମୁ ହେବେ ବୋଧହୁଏ । ଚେହେରାଟା କିପରି ଟିକିଏ ଅସ୍ୱାଭାବିକ । ମୁଣ୍ଡର ବାଳ ଧଳା ହୋଇ ଆସୁଛି ।

ମୋତେ ସଙ୍ଗେ ସଙ୍ଗେ ପ୍ରଶ୍ନକଲେ : ତମରି ନାଁ ଦୀପକ ଚୌଧୁରୀ ?

ଭଦ୍ରଲୋକଙ୍କ ସ୍ୱରର ରୁକ୍ଷତାରେ ମୁଁ ଯେତେ କ୍ଷୁବ୍‌ଧ ହୋଇ ନଥିଲି, ମୋତେ କିନ୍ତୁ ତାଙ୍କର ଅସୌଜନ୍ୟତାବୋଧ ସେତେ ଉତ୍‌କ୍ଷିପ୍ତ କରି ଦେଇଥିଲା ।

ଗୋଟିଏ କଡ଼କୁ ରଂଜିତାର ମା' କରୁଣ ଦୃଷ୍ଟିରେ ମୋ ମୁହଁକୁ ଚାହିଁଥିଲେ । ତାଙ୍କ ଆଖି ସହିତ ଆଖି ମିଶି ନଥିଲେ, ମୁଁ ହୁଏତ ଭଦ୍ରଲୋକଙ୍କୁ ବେଶ୍ କଡ଼ା କଡ଼ା ଦି'ପଦ ଶୁଣାଇ ଦେଇ ପାରି ଥାଆନ୍ତି ।

ମୁଣ୍ଡ ହଲାଇ କେବଳ ସମ୍ମତି ଜଣାଇଲି ।

ସେ ପୁଣି ପଚାରିଲେ : ପେପର୍ ମିଲ୍‌ର ଅଫିସର ?

ବହୁ କଷ୍ଟରେ ନିଜକୁ ସଂଯତ କରି ପୁଣି ମୁଣ୍ଡ ହଲାଇଲି ।

ସେ ପୁଣି ପଚାରିଲେ : ତମେ ରଂଜିତାକୁ ଦେଖିଛ ?

: ହଁ । ମୁଁ ଉତ୍ତର ଦେଲି ।

: କେତେ ଦିନରୁ ତା' ସହିତ ପରିଚୟ ?

: ଅଳ୍ପ ଦିନ ହେବ ।

: ଏ ଯେଉଁ ପ୍ରସ୍ତାବଟି ଆଜି ଆମେ ପକ୍‌କା କରିବାକୁ ଯାଉଛୁ, ସେଥିରେ ତମର ବାପା ମା' କୌଣସି ଆପତ୍ତି କରିବେ ନାହିଁତ ?

ମୋର ନୀରବତାରେ ରଂଜିତାର ମା' ଟିକିଏ ବିଚଳିତ ହୋଇ ଉଠିଥିଲେ ।

ଭଦ୍ରଲୋକ ପୁଣି ପଚାରିଲେ : ବାପା ମା'ଙ୍କ ମତ ନେଇଛତ ?

ମୁଁ ପୁଣି ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

ସେ କହିଲେ : ଭଲ କରି ଭାବିଚିନ୍ତି କୁହ । ପଛରେ ପୁଣି ଯେପରି ଆମେ ଅସୁବିଧାରେ ନପଡୁ । କାରଣ ଆମ ହାତରେ ବର୍ତ୍ତମାନ ବି ଗୋଟିଏ ଭଲପାତ୍ର ଅଛି । କିନ୍ତୁ ଦିଦିର ଜିଦ୍ ତମପାଇଁ । ସେଇଥିପାଇଁ...

ମୁଁ ଉଠି ଠିଆହୋଇ ପଡ଼ିଥିଲି । ତାଙ୍କ କଥାରେ ବାଧାଦେଇ କହିଲି : ମୋ ସହିତ ଆଉ କିଛି କାମ ଅଛି ? ମୋତେ ଶୀଘ୍ର ଅଫିସ୍ ଫେରି ଯିବାକୁ ହେବ ।

: କିନ୍ତୁ ଆପଣଙ୍କ ବାପା ମା'ଙ୍କ ସହିତ କଥା କହି ପ୍ରସ୍ତାବଟା ପକ୍‌କା କରି ରଖିବାକୁ ହେବ । କାରଣ ବିବାହ ତିଥି ଆଉ ବେଶି ଦିନ ନାହିଁ ।

ଆପଣ ସେଥିପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ସବୁ ବନ୍ଦୋବସ୍ତ କରିଦେବି । କହିସାରି ମୁଁ ଘରୁ ବାହାରି ଯାଇଥିଲି ।

ଆଖି ବୁଜି ଏକା ନିଶ୍ୱାସକେ ଛୁଟି ପଳାଇ ଆସିଥିଲି । ମୋ ଦେହରୁ ଗମ ଗମ ହୋଇ ଝାଳ ବହି ଆସୁଥିଲା । କାରଣ ଏପରି ଏକ ପରିସ୍ଥିତିର ସମ୍ମୁଖୀନ ଇତି ପୂର୍ବରୁ କେବେ ମୁଁ ହୋଇ ନଥିଲି ।

ସିଧା ଘରକୁ ପଳାଇଆସିଲି ।

ବିଛଣାରେ ଦେହଟାକୁ କିଛି ସମୟ ଗଡ଼ାଇ ନଦେଲେ ହୁଏତ ମୁଁ ସମ୍ଭାଳି ହୋଇ ପାରିବି ନାହିଁ ।

କିନ୍ତୁ ମୋ ବିଛଣା ଉପରେ ଶୋଇଛି କିଏ ?

ଆପାଦ ମସ୍ତକ ଚାଦର ଘୋଡ଼ି ହୋଇ ଆରାମରେ ଶୋଇ ଯାଇଛି ।

କିଏ ହୋଇପାରେ ?

ଦେହରେ ହାତ ଦେଇ ଡାକିଲି । ରଂଜିତା ମୁହଁରୁ ଚାଦର କାଢ଼ି ଉଠି ବସିଲା । ମୁଁ ଆଶ୍ଚର୍ଯ୍ୟ ହେଲି ନାହିଁ ।

ମୋତେ ଦେଖି ରଂଜିତା ଟିକିଏ ହସିଲା । ଉଠି ଠିଆ ହେବାକୁ ଚେଷ୍ଟା କରୁ କରୁ କହିଲା : ଅନେକ ବେଳ ହେଲାଣି, ନା ?

ମୁଁ କହିଲି : ସଂଧ୍ୟା ହୋଇ ଆସିଲାଣି ।

: ସେମାନେ ଆମ ଘରୁ ଗଲେଣି ।

: କେଉଁମାନେ ?

ରଂଜିତା ହସିଲା । କହିଲା : ବାପା ମାମୁ ଯଦି ସେଠାରେ ଠିକ୍ କରନ୍ତି, ତେବେ ମୁଁ ସେମାନଙ୍କୁ ଉପଯୁକ୍ତ ଶାସ୍ତି ଦେବି ।

ଉପଯୁକ୍ତ ଶାସ୍ତିଟା କ'ଣ ସଙ୍ଗେ ସଙ୍ଗେ ମୋ ଆଖି ଆଗରେ ଭାସି ଉଠିଲା । ନା ନା, ରଂଜିତାକୁ ମୁଁ ଆତ୍ମହତ୍ୟା କରବାକୁ ଦେବି ନାହିଁ ।

ରଂଜିତା ଠିଆ ହୋଇଥିଲା । ମୁଁ ବି ଠିଆ ହୋଇଥିଲି ।

କହିଲି : ତମେ ତ ପୁଣି ଘର ସଂସାର କରିବ ରଂଜିତା !

ତମର ବୟସ ହୋଇଛି, ଏ ବୟସରେ ବାହା ହୋଇ ଘର ସଂସାର ନକଲେ, ପରେ ଅଶୋଭନ ମନେ ହେବ । ତା' ଛଡ଼ା ତମର ତ ଗୋଟିଏ ଆଶ୍ରୟ ଦରକାର !

ରଂଜିତା ମୁହଁରେ ଯେପରି କଳାଛାଇ ନଇଁ ଆସିଲା । ସେ କହିଲା-

: ସବୁ ଝିଅମାନେ ଏଇ ବୟସରେ ସେହିପରି ଆଶାକରି ଥାଆନ୍ତି, ମୁଁ ବି କରିଥିଲି । କିନ୍ତୁ ଏବେ ସେଗୁଡ଼ା ମୋତେ ଭାବିବାକୁ ବି କଷ୍ଟ ହେଉଛି ।

: କାହିଁକି ?

ରଂଜିତା ମୋତେ ବୋଧହୁଏ ମୋ ପ୍ରଶ୍ନର ଯଥାଯଥ ଉତ୍ତର ଦେବାକୁ ଇଚ୍ଛା କରୁ ନଥିଲା, ସେଇଥିପାଇଁ ସେ ମୋ ପାଖରୁ ଚାଲି ଯିବା ପାଇଁ ବ୍ୟସ୍ତ ହୋଇ ପଡ଼ିଥିଲା । ମୁଁ କିନ୍ତୁ ତା' ମୁହଁରୁ ତା' ଅନିଚ୍ଛାର କାରଣ ଶୁଣିବା ପାଇଁ ବ୍ୟଗ୍ର ହୋଇ ଉଠିଥିଲି । ପଚାରିଲି, ତମର ଅତୀତ ଜୀବନରେ ଏପରି କିଛି ଘଟଣା ଘଟିଛି, ଯାହାପାଇଁ ତମେ...

ମୋ କଥା ଶେଷ କରିବାକୁ ନଦେଇ ରଂଜିତା କ୍ଷିପ୍ର ପାଦରେ ଘରୁ ବାହାରି ଚାଲିଗଲା । ମୋର ମନେ ହେଲା ସେ ଯେପରି ଛୁଟି ପଳାଇ ଯାଇ ଆତ୍ମରକ୍ଷା କରିବାକୁ ଚାହେଁ ।

ମୁଁ ଦରଜା ଯାଏ ଆଗେଇ ଯାଇ ପୁଣି ଫେରି ଆସିଲି ।

ମହା ସମସ୍ୟା ।

ରଂଜିତାର ମାମୁଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇ ଆସିଲି ତାହା କ'ଣ ମୁଁ ରକ୍ଷା କରି ପାରିବି ? ରକ୍ଷା କରିବା କ'ଣ ମୋର ଉଚିତ ହେବ ? ତା' ଛଡ଼ା ଘରେ ବାପା, ମା' । ସେମାନେ ମୋଠାରୁ ତ ପୁଣି କିଛି ଆଶା କରନ୍ତି ।

କି ଦୁର୍ଯୋଗରେ ମୋର ରଂଜିତା ପରିବାର ସହିତ ପରିଚୟ ହେଲା !!

ଏମାନଙ୍କ ଠାରୁ ଦୂରେଇ ରହିବାକୁ ହେଲେ ବର୍ତ୍ତମାନ ମୋର ଏକମାତ୍ର ପଥ ହେଉଛି ଏଠାରୁ ଛାଡ଼ି ଚାଲି ଯିବା !!

ମୁଁ କିନ୍ତୁ ଆଜି ଯାଏ 'ମାଧବୀ ଭିଲା' ଛାଡ଼ି ପାରି ନାହିଁ ।

ସେଦିନ ମୋ ସହିତ ରଂଜିତାର ବିବାହ ପ୍ରସ୍ତାବ ପରଠାରୁ ଯେଉଁ କେତୋଟି ଘଟଣା ଘଟିଛି, ସବୁ ମୋତେ ଅଲୌକିତ ମନେ ହେଉଛି । ରଂଜିତାକୁ ଦିନ ପରେ ଦିନ ଅସ୍ୱାଭାବିକ ଜଣା ଯାଉଛି ।

ସତରେ ମୁଁ ଏକ ମହା ସମସ୍ୟାର ସମ୍ମୁଖୀନ ହୋଇଛି ।

ସେଇ ଯେ ସେଦିନ ଚାଲିଗଲା ରଂଜିତା ତା' ପରେ ଦୁଇ ଚାରି ଦିନ ଆଉ ତା' ସହିତ ମୋର ଭେଟ ହେଲା ନାହିଁ ।

ପରଦିନ ସକାଳୁ ରଂଜିତାର ମା' ପୁଣି ଆସିଲେ ।

ମୋର କୋଟି ପରମାୟୁ କାମନା କଲେ । ତାଙ୍କର ମାନ ରଖିଥିବାରୁ ସେ ମୋ ପାଖରେ କୃତ୍ୟ କୃତ୍ୟ ହେଲେ ।

ମୁଁ କହିଲି : ମୁଁ ସିନା ଆପଣଙ୍କ ମାନ ରଖିଲି, ଏଥର ଆପଣଙ୍କୁ ମୋର ମାନ ରଖିବାକୁ ହେବ ।

: ରଖିବି ବାବା । ମା' ମୁଁ । ସନ୍ତାନର ଅପମାନ କେବେ ସହି ପାରିବି ନାହିଁ ।

ସେ ମୋତେ ଚା' ଢାଳି ପିଆଇଲେ ।

ମୁଣ୍ଡରେ ହାତ ବୁଲାଇ ଦେଇ କହିଲେ : ତମେ ଜୀବନରେ ବଡ଼ ମଣିଷ ହେବ ବାବା । ମୋପରି ମା' ମାନଙ୍କର ଆଶୀର୍ବାଦରେ ନିଶ୍ଚୟ ତମର ଜୀବନ ପଥ ସୁଗମ ହେବ ।

ରଂଜିତା ମା'ଙ୍କର ଆଚରଣ ସେଦିନ ମୋତେ କିପରି ଅସ୍ୱାଭାବିକ ମନେ ହୋଇଥିଲା । ମୁଁ ଅନେକ ବେଳଯାଏ ତାଙ୍କ ଆଡ଼େ ଅନାଇ ରହିଥିଲି । ସେ ମୋତେ ଚା' ଦେଇ ସାରି ମୋ ଘର ସଜାଡ଼ିବାରେ ଲାଗି ଯାଇଥିଲେ । ଯେତେବେଳେ ଘର ପହଁରିବାକୁ ଉଦ୍ୟମ କଲେ, ସେତେବେଳେ ମୁଁ ତାଙ୍କୁ ବାଧା ଦେଇ କହିଲି : ଆପଣ ଏ ସବୁ କ'ଣ କରୁଛନ୍ତି ?

ସେ କହିଲେ : ମା' ମୁଁ, ସନ୍ତାନର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେବା ମୋର ପ୍ରଥମ କର୍ତ୍ତବ୍ୟ । ତମେ ମୋତେ ବାଧା ଦିଅ ନାହିଁ ବାବା ।

ଆଜି ମୁଁ ରଂଜିତା ଆଉ ତମ ଭିତରେ କୌଣସି ତଫାତ୍ ଦେଖୁ ନାହିଁ ।

ମୁଁ ଆଉ ବାଧା ଦେଲି ନାହିଁ ।

ସେ ତାଙ୍କ ନିଜ ଇଚ୍ଛାରେ ସବୁ କାମ ଶେଷ କରି କହିଲେ : ମୁଁ ଯାଉଛି ବାବା । ରଂଜିତା ଏତେବେଳଯାଏ ଉଠି ନାହିଁ, ତାକୁ ପୁଣି ଉଠାଇବାକୁ ପଡ଼ିବ ।

: କ'ଣ ହେଲା ରଂଜିତାର ? ଦେହ ଭଲ ଅଛି ତ ? ମୋ କଣ୍ଠରେ ସାମାନ୍ୟ ଉଦ୍‌ବିଗ୍ନତା ଫୁଟି ଉଠିଥିଲା ।

: ସବୁ ଭଲ ଅଛି ବାବା ! ରଂଜିତାଟା ମୋର ଭାରି ଅଭିମାନିନୀ । ଏଇକ୍ଷିଣା ତିନି ଚାରିଦିନ ସେ ବିଛଣାରୁ ଉଠିବ ନାହିଁ ।

ସେ ଚାଲି ଯାଉଥିଲେ ।

ପୁଣି ବୁଲିପଡ଼ି ମୋ ଆଡ଼କୁ ଚାହିଁ କହିଲେ : ସମୟ ପାଇଲେ ତମେ ଟିକିଏ ଯିବ ବାବା । ତମ୍ଭକୁ ଦେଖିଲେ, ହୁଏତ ତା' ମନର ଟିକିଏ ପରିବର୍ତ୍ତନ ହେବ ।

: କିନ୍ତୁ ହଠାତ୍ ରଂଜିତାର ହେଲା କ'ଣ ? ଆପଣ କ'ଣ ତାକୁ କିଛି କହିଲେ ?

: ନା ବାବା । ମୁଁ କିଛି କହି ନାହିଁ । କେହି ତାକୁ କିଛି କହି ନାହାନ୍ତି । ବେଳେ ବେଳେ ସେ ଏମିତି ହୁଏ । ମୁଁ ତାକୁ ବହୁତ ବୁଝାଇଛି, କିନ୍ତୁ ବାଟକୁ ଆଣି ପାରି ନାହିଁ । ତମେ ଟିକେ ଅଫିସରୁ ଫେରିଲା ପରେ ଆସିବ ବାବା ।

ସେ ମୋର କୌଣସି ଉତ୍ତରକୁ ଅପେକ୍ଷା ନ କରି ଚାଲିଗଲେ । ମୁଁ ବି ଭାରାକ୍ରାନ୍ତ ମୁଣ୍ଡ ନେଇ ବାଥ୍‌ରୁମ୍‌ରେ ପଶିଲି ।

ଦିନକୁ ଦିନ ପରିସ୍ଥିତିଟା ଜଟିଳ ହୋଇ ଉଠୁଥିବାର ମନେ ହେବାକୁ ଲାଗିଲା । ଏ ସମ୍ବନ୍ଧରେ ମୋର କୌଣସି ବଂଧୁ ବାନ୍ଧବଙ୍କ ସହିତ ଆଳାପ ଆଲୋଚନା କରିବା ପାଇଁ ଇଚ୍ଛା ମଧ୍ୟ ହେଲା ନାହିଁ ।

ମନେ ମନେ ମୁଁ ବି କିପରି ଅସ୍ୱାଭାବିକ ହୋଇ ଉଠିଲି ।

ଭାବିଲି ସାମୟିକ ନିଷ୍କୃତି ପାଇଁ କିଛି ଦିନ ଅନ୍ତତଃ ଛୁଟି ନେଇ ଅନ୍ୟ କେଉଁଆଡ଼େ ଚାଲିଯିବା ଉଚିତ ।

କିନ୍ତୁ ତାହା ସମ୍ଭବ ହେଲା ନାହିଁ ।

ସେଦିନ ମୁଁ ଅଫିସରୁ ଫେରି ରଂଜିତାକୁ ଦେଖିବା ପାଇଁ ଯାଇଥିଲି । ଘରେ କେହି ନଥିଲେ । ରଂଜିତା ଖଟ ଉପରେ ଶୋଇ ଥିଲା । ମୋର ପାଦ ଶବ୍ଦ ଶୁଣି କଡ଼ ଲେଉଟାଇ ମୋ ଆଡ଼କୁ ଚାହିଁଲା ।

ଆନନ୍ଦିତ ହେଲା ଯେପରି ମୋତେ ଦେଖି ।

ଖଟ ଉପରେ ଗୋଟିଏ ପାଖକୁ ମୋତେ ବସିବା ପାଇଁ କହିଲା । ମୁଁ ବସିଲି । ପଚାରିଲି : କ'ଣ ହେଇଛି ତମର ?

ସେ ହସିଲା । କହିଲା : କିଛି ହୋଇ ନାହିଁ । ଭାରି ଥକି ପଡ଼ିଥିଲି । ଟିକିଏ ବିଶ୍ରାମ କରୁଛି ।

: ମା' ନାହାନ୍ତି ?

: ଥିଲା ତ ! କୁଆଡ଼େ ଯାଇଥିବ ।

: ତମ ଦେହ ଭଲ ଅଛି ତ ?

: ହଁ କିନ୍ତୁ ଆପଣ ଆଜି ହଠାତ୍ ଚାଲି ଆସିଲେ କିପରି ? ନିଶ୍ଚୟ ମା' ଆପଣଙ୍କୁ ଡାକି ଆଣିଛି ।

: କାହିଁକି, ମା' ନ ଡାକିଲେ ମୋର କ'ଣ ତମ ଘରକୁ ଆସିବାର ଅନ୍ୟ କିଛି କାରଣ ନାହିଁ ?

: ହୁଏତ ଅଛି । କିନ୍ତୁ ଆଜି ଆଉ ମୁଁ ସେ ସବୁ ବିଶ୍ୱାସ କରିବାକୁ ଚାହେଁ ନାହିଁ । ବୟସ ବଢ଼ି ଗଲାଣି । ତା'ଛଡ଼ା...

ରଂଜିତା କଥା ଶେଷ କରି ପାରିଲା ନାହିଁ । ମା'ଆସି ଘରେ ପଶିଲେ । କହିଲେ : ଆସିଛ ବାବା ! ରଂଜିତା ଆଜି ତମ କଥା ପଚାରୁଥିଲା ।

ମୁଁ ରଂଜିତା ମୁହଁକୁ ଚାହିଁଲି ।

ସେ ହସି ଦେଇ ମୁହଁ ବୁଲାଇ ନେଲା ।

ରଂଜିତାର ମା' କହିଲେ : ତମେ ରଂଜୁ ସଙ୍ଗରେ କଥାବାର୍ତ୍ତା କରୁଥାଅ ବାବା । ଅଫିସରୁ ଆସିଛ । ମୁଁ ତମ ପାଇଁ ଟିକିଏ ଜଳଖିଆ ତିଆରି କରେ । ତା'ଛଡ଼ା ରଂଜୁ ଆଜି ଦିନଯାକ କିଛି ଖାଇ ନାହିଁ ।

ସେ କୌଣସି ଉତ୍ତରର ପ୍ରତୀକ୍ଷା ନକରି ଚାଲିଗଲେ ।

ମୁଁ ରଂଜିତା ଆଡ଼େ ଚାହିଁ କହିଲି : ତମେ ଆଜି ଖାଇ ନାହଁ କାହିଁକି ?

ସେ ତା' ସ୍ୱାଭାବିକ ହସ ଟିକକ ମୁହଁରେ ଫୁଟାଇ କହିଲା : ମୋତେ ମଝିରେ ମଝିରେ ଉପବାସ କରିବାକୁ ଭଲ ଲାଗେ । ତା'ଛଡ଼ା ଖାଲି ପେଟ ଭରିବା ପାଇଁ ସବୁବେଳେ ଗୋରୁଙ୍କ ପରି ଖାଇବାରେ କ'ଣ ଆନନ୍ଦ ଥାଏ ?

: ଆଉ ! କିପରି ଖାଇବାରେ ଆନନ୍ଦ ଥାଏ ?

ରଂଜିତା ହସିଲା । କହିଲା : ଆପଣ ବୁଝିପାରିବେ ନାହିଁ ଦୀପକ ବାବୁ । ନାରୀ ମନର ଗହ୍ୱର ବହୁ ବୈଚିତ୍ର୍ୟପୂର୍ଣ୍ଣ । ଅବଶ୍ୟ ଆପଣ ସେହି ବୈଚିତ୍ର୍ୟର ସୂତ୍ର ଖୋଜି ଆଗେଇଲେ ପାଇ ପାରିବେ । କିନ୍ତୁ ସେଥିପାଇଁ ସେହିପରି ଏକ ମନର ଆବଶ୍ୟକ । ଅନୁଭୂତି ବି ଲୋଡ଼ା ।

ମୁଁ ଏଥର ରଂଜିତା କଥାର କିଛି ଉତ୍ତର ଦେଇପାରିଲି ନାହିଁ । କେବଳ ତା' ରହସ୍ୟମୟ ମୁଖମଣ୍ଡଳ ଆଡ଼େ ଅନାଇ ରହିଲି ।

ସେ ପୁଣି କହିଲା : ଆପଣ ମୋ ଆଡ଼କୁ ଯେପରି ଅନାଇ ରହିଛନ୍ତି, ଆପଣଙ୍କୁ ଦେଖିଲେ ମୋ ପରି ଯେକୌଣସି ପୁରୁଖା ଝିଅ ମନରେ କରୁଣା ସଂଚାର ହେବ ।

: କାହିଁକି ? ମୁଁ ହଠାତ୍ ମୋ ଅଜ୍ଞାତସାରରେ ପଚାରି ଦେଇଥିଲି ।

ସେ ହୋ ହୋ ହୋଇ ହସି ଉଠିଲା ।

କହିଲା : ଆପଣ ନିତାନ୍ତ ଶିଶୁ । ଆପଣଙ୍କୁ ଖେଳେଇ ମୋଟେ ଆନନ୍ଦ ମିଳିବ ନାହିଁ ।

ମୁଁ ସେଦିନ ସେଇ ମୁହୂର୍ତ୍ତରେ ରଂଜିତାର ମନର ଗଭୀର ମନସ୍ତତ୍ତ୍ୱ ବୁଝିପାରି ନଥିଲି ।

ସେ ବିଛଣା ଉପରେ ଉଠି ବସି ମୋ ମୁହଁକୁ ଚାହିଁ ପଚାରିଲା : ଆପଣ ଗଭୀର ରାତିରେ, ଆକାଶର ପୂର୍ଣ୍ଣଚନ୍ଦ୍ର ଆଡ଼େ ଚାହିଁ ନିରୋଳାରେ କେବେ ଘଣ୍ଟା ପରେ ଘଣ୍ଟା କଟାଇଛନ୍ତି ?

ମୁଁ ମୁଣ୍ଡ ହଲାଇ ନାହିଁ କଲି ।

: ଅନ୍ଧାର ରାତିରେ ନିଶାଚରୀଙ୍କ ମେଳରେ, ନିରୋଳାରେ ଶିହରିତ ହୃଦୟରେ କେବେ କାହା ପାଇଁ ଘଣ୍ଟା ପରେ ଘଣ୍ଟା ପ୍ରତୀକ୍ଷା କରି ପାରିଛନ୍ତି ?

ମୁଁ ରଂଜିତାର ମନଗହନ ଭିତରୁ ଅଦ୍ଭୁତ ଏକ ରହସ୍ୟର ଗନ୍ଧ ପାଉଥିଲି । ତା' ପ୍ରଶ୍ନର ଉତ୍ତରରେ କେବଳ ମୁଣ୍ଡ ହଲାଇ ନା' କଲି ।

ସେ ସଂଗେ ସଂଗେ କହିଲା : ତା'ହେଲେ ଆପଣ ପାରିବେ ନାହିଁ ।

: କ'ଣ ପାରିବି ନାହିଁ ?

ରଂଜିତା ମୋ ପ୍ରଶ୍ନର ଉତ୍ତର ଦେଲା ନାହିଁ । ତା' ସ୍ୱାଭାବିକ ହସ ଫୁଲ ଝରାଇ ତା'ରି ଭିତରେ ମୋ ମୁହଁକୁ ବନ୍ଦ କରି ଦେବାକୁ ଚାହିଁଲା ।

ମୁଁ କିନ୍ତୁ ମୋ ପ୍ରଶ୍ନର ଉତ୍ତର ପାଇବା ପାଇଁ ବ୍ୟଗ୍ର ହୋଇ ଉଠିଥିଲି । ରଂଜିତାର ମନର ସେଇ ଗୋପନ ଭାଷାଟି କ'ଣ ? ମୁଁ ଯେ ପାରିବି ନାହିଁ, କ'ଣ ପାରିବି ନାହିଁ ? ରଂଜିତାକୁ ବିବାହ କରିପାରିବି ନାହିଁ ନା ତା' ସହିତ ପ୍ରତିଯୋଗିତା କରିପାରିବି ନାହିଁ ?

କିନ୍ତୁ ରଂଜିତାର ମା' ଆସି ବାଧା ସୃଷ୍ଟି କଲେ ।

ସେ ଦୁଇ ହାତରେ ଦୁଇ ପ୍ଲେଟ୍ ଜଳଖିଆ ଧରି ଆସି ଆମ ପାଖରେ ପହଂଚିଥିଲେ ।

ପ୍ରଥମେ ରଂଜିତା ହାତ ବଢ଼େଇ ତା' ପ୍ଲେଟ୍‌ଟି ନେଇଗଲା । ମୁଁ ଖାଇଛି କି ନାହିଁ, ଅପେକ୍ଷା ନ କରି ନିଜେ ଖାଇବାକୁ ଆରମ୍ଭ କରିଦେଲା ।

ମୋ ମନରେ ସେଥିପାଇଁ କୌଣସି ପ୍ରକାର ଭାବାନ୍ତର ହୋଇ ନଥିଲା ।

କିନ୍ତୁ ସେଦିନ ଫେରିଲାବେଳେ, ରଂଜିତାର ମା' ମୋତେ କହିଲେ : କାଲି ସକାଳଠାରୁ ଆଜି ଏତେବେଳ ପର୍ଯ୍ୟନ୍ତ ରଂଜିତାକୁ ମୁଁ ଖୁଆଇପାରି ନଥିଲି । ତମେ ବାବା ଆସି ନଥିଲେ ରଂଜିତା ହୁଏତ ଆଜି ବି ଜଳ ସ୍ପର୍ଶ କରି ନଥାନ୍ତା ।

ମୁଁ ଏହାର କାରଣ ପଚାରିଥିଲି ।

ସେ କହିଲେ : ଝିଅଟା କିନ୍ତୁ ଆଗେ ଏପରି ନଥିଲା । ଏବେ କ'ଣ ଯେ ହେଲା ତା'ର, ଭାରି ଜିଦିଖୋର ହୋଇଯାଇଛି ।

: ଏବେ ମାନେ, କେବେଠୁ ରଂଜିତା ଏପରି ହୋଇଛି ।

ସେ ମୋ ପ୍ରଶ୍ନରେ ଟିକିଏ ଚମକି ଉଠିଲା ପରି ମନେହେଲା । ତା'ପରେ ଶାନ୍ତ ଓ ସଂଯତ ସ୍ୱରରେ ଉତ୍ତର ଦେଲେ : ନା ବାବା, ରଂଜିତାଟା ସବୁଦିନ ସେମିତି । ଆମେ ତାକୁ ଟିକିଏ ଅଧିକ ଗେଲବସର କରି ପକାଇଥିଲୁ ତ, ସେଥିପାଇଁ ଆଜି ତା'ର ପରିଣତି ଭୋଗ କରିବାକୁ ପଡୁଛି ।

ମୁଁ ପଚାରିଲି : ରଂଜିତା କ'ଣ ଇତି ପୂର୍ବରୁ ଖୁବ୍ କିଛି ଗୋଟାଏ ରୋଗ ଭୋଗ କରିଥିଲା ?

ସେ ୴ପରି ବିସ୍ମୟ ବିସ୍ଫାରିତ ନେତ୍ରରେ ମୋ ମୁହଁକୁ ଚାହିଁ କହିଲେ : କାହିଁ ? ନା ତ !! ତମୁକୁ କିଏ କହିଲା ବାବା !

: ମୋତେ କେହି କହି ନାହିଁ । ମୁଁ ଇମିତି ପଚାରୁଥିଲି । କାରଣ ମୁଁ ଦୁଇ ତିନିଟା ଘଟଣା ଜାଣେ, ସେମାନେ ଖୁବ୍ ରୋଗ ଭୋଗ କରି ସାରି, ଯେତେବେଳେ ସୁସ୍ଥ ହୋଇ ଉଠିଛନ୍ତି କାହାର ଗୋଟାଏ ଅଙ୍ଗ, କାହାର ମନ ବିକଳ ହୋଇ ଯାଇଛି ।

ଜଣେ ତ ତା'ର ସ୍ମରଣ ଶକ୍ତି ହରାଇ ବସିଛି ।

: ନା ନା ବାବା । ରଂଜିତାର ସେପରି କିଛି ହୋଇ ନାହିଁ । ମୁଁ ଲକ୍ଷ୍ୟ କଲି ମୋର ଏପରି ପ୍ରଶ୍ନରେ ସେ ଖୁବ୍ ବିଚଳିତ ହୋଇ ପଡ଼ିଥିଲେ ।

ସେଦିନ ମୁଁ ଫେରିଯାଇଥିଲି ।

ଆଉ କୁଆଡ଼େ ଯିବା ପାଇଁ ଇଚ୍ଛା ହୋଇ ନଥିଲା ।

ବିଛଣାରେ ଶୋଇ ଶୋଇ କେବଳ ରଂଜିତାକୁ ବିଶ୍ଳେଷଣ କରୁଥିଲି । ତା'ର ମୋ ସହିତ କଥାବାର୍ତ୍ତା । ମା'ଙ୍କର ତା' ପାଇଁ ସଫେଇ । ସବୁ ଭିତରେ କିପରି ଗୋଟାଏ 'କିନ୍ତୁ' ରହି ଯାଉଥିବା ପରି ମୋର ମନେହୋଇଥିଲା ।

କିନ୍ତୁ ମୋ ପ୍ରଶ୍ନର ଉତ୍ତର ଦେବ କିଏ ?

ସେଦିନ ଅନେକ ରାତିରେ ମୋ ନିଦ ଭାଂଗି ଯାଇଥିଲା । ବୋଧହୁଏ କାହାର ସ୍ପର୍ଶ ବା କାହାର ହାସ୍ୟଧ୍ୱନି ମୋ ନିଦ ଭାଂଗି ଦେଇଥିଲା ।

ମୁଁ ଉଠିବସି ପ୍ରଥମେ ଗଳା ଅଣ୍ଡାଳି ଥିଲି ।

ରଂଜିତା କ'ଣ ବଉଳ ଫୁଲର ମାଳା ପିନ୍ଧେଇ ଦେବାକୁ ଆସିଥିଲା ?

ନା ।

ଲାଇଟ୍ ଜଳାଇଲି । ବିଛଣାରେ ବି ବଉଳ ମାଳାର ଚିହ୍ନ ନାହିଁ । ତେବେ ହଠାତ୍ ନିଦଟା ଭାଂଗିଗଲା କାହିଁକି ? ହୁଏତ କେବଳ ଶୋଇବା ପୂର୍ବର ଦୁର୍ଭାବନା ଗୁଡ଼ାକ ମୋ ଅବଚେତନ ମନରେ ସଂଘାତ ସୃଷ୍ଟି କରି ଏହା ହୋଇଛି ।

କିନ୍ତୁ...

ସେଇ ପରିଚିତ ଅସ୍ପଷ୍ଟ ହାସ୍ୟଧ୍ୱନି ଯେ !

କିଏ ? କେଉଁଠୁ ରଂଜିତା ମୋତେ ପରିହାସ କରୁଛି !

ମୁଁ ସଂଗେ ସଂଗେ ସେଇ ଅନ୍ଧକାର ଭିତରେ ବାହାରକୁ ଉଠି ଚାଲିଗଲି । ମୋର ମନେହେଲା ହାସ୍ୟଧ୍ୱନିଟା ଯେପରି ଧୀରେ ଧୀରେ ଆଗେଇ ଯାଉଛି । ମୁଁ ଅନ୍ଧଙ୍କ ପରି ସେହି ଧ୍ୱନିକୁ ଅନୁସରଣ କରି ଚାଲିଥିଲି ।

ବଉଳ ମୂଳରେ ହଠାତ୍ ମୁଁ ଅସ୍ପଷ୍ଟ କାହାର ଏକ ଛାୟା ମୂର୍ତ୍ତି ଦେଖିଲି ।

କିଏ ? ଚିତ୍କାର କରି ଉଠିଲି ।

ସେ କେବଳ ହସିଲା । ହାସ୍ୟଧ୍ୱନି ଆଉ ଟିକିଏ ସ୍ପଷ୍ଟ ମନେ ହେଲା । ମୁଁ ସେଇ ଛାୟାମୂର୍ତ୍ତି ପଛେ ପଛେ ଆଗେଇ ଗଲି । ବଗିଚା ଶେଷରେ ଗଙ୍ଗା ଭିତରକୁ ଯେଉଁ ସିମେଣ୍ଟ ପାହାଚ ପଡ଼ିଚି ମୁଁ ଦେଖିଲି ଛାୟାମୂର୍ତ୍ତିଟି ସେଇ ପାହାଚ ଉପର ଦେଇ ଗଙ୍ଗା ଭିତରକୁ ଓହ୍ଲେଇ ଯାଉଚି ।

ମୋ ଛାତିଟା ଥରି ଉଠିଲା ।

ରଂଜିତ ଆତ୍ମହତ୍ୟା କରିବା ପାଇଁ ଛୁଟି ପଳାଉ ନାହିଁ ତ !

ମୁଁ ଆହୁରି ଦ୍ରୁତ ପଦରେ ସେହି ଛାୟାମୂର୍ତ୍ତି ପଛରେ ତଳକୁ ଓହ୍ଲେଇ ଗଲି । ଅବଶ୍ୟ ଅନ୍ଧକାର ସେତେବେଳେ ମୋର ଆଖିସୁହା ହୋଇ ଯାଇଥିଲା । ମୁଁ ସ୍ପଷ୍ଟ ପାହାଚଗୁଡ଼ାକ ଦେଖି ପାରୁଥିଲି ।

କିନ୍ତୁ ରଂଜିତା ଗଲା କେଉଁଆଡ଼େ ?

ଗଙ୍ଗା ଜୁଆରରେ ପୂର୍ଣ୍ଣ ହୋଇଛି । ହୁଏତ ଆମ ଶେଷ ପାହାଚଟି ଜୁଆର ପାଣିରେ ବୁଡ଼ି ଯାଇଚି । ବାଁ ପାଖରେ ଖଣ୍ଡିଏ ଖାଲି ନୌକା ସ୍ରୋତ ଢେଉରେ ନୃତ୍ୟ କରୁଛି ।

କିନ୍ତୁ ରଂଜିତା ?

ମୁହୂର୍ତ୍ତେ ପୁଣି ମୁଁ ସେଇ ହାସ୍ୟଧ୍ୱନି ଶୁଣିଲି । ଏଥର ମନେହେଲା ସେ ଧ୍ୱନି ଯେପରି ନୌକା ଭିତରୁ ଭାସି ଆସୁଛି ।

ମୋର ରାଗ ହୋଇଥିଲା ଯେତିକି, କୌତୂହଳ ବି ବଢ଼ିଥିଲା ସେତିକି । ଝିଅଟାର ସାହସ ତ କମ୍ ନୁହେଁ !

ଏଇ ନିର୍ଜନ ଅନ୍ଧକାର ଭିତରେ ଘରଦ୍ୱାର ଛାଡ଼ି, ଗଭୀର ଗଙ୍ଗା ବକ୍ଷରେ ଗୋଟାଏ ନଙ୍ଗରହୀନ ନୌକା ଭିତରେ ବସି ମୋତେ ପରିହାସ କରୁଛି !!

ମୁଁ ସେଇ ପାହାଚ ଉପରେ ଠିଆ ହୋଇ ଚିନ୍ତା କରୁଥିଲି ଆଗେଇବି ନା ପଛେଇବି ?

ଏଥର ରଂଜିତାର ଅସ୍ପଷ୍ଟ ଛାୟା ମୁଁ ନୌକା ଉପରେ ଦେଖିଲି, ସେ ମୋତେ ହାତଠାରି ଡାକିଲା ।

ଗୋଡ଼ ବଢ଼ାଇଲେ ନୌକା । କିନ୍ତୁ କେଜାଣି କାହିଁକି ମୋ ମନ ଭିତରଟା ଭୀଷଣ ଦୁର୍ବଳ ହୋଇ ପଡ଼ିଥିଲା ।

ରଂଜିତା କିନ୍ତୁ ଆଗେଇ ଆସି ମୋ ଆଡ଼କୁ ହାତ ବଢ଼ାଇଦେଲା । ମୋ ଦ୍ୱିଧା କଟିଗଲା ସେଇ ମୁହୂର୍ତ୍ତରେ । ମୁଁ ରଂଜିତାର ହାତ ଧରି ନୌକା ଉପରକୁ ଉଠିଗଲି ।

ଆକାଶରେ ଜହ୍ନ ନଥିଲା । କେଉଁଠି ଆଲୋକ ନଥିଲା । ଆମ ନୌକାଟି ଗୋଟିଏ ଗଛ ତଳେ, ଢେଉର ତାଳରେ ନୃତ୍ୟ କରୁଥିଲା ।

ରଂଜିତା ମୋ ହାତ ଧରି ଟାଣି ନେଇଗଲା ନୌକା ଭିତରକୁ । ସେଠାରେ ଆହୁରି ଅନ୍ଧକାର । ଦେହରେ ଦେହର ସ୍ପର୍ଶ ଅନୁଭବ କରିବା ଛଡ଼ା ମୁହଁକୁ ମୁହଁ ଚିହ୍ନିବାର ଉପାୟ ନଥିଲା । ମୁଁ କେବଳ ରଂଜିତାର ଚପଳ ହାସ୍ୟ ଶୁଣୁଥିଲି । ନାକର ଶ୍ୱାସ ବାରୁଥିଲି । ଦେହର ସ୍ପର୍ଶ ଅନୁଭବ କରୁଥିଲି । ବୋଧହୁଏ ସେତେବେଳେ ମୁଁ ମୋର ଆତ୍ମସତ୍ତା ହରାଇଥିଲି । କାରଣ ମୋର ସର୍ବାଙ୍ଗ କିପରି ଏକ ଉତ୍ତେଜନାରେ ଉତ୍ତେଜିତ ହୋଇ ଉଠିଥିଲା ।

ପ୍ରଥମେ ରଂଜିତା କଥା ଆରମ୍ଭ କରିଥିଲା : ତା'ହେଲେ, ଆଜି ଆପଣ ନିଶାଚରୀର ସନ୍ଧାନ ପାଇଲେ ?

ରଂଜିତା ବୋଧହୁଏ ଆଉ ଟିକିଏ ମୋ ଆଡ଼କୁ ଆଉଜି ବସୁଥିଲା ।

ମୁଁ କହିଲି : ସତରେ ତମେ ନିଶାଚରୀ ରଂଜିତା । ତମର ତୁଳନା ହୁଏ ନାହିଁ ।

ସେ କହିଲା : ରଂଜିତା ନୁହେଁ, ମୋତେ ରଂଜୁ କୁହନ୍ତୁ । ଅନେକ ପ୍ରତୀକ୍ଷା ପରେ ଆଜି ମୁଁ ସଫଳ ହୋଇଛି ଯେତେବେଳେ...

: ମାନେ ? ମୋ ଦେହର କମ୍ପନ ବୋଧହୁଏ ସେ ଅନୁଭବ କରିଥିଲା ।

କହିଲା : ମାନେ ଫାନେର ଉତ୍ତର ମୁଁ ଦେଇପାରିବି ନାହିଁ । ଅତି ସହଜ ଓ ସରଳ ଭାଷାରେ କହିବାକୁ ଗଲେ, ଏଇଭଳି ଗୋଟିଏ ମୁହୂର୍ତ୍ତର ଅପେକ୍ଷାରେ ମୁଁ ବହୁତ ଦିନରୁ ଥିଲି । ଆଜି ସଫଳ ହୋଇଛି । ଆପଣ ମୋ ଇଚ୍ଛାରେ ବାଧା ଦେଇପାରିବେ ନାହିଁ ।

: ଯଦି ଦିଏ ?

: ତା'ହେଲେ କଳକଲ୍ଲୋଳିନୀ ଗଙ୍ଗା ବକ୍ଷରେ ମୋର ସତ୍ତା ଖୋଜି ପାଇବେ ନାହିଁ ।

ରଂଜିତା ସେଇ ମୁହୂର୍ତ୍ତରେ ଉଠି ପଡ଼ିଥିଲା ବୋଧହୁଏ ।

ମୁଁ ମୋର ସଂପୂର୍ଣ୍ଣ ଅଜାଣତରେ ଯନ୍ତ୍ରଚାଳିତ ପରି ତାକୁ ହୁଏତ ଟାଣି ଧରିଥିଲି ।

ସେଇଟା ବୋଧହୁଏ ତା' ପାଇଁ ଅପୂର୍ବ ସୁଯୋଗ ହୋଇଥିଲା ।

ସେ ତା'ର ସଂପୂର୍ଣ୍ଣ ଦେହଭାର ନଦି ଦେଇଥିଲା ମୋ ଉପରେ ।

ମୁଁ ବି ଆତ୍ମସତ୍ତା ହରାଉଥିଲି ।

କିନ୍ତୁ ନୌକାର ଦୋଳନ ଅନୁଭବ କରୁଥିଲି ।

କିଛି ସମୟ ପରେ ଧୀରେ ଧୀରେ ଡାକିଥିଲି : ରଂଜୁ !

: ଉଁ ।

ଟିକିଏ ଘୁଞ୍ଚି ବସ ।

: ଆଉ ହୁଏତ ଏ ସୁଯୋଗ ନ ଆସିପାରେ ଜୀବନରେ ।

: ମୁଁ ତ ଆଜି କଥା ଦେଇଚି ରଂଜୁ । ତମ ବାପା, ମା', ମାମୁ ସମସ୍ତଙ୍କ ସାମ୍ନାରେ ମୁଁ ତମର ଭାର ଗ୍ରହଣ କରିବା ପାଇଁ କଥା ଦେଇ ଆସିଛି !

: ସେ କଥାର କୌଣସି ମୂଲ୍ୟ ନାହିଁ ଦୀପକ ବାବୁ । ମଣିଷ କଥା ବଦଳାଇବାକୁ ବେଶି ସମୟ ଲାଗେ ନାହିଁ ।

: ମୋତେ କିନ୍ତୁ ସେପରି ମନେ କର ନାହିଁ ରଂଜୁ ।

ରଂଜିତା କିଛି କହିଲା ନାହିଁ । ସେ ମୋ ଛାତିରେ ମୁହଁ ଗୁଞ୍ଜି ବୋଧହୁଏ ଅଭୟ ଆଶ୍ରୟ ଖୋଜୁଥିଲା ।

ମୁଁ ପୁଣି କହିଲି : ଦୁନିଆରେ ଏତେ ଲୋକ ଥାଉ ଥାଉ ତମେ ମୋତେ ଭଲପାଇ ବସିଲ କାହିଁକି ?

: ଆପଣ ମୋତେ ଆଉ ସେପରି ଅବାନ୍ତର ପ୍ରଶ୍ନ ପଚାରନ୍ତୁ ନାହିଁ ।

: ରଂଜୁ !

: ଉଁ ।

: ମୁଁ ଅନ୍ଧକାର ସହି ପାରୁ ନାହିଁ । ଆଲୋକର ଏଠାରେ କୌଣସି ବ୍ୟବସ୍ଥା ନାହିଁ ?

: ହୁଏତ ଅଛି, କିନ୍ତୁ ଆଲୋକ ଯେ ମୁଁ ସହିପାରେ ନାହିଁ ।

: କାହିଁକି ?

: ଆଲୋକରେ ମଣିଷର ସ୍ୱରୂପ ପ୍ରକାଶିତ ହୋଇଯାଏ ।

: ତମେ କ'ଣ ରଂଜୁ...

: ନା ନା ଦୀପକ ବାବୁ ! ମଣିଷର ସ୍ୱରୂପ ମୁଁ ସହିପାରେ ନାହିଁ । ସେ ରୂପ ବଡ଼ କଦର୍ଯ୍ୟ, ବଡ଼ ହିଂସ୍ର । ମୋତେ ନୀରବରେ କିଛି ସମୟ ତମ ଦେହର ସ୍ପନ୍ଦନ ଅନୁଭବ କରିବାକୁ ଦିଅ । ମୁଁ ବଡ଼ କ୍ଳାନ୍ତ ।

: କିନ୍ତୁ ରଂଜୁ !

: କ'ଣ କୁହ ।

: ଏକ ନୌକା ଭିତରେ, ଅର୍ଦ୍ଧ ରାତ୍ରିରେ, ଅନ୍ଧକାରର ଅତଳ ଗହ୍ୱରରେ ତମେ ଆଉ ମୁଁ । ଯଦି କେହି ଜାଣେ ? ତମ ବାପା ମା'ଙ୍କ କାନରେ ଯଦି ଏ କଥା ପହଞ୍ଚେ, ତା'ପରେ ଆମେ ମୁହଁ ଦେଖାଇ ପାରିବା ରଂଜୁ ?

ରଂଜିତା ମୋ ପ୍ରଶ୍ନର କିଛି ଉତ୍ତର ଦେଲା ନାହିଁ । ମୋ କୋଳରେ ମୁଣ୍ଡ ରଖି ଶୋଇଥିଲା କେବଳ ।

ଆହୁରି କିଛି ସମୟ ନୀରବରେ କଟିଗଲା ।

ମୋର ମନେହେଲା ରଂଜିତା ଯେପରି ପରମ ଶାନ୍ତିରେ ଶୋଇ ପଡ଼ିଛି ।

ମୁଁ ତା' ମୁଣ୍ଡଟିକୁ ମୋ କୋଳ ଉପରୁ କାଢ଼ିବାକୁ ଚେଷ୍ଟା କଲି ।

ରଂଜିତା କହିଲା : ଆପଣ ମୋତେ ନିଜର କରିବା ପାଇଁ ଯେଉଁ ପ୍ରତିଶ୍ରୁତି ଦେଇ ଆସିଲେ, ଶେଷଯାଏ ତାହା ରକ୍ଷା କରି ପାରିବେ ତ ?

: ଯଦି ରକ୍ଷା ନ କରେ ?

: ତେବେ ବି ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ସେତେବେଳେ ମୁଁ ରଂଜିତାର ମୁଣ୍ଡ ସାଉଁଳେଇ ଦେଉଥିଲି । ସେ ବୋଧହୁଏ ଟିକିଏ ପ୍ରକୃତିସ୍ଥ ହୋଇଥିଲା ।

ମୋର ମନେହେଲା ନୌକାଟା ଯେପରି ସ୍ରୋତର ତାଳେ ତାଳେ ନୃତ୍ୟ ରଚନା କରି ଧୀରେ ଧୀରେ ଆଗେଇ ଚାଲିଛି ।

ମୁଁ କହିଲି : ନୌକାଟା ଗଙ୍ଗା ଗର୍ଭକୁ ଚାଲିଯାଉ ନାହିଁ ତ ?

ସେ କହିଲା : ଭୟ କରୁଛ ?

: ଭୟର ଯଥେଷ୍ଟ କାରଣ ଅଛି ରଂଜୁ ! କାରଣ ନଙ୍ଗରବିହୀନ ନୌକା, ଅନଭିଜ୍ଞ ଚାଳକ, ଯଦି ସ୍ରୋତ ମୁଖରେ ପଡ଼େ ?

: ତଥାପି ଭୟର କିଛି କାରଣ ନାହିଁ ।

: ଯଦି ଭଉଁରୀ ଭିତରେ ପଡ଼େ, ଆମର ସତ୍ତା ଲୋପ ହୋଇଯିବ ଯେ !

: ହେଉ, ସେଇ ତ ଆନନ୍ଦ । ସେଠାରେ ତମେ ଥିବ ଆଉ ମୁଁ ଥିବି । ଦୁହେଁ ଦୁହିଁଙ୍କୁ ଆଶ୍ରୟ କରି ବିଲୀନ ହୋଇଯିବା ।

: ସେଥିରେ ତ ଜୀବନର ପୂର୍ଣ୍ଣତା ଆସିବ ନାହିଁ ।

ରଂଜିତା ପୁଣି ହସି ଉଠିଲା ।

ନୌକାଟା ହଠାତ୍ କାହିଁକି ଦୋହଲି ଉଠିଲା ଟିକିଏ ଜୋର୍‌ରେ । ବୋଧହୁଏ ସ୍ରୋତର ଗତି ବଢ଼ିଥିଲା । ଅଥବା...

ନା ନା, ଆକାଶରେ ଝଡ଼ ଉଠିଛି ବୋଧହୁଏ । ନୌକାଟା ଏଥର ଆହୁରି ଜୋର୍‌ରେ ଦୋହଲିବାର ମୁଁ ଅନୁଭବ କରି କହିଲି : ଆମେ ବାହାରକୁ ବାହାରି ଯିବା ଚାଲ ରଂଜୁ । ବୋଧହୁଏ ଆକାଶରେ ଝଡ଼ ଉଠିଛି ।

ତା' ମନରେ ଯେପରି କୌଣସି ସ୍ପନ୍ଦନ ନାହିଁ । ସେହିପରି ନିସ୍ତେଜ ସ୍ୱରରେ କହିଲା : ଝଡ଼, ଝଞ୍ଜା, ବାଆ ତୋଫାନ ଆଜି କାହାକୁ ମୋର ଡର ନାହିଁ । ମୃତ୍ୟୁ ହେଲେ ବି ତମରି କୋଳରେ ତ ମୁଁ ଆରାମରେ ଆଖି ବୁଜି ପାରିବି ।

: ଛି ରଂଜୁ ! ଏଗୁଡ଼ା ଯୁକ୍ତି ନୁହେଁ । ଜୀବନଟା କେବଳ କଳ୍ପନା ଭିତରେ ଜିଇ ପାରିବ ନାହିଁ । ବାସ୍ତବ ନିର୍ମମ ହେଲେ ମଧ, ତା'ରି ଭିତରେ ବଂଚି ରହି ସ୍ୱାଦ ଆହରଣ କରିବାକୁ ହେବ । ସେଇଠି ପ୍ରକୃତ ଆନନ୍ଦ ।

ପ୍ରକୃତରେ ଝଡ଼ ଉଠିଥିଲା ଆକାଶରେ ।

ନୌକାଟା ଆମର ଦୋହଲୁଥିଲା ଭୀଷଣ ଭାବରେ ।

ମୁଁ ରଂଜିତାକୁ ଟାଣି ଉଠାଇ ଉପରକୁ ଉଠିଲି । ଆକାଶର ଅବସ୍ଥା କଳନା କରିବା ସମ୍ଭବ ନୁହେଁ । ଭୀଷଣ ଅନ୍ଧକାର ।

ମୁଁ ରଂଜିତାର ଗୋଟାଏ ହାତ ଧରି ଟାଣି ଟାଣି ନୌକା ଉପରୁ ଓହ୍ଲାଇ ଯାଇଥିଲି । ରଂଜିତା ସେତେବେଳେ ବୋଧହୁଏ ଆତ୍ମସତ୍ତା ହରାଇଥିଲା ।

ମୋ ସହିତ ସେ ତଳକୁ ଓହ୍ଲେଇଲା । ପାହାଚ ଅତିକ୍ରମ କରି ଉପରକୁ ଉଠିଲା । କିନ୍ତୁ ବଉଳ ମୂଳ ଛାଡ଼ି ଆଉ ପାଦେ ଆଗେଇବାକୁ ରାଜି ହେଲା ନାହିଁ ।

ମୁଁ ବି ବଉଳ ଗଛ ମୂଳର ସିମେଣ୍ଟ ଚଟାଣ ଉପରେ ତା' ପାଖରେ ବସିଲି ।

ଝଡ଼ ବହୁଥିଲା ପ୍ରବଳ ବେଗରେ ।

ରଂଜିତା କହିଲା : ତମେ ଫେରିଯାଅ । ଆଉ କିଛି ସମୟ ପରେ ମୁଁ ଘରକୁ ଚାଲିଯିବି ।

: କିନ୍ତୁ ଏଇ ଅନ୍ଧକାର, ଝଡ଼ରାତ୍ରିରେ ମୁଁ ତମକୁ ଏକା ଛାଡ଼ି ଚାଲିଯିବି କିପରି ରଂଜୁ ! ଚାଲ ତମକୁ ଘରେ ଛାଡ଼ି ଆସିବି ।

: ନା ନା ଦୀପକ, ମୋ ପାଇଁ ତମେ ମୋଟେ ବ୍ୟସ୍ତ ହୁଅ ନାହିଁ । ମୁଁ ନିଶାଚରୀ । ନିଶା ମୋର ବଂଧୁ ।

ଝଡ଼ର ବେଗ ବଢ଼ିଥିଲା । ହୁଏତ ଆଉ କିଛି ସମୟ ପରେ ବର୍ଷା ଓହ୍ଲେଇ ଆସିବ ।

ମୁଁ ରଂଜିତାର ହାତ ଧରି ଟାଣି ଉଠାଇଲି ।

ସେ ଅତି କଷ୍ଟରେ ଉଠି ଠିଆ ହେଲା । କହିଲା : ତମେ ତମ ଘରକୁ ଯାଅ, ମୁଁ ଆମ ଘରକୁ ଯାଉଛି ।

ରଂଜିତା ଚାଲିଗଲା । ଅନ୍ଧକାରରେ ବିଲୀନ ହୋଇଗଲା । ମୁଁ ସ୍ତବ୍ଧ ହୋଇ ଠିଆ ହୋଇ ରହିଲି କିଛି ସମୟ ।

ଆକାଶରୁ ବଡ଼ ବଡ଼ ପାଣିଟୋପା ଦେହରେ ପଡ଼ିବାର ଅନୁଭବ କରି ଫେରିଗଲି ଘରକୁ ।

ସେଇ ଅନ୍ଧକାର ଭିତରେ କ୍ଳାନ୍ତ ଦେହଟାକୁ ଶୁଆଇ ଦେଲି ବିଛଣାରେ ।

ମୋର ସେଦିନ ମନେ ହୋଇଥିଲା, ବାସ୍ତବିକ୍ ଅନ୍ଧକାରର ଏକ ସ୍ୱତନ୍ତ୍ର ସ୍ୱରୂପ ଅଛି । ସ୍ୱତନ୍ତ୍ର ମାଦକତା ଅଛି । ଯାହା ମୋ ପାଖରେ ଏତେ ଦିନ ଯାଏ ଅନାବିଷ୍କୃତ ହୋଇ ରହିଯାଇଥିଲା ।

ଆରଦିନ ସକାଳୁ କାହା ହାତର ସ୍ପର୍ଶରେ ମୋର ନିଦ୍ରାଭଂଗ ହୋଇଥିଲା ।

ରଂଜିତା ।

ଆରେ ରଂଜିତାର ଆଜି ଭିନ୍ନ ରୂପ ଯେ !

ବେଶ ବାସରେ ସେ ଆଜି ଶକୁନ୍ତଳା ।

ଖଟ ଉପରେ ମୋ ଦେହକୁ ଲାଗି ବସିପଡ଼ି କହିଲା : କାଲି ରାତିରେ ଅନେକ ଡେରିରେ ଶୋଇଛ ବୋଧେ !

: ଆଉ ତମେ ? ମୁଁ ଓଲଟି ପ୍ରଶ୍ନ କଲି ।

: ମୁଁ ! ମୋ କଥା ଆପଣ ବୁଝିପାରୁ ନାହାନ୍ତି । ସକାଳୁ ଉଠି ନିତ୍ୟକର୍ମ ଶେଷ କରି, ଚା' ଜଳଖିଆ ଖାଇସାରି, ଏଠାକୁ ଆସିଛି । ଆଉ ଆପଣ...

ରଂଜିତାର ମୁହଁଟା ସେତେବେଳେ ମୋ ଆଖି ଆଗରେ ସହସ୍ର ଗୁଣ ଉଜ୍ଜ୍ୱଳ ଦିଶୁଥିଲା । ଏଇ ସେଇ ରଂଜିତା । କାଲି ଯିଏ ରାତ୍ରିର ଅନ୍ଧକାର ଭିତରେ...

: ଆରେ ମୋ ଆଡ଼େ ଏମିତି ଭୋକିଲାଙ୍କ ପରି ଚାହିଁଛନ୍ତି କ'ଣ ? ମନେହେଉଛି ମୋତେ ଯେପରି ଇତିପୂର୍ବରୁ କେବେ ଦେଖି ନାହାନ୍ତି ।

: ରଂଜୁ ! ମୁଁ ରଂଜିତାର ହାତଟିକୁ ମୋ ହାତ ଭିତରକୁ ଟାଣିବାକୁ ଚେଷ୍ଟା କରିଥିଲି । ସେ କିନ୍ତୁ ଘୁଞ୍ଚେଇ ନେଇଥିଲା । ଦୂରେଇ ବସିଥିଲା ଆଉ ଟିକିଏ ।

ମୁଁ ତା'ର ଆଉ ଟିକିଏ ପାଖକୁ ଲାଗି ଆସିଥିଲି ।

ରଂଜିତା କିଛି ନ ଜାଣିଲା ପରି ଉଠି ଯାଇଥିଲା ଖଟ ଉପରୁ । ଫ୍ଲାସ୍କରୁ ଚା' ତକ ଗୋଟିଏ କପ୍‌ରେ ଢାଳୁ ଢାଳୁ କହିଲା : ଆଠଟା ବାଜି ଗଲାଣି । ଆଉ ଡେରି କରନ୍ତୁ ନାହିଁ । ଆଉ ଟିକକ ପରେ ଅଫିସ୍ ବେଳ ହୋଇଯିବ ଯେ ।

ମୁଁ କହିଲି : ରଂଜୁ, ଆଜି କେବଳ ଶୋଇ ଶୋଇ ତମକୁ ମୋର ଦେଖିବାକୁ ମନ ହେଉଛି ।

ରଂଜିତା ଚାହିଁଲା ମୋ ଆଡ଼କୁ । ମୁହଁରେ ହସ ।

ନୀରବରେ ଚା' କପ୍‌ଟି ମୋ ହାତକୁ ବଢ଼ାଇ ଦେଲା ।

: କାଲି କେତେବେଳେ ଶୋଇଲ ? ମୁଁ ପଚାରିଲି ।

: ମନେ ନାହିଁ । ସେ ସଂକ୍ଷେପ ଉତ୍ତର ଦେଲା ।

: ଦିନର ଆଲୋକରେ ଦେଖିଲେ ତମକୁ ଭିନ୍ନ ମନେହୁଏ ରଂଜୁ ।

: ରାତ୍ରିର ଅନ୍ଧକାରରେ ଆପଣ କ'ଣ କେବେ ଦେଖିଛନ୍ତି ମୋତେ ?

ମୁଁ ଖାଲି ହସିଲି ଟିକିଏ ।

ରଂଜିତା ବି ହସିଲା ।

ସାମାନ୍ୟ ନୀରବତା ପରେ ମୁଁ କହିଲି : କାଲିର ଝଡ଼ ରାତ୍ରିରେ ଆମର ନୌକାଟା ଯଦି ଗଙ୍ଗା ମଧ୍ୟରେ ନିଶ୍ଚିହ୍ନ ହୋଇ ଯାଇଥାଆନ୍ତା, ଆଜି ଆମେ ଆଉ ଏଇ ସୁନ୍ଦର ପୃଥିବୀର ମୁହଁ ଦେଖିପାରି ନଥାନ୍ତେ ।

: ଆପଣ ଶୋଇ ଶୋଇ ଅନେକ ସ୍ୱପ୍ନ ଦେଖନ୍ତି ବୋଧେ ! ରଂଜିତା ପଚାରିଲା ।

: ଆଜିକାଲି ବହୁ ବାସ୍ତବ ଘଟଣା ପାଖରେ ସ୍ୱପ୍ନ ମୁଣ୍ଡ ନୁଆଁଏ ।

: ସତ ଯେ, ତେବେ ଆପଣଙ୍କ ପରି କଳ୍ପନା ବିଳାସୀମାନେ ବାସ୍ତବ ଅପେକ୍ଷା ସ୍ୱପ୍ନକୁ ନେଇ ବଂଚି ରୁହନ୍ତି । ରଂଜିତା ହସି ହସି ଉତ୍ତର ଦେଲା ।

: ତମେ ତା'ହେଲେ କାଲି ରାତ୍ରିର ସମସ୍ତ ଘଟଣା ଅସ୍ୱୀକାର କରିବାକୁ ଚାହଁ ? ମୋ କଣ୍ଠର ସ୍ୱରଟା ବୋଧହୁଏ ଟିକିଏ କର୍କଶ ହୋଇ ଉଠିଥିଲା ।

: କୋଉ ଘଟଣା କଥା ଆପଣ କହୁଛନ୍ତି ?

: କାଲି ରାତ୍ରିରେ, ଯାହା ଯାହା ଘଟିଲା ସବୁ ।

: ମୁଁ ଅସ୍ୱୀକାର କରିବି କାହିଁକି ଦୀପକ ବାବୁ ! ସେ ଆମର ପାରିବାରିକ ଘଟଣା । ମଝିରେ ମଝିରେ ବାବା ମା'ଙ୍କ ଭିତରେ ସେହିପରି କଳି ହୋଇଥାଏ । ବାବା ଅବଶ୍ୟ ଶେଷଯାଏ ମା'ଙ୍କ କଥା ମାନି ନେଇଥିଲେ ।

: ରଂଜୁ, ମୁଁ ଶିଶୁ ନୁହେଁ । ମୋତେ ତମେ ଭୁଲାଇ ପାରିବ ନାହିଁ ।

: ଆପଣ ବିଶ୍ୱାସ କରନ୍ତୁ ଦୀପକ ବାବୁ, ଏହି ଘଟଣା ଛଡ଼ା ଆଉ କିଛି ଘଟି ନାହିଁ । ଅବଶ୍ୟ ପ୍ରଥମ ଅବସ୍ଥାରେ ବାପା ଟିକିଏ ବଡ଼ ପାଟି କରି ଉଠିଥିଲେ ।

: ତମେ ରଂଜୁ ପ୍ରକୃତିସ୍ଥ ହୁଅ ।

: ମୁଁ ସଂପୂର୍ଣ୍ଣ ସୁସ୍ଥ ଅଛି ଦୀପକ ବାବୁ । ଏହିପରି ଆଉ କିଛିଦିନ ଆପଣଙ୍କ କରୁଣା ପାଇଲେ, ମୁଁ ଆହୁରି ସୁସ୍ଥ ହୋଇ ଉଠିବି ।

: ନା ରଂଜୁ, ଏଇଟା ଥଟ୍ଟାର ବେଳ ନୁହେଁ । ମୋ ପ୍ରଶ୍ନର ଉତ୍ତର ଦିଅ ତମେ ।

: ଆରେ, ଆପଣ କ'ଣ କହୁଛନ୍ତି ? ମୁଁ କ'ଣ ଆପଣଙ୍କ ଆଗରେ ମିଛ କହୁଛି ?

: ତମେ କାଲି ରାତିରେ ଆସିନାହଁ ମୋ ଘରକୁ ? ମୋ କଣ୍ଠରେ ଦୃଢ଼ତା ଫୁଟି ଉଠିଥିଲା ।

ରଂଜିତା କିନ୍ତୁ ମୁହଁ ଚିପି ଚିପି ହସୁଥିଲା । କହିଲା : ସ୍ୱପ୍ନ, ଆପଣ ଏବେ ବି ସ୍ୱପ୍ନ ରାଜ୍ୟରେ ବିଚରଣ କରୁଛନ୍ତି ଦୀପକ ବାବୁ ।

: ତମେ କାଲି ମୋତେ ଡାକି ନେଇ ନାହଁ ଗଙ୍ଗା ବକ୍ଷକୁ ?

: ମୁଁ ଯେତେବେଳେ ଗଙ୍ଗା ବକ୍ଷକୁ ଯିବି ସେତେବେଳେ କାହାରି ସାହାଯ୍ୟ ଲୋଡ଼ିବି ନାହିଁ । ରଂଜିତାର କଣ୍ଠ ଏଥର ଭାରି ହୋଇ ଉଠିଥିଲା ।

: ତମେ କାଲି ମୋ ହାତ ଧରି ମୋତେ ଟାଣି ନେଇ ନାହଁ ନୌକା ଭିତରକୁ ?

: ବାଃ, ସୁନ୍ଦର ରୋମାନ୍‌ସ ତ ? ତା'ପରେ ?

: ଝଡ଼ ବହିଲା, ମେଘ ଆସିଲା । ବିକଟ ଅନ୍ଧକାର ମଧ୍ୟରେ ଝୁଲନ୍ତ ନୌକା ଭିତରେ ତମେ ମୋ ଦେହରେ ଦେହ ଭାର ନଦି ଶୋଇଥିଲ ଆରାମରେ । ଏଗୁଡ଼ା ସବୁ ତୁମେ ଅସ୍ୱୀକାର କରିବାକୁ ଚାହଁ ରଂଜିତା ?

: ଏଥର ପ୍ରକୃତରେ ରଂଜିତାର ମୁହଁ ଭାରି ହୋଇ ଉଠିଥିଲା ।

ସେ ଉଠି ଠିଆ ହେଲା । କହିଲା : ଦୀର୍ଘଦିନ ପରେ ଜୀବନର ଜଣେ ମହତ୍ ବନ୍ଧୁ ରୂପେ ଆପଣଙ୍କୁ ପାଇଥିଲି । କିନ୍ତୁ ଶେଷରେ ଆପଣ ଯେ ଏତେ ଇତର...

ରଂଜିତା ତା' କଥା ଅସମାପ୍ତ ରଖି ଚାଲିଯାଉଥିଲା ।

ମୁଁ ଉଠିଯାଇ, ତା' ହାତ ଧରି ଟାଣି ଅଟକାଇଲି ।

: ତମେ ବିଶ୍ୱାସ କର ରଂଜିତା । ମୁଁ କାଲି ତମ ପାଖରୁ ଫେରି ଆଉ କୁଆଡ଼େ ଯାଇ ନାହିଁ । ଶୋଇ ଶୋଇ କେବଳ ତମରି କଥା ଭାବୁଥିଲି । ଆଉ ଭାବୁଥିଲି, ଭବିଷ୍ୟତରେ ତୁମକୁ ନେଇ କିପରି ସଂସାର ଗଢ଼ିବି ।

ଧୀରେ ଧୀରେ ମୋ ଆଖି ବୁଜି ହୋଇ ଆସିଥିଲା ।

ତା'ପରେ... ତା'ପରେ...

ଗତ ରାତିରେ ଘଟି ଯାଇଥିବା ସମସ୍ତ ଘଟଣା ଗୋଟି ଗୋଟି କରି ମୁଁ ରଂଜିତା ଆଗରେ ବର୍ଣ୍ଣନା କଲି ।

ସେ ଖାଲି ହସିଲା । ହସି ହସି ଗଡ଼ିଗଲା । କହିଲା : ସବୁ ଆପଣଙ୍କ ମନର ଭ୍ରମ । ଆପଣ ସ୍ୱପ୍ନ ଦେଖିଛନ୍ତି । ଆଉ ସ୍ୱପ୍ନ ଆପଣଙ୍କୁ ଏପରି ବିଭୋର କରି ରଖିଛି ଯେ, ଏତେବେଳ ଯାଏ ଆପଣ ପ୍ରକୃତିସ୍ଥ ହୋଇ ନାହାନ୍ତି ।

ମୋ ମୁହଁରୁ ବୋଧହୁଏ ରକ୍ତ ଶୁଖିଯାଇଥିଲା । ଗଳା ମୋର ଶୁଖି ଯାଇଥିବାର ମୁଁ ଅନୁଭବ କରୁଥିଲି ।

କହିଲି : ହୁଏତ କାଲି ରାତି ଘଟଣାକୁ ତମେ ସ୍ୱପ୍ନ ବୋଲି କହି ଉଡ଼େଇ ଦେଇପାର । କିନ୍ତୁ ଏହା ପୂର୍ବରୁ ଗଭୀର ନିଶିଥରେ, ତମେ ପାଦ ଚିପି ଚିପି ଆସି ନାହଁ ମୋ ଘରକୁ ?

ରଂଜିତା ସେହିପରି ହସୁଥିଲା । ହସି ହସି କହିଲା : ସବୁ ଆପଣଙ୍କ ମନର ଭ୍ରମ ଦୀପକ ବାବୁ । ଆପଣ ମୋ ପାଇଁ ଟିକିଏ ଅଧିକ ପରିମାଣରେ ସ୍ଥାନ ଖାଲି କରି ଦେଇଛନ୍ତି ମନ ଭିତରେ । ସେଇଥିପାଇଁ...

: ରଂଜିତା ! ମୋ ସ୍ୱରଟା ଟିକିଏ କମ୍ପି ଉଠିଥିଲା । ମୁଁ ପୁଣି କହିଲି, କିନ୍ତୁ ମୋ ଘରେ ଧୂପକାଠି ଜାଳିବା, ମୋ ଗଳାରେ ବଉଳମାଳା ପିନ୍ଧାଇବା, ଏଗୁଡ଼ା କ'ଣ ସବୁ ମୁଁ ଖାଲି ଅନୁଭବ କରୁଛି । ହେଇ ଦେଖ, ଖଟ ବାଡ଼ରେ ସେଇ ବଉଳ ମାଳଟା ଏବେ ବି ତମର ଗୋପନ ଅଭିସାର କଥା ପ୍ରମାଣ କରୁଛି ।

: ଦୀପକ ବାବୁ ! ରଂଜିତା ଗର୍ଜି ଉଠିଲା ।

ରଂଜିତାର ଏହା ଯେପରି ଏକ ଭିନ୍ନ ରୂପ ।

ମୁଁ ନୀରବ ହୋଇଗଲି । ସ୍ଥିର ହୋଇ ବହୁତ ବେଳ ଯାଏ ଅନାଇ ରହିଲି ରଂଜିତାର କ୍ରୁଧିତ ନୟନ ଆଡ଼େ ।

ରଂଜିତାକୁ ମୁଁ ଅବିଶ୍ୱାସ ନ କଲେ ବି ନିଜକୁ ବା ଅବିଶ୍ୱାସ କରିବି କିପରି ?

ମୁଁ ସ୍ତବ୍ଧ ହୋଇ ବସିଥିଲି ।

ରଂଜିତା ଧୀରେ ଧୀରେ ଆଗେଇ ଆସିଲା ମୋ ଖଟ ପାଖକୁ । କହିଲା : ଆପଣ ବିଶ୍ୱାସ କରନ୍ତୁ, ରାତ୍ରିର ଅନ୍ଧକାର ଭିତରେ କୌଣସି ଦିନ ମୁଁ ଆସି ନାହିଁ 'ମାଧବୀ ଭିଲା'କୁ ।

: ତା'ହେଲେ ? ମୁଁ ମନ ଭିତରେ ହଜାର ପ୍ରଶ୍ନବାଚୀ ଉଠାଇ, ରଂଜିତା ମୁହଁକୁ ଅନାଇ ରହିଥିଲି ।

ରଂଜିତା ମୋ ପାଖରେ ବସି, ଧୀରେ ଧୀରେ ମୋ ଦେହରେ ହାତ ବୁଲାଇ ଦେଇ କହିଲା : ଏ ତ ବଡ଼ ବିଚିତ୍ର ଅନୁଭୂତିର କଥା ।

: ହଁ, ବିଚିତ୍ର ନିଶ୍ଚୟ । କିନ୍ତୁ ଅବିଶ୍ୱାସ ନୁହେଁ । ଆଚ୍ଛା ରଂଜୁ ! ପ୍ରଥମେ ଯେଉଁଦିନ ରାତିରେ ତମେ ଆସିଲ ଏଠାକୁ, କିପରି ଜାଣିଲ ଯେ ମୁଁ ଅଚେତ ହୋଇ ପଡ଼ିରହିଚି ବଗିଚା ଭିତରେ ?

ରଂଜିତା କିଛି ସମୟ ଗଭୀର ଚିନ୍ତା କରି କହିଲା : ସେଦିନ, ହଁ ସେଦିନ କଥା ମୋର ମନେଅଛି । ମା' ମତେ ଡାକି ଉଠାଇଲେ । ସେ ତ ଭୋର ବେଳା । ମା'ଙ୍କୁ କିଏ କୁଆଡ଼େ ଡାକି କହିଗଲା ଆପଣଙ୍କ କଥା । ଆପଣ ଅସୁସ୍ଥ । ମା' ଉଠିଆସି କବାଟ ଖୋଲି କାହାରିକୁ ପାଇଲା ନାହିଁ । କିନ୍ତୁ ଆପଣଙ୍କ ଘରକୁ ଆସି ଦେଖିଲା, ପ୍ରକୃତରେ ଆପଣ ଅସୁସ୍ଥ ହୋଇ ଶୋଇଛନ୍ତି । ସେ ଯାଇ ମୋତେ ଡାକି ଆଣିଲା । ମୁଁ ଆପଣଙ୍କ ଶେଯ ପାଖରେ ବସିଥିଲି । ଆପଣ ଚେତା ପାଇ ଉଠି ପ୍ରଥମେ ମୋତେ ଦେଖିଲେ ।

: ହୁଁ । ପ୍ରକୃତରେ ଚିନ୍ତାର ବିଷୟ ।

ମୁଁ ଗୁମ୍ ହୋଇ ବସି ଯାଇଥିଲି ।

ରଂଜିତା ବୋଧହୁଏ ମୋତେ ସାନ୍ତ୍ୱନା ଦେବାର ସୂତ୍ର ଖୋଜି ପାଉ ନଥିଲା ।

କିଛି ସମୟ ପରେ ରଂଜିତା ଉଠି ଯାଇଥିଲା ତାଙ୍କ ଘରକୁ ।

ମୁଁ ବି ଚାଲି ଯାଇଥିଲି ଅଫିସ୍‌କୁ ।

କିନ୍ତୁ ମନ ଭିତରେ ସେଇ ଗୋଟିଏ ପ୍ରଶ୍ନ ବାରମ୍ବାର ଉଠୁଥିଲା । ତା'ହେଲେ ସେ କିଏ ? ନିଶାର୍ଦ୍ଧରେ ଲୁଚି ଲୁଚି ଆସି, ଯିଏ ମୋତେ ଅସ୍ଥିର କରି ପକାଏ କିଏ ସେହି ନାରୀ ?

ପ୍ରେତାତ୍ମା ?

ଅସମ୍ଭବ । ମୁଁ ତା' ଦେହର ସ୍ପର୍ଶ ପାଇଛି । ମୁହଁର କଥା ଶୁଣିଛି । ସେ ମୋତେ ଅଚେତ ଅବସ୍ଥାରେ ଉଠାଇ ଆଣି ଖଟରେ ଶୁଆଇ ଯାଇଛି ।

କିନ୍ତୁ ନିଜର ଆତ୍ମପ୍ରକାଶ କରୁ ନାହିଁ କାହିଁକି ?

ମୋ ପାଇଁ ବ୍ୟାକୁଳ ହୋଇ, ମୋ ସ୍ପର୍ଶ ସୁଖ ପାଇବା ପାଇଁ ସେ ଛୁଟି ଆସି ଏପରି ଆତ୍ମଗୋପନ କରି ରହିଛି କାହିଁକି ?

ଅଫିସ୍‌ରେ ମୁଁ କାମ କରିପାରିଲି ନାହିଁ । କ୍ୟାଣ୍ଟିନ୍‌ରେ ମୁଁ ଭାତ ଖାଇପାରିଲି ନାହିଁ ।

ତା'ହେଲେ କିଏ ! କିଏ ସେଇ ନାରୀ ?

ଏପାଖ ସେପାଖ ହୋଇ, ମନ ଭିତରୁ କୌଣସି ଉତ୍ତର ନ ପାଇ, ସେଦିନ ମୁଁ ଫେରି ଆସିଥିଲି ଘରକୁ ।

ସେ ଆଜି ହୁଏତ ପୁଣି ଆସିବ ।

ଆଜି ତାକୁ ମୁଁ ଅନ୍ଧକାରରୁ ଟାଣି ବାହାର କରିବି ।

ମୋତେ କିଛି ଭଲ ଲାଗୁ ନଥିଲା ।

ମୁଁ ଶୋଇବାକୁ ଉଦ୍ୟମ କରୁଥିଲି ।

ସେତିକିବେଳେ ରଂଜିତାର ମା' ଆସି ଆଗରେ ଠିଆ ହେଲେ । କହିଲେ : ରଂଜୁ ଠାରୁ ମୁଁ ସବୁ କଥା ଶୁଣିଲି ବାବା ! ସେ କିଛି ନୁହେଁ । ସେ ଗୋଟାଏ ଅଶାନ୍ତ ଆତ୍ମା । ବେଳେବେଳେ ସେ ଉତ୍ପାତ କରେ । ତଥାପି ତମକୁ ଟିକିଏ ସାବଧାନ ହୋଇ ରହିବାକୁ ହେବ ।

ମୁଁ ପଚାରିଲି : କାହାର ଅଶାନ୍ତ ଆତ୍ମା ?

ସେ କହିଲେ : ସେ ଅନେକ ଦିନ ତଳର କଥା । ଅନେକ ଦିନ ମାନେ ଏଇ କୋଡ଼ିଏ ପଚିଶି ବର୍ଷ ହେବ । 'ମାଧବୀ ଭିଲା'ର ମାଲିକ ଯିଏ ଥିଲେ, ତାଙ୍କ ନାଁ ଉଦୟଭାନୁ ରାୟ । ସେମାନେ ଜମିଦାର ଥିଲେ । କଲିକତାର ଶ୍ୟାମ ବଜାରରେ ତାଙ୍କର ଘର ।

ଏଇ 'ମାଧବୀ ଭିଲା'ଟା ସେମାନଙ୍କର ଥିଲା 'ବାଗାନବାଡ଼ି' । ସେତେବେଳେ ଏ ଅଞ୍ଚଳରେ ଏତେ ଘରଦ୍ୱାର ନଥିଲା ।

କେବେ କେବେ ସେମାନେ ବଂଧୁବାନ୍ଧବମାନଙ୍କୁ ଧରି ଆସନ୍ତି ଏଠାରେ ଫୂର୍ତ୍ତି କରିବା ପାଇଁ । ନାଚି କୁଦି, ଖାଇପିଇ ଆନନ୍ଦ କରି ଫେରିଯାଆନ୍ତି ସନ୍ଧ୍ୟା ବେଳକୁ ।

କିନ୍ତୁ ଆମେ ଦିନେ ଜାଣିପାରିଲୁ ଯେ, 'ମାଧବୀ ଭିଲା'ରେ ଗୋଟିଏ ସୁନ୍ଦରୀ ସ୍ତ୍ରୀ ବସବାସ କରି ରହୁଛି । ଚାକର ବାକର ଶ୍ରେଣୀୟ ଲୋକ ଜଣେ ଦି'ଜଣ ମଧ୍ୟ ରହୁଛନ୍ତି ।

ମାଧବୀ ଭିଲାର ସେହି ସୁନ୍ଦରୀ ସ୍ତ୍ରୀଟି ଉଦୟଭାନୁଙ୍କର ରକ୍ଷିତା ସ୍ତ୍ରୀ । ଉଦୟଭାନୁ ମଝିରେ ମଝିରେ ଆସି ରହୁଥିଲେ । ଏହିପରି ଚାଲିଥିଲା ।

କିନ୍ତୁ ହଠାତ୍ ଦିନେ ମାଧବୀ ଭିଲାରେ ଏକ ପ୍ରଳୟଙ୍କରୀ କାଣ୍ଡ ଘଟିଗଲା ।

ରାତି ଅଧରେ ଧୁ ଧୁ ହୋଇ ଜଳିଉଠିଲା ମାଧବୀ ଭିଲା ।

ନାରୀ କଣ୍ଠର ଏକ ଆର୍ତ୍ତନାଦରେ ଥରି ଉଠିଲା ରାତ୍ରିର ଛାତି ।

ଆରଦିନ ସକାଳୁ ଆମେ ଶୁଣିଲୁ, ଉଦୟଭାନୁଙ୍କର ସେଇ ରକ୍ଷିତାଟି କୁଆଡ଼େ ନିଆଁରେ ପୋଡ଼ି ମରିଛି ଏବଂ ତାକୁ ପୋଡ଼ି ମାରିବା ପାଇଁ ଅନ୍ୟ କେହି ଷଡ଼ଯନ୍ତ୍ର କରିଥିଲେ । ତାକୁ ବାହାର ଘରେ ବାନ୍ଧି ପକାଇ ଘରେ ନିଆଁ ଲଗେଇ ଦିଆ ହୋଇଥିଲା ।

ତା'ପରେ ବହୁତ ଘଟଣା ଘଟିଲା । ପୋଲିସ୍ ଆସିଲେ । ଉଦୟଭାନୁ ଆସିଲେ । ଦିନ କେତୁଟା ମାଧବୀ ଭିଲା କମ୍ପି ଉଠିଲା ।

କିନ୍ତୁ ଧୀରେ ଧୀରେ ସବୁ ସ୍ତବ୍ଧ ହୋଇଗଲା ।

ଶାନ୍ତ ନୀରବତା ଓହ୍ଲେଇ ଆସିଲା ମାଧବୀ ଭିଲାରେ ।

କୁଆଡ଼େ ଗଲେ ଉଦୟଭାନୁ ରାୟ । କୁଆଡ଼େ ଗଲେ ପୋଲିସ୍ ଇନିସ୍‌ପେକ୍ଟର । କାହାରି ଚିହ୍ନବର୍ଣ୍ଣ ମିଳିଲା ନାହିଁ ।

କିନ୍ତୁ ଉଦୟଭାନୁ ରାୟଙ୍କର ସେହି ରକ୍ଷିତା ହତଭାଗିନୀଟିର ହତ୍ୟା ରହସ୍ୟ ଉଦ୍‌ଘାଟନ ହୋଇପାରିଲା ନାହିଁ । ଅବଶ୍ୟ ଲୋକମୁଖରେ ନାନା କଥା ଶୁଣିବାକୁ ମିଳିଲା । କିଏ କହିଲା, ଉଦୟଭାନୁ ରାୟଙ୍କର ନିଜ ସ୍ତ୍ରୀ ଏହା କରିଥିଲେ । ଆଉ କିଏ କହିଲା, ଉଦୟଭାନୁଙ୍କର ବିରୋଧୀ ପକ୍ଷ, ଯେଉଁମାନଙ୍କର ସେହି ସୁନ୍ଦରୀ ସ୍ତ୍ରୀଟି ଉପରେ ଲୋଭ ଥିଲା, ସେମାନେ ଏହା କରିଥିଲେ ।

ଏହିପରି କିଛିଦିନ ଚାଲିଲା ।

ତା'ପରେ କିଏ କାହା ଖବର ରଖେ ?

ମାଧବୀ ଭିଲା ସେଇ ଦିନଠାରୁ ଖାଲି ପଡ଼ିଥିଲା ଅନେକ ଦିନଯାଏ ।

କୌଣସି ଆନନ୍ଦ ଉତ୍ସବର କଳରୋଳ ଆଉ ଶୁଭି ନଥିଲା କେବେ । ତା'ପରେ ହଠାତ୍ ଦିନେ ଦେଖାଗଲା, ସସ୍ତ୍ରୀକ ଜଣେ ଭଦ୍ରଲୋକ ବାସ କରୁଛନ୍ତି । ସେମାନେ କିଛିଦିନ ବସବାସ କରି ଭୂତ ଭୟରେ କୁଆଡ଼େ ଛାଡ଼ି ପଳାଇଲେ ।

ଅବଶ୍ୟ ସେଇ ଭଦ୍ରଲୋକଙ୍କ ସ୍ତ୍ରୀଙ୍କ ସହିତ ମୋର ପରିଚୟ ହୋଇଥିଲା ।

ତାଙ୍କ ସ୍ତ୍ରୀ କହୁଥିଲେ, ଦିନେ ଦିନେ ରାତି ଅଧରେ, ସେ କାହାର ପାଦଶବ୍ଦ ଶୁଣନ୍ତି, ଗୁଣୁଗୁଣୁ ହୋଇ ଗୀତ ଗାଉଥିବାର ଏବଂ ଚୁପି ଚୁପି ହସୁଥିବାର ଶବ୍ଦ ସେ ଶୁଣିଛନ୍ତି । ଖାଲି ସେତିକି ନୁହେଁ, ଦିନେ ଗୋଟାଏ ଛାୟାମୂର୍ତ୍ତି ସ୍ପଷ୍ଟ ସେ ଦେଖିଛନ୍ତି, ବଉଳ ମୂଳରେ ବସି, ବଉଳ ଫୁଲର ମାଳା ଗୁନ୍ଥୁ ଥିଲା ।

ତା'ପରେ ଅନେକ ଲୋକ ଏଇ ମାଧବୀ ଭିଲାରେ ରହିଛନ୍ତି, ଯାଇଛନ୍ତି ।

କାଳକ୍ରମେ ସେଇ ଭୂତ ଭୟ ଲୋପ ପାଇ ଯାଇଥିଲା । ଅଶାନ୍ତ ଆତ୍ମାଟା ବୋଧହୁଏ ସ୍ଥାନ ତ୍ୟାଗ କରିଥିଲା । କିନ୍ତୁ ଆଜି ମୁଁ ରଂଙ୍କୁ ମୁହଁରୁ ଯାହା ଶୁଣିଲି...

: ଚିନ୍ତାର ବିଷୟ । ମୋତେ ହୁଏତ ଏଠାରୁ ଘରଛାଡ଼ି ଚାଲିଯିବାକୁ ହେବ, ମୁଁ କହିଲି ।

ରଂଜିତାର ମା' କଥାଟା ଉପରେ ବେଶି ଗୁରୁତ୍ୱ ଆରୋପ ନ କରି କହିଲେ : ତମର ବ୍ୟସ୍ତ ହେବାର କିଛି ନାହିଁ ବାବା । ସେ ଆତ୍ମା ଅଶାନ୍ତ ହେଲେ ବି କାହାରି କିଛି ଅନିଷ୍ଟ କରେ ନାହିଁ । ତମର ଡରିବାର କିଛି ନାହିଁ । ଆଜିଠାରୁ ମୁଁ ପୁଣି ଆମ ଚାକରଟାକୁ ପଠାଇବି । ସେ ଆସି ଶୋଇବ ।

ରଂଜିତାର ମା' ଚାଲିଗଲେ ।

ତାଙ୍କ ଚାକରଟା ଆସି ମୋ ଘରେ ଶୋଉ, ଏହା ମୁଁ ଚାହୁ ନଥିଲି । କାରଣ ଅର୍ଦ୍ଧ ନିଶିଥର ରୋମାଞ୍ଚରେ ରୋମାଞ୍ଚିତ ହୋଇ ମୋର ସେଇ ଛାୟା ସଂଗିନୀକୁ ଆବିଷ୍କାରର ନିଶା ମୋତେ ଘାରି ରଖିଥିଲା ।

ସେଦିନ ରଂଜିତାର ମା' ଚାକର ପଠାଇଥିଲେ ।

ମୁଁ କିନ୍ତୁ ଫେରେଇ ଦେଇଥିଲି ।

ବିଛଣାରେ ଶୋଇ ଶୋଇ ନୀରବରେ ପ୍ରତୀକ୍ଷା କରିଥିଲି ଅନେକ ବେଳ ଯାଏ । ଅନ୍ଧକାର ଭିତରେ ଉଠି ଯାଇଥିଲି ବାଡ଼ି ବଗିଚାକୁ । ବଉଳ ମୂଳେ ପ୍ରତୀକ୍ଷା କରିଥିଲି ଛାୟାସଂଗିନୀ ପାଇଁ । ତା'ପରେ ପାହାଚ ପରେ ପାହାଚ ଅତିକ୍ରମ କରି ଓହ୍ଲେଇ ଯାଉଥିଲି ଗଙ୍ଗା ଗର୍ଭକୁ ।

ଜୁଆର ପୂର୍ଣ୍ଣ ହୋଇଥିଲା ।

ତରଙ୍ଗ ସଙ୍ଗୀତ ସୃଷ୍ଟି କରୁଥିଲା ।

କିନ୍ତୁ ନୌକା ? ନିଶାଚରୀ ? କିଏ କାହିଁ ?

ପୁଣି ଫେରି ଆସିଥିଲି ଘରକୁ । ବିଛଣା ଉପରେ, ଅନ୍ଧକାର ଭିତରେ ଛଟପଟ ହୋଇଥିଲି ଅନେକ ରାତିଯାଏ ।

ମୋ ଅଜାଣତରେ ଆଖି କେତେବେଳେ ଲାଗି ଯାଇଥିଲା ।

ସକାଳେ ଆସି ନିଦ ଭାଂଗିଥିଲା ରଂଜିତା ।

ପ୍ରଥମେ ସେ ମୋ ବେକରେ ବଉଳମାଳା ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରି କହିଥିଲା : କାଲି ବି ଆପଣ ନୌକା ବିହାର କରିଥିଲେ ଆପଣଙ୍କ ଛାୟାସଂଗିନୀ ସହିତ !

ମୁଁ ସ୍ତବ୍ଧ ହୋଇ ଦେଖୁଥିଲି ବେକର ବଉଳ ମାଳାଟିକୁ ।

ଆଉ ଦେଖିଥିଲି ରଂଜିତା ମୁହଁର ସ୍ମିତ ହାସ୍ୟ ।

ମୋର ଯେପରି ମନେ ହୋଇଥିଲା, ସବୁ ଏଇ ରଂଜିତାର କୀର୍ତ୍ତି । ସେ ହୁଏତ ସକାଳୁ ଆସି ମୋ ବେକରେ ବଉଳ ମାଳାଟି ପିନ୍ଧାଇ ଦେଇ, ମୋତେ ପରିହାସ କରୁଛି । ତା' ନହେଲେ... କାଲି ମୁଁ ତ ଚେଇଁ ରହିଥିଲି ଏକପ୍ରକାର ।

ମୋ ନୀରବତା ବୋଧହୁଏ ସେ ସହିପାରୁ ନଥିଲା ।

କହିଲା : କାଲି ବି ଆସିଥିଲା ସେ ?

ମୁଁ କହିଲି : ପ୍ରମାଣ ତ ତମ ଆଖି ଆଗରେ ଦେଖୁଛ ।

: ହୁଁ, ରାତିଗୁଡ଼ାକ ତା'ହେଲେ ଆପଣଙ୍କର ବେଶ୍ ଆନନ୍ଦରେ କଟୁଛି ।

ମୋତେ କିନ୍ତୁ ରଂଜିତାର ଚାହାଣି, କଥାର ଢଙ୍ଗ, ସବୁ କିପରି ରହସ୍ୟମୟ ମନେ ହେଉଥିଲା ।

ମୁଁ ନୀରବରେ ଚା' ପିଉଥିଲି ।

ରଂଜିତା ପ୍ରସଙ୍ଗ ବଦଳାଇ କହିଲା : ଆଜି ପୁଣି ମାମୁ ଆସିବେ ।

: ମାମୁ ? ପୁଣି କାହିଁକି ଆସିବେ ?

: ମୋ ବିବାହ ପ୍ରସଙ୍ଗ ସ୍ଥିର କରିବା ପାଇଁ ।

ମୋ ଭିତରଟା କିପରି କମ୍ପି ଉଠିଲା । ମୁଁ ନୀରବରେ ରଂଜିତା ମୁହଁକୁ ଅନାଇ ରହିଲି ।

ସେ କହିଲା : ମା' ବୋଧହୁଏ ଆସିବ ଏଇକ୍ଷିଣା ।

: କାହିଁକି ?

: ଆପଣଙ୍କୁ ଆମ ଘରକୁ ଯିବା ପାଇଁ କହିବ ।

: ଆସନ୍ତୁ ।

: ଆପଣ ମାମୁଙ୍କୁ କ'ଣ କହିବେ ?

: କୋଉ କଥା ?

ରଂଜିତା କିଛି ଉତ୍ତର ଦେଲା ନାହିଁ ।

ମୁଁ ବି ପୁଣି ନୀରବରେ ଚା' ପିଇଲି ।

ସେ କହିଲା : ଆପଣ ସ୍ପଷ୍ଟ ମନା କରିଦେବେ ।

: କୋଉ କଥା ?

: ମୋ ଦାୟିତ୍ୱ ଆପଣ ଗ୍ରହଣ କରିପାରିବେ ନାହିଁ ।

: କାହିଁକି ? ମୁଁ ହସି ହସି ପଚାରିଲି ।

ରଂଜିତାର ମୁହଁ କିନ୍ତୁ ବିବର୍ଣ୍ଣ ହୋଇ ଯାଇଥିଲା । ସେ ନିସ୍ତେଜ ସ୍ୱରରେ କହିଲା : ମୋ ଦାୟିତ୍ୱ ବହନ କରି ଆପଣ କ'ଣ ସୁଖୀ ହୋଇପାରିବେ ?

: ମଣିଷ ଜୀବନ କ'ଣ କେବଳ ସୁଖ ପାଇଁ ? ତା'ଛଡ଼ା ମୋତେ ପାଇ ତମେ କ'ଣ ସୁଖୀ ହୋଇପାରିବ ନାହିଁ ?

: ମୋ କଥା ସ୍ୱତନ୍ତ୍ର । ନାରୀମାନେ ଯେକୌଣସି ଗୋଟିଏ ଆଶ୍ରୟ ଚାହାନ୍ତି ।

: କିନ୍ତୁ ତମେ ତ ଆଉ ସେଇ ନାରୀ ନୁହଁ ।

: ନହେଲେ ବି, ଏକା ଜାତି ତ !

: ତା'ହେଲେ ତମ ମାମୁ ଯେଉଁଠି ବନ୍ଦୋବସ୍ତ କରୁଥିଲେ, ସେ ତ ବର ଭଲ ଘର ଭଲ । ସେଠି କାହିଁକି...

ରଂଜିତା ବାଧା ଦେଲା । କହିଲା : ତୁଳନାମୂଳକ ମୋତେ କିଛି କୁହନ୍ତୁ ନାହିଁ ଦୀପକ ବାବୁ । ମୁଁ ଆପଣଙ୍କୁ କିଛି ଅନୁରୋଧ କରିବାକୁ ଆସି ନାହିଁ କିମ୍ବା ମୋ ସମ୍ବନ୍ଧରେ କିଛି ଆଲୋଚନା ଶୁଣିବାକୁ ଆସି ନାହିଁ । ଆପଣଙ୍କୁ ମୋତେ ଭଲ ଲାଗେ, ଆସୁଛି । ଯେଉଁଦିନ ଭଲ ନ ଲାଗିବ, ସେଦିନ ଆଉ ରଂଜିତାର ଛାଇ ଦେଖିବେ ନାହିଁ ।

: ଭଲ ଲାଗିବାଟା ଉପରେ କ'ଣ ଏକା ତମରି ଅଧିକାର ଅଛି, ଆଉ କାହାରି ନାହିଁ ?

: ଥାଇପାରେ । ତେବେ ପ୍ରତ୍ୟେକ ମଣିଷର ଭଲ ପାଇବାର ସଂଜ୍ଞା ଅଲଗା ହୋଇପାରେ ।

ମୁଁ କ'ଣ କହିବାକୁ ଯାଉଥିଲି । କିନ୍ତୁ ରଂଜିତାର ମା'ଙ୍କୁ ଆସୁଥିବାର ଦେଖି ନୀରବ ହୋଇଗଲି । ରଂଜିତା ମୋ ଖଟ ଉପରୁ ଉଠି ଧୀରେ ଧୀରେ ବାହାରକୁ ବାହାରିଗଲା ।

ରଂଜିତାର ମା' ଆସି ମୋ ସାମ୍ନାରେ ଠିଆ ହୋଇଥିଲେ ।

କ'ଣ କହିବେ କହିବେ ହୋଇ ଯେପରି କହିପାରୁ ନଥିଲେ ।

ମୁଁ କହିଲି : ମୋର ସମୟ ହୋଇଗଲାଣି, ଅଫିସ୍ ପାଇଁ ପ୍ରସ୍ତୁତ ହେବାକୁ ହେବ, ଆପଣ କିଛି କହିବେ ?

: ଆଜି ବହୁତ କିଛି କହିବାକୁ ଆସିଛି ବାବା । ମୋ ପାଇଁ ଟିକିଏ ସମୟ ନଷ୍ଟ କରିବାକୁ ପଡ଼ିବ । ମା' ହୃଦୟର ଦୁଃଖ ତମ୍ଭୁକୁ ବୁଝିବାକୁ ହେବ ।

: କ'ଣ କୁହନ୍ତୁ ।

: ଆଜି ରଂଜିତାର ମାମୁ ଆସୁଛି ।

: ଆସନ୍ତୁ । ମୋର ତ ଆଜି ଆଉ କିଛି କାମ ନାହିଁ ।

: ସେଦିନର ପ୍ରତିଶ୍ରୁତି ଅନୁସାରେ ସେ ରଂଜିତାର ବିବାହ ଦିନ ଠିକ୍ କରିବାକୁ ଆସୁଛି ।

: ସେ ଦାୟିତ୍ୱ ତ ଆପଣଙ୍କର । ସେଥର ମୁଁ ଆପଣଙ୍କ ମାନ ରଖିଛି, ଆପଣ ଏଥର ମୋ ମାନ ରଖିବେ ।

: ମୁଁ ପାରିବି ବାବା । ମୁଁ ସବୁ ପାରିବି । କିନ୍ତୁ ରଂଜୁର ମୁହଁଟାକୁ ଚାହିଁଲେ ମୋ ମନର ସବୁ ଦୃଢ଼ତା ଭାଂଗି ଯାଉଛି ।

: କାହିଁକି ?

: ସେ ତମ ଛଡ଼ା ଜୀବନରେ ଆଉ କାହାରି ସାନ୍ନିଧ ଚାହେ ନାହିଁ ।

: ଆପଣ କିପରି ଜାଣିଲେ ?

: ମା' ମୁଁ । ସନ୍ତାନର ମନକଥା ମା'ଠାରୁ କିଏ ଅଧିକ ବୁଝେ ।

: କିନ୍ତୁ ସେଥିପାଇଁ ମୁଁ ତ ଦାୟୀ ନୁହେଁ ।

: ଜାଣେ ବାବା । କିନ୍ତୁ ଏକଥା ବି ଜାଣିବାକୁ ଚାହେ, ରଂଜୁ କ'ଣ ଜୀବନରେ ତମକୁ ସୁଖୀ କରିପାରିବ ନାହିଁ ?

: ସେ ତ ଆଉ ଏକ ସ୍ୱତନ୍ତ୍ର ପ୍ରଶ୍ନ ।

: ହେଲେ ବି ତମ ମନ ଭିତରୁ ଏ ପ୍ରଶ୍ନର ଉତ୍ତର ପାଇଲେ ଭଲ ହୁଅନ୍ତା ।

: ମୁଁ ପରେ ଚିନ୍ତା କରି କହିବି ।

: କିନ୍ତୁ ଆଜି ସେ ଆସିବ ବାବା । ତା' ସାମ୍‌ନାରେ ମୁଁ ଗୋଟାଏ କିଛି ଫଏସଲା କରିବାକୁ ଚାହେଁ ।

: ଆମର ପୂର୍ବ ସର୍ତ୍ତ ଅନୁସାରେ ଆପଣ କାମ କରିବେ । ତା'ପରେ ମୋ ମନ ଭିତରେ ରଂଜିତା ପାଇଁ ଯଦି କୌଣସି ପ୍ରଶ୍ନ ଜାଗେ, ତାହା ସ୍ୱତନ୍ତ୍ର କଥା । ଆଜି କିନ୍ତୁ ମୁଁ ରଂଜିତାର ମାମୁଙ୍କ ସାମ୍‌ନାକୁ ଯିବାକୁ ଚାହେ ନାହିଁ ।

: ଏଇ କ'ଣ ତମର ଶେଷ ଉତ୍ତର ବାବା ।

: ହଁ ।

: ଆଉଥରେ ଚିନ୍ତା କରି କୁହ । ରଂଜିତା ଆଡ଼କୁ ଟିକିଏ ଚାହଁ । ସେ ଏକାନ୍ତ ନିଃସହାୟ । ଦୁନିଆରେ ଆଉ ତା'ର କେହି ଆପଣାର ନାହିଁ ।

ମୁଁ ସବୁ ଶୁଣି ବି କିଛି ନ ଶୁଣିଲା ପରି ଉଠି ଠିଆ ହେଲି । କହିଲି : ମୁଁ ସେଥର ଆପଣଙ୍କ ମାନ ରକ୍ଷା କରିଥିଲି, ଏଥର ଆପଣ ମୋ ମାନ ରକ୍ଷା କରନ୍ତୁ । ଏହାଠାରୁ ଅଧିକ ଆଉ କିଛି ମୁଁ କହୁ ନାହିଁ ।

ମୁଁ ଚାଲି ଯାଉଥିଲି ।

ସେ ଜଡ଼ିତ କଣ୍ଠରେ କହିଲେ : ତଥାପି ତମେ ଟିକିଏ ଚିନ୍ତା କରିବ ବାବା । ଚାରିଟା ବେଳ ଯାଏ ସମୟ ଅଛି । ମୁଁ ଅପେକ୍ଷା କରିବି । ତମେ ଯଦି ନ ଆସ, ତେବେ ମୋ ପ୍ରତିଶ୍ରୁତି ମୁଁ ରକ୍ଷା କରିବି ।

ସେ ଆଉ ଠିଆ ହେଲେ ନାହିଁ ।

ମୁଁ ତାଙ୍କ ଯିବା ପଥକୁ କିଛି ସମୟ ଅନାଇ ରହି ଏକ ଦୀର୍ଘଶ୍ୱାସ ତ୍ୟାଗ କଲି । ତା'ପରେ ପଶିଲି ବାଥ୍‌ରୁମ୍ ଭିତରେ ।

ସମସ୍ତ କାର୍ଯ୍ୟ ଯନ୍ତ୍ରଚାଳିତ ପରି ଶେଷ କଲି ।

ଏକ ଅଲଂଘନୀୟ ଦୁର୍ଭାବନା ମୋତେ ଆଚ୍ଛନ୍ନ କରି ରଖିଥିଲା ।

ଅଫିସ୍ କରିପାରିଲି ନାହିଁ ।

ଚିଠି ପଢ଼ି ପାରିଲି ନାହିଁ ।

ସବୁଆଡ଼େ ମୁଁ କିପରି ଏକ କରୁଣ ପ୍ରତିଧ୍ୱନି ଶୁଣିଲି ।

ରଂଜିତା । ଆହା ବିଚାରୀ କାନ୍ଦୁଚି ସୁଁ ସୁଁ ହୋଇ । ତକିଆ ତଳେ ମୁହଁ ଗୁଂଜି ପଡ଼ିରହିଚି ହୁଏତ । କାହାରି ଡାକ ଶୁଣୁ ନାହିଁ । କାହାରି ଆଶ୍ୱାସନା ମନ ଭିତରେ ରେଖାପାତ କରୁ ନାହିଁ ।

ସେ ହୁଏତ ପ୍ରତୀକ୍ଷା କରିଥିବ ତା'ର ପରିଚିତ ଆଉ ଅନ୍ତରଙ୍ଗର ପାଦ ଶବ୍ଦକୁ ।

ସେ ପାଦଶବ୍ଦ ଯଦି ତା' କାନରେ ନ ପହଞ୍ଚେ ।

ରଂଜିତାର କ'ଣ ଆଉ ନିଦ୍ରାଭଙ୍ଗ ହେବ ନାହିଁ ?

ମୁଁ ସ୍ଥିର ହୋଇ ବସିପାରିଲି ନାହିଁ । ବିଚାରୀ ସକାଳୁ ସକାଳୁ ଆଜି ଉଠି ଆସିଥିଲା ମୋ ପାଖକୁ, ତା' ମନର କଥା କହିବା ପାଇଁ ।

କିନ୍ତୁ ମୁଁ ତାକୁ ଶୁଣେଇବାର ସୁଯୋଗ ଦେଲି ନାହିଁ ତ !

ସେ ଫେରି ଯାଇଥିଲା । ହୁଏତ ଆଖିର ଅଶ୍ରୁକୁ ଗୋପନ କରିଥିଲା ।

କିନ୍ତୁ...

ମୁଁ ଉଠି ପଡ଼ିଲି । ଘଡ଼ିରେ ତିନିଟା ବାଜି ଯାଇଥିଲା । ଚାରିଟା ଭିତରେ ପହଞ୍ଚି ପାରିଲେ, ଚଳିବ ।

ରଂଜିତା ମୋତେ ଅନ୍ତର ମନରେ ଚାହେ । କାହିଁକି ଚାହେ ସେ କଥା ସ୍ୱତନ୍ତ୍ର । କିନ୍ତୁ ମୁଁ କ'ଣ ଚାହେ ନାହିଁ ରଂଜିତାକୁ ?

ମୁଁ ତାଙ୍କ ଦୁଆର ମୁହଁରେ ପହଞ୍ଚିଲା ବେଳକୁ ରଂଜିତାର ମା' ଅପେକ୍ଷା କରିଥିଲେ । ମୋତେ ଦେଖି ସେ ଯେପରି କୋଟିନିଧି ପାଇଲେ ।

କହିଲେ : ମୁଁ ଜାଣେ ବାବା, ତମେ ଆସିବ । ନ ଆସି ରହିପାରନ୍ତ କେମିତି । ରଂଜୁ ସେତିକିବେଳୁ ବିଛଣାରେ ପଡ଼ିଚି । କାହାରି ସହିତ କଥା ନାହିଁ, ବାର୍ତ୍ତା ନାହିଁ । ତା' ବାପା, ତା' ମାମୁ ଡାକି ଡାକି ଉଠୁ ନାହିଁ ।

ମୁଁ ତାଙ୍କ କଥାର କିଛି ଉତ୍ତର ଦେଲି ନାହିଁ ।

ପାଦେ ପାଦେ କରି ଆଗେଇ ଯାଉଥିଲି ଘର ଭିତରକୁ ।

ଆଜି ବି ଉପର ବାରଣ୍ଡାରେ ବହୁ ଉତ୍ସୁକ ଚାହାଣି ।

ରଂଜିତାର ମାମୁ ମୋତେ ଦେଖି ପଚାରିଲେ : ଆଜି ବିବାହର ଦିନ ଧାର୍ଯ୍ୟ କରିବାକୁ ମୁଁ ଆସିଛି । ଆଗାମୀ ୨୭ ତାରିଖରେ ବିବାହ ଲଗ୍ନ ଅଛି । ଆଶା କରୁଛି ତୁମେ ଏହା ଭିତରେ ପ୍ରସ୍ତୁତ ହୋଇପାରିବ ।

ମୁଁ ହିସାବ କରି ଦେଖିଲି, ହାତରେ ଆଉ ବାରଦିନ ମିଳୁଛି । ସେତକ ସମୟ ମୋ ପକ୍ଷରେ ଯଥେଷ୍ଟ । ଘରକୁ ଯାଇ ବାପାମା'ଙ୍କୁ ରାଜି କରେଇବାକୁ ହେବ । ଅବଶ୍ୟ କେହି ଅସମ୍ମତି ପ୍ରକାଶ କରିବେ ନାହିଁ । ତେବେ...

ପୁଣି ସେ କହିଲେ : ଆଉ ଗୋଟାଏ କଥା ଦୀପକ ବାବୁ । ବାହାଘରଟା ଏଇଠି ହେବ । ସେ ଅନୁସାରେ ତମେ ତମ ଗୁରୁଜନମାନଙ୍କ ସହିତ କଥାବାର୍ତ୍ତା କରି ସବୁ ଠିକ୍‌ଠିକ୍ କରିବ ।

ମୁଁ ତାଙ୍କର ଦୁଇଟିଯାକ ପ୍ରସ୍ତାବରେ ସମ୍ମତି ଜଣାଇ ସିଧା ସିଧା ରଂଜିତା ଘରକୁ ଚାଲିଗଲି । ସେ ସତରେ ତଳକୁ ମୁହଁ ମାଡ଼ି ଲୁହ ଗଡ଼ାଉ ଥିଲା । ଆଉ ଠିକ୍ ସେ ମୋ ପାଦଶବ୍ଦର ଧ୍ୱନି ବାରି ମୁହଁ ଟେକି ଚାହିଁଲା ।

ମୋତେ ଦେଖିବା ମାତ୍ରେ ପୁଣି ମୁହଁମାଡ଼ି ଦେଲା ।

ବୋଧହୁଏ ଅଭିମାନରେ ।

ମୋ ମନରେ ଆଉ କୌଣସି ଦ୍ୱିଧା ନଥିଲା ।

ମୁଁ ସିଧା ଯାଇ ତା' ବିଛଣା ଉପରେ ବସିଲି । ଦେହରେ ହାତ ମାରି ଡାକିଲି ।

ରଂଜିତା ସେହିପରି ମୁହଁ ମାଡ଼ି କହିଲା : ମୋତେ ବିରକ୍ତ କର ନାହିଁ ।

ମୁଁ ହୁଏତ ଆଉ କ'ଣ କହିଥାନ୍ତି । କିନ୍ତୁ ରଂଜିତାର ମା' ଆସି ପହଞ୍ଚିଥିଲେ । ମୋର ଉଚ୍ଛ୍ୱସିତ ପ୍ରଶଂସା କରି ଏକାଥରକେ ମୋର ମୁହଁ ବନ୍ଦ କରିଦେଲେ ।

ମୁଁ ଲକ୍ଷ୍ୟ କଲି ରଂଜିତା ଧୀରେ ଧୀରେ ଉଠିଲା ।

ସେ ଘରୁ ଚାଲିଗଲା । କିଛି ସମୟ ପରେ ନିଜ ହାତରେ ଚା' କରି ଆଣି ମୋ ସାମ୍ନାରେ ଠିଆ ହେଲା ।

ଚା' ପିଇଲି ।

ରଂଜିତା ମୁହଁରୁ ଯେପରି ଧୀରେ ଧୀରେ କଳା ମେଘଗୁଡ଼ିକ ଉଡ଼ି ଯାଉଥିଲା ।

ମୁଁ ଆଉ କିଛି କହିଲି ନାହିଁ ।

ତା' ପିଇସାରି ଚୁପ୍‌ଚାପ୍ ଉଠି ଚାଲିଗଲି ।

ମୋ ମନଟା ଟିକିଏ ହାଲ୍‌କା ହୋଇ ଯାଇଥିଲା । ଆଉ ଯାହା ହେଉ ନ ହେଉ ରଂଜିତାକୁ ମୁଁ ବଂଚାଇ ଦେଇଛି, ଏଇ ଭାବଟା ମୋ ମନରେ ଜାଗି ଉଠିଥିଲା ।

ସେଦିନ ମୁଁ ଏଣେତେଣେ ଖୁବ୍ ବୁଲିଥିଲି । ବନ୍ଧୁବାନ୍ଧବମାନଙ୍କ ଘରକୁ ଯାଇ ଖୁସି ଗପ କରିଥିଲି । କ୍ଲବ୍‌ରେ ତାସ୍ ଖେଳିଥିଲି । ଫେରିଥିଲି ଅନେକ ରାତିରେ ।

ଘରେ ପଶି ଶୋଇପଡ଼ିବା ଛଡ଼ା ଆଉ କିଛି କାମ ନଥିଲା ।

ସେଦିନ ଆଉ ନିଶାଚରୀର ଆଗମନ ପ୍ରତୀକ୍ଷା କରି ଉତ୍କଣ୍ଠିତ ହୋଇ ନଥିଲି ।

କାରଣ ମୁଁ ଭାବି ନେଇଥିଲି, ରଂଜିତା ଆଉ ଅର୍ଦ୍ଧ ନିଶିଥରେ ନିଶାଚରୀ ହୋଇ ଆସିବ ନାହିଁ । ଆବଶ୍ୟକ ନାହିଁ ।

କିନ୍ତୁ ମୋତେ ଛାଇନିଦ ଲାଗି ଆସିବା ମାତ୍ରେ ମୁଁ ଦେହରେ କାହା ହାତର ସ୍ପର୍ଶ ପାଇଲି ।

କିଏ ?

ମୁଁ ଚମକି ଉଠିଲି ।

ଘରେ ଆଲୋକର ବନ୍ୟା ଖେଳିଗଲା । ଦେଖିଲି ମୋ ସାମ୍‌ନାରେ ଅପରୂପ ସାଜରେ ଠିଆ ହୋଇଛି ରଂଜିତା । ହାତରେ ତା'ର ଦୁଇଟି ବଉଳ ଫୁଲର ମାଳା ।

ମୁଁ ଆଶ୍ଚର୍ଯ୍ୟ ହୋଇ ନଥିଲି ।

ବରଂ ରଂଜିତାର ହସିଲା ମୁହଁକୁ ଚାହିଁ ଗୌରବ ଅନୁଭବ କରିଥିଲି ।

ରଂଜିତା ମାଳା ଦୁଇଟି ଧରି ମୋ ଆଡ଼କୁ ଆଗେଇ ଆସୁଥିଲା ।

ମୁଁ ଚାହିଁଥିଲି, ଆଉ...

ରଂଜିତା ମୋ ବେକରେ ଗୋଟିଏ ବଉଳ ମାଳା ଲମ୍ବାଇ ଦେଇ କହିଥିଲା : ତମେ ବଉଳ ମାଳାକୁ ଭଲ ପାଅ ତ, ସେଇଥିପାଇଁ...

ସେ ବୋଧହୁଏ ମୋ ପାଦଧୂଳି ନେବା ପାଇଁ ନଇଁ ପଡ଼ିଥିଲା ।

ମୁଁ କିନ୍ତୁ ତାକୁ ତଳୁ ଉଠାଇ ନେଇ, ଆଉ ମାଳାଟିକୁ ତା' ବେକରେ ଲମ୍ବାଇ ଦେଇ କହିଥିଲି : ଏକା ମୁଁ ନୁହେଁ, ତମେ ବି ବଉଳ ଫୁଲକୁ ଭଲପାଅ । ସେ ମୋ କୋଳରେ ନିର୍ବିକାର ଚିତ୍ତରେ ଦେହଭାର ନଦି ଦେଇଥିଲା । ମୁଁ ଡାକିଲି : ରଂଜୁ !

: ଉଁ ।

: ତମେ ଖୁସି ହେଇଛ ?

ସେ କିଛି କହିଲା ନାହିଁ ।

ମୁଁ ତା' ମୁଣ୍ଡର ବାଳ କେରାକୁ ସାଉଁଳେଇ ଦେଉ ଦେଉ କହିଲି : ସେଦିନ ତୁମେ ଅସ୍ୱୀକାର କରୁଥିଲ କାହିଁକି ?

: କୋଉ କଥା ?

: ନିଶା-ବିହାର କଥା । ଲୁଚି ଲୁଚି ଧୂପ ଜାଳି ଦେଇଯିବା କଥା ।

: ଆଜି ବି ଅସ୍ୱୀକାର କରୁଛି ।

: ତା'ହେଲେ ? ଆଉ କିଏ ଲୁଚି ଲୁଚି ଆସୁଥିଲା ଅର୍ଦ୍ଧ ନିଶିଥରେ ?

ରଂଜିତା ମୋ ମୁହଁରେ ହାତ ଦେଇ କହିଲା : ଥାଉ ଆଜି ଆଉ ସେ କଥାଗୁଡ଼ା ଆଲୋଚନା କରି ମୁଁ ସମୟ ନଷ୍ଟ କରିବାକୁ ଚାହେ ନାହିଁ । ମୋର ଯୁଗ ଯୁଗାନ୍ତରର କାମନା ଆଜି ପୂର୍ଣ୍ଣ ହୋଇଛି । ସାଧନା ମୋର ସଫଳ ହୋଇଛି । ସତରେ ଦୀପକ ତମକୁ ନ ପାଇଥିଲେ, ମୁଁ ବଂଚିପାରି ନଥାନ୍ତି ।

ମୁଁ ରଂଜିତାର ତୃଷାର୍ତ୍ତ ଆଖି ଦୁଇଟି ଆଡ଼େ ଚାହିଁଲି । ସତରେ ଯୁଗ ଯୁଗର ତୃଷା ଭରି ରହିଛି ତା' ଭିତରେ ।

ହାତ ବୁଲାଇ ନେଲି ତା'ର ସର୍ବାଙ୍ଗରେ ।

ସେ ଆଖି ବୁଜିଦେଲା ନୀରବରେ ।

: ରଂଜୁ !

: ଉଁ ।

: ମୋତେ ପାଇ ସତରେ କ'ଣ ତମେ ସୁଖୀ ହୋଇପାରିବ ?

: ତମ ସହିତ ପଥର ଭିକାରି ହେବାକୁ ମୁଁ ପ୍ରସ୍ତୁତ ଅଛି ।

: କାହିଁକି ?

: କହିପାରିବି ନାହିଁ ।

: ମୁଁ ଯଦି କୁହେ ତମେ ମନରଖା କଥା କହୁଛ ।

: ତମେ ଆଜି ଯାହା କୁହ, ଯାହା ଭାବ, ମୁଁ କିନ୍ତୁ ଆଜି ସେସବୁ ଚିନ୍ତା ଭାବନାର ବହୁ ଦୂରରେ । ତମେ ମତେ ଆଉ ବିରକ୍ତ କର ନାହିଁ । ନିଶ୍ଚିନ୍ତରେ ଟିକିଏ ଶୋଇବାକୁ ଦିଅ ।

: କିନ୍ତୁ ଏତେ ରାତିରେ, ତମର ଏହି ଗୋପନ ଅଭିସାର କଥା ଯଦି ମା' ଜାଣନ୍ତି, ବାବା ଶୁଣନ୍ତି, କ'ଣ ଭାବିବେ ସେମାନେ ?

ରଂଜିତା ଅଳ୍ପ ହସି, ଅର୍ଦ୍ଧ ଆଖି ଖୋଲି ମୋ ମୁହଁକୁ ଚାହିଁଲା, ଖାଲି ନୀରବ ଚାହାଣି ।

ମୋର ମନେ ଅଛି, ସେଇ ଚାହାଣିର ଭଙ୍ଗୀରେ ମୋର ସର୍ବାଙ୍ଗ ରୋମାଞ୍ଚିତ ହୋଇ ଉଠିଥିଲା । ମୋ ହାତ ଦୁଇଟା ଥରି ଥରି ରଂଜିତାର ଗାଲ ଛୁଇଁଥିଲା ।

ସେ ପୁଣି ଥରେ ଚାହିଁଥିଲା ଅର୍ଦ୍ଧ ନିମିଳିତ ନୟନରେ । ହସିଥିଲା ଆହୁରି ଅନ୍ତରଙ୍ଗର ହସ ।

ସେ ହସର ଆକର୍ଷଣ ମୋତେ ଆହୁରି ଶିଥିଳ କରି ପକାଇଥିଲା । ମୁଁ ଆତ୍ମସତ୍ତା ହରାଇଥିଲି । ବୋଧହୁଏ ଧୀରେ ଧୀରେ ମୋର ମୁହଁଟା ନଇଁ ଆସିଥିଲା ତଳକୁ ।

ରଂଜିତା ତା' ଦୁଇ ବାହୁରେ ବେଷ୍ଟନ କରି ଧରିଥିଲା ମୋର ଗଳାକୁ ।

କାହାରି ମୁହଁରେ ଭାଷା ନଥିଲା ।

ଆମେ ଜଡ଼ ପାଲଟି ଯାଇଥିଲୁ ।

ଅନେକ ରାତିରେ, କେତେବେଳେ ରଂଜିତା ମୋତେ ଏକା ଶୁଆଇ ରଖି ଚାଲି ଯାଇଥିଲା ମୋର ମନେ ନାହିଁ ।

କିନ୍ତୁ ମୋର ମନେଅଛି, ମୁଁ ରଂଜିତା ମୁହଁରେ ମୁହଁ ରଖି ଆଖି ବୁଜିଥିଲି । ସେ ବି ଆଖି ବୁଜି ଦେଇଥିଲା ମୋ ଆଗରୁ ।

ମୋର ନିଦ୍ରାଭଙ୍ଗ ହେଲା ବାହାରର ଖୁବ୍ ଗୋଟାଏ ଗୋଳମାଳ ଶୁଣି । ଯେପରି ବହୁ କଳରୋଳ ଭାସି ଆସୁଛି ଏକା ସଂଗରେ ।

ମୁଁ ଉଠି ବସିଲି ।

ସକାଳ ହୋଇଯାଇଛି ଅନେକ ବେଳୁ । ଝରକା ଦେଇ ସୂର୍ଯ୍ୟକିରଣ ପଡ଼ିଛି ଆସି ମୋ ଘରେ । ବେକରେ ମଉଳି ଯାଇଛି ବଉଳ ମାଳାଟି ।

ମୋ ସର୍ବାଙ୍ଗରେ ତଥାପି ରକ୍ତ ସଞ୍ଚାଳିତ ହେଉ ନଥିଲା ବୋଧହୁଏ । କାରଣ ମୁଁ ଆମରି ବଗିଚା ଭିତରେ ଏତେ ପାଟିଗୋଳ ଶୁଣି ମଧ ହଠାତ୍ ଉଠିପାରି ନଥିଲି ।

ହାତ ଦୁଇଟା ଖୋଜୁଥିଲେ ବୋଧହୁଏ କାହାର ସ୍ପର୍ଶ । ଆଉ ଦେହଟା ?

କିଏ ଜଣେ ଆସି କବାଟଟା ଧଡ୍ କରି ଖୋଲିଦେଲା ।

ମୁଁ ସ୍ତବ୍ଧ ହୋଇ ଦେଖିଲି ଜଣେ ପୋଲିସ୍ ଅଫିସର । ତାଙ୍କ ପଛରେ ଆହୁରି ଅନେକ ଲୋକ ।

ସଦ୍ୟ ନିଦରୁ ଉଠିଥିବାରୁ କି କ'ଣ ମୁଁ ଆଖିକୁ ବିଶ୍ୱାସ କରିପାରୁ ନଥିଲି ।

ସେ କିନ୍ତୁ ପାଦେ ପାଦେ କରି ଆଗେଇ ଆସୁଥିଲେ ।

ସେ ଖାଲି ମୋ ମୁହଁକୁ ଚାହୁଁ ନଥିଲେ । ଘରର ସବୁଆଡ଼େ ତାଙ୍କର ସତର୍କ ଦୃଷ୍ଟି ବୁଲୁଥିଲା ।

ମୋ ସାମ୍ନାରେ ଠିଆ ହୋଇ କହିଲେ : ଆପଣ ରଂଜିତାକୁ ଚିହ୍ନନ୍ତି ?

: ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇଲି ।

: ସେ ଆତ୍ମହତ୍ୟା କରିବା କଥା ଆପଣ ଜାଣନ୍ତି ?

: ଆତ୍ମହତ୍ୟା ? ମୁଁ ତଡ଼ିତ୍ ବେଗରେ ବିଛଣାରୁ ଉଠି ଠିଆହୋଇ ପଡ଼ିଲି ।

: ହଁ, ଆତ୍ମହତ୍ୟା । ରଂଜିତା ଆତ୍ମହତ୍ୟା କରିଛି ।

: ଆପଣ କୋଉ ରଂଜିତା କଥା କହୁଛନ୍ତି ?

: ମୁଁ ସେଇ ରଂଜିତା କଥା କହୁଛି, ଯାହା ସହିତ ଆପଣଙ୍କର ବିବାହ ସ୍ଥିର ହୋଇଥିଲା ।

ହଠାତ୍ ବୋଧହୁଏ ମୁଁ ମୂକ ପାଲଟି ଯାଇଥିଲି ।

ଘର ଭିତରେ ଲୋକ ଗହଳି ବଢ଼ି ଯାଇଥିଲା ।

କିନ୍ତୁ ରଂଜିତା ଆତ୍ମହତ୍ୟା କଲା କେଉଁ ଦୁଃଖରେ ? ମୁଁ ବୋଧହୁଏ ଥରି ଥରି ତଳେ ବସିପଡୁଥିଲି ।

ପୋଲିସ୍ ଅଫିସର ଜଣକ ମୋ ହାତ ଧରି ମୋତେ ଶକ୍ତ କରି ଠିଆ କରାଇ କହିଲେ : ରଂଜିତାର ଶବ ଆପଣଙ୍କ ବଉଳ ଗଛରେ ଝୁଲୁଛି । ମୁଁ ସେଇଥିପାଇଁ ଆପଣଙ୍କୁ ବିରକ୍ତ କରିବାକୁ ଆସିଲି ।

ଶେଷରେ ରଂଜିତା ଆମରି ବଉଳ ଗଛରେ ଆତ୍ମହତ୍ୟା କଲା ? କିନ୍ତୁ କାହିଁକି, କେଉଁ ଦୁଃଖରେ ?

ପୋଲିସ୍ ଅଫିସରଙ୍କ ସହିତ ମୁଁ ବଉଳ ଗଛ ମୂଳ ଯାଏ ଗଲି ।

ରଂଜିତା । ଏ କାଲି ରାତିର ରଂଜିତା । ସେଇ ଲୁଗା, ସେଇ ଜାମା, ସେଇ ବେଶବାସ । ଖାଲି ଆଖିର ଚାହାଣିଟା ସ୍ଥିର ।

ରଂଜିତା ବଉଳ ମୂଳର ସିମେଣ୍ଟ ଚଟାଣ ଉପରେ ନୀରବରେ ଶୋଇଥିଲା । ଯେପରି ଗଭୀର ନିଦ୍ରାମଗ୍ନ ।

ସେ ନିଦ୍ରା ଆଉ କେବେ ଭାଂଗିବ ନାହିଁ ।

କିନ୍ତୁ ଏଇ ଦେହ, ଏଇ ମୁହଁ, ଏଇ ହାତର ସ୍ପର୍ଶ । ମାତ୍ର କେଇଘଣ୍ଟା ଆଗରୁ ମୋତେ ରୋମାଞ୍ଚିତ କରିଥିଲା ।

ମୋ ଆଖିରୁ ଟପ୍ ଟପ୍ ହୋଇ ଲୁହ ନିଗିଡ଼ି ପଡ଼ିଥିଲା ମୋର ସଂପୂର୍ଣ୍ଣ ଅଜାଣତରେ ।

ପୋଲିସ୍ ଅଫିସର ମୋତେ ସାନ୍ତ୍ୱନା ଦେଇ କହିଲେ : ଆଉ ଆଖିର ଲୁହ ନିଗାଡ଼ି ଆପଣ ରଂଜିତାକୁ ଜୀବନଦାନ କରିପାରିବେ ନାହିଁ । କିନ୍ତୁ ଆପଣଙ୍କ ସାହାଯ୍ୟ ନ ପାଇଲେ, ଏ ମୃତ୍ୟୁର କାରଣ ଆବିଷ୍କାର କରିବା ଆମ ପକ୍ଷରେ ସମ୍ଭବ ହେବ ନାହିଁ ।

: ମାନେ ? କେଜାଣି କିପରି ମୋ କଣ୍ଠରେ ଆତଙ୍କ ଫୁଟି ଉଠିଥିଲା ।

ପୋଲିସ୍ ଅଫିସର ମୋ ମୁହଁ ଉପରେ ତୀକ୍ଷ୍ଣ ଚାହାଣି ରଖି କହିଥିଲେ : ରଂଜିତାର ଆତ୍ମହତ୍ୟାର କାରଣ କେବଳ ଆପଣ କହିପାରିବେ ବୋଲି ସେମାନଙ୍କର ମତ ।

: କେଉଁମାନଙ୍କର ? ମୁଁ ଆହୁରି ଚଞ୍ଚଳ ହୋଇ ପଡ଼ିଥିଲି ।

: ରଂଜିତା ପରିବାରର !

: ରଂଜିତାର ମା' ବି ମୋତେ ଦୋଷୀ କଲେ ?

: ନା, ରଂଜିତାର ମା' ଅଜ୍ଞାନ ହୋଇ ପଡ଼ିଛନ୍ତି । ରଂଜିତାର ବାପା ଏକଥା କହିଲେ । କିନ୍ତୁ ରଂଜିତାର ମାମୁ...

: ସେ କ'ଣ କହିଲେ ? ମୋ କଣ୍ଠସ୍ୱର ବୋଧହୁଏ ଆହୁରି ଚଞ୍ଚଳ ହୋଇ ଉଠିଥିଲା ।

: ସେ କହୁଛନ୍ତି ରଂଜିତା ଆତ୍ମହତ୍ୟା କରି ନାହିଁ, ତାକୁ ହତ୍ୟା କରାହୋଇଛି ।

: ହତ୍ୟା !! ମାନେ ?

: ହତ୍ୟା ମାନେ, ରଂଜିତାକୁ ଖୁଣ୍ କରା ହୋଇଛି । ପୋଲିସ୍ ଅଫିସର ଅବିଚଳିତ କଣ୍ଠରେ କହିଥିଲେ ।

: ଖୁଣ୍, ରଂଜିତାକୁ ଖୁଣ୍ କରା ହୋଇଛି ? କିଏ ଖୁଣ୍ କରିଛି ରଂଜିତାକୁ ? ଇନିସ୍‌ପେକ୍ଟର ସାହେବ, କିଏ, କାହିଁକି, କେଉଁଥିପାଇଁ...

ମୁଁ ହଠାତ୍ ଅଟକି ଯାଇଥିଲି । ମୋ ଆଖି ଆଗରେ ଭାସି ଉଠିଥିଲା ରଂଜିତାର ମାମୁଙ୍କର ନିର୍ମମ ମୁଖମଣ୍ଡଳ । ସେଠି ଦୟା ମାୟା କରୁଣା କିଛି ନାହିଁ ।

ମୁଁ ବୋଧହୁଏ ଚିତ୍କାର କରି ଉଠିଥିଲି । କହିଥିଲି : ସେ ଠିକ୍ କହିଛନ୍ତି । ରଂଜିତା ଖୁଣ୍ ହୋଇଛି ଏବଂ ସେଇ ନିଜ ହାତରେ ରଂଜିତାକୁ ଖୁଣ୍ କରିଛନ୍ତି । କାରଣ ସେ ଯେଉଁଠି ରଂଜିତାର ବିବାହ ପ୍ରସ୍ତାବ ସ୍ଥିର କରିଥିଲେ, ରଂଜିତା ସେଠି ବିବାହ କରିବାକୁ ସମ୍ମତି ପ୍ରକାଶ କରି ନାହିଁ ।

ପୋଲିସ୍ ଅଫିସରଙ୍କର ମୁହଁର ଭାବ କିନ୍ତୁ ପରିବର୍ତ୍ତନ ହୋଇ ନଥିଲା । ବରଂ ସାମାନ୍ୟ ହସ ଟିକିଏ ଫୁଟିଥିଲା ତାଙ୍କ ମୁହଁରେ । କହିଲେ : ସେ କିନ୍ତୁ ଅନ୍ୟ କଥା କହୁଛନ୍ତି ।

: କ'ଣ କହୁଛନ୍ତି ?

: ସେ କହୁଛନ୍ତି ରଂଜିତାର ହତ୍ୟାକାରୀ ଆପଣ ।

: ମୁଁ, ମୁଁ ରଂଜିତାର ହତ୍ୟାକାରୀ । ଦୀପକ ଚୌଧୁରୀ ରଂଜିତାକୁ ହତ୍ୟା କରିଛି ? ମୁଁ ବୋଧହୁଏ ନାଟକୀୟ ହସ ହସି କହିଥିଲି, ଏକଥା ଆପଣ ବିଶ୍ୱାସ କରୁଛନ୍ତି ଇନିସ୍‌ପେକ୍ଟର । ଆଉ ଦୁଇଦିନ ପରେ ରଂଜିତା ଆସିଥାଆନ୍ତା ମୋ ଘରକୁ ବଧୂ ବେଶରେ । ଦୀର୍ଘ ଦିନର ପ୍ରତୀକ୍ଷା ପରେ ଆମେ ଦୁଇଜଣ ଦୁଇଜଣଙ୍କୁ ପାଇ ଆତ୍ମହରା ହୋଇ ଉଠିଥାଆନ୍ତୁ । ଘର, ସଂସାର, କେତେ ଭାବନା, କାମନାରେ ଆମେ ଦିନ ଗଣୁଥିଲୁ । ଅଥଚ ଆପଣ କହୁଚନ୍ତି...

: ନା, ମୁଁ କହୁ ନାହିଁ ଦୀପକ ବାବୁ । ରଂଜିତାର ମାମୁ କହୁଛନ୍ତି । ସେ କହୁଛନ୍ତି ଠିକ୍ ଓଲଟା କଥା । ମାନେ ଆପଣ ବାଧ ହୋଇ ଏ ବିବାହରେ ସମ୍ମତି ଜଣେଇଥିଲେ । ତେଣୁ ରଂଜିତାକୁ ହତ୍ୟା କରି ଆପଣ ସବୁ ବାଧବାଧକତାର ଊର୍ଦ୍ଧ୍ୱକୁ ଚାଲି ଯାଇଛନ୍ତି ।

: ଏକଥା ରଂଜିତାର ମାମୁ କହିଲେ ? ଆଉ ରଂଜିତାର ବାପା ?

: ସେ ସବୁ କଥା ଶୁଣିଛନ୍ତି । କିଛି ପ୍ରତିବାଦ କରି ନାହାନ୍ତି । ତେଣୁ ସେ ସମର୍ଥନ କରିଛନ୍ତି ତାଙ୍କ କଥା ।

: ଆଉ ଆପଣ ?

: ମୋର ତ କୌଣସି ମନ୍ତବ୍ୟ ନାହିଁ । କେବଳ କର୍ତ୍ତବ୍ୟ ।

ମୁଁ ହାତ ଦୁଇଟା ବଢ଼ାଇ ଦେଲି ଇନିସ୍‌ପେକ୍ଟର ଆଡ଼କୁ । କହିଲି : ଏଥର ଆପଣଙ୍କ କର୍ତ୍ତବ୍ୟ କରନ୍ତୁ ଇନିସ୍‌ପେକ୍ଟର । ମୋ ହାତରେ କଡ଼ି ଲଗେଇ, ମୋତେ ହତ୍ୟା ଅପରାଧରେ ଗିରଫ କରି ବନ୍ଦ କରି ଦିଅନ୍ତୁ ଅନ୍ଧକାର କାରା କକ୍ଷରେ । ସେଇ ମୋର ଉପଯୁକ୍ତ ସ୍ଥାନ ।

ମୋ ଭାବପ୍ରବଣତାରେ ଇନିସ୍‌ପେକ୍ଟର ହସିଥିଲେ । କହିଥିଲେ : ସେମାନେ କହିଲେ ବୋଲି ମୁଁ ତ ଆଉ ଆପଣଙ୍କୁ ବାନ୍ଧି ପାରିବି ନାହିଁ । ପ୍ରମାଣ ଆବଶ୍ୟକ । ଅବଶ୍ୟ ପ୍ରୟୋଜନ ହେଲେ ଆପଣଙ୍କୁ ଥାନାକୁ ଯିବା ପାଇଁ ହେବ, କିନ୍ତୁ ଏଇ ମୁହୂର୍ତ୍ତରେ...

ଇନିସ୍‌ପେକ୍ଟରଙ୍କ କଥା ଶେଷ ହେଲା ନାହିଁ । ଗୋଟିଏ କନେଷ୍ଟବଳ ଆସି ଜଣାଇଲା ଯେ, ଏଇ ବଗିଚାରୁ ଗଙ୍ଗା ଭିତରକୁ ଯେଉଁ ବାଟ ଅଛି, ସେଠାରେ ସେ କାହାର ପାଦଚିହ୍ନ ଆବିଷ୍କାର କରିଛି ।

ଇନିସ୍‌ପେକ୍ଟର ସେଇ ଆଡ଼େ ଆଗେଇ ଗଲେ । ତାଙ୍କ ପଛେ ପଛେ ମୁଁ ବି ଚାଲିଲି । ଆମେ ସିମେଣ୍ଟ ପାହାଚ ଉପରେ ଧୀରେ ଧୀରେ ଓହ୍ଲେଇ ଯାଉଥିଲୁ ତଳକୁ । ଶେଷ ପାହାଚ ପୂର୍ବରୁ ତିନି ଚାରୋଟି ପାହାଚରେ ପ୍ରକୃତରେ କାହାର ପାଦଚିହ୍ନ ରହିଚି । ପାଦଚିହ୍ନ ଦୁଇଟି ଉପରକୁ ଉଠିବା ବେଳର । କେହି ଯେପରି ଗଙ୍ଗା ଭିତରୁ କାଦୁଅ ଗୋଡ଼ରେ ଉପରକୁ ଉଠିଚି । ତିନି ଚାରୋଟି ପାହାଚ ଉଠିବା ପରେ ଗୋଡ଼ର କାଦୁଅ ଶୁଖିଯାଇଛି ବା ଶେଷ ହୋଇଯାଇଛି । ତେଣିକି ଆଉ କିଛି ଦିଶୁ ନାହିଁ ।

ଇନିସ୍‌ପେକ୍ଟର ଧ୍ୟାନ ସହକାରେ ଦେଖିଲେ । ନଇଁପଡ଼ି ମାପିଲେ । ମୋ ମୁହଁକୁ ଚାହିଁ କ'ଣ ପଚାରିବେ ପଚାରିବେ ହୋଇ ନୀରବ ହୋଇଗଲେ ।

ସେ ଉଠି ଆସିଥିଲେ ଉପରକୁ ।

ପୁଣି ଓହ୍ଲେଇ ଯାଇଥିଲେ ଗଙ୍ଗା ବକ୍ଷକୁ ।

ଫେରିଆସି ମୋତେ ପଚାରିଲେ : ଏବାଟେ କ'ଣ କେହି ଯାତାୟାତ କରନ୍ତି ଦୀପକ ବାବୁ ?

: ମାନେ ?

ଇନିସ୍‌ପେକ୍ଟର ମୋତେ କିଛି ଜବାବ ନ ଦେଇ ନୀରବରେ କ'ଣ ଯେପରି ଧ୍ୟାନ ସହକାରେ ଦେଖୁଥିଲେ ।

ଏକ ସମୟରେ ସେ ପ୍ରକୃତିସ୍ଥ ହୋଇ କହିଲେ : ଆଚ୍ଛା ଦୀପକ ବାବୁ ! ଆପଣ ରଂଜିତାର ମୃତ୍ୟୁର କାରଣ ସମ୍ବନ୍ଧରେ କିଛି କୁହନ୍ତୁ ।

: ମୁଁ ? ମୁଁ କ'ଣ କହିବି ଇନିସ୍‌ପେକ୍ଟର ।

: ଆପଣ ରଂଜିତାକୁ ଅନେକ ଦିନରୁ ଜାଣନ୍ତି । ତାକୁ ଭଲ ପାଆନ୍ତି । ତେଣୁ ତା' ମନ ଭିତରର କଥା ବହୁ ପରିମାଣରେ ନିଶ୍ଚୟ ଜାଣିଥିବେ । ମୁଁ ଯଦି ଏଇ କେସ୍‌କୁ ଆତ୍ମହତ୍ୟା ବୋଲି ଧରିନିଏ, ତେବେ କାହିଁକି କେଉଁ କାରଣରୁ ରଂଜିତା ଆତ୍ମହତ୍ୟା କଲା, ଆପଣ ବୋଧହୁଏ ଏକମାତ୍ର ଲୋକ, ଯିଏ ଏହାର ମୂଳ କାରଣର ସାମାନ୍ୟ ସୂଚନା ଦେଇ ପାରିବେ ।

: ଏ ବଡ଼ ଅଡୁଆ ପ୍ରଶ୍ନ ଇନିସ୍‌ପେକ୍ଟର । ମୁଁ ତ ରଂଜିତାର ଆତ୍ମହତ୍ୟା କରିବା ଭଳି କାରଣ କିଛି ଖୋଜି ପାଉ ନାହିଁ । ତେବେ ଯେତେଦିନରୁ ମୁଁ ରଂଜିତାକୁ ଜାଣେ, ମଝିରେ ମଝିରେ ମୋର ମନେହୁଏ, ରଂଜିତାର ଟିକିଏ ମୁଣ୍ଡ ଦୋଷ ଥିଲା । ବେଳେବେଳେ ସେ ଏପରି ସବୁ କଥା କହିଥାଏ, ଯାହା କୌଣସି ସୁସ୍ଥ ମଣିଷ ପକ୍ଷରେ ସମ୍ଭବ ନୁହେଁ ।

: ହୁଁ, ରଂଜିତାର କୌଣସି ରୋଗ ବ୍ୟାଧି । ଯାହା ତାକୁ ବେଳେବେଳେ ହୁଏତ ମୃତ୍ୟୁ ଯନ୍ତ୍ରଣାରେ ଜର୍ଜରିତ କରେ ?

: ନା, ସେପରି କିଛି ମୋତେ ଜଣା ନାହିଁ ।

: ବର୍ତ୍ତମାନ ମହା ସମସ୍ୟା ଦୀପକ ବାବୁ । ରଂଜିତା ଆତ୍ମହତ୍ୟା କରିଛି ଆସି ଆପଣଙ୍କ ବଉଳ ଗଛରେ । ତା'ର ମାମୁ କହୁଛନ୍ତି ଏହା ଆତ୍ମହତ୍ୟା ନୁହେଁ, ହତ୍ୟା । ପୁଣି ହତ୍ୟାକାରୀ ଭାବରେ ଜଣକୁ ସନ୍ଦେହ ବି ସେ କରୁଛନ୍ତି । କିନ୍ତୁ କୌଣସି ପ୍ରମାଣ ନ ମିଳିବା ଯାଏ ମୁଁ ଅବଶ୍ୟ କାହାରିକୁ ଗ୍ରେପ୍ତାର କରୁ ନାହିଁ । ତେବେ ଆପଣଙ୍କୁ ଗୋଟାଏ ଅନୁରୋଧ କରିବି । ରଂଜିତାର ପୋଷ୍ଟମର୍ଟମ ରିପୋର୍ଟ ନ ବାହାରିବା ଯାଏ, ଆପଣ ଏ ସ୍ଥାନ ଛାଡ଼ି ଆଉ କୁଆଡ଼େ ଯିବେ ନାହିଁ ।

ପୋଲିସ୍ ଅଫିସର ତାଙ୍କର ସମସ୍ତ ଅନୁସନ୍ଧାନ ଶେଷ କରି, ରଂଜିତାର ମୃତଦେହ ନେଇ କେତେବେଳେ ଯାଇଥିଲେ କହିପାରିବି ନାହିଁ । ମୁଁ କିନ୍ତୁ କବାଟ କିଳି ଘର ଭିତରେ ଅନେକ ବେଳଯାଏ ପଶି ରହିଥିଲି । ରହି ରହି କମ୍ପି ଉଠୁଥିଲି ଭୟରେ ।

ଶେଷରେ ରଂଜିତା ଏହା କାହିଁକି କଲା ?

କାଲି ରାତିରେ ମୋ ପାଖରୁ ଯିବା ପରେ ସେ ଆଉ ଘରକୁ ଫେରି ନାହିଁ ।

ରଂଜିତା କ'ଣ ମୋରି ପାଇଁ ଆତ୍ମହତ୍ୟା କଲା ?

ମୁଁ ତ କିଛି ଅଶୋଭନ କଥା ତାକୁ କହି ନାହିଁ । ତାକୁ ଗ୍ରହଣ କରିବାକୁ ଆଗେଇ ଆସିଛି ସମସ୍ତ ବାଧାବିଘ୍ନ ଏଡ଼େଇ ଦେଇ ।

ତେବେ । ପ୍ରକୃତରେ କ'ଣ କେହି ହତ୍ୟା କରିଛି ରଂଜିତାକୁ ?

କେଉଁ ସ୍ୱାର୍ଥରେ ?

ମୁଁ ଯେତିକି ଭାବୁଥିଲି, ମୁଣ୍ଡଟା ମୋର ସେତିକି ଭାରି ହୋଇ ଉଠୁଥିଲା । ଏକ ସମୟରେ ସବୁ ଚିନ୍ତା ଭାବନା ଭିତରେ ମୁଁ ଆଖି ବୁଜି ଶୋଇ ପଡ଼ିଥିଲି ।

ହଠାତ୍ କାହାର ଅଟ୍ଟହାସ୍ୟ ଶୁଣି ମୋର ନିଦ ଭାଂଗି ଯାଇଥିଲା ।

ଆଖି ଖୋଲି ଚାହିଁଲି ରଂଜିତାର ମା' । ମାନେ ହସକାନ୍ଦ ଭିତରେ ସେ ଏକ ଅଦ୍ଭୁତ ବେଶ । ମୁଣ୍ଡର ବାଳ ଗୁଡ଼ାକ ଫୁରୁଫୁରୁ ହୋଇ ଉଡ଼ୁଚି । ଆଖି ଯୋଡ଼ାକ ଲାଲ୍ ହୋଇଛି । ଲୁଗାପଟା ଅସଂଯତ ।

ସେ କହିଲେ : ଶେଷରେ ତମେ ରଂଜିତାକୁ ହତ୍ୟା କଲ ବାବା ! ସ୍ପଷ୍ଟ ମନା ତ କରିଦେଇ ପାରିଥାଆନ୍ତ । କହିପାରି ଥାଆନ୍ତ ରଂଜିତାର ଭାର ବହନ କରିବା ତମ ପକ୍ଷରେ

ସମ୍ଭବ ନୁହେଁ । କିନ୍ତୁ ତା' ନ କରି, ମୋର ସମସ୍ତ ଆଶା ଭରସା, ତା'ର ସମସ୍ତ ଅଭିଳାଷ ତମେ ଧ୍ୱଂସ କରିଦେଲ ?

: ମୁଁ, ମୁଁ । ଏ ଆପଣ କ'ଣ କହୁଛନ୍ତି ? ଆପଣ ଶେଷରେ ରଂଜିତାର ହତ୍ୟାକାରୀ ଦୋଷରେ ମୋତେ ଦୂଷିତ କଲେ ? ମୁଁ ମୋର ସମସ୍ତ ମାନ ସଂଭ୍ରମ ବାହାରେ, ରଂଜିତାକୁ ଆପଣାର କରିବାକୁ ଚେଷ୍ଟା କରିଥିଲି । ଆପଣଙ୍କ କଥା ରଖିଥିଲି । ଖାଲି ସେତିକି ନୁହେଁ, ରଂଜିତାକୁ ଭଲ ପାଇଥିଲି । କିପରି ଆପଣ ବିଶ୍ୱାସ କରିପାରିଲେ, ମୁଁ ମୋର ପ୍ରାଣର ପ୍ରତିମାକୁ ହତ୍ୟା କରିପାରିଲି ?

ସେ କିପରି ଏକ ବିକଟ ହସ ହସି କହିଲେ : ମଣିଷ ସବୁ ପାରେ ବାବା । ମଣିଷ ପକ୍ଷରେ ସବୁ ସମ୍ଭବ । ଆଉ କେହି ଜାଣୁ ନ ଜାଣୁ ମୁଁ ଜାଣିଥିଲି ରଂଜିତା କାଲି ରାତିରେ ତମ ପାଖକୁ ଆସିଥିଲା । ଆଶାର ଆଲୋକରେ ତା' ଆଖି ଉଜ୍ଜ୍ୱଳ ହୋଇ ଉଠିଥିଲା । କିନ୍ତୁ ସେ ତ ଆଉ ଫେରିଲା ନାହିଁ ବାବା । କାହିଁକି ଫେରିଲା ନାହିଁ ? ଆଶା ମଣିଷକୁ ଜିଆଁଇ ରଖେ । ଆଶାର କ୍ଷୀଣ ଆଲୋକ ଟିକିଏ ଦେଖିଲେ, ମଣିଷ ତା' ପଛରେ ଆଣ୍ଠୁଗଣ୍ଠି ଛିଣ୍ଡାଇ ଧାଏଁ । କିନ୍ତୁ ରଂଜିତା ହାତ ମୁଠାରେ ମୁଠା ମୁଠା ଆଶା ପାଇ ବି ଆତ୍ମହତ୍ୟା କଲା । ଏହା ମୁଁ ମା' ହୋଇ ବିଶ୍ୱାସ କରିବି ବାବା ? ତମ ମନ ଭିତର ଅନିଚ୍ଛା କଥା ରଂଜିତାକୁ ନ ଶୁଣାଇ ମୋ ପାଖରେ ତ ସବୁ କହିପାରିଥାଆନ୍ତ । ତା'ଛଡ଼ା କାଲି ଚାରିଟାବେଳେ ତମେ ଅଫିସ୍‌ରୁ ନ ଫେରି ରଂଜିତାର ଦାୟିତ୍ୱ ଗ୍ରହଣରୁ ତ ମୁକ୍ତି ପାଇପାରି ଥାଆନ୍ତ । କିନ୍ତୁ ତମେ ବାବା ଏସବୁ ନ କରି କ'ଣ କଲ ? ରଂଜିତା ମୋର କୋଟି ଆଦରର ମାଣିକ । ତା' ପାଇଁ ମୁଁ କେତେ ଦୁଃଖ ସହିଛି । ତାକୁ ବଂଚେଇ ରଖିବା ପାଇଁ ମୁଁ କେତେ ଯତ୍ନ କରିଛି । ଶେଷରେ ବାବା...

ସେ ଭୋ ଭୋ ହୋଇ କାନ୍ଦି ଉଠିଲେ ।

ମୁଁ ଯେ କିପରି ଏହି ଭଦ୍ର ମହିଳାଙ୍କୁ ମୋର ନିର୍ଦ୍ଦୋଷତା କଥା ବୁଝାଇବି, ସେଇ ମୁହୂର୍ତ୍ତରେ ଚିନ୍ତା କରିପାରୁ ନଥିଲି ।

ତଥାପି ମୁଁ କହିଲି : କାଲି ରାତିରେ ରଂଜିତା ମୋ ପାଖକୁ ଆସିଥିବା କଥା ମୁଁ ଅସ୍ୱୀକାର କରୁ ନାହିଁ । କିନ୍ତୁ ତା' ସହିତ ମୁଁ ତ କୌଣସି ଅସଦ୍ ଆଚରଣ କରି ନାହିଁ । ତା' ମନରେ ଆଘାତ ଲାଗିବା ଭଳି କଥା ତ ମୁଁ କିଛି କହି ନାହିଁ । ବରଂ ଆମେ ଦୁହେଁ ବସି ବସି ଆମ ଭବିଷ୍ୟତ ଜୀବନର ସ୍ୱପ୍ନ ଦେଖିଛୁ । ସେ ଆନନ୍ଦରେ ଆତ୍ମହରା ହୋଇ ମୋ କାନ ପାଖରେ କହିଛି, ତମେ ମୋତେ ବଂଚେଇ ଦେଲ ଦୀପକ । କିନ୍ତୁ ଏସବୁ ସତ୍ତ୍ୱେ, ଆପଣ ଯଦି ମୋତେ ରଂଜିତାର ହତ୍ୟା ଅପରାଧରେ ଅପରାଧୀ କରନ୍ତି, ମୋର ଆଉ ଉତ୍ତର କିଛି ନାହିଁ ।

: ତା'ହେଲେ ରଂଜିତା କାହିଁକି ଆତ୍ମହତ୍ୟା କଲା ବାବା ? ତା' ମନ କଥା ମୋତେ ତ ଅଜଣା ନାହିଁ । ଆଉ ଯାହା କରୁ ନ କରୁ, ମୋତେ ସେ ତା' ବ୍ୟର୍ଥ ଜୀବନର କଥା ନିଶ୍ଚୟ କହିଥାଆନ୍ତା । ଫେରି ଯାଇ ତକିଆ ତଳେ ମୁହଁ ଗୁଞ୍ଜି କାନ୍ଦି ଥାଆନ୍ତା । କିନ୍ତୁ ସେ ଯେ ତମ ପାଖରୁ ଆଉ ଫେରିଲା ନାହିଁ ବାବା । ଏହା କିପରି ସମ୍ଭବ ? ନା ନା, ରଂଜିତା ପକ୍ଷରେ ଏହା ମୋଟେ ସମ୍ଭବ ନୁହେଁ । ମୁଁ ରଂଜିତାର ଜନ୍ମଦାତ୍ରୀ । ରଂଜିତାର ପ୍ରତିଟି ଅନ୍ତନାଡ଼ି ସହିତ ମୋର ପରିଚୟ । ନା ବାବା । ରଂଜିତା ଆତ୍ମହତ୍ୟା କରି ନାହିଁ । ତାକୁ କେହି ହତ୍ୟା କରିଛି । ତମେ ନ ହେଲେ ବି ଆଉ କିଏ । ତା' ନ ହେଲେ ଆଉ କିଏ ।

ମୁଁ ତାଙ୍କୁ କୌଣସି ସାନ୍ତ୍ୱନା ଦେଇପାରିଲି ନାହିଁ ।

ଆଖିରୁ ତାଙ୍କର ଝରଝର ହୋଇ ଲୁହ ଝରି ପଡୁଥିଲା । ସେ ମୋ ମୁହଁକୁ କରୁଣ ନୟନରେ ଚାହିଁ କହିଲେ : କି ସୁଖ ପାଇଲ ବାବା । ମା' କୋଳରୁ ତା'ର ସନ୍ତାନକୁ ଛଡ଼େଇ ନେଇ କ'ଣ ତମର ଲାଭ ହେଲା ?

ସେ ଚାଲିଗଲେ, ଖୁବ୍ ଧୀରେ ଧୀରେ । କାନ୍ଦି କାନ୍ଦି ।

ସେଇ ମୁହୂର୍ତ୍ତରେ ମୋର ମନର ଅବସ୍ଥା କଥା ମୁଁ ବର୍ଣ୍ଣନା କରିପାରିବି ନାହିଁ । ମୋର ମନେ ହେଉଥିଲା, ରଂଜିତା ପରି ମୁଁ ବି ଯାଇ ବଉଳ ଗଛରେ ଆତ୍ମହତ୍ୟା କରି ମନର ଜ୍ୱାଳା ନିର୍ବାପିତ କରିଦେବି ।

କିନ୍ତୁ ପାରି ନାହିଁ । ପାରି ନାହିଁ ମିଷ୍ଟର ମହାପାତ୍ର । ମୁଁ ଛୁଟିଆସିଛି ଆପଣଙ୍କ ପାଖକୁ । ପ୍ରକୃତରେ ମୁଁ ବିଚାର କରି ଦେଖୁଛି, ରଂଜିତାର ଆତ୍ମହତ୍ୟା କରିବା ମୂଳରେ କିଛି କାରଣ ନାହିଁ । ସେଦିନ ରାତିରେ ସେ ପରିପୂର୍ଣ୍ଣ ତୃପ୍ତି ନେଇ ମୋ ଘରୁ ବାହାରି ଯାଇଛି । କିନ୍ତୁ ସେ ଘରେ ପହଞ୍ଚି ପାରି ନାହିଁ । ସେଇ ମୁହୂର୍ତ୍ତରେ ତା' ମନରେ କ'ଣ ଏପରି ପରିବର୍ତ୍ତନ ଆସିଛି, ଯାହା ଫଳରେ ସେ ସଂଗେ ସଂଗେ ଆତ୍ମହତ୍ୟା କରିଛି ? ଅସମ୍ଭବ । ଏ ମୃତ୍ୟୁ ଅନ୍ୟ ଯେଉଁ କାରଣରୁ ହେଉ, ଅନ୍ତତଃ ସୁଇସାଇଡ୍ ନୁହେଁ । କାଲି ସମଗ୍ର ରାତ୍ରି ମୁଁ ଶୋଇ ପାରି ନାହିଁ । ରଂଜିତାର ଏଇ ମୃତ୍ୟୁ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ମୁଁ ଶପଥ ନେଇଛି । ସେଇଥିପାଇଁ ଆପଣଙ୍କ ପାଖକୁ ଛୁଟି ଆସିଛି ମିଷ୍ଟର ମହାପାତ୍ର । ମୁଁ ଜାଣେ, ଏ ମୃତ୍ୟୁ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ପୋଲିସ୍ ଡିପାର୍ଟମେଣ୍ଟ ସକ୍ଷମ ହେବ ନାହିଁ । କାରଣ ସେମାନେ ତାଙ୍କର କର୍ତ୍ତବ୍ୟ କରିବେ ମାତ୍ର । ତା'ଠାରୁ ଅଧିକ ଆଉ କିଛି ନୁହେଁ ।

ଦୀପକ ଚୌଧୁରୀ ନୀରବ ହେଲେ ।

ଟେବୁଲ୍ ଉପରେ ରଖା ହୋଇଥିବା ପାଣି ଗ୍ଲାସ୍‌ଟା ଉଠାଇ ଢକଢକ କରି ପିଇ ଦେଇ, ସେ ଆଖି ବୁଜି ଦେଲେ ।

ଯେପରି ବହୁ କ୍ଳାନ୍ତ ହୋଇ ପଡ଼ିଥିଲେ ଦୀପକ ଚୌଧୁରୀ ।

ସତ୍ୟବ୍ରତ ବି ନୀରବରେ ଆଖି ବୁଜିଲା ।

ପଦେ କଥା ତା' ମୁହଁରୁ ବାହାରିଲା ନାହିଁ ।

ଦୁଇଜଣଙ୍କ ମଝିରେ ମୁଁ ବସିରହି ନିଜକୁ ବଡ଼ ଅସହାୟ ମନେ କରୁଥିଲି ।

ବିଚରା ଦୀପକ ଚୌଧୁରୀ ।

ସବୁ ଆଶା, ସବୁ ଉତ୍ସାହ ତା'ର ଶେଷ ହୋଇ ଯାଇଛି । ଶେଷରେ ସେ ହତ୍ୟା ଅପରାଧରେ ଅପରାଧୀ ।

ଏହି ଉଦୀୟମାନ ଯୁବକଟିର ଭବିଷ୍ୟତ କ'ଣ ଏଇଠୁ ଶେଷ ହୋଇଗଲା ?

: ହୁଁ । ସତ୍ୟବ୍ରତ ହାତ ଘଡ଼ିକୁ ଚାହିଁ ସିଧା ହୋଇ ବସିଲା । ଆପଣ ତା'ହେଲେ... ମିଷ୍ଟର ଚୌଧୁରୀ ?

ଦୀପକ ଚୌଧୁରୀ ଆଖି ମେଲି ଚାହିଁଲେ ।

: ଆପଣ ତା'ହେଲେ ଆସନ୍ତୁ ବର୍ତ୍ତମାନ ।

: ହଁ, ମୋର ଖୁବ୍ ଶୀଘ୍ର ଫେରିଯିବା ପ୍ରୟୋଜନ । ପୋଲିସ୍ ଇନିସ୍‌ପେକ୍ଟର ହୁଏତ ଖୋଜିବାକୁ ଆସିଥିବେ । ଆଉ ଆପଣ ? ଆସୁଛନ୍ତି ତ ମୋ ସହିତ ?

: ନା, ଆପଣଙ୍କ ଠିକଣାଟା ଲେଖି ରଖି ଯାଆନ୍ତୁ । ପ୍ରୟୋଜନ ମନେକଲେ ମୁଁ ଯିବି ।

: ପ୍ରୟୋଜନ ମାନେ ? ମୋର ଏପରି ଅସହାୟ ଅବସ୍ଥାରେ...

: ଆପଣଙ୍କ ଅବସ୍ଥା କଥା ବର୍ତ୍ତମାନ ଆପଣଙ୍କଠାରୁ ମୁଁ ବେଶି ଅନୁଭବ କରୁଛି । ଯେଉଁ କାହାଣୀ ଆପଣ ମୋତେ ଶୁଣାଇଲେ, ମୋର ମନେହେଉଛି, ମୁଁ ସେଇ କାହାଣୀର ହିରୋ ହେବାର ସୌଭାଗ୍ୟ ଅର୍ଜନ କରିଥାଆନ୍ତି...

ସତ୍ୟବ୍ରତ ହଠାତ୍ ନୀରବ ହୋଇଯାଇ ଦୀପକ ଚୌଧୁରୀ ମୁହଁକୁ ଚାହିଁଲା । ଆଖିରେ ତା'ର ଜ୍ୟୋତି ନାହିଁ, ଚାହାଣିରେ ତା'ର ଜୀବନ ନାହିଁ ।

ସତ୍ୟବ୍ରତ ହସିଲା । କହିଲା : ଆପଣ ଶୀଘ୍ର ଫେରିଯାଆନ୍ତୁ । ଦାୟିତ୍ୱଟା ମୁଁ ନେଉଛି । କେତେବେଳେ କ'ଣ କରିବାକୁ ହେବ, ସେ ଖବର ମୁଁ ବୁଝିବି ।

: ତା'ହେଲେ...

: ହଁ, ଆପଣ ନିଶ୍ଚିନ୍ତ ହୋଇ ଯାଇପାରନ୍ତି ।

\+ + +

ଘଡ଼ିରେ ଚାରିଟା ବାଜୁଥିଲା ।

ୟୁସୁଫ୍ ଆଣି କଫି ପଟ୍ ରଖିଯାଇଥିଲା ।

ମୁଁ କଫି ତିଆରି କରୁଥିଲି । ସତ୍ୟବ୍ରତ ଆଖି ବୁଜି ସିଗାରେଟ୍ ଟାଣୁଥିଲା ।

ସକାଳୁ ଦୀପକ ଚୌଧୁରୀ ଫେରିଯିବା ପରଠାରୁ ସତ୍ୟବ୍ରତ ମୋତେ ପଦେ କଥା ବି କହି ନାହିଁ । ମୁଁ ବି କିଛି କରି ନାହିଁ । ଖାଲି ଦାଢ଼ି ଖିଅର ହୋଇଛି, ଆଉ ଆଖିବୁଜି ବସି ବସି ସିଗାରେଟ୍ ଟାଣିଛି ।

ବାରଟା ବେଳେ ଖାଇପିଇ ଶୋଇ ପଡ଼ିଥିଲା ।

ପୁଣି ଉଠି ଇଜି ଚେଆର ଉପରେ ବସି ବସି ଆଖିବୁଜି ସିଗାରେଟ୍ ଟାଣୁଛି ।

କପ୍‌ରେ କଫି ଢାଳି, ଚାମଚରେ ଚିନି ଗୋଳେଇ ମୁଁ କଫି ପ୍ରସ୍ତୁତ କରୁଥିଲି ।

: ତୋର କ'ଣ ମନେ ହେଉଛି ସବ୍ୟ ? ସତ୍ୟବ୍ରତର ପ୍ରଶ୍ନରେ ମୋ ହାତଟା ସ୍ଥିର ହୋଇଗଲା ।

: କେଉଁ କଥା ? ମୁଁ ପଚାରିଲି ।

: ରଂଜିତାର ମୃତ୍ୟୁ ରହସ୍ୟ । ପ୍ରକୃତରେ ତାକୁ ହତ୍ୟା କରାହୋଇଛି ନା ସେ ଆତ୍ମହତ୍ୟା କରିଛି ?

: ନେ ନେ, କଫି ପିଇ । ଉଠ୍ ଚାଲ୍, ବାହାରିଲୁ । ସେ ହତ୍ୟା ଫତ୍ୟା ପରେ ହେବ । ଆଜି ଇଭିନିଂ ସୋ ପାଇଁ ମେଟ୍ରୋରୁ ମୁଁ ଟିକେଟ୍ କାଟିଛି । ମୋ କଣ୍ଠରେ ବିରକ୍ତି ଫୁଟି ଉଠିଥିଲା ।

ସତ୍ୟବ୍ରତ କଫି କପ୍‌ଟା ଉଠାଇ ନେଇ ଗମ୍ଭୀର କଣ୍ଠରେ ଉଚ୍ଚାରଣ କରୁଥିଲା : ସୁଇସାଇଡ୍ ଅର୍ ହୋମିସାଇଡ୍ ! ଦ୍ୟାଟ୍ ଇଜ୍ ଦି କୋସ୍‌ଚେନ ।

ପୁଣି ସେ ନୀରବରେ ଆଖିବୁଜି ବସି ପଡ଼ିଲା ।

କଫି କପ୍‌ଟା ଶେଷ କରି ମୁଁ ତା' ହାତଧରି ଟାଣି ଉଠାଇଲି । କହିଲି : ଆଉ ସମୟ ନାହିଁ ସତ୍ୟ, ଶୀଘ୍ର ଶୀଘ୍ର ବାହାରି ପଡ଼ ।

ସେ ଆଖି ମେଲି ମୋ ମୁହଁକୁ ଥରେ ଚାହିଁ କହିଲା : ଇଉ ଆର୍ ରାଇଟ୍ । ମୁଁ ଏଇ ସଂଗେ ସଂଗେ ରେଡ଼ି ହୋଇ ଆସୁଛି ।

ସତ୍ୟବ୍ରତ ବାଥ୍‌ରୁମ୍ ଭିତରକୁ ପଶିଗଲା । ସାୱାର ଖୋଲିବାର ଶବ୍ଦ ହେଲା । ଏଇ ଆସନ୍ନ ଶୀତ ସନ୍ଧ୍ୟାରେ ସତ୍ୟବ୍ରତ ଗାଧୋଉଛି କାହିଁକି ?

ଠିକ୍ ପାଞ୍ଚ ମିନିଟ୍‌ରୁ ଛଅ ମିନିଟ୍ ହେଲା ନାହିଁ ।

ସତ୍ୟବ୍ରତ ମୋ ସାମ୍‌ନାରେ ଗୋଟାଏ ଆଟାଚି କେସ୍ ଧରି ଆସି ଠିଆ ହେଲା । ହାତଘଡ଼ିକୁ ଚାହିଁ କହିଲା : ଆଉ ଡେରି କରନି ସବ୍ୟ । ୟୁସୁଫ୍‌କୁ କହିଦେ, ଆଜି ରାତିରେ ଆମେ ଫେରି ନ ପାରନ୍ତି ।

: ମାନେ ? ସିନେମା ତ ନଅଟାରେ ଭାଂଗିବ । ତା'ପରେ ଆମେ କୁଆଡ଼େ ଯିବା ?

: ନା ସବ୍ୟ, ଆଉ ଡେରି କରନି । ସିନେମା ଆଉ ଦିନେ ଦେଖିଲେ ଚଳିବ । କିନ୍ତୁ ମାଧବୀ ଭିଲାରେ ଯେଉଁ ସୁଟିଂ ଚାଲିଛି, ସେଠାରେ ଆମର ଅଂଶଗ୍ରହଣ ଏକାନ୍ତ ଅପରିହାର୍ଯ୍ୟ ।

ମୁଁ ଉଠିଲି, ପ୍ରତିବାଦ କରି କିଛି ଲାଭ ନାହିଁ । ସତ୍ୟବ୍ରତକୁ ବାଧା ଦେଇ ତା' କାର୍ଯ୍ୟରୁ ଆଜିଯାଏ କେବେ ମୁଁ ନିବର୍ତ୍ତାଇ ପାରି ନାହିଁ ।

ଧୀରେ ଧୀରେ ଆମେ ତଳକୁ ଓହ୍ଲେଇ ଗଲୁ ।

ସତ୍ୟବ୍ରତ ରିସେପ୍‌ସନିଷ୍ଟ ପାଖରୁ ନିଜ ନାଁରେ କିଛି ଖବର ଅଛି କି ନାହିଁ, ବୁଝି ମୋ ପଛେ ପଛେ ଓହ୍ଲେଇ ଆସିଲା ।

ଟ୍ୟାକ୍‌ସିରେ ଉଠିଲୁ ଦି'ଜଣ ଯାକ ।

ସତ୍ୟବ୍ରତ ମୁହଁକୁ ଚାହିଁଲି । ସେ କହିଲା : ସିଆଲଦା ।

: କାହିଁକି, ସିଧା ତ ଆମେ ଟିଟାଗଡ଼ ଯାଇପାରନ୍ତେ ?

: ନା, ଅସୁବିଧା ଅଛି । ଟ୍ରେନ୍‌ରେ ଯାଇ ଷ୍ଟେସନ୍‌ରୁ ରିକ୍‌ସା କରି ଯିବା ।

ମୁଁ ନୀରବ ରହିଲି ।

ସତ୍ୟବ୍ରତ କହିଲା : କେସ୍‌ଟା କଥା ମୁଁ ସମଗ୍ର ଦିନ ଚିନ୍ତା କରିଛି ସତ୍ୟ, କିନ୍ତୁ କିଛି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚି ପାରି ନାହିଁ । ଘଟଣାଟା ଖୁବ୍ ଜଟିଳ ମନେହେଉଛି ।

: ଆରେ ଯା, କେତେ ଗଣ୍ଠିପକା ଘଟଣାକୁ ଗଣ୍ଠି ଫିଟାଇ ସରଳ କରି ଦିଆହୋଇଛି, ଆଉ ଏଇ ଗୋଟାଏ ଘଟଣା । ସ୍ପଟ୍‌ରେ ଯାଇ ଦେଖିବୁ କେବଳ କେତୋଟି ସରଳ ରେଖା । ଜ୍ୟାମିତିକ ଜଟିଳତା କିଛି ନାହିଁ ।

ଏତେବେଳକେ ସତ୍ୟବ୍ରତ ମୁହଁରେ ମୁଁ ଟିକିଏ ହସ ଦେଖିଲି ।

ସେ କହିଲା : ଏଇଥିପାଇଁ ତତେ ସବୁବେଳେ ମୁଁ ପାଖେ ପାଖେ ଚାହେଁ । ମୁସ୍କିଲ୍ ଆସାନ କରିବାର ତୁ ହେଉଛୁ ଏକମାତ୍ର କାଉଁରୀ କାଠି ।

ସତ୍ୟବ୍ରତର ଏଇ କଥାଗୁଡ଼ାକ ମୋତେ ପରିହାସ କଲା ପରି ମନେହେଲା । ମୁଁ କହିଲି : ଯଦି ବିଶ୍ୱାସ ନ ହେଉଛି, ତେବେ ଏ କେସ୍‌ର ଦାୟିତ୍ୱଟା ମୋ ହାତରେ ଛାଡ଼ି ଦେ, ଦେଖିବୁ ଦୁଇ ଦିନରୁ ତିନିଦିନ ଗଡ଼ିବ ନାହିଁ ।

: ମୁଁ ତ ସେଇଆ ଭାବିଚି । ତୁ ଆକ୍‌ଟିଭ ପାର୍ଟ ନ ନେଲେ ଏ କେସ୍‌ର ସମାଧାନ ସମ୍ଭବ ହେବ ନାହିଁ । ଏ ଆଟାଚି କେସ୍‌ରେ କ'ଣ ଅଛି ଜାଣିଚୁ ? ସତ୍ୟବ୍ରତ ମୋ ଆଡ଼େ ପ୍ରଶ୍ନବାଚୀ ନୟନରେ ଅନାଇ ରହିଲା ।

: କ'ଣ ? ମୁଁ ପଚାରିଲି ।

ସେ ପୁଣି ଥରେ ହସିଉଠି କହିଲା : ଗୋଟାଏ ଶାଢ଼ି, ଗୋଟାଏ ସାୟା, ଗୋଟାଏ ବ୍ଲାଉଜ, ଗୋଟାଏ ବ୍ରେସିଅର ଆଉ ଗୋଟାଏ ଫଲ୍‌ସ...

ଏଥର ସେ ହସି ହସି ଗଡ଼ିଗଲା ।

ମୁଁ ତା' କଥାର ଉଦ୍ଦେଶ୍ୟ ବୁଝିପାରି କହିଲି : ସେ ସାଜରେ ସାଜି ପାରିବିନି ବଂଧୁ । ଷ୍ଟେସନରୁ ତୋ ପଥ ଅଲଗା ମୋ ପଥ ଅଲଗା ।

କିନ୍ତୁ ଶେଷଯାଏ ଦୁହିଁଙ୍କ ପଥ ଗୋଟିଏ ହୋଇଥିଲା ।

ଟିଟାଗଡ଼ ଷ୍ଟେସନରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇ ଯାଇଥିଲା ।

ଆମେ ଗୋଟିଏ ରିକ୍‌ସାରେ ବସି ରିକ୍‌ସା ବାଲାକୁ କହିଥିଲୁ ଥାନାକୁ ନେଇଯିବା ପାଇଁ ।

ସେ ଆମ ମୁହଁକୁ ସନ୍ଦେହ ଦୃଷ୍ଟିରେ ଚାହିଁଥିଲା କିଛି ସମୟ, ଧୀରେ ଧୀରେ ଉଠି ବସିଥିଲା ସିଟ୍ ଉପରେ । ପେଡ଼ଲ ଘୂରାଇଥିଲା ଆହୁରି ଧୀରେ ଧୀରେ । ଅଳ୍ପ କିଛିଦୂର ଆଗେଇ ଯାଇ ପଚାରିଥିଲା : ଆପଣ କ'ଣ କଲିକତାରୁ ଆସିଲେ ବାବୁ !

: ହଁ । ସତ୍ୟବ୍ରତ ଉତ୍ତର ଦେଇଥିଲା ।

: କ'ଣ ମାଧବୀ ଭିଲା କେସ୍ ତଦନ୍ତ କରିବା ପାଇଁ ?

ସତ୍ୟବ୍ରତ କିଛି ନ ଜାଣିଲା ପରି ଆଶ୍ଚର୍ଯ୍ୟ ସ୍ୱରରେ ପ୍ରଶ୍ନ କରିଥିଲା, କୋଉ ମାଧବୀ ଭିଲା କଥା ତମେ କହୁଛ ?

ରିକ୍‌ସାବାଲାଟା ଆଉଥରେ ବୁଲି ଅନେଇଥିଲା ପଛଆଡ଼କୁ ।

ଆଉ ବୋଧହୁଏ କିଛି ପଚାରିବାର ସାହସ କରି ନଥିଲା । ରିକ୍‌ସାର ଚକ ଏଥର ଜୋର୍‌ରେ ଘୂରିବାକୁ ଆରମ୍ଭ କରିଥିଲା ।

ସତ୍ୟବ୍ରତ ମୋତେ ଧୀରେ ଧୀରେ କହିଲା : ମାଧବୀ ଭିଲା କେସ୍ ତା'ହେଲେ ଏ ଅଞ୍ଚଳରେ ସମସ୍ତଙ୍କ କାନରେ ପହଞ୍ଚି ସାରିଲାଣି ।

: ସେଇଆ ତ ମନେହୁଏ । ମୁଁ କହିଲି ।

ରିକ୍‌ସାବାଲା ଥାନା ଦୁଆରେ ରିକ୍‌ସାଟି ଅଟକାଇ ଠିଆ ହେଲା । ଆମେ ରିକ୍‌ସାରୁ ଓହ୍ଲେଇ ଚାଲିଗଲୁ ଇନ୍‌ଚାର୍ଜଙ୍କ ସହିତ ଦେଖା କରିବା ପାଇଁ ।

ଓ.ସି. ପରେଶ ଚକ୍ରବର୍ତ୍ତୀ ଉପସ୍ଥିତ ଥିଲେ ।

ସତ୍ୟବ୍ରତର କାର୍ଡ଼ ପାଇ ନିଜେ ସେ ଉଠି ଆସିଲେ ।

ତାଙ୍କ ସହିତ ଆମେ ତାଙ୍କ ଅଫିସ୍ ଭିତରକୁ ଗଲୁ । ସେ କହିଲେ : ଆଜି କାଗଜରେ ମୁଁ ଆପଣଙ୍କ ଭାଷଣ ପଢ଼ିଥିଲି । ସଶରୀରେ ଆପଣ ଆସି ଏଠାରେ ଉପସ୍ଥିତ ହେବେ, ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ।

ସେ କହି ଚାଲିଥିଲେ : ଦେଶରୁ ଅପରାଧ ନିବାରଣ ପାଇଁ ଆପଣଙ୍କ ସଜେସନ୍‌ଟି ଭାରି ସମୟୋପଯୋଗୀ ହୋଇଛି । ସରକାର ଯଦି ସେଇ ସ୍କିମ୍‌ଟି କାର୍ଯ୍ୟକାରୀ କରନ୍ତେ, ତେବେ ପାଞ୍ଚବର୍ଷ ଭିତରେ, ଦେଶରୁ ଅପରାଧୀଙ୍କ ସଂଖ୍ୟା ବହୁ ପରିମାଣରେ କମି ଯାଆନ୍ତା ।

: କିନ୍ତୁ ମୁଁ ଏଠାକୁ ଆସିଛି ଭିନ୍ନ ଏକ ଉଦ୍ଦେଶ୍ୟରେ ମିଷ୍ଟର ଚକ୍ରବର୍ତ୍ତୀ । ଆପଣଙ୍କ ସାହାଯ୍ୟ ଛଡ଼ା ପାଦଟିଏ ବି ଆଗେଇବା ମୋ ପକ୍ଷରେ ସମ୍ଭବ ହେବ ନାହିଁ ।

: ଆଇ ଆମ୍ ଅଲଓ୍ୱେଜ୍ ଆଟ୍ ଇଓର ସର୍ଭିସ୍ ମିଷ୍ଟର ମହାପାତ୍ର । ଆପଣଙ୍କର କୌଣସି କାମରେ ଲାଗିପାରିଲେ, ମୁଁ ଗୌରବାନ୍ୱିତ ମନେ କରିବି ।

: 'ମାଧବୀ ଭିଲା'ର କେସ୍‌ଟି ଆପଣ ତଦନ୍ତ କରୁଛନ୍ତି ନିଶ୍ଚୟ ।

ପ୍ରଥମେ ପରେଶ ଚକ୍ରବର୍ତ୍ତୀ ଟିକିଏ ଚଞ୍ଚଳ ହୋଇ ପଡ଼ିଥିଲେ । ତା'ପରେ ସହଜ ସ୍ୱରରେ କହିଲେ : ଆପଣ ଦୀପକ ଚୌଧୁରୀଙ୍କ କଥା କହୁଛନ୍ତି ?

: ହଁ, ଦୀପକ ଚୌଧୁରୀ । ଭଦ୍ରଲୋକଙ୍କୁ ହତ୍ୟା ଅପରାଧରେ ଅପରାଧୀ କରାହୋଇଛି । ଆପଣଙ୍କର କ'ଣ ମନେହେଉଛି ? ସତ୍ୟବ୍ରତ ପଚାରିଲା ।

: ମୋର ଯାହା ମନେହେଉ ନ ହେଉ, ପ୍ରମାଣ ସବୁ କିନ୍ତୁ ଭଦ୍ରଲୋକଙ୍କ ସପକ୍ଷରେ ଯାଉ ନାହିଁ । ମୁଁ ତ ଏତେବେଳଯାଏ ସେଇ କଥା ଚିନ୍ତା କରୁଥିଲି । ତାଙ୍କୁ ହୁଏତ କାଲି ଭୋର୍‌ରୁ ଯାଇ ଆରେଷ୍ଟ କରିବାକୁ ପଡ଼ିପାରେ । ହେଡ଼କ୍ୱାର୍ଟରର ଅର୍ଡ଼ରକୁ ଅପେକ୍ଷା କରି ବସିଛି ।

: ଆପଣ ପୋଷ୍ଟମର୍ଟମ ରିପୋର୍ଟ ପାଇଲେଣି ?

: ନା, ରିପୋର୍ଟ ପାଇ ନାହିଁ । ତେବେ ଖବର ପାଇଲିଣି । ରଂଜିତାର ଗଳା ଚିପି ଶ୍ୱାସରୁଦ୍ଧ କରାହୋଇ ପ୍ରଥମେ ତାକୁ ହତ୍ୟା କରାହୋଇଛି । ତା'ପରେ ହୁଏତ ବଉଳ ଗଛରେ ଟଙ୍ଗାଇ ଦିଆ ହୋଇଛି ।

: ଆଉ ?

: ସେଦିନ ରାତିରେ ରଂଜିତା ଦୀପକ ଚୌଧୁରୀଙ୍କ ପାଖରେ ଥିଲା । ଅନେକ ରାତିଯାଏ । ଆଉ ଘରକୁ ଫେରି ନାହିଁ ।

: ପ୍ରଥମେ କିଏ ରଂଜିତାର ମୃତଦେହ ଆବିଷ୍କାର କଲା ?

: ମୁଁ ଚେଷ୍ଟା କରିଥିଲି ଜାଣିବାକୁ, କିନ୍ତୁ ଜାଣିପାରିଲି ନାହିଁ । ତେବେ ମୋ ପାଖକୁ ଛୁଟି ଆସିଥିଲେ ରଂଜିତାର ମାମୁ ।

: ହୁଁ, ଆଉ କ'ଣ ପ୍ରମାଣ ଆପଣ ସଂଗ୍ରହ କରିଛନ୍ତି ?

: ରଂଜିତା ବଉଳ ଗଛରେ ଝୁଲୁଥିବା ବେଳେ ତା' ଡାହାଣ କାନର ଦୁଲ୍‌ଟା ନଥିଲା । ମୁଁ ସେଇଟାକୁ ଆବିଷ୍କାର କରିଥିଲି ଦୀପକ ଚୌଧୁରୀଙ୍କ ଖଟ ତଳୁ ।

: ଦୀପକ ଚୌଧୁରୀଙ୍କର ଏ ସମ୍ବନ୍ଧରେ ବକ୍ତବ୍ୟ କ'ଣ ?

: ରଂଜିତା ସେଦିନ ବହୁତ ରାତିଯାଏ ତାଙ୍କ ଘରେ ଥିବା କଥା ସେ ସ୍ୱୀକାର କରୁଛନ୍ତି । ଦୁଇଜଣଙ୍କର ବିବାହ ତିଥି ସ୍ଥିର ହୋଇଯାଇଥିବାରୁ ସେମାନେ ତାଙ୍କର ଭବିଷ୍ୟତ ଜୀବନ ସମ୍ବନ୍ଧରେ ଅନେକ ସ୍ୱପ୍ନ ଦେଖୁଥିଲେ । ମଝିରେ ଦୀପକ ଚୌଧୁରୀ କେତେବେଳେ ଶୋଇପଡ଼ିଛନ୍ତି, ତାଙ୍କର ମନେ ନାହିଁ । ତା'ପରେ ରଂଜିତାର କ'ଣ ହୋଇଛି ସେ ଜାଣି ନାହାନ୍ତି ।

: ଏଇଟା କ'ଣ ତାଙ୍କର ବିଶ୍ୱାସଯୋଗ୍ୟ ବକ୍ତବ୍ୟ ?

: ପ୍ରଥମେ ମୁଁ ବିଶ୍ୱାସ କରିଥିଲି । କିନ୍ତୁ ବର୍ତ୍ତମାନ ସନ୍ଦେହ ହେଉଛି ।

: କାହିଁକି ?

: ଦୀପକ ଚୌଧୁରୀ ଜଣେ ଅଫିସର । ହୁଏତ ଘଟଣାଚକ୍ରରେ ରଂଜିତା ସହିତ ତାଙ୍କର ବନ୍ଧୁତ୍ୱ ହୋଇଥିଲା । କ୍ରମେ ତାହା ପ୍ରେମରେ ପରିଣତ ହୋଇଥିଲା । କିନ୍ତୁ ତା'ପରେ ବିବାହ ! ସେ କିପରି କଥା । ରଂଜିତା ତାଙ୍କ ଷ୍ଟାଟସ୍‌ର ନୁହେଁ । କିନ୍ତୁ ସେ ବାଧ ହୋଇ ହୁଏତ ସ୍ୱୀକୃତି ଜଣାଇଥିଲେ ବିବାହର । ଯେତେବେଳେ ମନ ସ୍ଥିର କରି ଦେଖିଲେ, ଏ ବିବାହ ତାଙ୍କ ପକ୍ଷରେ ଖାଲି ବୋଝ ନୁହେଁ, ଅପମାନ ମଧ୍ୟ, ସେତେବେଳେ ଆଉ ଅନ୍ୟ ବାଟ କାହିଁ ।

: ହୁଁ, ଆଚ୍ଛା ! ଦୀପକ ଚଉଧୁରୀ ରଂଜିତାକୁ ହତ୍ୟା କରି, ନିଜ ବଗିଚାର ବଉଳ ଗଛରେ ଟଙ୍ଗାଇବା ଭିତରେ ଆପଣ କି ଯୁକ୍ତି ଦେଖୁଛନ୍ତି ? ତାଙ୍କ ବଗିଚା ତଳକୁ ତ ଗଙ୍ଗା । ସେ ତ ଗଙ୍ଗାରେ ଭସାଇ ଦେଇ ପାରି ଥାଆନ୍ତେ ?

ପରେଶ ଚକ୍ରବର୍ତ୍ତୀ ଟିକିଏ ଚିନ୍ତା କଲେ । କହିଲେ : ସେ ସୁଯୋଗ ହୁଏତ ସେ ପାଇ ନାହାନ୍ତି ।

: ହୁଁ, ଆଉ କ'ଣ ପ୍ରମାଣ ସଂଗ୍ରହ କଲେ କୁହନ୍ତୁ ।

: ଆଉ ରଂଜିତା ପରିବାରର ଷ୍ଟେଟ୍‌ମେଣ୍ଟ୍ । ସବୁଗୁଡ଼ିକ ଦୀପକ ଚୌଧୁରୀଙ୍କ ବିରୁଦ୍ଧରେ ଯାଉଛି । ପାଖ ଲୋକଙ୍କର ମନ୍ତବ୍ୟ । ସମସ୍ତେ ଏ କେସ୍‌ରେ ଦୀପକ ଚୌଧୁରୀଙ୍କ ଉପରେ ଦୋଷାରୋପ କରୁଛନ୍ତି ।

: ତା'ହେଲେ ଆପଣଙ୍କ ହୃଦୟରେ ବିଶ୍ୱାସ ଜନ୍ମିଛି ଯେ, ଏ କେସ୍ ଆତ୍ମହତ୍ୟା ନୁହେଁ, ହତ୍ୟା ଏବଂ ହତ୍ୟାକାରୀ ଦୀପକ ଚୌଧୁରୀ ।

ପରେଶ ଚକ୍ରବର୍ତ୍ତୀ ଖଣ୍ଡିକାଶ ମାରି ଥରେ ଚାରିଆଡ଼କୁ ଚାହିଁ କହିଲେ : ମୋ ମନରେ ଦୀପକ ଚୌଧୁରୀ ପ୍ରତି ଅବଶ୍ୟ ଖୁବ୍ ଗୋଟାଏ ଖରାପ ଧାରଣା ଜନ୍ମି ନାହିଁ, ତେବେ ବର୍ତ୍ତମାନ ମୋତେ ବିଶ୍ୱାସ କରିବାକୁ ପଡୁଛି ଯେ, ଏଇଟା ଆତ୍ମହତ୍ୟା ନୁହେଁ, ହତ୍ୟା । ଯଦି ଏଇଟା ହତ୍ୟାକାଣ୍ଡ ହୁଏ, ତେବେ ହତ୍ୟାକାରୀ କିଏ ବୋଲି ଚିନ୍ତା କରିଲା ବେଳକୁ ପ୍ରଥମେ ଦୀପକ ଚୌଧୁରୀଙ୍କ ମୁହଁ ମୋ ଆଖି ଆଗରେ ଭାସି ଉଠୁଛି ।

: କାହିଁକି ?

: କାରଣ ଅନ୍ୟ କେହି ଆଉ ସନ୍ଦେହର ପରିବେଶ ଭିତରେ ଦିଶୁ ନାହାନ୍ତି । ଯଦିଓ ରଂଜିତାର ମାମୁ ଏ ବିବାହ ପ୍ରସ୍ତାବରେ ସନ୍ତୁଷ୍ଟ ହୋଇ ନଥିଲେ, ତାଙ୍କୁ ତ ଆଉ ହତ୍ୟାକାରୀ ରୂପେ ସନ୍ଦେହ କରିହେବ ନାହିଁ ?

: ତା'ହେଲେ ଏ କେସ୍‌ରେ...

: ହେଡ୍‌କ୍ୱାର୍ଟରର ଆଦେଶକୁ ମୁଁ ପ୍ରତୀକ୍ଷା କରିଛି ।

: ହୁଁ । ସତ୍ୟବ୍ରତ ଉଠି ଠିଆ ହେଲା ।

: ଆପଣ ଉଠିଲେ ଯେ ? ପରେଶ ଚକ୍ରବର୍ତ୍ତୀ ପଚାରିଲେ ।

: ଆଜି ରାତିଟା ପାଇଁ କେଉଁଠି ମୁଣ୍ଡ ଗୁଞ୍ଜିବାର ସ୍ଥାନ ଯୋଗାଡ଼ କରିବାକୁ ହେବ ।

: ଆରେ, ଆପଣ ସେଇଥିପାଇଁ ବ୍ୟସ୍ତ ହେଉଛନ୍ତି ମିଷ୍ଟର ମହାପାତ୍ର । ଏଇଟା ତ ମଫସଲ ଜାଗା । ହୋଟେଲ୍ ଫୋଟେଲ ସେମିତି କିଛି ନାହିଁ । ତେବେ ପେପର ମିଲ୍‌ର ଗୋଟାଏ ଗେଷ୍ଟ ହାଉସ୍ ଅଛି । ବ୍ୟବସ୍ଥା ଭାରି ସୁନ୍ଦର । ସେଇଠି ମୁଁ ଆପଣଙ୍କର ବନ୍ଦୋବସ୍ତ କରାଇ ଦେବି । ଖାଲି ଗେଷ୍ଟ ହାଉସ୍‌ର କେଆର୍‌ଟେକର୍‌କୁ ଟିକିଏ କହିଦେଲେ ହେବ ।

ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ। କିନ୍ତୁ ଆଜି ରାତ୍ରିଭୋଜନଟା ହେବ ଏଇ ଗରିବ କୁଡ଼ିଆରେ।

ସତ୍ୟବ୍ରତ କହିଲା : ମୋର ଆପତ୍ତି ନାହିଁ। ଯେଉଁଠି ହେଲେ ପେଟ ଭରିବାକୁ ହେବ। କିନ୍ତୁ ମୁଁ ଟିକିଏ 'ମାଧବୀ ଭିଲା'କୁ ଯିବାକୁ ଚାହେଁ। ମୋ କ୍ଲାଏଣ୍ଟ୍‌ଟି ହୁଏତ ମୋର ଅନୁପସ୍ଥିତିରେ ଶଙ୍କିତ ହୋଇ ପଡ଼ିଥିବ।

: ଆପଣ ତା'ହେଲେ...

: ହଁ, କିନ୍ତୁ ମୁଁ ଆପଣଙ୍କ ସହଯୋଗିତାରେ ଏ କେସ୍‌ଟିର ତଦନ୍ତ କରିବାକୁ ଚାହେ। ଦୀପକ ଚୌଧୁରୀ ଆଜି ସକାଳେ ଯାଇଥିଲେ ମୋ ପାଖକୁ। କେସ୍ ହିଷ୍ଟରୀ କିଛିଟା ମୁଁ ଶୁଣିଛି ତାଙ୍କ ମୁହଁରୁ। ଏ ଡେଥ୍ ଏକ ସାଇକଲୋଜିକାଲ୍ ଡେଥ୍। ସେ ହୋମିସାଇଡ୍ ହେଉ ବା ସୁଇସାଇଡ୍ ହେଉ। ଭେରି ଇଣ୍ଟରେଷ୍ଟିଂ। ସେଇଥିପାଇଁ ମୁଁ ଛୁଟି ଆସିଛି ଏତେ ଦୂରକୁ। ଆପଣଙ୍କ ବିରୋଧୀତା ମୁଁ ମୋଟେ କରିବି ନାହିଁ।

: ନା ନା ମିଷ୍ଟର ମହାପାତ୍ର। ଆପଣ ମୋତେ ଭୁଲ୍ ବୁଝନ୍ତୁ ନାହିଁ। ସବୁ ପୋଲିସ୍ ଅଫିସରଙ୍କ ଭଳିଆ ଆଇନ୍‌ମାଫିକ ଚଳିବା ମୋର ନୀତି ନୁହେଁ। ମୁଁ ବି ଚାହେ ସବୁ କ୍ଷେତ୍ରରେ ପ୍ରକୃତ ଅପରାଧୀକୁ ଖୋଜି ବାହାର କରିବା ପାଇଁ। କିନ୍ତୁ ଆମର ସୁଯୋଗ ନାହିଁ। ଆଇନ୍‌କାନୁନ୍‌ର ନାଗଫାଶରେ ଆମେ ଏପରି ଭାବରେ ବନ୍ଧା ହୋଇ ରହିଛୁ ଯେ, ଟିକିଏ ଏପାଖ ସେପାଖ ହେବାର ଉପାୟ ନାହିଁ। ସେଇଥିପାଇଁ ଅନେକ ସମୟରେ...

: ମୁଁ ଜାଣେ ମିଷ୍ଟର ଚକ୍ରବର୍ତ୍ତୀ। କିନ୍ତୁ ଅନେକ ପୋଲିସ୍ ଅଫିସର ଅଛନ୍ତି, ସେମାନେ ମନପ୍ରାଣରେ ସରକାରୀ ଲୋକ। ମନ ଭିତରେ ଉଦାରତାର ଏତେ ଟିକିଏ ଫାଙ୍କ୍ ନାହିଁ। ଯା'ହେଉ, ଆପଣଙ୍କ ପ୍ରତିଶ୍ରୁତି ମୋତେ ଭାରି ଭଲ ଲାଗିଲା। ଆମେ ମାଧବୀ ଭିଲାରୁ ଫେରି ଆପଣଙ୍କୁ ପାଇବୁ ତ ?

: ହଁ, ମୁଁ ଅପେକ୍ଷା କରିଥିବି। ମୋର କ୍ୱାର୍ଟରଟା ଏଇଠି। ଥାନାକୁ ଲାଗି।

ସତ୍ୟବ୍ରତ ସହିତ ମୁଁ ବି ଉଠି ଆଗେଇ ଯାଉଥିଲି। କିନ୍ତୁ ସେ ହଠାତ୍ ଅଟକିଯାଇ ପଛକୁ ଲେଉଟି ଆସି କହିଲା : ମିଷ୍ଟର ଚକ୍ରବର୍ତ୍ତୀ ! ମାଧବୀ ଭିଲାର ଆଖପାଖର ଲୋକମାନଙ୍କୁ ମୁଁ ଟିକିଏ ଜେରା କରିବାକୁ ଚାହେ, ସେମାନଙ୍କୁ ମୁଁ ପୋଲିସ୍ ଲୋକ ବୋଲି ପରିଚୟ ଦେବି। ଏଥିରେ ବୋଧହୁଏ ଆପଣଙ୍କର ଆପତ୍ତି କରିବାର କିଛି ନାହିଁ।

ମିଷ୍ଟର ଚକ୍ରବର୍ତ୍ତୀ ହସିଲେ। କହିଲେ : ଆପଣ ମୋତେ ଲଜ୍ଜା ଦେଉଛନ୍ତି ମିଷ୍ଟର ମହାପାତ୍ର। ତା'ଛଡ଼ା କହିବେ ଯଦି ମୁଁ ଆପଣଙ୍କ ସହିତ ଯାଇ ସାହାଯ୍ୟ କରିବି।

: ନା ନା, ଆପଣ ମୋ ସହିତ ଗଲେ ବରଂ ମୋ କାମରେ ଅସୁବିଧା ହେବ। ତା'ଛଡ଼ା ଏଣେ ଆମର ଖାଇବା ଯୋଗାଡ଼ଟା ଯେ ଆପଣଙ୍କ ଉପରେ।

ଆମେ ଆଗେଇ ଗଲୁ।

ଥାନାରୁ ବାହାରି ଗୋଟିଏ ରିକ୍‌ସାବାଲା 'ମାଧବୀ ଭିଲା' ନାଁ ଶୁଣି ଏବଂ ଥାନାରୁ ବାହାରି ଆସୁଥିବାର ଦେଖି ନିଶ୍ଚୟ ଧାରଣା କରିନେଇଥିଲା ଯେ ଆମେ ପୋଲିସ ଲୋକ। ସେଇଥିପାଇଁ ଆମେ ରିକ୍‌ସାରୁ ଓହ୍ଲେଇଲା ପରେ, ବହୁ କଷ୍ଟରେ ସେ ଆମଠାରୁ ପଇସା ନେଲା।

'ମାଧବୀ ଭିଲା'କୁ ଅନ୍ଧକାର ସଂପୂର୍ଣ୍ଣ ରୂପେ ଗ୍ରାସ କରିଥିଲା।

ଆମର ସନ୍ଦେହ ହୋଇଥିଲା, ଦୀପକ ଚୌଧୁରୀ ବୋଧହୁଏ ପଳାତକ ।

କିନ୍ତୁ ଦରଜାରେ ଠକ୍ ଠକ୍ ଶବ୍ଦ ଶୁଣି ଆମେ ଭିତରୁ କଣ୍ଠସ୍ୱର ଶୁଣିଲୁ । ନିଜେ ଦୀପକ ଚୌଧୁରୀ ଦରଜା ଖୋଲିଦେଲେ ।

ସକାଳର ଦୀପକ ଚୌଧୁରୀକୁ ସନ୍ଧ୍ୟାରେ ମନେହେଲା, ବୟସ ବହୁତ ବଢ଼ି ଯାଇଛି । କପାଳରେ ଚିନ୍ତାର ବହୁ ଗଭୀର ରେଖା ।

ସେ ଆମକୁ ଦେଖି ନମସ୍କାର କଲେ ।

ନୀରସ କଣ୍ଠରେ କହିଲେ : ଆପଣଙ୍କୁ ଅଯଥା ବିରକ୍ତ କଲି ମିଷ୍ଟର ମହାପାତ୍ର । ଆଉ କିଛି ଲାଭ ନାହିଁ । ମିଷ୍ଟର ଚକ୍ରବର୍ତ୍ତୀ କହୁଥିଲେ, ପୋଷ୍ଟମର୍ଟମ ରିପୋର୍ଟରେ କୁଆଡ଼େ ଜଣାଯାଇଛି ଯେ, ରଂଜିତାକୁ ହତ୍ୟା କରାହୋଇଛି ।

: ହୁଁ, ସେଥିରେ ଆପଣଙ୍କର ଅସୁବିଧା କ'ଣ ହେଲା ?

: ନା, ମୁଁ ଭାବୁଥିଲି ସେଇ କଥା । ପୋଲିସ୍‌ବାଲା ଆଉ ମୋତେ ଛାଡ଼ିବେ ନାହିଁ । ତାଙ୍କ ଆଖିରେ ମୋ ଛଡ଼ା ହତ୍ୟାକାରୀ ଆଉ କିଏ ହୋଇପାରେ ? ତା'ଛଡ଼ା...

: କ'ଣ କୁହନ୍ତୁ ।

: ତା'ଛଡ଼ା ମୁଁ ଭାବିପାରୁ ନାହିଁ ମିଷ୍ଟର ମହାପାତ୍ର । କିପରି, କିଏ ରଂଜିତାକୁ ହତ୍ୟା କଲା ଏବଂ କାହିଁକି ? ଆଶ୍ଚର୍ଯ୍ୟ । ଯଦି ସେ ଆତ୍ମହତ୍ୟା କରିଥାଆନ୍ତା, ତା'ହେଲେ ମୁଁ ବୁଝିଥାଆନ୍ତି ରଂଜିତାର ମୁଣ୍ଡଦୋଷ ପାଇଁ ଏପରି ଘଟିଲା । କିନ୍ତୁ ମିଷ୍ଟର ମହାପାତ୍ର, ମୁଁ ଆଶ୍ଚର୍ଯ୍ୟ ହେଉଛି । ରଂଜିତା ମୋରି ପାଖେ ପାଖେ ଥିଲା ସମଗ୍ର ରାତି । ଯେମିତି ମୋ ଆଖିର ଟିକିଏ ପଲକ ପଡ଼ିଛି, ସେମିତି ରଂଜିତାକୁ ମୋ ପାଖରୁ ଟାଣିନେଇ ଶ୍ୱାସରୁଦ୍ଧ କରି କିଏ ହତ୍ୟା କଲା ?

: ଆପଣ ଖୁବ୍ ବିଚଳିତ ହୋଇ ପଡ଼ିଛନ୍ତି ମିଷ୍ଟର ଚୌଧୁରୀ । ଆଉ ଉତ୍ତେଜିତ ମଧ୍ୟ । ହେବା ବି ଅତି ସ୍ୱାଭାବିକ । ତଥାପି ଏ କ୍ଷେତ୍ରରେ ଆପଣଙ୍କର ଧୈର୍ଯ୍ୟର ପ୍ରୟୋଜନ ଆହୁରି ଅନେକ ବେଶି ।

: ନା ମିଷ୍ଟର ମହାପାତ୍ର । ମୋତେ ଆଉ କିଛି ଭଲ ଲାଗୁ ନାହିଁ । ଜୀବନର ଯାତ୍ରାପଥଟାକୁ ମୁଁ ଯେତେ ସହଜ ସରଳ ବୋଲି ମନେକରିଥିଲି, ଆଜି ଦେଖୁଛି, ତାହା ସେତିକି ଜଟିଳ ।

ସତ୍ୟବ୍ରତ ବୋଧହୁଏ ଜୀବନତତ୍ତ୍ୱ ଆଲୋଚନା କରିବା ପାଇଁ ଚାହୁ ନଥିଲା । ସେ ପ୍ରସଙ୍ଗ ବଦଳାଇ କହିଲା : କାଲି ରାତିରେ ଏଇ ଘରେ ଆପଣ ଶୋଇଥିଲେ ?

: ହଁ ଏଇ ଘରେ, ଏଇ ଖଟ ଉପରେ ।

ସତ୍ୟବ୍ରତ ଉଠି ଠିଆ ହୋଇ ଦେଖିଲା ଭଲ କରି । ଗୋଟିଏ ଖଟ । ଗୋଟିଏ ଆଲମାରୀ, ବେତ ଚେଆର ଦୁଇଟି ଓ କାନଭାସ୍‌ର ଆରାମ ଚେଆର ଗୋଟିଏ । ଘରେ ଝରକା ଦୁଇଟି, ଦରଜା ବି ଦୁଇଟି ।

ସତ୍ୟବ୍ରତ କହିଲା : ଏଇ ଘରେ, ଏଇ ଶେଯରେ ଶୋଇ ଆପଣ କାଲି ସ୍ୱର୍ଗସୁଖ ରଚନା କରିଥିଲେ ମନେମନେ, ଆଉ ଆଜି ସେଇ ଶେଯ ଉପରେ ଶୋଇ ଶୋଇ କଣ୍ଟକ ଶଯ୍ୟାରେ ଶୋଇଲା ପରି ଲାଗୁଛି ଆପଣଙ୍କୁ । ବଡ଼ ବିଚିତ୍ର ଏଇ ଦୁନିଆର ଗତି । ଉଠନ୍ତୁ

ମିଷ୍ଟର ଚୌଧୁରୀ । ଗେଟ୍ଅପ୍ । ଆସନ୍ତୁ ଦେଖିବା ଆପଣଙ୍କ ବାଡ଼ିବଗିଚା, ବଉଳ ମୂଳ । ଗଙ୍ଗା କୂଳ । ଟର୍ଚ୍ଚ ଥିବ ନିଶ୍ଚୟ ଆପଣଙ୍କର ?

ଦୀପକ ଚୌଧୁରୀ ନୀରବରେ ଉଠି ଠିଆ ହେଲା । ଆଲମାରୀ ଖୋଲି ଟର୍ଚ୍ଚ ବାହାର କରି ଆମ ପଛେ ପଛେ ଆଗେଇଲା ଧୀରେ ।

ଆମେ ସବୁ ଦେଖିଲୁ, ଟିକିନିଖି ପରୀକ୍ଷା କଲା ପରି । ସତ୍ୟବ୍ରତ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଥିଲା ।

ଗଙ୍ଗା କୂଳରେ ଠିଆ ହୋଇ, ଗଭୀର ଗଙ୍ଗା ବକ୍ଷକୁ ଚାହିଁ ପଚାରିଲା : ଏଇ ସାମ୍ନା ଗଛମୂଳେ ଆପଣଙ୍କର ଜୀବନ ନୌକା ସେଦିନ ଲାଗିଥିଲା ?

: ନା, ଏଇ ଯେଉଁ ବାଁ ପାଖ ଗଛଟା ଦେଖୁଛନ୍ତି । ଏଇକ୍ଷଣି ଜୁଆର ଛାଡ଼ିଥିବାରୁ ସେଠି ପାଣି ନାହିଁ । ସେଦିନ କିନ୍ତୁ ପାଣି ଭର୍ତ୍ତି ହୋଇଥିଲା ।

: ହୁଁ, ଏଇ ପାହାଚ ଉପରୁ ସେ ଆପଣଙ୍କ ହାତ ଧରି ନୌକାକୁ ଉଠାଇ ନେଇଥିଲା ?

: ହଁ ।

: ସେ ରଂଜିତା କି ଅନ୍ୟ କେହି ଆପଣ ତାକୁ ଚିହ୍ନିପାରି ନଥିଲେ ?

: ନା, ସେଦିନ ଏହାଠାରୁ ଆହୁରି ଅନ୍ଧକାର ହୋଇଥିଲା । ତା'ଛଡ଼ା ରଂଜିତା ଛଡ଼ା ଅନ୍ୟ କିଏ ହୋଇପାରେ, ମୋ ମନରେ ମୋଟେ ସେ ଧାରଣା ନଥିଲା । ଏବେ ମଧ ନାହିଁ ।

: ମାନେ, ଆପଣ କହୁଛନ୍ତି ରଂଜିତା ଆପଣଙ୍କୁ ନୌକା ଭିତରକୁ ହାତ ଧରି ଟାଣି ନେଇଥିଲା ।

: ହଁ ।

: ତା'ହେଲେ ସେ କଥା ଆପଣଙ୍କ ପାଖରେ ଅସ୍ୱୀକାର କରୁଥିଲା କାହିଁକି ?

: ହୁଏତ ଲାଜରେ ।

: ବଉଳ ମାଳା ତାହାହେଲେ ସେଇ ଲମ୍ବାଉଥିଲା ଆପଣଙ୍କ ଗଳାରେ ?

: ମୋର ସେଇଆ ଧାରଣା ।

: ହୁଁ ।

ଆମେ ସେଠାରୁ ଫେରି ଆସିଲୁ ।

: ଏଇଟା ଆପଣଙ୍କ ପାଇଖାନା । ଏଇଠି ସେଦିନ ଆପଣଙ୍କ ମୁଣ୍ଡ ବୁଲାଇ ଦେଇଥିଲା ?

: ନା ଏଠି । ମୁଁ ଫେରି ଆସୁଥିଲି । ହଠାତ୍ ମୁଣ୍ଡ ବୁଲାଇ ପଡ଼ି ଯାଇଥିଲି ।

: ଆଉ ଏଇ ଘରଟା ?

: ସେଇଟା ଗୋଟାଏ ଅଦରକାରୀ ଘର । ତେବେ ମୋ ପୂର୍ବରୁ ଯିଏ ଥିଲେ ଏଠାରେ, ସେ ଏଇଟାକୁ ରୋଷେଇ ଘର ଆଉ ଭଣ୍ଡାର ଘର ରୂପେ ବ୍ୟବହାର କରୁଥିଲେ । ମୁଁ କିନ୍ତୁ ଆଜିଯାଏ ତା' ଶିକୁଳି ଖୋଲି ନାହିଁ ।

ଘରର ଶିକୁଳି କିନ୍ତୁ ଖୋଲା ଥିଲା । ସତ୍ୟବ୍ରତ ଭିତରକୁ ପଶିଲା । ପଛେପଛେ ମୁଁ ବି । ଦୀପକ ଠିଆ ହୋଇଥିଲା ବାହାରେ ।

ଘର ଭିତରେ ଅଦରକାରୀ ଭଙ୍ଗା ଜିନିଷ କେତେଟା ଏପାଖ ସେପାଖ ହୋଇ ପଡ଼ିଛି । ବୁଢ଼ିଆଣୀ ଜାଲ ଓହୋଳିଛି ଚାରିଆଡ଼େ । ଦରପୋଡ଼ା କାଠ ଦିଖଣ୍ଡ ପଡ଼ିଛି ଚୁଲି ପାଖରେ ।

କିଛି ପ୍ରୟୋଜନ ନଥିଲା ସେଠାରେ । ତଥାପି ସତ୍ୟବ୍ରତ ଠିଆ ହୋଇ ଟର୍ଚ୍ଚ ଜାଳି ଘରଟାକୁ ତନ୍ନ ତନ୍ନ କରି ପରୀକ୍ଷା କରି ଦେଖୁଥିଲା ।

ସେ ନଇଁପଡ଼ି ତଳୁ କ'ଣ ଗୋଟାଏ ଉଠାଇ ଆଣିଥିଲା ଦରପୋଡ଼ା କାଠ ସନ୍ଧିରୁ, ମୁଁ ଦେଖପାରି ନଥିଲି । ତା' ସଂଗେ ସଂଗେ ବାହାରି ଆସିଥିଲି ବାହାରକୁ ।

: ଆଉ, ଏ ଘରଗୁଡ଼ାକ ?

: ସବୁ ଖାଲି ପଡ଼ିଛି ।

: ତା' ଭିତରୁ ଗୋଟାଏ ଡ୍ରଇଂ ରୁମ୍ । ଆହୁରି ଗୋଟାଏ ବେଡ୍ ରୁମ୍ । ଆଉ ଆର ଘରଟାରେ ଯେଉଁ ଭଦ୍ରଲୋକ ପୂର୍ବରୁ ଥିଲେ ଏଠାରେ ତାଙ୍କର କିଛି ଜିନିଷପତ୍ର ଅଛି ।

ସତ୍ୟବ୍ରତ କହିଲା : ଏଥର ଆପଣ ଆରାମ କରନ୍ତୁ ମିଷ୍ଟର ଚୌଧୁରୀ । ଆମେ ଅଛୁ ଏବଂ ଆପଣଙ୍କ କେସ୍‌ର ଶେଷ ସମାଧାନ କରିବାଯାଏ ରହିବୁ । ତେବେ ରାତିରେ ଟିକିଏ ସାବଧାନ ହୋଇ ଶୋଇବେ । ସତ୍ୟବ୍ରତ ପରିହାସ ମିଶା କଣ୍ଠରେ କହିଲା ।

: କାହିଁକି ? ଦୀପକ ଚୌଧୁରୀର କଣ୍ଠରେ ଉତ୍କଣ୍ଠା ଫୁଟି ଉଠିଥିଲା ।

: ଆପଣଙ୍କ ଛାୟାସଂଗିନୀଙ୍କର ଆବିର୍ଭାବ ହୋଇପାରେ ରାତିରେ ।

ଦୀପକ ଚୌଧୁରୀ ଅନେକ ବେଳଯାଏ ଏକ ତୀବ୍ର ଚାହାଣିରେ ଚାହିଁଲା ସତ୍ୟବ୍ରତ ମୁହଁକୁ । ଧୀରେ ଧୀରେ ମୁହଁରେ ଟିକିଏ ହସ ଫୁଟାଇବାକୁ ଚେଷ୍ଟା କରି କହିଲା : ମଡ଼ା ଉପରେ ଆଉ ପ୍ରହାର କରି କିଛି ଲାଭ ଅଛି ମିଃ ମହାପାତ୍ର ?

ସତ୍ୟବ୍ରତ ନୀରବରେ ପ୍ରସଙ୍ଗ ଏଡ଼େଇ ଯାଇ କହିଲା : ଆପଣ ଥାଆନ୍ତୁ, ଆମେ ଆସୁଛୁ । ପୁଣି କାଲି ସକାଳେ ଦେଖା ହେବ ।

: ମାନେ ? ଆପଣ ଏତେ ରାତିରେ...

: ନା, ଆମେ କଲିକତା ଫେରିଯିବୁ ନାହିଁ । ଆପଣଙ୍କ କମ୍ପାନୀର ଗେଷ୍ଟ୍ ହାଉସ୍‌ରେ ଆମେ ରହିବାର ସମସ୍ତ ବ୍ୟବସ୍ଥା କରି ଆସିଛୁ ।

: ଆଉ ଖାଇବା ବ୍ୟବସ୍ଥା ?

: ଆପଣଙ୍କ ପୋଲିସ୍ ସାହେବଙ୍କ ଘରେ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ଦିନେ ଆପଣଙ୍କଠାରୁ ଏକ ବିରାଟ ଭୋଜି ଆଦାୟର ଆଶା ଅଛି କିନ୍ତୁ ।

ଦୀପକ ଚୌଧୁରୀ ଦରଜା ବନ୍ଦ କରିବା ଯାଏ ଆମେ ବାହାରେ ଅପେକ୍ଷା କରିଥିଲୁ ।

କିଛି ସମୟ ପରେ ପାଖ ଘରେ ଯାଇ ସତ୍ୟବ୍ରତ କଡ଼ା ହଲେଇଲା ।

ଯେଉଁ ଭଦ୍ରଲୋକ କବାଟ ଖୋଲିଲେ ସେ ଆମକୁ ଦେଖି ଚିହ୍ନିପାରି ନଥିଲେ । ପ୍ରଶ୍ନ ବି କରିପାରି ନଥିଲେ କିଛି ।

: ମୁଁ ଜଣେ ପୋଲିସ୍ ଅଫିସର । କଲିକତାରୁ ଆସିଛି ।

ଭଦ୍ରଲୋକ ସମ୍ଭ୍ରମ ସହକାରେ ନମସ୍କାର କରିଥିଲେ । ନିଜର ପରିଚୟ ଦେଇ ଅଶ୍ରୁସିକ୍ତ କଣ୍ଠରେ କହିଥିଲେ : ମୋ ନାଁ ସମରେନ୍ଦ୍ର ଘୋଷ । ହତଭାଗ୍ୟ ରଂଜିତାର ବାପା । ସେ କାନ୍ଦି ପକାଇଥିଲେ ।

: ରଂଜିତା ଆପଣଙ୍କ ଝିଅ । ଅବଶ୍ୟ ମୃତ୍ୟୁଟା ତା'ର ଯେଉଁପରି ହେଉ, ଆମେ ସମସ୍ତେ ସେଥିପାଇଁ ଖୁବ୍ ଦୁଃଖିତ । ବର୍ତ୍ତମାନ ଯାହା ହେଲେ ବି ରଂଜିତା ଆଉ ଫେରିବ ନାହିଁ । ତେବେ ରଂଜିତାର ହତ୍ୟାକାରୀକୁ ଖୋଜି ବାହାର କରିବାକୁ ହେବ ।

ଭଦ୍ରଲୋକ ମନରୁ ଯେପରି ସମସ୍ତ ଉତ୍ସାହ ମରିଯାଇଥିଲା । ସେ ଆମକୁ ଭିତରକୁ ନେଇ ଗୋଟିଏ ଘରେ ବସିବା ପାଇଁ ଇଙ୍ଗିତରେ କହିଲେ ।

ଆମେ ବସିଲୁ ।

ଭଦ୍ରଲୋକ ଦୁଆର ବନ୍ଧକୁ ଧରି ଠିଆହୋଇ ରହିଲେ ।

ସତ୍ୟବ୍ରତ କହିଲେ : ଆପଣ ବସନ୍ତୁ । ରଂଜିତା ସମ୍ବନ୍ଧରେ କେତେକ କଥା ଆପଣଙ୍କଠାରୁ ଜାଣିବା ପାଇଁ ଆମେ ଆସିଛୁ ।

ଭଦ୍ରଲୋକ ନୀରବରେ ବସିଥିଲେ ।

: ରଂଜିତାର ମାମୁ ଘରେ ଅଛନ୍ତି ?

: ନା, ସେ ଆଜି ସନ୍ଧ୍ୟାବେଳେ କଲିକତା ଯାଇଛନ୍ତି, କାଲି ଫେରିବେ ।

: ସେ ରଂଜିତାର ଯେଉଁଠି ବିବାହ ବନ୍ଦୋବସ୍ତ କରୁଥିଲେ, ଆପଣ ସେଥିରେ ଅମତ ହେଲେ କାହିଁକି ?

: ମୁଁ ନୁହେଁ, ରଂଜିତାର ମା' ।

: କାରଣଟା ଅବଶ୍ୟ ଆପଣ ଜାଣିଥିବେ ।

: ନା, କାରଣ ସେପରି କିଛି ନଥିଲା । ତେବେ ପ୍ରତ୍ୟେକଙ୍କର ଗୋଟିଏ ଗୋଟିଏ ଲାଇକିଂ ଅଛି ତ ! ରଂଜିତାର ମା'ଙ୍କୁ ହୁଏତ ପାତ୍ର ହିସାବରେ ଦୀପକକୁ ଭଲ ଲାଗିଥିଲା ।

: ଆପଣଙ୍କର ଏ ସମ୍ବନ୍ଧରେ କିଛି ମତାମତ ନଥିଲା ?

ଅବଶ୍ୟ 'ନା' କହିଲେ ଠିକ୍ ହେବ ନାହିଁ । ମୁଁ ଟିକିଏ ବ୍ୟସ୍ତ ମଣିଷ । ପରିବାରର ଅନ୍ନସଂସ୍ଥାନ କରିବା ପାଇଁ ମୋତେ ଘରୁ ସକାଳୁ ବାହାରିଯାଇ ରାତି ଦଶଟା ବେଳେ ଫେରିବାକୁ ହୋଇଥାଏ । ତେଣୁ ସଂସାରର ସମସ୍ତ ଦାୟିତ୍ୱ ରଂଜିତାର ମା'ଙ୍କ ଉପରେ । ସେଇଥିପାଇଁ ମୁଁ ସଂସାର ସମ୍ବନ୍ଧରେ ତାଙ୍କର ସବୁ ମତକୁ ଅଗ୍ରାଧିକାର ଦେଇଥାଏ । ଏ କ୍ଷେତ୍ରରେ ବି ପ୍ରାୟ ସେଇଆ ହୋଇଥିଲା । ତେବେ ପଙ୍କଜ ମାନେ ରଂଜିତାର ମାମୁ ଯେଉଁ ପାତ୍ରଟି ଠିକ୍ କରିଥିଲେ, ପ୍ରସ୍ତାବଟି ମନ୍ଦ ନଥିଲା । ଅବଶ୍ୟ ମୁଁ ଟିକିଏ ଧନ୍ଦାରେ ପଡ଼ିଯାଇଥିଲି, କିନ୍ତୁ ମନେମନେ ଚାହୁଁଥିଲି, ଦୁଇ ଜାଗାରେ ଯେଉଁଠି ହେଉ, ରଂଜିତାର ବାହାଘର ହୋଇଗଲେ ମୋର ମୁକ୍ତି ।

: ହୁଁ, ତେବେ ଏ ଦୁଇଟି ପ୍ରସ୍ତାବ ସପକ୍ଷରେ ବା ବିପକ୍ଷରେ ରଂଜିତାର କୌଣସି ସ୍ୱତନ୍ତ୍ର ମତ ନଥିଲା ?

: ଠିକ୍ ମତ ନୁହେଁ ମିଷ୍ଟର ମହାପାତ୍ର, ତେବେ ଇଚ୍ଛା ଥିଲା ବୋଲି ରଂଜୁର ମା' କହୁଥିଲେ । ସେଇଥିପାଇଁ ସେ ଦୀପକ ସହିତ ରଂଜୁର ବିବାହ ବ୍ୟବସ୍ଥା କରୁଥିଲେ ।

: କାହିଁକି ? ରଜିତା କ'ଣ ତା'ର ସ୍ୱତନ୍ତ୍ର ମତ ପ୍ରକାଶ କରିବାରେ କୌଣସି ବାଧା ଥିଲା ?

ସମରେନ୍ଦ୍ରବାବୁ ନୀରବରେ କିଛି ସମୟ ଚାହିଁଲେ ଆମ ମୁହଁକୁ । ତା'ପରେ ଧୀରେ ଧୀରେ କହିଲେ : ରଂଜିତାର ମତାମତ ପ୍ରକାଶ କରିବାର କୌଣସି ଶକ୍ତି ନଥିଲା ।

: ମାନେ ?

: ସେ ଆଉ ଏକ କାହାଣୀ ମିଷ୍ଟର ମହାପାତ୍ର । ଅବଶ୍ୟ ରଂଜିତା ଆଜି ବଂଚିକରିଥିଲେ, ହୁଏତ ମୁଁ ସେ କାହାଣୀ ଆପଣଙ୍କୁ ଶୁଣାଇ ନଥାନ୍ତି । ଆଜି ମଧ୍ୟ ତା' ମା'ଙ୍କର ଆପତ୍ତି

କରିବାର କାରଣ କିଛି ନାହିଁ । ତେବେ ରାତି ହେଲାଣି । ଆପଣମାନେ ଫେରିଯିବେ । ଶୁଣିବାକୁ ସମୟ ହେବ ନାହିଁ ।

: ନା ନା ମିଷ୍ଟର ଘୋଷ । ଆମେ ଆସିଛୁ ସେଇଥିପାଇଁ । ରଂଜିତାର କାହାଣୀ ଶୁଣିବା ପାଇଁ । ଯେତେ ରାତି ହେଉ, ଆପଣ ଚିନ୍ତା କରନ୍ତୁ ନାହିଁ ! ସତ୍ୟବ୍ରତ କହିଲା ।

ସମରେନ୍ଦ୍ରବାବୁ ଟିକିଏ ଚିନ୍ତା କଲେ । କହିଲେ : ଆମକୁ କେବଳ ରଂଜିତାର ଇଚ୍ଛା ଉପରେ ନିର୍ଭର କରି ତା'ର ମନକଥା ବୁଝିବାକୁ ହେଉଥିଲା । ତିନିବର୍ଷ ତଳେ ଗୋଟାଏ ଦୁର୍ଘଟଣାରେ ସେ ତା'ର ସ୍ମରଣ ଶକ୍ତି ସଂପୂର୍ଣ୍ଣ ରୂପେ ହରାଇ ଦେଇଥିଲା । ତା'ପରେ ସେ ଆଉ ପୂର୍ଣ୍ଣ ଆରୋଗ୍ୟ ଲାଭ କରି ନାହିଁ ।

: ଦୁର୍ଘଟଣା କେଉଁଠି ଘଟିଥିଲା ? କୌଣସି ଆକ୍ସିଡେଣ୍ଟ ନିଶ୍ଚୟ ! ସତ୍ୟବ୍ରତ ଉଦ୍‌ବିଗ୍ନ ହୋଇ ପ୍ରଶ୍ନ କରିଥିଲା ।

ସମରେନ୍ଦ୍ର ବାବୁ ଆମ ଦୁଇଜଣଙ୍କ ମୁହଁକୁ ଚାହିଁଲେ । କହିବେ କି ନାହିଁ ବୋଧହୁଏ ଚିନ୍ତା କଲେ ଆଉଥରେ । ପୁଣି ଆରମ୍ଭ କଲେ, ରଂଜିତା ପିଲା ଦିନରୁ ଟିକିଏ ବେଶି ଗେହ୍ଲା ହୋଇ ବଢ଼ିଥିଲା । ତେଣୁ ସେ ବଡ଼ ହେବା ସଂଗେ ସଂଗେ ବୁଝିପାରି ନଥିଲା, ସେ ଗୋଟିଏ ଝିଅ, ତା'ର ଏକ ନିର୍ଦ୍ଦିଷ୍ଟ ବୟସରେ ତାକୁ କେତେଗୁଡ଼ିଏ ନିୟମ ମାନି ଚଳିବାକୁ ହେବ ।

ଅନ୍ତତଃ ସେଥିପାଇଁ ରଂଜୁର ମା' ଅନେକାଂଶରେ ଦାୟୀ ।

କାରଣ ଘର ସମ୍ବନ୍ଧରେ ବା ସନ୍ତାନମାନଙ୍କ ସମ୍ବନ୍ଧରେ କୌଣସି ଖବର ବୁଝିବାକୁ ମୋର ବେଳ ନଥିଲା ।

ରଂଜୁର ସାଙ୍ଗ ସାଥୀ ଥିଲେ ପ୍ରଚୁର ।

ହଠାତ୍ ଦିନେ ରଂଜୁର ମା' ଜାଣିପାରିଲେ ଯେ, ରଂଜୁ ଅନ୍ତସତ୍ତ୍ୱା ।

ଚଡ଼କ ପଡ଼ିଲା ମୋ ମୁଣ୍ଡରେ ।

ସେ ବି ବିଚଳିତ ହୋଇ ପଡ଼ିଲେ । ମୁଁ କହିଲି, ରଂଜୁକୁ ସେଇ ପିଲାଟି ସହିତ ବିବାହ କରାଇ ଦିଅ ।

କିନ୍ତୁ କାହିଁ କେଉଁ ପିଲା ?

ମା'ର ପ୍ରଶ୍ନରେ, ମାମୁର ଧମକରେ ରଂଜିତା ସେଇଦିନୁ ଯେ ମୁହଁ ବନ୍ଦ କଲା, ଆଉ ତା'ର ମୁହଁ ଖୋଲିଲା ନାହିଁ ଦୀର୍ଘ ତିନିବର୍ଷ ।

ଅବଶ୍ୟ ଭଗବାନଙ୍କ ଆଶୀର୍ବାଦରୁ ରଂଜିତାର ସେ ଗର୍ଭ ନଷ୍ଟ ହୋଇ ଯାଇଥିଲା । କିନ୍ତୁ ରଂଜିତା ଆଉ ମୁହଁ ଖୋଲି ନଥିଲା ।

ସେଇ ଦୀର୍ଘ ତିନୋଟି ବର୍ଷ ଆମର ଯେ କି ଦୁର୍ଭୋଗ, ଆପଣ ବିଶ୍ୱାସ କରିପାରିବେ ନାହିଁ ମିଷ୍ଟର ମହାପାତ୍ର । କଲିକତାରେ ଏପରି ଡାକ୍ତର ନାହାନ୍ତି, ଯାହାକୁ ଆମେ ରଂଜିତାକୁ ନ ଦେଖାଇଛୁ ।

କିନ୍ତୁ ରଂଜିତାର ମୁହଁ କେହି ଖୋଲିପାରିଲେ ନାହିଁ ।

ସେ କେବଳ ସ୍ମରଣ ଶକ୍ତି ହରେଇ ନଥିଲା, ଦେହର ସମସ୍ତ ଇନ୍ଦ୍ରିୟଗୁଡ଼ିକ ତା'ର ଅକର୍ମଣ୍ୟ ହୋଇ ଯାଇଥିଲା । ଏପରି କି ଜଣେ ଡାକ୍ତର ତା' ଦେହରେ ଇଲେକ୍‌ଟ୍ରିକ୍ ସକ୍ ଲଗାଇ ଇନ୍ଦ୍ରିୟରେ ଚେତନା ଜଗାଇ ପାରି ନଥିଲେ ।

ସେ କେବଳ ଆଖି ଦୁଇଟିରେ ଚାହୁଁଥିଲା ଜୁଳୁଜୁଳୁ କରି । ଚାମଚରେ ଖୋଇଦେଲେ ତଣ୍ଟିରେ ଗିଳି ଦେଉଥିଲା, ସେ ପୁଣି ତରଳ ଖାଦ୍ୟ । ଦାନ୍ତ ବୁଲେଇ ନଥିଲା ପ୍ରାୟ ଛଅମାସ ।

ଆମେ ବିବ୍ରତ ହୋଇ ପଡ଼ିଥିଲୁ ।

ଡକ୍ଟର ଚନ୍ଦ୍ରଶେଖର ତାଙ୍କ ମେଣ୍ଟାଲ କିଓର ହୋମ୍‌ରେ ରଖିଥିଲେ ପ୍ରାୟ ଦୁଇ ବର୍ଷ ।

ତା'ପରେ ରଂଜିତାର ଟିକିଏ ଉନ୍ନତି ହୋଇଥିଲା ।

ସେ କହିଥିଲେ : ରଂଜିତା ଆଉ ପୂର୍ବ ସ୍ମୃତି ଫେରି ପାଇବ ନାହିଁ । କେବେ ଯେ ସୁସ୍ଥ ମଣିଷ ହୋଇଉଠିବ, ସେ ଗ୍ୟାରେଣ୍ଟି ମୁଁ ଦେଇପାରିବି ନାହିଁ । ତେବେ ଗୋଟାଏ କଥା ସେ ଆମକୁ ଲକ୍ଷ୍ୟ ରଖିବାକୁ କହିଥିଲେ । ତା'ର ଇଚ୍ଛାଶକ୍ତିର କ୍ରମବିକାଶ ।

ରଂଜିତାର ଗୋଡ଼େ ଗୋଡ଼େ ରହି ଲକ୍ଷ୍ୟ ରଖିବାକୁ ହେବ ।

ଯଦି ତା' ମନରେ କୌଣସି ଇଚ୍ଛା ଜାଗେ, ଯଦି ସେ କାହା ସହିତ କଥା କହିବାକୁ ଚାହେ, ଯାହା ତା'ର ଇଚ୍ଛା- ସେଥିପାଇଁ ତାକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବା ଉଚିତ । ତା'ହେଲେ ସେ ହୁଏତ ସୁସ୍ଥ ହୋଇ ଉଠିବ । କାରଣ ରଂଜିତାର ଇଚ୍ଛାଶକ୍ତି ଏପରି ଭାବରେ ନଷ୍ଟ ହୋଇଯାଇଛି ଯେ, ତାକୁ ଆଉଥରେ ଜାଗରୁକ କରାଇବା କୌଣସି ଡାକ୍ତର କବିରାଜ ପକ୍ଷରେ ସମ୍ଭବ ନୁହେଁ ।

ସମରେନ୍ଦ୍ର ବାବୁ ନୀରବ ହେଲେ ।

: ତା'ପରେ ? ସତ୍ୟବ୍ରତ ପଚାରିଲା ।

: ତା'ପରେ ? ସମରେନ୍ଦ୍ର ସତ୍ୟବ୍ରତ ପ୍ରଶ୍ନର ଉତ୍ତର ଦେବାକୁ ଯାଉଥିଲେ, କିନ୍ତୁ କବାଟ ଫାଙ୍କରୁ କାହାର ଶାଢ଼ିର ଏକାଂଶ ଦେଖି କହିଲେ : ରଂଜିତାର ମା' ସେଠାରେ ଠିଆ ହୋଇଛନ୍ତି, ସେ ମୋଠାରୁ ଆହୁରି ବିସ୍ତୃତ ଭାବରେ କହିପାରିବେ । ଭିତରକୁ ଆସ । ଏମାନେ କଲିକତାରୁ ଆସିଛନ୍ତି । ପୋଲିସ୍ ଲୋକ । ତମେ ଏତେଦିନ ଯାଏ ରଂଜିତା ସମ୍ବନ୍ଧରେ ଯେଉଁ ସତ୍ୟଟି ଗୋପନ କରି ରଖିଥିଲ, ମୁଁ ଆଜି ତାକୁ ପ୍ରକାଶ କରିଦେଇଛି । ଆସ । ଆଉ ଲୁଚାଇ ରଖି କିଛି ଲାଭ ନାହିଁ ।

ରଂଜିତାର ମା' କବାଟ କୋଣରୁ ବାହାରି ଆସିଲେ ।

ସତ୍ୟବ୍ରତ ଆସନରୁ ଉଠିପଡ଼ି ନମସ୍କାର କଲା । ମୁଁ ବି ।

ରଂଜିତାର ମା' ଆଶୀର୍ବାଦ ଠାଣିରେ କହିଲେ : ବସ ବାବା । ରଂଜିତା ପାଇଁ ମୁଁ ଅନେକ କରିଥିଲି । କିନ୍ତୁ ସେ ମୋ କଥା ଥରଟିଏ ବି ଚିନ୍ତା କଲା ନାହିଁ । ଖସିଗଲା ସେ, ହାତମୁଠାରୁ ମୋର ଖସିଗଲା । ମୁଁ ଯଦି ସେଦିନ ରାତିରେ ତାକୁ ଅଟକାଇ ଦେଇପାରିଥାଆନ୍ତି, ଅଥବା ତା' ପଛେ ପଛେ ତାକୁ ଅନୁସରଣ କରିଥାଆନ୍ତି...

ସେ ନୀରବ ହେଲେ । ତାଙ୍କ ଆଖିରୁ ଲୁହ ଝରି ପଡୁଥିଲା ।

ସତ୍ୟବ୍ରତ କହିଲା : ରଂଜିତାର ସମସ୍ତ ଜଡ଼ତା ଯେଉଁଦିନ କଟିଲା, ପ୍ରଥମେ ସେଦିନ ସେ କାହାକୁ ଖୋଜିଥିଲା ?

: ମୋତେ ହାତଠାରି ଡାକିଲା ବାବା । ମୁଁ ତା' ବିଛଣା ଉପରେ ବସିବା କ୍ଷଣି, ମୋ ହାତଟାକୁ ନେଇ ତା' ଗାଲ ଉପରେ ଚାପିଧରି ହସିଲା ଟିକିଏ । ଦୀର୍ଘ ତିନିବର୍ଷ ପରେ, ସେଦିନ ପ୍ରଥମେ ମୁଁ ତା' ମୁହଁରେ ହସ ଦେଖିଲି । ସେଦିନ ମୋର ଯେ କି ଆନନ୍ଦ ବାବା, ଆଜି ତାହା ପ୍ରକାଶ କରିବାର ଶକ୍ତି ମୋର ନାହିଁ ।

ସେଇଦିନ ରାତିରେ ନିଜ ହାତରେ ଲୁଚି ଖଣ୍ଡେ ଉଠାଇ ନେଇ ସେ ଖାଇଲା ।

: ଆପଣ କେତେଦିନ ତଳର ଘଟଣା କହୁଛନ୍ତି ? ସତ୍ୟବ୍ରତ ପଚାରିଲା ।

: ଖୁବ୍ ବେଶି ନୁହେଁ, ଏଇ ଛଅ ମାସ ହେବ ।

: ହୁଁ, ତା'ପରେ କୁହନ୍ତୁ ।

ରଂଜିତାର ମା' ପୁଣି ଆରମ୍ଭ କଲେ : ଆରଦିନ ସକାଳୁ ମୁଁ ବିଛଣାରୁ ଉଠିବା ଆଗରୁ ଦେଖିଲି, ରଂଜୁ ଉଠି ବସି ଘରର ଚାରି ଆଡ଼କୁ ଚାହୁଁଛି, ଯେପରି ଖୋଜୁଛି କାହାକୁ ।

ମୁଁ ପଚାରିଲି : କାହାକୁ ଖୋଜୁଛୁ ମା' ?

କାନ୍ଥ ଉପରୁ ଆଖି ଫେରାଇ ଆଣି ମୋ ମୁହଁକୁ ଚାହିଁ ହସିଦେଲା ଟିକିଏ । ତା'ପରେ ହାତ ହଲାଇ ମନା କଲା । ଯେପରି କାହାରିକୁ ସେ ଖୋଜୁ ନାହିଁ ।

ସେଦିନ ମୁଁ ଖୁବ୍ ଚିନ୍ତିତ ହୋଇ ପଡ଼ିଥିଲି ।

ମୋର ମନେ ହୋଇଥିଲା, ରଂଜିତାର କ'ଣ ପାଟି ଆଉ ଖୋଲିବ ନାହିଁ ?

କିନ୍ତୁ ମୋର ଦୁର୍ଭାବନା ଦୂର ହୋଇଥିଲା ଆଉ କେତୋଟି ଦିନ ପରେ । ସେଦିନ ସକାଳୁ ଉଠି ମୁଁ ଦେଖିଲି ରଂଜିତା ବିଛଣା ଉପରେ ନାହିଁ । ଗଲା କୁଆଡ଼େ ?

ମୋ ଛାତିଟା କମ୍ପି ଉଠିଲା ।

ମୁଁ ଆମ ରୋଷେଇ ଘରୁ ମିଆଉଁ ମିଆଉଁ ଶବ୍ଦ ଶୁଣି ସେଇଆଡ଼େ ଛୁଟିଗଲି । ଦେଖିଲି, ବିରାଡ଼ି ଛୁଆଟାଏ ର୍ୟାକ୍ ଭିତରେ ପଶି ମିଆଉଁ ମିଆଉଁ ହେଉଛି । ରଂଜିତା ସେଇ ଛୁଆଟାର ଲାଙ୍ଗୁଡ଼ ଟାଣି ଧରି, ମୋତେ ଦେଖିବା ମାତ୍ରେ କହି ଉଠିଲା : ମା', ମିଆଉଁ ।

ତା'ପରେ ରଂଜିତା ହସି ହସି ଗଡ଼ି ଯାଇଥିଲା ଏବଂ ହସ ବନ୍ଦ ହେବା ସଂଗେ ସଂଗେ, ମିଆଉଁ ମିଆଉଁ କହି ମୋ ପଛେ ପଛେ ଛୁଟିଥିଲା ।

ସେ ଯେପରି ଏକ ଶିଶୁ ।

ପ୍ରଥମ କରି କଥା କହୁଛି ।

ତା'ଠାରୁ ବି ମୁଁ ଆହୁରି ଆନନ୍ଦିତ ହୋଇ ଛୁଟି ଯାଇଥିଲି, ରଂଜୁର ବାବାଙ୍କୁ ଡାକି ଡାକି ।

ରଂଜୁ ମୋ ପଛେ ପଛେ ସେହିପରି ମିଆଉଁ ମିଆଉଁ ହୋଇ ଛୁଟିଥିଲା ।

ରଂଜୁର ବାବା ସେତେବେଳକୁ ଘରୁ ବାହାରି ଚାଲିଯାଇଥିଲେ ।

ମୁଁ ଧକ୍କା ଖାଇଲା ପରି ପଛକୁ ବୁଲି ଅନାଇ ଦେଖିଲି, ରଂଜିତା ବାଡ଼ି ବଗିଚାକୁ ଛୁଟି ପଳାଇଲାଣି ।

ସେ ଯେପରି ନୂଆ ଚାଲି ଶିଖୁଛି, ନୂଆ କରି ପୃଥିବୀକୁ ଦେଖୁଛି । ଆକାଶ, ଗଛଲତା ସେ ଯେପରି ପ୍ରଥମ କରି ଦେଖିଲା ।

କୋଇଲିଟାଏ ଡାକୁଥିଲା କୁହୁକୁହୁ କରି ।

ରଂଜିତା ତା' ସହିତ ଡାକି ଉଠିଲା ତୁ... ତୁ...

ପ୍ରଜାପତି ପଛରେ ଧାଇଁଥିଲା ଧରିବା ପାଇଁ ।

ମୁଁ କେବଳ ଖଣ୍ଡେ ଦୂରରେ ଠିଆ ହୋଇ ଦେଖୁଥିଲି ତାକୁ । ତା'ର କାର୍ଯ୍ୟକଳାପରେ ବାଧା ଦେଉ ନଥିଲି ମୋଟେ ।

ହଠାତ୍ ଦେଖିଲି ରଂଜିତାର ଆଖି ଯୋଡ଼ାକ ଗୋଟାଏ ଜାଗାରେ ସ୍ଥିର ହୋଇଗଲା । ସେ ନିଶ୍ଚଳ ହୋଇଗଲା ।

ମୁଁ ଛୁଟିଗଲି ତା' ପାଖକୁ ।

କାହାକୁ ଏପରି ଚାହିଁଛି ରଂଜିତା ?

ସେ ଦୀପକ । ତାଙ୍କ ଘରେ ଠିଆ ହୋଇ ବ୍ରସ୍‌ରେ ଦାନ୍ତ ଘଷୁଛି । ପେଷ୍ଟର ଫେଣଗୁଡ଼ାକ ମୁହଁଯାକ ତା'ର ବୋଳି ହୋଇଛି । ରଂଜିତା ସେଇଆଡ଼େ ଚାହିଁଛି ଆଶ୍ଚର୍ଯ୍ୟ ହୋଇ ।

ମୋତେ ପାଖରେ ଦେଖି, ହାତର ଇଙ୍ଗିତରେ ଦୀପକକୁ ଦେଖାଇ ଦେଲା । ନିଜ ମୁହଁରେ ଆଙ୍ଗୁଳି ସଂଚାଳନ କରି ବୋଧହୁଏ ସୂଚାଇ ଦେଲା, ମୁଁ ଦୀପକ ପରି ମୁହଁରେ ଫେଣ ବୋଳିବାକୁ ଚାହେ ।

ମୁଁ ତା' ହାତଧରି ଘରକୁ ଟାଣିନେଇ ଗଲି ଏବଂ ଗୋଟାଏ ବ୍ରସ୍‌ରେ ପେଷ୍ଟ ବୋଳି ରଂଜିତା ହାତରେ ଧରାଇ ଦେଲି । ସେ ଦାନ୍ତ ଘଷିଲା । ଯେପରି ସେଥିରେ ଅସୀମ ଆନନ୍ଦ ତା'ର ।

ଦାନ୍ତଘସି ସାରିବା ପରେ ମୁଁ ତାକୁ ଖୁଆଇ ଦେଲି ।

ଖାଇସାରି ରଂଜିତା ଛୁଟିଗଲା ବାଡ଼ି ବଗିଚାକୁ, ଦୀପକ ଘର ଆଡ଼କୁ ଅନାଇ ରହିଲା ନିର୍ନିମେଷ ନୟନରେ ।

ଦୀପକ ଚାଲିଯାଇଥିଲା ବୋଧହୁଏ ଅନ୍ୟ ଘର ଭିତରକୁ ।

କରୁଣ ଆଖିରେ ମୋ ଆଡ଼େ ଚାହିଁ, ଇଙ୍ଗିତରେ କହିଲା : କାହିଁ ?

ମୁଁ ତା' ହାତଧରି ଘର ଭିତରକୁ ନେଇଗଲି । ସେ କିନ୍ତୁ ଆଉ ଘର ଭିତରେ ରହିବାକୁ ଚାହେ ନାହିଁ । ମୁକ୍ତ ଆକାଶ ତଳେ ପ୍ରଜାପତି ପଛରେ ଧାଇଁ କେତେଟା ଦିନ ଖୁବ୍ ନାଚିଲା ।

ଧୀରେ ଧୀରେ ପାଟି ବି ଖୋଲିଗଲା ତା'ର ।

କିନ୍ତୁ ବେଳେବେଳେ ସେ ଯାଇ ଠିଆ ହେଉଥିଲା ସେଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ । ବୋଧହୁଏ ଦୀପକକୁ ଦେଖିବା ପାଇଁ ।

ଆଉଦିନେ ସକାଳ ନଅଟାରେ ରଂଜିତାକୁ ମୁଁ କେଉଁଠି ନ ପାଇ ଛାତ ଉପରକୁ ଧାଇଁଗଲି । ଯାଇ ଦେଖିଲି, ସେ ଦୀପକର ଘର ଭିତରକୁ ଅନାଇ ଠିଆ ହୋଇଛି । ଦୀପକ ଅଫିସ୍ ଯିବା ପାଇଁ ଲୁଗାପଟା ପିନ୍ଧି ପ୍ରସ୍ତୁତ ହେଉଛି । ତା'ଘରର ଝରକାଟା ଖୋଲା । ଆମ ଛାତ କୋଣରୁ ଦିଶୁଛି ଅଳ୍ପ ଅଳ୍ପ ।

ମୁଁ ନିଶବ୍ଦରେ ଠିଆ ହୋଇ ରହିଲି ଗୋଟିଏ ଉହାଡ଼ିଆ ଜାଗାରେ ।

ଦୀପକ ଝରକା ବନ୍ଦ କରିବା ଯାଏ ଠିଆ ହୋଇ ରହିଥିଲା ସେଇଠି, ତା'ପରେ ଦଉଡ଼ି ଦଉଡ଼ି ଓହ୍ଲାଇଗଲା ତଳକୁ ।

ମା' ମା' ଚିତ୍କାର କରି ଡାକିଲା ମୋତେ ।

ମୁଁ ବିବ୍ରତ ହୋଇ ଓହ୍ଲାଇ ଆସିଲି ତଳକୁ ।

ମୋତେ ଦେଖି କହିଲା : ଭାରି ଭୋକ କଲାଣି ମା' ।

ମୁଁ ରଂଜିତାର ମୁଣ୍ଡ ଆଉଁଶି ଦେଇ ତାକୁ ଖାଇବାକୁ ଦେଲି ।

ପୁଣି ଆରଦିନ ନଅଟା ବେଳେ ରଂଜିତାକୁ ମୁଁ ଆବିଷ୍କାର କଲି ସେଇ ଛାତ କୋଣରେ । ସେ ଠିଆ ହୋଇ ନିର୍ନିମେଷ ନୟନରେ ଚାହିଁଥିଲା ଦୀପକ ଆଡ଼େ ।

ଦିନ ପରେ ଦିନ ଗଡ଼ିବାକୁ ଲାଗିଲା ।

ରଂଜିତାର ସମସ୍ତ ଜଡ଼ତା କଟିବାରେ ଲାଗିଲା ।

ମୋ ମନରେ ବିଶ୍ୱାସ ଜନ୍ମିଲା, ନା ରଂଜିତା ସୁସ୍ଥ । ରଂଜିତା ଆରୋଗ୍ୟ ଲାଭ କରିଛି, କିନ୍ତୁ ଜଣେ ନୂଆ ମଣିଷ ହିସାବରେ ।

ଗତଦିନର କୌଣସି କଥା ତା'ର ମନେ ନଥିଲା । ଗୋଟାଏ ଦୃଷ୍ଟିରୁ ଭଲ ହୋଇଥିଲା । ଅତୀତ ଦିନଗୁଡ଼ାକର କଥା ମନେକରି ପାରିଥିଲେ ସେ ହୁଏତ ବ୍ୟଥିତ ହୋଇଥାଆନ୍ତା । ଲଜ୍ଜିତ ହୋଇଥାଆନ୍ତା ।

ରଂଜିତା ଦେହ ମନରୁ ସଂପୂର୍ଣ୍ଣ ଜଡ଼ତା କଟି ଯାଇଥିଲା ।

କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କରୁଥିଲି, ଆମ ଘରର କେଇଜଣ ଲୋକଙ୍କ ଛଡ଼ା ଆଉ ସେ କାହାରି ସହିତ କଥା କହୁ ନଥିଲା । ଏପରିକି କେବେ ଯଦି କେହି ଭଦ୍ରଲୋକ ବା ଭଦ୍ରମହିଳା ଆମ ଘରକୁ ଆସୁଥିଲେ, ରଂଜିତା ତା' ଘରେ କବାଟ କିଳି ମୁହଁ ମାଡ଼ି ଶୋଇ ପଡୁଥିଲା ।

ବହୁ ଚେଷ୍ଟା କରି ମଧ ତା'ର ଏହି ଭାବ ମୁଁ କଟାଇ ପାରି ନଥିଲି ।

ଯା'ହେଉ ଚାଲିଥିଲା । ମୁଁ ରଂଜିତାକୁ ଗୋଡ଼େ ଗୋଡ଼େ ଜଗିଥିଲି । ତା'ର ଭଲମନ୍ଦ, ସୁବିଧା ଅସୁବିଧା ଆଡ଼େ ପୂର୍ଣ୍ଣ ଦୃଷ୍ଟି ରଖିଥିଲି ।

ଅପ୍ରତ୍ୟାଶିତ ଭାବରେ ଏକ ଘଟଣା ଘଟିଲା ।

ଦିନେ ବହୁତ ରାତିରେ କିଏ ଜଣେ ଆମର କବାଟ ଖଡ଼ଖଡ଼ କରି ଡାକିଲା । ମୁଁ ଜବାବ ଦେଲି । ଉତ୍ତରରେ ଶୁଣିଲି ମାଧବୀ ଭିଲାର ଦୀପକ ବାବୁ ଖୁବ୍ ଅସୁସ୍ଥ । ତାଙ୍କୁ ଟିକିଏ ଯାଇ ଦେଖନ୍ତୁ ।

ମୁଁ କବାଟ ଖୋଲି ଦେଖିଲି, ବାହାରେ କେହି ନାହିଁ ।

କିଏ ତେବେ ଆସିଥିଲା ଏତେ ରାତିରେ ଡାକିବାକୁ ? ସ୍ୱରଟା ତ ନାରୀ କଣ୍ଠର ପରି ମନେହେଲା ।

ଏତେ ରାତିରେ ମାଧବୀ ଭିଲାକୁ ଯିବା ପାଇଁ ମୋର ଖୁବ୍ ଗୋଟାଏ ଆଗ୍ରହ ନଥିଲା । ତା'ଛଡ଼ା ରାତି ଅଧରେ କିଏ ଡାକିଗଲା କେଜାଣି ।

ଫେରି ଆସୁଥିଲି ଦୁଆର ବନ୍ଦ କରି ।

ଦେଖିଲି ରଂଜିତା ଠିଆ ହୋଇଛି ମୋ ପଛରେ ।

ସେ କହିଲା : ଯିବ ନାହିଁ ମା' ?

ମୁଁ ପଚାରିଲି : କେଉଁଠିକି ?

: ମାଧବୀ ଭିଲାକୁ । ଜଣେ ଲୋକ ଅସୁସ୍ଥ । ଟିକିଏ ଦେଖି ଆସିବ ନାହିଁ ।

ରଂଜିତାର ଇଚ୍ଛାରେ ବାଧା ଦେବା ପାଇଁ ମୋର ଇଚ୍ଛା ହେଲା ନାହିଁ । ମୁଁ ବାହାରିଲି, ମୋ ପଛେ ପଛେ ରଂଜିତା ବି ମାଧବୀ ଭିଲାକୁ ଗଲା ।

ଘରେ ବତି ଜଳୁଥିଲା । ସବୁ ଦୁଆରଗୁଡ଼ାକ ଖୋଲା ଥିଲା । କିନ୍ତୁ ଦୀପକର ଚେତା ନଥିଲା । ସେ ଶୋଇଥିଲା ଶେଯ ଉପରେ ।

ମୁଁ ତା' ଦେହରେ ହାତଦେଇ ଦେଖିଲି, ଅସମ୍ଭବ ଜ୍ୱର ।

ହାତ ପୋଡ଼ି ଯାଉଥିଲା ।

ଏତେ ରାତିରେ ଆଉ କିଛି ଉପାୟ ନଥିଲା, ଡାକ୍ତର ମିଳିବେ କେଉଁଠୁ ? ଶେଷରେ ମୁଣ୍ଡରେ ପାଣିପଟି ଲଗାଇବାକୁ ବସିଗଲି ।

ସେ ଦାୟିତ୍ୱ ମୋ ହାତରୁ କାଢ଼ିନେଲା ରଂଜିତା ।

ମୁଁ ଗୋଟାଏ ଚେଆର ଉପରେ ବସି ଢୋଳେଇବାର ଦେଖି ରଂଜିତା କହିଲା : ତୁ ଶୋଇବୁ ଯା ମା', ମୁଁ ତ ଅଛି । ରାତି ପାହିଲେ ଶୀଘ୍ର ଜଣେ ଡାକ୍ତର ପଠାଇ ଦେବୁ ।

ମୁଁ ଦେଖିଲି ପ୍ରାୟ ସକାଳ ହୋଇ ଆସିଲାଣି ।

ଘରେ ତେଣେ ଅନେକ କାମ କରିବାକୁ ହେବ ।

ଆପତ୍ତି କଲି ନାହିଁ । ଚୁପ୍‌ଚାପ୍ ଉଠି ଚାଲି ଆସୁଥିଲି ।

ରଂଜିତା ପଛରୁ ଡାକି କହିଲା : ଗରମ ଦୁଧ କିଛି ଫ୍ଲାସ୍କରେ ଭରି ଦେଇଯିବୁ । ଜ୍ୱର କମି ଆସିଲାଣି । ଏଥର ହୋସ୍ ହେବ ।

ମୁଁ ଚାଲି ଆସିଲି ।

ରଂଜିତା ବସି ରହିଲା ।

ତା'ପରଠାରୁ ରଂଜିତା ନିତି ସକାଳୁ ଉଠି ଯାଏ ଦୀପକ ଘରକୁ । ଫ୍ଲାସ୍କରେ ଚା' ଭରି ନେଇ ଦୀପକକୁ ପିଆଏ । ତା' ସହିତ ଗପ କରେ, ଫେରିଆସେ ଘଣ୍ଟାକ ପରେ ।

କ୍ରମେ ଏଇ ଅଭ୍ୟାସଟା ତା'ର ନିତ୍ୟ ନୈମିତିକ କାର୍ଯ୍ୟ ହୋଇ ଦେଖା ଦେଲା ।

ଡାକ୍ତର କହିଲେ, ରଂଜିତାକୁ ତା'ର କୌଣସି ଇଚ୍ଛାରେ ବାଧା ଦିଅ ନାହିଁ ।

ମୋର ଆଉ କରିବାର କିଛି ନଥିଲା ।

ମୁଁ ଲକ୍ଷ୍ୟ କଲି, ରଂଜିତା ନିତିଦିନ ଦୀପକ ଘରକୁ ଯିବା ଫଳରେ ତା'ର ଆଉ ସାମାନ୍ୟତମ ଜଡ଼ତା ବି ରହିଲା ନାହିଁ । ସେ ଯେ କିଛିଦିନ ପୂର୍ବରୁ ଏପରି ଏକ କଠିନ ରୋଗ ଭୋଗ କରିଥିଲା, ତାକୁ ଦେଖିଲେ ଆଉ ବୁଝିବାର କିଛି ଉପାୟ ନଥିଲା ।

ମୁଁ ଲକ୍ଷ୍ୟ କରି ଦେଖିଲି, ରଂଜିତାର କିନ୍ତୁ ଦୀପକ ପ୍ରତି କ୍ରମଶଃ ଆନ୍ତରିକତା ବଢ଼ିବାରେ ଲାଗିଛି ।

ସେ ଏଣିକି ପ୍ରତିଦିନ ମୋତେ ଦୀପକର ସୁବିଧା ଅସୁବିଧା କଥା କହିବାକୁ ଆରମ୍ଭ କରିଦେଲା ।

ସେ ଖାଇବାକୁ ବଡ଼ ହଇରାଣ ହେଉଛନ୍ତି ।

ତାଙ୍କୁ ଏଠାରେ ଦେଖିବାକୁ କେହି ନାହିଁ ।

ଚା' ଟିକିଏ ବି ଠିକ୍ ସମୟରେ ତାଙ୍କୁ କେହି ଦିଏ ନାହିଁ ।

ଏହିପରି ନାନା କଥା ।

ଆଉଦିନେ ରଂଜିତା ମୋତେ କହିଲା : ଦୀପକ ବାବୁଙ୍କୁ ଆମ ଘରକୁ ଦିନେ ଖାଇବାକୁ ଡାକିଲେ ହୁଅନ୍ତା ନାହିଁ ?

ମୁଁ ଦୀପକକୁ ଖାଇବାକୁ ଡାକିଥିଲି । ଥରେ ନୁହେଁ, ଅନେକ ଥର ।

ତା'ର ଆମ ପରିବାର ସହିତ ଧୀରେ ଧୀରେ ଆତ୍ମୀୟତା ବଢ଼ି ଉଠୁଥିଲା ।

ଡକ୍ଟର ଚନ୍ଦ୍ରଶେଖରଙ୍କୁ ରଂଜିତାର ଏହି ଉନ୍ନତିର ରିପୋର୍ଟ ପ୍ରତି ଦୁଇ ତିନିଦିନ ଅନ୍ତରରେ ଦିଆ ହେଉଥିଲା ।

ସେ ଦିନେ କହିଲେ : ରଂଜିତା ଏବେ ସୁସ୍ଥ ହୋଇ ଉଠିଚି । କିନ୍ତୁ ଗୋଟାଏ କଥା ପ୍ରତି ଆପଣଙ୍କୁ ପୂର୍ଣ୍ଣ ଧ୍ୟାନ ଦେବାକୁ ହେବ । ପୁଣି ସେ ଯେପରି ମନରେ କୌଣସି ଆଘାତ ନ ପାଏ । ସବୁଠାରୁ ଭଲ ହେବ ଆପଣମାନେ ଚେଷ୍ଟା କରି ଯଦି ତା'ର ବିବାହ ଦୀପକ ସହିତ ଦିଆଇ ପାରିବେ ।

ମହା ସମସ୍ୟା ଦେଖାଦେଲା ଆମ ଆଗରେ ।

ଦୀପକକୁ ରଂଜିତା ସହିତ ବିବାହ ପ୍ରସ୍ତାବ ଦେବ କିଏ ? ସେ ବା ଏ ପ୍ରସ୍ତାବରେ ସମ୍ମତ ହେବ କାହିଁକି ? ଅବଶ୍ୟ ଦୀପକ ରଂଜିତାର ଅତୀତ ଇତିହାସ କିଛି ଜାଣି ନାହିଁ । ତଥାପି...

ଆମେ ଟିକିଏ ଚିନ୍ତିତ ହୋଇ ପଡ଼ିଥିଲୁ ।

ଲକ୍ଷ୍ୟ କରୁଥିଲୁ ଦୀପକ ସହିତ ରଂଜିତା ଆନ୍ତରିକତାର କ୍ରମ ପରିଣତିକୁ ।

ଦୀପକ ପିଲା ହିସାବରେ ମନ୍ଦ ନୁହେଁ ।

ରଂଜିତାକୁ ବି ତାକୁ ଭଲ ଲାଗିଛି ।

କିନ୍ତୁ ତା'ହେଲେ ବି ସେ କ'ଣ ଏ ବିବାହରେ ସମ୍ମତ ହେବ ? ତା'ର ବାବାମା' ଅଛନ୍ତି । ଅନ୍ୟାନ୍ୟ ଗୁରୁଜନ ଅଛନ୍ତି । ସେମାନଙ୍କୁ ନ ପଚାରି ସେ କ'ଣ ରଂଜିତାକୁ ଗ୍ରହଣ କରିବା ପାଇଁ ରାଜି ହେବ ?

ତଥାପି ଥରେ ଚେଷ୍ଟା କରି ଦେଖାଯାଉ !

ରଂଜିତାର ମାମୁ, ବାବା, ଆମେ ଦିନେ ସମସ୍ତେ ଏକାଠି ବସି ଉପାୟ ଚିନ୍ତା କଲୁ । ରଂଜିତାର ମାମୁ କହିଲା, ପ୍ରଥମେ ଦୀପକ କାନରେ ପହଞ୍ଚାଇ ଦିଆହେଉ ଯେ, ରଂଜିତାର ବିବାହ ପାଇଁ ଆୟୋଜନ ହେଉଛି । ପାତ୍ର ଠିକ୍ ହୋଇଛି । ସେମାନେ ରଂଜିତାକୁ ଦେଖିବାକୁ ଆସିବେ ।

ଏହି ସଂବାଦ ଶୁଣିସାରି ଦୀପକ ମନରେ କ'ଣ ପ୍ରତିକ୍ରିୟା ହୁଏ, ଆମକୁ ଲକ୍ଷ୍ୟ କରିବାକୁ ହେବ । ସେଇଥିରୁ ତା'ର ମନୋଭାବ ମଧ୍ୟ ଜଣା ପଡ଼ିଯିବ ।

ପ୍ରସ୍ତାବ ଅନୁସାରେ କାର୍ଯ୍ୟ ହେଲା ।

ଦୀପକ କାନରେ ପ୍ରଥମେ ଖବରଟା ମୁଁ ପହଞ୍ଚାଇଲି ।

ଲକ୍ଷ୍ୟ କଲି, ସେ ରଂଜିତାର ବିବାହ ସମ୍ବାଦ ପାଇବା କ୍ଷଣି, ଟିକିଏ କିପରି ବିଷଣ୍ଣ ହୋଇପଡ଼ିଲା । ତା'ପରେ ଜଡ଼ିତ କଣ୍ଠରେ ଉତ୍ତର ଦେଇଥିଲା, ଭଲ କଥା, ଶୁଣି ଖୁସି ହେଲି । ଇତ୍ୟାଦି ଇତ୍ୟାଦି ।

ମୁଁ କିନ୍ତୁ ଦୀପକ ପାଖରେ ଅଳି କରିବା ସ୍ୱରରେ କହିଥିଲି : ଏ ବିବାହ ପ୍ରସ୍ତାବରେ ରଂଜିତା ଖୁସି ନୁହେଁ । ମୁଁ ବି ଏକମତ ନୁହେଁ । ଏକପ୍ରକାର ତା'ର ମାମୁ ବାଧ କରି ଏହା କରିବାକୁ ଯାଉଛି । ତମକୁ ବାବା ରଂଜିତାକୁ ବଂଚେଇବାକୁ ହେବ ।

ପ୍ରଥମେ ସେ ରାଜି ହୋଇ ନଥିଲା ।

ପରେ ରାଜି ହୋଇଥିଲା ରଂଜିତାର ଦାୟିତ୍ୱ ବହନ କରିବା ପାଇଁ । ଅବଶ୍ୟ ମୋ ଅନୁରୋଧରେ । କେବଳ ଏଇଥରର ବିବାହ ପ୍ରସ୍ତାବଟା ଭାଂଗି ଦେବା ପାଇଁ । ପରେ କିନ୍ତୁ ପ୍ରକୃତରେ ସେ ରଂଜିତାକୁ ବିବାହ କରିବାକୁ ସ୍ୱୀକୃତି ଦେବ କି ନାହିଁ, ସେ ପ୍ରଶ୍ନ ସ୍ୱତନ୍ତ୍ର ।

ଦୀପକକୁ ମୋର ସେତିକି ଉପକାର କରିବା ପାଇଁ ମୁଁ ଅନୁରୋଧ କରିଥିଲି । ମୁଁ ଜାଣିଥିଲି, ପରେ ଆଉ ଦୀପକ ରଂଜିତାର ଦାୟିତ୍ୱ ଗ୍ରହଣ କରିବା ପାଇଁ ଅସ୍ୱୀକାର କରିପାରିବ ନାହିଁ ।

ସେ ପର୍ବ ସେଦିନ ଶେଷ ହୋଇଥିଲା ।

ରଂଜିତା ଯେତେବେଳେ ବୁଝିପାରିଲା, ଦୀପକ ସହିତ ତା'ର ବିବାହ ହେବ, ତା'ର

ଗତିବିଧି ଆହୁରି ସ୍ୱଚ୍ଛନ୍ଦ ହୋଇ ଉଠିଲା । ସବୁବେଳେ ଦୀପକକୁ ଦେଖିବା ପାଇଁ ସେ ବ୍ୟଗ୍ର ହୋଇପଡ଼ିଲା ।

ଆମେ ବି ଖୁସି ହେଲୁ । କାରଣ ଏହାଦ୍ୱାରା ଦୀପକ ମନରେ ବି ପରିବର୍ତ୍ତନ ଆସିବ ।

ଆଉ କିଛିଦିନ ପରେ ।

ଆମେ ଦୀପକର ମନ ବୁଝିବା ପାଇଁ, ବିବାହ ଦିନ ଧାର୍ଯ୍ୟ କରିବା ବାହାନାରେ ଦୀପକର ମତ ଲୋଡ଼ିଲୁ ।

ସେ ତ ପ୍ରଥମେ ମୋ କଥାରେ ରାଜି ହେଲା ନାହିଁ ।

ରଂଜିତାକୁ ସେ ଭଲପାଏ କି ନାହିଁ, ସେ ଏକ ସ୍ୱତନ୍ତ୍ର କଥା ।

କିନ୍ତୁ ରଂଜିତା ସହିତ ଏତେ ଶୀଘ୍ର ବିବାହ ଦିନ ଧାର୍ଯ୍ୟ କରିବାକୁ ସେ ରାଜି ନୁହେଁ ।

ମୁଁ ବୁଝିପାରିଥିଲି, ଦୀପକର ସେଇଟା ଅନ୍ତରର କଥା ନୁହେଁ ।

ଦୀପକ ମନ ପ୍ରାଣରେ ରଂଜିତାକୁ ଚାହେ ।

ମୁଁ ସେଦିନ ଫେରିଆସିଲା ବେଳେ କହି ଆସିଥିଲି, ରଂଜିତାର ମାମୁ ଆସିଛି । ଆଜି ସେ ବିବାହ ଦିନ ଧାର୍ଯ୍ୟ କରିବାକୁ ଚାହେ । ତମେ ରଂଜିତା ମୁହଁକୁ ଚାହିଁ ଆଉଥରେ ବିଚାର କରି ଦେଖିବ । ଚାରିଟା ବେଳ ଯାଏ ସମୟ ଅଛି ।

ମୁଁ ଚାଲି ଆସିଥିଲି ।

ଦୀପକ କିନ୍ତୁ ଆସିଥିଲା ଚାରିଟା ବାଜିବା ପୂର୍ବରୁ ।

କଥା ଦେଇଥିଲା ରଂଜିତାର ମାମୁକୁ ।

ଆଗାମୀ ୨୭ ତାରିଖକୁ ବିବାହର ଦିନ ଧାର୍ଯ୍ୟ କରାହୋଇଥିଲା ।

ମୁଁ ଲକ୍ଷ୍ୟ କରିଥିଲି ରଂଜିତା ଆଉ ଦୀପକ, ଦୁହିଁଙ୍କ ମୁହଁରେ ହସ ଫୁଟିଛି ।

ଆମେ ସମସ୍ତେ ଖୁସି ହୋଇଥିଲୁ ।

ରଂଜିତା ସେଦିନ ରାତିରେ, ଆମେ ସମସ୍ତେ ଶୋଇପଡ଼ିବା ପରେ ବିଛଣାରୁ ଉଠିଥିଲା । ସେ ଭାବିଥିଲା ମୁଁ ଶୋଇ ଯାଇଛି । କିନ୍ତୁ ଶୋଇ ଶୋଇ ମୁଁ ଲକ୍ଷ୍ୟ କରୁଥିଲି ।

ଆଲମାରୀରୁ ଲୁଗା କାଢ଼ି ସେ ପିନ୍ଧିଥିଲା ।

ମୁଣ୍ଡ କୁଣ୍ଡାଇ ମୁହଁରେ ପାଉଡ଼ର ଲଗାଇଥିଲା । ରହି ରହି ଚାହୁଁଥିଲା ମୋ ଆଡ଼କୁ । କାଳେ ମୋର ନିଦ୍ରାଭଙ୍ଗ ହେବ କି !

ମୁଁ ବୁଝିପାରିଥିଲି । ରଂଜିତାର ପଛେ ପଛେ ମୁଁ ଉଠିଯାଇଥିଲି ।

କିନ୍ତୁ ଫେରିଆସିଥିଲି ଘରକୁ ।

ରଂଜିତା ଦୀପକ ପାଖକୁ ଯାଉଛି । ଯାଉ । ଆଉ କେଇଟା ଦିନ ପରେ ସେମାନଙ୍କର ବିବାହ ହେବ । ଘରସଂସାର କରିବେ ସେମାନେ ।

ମୁଁ ପ୍ରଶାନ୍ତ ମନରେ ଫେରିଆସି ବିଛଣାରେ ଛଟପଟ ହୋଇଥିଲି ଅନେକ ବେଳ ଯାଏ । କୌଣସି ପ୍ରକାର ଅମଙ୍ଗଳ ଚିନ୍ତା ସେତେବେଳେ ମୋ ମନରେ ଉଦୟ ହୋଇ ନଥିଲା ।

କେତେବେଳେ ମୁଁ ଶୋଇ ପଡ଼ିଥିଲି ।

ହଠାତ୍ କାହାର ଚିତ୍କାର ଶୁଣି ମୋର ନିଦ୍ରାଭଙ୍ଗ ହୋଇଥିଲା ।

ମୁଁ ଉଠିପଡ଼ିଥିଲି ବିଛଣାରୁ ।

ରଂଜୁର ମାମୁ ବିକଳ ହୋଇ କାନ୍ଦୁଛି ।

ଘଟଣା କ'ଣ ?

ତା'ପରର ଘଟଣା ବାବା ମୁଁ କିଛି ଜାଣି ନାହିଁ । ରଂଜୁର ଆତ୍ମହତ୍ୟା ଖବର ଶୁଣି ମୁଁ ବେହୋସ୍ ହୋଇ ପଡ଼ିଥିଲି ।

ରଂଜୁକୁ ସେଦିନ ରାତିରେ ମୁଁ ଶେଷଥର ପାଇଁ ଦେଖିଥିଲି । ଦେଖିଥିଲି ତାକୁ ନୂତନ ସାଜରେ, ନୂତନ ବେଶରେ । କିନ୍ତୁ ବଧୂ ବେଶରେ ତାକୁ ଦେଖିପାରିଲି ନାହିଁ । ମୋ ଇଚ୍ଛା ସଫଳ ହେଲା ନାହିଁ ବାବା । ମୁଁ ହାରିଗଲି । ରଂଜୁ ମୋତେ ହରେଇ ଦେଲା ।

ରଂଜିତାର ମା' ନୀରବ ହେଲେ ।

ସମରେନ୍ଦ୍ର ବାବୁ କହିଲେ : ଏଥର ଆପଣମାନଙ୍କର ବିଚାର କରିବାର କଥା । ରଂଜିତା ଆତ୍ମହତ୍ୟା କଲା କିମ୍ବା ତାକୁ ହତ୍ୟା କରାହେଲା, ସେ କଥା ଆପଣ ବୁଝିବେ । ଆମର ଏ କ୍ଷେତ୍ରରେ କରଣୀୟ କିଛି ନାହିଁ । କିନ୍ତୁ ରଂଜୁର ହତ୍ୟାକାରୀକୁ ଶାସ୍ତି ପାଇବାର ଦେଖିଲେ, ଆମେ ବି ଖୁସି ହେବୁ ।

ସତ୍ୟବ୍ରତ ନୀରବରେ ବସି ସବୁ ଶୁଣୁଥିଲା ।

ଉଠି ଠିଆହୋଇ କହିଲା : ଏ କୋଠାରେ ଆଉ କେତୋଟି ପରିବାର ଅଛନ୍ତି ?

: ଆମକୁ ଛାଡ଼ିଦେଲେ ଆଉ ଚାରୋଟି । ସେମାନେ ଦୋତାଲାରେ ରୁହନ୍ତି । ଆମ ସହିତ ସେମାନଙ୍କର କିଛି ସଂପର୍କ ନାହିଁ ।

: ସେମାନେ କ'ଣ କରନ୍ତି ?

: ଚଳନ୍ତି କୌଣସି ପ୍ରକାର । କାହାର ଦୋକାନ ଅଛି, କିଏ ଚାକିରି କରେ । ଆପଣ ଯଦି ଇଚ୍ଛା କରନ୍ତି ଉପରକୁ ଗଲେ ସମସ୍ତଙ୍କ ସହିତ ଦେଖାହେବ ।

ସତ୍ୟବ୍ରତ ହାତଯୋଡ଼ି ନମସ୍କାର ଜଣାଇ ବାହାରି ଆସିଲା ।

ଉପର ବାରଣ୍ଡାରେ ଅନେକ ଭିଡ଼ । ସତ୍ୟବ୍ରତ ଆଖି ସହିତ ଆଖି ମିଶିବାକ୍ଷଣି ଅନେକ ପଳେଇଲେ ନିଜ ନିଜ ଘର ଭିତରକୁ । କେଇଜଣ ଠିଆ ହୋଇ ରହିଲେ ଆମ ଆଡ଼କୁ ଚାହିଁ । ସତ୍ୟବ୍ରତ ଶିଡ଼ି ଦେଇ ଉପରକୁ ଉଠିଲା ।

ଆମେ ଦୋ'ତାଲାରେ ପହଞ୍ଚୁ ପହଞ୍ଚୁ ଆଉ ଜଣେ ଦି'ଜଣ ଖସି ଯାଇଥିଲେ ଦଳରୁ । ମୋଟ୍‌ରେ ତିନିଜଣ ଠିଆ ହୋଇଥିଲେ ଆମ ପ୍ରତୀକ୍ଷାରେ । ସତ୍ୟବ୍ରତ କହିଲା : ଆମେ ଥାନାରୁ ଆସିଛୁ, 'ମାଧବୀ ଭିଲା'ର ହତ୍ୟା ରହସ୍ୟ ସଂପର୍କରେ ତଦନ୍ତ କରିବା ପାଇଁ । ଆଶା କରୁଛୁ ଆପଣ ଆମକୁ ସାହାଯ୍ୟ ସହଯୋଗ କରିବେ ।

: ନିଶ୍ଚୟ ନିଶ୍ଚୟ, କହି ଜଣେ ଏକୋଇଶ ବାଇଶ ବର୍ଷର ଯୁବକ ଆଗେଇ ଆସିଲା । ସେ ଆଉ ଜଣକୁ ଉଦ୍ଦେଶ୍ୟ କରି କହିଲା, ଚେଆର ଦି'ଖଣ୍ଡ ଆଣିବା ପାଇଁ ।

ସତ୍ୟବ୍ରତ ବାରଣ କଲା : ଦରକାର ନାହିଁ । ଆପଣଙ୍କ ନାଁ ?

: ମନୋରଞ୍ଜନ ଭୌମିକ ।

: କ'ଣ କରନ୍ତି ?

: ଚାକିରି ସଂଧାନରେ ଅଛି, ତେବେ ଆମର ଲୁଗା ଦୋକାନ ଅଛି ଷ୍ଟେସନ ପାଖରେ ।

: ଏଇ ମାଧବୀ ଭିଲା ହତ୍ୟା ସମ୍ବନ୍ଧରେ ଆପଣ କିଛି କହିପାରିବେ ?

ମୁଁ ଲକ୍ଷ୍ୟ କରୁଥିଲି, ଜଣେ ଜଣେ କରି ଆଉ କେତୋଟି ଲୋକ ଆସି ଠିଆ ହୋଇଥିଲେ ଆମ ଚାରିପାଖରେ । ଜଣେ ଦି'ଜଣ ସ୍ତ୍ରୀ ଲୋକ ମଧ୍ୟ ଉହାଡ଼ିଆରୁ ଉଙ୍କିମାରି ଦେଖୁଥିଲେ ଆମକୁ ।

ମନୋରଞ୍ଜନ ସତ୍ୟବ୍ରତର ଉତ୍ତରରେ କହିଲା : ମୁଁ ଜାଣିଥିଲି ଇମିତି ଗୋଟାଏ କିଛି ଘଟିବ ମାଧବୀ ଭିଲାରେ ।

: ଆପଣ କ'ଣ ଜାଣିଥିଲେ ?

: ଆଉ ଜଣେ ବୟସ୍କ ଲୋକ ଆସି ମନୋରଂଜନକୁ ଦୂରକୁ ଠେଲିଦେଇ କହିଲା : ସେ କ'ଣ ଜାଣିଛି ଆଜ୍ଞା । କାଲିର ପିଲାଟା । ମୋ ଆଗରେ ଲଙ୍ଗଳା ହୋଇ ଡେଉଁଥିଲା । ସେସବୁ ଏ ଜଟିଳ ପରିସ୍ଥିତି ସମ୍ବନ୍ଧରେ କାହୁଁ ଜାଣିବ ?

: ଆପଣଙ୍କ ନାଁ ?

: ମୋ ନା ତରୁଣକାନ୍ତି ହାଲ୍‌ଦାର । ମୁଁ ଇଣ୍ଡିଆ ନେଭିଗେସନ କମ୍ପାନୀରେ ଚାକିରି କରେ ଆଜ୍ଞା ।

: ଆପଣ 'ମାଧବୀ ଭିଲା'ର ଏଇ ହତ୍ୟାକାଣ୍ଡ ସମ୍ବନ୍ଧରେ କିଛି କହିପାରିବେ ?

: ସବୁ କହିପାରିବି ଆଜ୍ଞା । ଆପଣ ଯଦି ମୋତେ ଖାଲି ଟିକିଏ ଚାନ୍‌ସ ଦିଅନ୍ତି ମୁଁ ସବୁ କହିପାରିବି । ନିଜ ଆଖିରେ ଦେଖା କଥା ଆଜ୍ଞା । ମୋତେ ନ ପଚାରିଲେ ମୁଁ କାହିଁକି ବଳେବଳେ ଯାଇ କହିବୁଲିବି ।

: ନିଶ୍ଚୟ ନିଶ୍ଚୟ ! ଇତିପୂର୍ବରୁ ଯେଉଁ ପୋଲିସ୍ ଅଫିସର ଆସିଥିଲେ, ସେ ଆପଣଙ୍କୁ ଚାନ୍‌ସ ଦେଇନାହାନ୍ତି ?

: ନା ଆଜ୍ଞା । ସେ ମୋଟେ ଆସିନାହାନ୍ତି ଆମ ପାଖକୁ ।

: ହୁଁ, ଖୁବ୍ ଅନ୍ୟାୟ କରିଛନ୍ତି । ଏଥର ଆପଣଙ୍କ ପ୍ରତ୍ୟକ୍ଷ ଅନୁଭୂତିର କଥା କହନ୍ତୁ ମିଷ୍ଟର ହାଲ୍‌ଦାର ।

: ଆଜ୍ଞା ହାଟ ମଝିରେ ବ୍ରହ୍ମଜ୍ଞାନ ! ସେଦିନ ଠାରୁ ମୁଁ କେବଳ ଗବେଷଣା କରିଚାଲିଛି । ଏଇଟା ହତ୍ୟା ନା ଆତ୍ମହତ୍ୟା !! ଆପଣ ଆସନ୍ତୁ ମୋ ରୁମ୍‌କୁ । ସମସ୍ତ ପ୍ରମାଣ ସହ ମୁଁ ବୁଝାଇ ଦେବି ଏଇଟା ଆତ୍ମହତ୍ୟା ହୋଇ ନ ପାରେ । ଏକ ନିଶ୍ଚିନ୍ତ ହତ୍ୟାକାଣ୍ଡ ।

ସତ୍ୟବ୍ରତ କ'ଣ କହିଥାଆନ୍ତା କେଜାଣି, ଜଣେ ବୃଦ୍ଧ ଆସି ନମସ୍କାର କରି ଆମ ଆଗରେ ଠିଆ ହେଲେ । ମୁଣ୍ଡର ବାଳ ସବୁ ଶୁଭ୍ର । ଚେହେରାଟି ସୁନ୍ଦର । ସମ୍ଭ୍ରାନ୍ତର ଛାପ ପରିସ୍ଫୁଟ । ପଚାରିଲେ : ଆପଣମାନେ ପୋଲିସ୍ ଡିପାର୍ଟମେଣ୍ଟର ଲୋକ ?

ସତ୍ୟବ୍ରତ ସମ୍ମତି ଜଣାଇଲା ।

: ଆସନ୍ତୁ ।

ଆମେ ତାଙ୍କ ପଛେ ପଛେ ଆଗେଇ ଗଲୁ । ଅନ୍ୟମାନେ ବି ଆମ ପଛରେ ଚାଲିଥିଲେ । ଭଦ୍ରଲୋକ କିଛି ଦୂର ଯାଇ ଗୋଟିଏ ଘର ଖୋଲି ଭିତରେ ପଶିଲେ ।

ଘରଟି ପରିପାଟି ବିହୀନ । ଗୋଟିଏ ପୁରୁଣା ଟେବୁଲ୍ । ତିନି ଚାରୋଟି ବିଭିନ୍ନ ଧରଣର ଚେଆର । ଗୋଟିଏ ଲମ୍ବା ବେଞ୍ଚ୍ ।

ଆମେ ବସିଲୁ ଚେଆର ଉପରେ ।

ଅନ୍ୟମାନେ ଆସି ଠିଆ ହୋଇଥିଲେ ଆମଠାରୁ ଖଣ୍ଡେଦୂର ଛାଡ଼ି ।

ଭଦ୍ରଲୋକ କହିଲେ : ମୋ ନାଁ ଶଙ୍କର ଦାସ ଅଧିକାରୀ । ମୁଁ ଜଣେ ରିଟାଏର୍ଡ୍ ହେଡ୍‌ମାଷ୍ଟର ।

ସତ୍ୟବ୍ରତ କହିଲା : ଜାଣି ଖୁସି ହେଲୁ । କିନ୍ତୁ ଆମ ଉଦ୍ଦେଶ୍ୟ ସମ୍ବନ୍ଧରେ ଆପଣ ବୋଧହୁଏ ଅବଗତ ଥିବେ ।

: ଅବଶ୍ୟ । କିନ୍ତୁ ଏ କ୍ଷେତ୍ରରେ ମୁଁ ଆପଣମାନଙ୍କୁ ଉପଦେଶ ଦେବି ଫେରିଯିବା ପାଇଁ ।

: ମାନେ ?

ଶଙ୍କର ଦାସ ଅଧିକାରୀ ଟିକିଏ ଗଳା ସଫା କରି କହିଲେ, ଆପଣ ହେଲେ ଏ ଯୁଗର ଲୋକ, ଆମେ ହେଲୁ ସେ ଯୁଗର ଲୋକ । ଯଦି ପୂର୍ବ ପଶ୍ଚିମ ପରି ଆପଣ ଆଉ ଆମ ଭିତରେ ମତର ଦୂରତ୍ୱ, ତଥାପି ଅନେକ କ୍ଷେତ୍ରରେ ମେଳ ଅଛି । ଏ ମେଳ କେହି ଭାଂଗି ପାରିବେ ନାହିଁ । ଏହା ନିଶ୍ଚିତ ।

: କିନ୍ତୁ ସାର୍...

ସତ୍ୟବ୍ରତ ବୋଧହୁଏ ଚଞ୍ଚଳ ହୋଇ ଉଠିଥିଲା ।

: ହଁ ମୁଁ କହୁଛି ସେଇ କଥା । ବାବା ତରୁଣକାନ୍ତି ତରୁଣ ହେଲେ ବି ତାଙ୍କର ଯେମିତି କାନ୍ତି ନାହିଁ, ସେମିତି ତାଙ୍କ ଗବେଷଣାର ଖାତା ମୋ ହାତକୁ ଆସିଲେ ମୁଁ ଜିରୋ ଛଡ଼ା ଆଉ କିଛି ଦେବି ନାହିଁ ।

: ନା ସାର୍, ଆପଣ ବିଶ୍ୱାସ କରନ୍ତୁ । ତରୁଣକାନ୍ତି ଭିଡ଼ ଭିତରୁ ବାହାରି ଆସି କହିଲା, ମୁଁ କୋନାନ ଡଏଲ ପଢ଼ିଛି, ଏଡ଼ଗାର ଏଲେନ ପୋ ପଢ଼ିଛି । ମୁଁ ଷ୍ଟନ୍‌ଲି ଗାର୍ଡ଼ନର ପଢ଼ିଛି, ସମସ୍ତଙ୍କର କିନ୍ତୁ ଗୋଟାଏ ମତ ସାର୍ । ହତ୍ୟା କିମ୍ବା ଆତ୍ମହତ୍ୟାର ତଥ୍ୟ ଆବିଷ୍କାର କରିବାକୁ ହେଲେ ପ୍ରତ୍ୟକ୍ଷଦର୍ଶୀ ପରି...

: ଧେତ୍‌ତେରି ଏଲେନ୍ ପୋ, ଗାର୍ଡ଼ନର । ଗବେଷଣା ସେପରି ହୁଏ ନାହିଁ ବାପଧନ । କଲେଜରେ ଦି ବର୍ଷ ପଢ଼ିଆସି ଅପରାଧ ତତ୍ତ୍ୱ ସମ୍ବନ୍ଧରେ ଗବେଷଣା ! ଧେତ୍, ଯା ଯା, ଖାଇପିଇ ଶୋଇବୁ ଯା । ହଁ, ମୁଁ କ'ଣ କହୁଥିଲିଟି, ଆପଣମାନେ ଫେରିଯାଆନ୍ତୁ ।

: କେଉଁଠାକୁ ?

: ନିଜ ନିଜର କର୍ମସ୍ଥଳୀକୁ । କାରଣ ଏହି 'ମାଧବୀ ଭିଲା'ର ହତ୍ୟା ରହସ୍ୟ ଉଦ୍‌ଘାଟନ କରିବାର ଶକ୍ତି କୌଣସି ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ ।

: କାହିଁକି ? ସତ୍ୟବ୍ରତ ପଚାରିଲା ।

ଶଙ୍କର ଦାସ କହିଲେ : ଏଇ ଘଟଣାଟା ମୋତେ ହତ୍ୟାକାଣ୍ଡ ନୁହେଁ ଆଉ ଯଦି ହୋଇଥାଏ ତାହା ଅଲୌକିକ ହତ୍ୟା ।

: ସେଇଟା ପୁଣି କି ଧରଣର ହତ୍ୟା ? ସତ୍ୟବ୍ରତ ପଚାରିଲା ।

: ଆପଣ ସେ ହତ୍ୟା କଥା ବୁଝିପାରିବେ ନାହିଁ । ଆପଣ ସ୍ପିରିଟ୍ ବିଶ୍ୱାସ କରନ୍ତି ?

ସତ୍ୟବ୍ରତ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

: ସେଇ ସ୍ପିରିଟ୍ । ଗୋଟାଏ ଦୁର୍ଦ୍ଦାନ୍ତ ସ୍ପିରିଟ୍ ଅଛି ସେଇ ମାଧବୀ ଭିଲାରେ । ସେ ଯଦି ତା' ହାବୁଡ଼ରେ ପଡ଼ିଥାଏ, ତେବେ ସେଇ...

ସତ୍ୟବ୍ରତ ମୃଦୁ ହସି କହିଲା : ଆପଣ ଭୁଲ୍ କହୁଛନ୍ତି ସାର୍ । ପୋଷ୍ଟମର୍ଟମ ରିପୋର୍ଟରୁ କିନ୍ତୁ ରଂଜିତା ଗଳାରେ କେତୋଟି ଅଙ୍ଗୁଳିର ଚିହ୍ନ ମିଳିଛି ଏବଂ ତାକୁ ଶ୍ୱାସରୁଦ୍ଧ କରାହୋଇ ହତ୍ୟା କରାହୋଇଛି । ତା'ଛଡ଼ା ସ୍ପିରିଟ୍ କେବେ ଜଣକୁ ହତ୍ୟା କରି, ଦଉଡ଼ିରେ ବାନ୍ଧି ବଉଳ ଗଛରେ ଟଙ୍ଗାଇ ପାରିବ ନାହିଁ ।

: ସେଇଥିପାଇଁ ମୁଁ କହୁଥିଲି ଆମେ ପ୍ରାଚୀନ ପନ୍ଥି, ଆପଣ ନବୀନ ପନ୍ଥି । ମତ ପାର୍ଥକ୍ୟ ହେବ ହିଁ । କିନ୍ତୁ ଆପଣ ଶୁଣିବେ ଗୋଟିଏ ସ୍ପିରିଟ୍‌ର କାହାଣୀ ? ନିଜ ଆଖିରେ ମୁଁ ଦେଖିଛି । ଖୁବ୍ ବେଶି ଦିନର କଥା ନୁହେଁ ।

ସତ୍ୟବ୍ରତ କିନ୍ତୁ ଉଠି ଠିଆ ହୋଇପଡ଼ି କହିଲା : ଆଉ ଦିନେ ଆସି ଶୁଣିବି ସାର୍ । ଆଜି ମୋ ହାତରେ ଅନେକ କାମ ।

: ବୁଝିଲି । ମୋ କଥା ବିଶ୍ୱାସ କରିବାକୁ ଆପଣ ଚାହୁ ନାହାନ୍ତି । କିନ୍ତୁ ଶେଷ ପର୍ଯ୍ୟନ୍ତ ମୋରି ବାଣୀ ଅକାଟ୍ୟ ପ୍ରମାଣିତ ହେବ । ଦେଖିବେ ।

ସତ୍ୟବ୍ରତ ପଛେ ପଛେ ଶିଡ଼ିରେ ମୁଁ ତଳକୁ ଓହ୍ଲାଇ ଯାଉଥିଲି ।

ଉପରର ଅଧିବାସୀ ସମସ୍ତେ ଉପରେ ରହିଯାଇଥିଲେ ।

ଆମେ ଗୋଟାଏ ରିକ୍ସାରେ ଉଠି ବସିବାକୁ ଯାଉଛୁ, ପଛରୁ ଶୁଣିପାରିଲୁ- ସାର୍ !

ତରୁଣକାନ୍ତି ହାଲ୍‌ଦାର ଧାଇଁ ଆସି ରିକ୍ସା ଆଗରେ ଠିଆ ହେଲା ।

: ମୋତେ ଥରେ ଚାନ୍‌ସ ଦିଅନ୍ତୁ ସାର୍ ।

ସତ୍ୟବ୍ରତ ହସି ହସି କହିଲା : ଆପଣଙ୍କ ଗବେଷଣାର ଫଳ ଜାଣିବା ପାଇଁ ବର୍ତ୍ତମାନ ଆମ ହାତରେ ସମୟ ନାହିଁ । ତେବେ ଦିନେ ଦୁଇଦିନ ପରେ ଆମେ ପୁଣି ଆସିବୁ । ସେତିକିବେଳେ ଆପଣଙ୍କୁ ଆମର ଖୁବ୍ ପ୍ରୟୋଜନ ହେବ ।

: ମୋତେ କିନ୍ତୁ ଥରେ ଚାନ୍‌ସ ଦେବେ ସାର୍ ।

: ନିଶ୍ଚୟ ।

ସତ୍ୟବ୍ରତ ରିକ୍ସାଚାଳକକୁ ଥାନାକୁ ଯିବା ପାଇଁ ନିର୍ଦ୍ଦେଶ ଦେଲା ।

ଆମେ ଥାନାରେ ପହଞ୍ଚିଲା ବେଳକୁ ପରେଶ ଚକ୍ରବର୍ତ୍ତୀ ଆମ ପାଇଁ ଅପେକ୍ଷା କରି ବସିଥିଲେ । ତାଙ୍କର ପ୍ରଥମ ପ୍ରଶ୍ନ ହେଲା : କିଛି ଶୁଭ ସଂବାଦ ?

: ସପକ୍ଷରେ ନା ବିପକ୍ଷରେ ? ସତ୍ୟବ୍ରତ ହସି ହସି ପଚାରିଲା ।

: ଅବଶ୍ୟ, ସେ ଗୋଟାଏ ପଏଣ୍ଟ୍ । ଛାଡ଼ନ୍ତୁ । ସେ କଥା ପରେ ହେଲେ ଚଳିବ । ଜୀବନଯାକ ତ ଜଞ୍ଜାଳ ଘାଣ୍ଟିବାକୁ ହେବ । କେବେ ତ ପରିଷ୍କାର ହୋଇ ଗଙ୍ଗାଜଳ ଛିଞ୍ଚି, ପବିତ୍ର ହୋଇ ବସିରହିବାର ଉପାୟ ନାହିଁ ।

: ବର୍ତ୍ତମାନ କ'ଣ କରିବା ? ସତ୍ୟବ୍ରତ ପଚାରିଲା ।

: ପ୍ରଥମେ ଭୋଜନ ।

: ତା'ପରେ ?

: ଶୟନ । ପରେଶ ବାବୁ ସହଜ ସ୍ୱରରେ କହିଲେ ।

: କିନ୍ତୁ ଆପଣଙ୍କ ସହିତ କିଛି ଡିସ୍‌କସନ ଥିଲା ଯେ !

: ନା, ଆଜି ଆଉ କିଛି ନାହିଁ । ଉଠନ୍ତୁ । ରାତି ଅନେକ ହେଲାଣି ।

ଆମେ ଆଉ ଆପତ୍ତି କଲୁ ନାହିଁ । ଭୋକ ବି ହେଉଥିଲା ଖୁବ୍ ।

ପରେଶ ଚକ୍ରବର୍ତ୍ତୀଙ୍କ ସ୍ତ୍ରୀ ନିଜ ହାତରେ ରୋଷେଇ କରିଥିଲେ । ପ୍ରକାର ଅନେକ ହୋଇଥିଲା । ଆମ ଓଡ଼ିଆ ଘର ପରି ବଙ୍ଗାଳୀମାନେ ବି ଅତି ଅତିଥି ପରାୟଣ । ସେଇଥିପାଇଁ ବୋଧହୁଏ ଭାତ ଥାଳି ଚାରିପାଖରେ ଦଶ ଦଶଟା ବାଟି ଥୁଆ ହୋଇଥିଲା ।

ସତ୍ୟବ୍ରତ ଯେଉଁଟା ମୁହଁରେ ଦେଉଥାଏ, ତା'ର ପ୍ରଶଂସା କରୁଥାଏ ।

ଶେଷରେ କହିଲା : ବାସ୍ତବିକ୍ ବୌଦିଙ୍କର ହାତ ଯଦି ଆମ ଭାରତୀୟ ମହିଳାମାନେ ସମସ୍ତେ ପାଆନ୍ତେ...

ବୌଦି କହିଲେ : ପ୍ରଶଂସା ଥାଉ ତ ବାବୁ ! ତମେ ସବୁ ଦିନରାତି ଚବିଶ ଘଣ୍ଟା ଯଦି ଏଇ କାମ କର, ତା'ହେଲେ ତମ ହାତର ବି ବହୁ ପ୍ରଶଂସକ ଯୁଟିବେ ।

ଖାଇବା ଶେଷ କରି ଆମେ ଉଠିଲା ବେଳକୁ ଦଶଟା ବାଜୁଥିଲା ।

ପରେଶ ବାବୁ ଖାଇସାରି ଅଧଘଣ୍ଟା ବିଶ୍ରାମ ନ କରିବା ଯାଏ କୁଆଡ଼େ ବାହାରି ପାରନ୍ତି ନାହିଁ । ଏଇ ଗୋଟିଏ ବଦଗୁଣ ତାଙ୍କର ଅଛି ବୋଲି ସେ କହିଲେ ।

ଜଣେ କନେଷ୍ଟବଳ ସହିତ ସେ ଆମକୁ ପେପର ମିଲ୍‌ସର ଗେଷ୍ଟ ହାଉସ୍‌କୁ ପଠାଇ ଦେଲେ ।

ସେଠାରୁ ଖୁବ୍ ବେଶି ଦୂର ନୁହେଁ । ଚାଲିକରି ଗଲେ ପାଞ୍ଚମିନିଟ୍‌ର ବାଟ ।

ଦରବାନ୍ ଥିଲା ।

କେଆର୍ ଟେକର୍ ବାବୁ ଘରକୁ ଚାଲିଯାଇଥିବାରୁ ଟିକିଏ ଅସୁବିଧା ହେଲା । ତେବେ ଦଶ ମିନିଟ୍ ଭିତରେ ଆମେ ଗୋଟିଏ ସୁନ୍ଦର ସୁସଜ୍ଜିତ କକ୍ଷ ଭିତରେ ପ୍ରବେଶ କଲୁ । ଦରବାନ୍ ଆମର ସବୁ ବନ୍ଦୋବସ୍ତ କରିଦେଲା ।

ତା'ପରେ ଆଉ କିଛି କଥା ନାହିଁ ।

ମୁଁ ଅବଶ୍ୟ ସତ୍ୟବ୍ରତକୁ ଗୋଟାଏ ଦୁଇଟା ପ୍ରଶ୍ନ ପଚାରିଥିଲି । ସେ କିନ୍ତୁ ମୋ ପ୍ରଶ୍ନର କୌଣସି ଉତ୍ତର ଦେଇ ନଥିଲା । ଏପରି ଭାବ ଦେଖାଇଥିଲା, ଯେପରି ତା' ଆଖିରେ ଆଖିଏ ନିଦ ।

ନରମ ଗଦିର ସ୍ପର୍ଶରେ, କିଛିସମୟ ପରେ ମୋର ଆଖି ବୁଜିହୋଇ ଆସିଥିଲା ।

ଆରଦିନ ପ୍ରତ୍ୟୁଷରୁ, ଯେତେବେଳେ ଆଖିରୁ ତନ୍ଦ୍ରା ଘୁଞ୍ଚି ଘୁଞ୍ଚି ଆସୁଥିଲା, ମୁଁ ଗୀତଗୋବିନ୍ଦର ଆବୃତ୍ତି କାହା କଣ୍ଠରୁ ଶୁଣିବାକୁ ପାଇଲି । ଆଖି ମେଲି ଚାହିଁଲି । ଘରେ ନୁହେଁ, ବାହାରୁ ଗୁଣୁଗୁଣୁ କଣ୍ଠସ୍ୱର ଭାସି ଆସୁଛି ।

କିନ୍ତୁ ସତ୍ୟବ୍ରତ ? ସେ ଯେ ବିଛଣାରେ ନାହିଁ ।

ମୁଁ ବାହାରକୁ ଉଠିଗଲି ।

ଗୀତଗୋବିନ୍ଦର ଶ୍ଳୋକଗୁଡ଼ିକ ମୋ କାନରେ ଆହୁରି ସ୍ପଷ୍ଟ ହୋଇ ପ୍ରବେଶ କରିବାରେ ଲାଗିଲା ।

ମୁଁ ଦେଖିଲି, ଲନ୍‌ରେ, ଫୁଲଗଛ ଗୁଡ଼ିକରେ ଜଣେ ବୃଦ୍ଧ ପାଣି ଢାଳୁ ଢାଳୁ ଗୀତଗୋବିନ୍ଦ ଆବୃତ୍ତି କରୁଛନ୍ତି । ଆଉ ଜୟଦେବଙ୍କ ପଛରେ ଶ୍ରୀକୃଷ୍ଣ ଘୂରି ବୁଲୁଥିବା ପରି, ସତ୍ୟବ୍ରତ ସେହି ବୃଦ୍ଧଟି ପଛେପଛେ ବୁଲି ବୁଲି ବୋଧହୁଏ ଆବୃତ୍ତି ଗୁଡ଼ିକ ଶୁଣିବାରେ ଲାଗିଛି ।

ମୋ ଉପରେ ଦୃଷ୍ଟି ପଡ଼ିବାକ୍ଷଣି ସେ ଗୋଟାଏ ଜାଗାରେ ଠିଆ ହୋଇଗଲା ।

ମୁଁ ତା' ପାଖରେ ପହଞ୍ଚିବାକ୍ଷଣି କହିଲା : ବୃଦ୍ଧଙ୍କର କଣ୍ଠଟି ଭାରି ସୁନ୍ଦର, ନାରେ ?

ମୁଁ କହିଲି : କଣ୍ଠ ତ ସୁନ୍ଦର । କିନ୍ତୁ ଶ୍ଳୋକର ଉଚ୍ଚାରଣ ଗୁଡ଼ିକ ଖୁବ୍ ସ୍ପଷ୍ଟ । କିଏ ଏହି ବୃଦ୍ଧ ?

ସତ୍ୟବ୍ରତ କହିଲା : ଗେଷ୍ଟହାଉସ୍‌ର କେହି କର୍ମଚାରୀ ହୋଇଥିବେ ।

ଗୁଣୁଗୁଣୁ କଣ୍ଠରେ ବୃଦ୍ଧ ଆଗେଇ ଆସି ଆମକୁ ନମସ୍କାର କରି କହିଲେ : କାଲି ଆପଣମାନଙ୍କର କିଛି ଅସୁବିଧା ହୋଇନାହିଁ ତ ? ମୁଁ ଟିକିଏ ସଅଳ ଘରକୁ ଚାଲିଯାଇଥିଲି ।

ଆମେ ପ୍ରତିନମସ୍କାର କଲୁ । ସତ୍ୟବ୍ରତ ବିନୀତ କଣ୍ଠରେ କହିଲା : ନା ଆଜ୍ଞା, ଆମେ କାଲି ଖୁବ୍ ଆରାମରେ ରାତି କଟାଇଛୁ । ଆପଣ ବୋଧହୁଏ...

: ହଁ ବାବା । ମୁଁ ଏହି ଗେଷ୍ଟହାଉସ୍‌ର କେଆର୍ ଟେକର୍ ।

ବୃଦ୍ଧଙ୍କର ପାଚିଲା କେଶ ଦାଢ଼ି ଓ ସୌମ୍ୟ ଚେହେରା ଦେଖିଲେ ଯେକୌଣସି ଲୋକ ସନ୍ତୋଷ ଲାଭ କରିବ ।

ସତ୍ୟବ୍ରତ କହିଲା : ଆପଣ ନିଜ ହାତରେ ଗଛମାନଙ୍କରେ ପାଣି ଢାଳୁଛନ୍ତି କାହିଁକି ? ଏଠାରେ କ'ଣ ଅନ୍ୟ କୌଣସି କର୍ମଚାରୀ ନାହାନ୍ତି ?

ବୃଦ୍ଧ ହସିଲେ । କହିଲେ : ମୋତେ ଭଲ ଲାଗେ ବାବା । ସବୁ ମଣିଷର ଗୋଟାଏ କିଛି ହବି ତ ଥାଏ । ଧରିନିଅ ମୋର ଏଇଟା ସେଇ ହବି ।

: ଆପଣ ଏଠାରେ କେତେବର୍ଷ ହେବ ଅଛନ୍ତି ?

ବୃଦ୍ଧ ସେହିପରି ଶାନ୍ତ ସ୍ୱରରେ କହିଲେ : ଏଇ ଗେଷ୍ଟହାଉସ୍‌ର ପ୍ରଥମ ଗେଷ୍ଟଙ୍କ ବେକରେ ମୁଁ ଫୁଲମାଳ ପିନ୍ଧାଇଥିଲି । ସେ ହସିଲେ । ହସି ହସି ପୁଣି ଗୁଣୁଗୁଣୁ ଶ୍ଳୋକ ଆବୃତ୍ତି କରି କରି ଅନ୍ୟତ୍ର ଚାଲିଗଲେ ।

ସତ୍ୟବ୍ରତ କହିଲା : ଏଭଳି ସୌମ୍ୟ ମୂର୍ତ୍ତି ଆଜିକାଲି ଖୁବ୍ କମ୍ ଆଖିରେ ପଡ଼େ ସବ୍ୟ । ଚେହେରାଟି ଯେପରି ସ୍ନିଗ୍ଧ, ହୃଦୟ ବି ସେହିପରି ନିର୍ମଳ ।

ଆମେ ଆମ ରୁମ୍‌କୁ ଫେରିଯାଇ ସକାଳର ନିତ୍ୟକର୍ମ ଶେଷ କରିବାକୁ ଲାଗିପଡ଼ିଲୁ । ସତ୍ୟବ୍ରତ କହିଲା : ପ୍ରଥମେ ଯାଇ ଖବର ନେବାକୁ ହେବ, 'ମାଧବୀ ଭିଲା'ରେ ଗତ ରାତିରେ କୌଣସି ଘଟଣା ଘଟିଛି କି ନାହିଁ ।

: ସେଠାରେ କ'ଣ ଆଉ କିଛି ଘଟିବ ବୋଲି ତୁ ଆଶା କରୁଛୁ ।

: କାହିଁକି, ସେପରି ଆଶା କରିବା କ'ଣ ଅନ୍ୟାୟ ?

: ନା, ନ୍ୟାୟ ଅନ୍ୟାୟ କଥା ମୁଁ କହୁ ନାହିଁ । ମୁଁ କହୁଛି ରଂଜିତାର ମୃତ୍ୟୁ ପରେ ରହସ୍ୟମୟୀ ମାଧବୀ ଭିଲାର ମଧ୍ୟ ମୃତ୍ୟୁ ହୋଇଯାଇଛି ।

: କିନ୍ତୁ ରଂଜିତାର ହତ୍ୟାକାରୀ ? ସେ ତ ପୁଣି ଆସିପାରେ ନୂତନ ରଂଜିତାର ସଂଧାନରେ ?

ମୁଁ ହୋ ହୋ ହୋଇ ହସିଉଠି କହିଲି : ତଥାପି ତୁ ଆଶା କରୁଛୁ ରଂଜିତାର ହତ୍ୟାକାରୀ ଜଣେ ତୃତୀୟ ବ୍ୟକ୍ତି ।

ମୁଁ ମୋ ପ୍ରଶ୍ନର ଉତ୍ତର ପାଇଲି ନାହିଁ । ସେତିକିବେଳେ ପରେଶ ଚକ୍ରବର୍ତ୍ତୀ କାନ୍ଧରେ ଗୋଟାଏ ଫ୍ଲାସ୍‌କ ଝୁଲାଇ ଆମ ରୁମ୍‌ରେ ଆସି ପଶିଲେ ।

: ମିଷ୍ଟର ଚକ୍ରବର୍ତ୍ତୀ ! ସକାଳୁ ଆପଣ ଏପରି ଉତ୍ପାତ ଆରମ୍ଭ କରିବେ ଜାଣିଥିଲେ, ଆମେ କାଲି ଲାଷ୍ଟ ଟ୍ରେନ୍‌ରେ ଫେରିଯାଇ ପାରିଥାଆନ୍ତୁ । ସତ୍ୟବ୍ରତ କହିଲା ।

ମିଷ୍ଟର ଚକ୍ରବର୍ତ୍ତୀ ହସିଲେ । କହିଲେ : ଏଥିରେ ମୋର କିଛି କୃତିତ୍ୱ ନାହିଁ । ସବୁ ଆପଣଙ୍କ ବୌଦିଙ୍କର କୀର୍ତ୍ତି । ସେ ତ ଆହୁରି ଘଣ୍ଟାକ ଆଗରୁ ମୋତେ ଆସିବା ପାଇଁ ବ୍ୟସ୍ତ କରୁଥିଲେ ।

ଆମେ ଫ୍ଲାସ୍କରୁ ଢାଳି ଚା' ପିଇଲୁ ।

ସତ୍ୟବ୍ରତ ପଚାରିଲା : ଆପଣ ଏଇ ଥାନାରେ କେତେବର୍ଷ ରହିଲେଣି ମିଷ୍ଟର ଚକ୍ରବର୍ତ୍ତୀ ।

: ପ୍ରାୟ ପାଞ୍ଚ ବର୍ଷ ହେବ । ଇଣ୍ଡଷ୍ଟ୍ରିଆଲ୍ ଏରିଆରେ କେତେବେଳେ ହେଲେ ଶାନ୍ତି ନାହିଁ । ଆଜି ଅମୁକ ଷ୍ଟ୍ରାଇକ୍, କାଲି ସମୁକ ଘେରାଓ । ତା'ଛଡ଼ା ଖୁଣ୍ ଜଖମ୍ ତ ମଝିରେ ମଝିରେ ଲାଗି ରହିଛି ।

: ବୌଦି ଚା' ବି ସୁନ୍ଦର କରିପାରନ୍ତି । ଅନେକ ଦିନରୁ ଏପରି ଚା' ଖାଇ ନଥିଲି ।

ମିଷ୍ଟର ଚକ୍ରବର୍ତ୍ତୀ କୃତ୍ୟକୃତ୍ୟ ହୋଇ କହିଲେ : ସେ ନଥିଲେ ମୋ ଜୀବନଟା ଦୁର୍ବିସହ ହୋଇପଡ଼ିଥାଆନ୍ତା । ହୋମ୍ ଡିପାର୍ଟମେଣ୍ଟଟା ସଂପୂର୍ଣ୍ଣ ଆପଣଙ୍କ ବୌଦି ସମ୍ଭାଳି ନେଇଛନ୍ତି ।

: ଆଚ୍ଛା ମିଷ୍ଟର ଚକ୍ରବର୍ତ୍ତୀ !

: କୁହନ୍ତୁ ।

: ଆପଣ କହୁଥିଲେ ରଂଜିତାର ଗୋଟାଏ କାନର ଦୁଲ୍ ଦୀପକ ଚୌଧୁରୀ ଖଟତଳୁ ଆପଣ ଆବିଷ୍କାର କରିଥିଲେ । ସେ ଦୁଲ୍ ପଟକ ଆପଣଙ୍କ ପାଖରେ ଅଛି ?

: ପଟକ ନୁହେଁ, ହଳକଯାକ ବର୍ତ୍ତମାନ ଷ୍ଟ୍ରଙ୍ଗରୁମ୍‌ରେ । ରଂଜିତାର ଅନ୍ୟାନ୍ୟ ଅଳଙ୍କାର ମଧ୍ୟ ।

: ହୁଁ, ଆଚ୍ଛା ସେଇସବୁ ଅଳଙ୍କାର ଭିତରେ କୌଣସି ପଥର ସେଟ୍ ଅଳଙ୍କାର ଅଛି କି ?

: ପଥର ସେଟ୍ ? ମିଷ୍ଟର ଚକ୍ରବର୍ତ୍ତୀ ଆଖିବୁଜି ଗୁଣୁଗୁଣୁ ହୋଇ ହିସାବ କରିବାକୁ ଲାଗିଲେ, ଛଅପଟ ଚୁଡ଼ି, ଗୋଟାଏ ଚେନ୍, ହଳେ ଦୁଲ୍, ଏଇ ତ ! ନା ନା, ପଥର ସେଟ୍ ଅଳଙ୍କାର ତା' ଭିତରେ କିଛି ନାହିଁ ମିଷ୍ଟର ମହାପାତ୍ର ।

: ଚେନ୍‌ରେ ଲକେଟ୍ ନାହିଁ ?

: ଅଛି, ତେବେ ସେଇଟା ପଥର ସେଟ୍ ଲକେଟ୍ ନୁହେଁ ।

: ହୁଁ, ଆଚ୍ଛା ହେଡ୍‌କ୍ୱାର୍ଟରରୁ ଖବର କିଛି ପାଇଲେ ?

: ନା, ଏତେବେଳଯାଏ ଆସି ନାହିଁ ।

: ଦେଖନ୍ତୁ କ'ଣ ଆସୁଛି ।

: ଆଚ୍ଛା ମିଷ୍ଟର ମହାପାତ୍ର ! ଆପଣ ହଠାତ୍ ପଥର ସେଟ୍ ଅର୍ଣ୍ଣାମେଣ୍ଟ କଥା କାହିଁକି ପଚାରିଲେ ?

ସତ୍ୟବ୍ରତ ହସିଉଠିଲା । କହିଲା : ଆପଣଙ୍କ ମନରେ ସନ୍ଦେହ ଜାଗି ଉଠିଲା ବୋଧହୁଏ ? ସେ କିଛି ନୁହେଁ । ମୁଁ ଇମତି ପଚାରୁଥିଲି ।

ପରେଶ ଚକ୍ରବର୍ତ୍ତୀ ଫ୍ଲାସ୍କଟାକୁ ଟେବୁଲ ଉପରୁ ଉଠାଉ ଉଠାଉ କହିଲେ : ଆପଣମାନେ ନିତ୍ୟକର୍ମ ଶେଷ କରି ଆସନ୍ତୁ । ମୁଁ ଥାନାରେ ଅପେକ୍ଷା କରୁଛି ।

: ହଁ, ଆମେ ଯାଉଛୁ, ଖୁବ୍ ବେଶି ହେଲେ ଅଧଘଣ୍ଟା ଭିତରେ ।

ପରେଶ ଚକ୍ରବର୍ତ୍ତୀ ଚାଲିଯିବା ପରେ ସତ୍ୟବ୍ରତ ଆଟାଚି କେସ୍‌ରୁ ସେଫ୍‌ଟିରେଜର ବାହାର କଲା । ସିଗାରେଟ୍‌ଟା ଦୂରକୁ ଫିଙ୍ଗିଦେଇ ମୁହଁରେ ସାବୁନ୍ ଲଗାଇଲା ।

ମୁଁ ତେଲ ଲଗାଇଲି ଗାଧୋଇ ଯିବା ପାଇଁ ।

ସେତିକିବେଳେ ଦୀପକ ଚୌଧୁରୀ ପହଞ୍ଚିଲା ଆସି ।

: ତା'ପରେ ମିଷ୍ଟର ଚୌଧୁରୀ । କାଲି ରାତିଟା ଆପଣଙ୍କର କିପରି କଟିଲା କୁହନ୍ତୁ ? ସତ୍ୟବ୍ରତ ସଂଗେ ସଂଗେ ପଚାରିଲା ।

: ଭଲ ନିଦ ହେଲାନି ମୋଟେ । ଅର୍ଦ୍ଧଚେତନ ଅବସ୍ଥାରେ ମୋର ମନେହେଉଥିଲା, ଯେପରି ରଂଜିତା ଆସିବ । ବେଳେବେଳେ ଶୁଭିଯାଉଥିଲା ତା'ର ପାଦଶବ୍ଦ । ନିଦ ଭାଂଗି ଯାଉଥିଲା । ପୁଣି ଉଠି ବସୁଥିଲି । ପୁଣି ଶୋଉଥିଲି । ଏହିପରି ଏପାଖ ସେପାଖ ହୋଇ...

ବାହାରକୁ ଚାହିଁ ଦୀପକ ଚୌଧୁରୀ ନୀରବ ହୋଇଗଲା ।

ମୁଁ ଦେଖିଲି ବୃଦ୍ଧ କେଆର୍ ଟେକର୍ ଆମରି ଘରଆଡ଼େ ଆଗେଇ ଆସୁଛନ୍ତି ।

ଦୀପକ ତା' ମୁହଁକୁ ଚାହିଁଲା, ସେ ଚାହିଁଲେ ଦୀପକ ମୁହଁକୁ । ସାମାନ୍ୟ ନୀରବତା । ତା'ପରେ ବୃଦ୍ଧ ପ୍ରଶ୍ନ କଲେ : ଆପଣମାନଙ୍କର ଆଉ କିଛି ଅସୁବିଧା ହୋଇ ନାହିଁ ତ ?

: ନା । ସେଥିପାଇଁ ଆମ ତରଫରୁ ଆପଣଙ୍କର ଧନ୍ୟବାଦ ପାଇବାର କଥା ।

ବୃଦ୍ଧ କହିଲେ : କୌଣସି ଅସୁବିଧା ହେଲେ ମୋତେ ଖବର ଦେବେ ।

ବୃଦ୍ଧ ଚାଲିଗଲେ । ଦୀପକ କିଛି ସମୟ ସେଇଆଡ଼େ ଅନେଇ ରହି ଯେପରି କ'ଣ ଚିନ୍ତା କରୁଥିଲା । ତା'ପରେ ଧୀରେ ଧୀରେ ପଚାରିଲା : ଯାଙ୍କୁ ଆପଣ ଚିହ୍ନିଛନ୍ତି ମିଷ୍ଟର ମହାପାତ୍ର !

: ଚିହ୍ନି ନଥିଲି । ଆଜି ସକାଳୁ ଦେଖିଲି ।

: ସେ ଏଠାକୁ କାହିଁକି ଆସିଛନ୍ତି ? ଦୀପକ ଚୌଧୁରୀ ପଚାରିଲା ।

ସତ୍ୟବ୍ରତ କହିଲା : ସେ ଆପଣଙ୍କର ଏହି ଗେଷ୍ଟ୍ ହାଉସ୍‌ର କେଆର୍ ଟେକର୍ । ଆପଣ ଚିହ୍ନିନାହାନ୍ତି ତାଙ୍କୁ ?

: ନା, ମୁଁ ଜାଣି ନଥିଲି । ମୁଁ କିନ୍ତୁ ତାଙ୍କୁ ଚିହ୍ନିଚି ଅନ୍ୟ ହିସାବରେ । ମାସରେ ତାଙ୍କ ସହିତ ଥରେ ମୋର ଦେଖାହୁଏ ମାଧବୀ ଭିଲାରେ ।

: ମାନେ ? ସତ୍ୟବ୍ରତ ପଚାରିଲା ।

: ମାଧବୀ ଭିଲାର ଭଡ଼ା ଆଦାୟ କରିବାକୁ ଯାଆନ୍ତି ।

: କ'ଣ କହିଲେ, ଏଇ ଭଦ୍ରଲୋକ 'ମାଧବୀ ଭିଲା'ର ମାଲିକ ?

: ମାଲିକ କି ନୁହନ୍ତି କହିପାରିବି ନାହିଁ । ତେବେ ଭଡ଼ା ପ୍ରତିମାସ ଯାଇ ଆଦାୟ କରି ଆଣନ୍ତି ।

: ହୁଁ, ଆପଣଙ୍କର କେବେ ତାଙ୍କ ସହିତ କୌଣସି କଥାବାର୍ତ୍ତା ହୋଇ ନାହିଁ ?

: ନା । ମୁଁ ଇଚ୍ଛାକରି କିଛି ପଚାରି ନାହିଁ କେବେ ।

: ବଡ଼ ଆଶ୍ଚର୍ଯ୍ୟ କଥା ତ !

: ମୋର ତାଙ୍କ ସହିତ କିଛି କାମ ନଥାଏ, ତା'ଛଡ଼ା କେତେକ ଶ୍ରେଣୀର ଲୋକମାନଙ୍କ ସହିତ ମୋର କଥା କହିବାକୁ ମୋଟେ ପ୍ରବୃତ୍ତି ହୁଏ ନାହିଁ । ବିଶେଷତଃ ଏଇ ଘରମାଲିକମାନଙ୍କ ସହିତ ।

: କିନ୍ତୁ ଏହି ବୃଦ୍ଧ ଭଦ୍ରଲୋକ ସେପରି ଖରାପ ଲୋକ ବୋଲି ମନେ ହେଉ ନାହାନ୍ତି ।

: ନହେଲେ ବି ଘରର ମାଲିକ ହିସାବରେ ମୋର ତାଙ୍କ ପ୍ରତି ଶ୍ରଦ୍ଧା ନାହିଁ । ସେ କିନ୍ତୁ ଆସନ୍ତି, ରସିଦ ଦିଅନ୍ତି, ଟଙ୍କା ନେଇ ଚାଲିଯାଆନ୍ତି ।

: ହୁଁ । ଛାଡ଼ନ୍ତୁ । ମଣିଷର ମନ ବିଭିନ୍ନ ବିଚିତ୍ର ଉପାଦାନରେ ପୂର୍ଣ୍ଣ । ତେଣୁ ସବୁ କ୍ଷେତ୍ରରେ ବିଶ୍ଳେଷଣ କରିବା ସମ୍ଭବ ନୁହେଁ ।

ସତ୍ୟବ୍ରତର ସେହି କଥା ମଝିରେ ଖିଅର ହେବା ଶେଷ ହୋଇଥିଲା । ସେ ଗୁଣୁଗୁଣୁ ହୋଇ ଗୀତଗାଇ, ଟାୱେଲଟାଏ ଧରି ବାଥ୍‌ରୁମ୍‌କୁ ଉଠି ଚାଲିଗଲା ।

ଦୀପକ ଚୌଧୁରୀ ନୀରବ କଣ୍ଠରେ ମୋତେ ପଚାରିଲେ : ରଂଜିତାର ମୃତ୍ୟୁ ସମ୍ବନ୍ଧରେ ମିଷ୍ଟର ମହାପାତ୍ରଙ୍କର ମତ କ'ଣ ?

ମୁଁ କହିଲି : ବର୍ତ୍ତମାନ ମୁଁ ବି ଅନ୍ଧକାରରେ । ସେ ଗୋଟାଏ ସ୍ଥିର ସିଦ୍ଧାନ୍ତରେ ନ ପହଞ୍ଚିବାଯାଏ ସହଜରେ କିଛି କୁହେ ନାହିଁ ।

: ବଡ଼ ଆଶ୍ଚର୍ଯ୍ୟ ଘଟଣା ମିଷ୍ଟର ଦାସ । ଅଲୌକିକ କିଛି ଘଟେ ବୋଲି ମୋର କେବେ ବିଶ୍ୱାସ ନଥିଲା, କିନ୍ତୁ ଏ କ୍ଷେତ୍ରରେ...

ମୁଁ ହସିଲି । କହିଲି : ମଣିଷ ଅତି ଅସହାୟ ହୋଇପଡ଼ିଲେ, ତା' ମନର ସମସ୍ତ ଦମ୍ଭ ଭାଂଗିଯାଏ । ସେତେବେଳେ ତା' ଭାବନାରେ ବିଭିନ୍ନ ବିକୃତି ଦେଖାଦିଏ ।

ଦୀପକ ଚୌଧୁରୀ ନୀରବ ହୋଇଗଲା ।

ମୁଁ ବି ଆଉ କିଛି କହିଲି ନାହିଁ ।

ସତ୍ୟବ୍ରତ ଗାଧୋଇ ଆସିବା ପରେ ମୁଁ ବାଥ୍‌ରୁମ୍‌କୁ ଗଲି । ପ୍ରାୟ ଅଧଘଣ୍ଟା ଭିତରେ ଆମେ ବାହାରିବା ପାଇଁ ପ୍ରସ୍ତୁତ ହୋଇପଡ଼ିଲୁ ।

ଦୀପକ ଚୌଧୁରୀ ଆମ ସହିତ ଥାନାକୁ ଗଲା ।

ପରେଶ ଚକ୍ରବର୍ତ୍ତୀ କହିଲେ : ଆପଣ ଏଇ କେତେଦିନ ଭିତରେ ଅନେକ ଝଡ଼ିଗଲେଣି ମିଷ୍ଟର ଚୌଧୁରୀ । ଏଇ ହାରରେ ସ୍ୱାସ୍ଥ୍ୟହାନି ମୋଟେ ଭଲ ଲକ୍ଷଣ ନୁହେଁ ।

ଦୀପକ ଚୌଧୁରୀ କିଛି କହିଲା ନାହିଁ ।

ପରେଶ ଚକ୍ରବର୍ତ୍ତୀ ଆମ ଆଡ଼କୁ ଚାହିଁ କହିଲେ : ଆଉ ଡେରି ନୁହେଁ । ଉଠନ୍ତୁ ।

ଆମେ ସଂଗେ ସଂଗେ ଚେଆରରୁ ଉଠି ବାହାରକୁ ବାହାରି ଯାଉଥିଲୁ ।

ପରେଶ ଚକ୍ରବର୍ତ୍ତୀ ବାଟ ଓଗାଳି କହିଲେ : ଏକଦମ୍ ଆଉଟ୍ ହୋଇଯିବା କଥା ମୁଁ କହୁ ନାହିଁ । ପ୍ରଥମେ ଇନ୍ । ବୌଦି ଅପେକ୍ଷା କରି ବସିଛନ୍ତି ।

: ପୁଣି ? ଏ ଆପଣଙ୍କର ଆମ ଉପରେ ଭୀଷଣ ଅତ୍ୟାଚାର ହେଉଛି ମିଷ୍ଟର ଚକ୍ରବର୍ତ୍ତୀ ।

ଶତ ଆପତ୍ତି ସତ୍ତ୍ୱେ ବି ଆମକୁ ଭିତରକୁ ଯିବାକୁ ହେଲା ।

ଦୀପକ ଚୌଧୁରୀ କିନ୍ତୁ ଗଲା ନାହିଁ । ସେ ଫେରିଗଲା ମାଧବୀ ଭିଲାକୁ ।

କିଛି ସମୟ ପରେ ଆମେ ସମସ୍ତେ ମାଧବୀ ଭିଲାରେ ଯାଇ ପହଞ୍ଚିଲୁ ।

ଦୀପକ ଚୁପ୍‌ଚାପ୍ ଶୋଇଥିଲା ଆଖିବୁଜି । ଆମର ପ୍ରବେଶ ହୁଏତ ସେ ବୁଝିପାରି ନଥିଲା ।

ଆମେ ତାକୁ ବିରକ୍ତ କଲୁ ନାହିଁ ।

ସିଧାସଳଖ ଚାଲିଗଲୁ ବଗିଚା ଭିତରକୁ ।

ପରେଶ ଚକ୍ରବର୍ତ୍ତୀ ସବୁ ଦେଖେଇ ଦେଲେ ଆମକୁ । କେଉଁଠି ରଂଜିତାର ମୃତଦେହ ସେ ପ୍ରଥମେ ଦେଖିଥିଲେ । କେଉଁ ପାହାଚରେ ମଣିଷ ପାଦର କାଦୁଅଚିହ୍ନ ଲାଗିଥିଲା, ଇତ୍ୟାଦି ଇତ୍ୟାଦି ।

ସତ୍ୟବ୍ରତ ସବୁ ଦେଖିସାରି ବାହାରର ସେଇ ଅଦରକାରୀ ଘରଟା ପାଖରେ ଠିଆହୋଇ କହିଲା : ଆପଣ ଏଇ ଘରଟା ଦେଖିଥିଲେ ?

: ସେଇଟା ? ମିଷ୍ଟର ଚକ୍ରବର୍ତ୍ତୀ ଆଗେଇ ଗଲେ । ଘରର କବାଟ ଖୋଲି ଅନେଇ ଦେଲେ ଏଣେତେଣେ । ଫେରିଆସି କହିଲେ, ସେଇଟା ଗୋଟାଏ ଅଦରକାରୀ ଘର । କିଛି ନାହିଁ ତା' ଭିତରେ ।

ସତ୍ୟବ୍ରତ କହିଲା : ମୋର କାହିଁକି ମନେହେଉଛି ଏଇ ଘର ଭିତରେ ରଂଜିତାକୁ ହତ୍ୟା କରାହୋଇଛି ।

: ମାନେ ? ମିଷ୍ଟର ଚକ୍ରବର୍ତ୍ତୀ ଚମକି ଉଠିଲେ । କବାଟ ଖୋଲି ଆଉଥରେ ପଶିଗଲେ ସେ ଘର ଭିତରକୁ । ଚାହିଁଲେ ଏଣେତେଣେ । ତାଙ୍କ ଆଖିରେ ହୁଏତ କିଛି ବିଶେଷତା ପରିଲକ୍ଷିତ ହେଲା ନାହିଁ । ଫେରିଆସି କହିଲେ : ଚାରିଆଡ଼େ ବୁଢ଼ିଆଣୀ ଜାଲ ଓହୋଳିଛି । ଏତେ ଜାଗା, ଏତେ ସୁବିଧା ଥାଉ ଥାଉ ମୋର ମନେ ହେଉନାହିଁ ଦୀପକ ଯା' ଭିତରେ ଆଣି ରଂଛିତାର ଗଳାଟିପି ମାରିଲା ।

ସତ୍ୟବ୍ରତ ଚାହିଁଲା ଥରେ ପୋଲିସ୍ ଅଫିସରଙ୍କ ମୁହଁକୁ । ସ୍ମିତ ହସି କହିଲା : ହତ୍ୟାକାରୀ କ'ଣ ଦୀପକ ଛଡ଼ା ଆଉ କେହି ହୋଇପାରେ ନାହିଁ ?

: ଏଇ ମୃତ୍ୟୁର ପରିବେଶ ଯାହା ସେଥିରେ ଦୀପକ ଛଡ଼ା ଅନ୍ୟ କାହାକୁ ହତ୍ୟାକାରୀ ରୂପେ କିପରି କଳ୍ପନା କରିବା ମିଷ୍ଟର ମହାପାତ୍ର ?

: ମୁଁ କିନ୍ତୁ ଆଉ ଏକ ତୃତୀୟ ବ୍ୟକ୍ତିର କଥା ଏଠାରେ ଚିନ୍ତା କରୁଛି ।

: ଚିନ୍ତା କରିପାରନ୍ତି, କିନ୍ତୁ ପ୍ରମାଣ ସାପେକ୍ଷ ।

: ପ୍ରମାଣ ବି ପାଇଛି । ସତ୍ୟବ୍ରତର ସ୍ୱର ଶାନ୍ତ ଓ ଗମ୍ଭୀର ।

: ପ୍ରମାଣ ପାଇଛନ୍ତି ? ରଂଛିତାର ହତ୍ୟାକାରୀ ଦୀପକ ନୁହେଁ, ଏ କଥା ଆପଣ ପ୍ରମାଣ କରେଇ ପାରିବେ ?

: ଆଶା କରୁଛି ।

ତା'ହେଲେ ତ ଆଉ କିଛି ସମସ୍ୟା ନାହିଁ । ବିଚରା ଦୀପକ ଚୌଧୁରୀ ମୁକ୍ତ ।

: କିନ୍ତୁ ଏହାକୁ ପ୍ରମାଣ କରିବା ଭାରି କଠିନ କାର୍ଯ୍ୟ ମିଷ୍ଟର ଚକ୍ରବର୍ତ୍ତୀ । କାହିଁକି ଜାଣନ୍ତି ?

: କାହିଁକି ?

: ହତ୍ୟାକାରୀକୁ ଅପେକ୍ଷା କରିବାକୁ ହେବ ଆମକୁ ଧୈର୍ଯ୍ୟ ସହକାରେ । ହୁଏତ ମାସେ, ପନ୍ଦର ଦିନ କିମ୍ବା ବର୍ଷେ ପର୍ଯ୍ୟନ୍ତ ।

ପରେଶ ଚକ୍ରବର୍ତ୍ତୀ ହୋ ହୋ ହୋଇ ହସିଉଠିଲେ । କହିଲେ : ଆଇନ୍ କିନ୍ତୁ ଅପେକ୍ଷା କରିବ ନାହିଁ ମିଷ୍ଟର ମହାପାତ୍ର । ଆପଣ ତ ଲାଇନ୍‌ର ଲୋକ । ସବୁ ଜାଣନ୍ତି ।

: ତଥାପି...

: କିଛି ଉପାୟ ଅଛି ?

: ଉଦ୍‌ଭାବନ କରିବାକୁ ପଡ଼ିବ । ନିର୍ଦ୍ଦୋଷୀକୁ ଦଣ୍ଡଦେବା ମୋର ଧର୍ମ ନୁହେଁ ।

: ଆପଣ କ'ଣ ସ୍ପଷ୍ଟ ଜାଣିପାରିଛନ୍ତି ଦୀପକ ନିର୍ଦ୍ଦୋଷ ।

: ଏ ବଡ଼ ଜଟିଳ ପ୍ରଶ୍ନ ଆପଣଙ୍କର । ଆପଣ ଆସନ୍ତୁ ମୋ ସହିତ ।

ସତ୍ୟବ୍ରତ ପୋଲିସ୍ ଅଫିସରଙ୍କୁ ଡାକିଲା ସେଇ ଘର ଭିତରକୁ । ଝରକାଟା ଖୋଲି ଦେଲା । ସ୍ପଷ୍ଟ ଦିଶିଲା ଘର ଭିତରଟା ।

: ଫ୍ଲୋର୍‌ଟାକୁ ଲକ୍ଷ୍ୟ କରିଛନ୍ତି ?

ପରେଶ ଚକ୍ରବର୍ତ୍ତୀ ଅତ୍ୟନ୍ତ ଧ୍ୟାନ ସହକାରେ ଦେଖିଲେ ।

କେତେଗୁଡ଼ିଏ ବିକ୍ଷିପ୍ତ ପଦଚିହ୍ନ ।

ସତ୍ୟବ୍ରତ କହିଲା : ପଦଚିହ୍ନଗୁଡ଼ିକରୁ ମନେହେଉଛି, ଖୁବ୍ ଅସ୍ଥିରତାର ସହିତ ଏଠାରେ କାହାର ବା କେଉଁମାନଙ୍କର ପଦଚାଳନା ହୋଇଥିଲା । ଏହା ବେଶିଦିନର ହୋଇଥିଲେ ଧୂଳି ଜମି ସେଗୁଡ଼ିକର ସତ୍ତା ବିଲୁପ୍ତ ହୋଇଯାଇଥାଆନ୍ତା । ନୁହେଁ କି ?

: ହଁ ।

: ଆଉ ଏଇ ଚୁଲି ପାଖକୁ ଦେଖନ୍ତୁ । ହଁ, ହଁ, ସେଇ ଦାଗଗୁଡ଼ାକ ହାତ ଅଙ୍ଗୁଳିର ଚିହ୍ନ ପରି ମନେହେଉ ନାହିଁ ?

: ହଁ, ସେହିପରି ତ ମନେ ହେଉଛି ।

: ଏଥର ଆପଣ ବିଶ୍ଳେଷଣ କରନ୍ତୁ । ସତ୍ୟବ୍ରତ ସ୍ମିତ ହସି ନୀରବ ରହିଲା ।

ପରେଶ ଚକ୍ରବର୍ତ୍ତୀ କିଛି ସମୟ ନୀରବ ରହି କହିଲେ : ବିଶ୍ଳେଷଣଟା ଆପଣଙ୍କ ମୁହଁରୁ ଶୁଣିବାକୁ ମୋର ଇଚ୍ଛା ।

ସତ୍ୟବ୍ରତ ଆଗେଇ ଗଲା ବଉଳ ଗଛ ମୂଳକୁ । ସିମେଣ୍ଟ ଚଉତରା ଉପରେ ବସି କହିଲା : ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ବି ଅନ୍ଧକାରରେ । କିନ୍ତୁ ଏଇ ସବୁ ଦେଖି ମୋର କ'ଣ ମନେହେଉଛି ଜାଣନ୍ତି ? ଆପଣ ତ ସିମେଣ୍ଟ ପାହାଚ ଉପରେ ଗଙ୍ଗା ଭିତରୁ ଉଠି ଆସିଥିବା କାହାର ପାଦଚିହ୍ନ ଦେଖିଥିଲେ । ମୁଁ ସେଇ ପାଦଚିହ୍ନକୁ ଭିତ୍ତି କରି ଏହିପରି ଗୋଟାଏ ଧାରଣା ପୋଷଣ କରିଛି ।

ସେ ପାଦଚିହ୍ନ ଯାହାର ହେଉ ସେ ସେଇଦିନ ରାତିରେ ନୌକାରେ ଚଢ଼ି ଆସି 'ମାଧବୀ ଭିଲା' ପାଖରେ ନୌକା ଭିଡ଼ିଛି । ସେତେବେଳେ ଜୁଆର ଛାଡ଼ ହୋଇଥିବାରୁ ତାକୁ ଅଳ୍ପ ଦୂରରେ ନୌକା ରଖି କାଦୁଅ ଭିତରେ ପଶି ଉପରକୁ ଉଠିବାକୁ ପଡ଼ିଛି । ସେଇଥିପାଇଁ ସିମେଣ୍ଟ ପାହାଚ ଉପରେ ଆପଣ ଅସ୍ପଷ୍ଟ ପାଦଚିହ୍ନ ଦେଖିଛନ୍ତି ।

: ତା'ପରେ ?

: ତା'ପରେ ସେ ଆସିଛି । ହୁଏତ ରଂଜିତା ଓ ଦୀପକର ଅଲକ୍ଷ୍ୟରେ ଠିଆ ହୋଇ ସେମାନଙ୍କ ଭବିଷ୍ୟତର ପରିକଳ୍ପନା କଥା ଶୁଣିଛି । ଅଥବା ସେ ଏପରି ମୁହୂର୍ତ୍ତରେ ଆସି ପହଞ୍ଚିଛି, ଯେତେବେଳେ ରଂଜିତା ଦୀପକକୁ ଶୁଆଇ ପକାଇ ଫେରିଯାଉଥିଲା ତା' ଘରକୁ । ସେତିକିବେଳେ ଆଗନ୍ତୁକଟି ରଂଜିତାକୁ ଆକ୍ରମଣ କରିଛି । ଟାଣି ଟାଣି ନେଇଛି ଏଇ ଘରଟା ଭିତରକୁ । ଶ୍ୱାସରୁଦ୍ଧ କରି, ହତ୍ୟା କରିବା ପରେ ତାକୁ ଶୁଆଇ ଦେଇଛି ତଳେ, ସେଇ ଘର ଭିତରେ । ଯା' ଫଳରେ ରଂଜିତା ହାତର ଆଙ୍ଗୁଳି ଚିହ୍ନ ସ୍ପଷ୍ଟ ରହିଯାଇଛି ଚୁଲି ପାଖରେ ।

ତା'ପରେ ଆଗନ୍ତୁକ ରଂଜିତାର ଗଳାରେ ଦଉଡ଼ି ବାନ୍ଧି ଟଙ୍ଗେଇ ଦେଇଯାଇଛି ବଉଳ ଗଛରେ । ତାକୁ ହତ୍ୟା କରାହୋଇଛି ବୋଲି ଯେପରି କାହାରି ବିଶ୍ୱାସ ନ ହୁଏ ।

ପରେଶ ଚକ୍ରବର୍ତ୍ତୀ ଗୋଟାଏ ଗଭୀର ଦୀର୍ଘଶ୍ୱାସ ଛାଡ଼ି କହିଲେ : ସବୁ ମିଳେଇ ଏହିପରି ଏକ ସହଜ ସିଦ୍ଧାନ୍ତରେ ଆମେ ଉପନୀତ ହୋଇପାରନ୍ତି । କିନ୍ତୁ ଆଗନ୍ତୁକ ? ମର୍ଡ଼ରର ?

ସତ୍ୟବ୍ରତ ପରିହାସ ସ୍ୱରରେ କହିଲା : ଆପଣ ଭାବୁଛନ୍ତି ସେ ଆସି ଆପଣଙ୍କ ସାମ୍‌ନାରେ ହସ୍ତ ପ୍ରସାରିତ କରି ଠିଆ ହେବ । କହିବ, ମୁଁ ଭୁଲ୍ କରିଛି, ଅନ୍ୟାୟ କରିଛି, ମୋତେ ସେଥିପାଇଁ ଅନୁତାପ କରିବାକୁ ହେଉଛି । ଆପଣ ମୋ ହାତରେ କଡ଼ି ପିନ୍ଧେଇ ଗାରଦକୁ ନେଇଚାଲନ୍ତୁ ।

: ନା, ତା' ମୁଁ କହୁ ନାହିଁ ମିଷ୍ଟର ମହାପାତ୍ର । ତେବେ ଆମର ଏହି ପରିକଳ୍ପନା ଦ୍ୱାରା ଦୀପକ ବାବୁଙ୍କର କିଛି ଲାଭ ହେବ ନାହିଁ ।

ସତ୍ୟବ୍ରତ କିଛି କହିଲା ନାହିଁ । ନୀରବରେ ସେ ଝରା ବଉଳ ଫୁଲ ଗୋଟାଉଥିଲା । ଆଉ ହୁଏତ ଚିନ୍ତା କରୁଥିଲା, ଏଇ ବଉଳ ଫୁଲ ସାହାଯ୍ୟରେ ହତ୍ୟାକାରୀକୁ ଖୋଜି ବାହାର କରିହେବ ନାହିଁ ?

ସାମାନ୍ୟ ନୀରବତା ପରେ ପରେଶ ଚକ୍ରବର୍ତ୍ତୀ କହିଲେ : ଆପଣ କାମ ଶେଷକରି ଆସନ୍ତୁ ମିଷ୍ଟର ମହାପାତ୍ର । ମୋତେ ଶୀଘ୍ର ଫେରିଯିବାକୁ ହେବ । ଆଜି ରାତିରେ ବସି ଏ ସମ୍ବନ୍ଧରେ ଆଲୋଚନା କରିବା ।

ସତ୍ୟବ୍ରତ ଧ୍ୟାନ ସହକାରେ ବଉଳଫୁଲ ଗୋଟାଇବାରେ ଲାଗିଥିଲା ।

ମୁଁ ଭାବୁଥିଲି ଏ ରହସ୍ୟ ମଧ୍ୟରେ ବଉଳର ଗନ୍ଧ ଅଛି ଯେତେବେଳେ...

: ବଉଳ ଫୁଲର ମାଳା, ନା ସତ୍ୟ ? ଦୀପକ ଚୌଧୁରୀ ଗଳାରେ ଅର୍ଦ୍ଧରାତ୍ରରେ କେହି ବଉଳ ଫୁଲର ମାଳା ପିନ୍ଧାଇ ଦେଇଯାଏ ।

: ହଁ । ମୁଁ ଉତ୍ତର ଦେଲି ।

: ରଂଜିତା ଛଡ଼ା ଆଉ କିଏ ହୋଇପାରେ ?

: ତୁ ଜାଣୁ ଭାଇ, ମୋତେ ପଚାରି କିଛି ଲାଭ ଅଛି ?

ସତ୍ୟବ୍ରତ ବଉଳ ଫୁଲ ଆଂଜୁଳାଏ ଧରି ତଳୁ ଉଠିଲା । କହିଲା, ଫେରିଯିବା ଚାଲେ । ଏଠାରୁ ଆମ କାମ ଶେଷ ହୋଇଛି ।

ଆମେ ଫେରିଯାଉଥିଲୁ । ଦୀପକ ତଥାପି ଶୋଇଥିଲା ।

ସତ୍ୟବ୍ରତ ତା' ଶେଯ ପାଖରେ ଠିଆ ହେଲା ମୁହୂର୍ତ୍ତେ ।

ବଉଳ ଫୁଲ ଆଂଜୁଳାକ ବିଂଚିଦେଲା ଦୀପକ ଉପରେ ।

ହଠାତ୍ ଉଠିବସିଲା ଦୀପକ । ଚାହିଁଲା ଆମଆଡ଼େ କାତର ନୟନରେ । ବଉଳ ଫୁଲରୁ କେତେଟା ଗୋଟାଇ ନେଲା ବିଛଣା ଉପରୁ ।

ସତ୍ୟବ୍ରତ ପଚାରିଲା : କିପରି ଲାଗୁଛି ?

: ଭଲ, ସତ କହିଲେ, ରଂଜୁ କ'ଣ ଆତ୍ମହତ୍ୟା କରିଛି ? ଦୀପକ ପଚାରିଲା ।

ସତ୍ୟବ୍ରତ ବେତ ଚେଆରଟା ଟାଣି ନେଇ ବସିଲା ଟିକିଏ ଦୂରରେ । ଦୀପକକୁ କହିଲା : ଆପଣ ଆଖି ବନ୍ଦ କରନ୍ତୁ ଦୀପକ ବାବୁ ।

: କାହିଁକି ?

: ମୁଁ କହୁଛି ଆପଣ ଆଖି ବନ୍ଦ କରନ୍ତୁ । ତା'ପରେ ମୋ ଆଡ଼େ ଚାହିଁ କହିଲା, ଘରର କବାଟ, ଝରକା ସବୁ ବନ୍ଦ କରିଦେଏ ।

ମୁଁ ଉଠିଯାଇ ବନ୍ଦ କରିଦେଲି । ଘର ଭିତରଟା ପ୍ରାୟ ଅନ୍ଧକାର ହୋଇ ଆସିଲା ।

ସତ୍ୟବ୍ରତ ପୁଣି କହିଲା : ଆପଣ ଆଖି ବନ୍ଦ କରିଛନ୍ତି ତ ? ଆଚ୍ଛା ଆଚ୍ଛା, ରୁହନ୍ତୁ ।

ଚେଆର ଉପରେ ପଡ଼ିଥିବା ଗୋଟାଏ ଟାୱେଲ ଉଠେଇ ନେଇ ସେ ଦୀପକର ମୁହଁଟାକୁ ସଂପୂର୍ଣ୍ଣ ରୂପେ ଘୋଡ଼େଇ ଦେଲା । କହିଲା, ଆପଣ ମନେକରନ୍ତୁ ସେଦିନ କଥା, ଯେଉଁଦିନ ସେଇ ଛାୟାସଂଗିନୀଟି ଆପଣଙ୍କୁ ଡାକିନେଇ ଯାଇଥିଲା ନୌକା ଭିତରକୁ । ମନେପକାଇଲେ ।

: ହଁ ।

: ଆପଣ ମନେକରନ୍ତୁ ଗାଢ଼ ଅନ୍ଧକାର ଭିତରେ ଆପଣ ବସିଛନ୍ତି ନୌକା ଭିତରେ ରଂଜିତା ସହିତ ନୁହେଁ । ଧରିନିଅନ୍ତୁ ଗୋଟିଏ ଛାୟାସଂଗିନୀ ସହିତ । ଛାୟାସଂଗିନୀଟି ଆପଣଙ୍କ ଛାତି ଉପରେ ମୁଣ୍ଡ ରଖି ଶୋଇଛି । ତା' କଣ୍ଠସ୍ୱର ସ୍ଥିର, କିନ୍ତୁ ସ୍ପର୍ଶର ନିବିଡ଼ତା, ଶ୍ୱାସ ପ୍ରଶ୍ୱାସର ତୀବ୍ରତା ବଢୁଛି ବେଳକୁ ବେଳ । ମନେପକାଇ ପାରୁଛନ୍ତି ସେଇ ମୁହୂର୍ତ୍ତଟିକୁ ?

: ହଁ ।

: କ'ଣ ଚାହୁଛି ସେଇ ଛାୟାସଂଗିନୀଟି ଏଇ ମୁହୂର୍ତ୍ତରେ ?

: ତା'ର କାମନାର ତୀବ୍ରତାରେ ସେ ଜଳି ଯାଉଛି । ସେ ଚାହୁଛି, କ'ଣ ଯେ ଚାହୁଛି ମୁଁ ଠିକ୍ ବୁଝିପାରୁ ନାହିଁ । ତା'ର ହାତ ଦୁଇଟା ଯେପରି ଲୌହ ଶଳାକାଠାରୁ ଆହୁରି ଶକ୍ତ ହୋଇଯାଇଛି । ମୋର ବେକଟାକୁ ଝିଙ୍କି ନେଉଛି ତା' ଆଡ଼େ । ଏତେ ତୀବ୍ର ତା'ର କାମନା । ସମସ୍ତ ଶକ୍ତି ଯେପରି ଠୁଳ ହୋଇଛି ଯାଇ ତା'ର ସେଇ ହାତ ଦୁଇଟିରେ । ବେକର ହାଡ଼ଟା ମୋର ଭାଂଗିଯିବ ହୁଏତ !! ହଠାତ୍ ଦୋହଲି ଗଲା ନୌକାଟା । ମୁଁ ଡାକିଲି, ରଂଜୁ ! ସେ କହିଲା, ଉଁ, ହାତ ତା'ର ଶିଥିଳ ହୋଇଗଲା । ତା'ପରେ ଆରମ୍ଭ ହୋଇଥିଲା ଝଡ଼ ।

: ଇଉରେକା । ସତ୍ୟବ୍ରତ ହଠାତ୍ ଚିତ୍କାର କରି ଉଠିଲା ।

ଦୀପକ ଚମକି ପଡ଼ି ମୁହଁରୁ ଟାୱେଲଟା କାଢ଼ି ଫୋପାଡ଼ି ଦେଲା । ମୁଁ ଉଠିଯାଇ ଦରଜାଟା ଖୋଲି ଦେଲି ।

: ଆଉ ଅଳ୍ପ ଟିକିଏ ଆପଣଙ୍କୁ କଷ୍ଟ ଦେବି ମିଷ୍ଟର ଚୌଧୁରୀ । ଆପଣ ଆଉଥରେ ଆଖି ବୁଜନ୍ତୁ ଏବଂ ଫେରିଯାଆନ୍ତୁ ଆଉ ଗୋଟିଏ ରାତିକୁ । ଯେଉଁଦିନ ରଂଜିତା ନିଜେ ଆସିଥିଲା ଅଭିସାରିକା ସାଜି ।

ଦୀପକ ଆଖି ବୁଜିଲା ।

ସତ୍ୟବ୍ରତ ଇଙ୍ଗିତରେ ମୋତେ କହିଲା, ଦରଜାଟା ବନ୍ଦ କରି ଦେବା ପାଇଁ ।

: ମନେପଡୁଛି ସେ ରାତିଟି ମିଷ୍ଟର ଚୌଧୁରୀ ।

: ହଁ ।

: ଆପଣ ଶୋଇଛନ୍ତି । ହଠାତ୍ ଆପଣ ଦେହରେ କାହା ହାତର ସ୍ପର୍ଶ ପାଇଲେ । ଆପଣ ଆଖି ଖୋଲି ଚାହିଁଲେ ସାମ୍ନାରେ ରଂଜିତା ଠିଆ ହୋଇଛି, ଅନ୍ଧକାରରେ ନୁହେଁ, ଆଲୋକର ବନ୍ୟା ମଝିରେ ।

: ହଁ ।

: ତା'ପରେ ?

: ସେ ଠିଆ ହୋଇ ହସୁଥିଲା ।

: ଆପଣ ତାକୁ ପାଖକୁ ଡାକିଲେ ।

: ହଁ ।

: ସେ ଆପଣଙ୍କ ଶେଯ ଉପରେ ବସିଲା ।

: ହଁ ।

: ଅଳ୍ପ କେଇପଦ କଥାବାର୍ତ୍ତା ପରେ ସେ ଆପଣଙ୍କ ଛାତି ଉପରେ ଲୋଟି ପଡ଼ିଲା ?

: ନା ନା ମିଷ୍ଟର ମହାପାତ୍ର । ମୁଁ ପ୍ରଥମେ ତା' କାନ୍ଧରେ ହାତ ରଖିଲି, ସେ ସ୍ପର୍ଶପାଇ ଚମକି ଉଠିଲା ।

: ତା'ପରେ ?

: ଅବଶ୍ୟ ମୋ ଅଜାଣତରେ ମୁଁ ତାକୁ ମୋ ଛାତି ଉପରକୁ ଭିଡ଼ି ଆଣିଥିଲି ।

: ସେ କ'ଣ ଆଉଜି ପଡ଼ିଥିଲା ?

: ଆଉଜି ପଡ଼ି ନଥିଲା କହିଲେ ଭୁଲ୍ ହେବ, କିନ୍ତୁ ସେ ଦ୍ୱିଧାବୋଧ କରିଥିଲା । ବୋଧହୁଏ ଦ୍ୱନ୍ଦ୍ୱ ଉଠିଥିଲା ତା' ମନ ଭିତରେ । କିନ୍ତୁ ବାଧା ଦେଇ ନଥିଲା ।

: ତା'ପରେ ?

: ଆମେ ଅନେକ କଥା ହୋଇଥିଲୁ ।

: ରଂଜିତା ନାକରୁ ଖରଶ୍ୱାସ ଉଠିଥିଲା ?

: ଉଠିଥିଲା, ତେବେ ସେଦିନ ପରି ଏତେ ତୀବ୍ର ନୁହେଁ ।

: ଆପଣଙ୍କ ଗଳାରେ ହାତ ଛନ୍ଦିଥିଲା ?

: ହଁ, ମୁଁ ତା' ହାତଟାଣି ଛନ୍ଦି ଦେଇଥିଲି, କିନ୍ତୁ ସେଦିନ ରାତ୍ରି ପରି କାମନାର ତୀବ୍ରତାରେ ମୋ ଗଳାର ହାଡ଼ ସେ ଭାଂଗିବାକୁ ଚେଷ୍ଟା କରି ନଥିଲା ।

: ତା'ପରେ ?

: ମୋ ସର୍ବାଙ୍ଗ ପୁଲକିତ ହୋଇ ଉଠିଥିଲା । ଆଖି ଯୋଡ଼ାକ ମୋର ବୁଜି ହୋଇ ଆସିଥିଲା ।

: ତା'ପରେ ?

: ଆଉ ମୋର କିଛି ମନେ ନାହିଁ ।

: ହୁର୍‌ର୍‌ର୍‌ରେ । ସତ୍ୟବ୍ରତ ପୁଣି ଥରେ ଚିତ୍କାର କରି ଉଠିଥିଲା ।

ମୁଁ ଯାଇ ଦରଜା ଖୋଲି ଦେଇଥିଲି, ସତ୍ୟବ୍ରତ ଦୀପକକୁ କହିଥିଲା ମୁହଁରୁ ଝାଳ ପୋଛି ପକାଇବା ପାଇଁ ।

: ଆଚ୍ଛା ମିଷ୍ଟର ଚୌଧୁରୀ, ମୁଁ ଯଦି କୁହେ ଆପଣଙ୍କ ରଂଜିତା ଆଉ ଛାୟାସଂଗିନୀ ଦୁହେଁ ଦୁଇଜଣ, ଆପଣ କ'ଣ ଅବିଶ୍ୱାସ କରିବେ ?

: ମାନେ ?

: ମାନେ ହେଉଛି ଯେଉଁଦିନ ଆପଣ ବେହୋସ୍ ହୋଇ ବାଡ଼ି ବଗିଚାରେ ପଡ଼ିଥିଲେ ସେଦିନ ଯିଏ ଆପଣଙ୍କୁ ଆଣି ଘରେ ଶୁଆଇ ଦେଇଥିଲା, ସେ ରଂଜିତା ନୁହେଁ, ଅନ୍ୟ ଦିନ

ରାତିରେ ଆପଣ ଯାହାର ମୃଦୁ ହାସ୍ୟଧ୍ୱନି ଶୁଣିଥିଲେ, ସେ ରଂଜିତା ନୁହେଁ, ଯିଏ ଆପଣଙ୍କ ଅଲକ୍ଷ୍ୟରେ ଧୂପ ଜାଳିଯାଏ, ବଉଳ ମାଳା ରଖିଯାଏ, ସିଏ ବି ରଂଜିତା ନୁହେଁ ।

: ନା ମିଷ୍ଟର ମହାପାତ୍ର । ସେ କଥା ରଂଜିତା ବି ଅସ୍ୱୀକାର କରୁଥିଲା । କିନ୍ତୁ ଅଲୌକିକ କିଛି ମୁଁ ବିଶ୍ୱାସ କରେ ନାହିଁ ।

: ଅଲୌକିକ ନୁହେଁ ମିଷ୍ଟର ଚୌଧୁରୀ, ସବୁ ଲୌକିକ । ସବୁ ରକ୍ତମାଂସ ଧାରିଣୀର କାର୍ଯ୍ୟ । ସେ ଆପଣଙ୍କୁ ଭଲ ପାଏ । ଆପଣଙ୍କ ସାନ୍ନିଧ ଚାହେ, ଏକାନ୍ତ ଭାବରେ ।

: କିଏ ? କିଏ ସେ ମିଷ୍ଟର ମହାପାତ୍ର । ଦୀପକର କଣ୍ଠସ୍ୱର ଥରି ଉଠିଲା ।

ସତ୍ୟବ୍ରତ କହିଲା : ସେଇଆକୁ ଖୋଜି ବାହାର କରିବାକୁ ହେବ । ଆପଣଙ୍କର ଅନ୍ତତଃ ରଂଜିତା ଆଉ ସେଇ ଛାୟାସଂଗିନୀ ମଧରେ ପାର୍ଥକ୍ୟଟାକୁ ବୁଝିପାରିବା ଉଚିତ ଥିଲା । କଣ୍ଠସ୍ୱର, ଅଙ୍ଗ ଅବୟବ, ଏସବୁ ଭିତରୁ ଦୁଇଟି ମଧ୍ୟରେ କୌଣସି ପାର୍ଥକ୍ୟ ଆପଣ ବୁଝିପାରିଲେ ନାହିଁ ?

ଦୀପକ କରୁଣ କଣ୍ଠରେ କହିଲା : ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର । ଏବେ ବି ମୋ ମନରେ ରଂଜିତା ଛଡ଼ା ଆଉ ଦ୍ୱିତୀୟ କାହାରି ଛାୟା ନାହିଁ ।

: ସେଇଥିପାଇଁ ଆପଣଙ୍କର ଏ ଦୁର୍ଦ୍ଦଶା ହୋଇଛି । ଆପଣ କିଛି ବୁଝିପାରି ନାହାନ୍ତି । ସେଇ ସବୁ ମୁହୂର୍ତ୍ତରେ ଆପଣ ସ୍ପର୍ଶକାତର ହୋଇ ବୋଧହୁଏ ନିଜର ଅନୁଭୂତି ଶକ୍ତି ହରେଇ ଦିଅନ୍ତି । ସେଥିପାଇଁ ଆପଣ ଦୋଷୀ ନୁହନ୍ତି । ଦେହ ବିଜ୍ଞାନୀମାନେ ଏହାକୁ ଏକପ୍ରକାର ରୋଗ ବୋଲି କୁହନ୍ତି । ମଣିଷ ଦେହର ଅସଂଖ୍ୟ ତନ୍ତ୍ରୀ ସେହିପରି ଉତ୍ତେଜିତ ମୁହୂର୍ତ୍ତରେ ଏପରି ଚଞ୍ଚଳ ହୋଇଉଠନ୍ତି ଯେ, କୌଣସି କୌଣସି ତନ୍ତ୍ରୀ କାର୍ଯ୍ୟକରିବା ଶକ୍ତି ହରେଇ ବସନ୍ତି । ଫଳରେ...

ସଶରୀରେ ପରେଶ ଚକ୍ରବର୍ତ୍ତୀଙ୍କ ଆବିର୍ଭାବ ଦେଖି ସତ୍ୟବ୍ରତ ନୀରବ ହୋଇଗଲା ।

ସେ ଖଣ୍ଡିଏ କାଗଜ ଦେଖାଇ କହିଲେ : ଅର୍ଡ଼ର ଆସିଯାଇଛି ।

: ଆରେଷ୍ଟ ଅର୍ଡ଼ର ? ସତ୍ୟବ୍ରତ ସହଜ ସ୍ୱରରେ ପଚାରିଲା ।

ଦୀପକ ଚୌଧୁରୀ ଚମକି ଉଠିଲା ।

: ହଁ ଆଜ୍ଞା । ମୋର କିଛି ଉପାୟ ନାହିଁ । ମୁଁ ମୋ ରିପୋର୍ଟରେ ଦୀପକ ବାବୁଙ୍କ ସପକ୍ଷରେ ଯଥାସମ୍ଭବ ଲେଖିବାକୁ ଚେଷ୍ଟା କରିଥିଲି । କିନ୍ତୁ ପୋଷ୍ଟମର୍ଟମ ରିପୋର୍ଟଟା ମୋ ବିପକ୍ଷରେ ଗଲା । ତେଣୁ ମୁଁ ନାଚାର ।

ସତ୍ୟବ୍ରତ କହିଲା : ଆପଣ ଚିନ୍ତା କରନ୍ତୁ ନାହିଁ ମିଷ୍ଟର ଚୌଧୁରୀ । ମୁଁ ତ ଅଛି । ଆପଣଙ୍କର ଭୟର କିଛି କାରଣ ନାହିଁ । ଆଜି ପର୍ଯ୍ୟନ୍ତ ମୁଁ ଯେତୋଟି କେସ୍ ହାତକୁ ନେଇଛି, ସବୁଟି ସତ୍ୟର ଜୟ ହୋଇଛି ।

ଦୀପକ ହୁଏତ ମୂକ ପାଲଟି ଯାଇଥିଲା ।

ତା' ଆଖିର ଚାହାଣି ସ୍ଥିର ହୋଇଯାଇଥିଲା ।

ସେ ନିଃସହାୟ । ଦୋଷ ନ କରି ବି ଦୋଷୀ ସାବ୍ୟସ୍ତ ହୋଇଛି ।

ପରେଶ ଚକ୍ରବର୍ତ୍ତୀ କହିଲେ : ଆଉ ଡେରି କରନ୍ତୁ ନାହିଁ ମିଷ୍ଟର ଚୌଧୁରୀ । ଗାଡ଼ି ଅପେକ୍ଷା କରି ରହିଛି ।

: ଗାଡ଼ି ମାନେ ? ସତ୍ୟବ୍ରତ ପଚାରିଲା ।

: ହେଡ଼କ୍ୱାର୍ଟରରୁ ଗାଡ଼ି ଆସିଛି । ସେମାନେ ଦୀପକ ବାବୁଙ୍କୁ ଆଲିପୁର ନେଇଯିବେ ।

: ହୁଁ, ସତ୍ୟବ୍ରତ ଟିକିଏ ଚିନ୍ତିତ ହୋଇପଡ଼ିଲା । ମୁହୂର୍ତ୍ତେ ନୀରବ ରହି କହିଲା, କୌଣସି ପ୍ରକାର ଆଜି ରାତିକ ଅଟକେଇ ହେବ ନାହିଁ ?

: ନା ମିଷ୍ଟର ମହାପାତ୍ର । କିଛି ଉପାୟ ନାହିଁ । ଆପଣ ବରଂ ଆଲିପୁରେ ଯାଇ ଦେଖା କରିବାର ସବୁପ୍ରକାର ବ୍ୟବସ୍ଥା ମୁଁ କରାଇ ଦେବି ।

ଦୀପକ ବହୁ ଅନିଚ୍ଛା ସତ୍ତ୍ୱେ ଉଠି ଠିଆ ହେଲା ।

ଆମ ଆଡ଼େ ଆଉଥରେ ଚାହିଁଲା କରୁଣ ଭାବରେ । କହିଲା : ଆପଣ ମୋର ଏକମାତ୍ର ଆଶା ଭରସା ମିଷ୍ଟର ମହାପାତ୍ର ।

: ଆପଣ ନିଶ୍ଚିନ୍ତରେ ଯାଆନ୍ତୁ । ସପ୍ତାହକ ମଧ୍ୟରେ ଦେଖିବେ ଆପଣ ମୁକ୍ତି ପାଇଯାଇଛନ୍ତି ।

ଦୀପକ ଚାଲିଗଲା । ପରେଶ ଚକ୍ରବର୍ତ୍ତୀଙ୍କ ଆଗେ ଆଗେ ସେ ଚାଲିଥିଲା । ମନେ ହେଉଥିଲା, ଯେପରି ସେ ଶୂଳିକାଠିକୁ ଯାଉଛି ।

ଆମେ ବି ଉଠିଯାଇଥିଲୁ ପଛେ ପଛେ ।

ବାହାରେ ବହୁ ଉତ୍ସୁକ ଚାହାଣି ।

ଦୀପକର ଚାହାଣି ମାଟିଛୁଇଁ ଚାଲିଥିଲା ।

ଆମେ ଗେଷ୍ଟହାଉସ୍‌କୁ ଫେରିଯାଇଥିଲୁ । ସତ୍ୟବ୍ରତ ପୁଣି ମଉନ ବ୍ରତ ଆରମ୍ଭ କରିଦେଇଥିଲା । ଆରାମଚେଆର୍ ଉପରେ ଶୋଇଶୋଇ ତାକୁ ନିଦ ଲାଗି ଯାଇଥିଲା କି ସ୍ୱପ୍ନ ଦେଖୁଥିଲା, କହିପାରିବି ନାହିଁ ।

ମଧ୍ୟାହ୍ନ ଭୋଜନ ଶେଷ କରି ସତ୍ୟବ୍ରତ ପୁଣି ଆଖି ବୁଜିଲା ।

ମୁଁ ଉଠି ଯାଇଥିଲି ଥାନାକୁ । ପରେଶ ଚକ୍ରବର୍ତ୍ତୀଙ୍କ ସହିତ କଥା କହି ହେଲେ ସମୟ କଟାଇବି ।

ସେ କିନ୍ତୁ ଫେରି ନଥିଲେ । ଦୀପକ ସହିତ ଯାଇଥିଲେ ଆଲିପୁରକୁ ।

ଆଉ କ'ଣ କରିଥାଆନ୍ତି ! ଚୁପ୍‌ଚାପ୍ ଆସି ଗେଷ୍ଟହାଉସ୍‌ରେ, ମୋ ବିଛଣା ଉପରେ ଶୋଇପଡ଼ିଲି ।

କେତେବେଳେ କେଜାଣି, ସତ୍ୟବ୍ରତ ମୋତେ ଡାକି ଉଠାଇଲା । ମୁଁ ଆଖି ଖୋଲି ଚାହିଁଲି, ଘରେ ଲାଇଟ୍ ଜଳୁଛି ।

: କେତେ ରାତି ହେଲାଣି ?

: ମାତ୍ର ସାତଟା ଦଶ, ସତ୍ୟବ୍ରତ ହସି ହସି କହିଲା ।

ବୃଦ୍ଧ କେଆର୍‌ଟେକରଙ୍କ କଣ୍ଠସ୍ୱର ଶୁଣାଗଲା ବାହାରେ । ସେ ଗୋଟିଏ ସାନପିଲା ହାତରେ କେଟ୍‌ଲିରେ ଚା' ଆଉ କିଛି ଜଳଖିଆ ଧରି ଆମ ଘରେ ପଶୁଥିଲେ । ଜଳଖିଆ ପ୍ଲେଟ୍‌ଟା ଟେବୁଲ ଉପରେ ରଖିବା ପୂର୍ବରୁ ସତ୍ୟବ୍ରତ ଉଠିପଡ଼ି କହିଲା : ଆପଣ ନିଜେ କଷ୍ଟ କଲେ ! ମୁଁ ଜାଣିଥିଲେ ମୋଟେ ଚା' ପାଇଁ କହି ନଥାନ୍ତି ।

ବୃଦ୍ଧ ହସିଲେ । କହିଲେ : ମୋର ଚାକିରି ରହିଛି ତ କେବଳ ଆପଣମାନଙ୍କ ସୁଖସୁବିଧାର କଥା ବୁଝିବା ପାଇଁ ।

: ତା'ବୋଲି...

: ତା' ବୋଲି ନୁହେଁ ବାବା, ଏଠାରେ ଆଜି ପର୍ଯ୍ୟନ୍ତ ଯେତେ ଗେଷ୍ଟ୍ ଆସି ରହିଛନ୍ତି, ସମସ୍ତେ ମୋତେ ନିର୍ଦ୍ଦେଶ ଦେଇଛନ୍ତି ବାବା । ଆପଣ ବା ଅନୁରୋଧ କରୁଛନ୍ତି କାହିଁକି ?

ସତ୍ୟବ୍ରତ ଆଉ କିଛି କହିବା ଆଗରୁ ପରେଶ ଚକ୍ରବର୍ତ୍ତୀ ଝଡ଼ ବେଗରେ ପ୍ରବେଶ କଲେ । କହିଲେ : ବର୍ତ୍ତମାନ ମୁଁ ଫେରୁଛି କଲିକତାରୁ । ଆଜି ଗାଧୁଆ, ଖିଆ ସବୁ ବନ୍ଦ ।

: ଭୁଲିଯାଆନ୍ତୁ ନାହିଁ ମିଷ୍ଟର ଚକ୍ରବର୍ତ୍ତୀ, ଦେଶସେବା କରିବାକୁ ହେଲେ, ନିଜର ଆତ୍ମବଳୀ ଦେବାକୁ ହୋଇଥାଏ ।

ପରେଶ ଚକ୍ରବର୍ତ୍ତୀ ହୋ ହୋ ହସିଉଠି କହିଲେ : ଆପଣ ଠିକ୍ କହିଛନ୍ତି ମିଷ୍ଟର ମହାପାତ୍ର । ଆଉ କିଛି ସୂତ୍ର ପାଇଲେ ?

: ଆଉ କିଛି ସୂତ୍ର ନୁହେଁ, ସୂତ୍ର ସେଇ ଗୋଟିକ ପାଇଛି ଏବଂ ସେଇ ସୂତ୍ରଟି ସାହାଯ୍ୟରେ ମୁଁ ପ୍ରମାଣିତ କରିବି ଦୀପକ...

ହଠାତ୍ ସତ୍ୟବ୍ରତ ବୃଦ୍ଧ କେଆର୍ ଟେକର୍ଙ୍କ ମୁଖକୁ ଚାହିଁ ନୀରବ ହୋଇଗଲା ।

ବୃଦ୍ଧ ବୁଝିପାରିଥିଲେ ସତ୍ୟବ୍ରତର ଉଦ୍ଦେଶ୍ୟ ।

ଧୀରେ ଧୀରେ ସେ ଘରୁ ବାହାରି ଯାଉ ଯାଉ କହିଲେ : କୌଣସି ପ୍ରୟୋଜନ ହେଲେ ମୋତେ ଖବର ପଠାଇବ ବାବା । ଦ୍ୱିଧା କରିବାର କିଛି କାରଣ ନାହିଁ ।

ବୃଦ୍ଧ ଚାଲିଯିବା ପରେ ସତ୍ୟବ୍ରତ କହିଲା : ଭଦ୍ରଲୋକ ଖୁବ୍ ମହତ୍ ଲୋକ ।

: ଆଜିକାଲି ଦୁନିଆରେ ଲୋକ ଯେତିକି ସତ୍ ଆଉ ମହତ୍ ହେବ, ଦୁଃଖ ତା'ର ସେତିକି ମିଷ୍ଟର ମହାପାତ୍ର । ବୃଦ୍ଧ ନିମାଇ ଦାସ ତା'ର ସାକ୍ଷ୍ୟ ପ୍ରମାଣ । ପରେଶ ଚକ୍ରବର୍ତ୍ତୀ କହିଲେ ।

: ନିମାଇ ଦାସ, କାହା କଥା ଆପଣ କହୁଛନ୍ତି ?

: ଏଇ ବୃଦ୍ଧ କେଆର୍ ଟେକର୍ ।

: ତାଙ୍କର ପୁଣି ଦୁଃଖ କ'ଣ ?

: ଅଛି, ତା'ର ଗୋଟିଏ ବିକୃତ ମସ୍ତିଷ୍କ ବିକଳାଙ୍ଗ ଝିଅ ଅଛି । ତା'ରି ଭାର ବହନ କରି ବୃଦ୍ଧ ନିଜର ସମସ୍ତ ଆଶାରେ ଜଳାଞ୍ଜଳି ଦେଇଛି । ଏପରିକି ନିମାଇ ଦାସ ବହୁତ ଥର କାଶୀବାସୀ ହେବାକୁ ଚେଷ୍ଟା କରି ମଧ୍ୟ ପାରିନାହିଁ ।

କିନ୍ତୁ ବୃଦ୍ଧଙ୍କୁ ଦେଖିଲେ, ତାଙ୍କ ଜୀବନରେ ଯେ ଗୋଟାଏ ସମସ୍ୟା ଅଛି ବୁଝିହୁଏ ନାହିଁ ତ !

: ମଣିଷର ଦେହ ମୁହଁରେ ସବୁବେଳେ କ'ଣ ତା'ର ମନର ଛାପ ପ୍ରତିଫଳିତ ହୁଏ ମିଷ୍ଟର ମହାପାତ୍ର । ତା'ଛଡ଼ା ନିମାଇ ଦାସ ଅତିମାତ୍ରାରେ ଧର୍ମପରାୟଣ । ସବୁ ପ୍ରଭୁଙ୍କ ଇଚ୍ଛା କହି, ସେ ତା'ର ମନ, ଜୀବନ ସବୁ ସେହି ଭଗବାନଙ୍କ ପାଦତଳେ ସମର୍ପଣ କରିଦେଇଛି । ତେଣୁ ଦୁଃଖ, କଷ୍ଟ, ଦୈନ୍ୟ କେହି ତା'ର ପାଖ ପଶିପାରୁ ନାହାନ୍ତି ।

: ଆପଣ କ'ଣ କେବେ ତାଙ୍କର ଝିଅକୁ ଦେଖିଛନ୍ତି ମିଷ୍ଟର ଚକ୍ରବର୍ତ୍ତୀ ?

: ନା, ଦେଖି ନାହିଁ । ତେବେ ନିମାଇ ଦାସ ଥରେ କହୁଥିଲା । ସହଜରେ ବି ସେ କାହାକୁ କହେ ନାହିଁ ତା' ଦୁଃଖ କାହାଣୀ । କେଜାଣି କାହିଁକି ସେଦିନ ମୋ ଆଗରେ କହି ପକାଇଥିଲା । ସବୁଠୁ ମିଷ୍ଟି କେଉଁଠି ଜାଣନ୍ତି ମିଷ୍ଟର ମହାପାତ୍ର ? ନିମାଇ ଥିଲା 'ବାଉଲ' । ମାନେ ଚାରଣ । ଗୀତଗାଇ ବୁଲୁଥିଲା ଗ୍ରାମରୁ ଗ୍ରାମାନ୍ତର । ଅଥଚ ସେଇ ଝିଅଟି, ତା'

ଜୀବନର ପଥ ବଦଳାଇ ଦେଲା । ସନ୍ନ୍ୟାସ ଜୀବନରୁ ତାକୁ ଟାଣି ଆଣିଲା ଗୃହସ୍ଥ ଜୀବନକୁ । ଯା'ଫଳରେ ନିମାଇ ଝିଅଟିର ଭରଣପୋଷଣ ପାଇଁ ଚାକିରି କରିବାକୁ ବାଧ ହେଲା । କିନ୍ତୁ ସେ ଝିଅ ତା' ନିଜର ନୁହେଁ ।

: ତା'ହେଲେ ? ସତ୍ୟବ୍ରତ କଣ୍ଠରେ ଉତ୍କଣ୍ଠା ଫୁଟି ଉଠିଲା ।

ପରେଶ ଚକ୍ରବର୍ତ୍ତୀ କହିଲେ : ଦିନେ ରାତିରେ, ନିମାଇ ତା' କୁଡ଼ିଆକୁ ଫେରିଲା ବେଳେ ଗଙ୍ଗାର କୌଣସି ଏକ ପଠା ଉପରୁ ଶୁଣିଥିଲା କାହାର କ୍ଷୀଣ ଆର୍ତ୍ତ କଣ୍ଠ । ନିମାଇ ଆଗେଇ ଯାଇଥିଲା । ଉଦ୍ଧାର କରିଥିଲା ସେଇ ଝିଅଟିକୁ । ତା'ର ସର୍ବାଙ୍ଗରେ ଅଗ୍ନି ଦଗ୍‌ଧର ଚିହ୍ନ ସ୍ପଷ୍ଟ ।

: ସର୍ବାଙ୍ଗରେ ଅଗ୍ନି ଦଗ୍‌ଧର ଚିହ୍ନ ? ସତ୍ୟବ୍ରତ ଅସ୍ୱାଭାବିକ ଭାବରେ ଚିତ୍କାର କରି ଉଠିଥିଲା ।

ଆମେ ଆଶ୍ଚର୍ଯ୍ୟ ହୋଇଯାଇଥିଲୁ ।

: କ'ଣ ହେଲା ? ଆପଣ ଚମକି ଉଠିଲେ ଯେ ।

: ନା, କିଛି ନୁହେଁ । ତା'ପରେ କୁହନ୍ତୁ । ସତ୍ୟବ୍ରତର ସ୍ୱର ପୁଣି ସ୍ୱାଭାବିକ ହୋଇ ଉଠିଥିଲା ।

: ଆଉ କ'ଣ ? ତା'ପରେ ଆଉ କିଛି ଘଟଣା ନାହିଁ । ନିମାଇ ତୋଳି ଆଣିଥିଲା ସେଇ ଅସହାୟା ଝିଅଟିକୁ । ବହୁ କଷ୍ଟରେ ବଞ୍ଚାଇ ଥିଲା ତାକୁ ।

: ଏହା କେତେଦିନର ଘଟଣା ?

: ମୁଁ ଠିକ୍ କହିପାରିବି ନାହିଁ । ସେଦିନ ନିମାଇ ଆଖିରେ ଲୁହ ଦେଖି ମୁଁ ଆଉ ପଚାରି ପାରି ନଥିଲି କିଛି । ସେଉଠୁ ସେ କାହାଣୀର ଶେଷ ହୋଇଥିଲା ।

: ହୁଁ, ସତ୍ୟବ୍ରତ ଗୋଟିଏ ଦୀର୍ଘଶ୍ୱାସ ପକାଇ ନୀରବ ହେଲା ।

ପରେଶ ଚକ୍ରବର୍ତ୍ତୀ କହିଲେ : ଏଥର ଆପଣଙ୍କ କାହାଣୀ କୁହନ୍ତୁ ମିଷ୍ଟର ମହାପାତ୍ର । କୁହନ୍ତୁ ରଂଜିତାର ହତ୍ୟାକାରୀ ସମ୍ବନ୍ଧରେ ଆପଣ କି ସୂତ୍ର ପାଇଛନ୍ତି ।

ସତ୍ୟବ୍ରତ ଟିକିଏ ଚିନ୍ତା କଲା । କହିଲା : ପାଇଛି ଗୋଟିଏ ସୂତ୍ର । ତେବେ ମୋର ଆତ୍ମବିଶ୍ୱାସ ଜନ୍ମିଛି ଯେ, ରଂଜିତାର ହତ୍ୟାକାରୀ ଦୀପକ ନୁହେଁ, ଆଉ ଜଣେ ଏବଂ ସେ ଜଣକ ହେଉଛି ଗୋଟିଏ ନାରୀ ।

: ନାରୀ ! ଅସମ୍ଭବ । ଗୋଟିଏ ନାରୀ ପକ୍ଷରେ ଆଉ ଗୋଟିଏ ନାରୀର ଶ୍ୱାସରୁଦ୍ଧ କରି ହତ୍ୟା କରିବା ମୋଟେ ସମ୍ଭବ ନୁହେଁ ।

ସତ୍ୟବ୍ରତ ନୀରବରେ ଆଟାଚି କେସ୍‌ଟି କାଢ଼ି, ପକେଟ ଭିତରୁ ଗୋଟିଏ କାଗଜ ପୁଡ଼ିଆ ଖୋଲିଲା । ଇଲେକ୍‌ଟ୍ରିକ୍ ଆଲୋକରେ ପୁଡ଼ିଆ ଭିତରୁ ଏକ ଉଜ୍ଜ୍ୱଳ ବସ୍ତୁ ଝଲସି ଉଠିଲା ।

ମୁଁ ଏବଂ ପରେଶବାବୁ ସତ୍ୟବ୍ରତର ଆହୁରି ଟିକିଏ ପାଖକୁ ଘୁଞ୍ଚିଗଲୁ ।

ସତ୍ୟବ୍ରତ ସେହି ପଦାର୍ଥଟିକୁ ବାଁ ହାତର ଚକି ଉପରେ ଥୋଇ କହିଲା : ଏଇଟା କ'ଣ ହୋଇପାରେ ?

ଆମେ ଦେଖିଲୁ, ପଦାର୍ଥଟି ହରଡ଼ ଆକୃତିର ଏକ ଲାଲ ପଥର ।

ପରେଶ ଚକ୍ରବର୍ତ୍ତୀ କହିଲେ : ଏହା କୌଣସି ଏକ ଅଳଙ୍କାରରୁ ବୋଧହୁଏ ଖସି ପଡ଼ିଛି ।

: ହଁ, ଆପଣ ଠିକ୍ କହିଛନ୍ତି ମିଷ୍ଟର ଚକ୍ରବର୍ତ୍ତୀ । ଏହା ହୁଏତ ସେଇ ନାରୀଟିର କାନଫୁଲ ମଧ୍ୟରୁ ଖସି ପଡ଼ିଛି ।

: କେଉଁ ନାରୀଟିର ?

: ଯିଏ ରଂଜିତାକୁ ହତ୍ୟା କରିଛି ।

: ମାନେ ?

: ମୁଁ ଏଇଟିକୁ ପାଇଛି ମାଧବୀ ଭିଲାର ସେହି ଅଦରକାରୀ ଘରଟା ଭିତରୁ । ଯେଉଁ ଘରଟାରେ ମୁଁ ଆପଣଙ୍କୁ ରଂଜିତା ହାତର ଆଙ୍ଗୁଳି ଚିହ୍ନ ଦେଖାଉଥିଲି ।

: ତା'ହେଲେ...

ପରେଶ ଚକ୍ରବର୍ତ୍ତୀ ଚିନ୍ତିତ ହୋଇ ପଡ଼ିଥିଲେ ।

ସତ୍ୟବ୍ରତ କହିଲା : ନିଶ୍ଚୟ ଏହା ଗଭୀର ଚିନ୍ତାର ବିଷୟ । କିନ୍ତୁ ଏଠାକାର ଅନୁସନ୍ଧାନ ପରେ, ଦୀପକ ମୁହଁରୁ ତା' ନୈଶ ଅଭିଜ୍ଞତାର କାହାଣୀ ଶୁଣିବା ପରେ, ମୁଁ ବୁଝିପାରିଛି ଯେ, ରଂଜିତା ଛଡ଼ା ନିଶାର୍ଦ୍ଧରେ ଆଉ ଗୋଟିଏ ଝିଅ ଆସୁଥିଲା ଏଇ ମାଧବୀ ଭିଲାକୁ ଏବଂ ସେ ମନପ୍ରାଣରେ ଚାହୁଁଥିଲା ଦୀପକକୁ ।

ପରେଶ ଚକ୍ରବର୍ତ୍ତୀ ଅବିଶ୍ୱାସ ଦୃଷ୍ଟିରେ ଅନାଇ ରହିଲେ ସତ୍ୟବ୍ରତ ମୁହଁକୁ ।

: ହଁ ମିଷ୍ଟର ଚକ୍ରବର୍ତ୍ତୀ । ଆପଣ ବିଶ୍ୱାସ କରନ୍ତୁ ନ କରନ୍ତୁ ମୋର ଧାରଣା ସତ୍ୟ ।

: ଦୀପକ ତା'ହେଲେ ଆମ ଆଗରେ ଅସଲ ସତ୍ୟଟି ଗୋପନ କରିଗଲା ?

: ନା, ଦୀପକ ମଧ୍ୟ ବୁଝିପାରି ନଥିଲା କିଛି । ରାତ୍ରିର ଅନ୍ଧକାର ଭିତରେ ଯାହା ଘଟୁଥିଲା, ସେ ଭାବୁଥିଲା ସବୁ ରଂଜିତାର କୀର୍ତ୍ତି । ଫଳରେ...

: କୁହନ୍ତୁ ମିଷ୍ଟର ମହାପାତ୍ର । ତା'ପରେ କ'ଣ ହେଲା ?

: ତା'ପରେ ଯେତେବେଳେ ସେହି ଝିଅଟି ବୁଝିପାରିଲା ଯେ, ଦୀପକର ରଂଜିତା ସହିତ ବିବାହ ହେବାର ସ୍ଥିର ହୋଇଯାଇଛି, ସେତେବେଳେ ସେ ହୁଏତ କ୍ଷୁବ୍ଧ ହୋଇଥିଲା । ଖାଲି କ୍ଷୁବ୍ଧ ନୁହେଁ, ରଂଜିତାଠାରୁ ପ୍ରତିଶୋଧ ନେବାର ନିଶା ତାକୁ ଉନ୍ମାଦିନୀ କରି ପକାଇଥିଲା ।

ସେ ଅପେକ୍ଷା କରିଥିଲା ସୁଯୋଗର ଏବଂ ସେଇ ସୁଯୋଗ ହାତ ମୁଠାରେ ପାଇ ଆଉ ଅବହେଳା କରି ନଥିଲା ।

ରଂଜିତା ଯେତେବେଳେ ଦୀପକର ଘରୁ ବାହାରି ଯାଉଥିଲା, ସେତିକିବେଳେ ସେ ତା'ର ଗଳା ଚିପି ଧରିଥିଲା ଏବଂ ଟାଣି ଟାଣି ନେଇଥିଲା ସେଇ ଘର ଭିତରକୁ ।

ଦୁହିଁଙ୍କ ମଧ୍ୟରେ ନିଶ୍ଚୟ ତୁମୁଳ ଯୁଦ୍ଧ ହୋଇଥିଲା ।

କିନ୍ତୁ ସେ ଯୁଦ୍ଧରେ ପରାସ୍ତ ହୋଇଥିଲା ରଂଜିତା ।

: ଏ ଯେ ଏକ ଅଲୌକିକ କାହାଣୀ ପରି ମନେହେଉଛି ମିଷ୍ଟର ମହାପାତ୍ର । ଏଇ ଛୋଟ ଲାଲ ପଥରଟିକୁ ଭିତ୍ତି କରି ଆପଣ କ'ଣ ଏତେ ବଡ଼ ଗୋଟାଏ ହତ୍ୟାକାଣ୍ଡର ସମସ୍ୟା ସମାଧାନ କରିପାରିବେ ?

ସତ୍ୟବ୍ରତ ହସିଲା ବିଜୟର ହସ । କହିଲା : ସେ ଆତ୍ମବିଶ୍ୱାସ ମୋର ଅଛି ମିଷ୍ଟର ଚକ୍ରବର୍ତ୍ତୀ । ମୋତେ ଆଉ ଦିନେ ଦୁଇଦିନ ସମୟ ଦିଅନ୍ତୁ । ଏଇ କ୍ଷୁଦ୍ର ଲାଲ ପଥର ଟିକକ ଗୋଟାଏ ହତ୍ୟାକାଣ୍ଡର ହତ୍ୟାକାରୀକୁ ଖୋଜି ବାହାର କରିବା ପାଇଁ ଯଥେଷ୍ଟ ।

ପରେଶ ଚକ୍ରବର୍ତ୍ତୀଙ୍କର ସତ୍ୟବ୍ରତ କଥା ଉପରେ ହୁଏତ ଆତ୍ମବିଶ୍ୱାସ ଜନ୍ମୁ ନଥିଲା । ସେ କେତୋଟି ମୁହୂର୍ତ୍ତ ନୀରବ ରହି କହିଲେ : ଦେଖନ୍ତୁ, ଆପଣଙ୍କ ସଫଳତା ସହିତ ମୋର କୃତିତ୍ୱର ସୁନାମ ବି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇ ରହିଛି ।

ସତ୍ୟବ୍ରତ କହିଲା : ଆଜି ଦୀପକକୁ ସ୍ଥାନାନ୍ତର କରିବା ଫଳରେ ମୋର ଟିକିଏ ଅସୁବିଧା ହେଲା ।

: କିପରି ?

: ମୁଁ ଆଶା କରୁଥିଲି ରଂଜିତାର ହତ୍ୟାକାରୀ ଦିନେ ଦୁଇଦିନ ମଧ୍ୟରେ ଆଉ ଥରେ ମାଧବୀ ଭିଲାକୁ ଆସିବ ।

ପରେଶ ଚକ୍ରବର୍ତ୍ତୀ କହିଲେ : ମୋର କରିବାର କିଛି ଉପାୟ ନଥିଲା ମିଷ୍ଟର ମହାପାତ୍ର । ଆପଣଙ୍କୁ ତ ହେଡ଼କ୍ୱାର୍ଟରର ଅର୍ଡ଼ର ଦେଖାଇ ଥିଲି ।

: ନା, ମୁଁ ଆପଣଙ୍କ ଦୋଷ ଦେଉ ନାହିଁ । ତେବେ ଆଉ ଗୋଟିଏ ଦୁଇଟି ରାତି ଦୀପକ ଯଦି ମାଧବୀ ଭିଲାରେ ରହିଥାଆନ୍ତା, ତେବେ ମୋର ଟିକିଏ ସୁବିଧା ହୋଇଥାଆନ୍ତା । ଛାଡ଼ନ୍ତୁ... ସେ ନାହିଁ ଯେତେବେଳେ ଗୋଟାଏ କିଛି ବିକଳ୍ପ ବ୍ୟବସ୍ଥା କରିବାକୁ ହେବ ।

: ବିକଳ୍ପ ବ୍ୟବସ୍ଥା ମାନେ ? ପରେଶ ଚକ୍ରବର୍ତ୍ତୀ ପଚାରିଲେ ।

ସତ୍ୟବ୍ରତ ମୋ ଆଡ଼େ ଚାହିଁ ହସିଲା ।

ମୁଁ ତା' ମନର ଭାବ ବୁଝିପାରି କହିଲି : ଆପଣ ବୁଝିପାରୁ ନାହାନ୍ତି ମିଷ୍ଟର ଚକ୍ରବର୍ତ୍ତୀ ! ଦୀପକର ଭୂମିକା ଏଥର ମୋର । ମୁଁ ଦୀପକ ଭୂମିକାରେ ଏହା ପରେ ଅଭିନୟ କରି ଚାଲିବି ଅପରାଧୀ ଧରା ପଡ଼ିବା ଯାଏ ।

: ଓଃ ! ମିଷ୍ଟର ଚକ୍ରବର୍ତ୍ତୀ ହସୁ ହସୁ ଉଠି ଠିଆ ହେଲେ । କହିଲେ, ବେଶି ଡେରି କିନ୍ତୁ କରିବେ ନାହିଁ ।

: ମାନେ ?

: ଭୋଜନ ବ୍ୟବସ୍ଥାଟା ଆଜି ବି ଆମ ସେଇଠି ।

ସତ୍ୟବ୍ରତ ମୋ ମୁହଁକୁ ଚାହିଁ କହିଲା : ଶୁଣୁଛୁ ସବ୍ୟ, ମିଷ୍ଟର ଚକ୍ରବର୍ତ୍ତୀ ଆମକୁ ଖାଲି ଧାରୁଆ କରୁଛନ୍ତି । ଆମେ କ'ଣ କେବେ ତାଙ୍କ ଋଣ ପରିଶୋଧର ସୁଯୋଗ ପାଇବା ?

ପରେଶ ଚକ୍ରବର୍ତ୍ତୀ କହିଲେ : ସେ କଥା ପରେ ଦେଖାଯିବ । ତା'ହେଲେ କେତେବେଳେ ଆସୁଛନ୍ତି ଆଜି ?

: ଯିବୁ, ଆପଣ ଆସନ୍ତୁ । ଆମେ ନଅଟା ଭିତରେ ପହଞ୍ଚିଲେ ଚଳିବ ।

ପରେଶ ଚକ୍ରବର୍ତ୍ତୀ ଚାଲିଗଲେ । ସତ୍ୟବ୍ରତ କେତୋଟି ମୁହୂର୍ତ୍ତ ନୀରବରେ ବସିବା ପରେ କହିଲା : ଭଦ୍ରଲୋକଙ୍କୁ ଦେଖ୍ ତ, ଘରେ ଅଛନ୍ତି ?

: କୋଉ ଭଦ୍ରଲୋକ ?

: ଆରେ କେଆର୍ ଟେକର୍, ନିମାଇ ବାବୁ ।

: ମୁଁ ଉଠି ଚାଲିଗଲି ।

ଭଦ୍ରଲୋକ କିନ୍ତୁ ନଥିଲେ ।

କୁଆଡ଼େ ଯାଇଥିଲେ କେହି କହିପାରିଲେ ନାହିଁ ।

ମୁଁ ଫେରିଆସିଲା ବେଳକୁ ସତ୍ୟବ୍ରତ କହିଲା : ତୋତେ କିନ୍ତୁ ଆଜି ମାଧବୀ ଭିଲାରେ ରାତି କଟେଇବାକୁ ପଡ଼ିବ ।

: ମୋର ଆପତ୍ତି ନାହିଁ, କିନ୍ତୁ ତୋର ଏଇଟା ବୃଥା ଚେଷ୍ଟା ।

: ବୃଥା ଚେଷ୍ଟା ମାନେ ?

: ଆଉ ତୁ କ'ଣ ଭାବିଛୁ ସେ ଯଦି ପ୍ରକୃତରେ କେହି ଥାଏ, ଦୀପକ ସମ୍ବନ୍ଧରେ ସେ କିଛି ଖବର ରଖୁ ନାହିଁ ? ସେ ଠିକ୍ ଜାଣି ପାରିଥିବ ଦୀପକର ଆରେଷ୍ଟ ହେବା କଥା । ତେଣୁ ମାଧବୀ ଭିଲାରେ ମୋର ରାତ୍ରିଯାପନ ବୃଥା ଛଡ଼ା ଆଉ କ'ଣ ହୋଇପାରେ ?

ସତ୍ୟବ୍ରତ କହିଲା : ସେ କଥା ପୂର୍ବରୁ ମୁଁ ଚିନ୍ତା କରିଛି । ତଥାପି ଗୋଟାଏ ଚେଷ୍ଟା । ଯଦି ସହଜ ଭାବରେ କାର୍ଯ୍ୟ ହାସଲ କରିହେଲା, ତା'ହେଲେ ଖୋଳ ପର୍ବତ, ମାରେ ମୂଷା କରିବାକୁ ପଡ଼ିବ ନାହିଁ ।

ସେଦିନ ଖିଆପିଆ ଶେଷରେ ଆମେ ମାଧବୀ ଭିଲାକୁ ଗଲୁ ।

ମୁଁ ଶୋଇଲି ଦୀପକର ଖଟ ଉପରେ ।

ସତ୍ୟବ୍ରତ ରହିଲା ବାହାରେ, ସେ ରାତ୍ରିର ମାଧବୀ ଭିଲାକୁ ଭଲ ଭାବରେ ପରୀକ୍ଷା କରି ଦେଖିବ ।

କିନ୍ତୁ ରାତ୍ରି ଯେତିକି ଗଭୀର ହେବାକୁ ଲାଗିଲା, ମୋ ଆଖି ଧୀରେ ତନ୍ଦ୍ରାଛନ୍ନ ହୋଇପଡ଼ିଲା । ଏକ ସମୟରେ ମୁଁ ଶୋଇ ପଡ଼ିଲି ।

କେତେ ରାତି ହେବ କେଜାଣି, ବାହାରେ ସତ୍ୟବ୍ରତର ଚିତ୍କାର ଶୁଣି ମୋ ନିଦ ଭାଂଗିଗଲା । ମୁଁ ବିଛଣାରୁ ଉଠି ଛୁଟିଗଲି ବଗିଚା ଆଡ଼କୁ ।

ସତ୍ୟବ୍ରତ ଅନ୍ଧକାର ଭିତରେ କାହାକୁ ଜଣକୁ ଜାବୁଡ଼ି ଧରିଥିଲା । ଚିତ୍କାର କରି କହୁଥିଲା : କିଏ ତୁମେ । ରାତିରେ କାହିଁକି ଏଠାକୁ ଆସିଥିଲ ?

ସେ କିନ୍ତୁ ଆପ୍ରାଣ ଚେଷ୍ଟା କରୁଥିଲା ସତ୍ୟବ୍ରତ କବଳରୁ ମୁକ୍ତି ପାଇଁ । ମୁଁ ସେଠାରେ ପହଞ୍ଚିବା ମାତ୍ରକେ ସେ ମୋତେ ଲୋକଟାକୁ ଧରିବାକୁ କହି ହାତରୁ ଖସି ପଡ଼ିଥିବା ଟର୍ଚ୍ଚଟା ତଳୁ ଉଠାଇବା ପାଇଁ ନଇଁ ପଡ଼ିଲା । ଟର୍ଚ୍ଚଟା ଜଳେଇବା ପୂର୍ବରୁ ଲୋକଟା କହି ଉଠିଲା : ମୋତେ ଛାଡ଼ି ଦିଅନ୍ତୁ ସାର୍, ମୁଁ ତରୁଣକାନ୍ତି...

: ତରୁଣକାନ୍ତି ? ସେତେବେଳକୁ ସତ୍ୟବ୍ରତ ହାତର ଟର୍ଚ୍ଚଟା ଜଳି ଉଠିଥିଲା । ତମେ ଏଠାରେ କ'ଣ କରୁଥିଲ ତରୁଣକାନ୍ତି ?

ତରୁଣକାନ୍ତି ଗୋଟିପଣ ଥରୁଥିଲା । ହାତଯୋଡ଼ି କହିଲା : କ୍ଷମା କରିବେ ସାର୍ । ରିସର୍ଚ୍ଚ କରିବାକୁ ଆସିଥିଲି । ଆପଣମାନେ ତ ମୋତେ ଥରଟିଏ ବି ଚାନ୍‌ସ ଦେଲେ ନାହିଁ । ମୁଁ ଲୁଚି ଲୁଚି ରଂଜିତାର ହତ୍ୟାକାରୀକୁ ଖୋଜୁଥିଲି ।

: ହୁଁ । ମୁଁ ଯଦି ଏଇକ୍ଷିଣା ରଂଜିତାର ହତ୍ୟାକାରୀ ରୂପେ ତୁମକୁ ଆରେଷ୍ଟ୍ କରେ ?

: ନା ସାର୍ । ବିଶ୍ୱାସ କରନ୍ତୁ ରଂଜିତାକୁ ମୁଁ ହତ୍ୟା କରି ନାହିଁ । ମୁଁ ତାକୁ ଭଲ ପାଉଥିଲି ସାର୍ । ସେଇଥିପାଇଁ ତ... ସେଇଥିପାଇଁ ତ...

ସତ୍ୟବ୍ରତ ତରୁଣକାନ୍ତିର ମୁଣ୍ଡବାଳ ଭିତରେ ହାତ ପୂରାଇ, ଦୁଇ ଚାରିଥର ହଲାଇ ଦେଇ କହିଲା : ଆଉ ଦିନେ ତମେ ମାଧବୀ ଭିଲାକୁ ଆସିବ ନାହିଁ ତ ?

: ନା ସାର୍ ।

ମୋତେ କହିଲା ଛାଡ଼ିଦେବା ପାଇଁ ।

ମୋ ହାତର ବନ୍ଧନମୁକ୍ତ ହେବା ସଂଗେ ସଂଗେ ତରୁଣକାନ୍ତି ଊର୍ଦ୍ଧ୍ୱଶ୍ୱାସରେ ଛୁଟି ପଳାଇଲା । ସତ୍ୟବ୍ରତ କହିଲା : ହୁଏତ ତୋ କଥା ଠିକ୍ ସବ୍ୟ ।

: କୋଉ କଥା ?

: ସେ ଦୀପକର ଆରେଷ୍ଟ୍ ହେବା କଥା ବୁଝିପାରିଛି ।

: ସ୍ୱାଭାବିକ୍ । କାରଣ ସେ ଯିଏ ହେଉ ପଛକେ, ତା'ର ଘର ନିଶ୍ଚୟ ଏଇ ଆଖପାଖରେ କେଉଁଠି ହୋଇଥିବ । ଲୋକମୁଖରୁ ସେ ଦୀପକର ଆରେଷ୍ଟ୍ ହୋଇ ଆଲିପୁର ଚାଲାଣ ହୋଇଯିବା କଥା ଶୁଣି ପାରିଥିବ ।

ଆମେ ବଗିଚାରୁ ଫେରି ଆସିଥିଲୁ ଦୀପକର ଶୋଇବା ଘର ଭିତରକୁ ।

ସତ୍ୟବ୍ରତ ହାତଘଡ଼ିକୁ ଚାହିଁ କହିଲା : ଚାରିଟା ବାଜିଲାଣି । ଆଉ ସେ ଆସିବା କଥା ନୁହେଁ । ଆଉ ହୁଏତ ମାଧବୀ ଭିଲାରେ କେବେ ତା'ର ଛାୟା ଦିଶିବ ନାହିଁ ।

ମୁଁ କହିଲି : ଏବେ ଫେରିଯିବା ଚାଲେ ଗେଷ୍ଟ୍‌ହାଉସ୍‌କୁ ।

ସେତିକିବେଳେ ବାହାର କବାଟରେ କାହାର କରାଘାତ ଶୁଣାଗଲା । ସତ୍ୟବ୍ରତ ଦରଜା ଖୋଲିଦେଲା ।

ଶଙ୍କର ଦାସ ଅଧିକାରୀ ?

: ଆପଣ, ହଠାତ୍ ? କଥା କ'ଣ ?

ଶଙ୍କର ଦାସ ଅଧିକାରୀ କହିଲେ : ପ୍ରତିଦିନ ଏତିକିବେଳେ ମୁଁ ପ୍ରାତଃଭ୍ରମଣରେ ବାହାରିଥାଏ । ଆଜି ବାହାରି ଘରେ ଆଲୋକ ଜଳୁଥିବାର ଦେଖି ଭାବିଲି, ନିଶ୍ଚୟ ଆପଣମାନେ ଅଛନ୍ତି ।

: କିଛି କହିବାର ଅଛି ? ସତ୍ୟବ୍ରତ ପଚାରିଲା ।

: ନା, ତେବେ ଜାଣିବାର ଆଗ୍ରହଟାକୁ ଦମନ କରିପାରିଲି ନାହିଁ । ସେଇଥିପାଇଁ ଆପଣଙ୍କୁ ଡିଷ୍ଟର୍ବ କଲି ।

: ଜଣେଇବା ଭଳି ଏପର୍ଯ୍ୟନ୍ତ କିଛି ଜଣା ପଡ଼ି ନାହିଁ । ସମୟ ହେଲେ ନିଶ୍ଚୟ ସବୁ ଜାଣିବେ ।

ଶଙ୍କର ଦାସ ଅଧିକାରୀ ହସିଲେ । କହିଲେ : ବୃଥା ଚେଷ୍ଟା ଆପଣମାନଙ୍କର । ମୁଁ ପାଖ ଘରର ପ୍ରତିବେଶୀ । ଆପଣ କ'ଣ ମୋଠାରୁ ବେଶି ଜାଣନ୍ତି ? ଫେରିଯାଆନ୍ତୁ । ନିଜ ନିଜ କର୍ମସ୍ଥଳୀକୁ ଫେରିଯାଆନ୍ତୁ । ଏଠି ଖାଲି ଚକ୍ଷୁକୁଟା ସାର ହେବ ।

ଶଙ୍କର ଦାସ ଅଧିକାରୀ ତା'ପରେ ନିଜ ବାଟରେ ଚାଲିଯାଇଥିଲେ ।

ସତ୍ୟବ୍ରତ କହିଲା : ଅର୍ଦ୍ଧପାଗଳ । ଭଦ୍ରଲୋକ ମାଷ୍ଟରୀ କରି କରି ପିଲାମାନଙ୍କୁ ଉପଦେଶ ଦେଇ ଦେଇ ମନେ କରୁଛନ୍ତି, ସମସ୍ତଙ୍କୁ ଉପଦେଶ ବିତରଣ କରିବା ପାଇଁ ଭଗବାନ ତାଙ୍କୁ ପୃଥିବୀକୁ ପଠାଇଛନ୍ତି । ଯେତେ ସବୁ ପାଗଳାମୀ ।

ସତ୍ୟବ୍ରତ ନୀରବ ରହିଲା ।

ମୁଁ ବି ।

କିଛି ସମୟ ପରେ କହିଲା : ଚା'ଲେ, ଗେଷ୍ଟ୍ ହାଉସ୍‌କୁ ଫେରିଯିବା । ଟିକିଏ ବିଶ୍ରାମ କରି ବାହାରିବାକୁ ପଡ଼ିବ ।

: କୁଆଡ଼େ ?

ମୋ ପ୍ରଶ୍ନର ଆଉ କିଛି ଉତ୍ତର ପାଇଲି ନାହିଁ । ସତ୍ୟବ୍ରତ ସଂଗରେ ବାହାରକୁ ବାହାରି ଗଲା ।

ଥାନା ପାଖରେ ପହଞ୍ଚିଲା ବେଳକୁ ପ୍ରାୟ ପାଞ୍ଚଟା ବାଜି ଯାଇଥିଲା । ସତ୍ୟବ୍ରତ କହିଲା : ନା, ଏଇକ୍ଷିଣା ଯାଇ ଶୋଇ ପଡ଼ିଲେ ଦଶଟା ପୂର୍ବରୁ ଆଉ ନିଦ ଭାଂଗିବ ନାହିଁ । ବରଂ ଚାଲେ ଆମେ ପରେଶ ବାବୁଙ୍କ ନିଦ ଭାଂଗି ତାଙ୍କୁ ଆମ ସାଂଗରେ ନେଇ ବାହାରିଯିବା ।

: କୁଆଡ଼େ ?

: ଘାଟିମୁଣ୍ଡକୁ ।

: ଘାଟିଟା କେଉଁଠି ?

: ଠିକଣାଟା ପରେଶ ବାବୁଙ୍କୁ ଜଣା ।

ଆମେ ଥାନା ଭିତରକୁ ପଶିଲୁ । ଠିକ୍ ପଛଆଡ଼କୁ କ୍ୱାର୍ଟର ।

ପରେଶ ବାବୁଙ୍କ ନିଦ ଭାଂଗିବାଯାଏ ଆମକୁ ଯିବାକୁ ପଡ଼ିଲା ନାହିଁ । ସ୍ୱୟଂ ସେ ତାଙ୍କ ବାଇଗଣ ଗଛରେ ପାଣି ଢାଳୁଥିଲେ ।

ଆମକୁ ଦେଖି ଉଚ୍ଛ୍ୱସିତ ଆନନ୍ଦରେ କହିଉଠିଲେ : ଆସନ୍ତୁ, ଆସନ୍ତୁ । ଚା' ରେଡ଼ି । ବୌଦି ଅପେକ୍ଷା କରିଛନ୍ତି ।

ମୁଁ କହିଲି : ଏତେ ସକାଳୁ ?

ପରେଶ ଚକ୍ରବର୍ତ୍ତୀ କିଛି ଉତ୍ତର ଦେବା ଆଗରୁ ଗୋଟିଏ କନେଷ୍ଟବଲ ଛୁଟି ଆସୁଥିବାର ଦେଖିଲେ ।

: କ'ଣ କିରେ ?

: ଗୋଟାଏ ସୁଇସାଇଡ୍ କେସ୍ ଆଜ୍ଞା !

: ସୁଇସାଇଡ୍ ? ଆମେ ସମସ୍ତେ ବୋଧହୁଏ ଏକାସଂଗରେ ଚମକି ଉଠିଥିଲୁ । ପୁଣି କିଏ ସୁଇସାଇଡ୍ କଲା ? ପରେଶ ଚକ୍ରବର୍ତ୍ତୀ ପଚାରିଲେ ।

କନେଷ୍ଟବଲଟି ଫେରିଯାଇଥିଲା ।

ଆମେ ସମସ୍ତେ ତରବର ହୋଇ ଘଟଣାଟା ଜାଣିବା ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଥିଲୁ ।

ଏ ଯେ ନିମାଇ ଦାସ । ଗେଷ୍ଟ୍ ହାଉସ୍‌ର କେଆର୍ ଟେକର୍ ।

ବିମର୍ଷ ମନରେ, ବୋଧହୁଏ ପରେଶ ଚକ୍ରବର୍ତ୍ତୀଙ୍କୁ ଅପେକ୍ଷା କରିଥିଲା । ଆମ ସମସ୍ତଙ୍କୁ ଏକା ସଂଗରେ ଦେଖି ତା' ଆଖିରୁ ଲୋତକଧାରା ଗଡ଼ି ଆସିଲା ।

: ତମର କ'ଣ ହେଲା ନିମାଇ । ତମେ କାନ୍ଦୁଛ କାହିଁକି ? ପରେଶ ଚକ୍ରବର୍ତ୍ତୀ ପଚାରିଲେ ।

: ମୋର ସବୁ ଶେଷ ହୋଇଯାଇଛି ଆଜ୍ଞା । ରଜନୀ ଆତ୍ମହତ୍ୟା କରିଛି ।

: କାହିଁକି ?

ନିମାଇ ଦାସ ଖଣ୍ଡିଏ ବନ୍ଦ ଲଫାପା ବଢ଼ାଇ ଦେଲେ ପରେଶ ବାବୁଙ୍କ ହାତକୁ । କହିଲେ : ଏଥିରେ ଆପଣଙ୍କ ନାଁ ଲେଖା ଅଛି ଆଜ୍ଞା । ଏଇଟିକୁ ସେ ଦାନ୍ତରେ କାମୁଡ଼ି ଧରି ଆତ୍ମହତ୍ୟା କରିଛି । ମୋର ଏତେ ବର୍ଷର ସାଧନା ସବୁ ବ୍ୟର୍ଥ ହୋଇଛି । ସବୁ ସେଇ କରୁଣାମୟଙ୍କ ଇଚ୍ଛା ।

ବୃଦ୍ଧ ନିମାଇ ଦାସ ଦୁଇହାତ ଯୋଡ଼ିକରି ମୁଣ୍ଡରେ ଲଗାଇଲେ ।

ପରେଶ ଚକ୍ରବର୍ତ୍ତୀ ତରତର ହାତରେ ଲଫାପାଟି ଖୋଲି ଦେଖିଲେ ଏକ ଦୀର୍ଘ ବିବରଣୀ ।

ପରେଶ ଚକ୍ରବର୍ତ୍ତୀ ବିବରଣୀଟି ପାଠ କରିବା ଆଗରୁ ନିମାଇ ଦାସ ଆଡ଼େ ଚାହିଁ ପଚାରିଲେ : ରଜନୀ ଲେଖା ପଢ଼ା ଶିଖିଥିଲା ?

ବୃଦ୍ଧ ଟିକିଏ ହସିବାକୁ ଚେଷ୍ଟା କରି କହିଲେ : ବହୁତ ପାଠ ପଢ଼ିଥିଲା । ତା'ପରି ଗୁଣର ଝିଅ ଆଜିକାଲି ଦୁନିଆରେ ଖୁବ୍ କମ୍ ଦେଖିବାକୁ ମିଳିଥାଏ ଆଜ୍ଞା । କିନ୍ତୁ ଭଲ ଲୋକର ସ୍ଥାନ ନାହିଁ ଏ ଜଗତରେ । ଛାଡ଼ନ୍ତୁ । ସବୁ ସେଇ କରୁଣାମୟଙ୍କର ଇଚ୍ଛା ।

ସେ ବିବରଣୀଟି ଥିଲା ରଜନୀର । ନିମାଇ ଦାସଙ୍କର ପାଳିତା କନ୍ୟାର । ରଜନୀ ଆତ୍ମହତ୍ୟା କରିଥିଲା । କାହିଁକି ସେ ଆତ୍ମହତ୍ୟା କରିଥିଲା ତା'ର ଏକ ଦୀର୍ଘ ବିବରଣୀ ସେ ଲେଖିଥିଲା ।

ମୋ ନାଁ ରଜନୀ । ଖାଲି ରଜନୀ । ବାପା ନାଁ ଜାଣି ନାହିଁ । ମା'କୁ ପଚାରି କେବେ ଉତ୍ତର ପାଇ ନାହିଁ । କିନ୍ତୁ ମୁଁ ଥିଲି ମା'ର ସର୍ବସ୍ୱ । ମା' ମୋତେ ଭଲ ପାଉଥିଲା ଅସମ୍ଭବ ଭାବରେ । ମୋର ଆଉ କେହି ଭାଇଭଉଣୀ ନଥିଲେ ତ ! ସେଇଥିପାଇଁ ।

ମୋର ପିଲାଦିନ କଟିଛି ଅହିରିଟୋଲାରେ ।

ସେଠାରେ ଗୋଟିଏ ଦୋ'ତାଲା କୋଠା ଉପରେ ଆମେ ରହୁଥିଲୁ । ମା' ଓ ମୁଁ । ଆଉ ଦୁଇ ତିନୋଟି ଚାକର ଚାକରାଣୀ ।

ମୋତେ ବେଶି ସମୟ ସେହି ଚାକର ଚାକରାଣୀଙ୍କ ସହିତ କଟାଇବାକୁ ପଡୁଥିଲା ।

କାରଣ ମା' ଦିନ ଚାରିଟା ବେଳୁ ଗୋଟାଏ ଗାଡ଼ିରେ ଚଢ଼ି କୁଆଡ଼େ ଯାଉଥିଲେ କେଜାଣି, କେତେବେଳେ ଫେରୁଥିଲେ ମୁଁ କହିପାରିବି ନାହିଁ ।

ପରଦିନ ସକାଳ ଆଠଟାବେଳେ ତାଙ୍କ ସହିତ ମୋର ଦେଖା ହେଉଥିଲା ।

ମୋର କିନ୍ତୁ କିଛି ଅଭାବ ନଥିଲା । ଅସୁବିଧା ନଥିଲା ।

ଖାଇପିଇ ଦଶଟା ବେଳକୁ ସ୍କୁଲକୁ ଚାଲି ଯାଉଥିଲି ।

ଫେରୁଥିଲି ଦୁଇଟା ବେଳକୁ ।

ମା' ମୋତେ ଖୁଆଇ ପିଆଇ, ଆଦର କରି ବାହାରି ଯାଉଥିଲେ ଚାରିଟା ବେଳକୁ । ସେତେବେଳକୁ ମୋର ବୟସ ଏଗାର କି ବାର ।

ଦୁନିଆ ସମ୍ବନ୍ଧରେ ମୁଁ କିଛି ଜାଣି ନଥିଲି । କିଛି ବୁଝି ନଥିଲି ।

ଚାଲିଥିଲା ବେଶ୍ । ଜୀବନଟା ଯଦି ସେହିପରି ନିଷ୍କଳୁଷ ହୋଇ କଟି ଯାଇଥାଆନ୍ତା, ତେବେ ଆଜି ଆଉ କ'ଣ ମୋ ମନରେ ଆତ୍ମହତ୍ୟାର ପ୍ରବୃତ୍ତି ଜାଗିଥାଆନ୍ତା ?

ମୋର ସେ ବୟସ ଶେଷ ହୋଇ ଆସିଲା ।

ଫ୍ରକ୍ ଛାଡ଼ି ମୁଁ ଲୁଗା ପିନ୍ଧିଲି ।

କି ଏକ ରଙ୍ଗିନ୍ ମୋହ ମୋ ମନ ଭିତରେ ଗୁଞ୍ଜରଣ ସୃଷ୍ଟି କରିଥିଲା ।

ସମସ୍ତେ ମୋତେ କହୁଥିଲେ ସୁନ୍ଦରୀ । ମୁଁ କୁଆଡ଼େ ଅପରୂପ ସୁନ୍ଦରୀ ଥିଲି । ମୋ ସାଙ୍ଗପିଲାମାନଙ୍କ ମେଳରେ ମୋର ଯଥେଷ୍ଟ ଆଦର ଥିଲା । ରାସ୍ତାର ଲୋକମାନେ ବି ମୋ ଆଡ଼େ ନ ଚାହିଁ ରହିପାରୁ ନଥିଲେ ।

ମନେମନେ ମୋ ଭିତରେ କିପରି ଏକ ଗର୍ବ ବୋଧ ଜାଗି ଉଠିଥିଲା ।

କିନ୍ତୁ ଯେତେବେଳେ ମୁଁ ବୁଝିପାରିଲି, ମୋର ଏଇ ସୌନ୍ଦର୍ଯ୍ୟକୁ କଣିକାଏ କଣିକାଏ କରି ଜନସାଧାରଣରେ ବିତରଣ କରିବାକୁ ହେବ, ସେତେବେଳେ ମୁଁ ସ୍ଥିର ହୋଇ ଯାଇଥିଲି । ମୋର ସମସ୍ତ ଗର୍ବ ବୋଧ ଯେପରି ଧୂଳିସାତ୍ ହୋଇ ଯାଇଥିଲା ।

: କିଏ ?

ପ୍ରଥମ ଅନୁଭୂତିର ଘଟଣା ସେ । ମୁଁ ମୋ ଘରେ କାହାର ଛାୟା ଦେଖି ଚମକି ଉଠିଥିଲି ।

ଜଣେ କାହାର ଛାୟା ମୋ ଘରେ ମୁଁ ସେଦିନ ଦେଖି ଚମକି ଉଠିଥିଲି ? ଆଜି ସେ କଥା କହିଲେ ସମସ୍ତେ ହସିବେ ।

ଚମ୍ପା ଆସି କହିଥିଲା : ସେ ଆସିଛନ୍ତି, ରାଜବଲ୍ଲଭପୁର ଜମିଦାରଙ୍କ ପୁଅ । ଆପଣଙ୍କ ସହିତ ଦେଖା କରିବେ ।

: ମୋ ସହିତ ତାଙ୍କର କି କାମ ?

: ଆପଣଙ୍କୁ ତାଙ୍କୁ କୁଆଡ଼େ ଖୁବ୍ ଭଲ ଲାଗିଛି ।

ଚମ୍ପା ଉପରକୁ ମୁଁ ସେଦିନ ଚିଡ଼ି ଉଠିଥିଲି । ଚିତ୍କାର କରି କହିଥିଲି, ବାହାର କରିଦେ ତାଙ୍କୁ ଘରୁ । ତା' ନହେଲେ ମୁଁ ପୋଲିସ୍ ଡାକିବି ।

ଚିତ୍କାର ଶୁଣି ମା' ମୋ ଘରକୁ ପଶି ଆସିଥିଲା ।

ମୁଁ ଅଭିଯୋଗ ସ୍ୱରରେ କହିଥିଲି ସବୁ କଥା ।

ମା' ମୋ ମୁଣ୍ଡ ଆଉଁଶି ଦେଇଥିଲା । କହିଥିଲା : ସେମାନେ ଆସିବେ ମା' । ସୌନ୍ଦର୍ଯ୍ୟର ଆଦର ସମସ୍ତଙ୍କ ପାଖରେ । ବିଶେଷତଃ ଜହୁରୀମାନେ ରତ୍ନ ଚିହ୍ନିବାରେ ଭୁଲ୍ କରନ୍ତି ନାହିଁ ।

: ମା' କ'ଣ କହୁଛୁ ତୁ ? ମୁଁ ସେଦିନ ଚିତ୍କାର କରି ଉଠିଥିଲି ।

ମା' ସେଦିନ ମୋତେ ବୁଝେଇ ଦେଇଥିଲା ଯେ, ଆମର ଜନ୍ମ ଅନ୍ୟକୁ ଆନନ୍ଦ ଦେବା ପାଇଁ ଏବଂ ସେ ବୟସ ମୋର ହୋଇଛି । ଏତିକିବେଳୁ ତତ୍ପର ନ ହେଲେ ଜୀବନରେ ବିଶେଷ କିଛି ଅର୍ଜନ କରିହେବ ନାହିଁ । ତା'ଛଡ଼ା ସୁଯୋଗ ସବୁବେଳେ ଆସେ ନାହିଁ । ଆମର ଏଇଟା ପରମ୍ପରା । ତେଣୁ ଲଜ୍ଜା ବା ଅନୁତାପର କଥା ଏଠି କିଛି ନାହିଁ ।

ସେଦିନ ମୁଁ ଘରେ କବାଟ କିଳିଦେଇ ଶୋଇଥିଲି ।

ଲୁହ ଗଡ଼ାଇ ତକିଆ ଭିଜେଇ ଥିଲି । ଜମିଦାର ତନୟ ସେଦିନ ଅପମାନିତ ହୋଇ ଫେରିଯାଇଥିଲେ । ମା' ମୋ ସହିତ କଥା କହିନଥିଲା ପ୍ରାୟ ଦୁଇ ସପ୍ତାହ ।

ତା'ପରେ ଧୀରେ ଧୀରେ ମୋର ଦିହସୁହା ହୋଇଗଲା ।

ପ୍ରଥମେ ଯେଉଁଦିନ ମୁଁ ଆସରକୁ ଓହ୍ଲେଇଲି, ଅବଶ୍ୟ ଆସରଟା ଜମିଥିଲା ଅନ୍ୟ କେଉଁଠି, କୌଣସି ଏକ ଜମିଦାରଙ୍କ 'ବାଗାନ ବାଡ଼ି'ରେ । ସେଦିନ ମୋ ଗୋଡ଼ ଥରୁଥିଲା, ଗଳା କମ୍ପୁଥିଲା । ତାଳ ଜ୍ଞାନ ହରେଇଥିଲି ।

ତଥାପି ମୋର ସେ କି ଉଚ୍ଛ୍ୱସିତ ପ୍ରଶଂସା ।

ଆଉ ମା' ଖାଲି ଦୁଇ ହାତରେ ଟଙ୍କା ଗୋଟେଇବାରେ ଲାଗିଥିଲା । ସେଦିନ ମୁଁ ଅସମ୍ଭବ କ୍ଳାନ୍ତ ହୋଇ ଯେତେବେଳେ ପରମ ତୃପ୍ତିରେ ଶୋଇ ପଡ଼ିଥିଲି, କାହାର ସ୍ପର୍ଶ ପାଇ

ଆଖି ଖୋଲି ଚାହିଁଲି । ମୋ ପାଖରେ ମା' ଯେଉଁ ବିଛଣାଟିରେ ଶୋଇଥିଲା, ସେ ବିଛଣାରେ ଆଉ ଏକ ସୁନ୍ଦର ତରୁଣ ।

ମୋର ସର୍ବାଙ୍ଗ ଶିହରୀ ଉଠିଥିଲା ।

ତରୁଣଟି ମୁହଁରେ ହାସ୍ୟ ଫୁଟି ଉଠିଥିଲା ।

ସେଦିନ ବୋଧହୁଏ ସରବତ୍ ସହିତ ମିଶାଇ ମୋତେ ଅଧିକ ପରିମାଣରେ ମାଦକ ଦ୍ରବ୍ୟ ପିଆଇ ଦିଆ ହୋଇଥିଲା । ତେଣୁ ମୁଁ ସବୁ ବୁଝି ବି କିଛି ବୁଝିପାରି ନଥିଲି । ସେହି ତରୁଣଟି ମୋତେ ଆଦର କରିଥିଲା, ମୁଁ ସବୁ ବୁଝିପାରି ବି କୌଣସି ପ୍ରତିବାଦ କରି ନଥିଲି ।

ତା'ପରଦିନ ଯେତେବେଳେ ମୋର ନିଦ୍ରାଭଙ୍ଗ ହେଲା, ଦେଖିଲି ମା'ର ଆଦର ମୋ ପ୍ରତି ଶତଗୁଣ ବଢ଼ି ଯାଇଛି ।

ତା'ପରେ ମୁଁ ମା' ସହିତ ପାଟି ଫିଟେଇ ନଥିଲି ଅନେକ ଦିନ ଯାଏ ।

କିନ୍ତୁ ଫଳ କିଛି ହୋଇ ନଥିଲା ।

ମୋତେ ଆମର ପରମ୍ପରା ରକ୍ଷା କରିବାକୁ ପଡ଼ିଥିଲା ।

ମୁଁ କିନ୍ତୁ ବେଳେବେଳେ ଅଣନିଶ୍ୱାସୀ ହୋଇ ପଡୁଥିଲି । ଏତେ ଲୋକ ଭିଡ଼ । ତା' ଭିତରେ ସମସ୍ତଙ୍କ ମନରଖି ଚଳିବା ମୋ ପକ୍ଷରେ ସବୁବେଳେ ସମ୍ଭବ ହୋଇପାରୁ ନଥିଲା ।

ତଥାପି ଚାଲିବାକୁ ହେବ ।

ସେଇ ଭିଡ଼ ଭିତରୁ ମୁଁ ଜଣେ ମନର ମଣିଷ ଖୋଜୁଥିଲି । ଯଦି ପାଇଯାଏ, ତେବେ ଜୀବନକୁ ଏକ ନୂତନ ପଥରେ ଚଳେଇ ନେବାକୁ ଚେଷ୍ଟା କରିବି ।

ପାଇଲି ମଧ୍ୟ ।

ସେ ଜଣେ ହୃଦୟବାନ ଯୁବକ । ସମ୍ପତ୍ତି ଥିଲା, ପ୍ରତିପତ୍ତି ବି ଥିଲା ।

ସେ ମୋତେ ଗ୍ରହଣ କଲେ, କିନ୍ତୁ ଗୋପନରେ । ମୁଁ ସେତେବେଳେ ଜାଣି ନଥିଲି ସେ ବିବାହିତ । ମୁଁ ବି ତାଙ୍କୁ ପ୍ରଶ୍ନ କରି ନଥିଲି କିଛି ।

ମୁଁ କେବଳ ମୋର ନାରକୀୟ ଜୀବନଯାତ୍ରାରୁ ରକ୍ଷା ପାଇବା ପାଇଁ ଛଟପଟ ହେଉଥିଲି । ଦିନେ ରାତିରେ, ମା' ଆଖିରେ ଧୂଳି ଫିଙ୍ଗି, ସେହି କଳଙ୍କିତ ଜୀବନରୁ ମୁକ୍ତି ପାଇବା ପାଇଁ ଛୁଟି ଆସିଲି ସେହି ହୃଦୟବାନ୍ ଲୋକଟିର ହାତଧରି ।

ଆମେ ଆସି ରହିଲୁ 'ମାଧବୀ ଭିଲା'ରେ । ମାଧବୀ ଭିଲା ତାଙ୍କ ନିଜ ଘର । ମୋତେ ସ୍ପଷ୍ଟ ସେ ଜଣେଇ ଦେଇଥିଲେ, ଆମ ସଂପର୍କ ସ୍ୱାମୀ-ସ୍ତ୍ରୀର ସଂପର୍କ ହେଲେ ବି କିଛିଦିନ ତାହା ଗୋପନରେ ରହିବ । ତା'ପରେ ସର୍ବ ସମକ୍ଷରେ ସେ ମୋତେ ସ୍ତ୍ରୀ ରୂପେ ଗ୍ରହଣ କରିବେ ।

ମୁଁ ତାଙ୍କ ପ୍ରସ୍ତାବରେ ଅମତ ହୋଇ ନଥିଲି । କାରଣ ମୋର ତାଙ୍କ ପ୍ରତି ଯଥେଷ୍ଟ ବିଶ୍ୱାସ ଜନ୍ମିଥିଲା । ସେ ବି ମୋତେ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ ।

ତାଙ୍କ ନାଁ ଉଦୟଭାନୁ । ସେ ଥିଲେ ଜମିଦାର ବଂଶର । ବହୁ ସମ୍ପତ୍ତିର ମାଲିକ । ମୁଁ ଭାବିଥିଲି ମୋର ଦୁଃଖ ଘୁଞ୍ଚିଲା । ଆଉ ଯାହା ହେଉ ନ ହେଉ ମୁଁ ଏକ କଳଙ୍କମୟ ଜୀବନର ଅବସାନ ପରେ ନୂତନ ଏକ ଜୀବନଯାତ୍ରାର ସୁଯୋଗ ପାଇଲି ।

ତେଣେ ମୋର ମା' ମୋତେ ବହୁତ ଖୋଜାଖୋଜି କରୁଥିଲେ । ପୋଲିସ୍‌ରେ ଖବର ଦେଇଥିଲେ । ସବୁକଥା ଉଦୟଭାନୁ ଆସି ମୋତେ କୁହନ୍ତି । ଆମେ ପ୍ରାଣଖୋଲି ହସୁ । ସେ ପୁଣି ସକାଳୁ ଉଠି କାର୍ଯ୍ୟକ୍ଷେତ୍ରକୁ ଚାଲିଯାଆନ୍ତି ।

ଏହିପରି ଦୁଇତିନି ମାସ ଚାଲିବା ପରେ ମୁଁ ଲକ୍ଷ୍ୟ କଲି, ଉଦୟଭାନୁ ଆଉ ନିତିଦିନ ଆସନ୍ତି ନାହିଁ ମାଧବୀ ଭିଲାକୁ । ସେ ଶନିବାର ସନ୍ଧ୍ୟାରେ ଆସନ୍ତି ଏବଂ ସୋମବାର ସକାଳୁ ଚାଲିଯାଆନ୍ତି । ପ୍ରଶ୍ନ କରିଲେ କୁହନ୍ତି, ତେଣେ କାମଦାମ ବହୁତ ବଢ଼ିଯାଇଛି । ଆସିବାକୁ ଆଉ ସମୟ ହେଉ ନାହିଁ ।

ତଥାପି ତାଙ୍କର ଆନ୍ତରିକତା ମୋ ପ୍ରତି କମିଥିବା ପରି ମୁଁ ଅନୁଭବ କରି ନଥିଲି । ଯେଉଁ ଦେଢ଼ଟି ଦିନ ରୁହନ୍ତି ସେ ମୋ ପାଖରେ ମୁଁ ଦୁନିଆର ସବୁକଥା ଭୁଲିଯାଏ ସେତେବେଳେ । ମୋର ମନେହୁଏ ଏ ପୃଥିବୀରେ ସେ ଆଉ ମୁଁ, ଆମଛଡ଼ା ପୃଥିବୀର କୌଣସି ସତ୍ତା ମୁଁ ଅନୁଭବ କରିପାରେ ନାହିଁ ।

ଇମିତି ଚାଲିଥିଲା । ମୋର କିଛି ଅଭାବ ନଥିଲା, ଅସୁବିଧା ନଥିଲା ।

ଦିନେ ହଠାତ୍ ମାଧବୀ ଭିଲା ଦୁଆରେ ଆସି ଗୋଟାଏ ଘୋଡ଼ାଗାଡ଼ି ଲାଗିଲା । ମୁଁ କୌତୂହଳୀ ହୋଇ ଆଗେଇ ଗଲି । କିଏ ଆସିଲା କି ?

ଜଣେ ସ୍ତ୍ରୀଲୋକ ଓହ୍ଲେଇଲେ ଗାଡ଼ିରୁ । ବେଶ୍ ଲମ୍ବା ଚଉଡ଼ା ଚେହେରା । ଦେହର ରଙ୍ଗ ଉଜ୍ଜ୍ୱଳ । ମୂଲ୍ୟବାନ ବସନଭୂଷଣରେ ସେ ସଜ୍ଜିତା ।

କାହାକୁ କିଛି ନ ପଚାରି, ନ ଉଚାରି, ବହୁଦିନର ପରିଚିତ ଲୋକ ଭଳି ସେ ଆଗେଇ ଆସିଲେ । ମୋ ପାଖରେ ପହଞ୍ଚି ହସହସ ମୁହଁରେ କହିଲେ : ତମରି ନାଁ ରଜନୀ ?

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣେଇଲି ।

ସେ କହିଲେ : ତୁମେ କୁଆଡ଼େ ଖୁବ୍ ଭଲ ଗାଇ ଜାଣ, ନାଚି ଜାଣ ?

ମୁଁ ଲଜ୍ଜା ବିନମ୍ର କଣ୍ଠରେ କହିଲି : ଖୁବ୍ ନୁହେଁ, ଟିକେ ଟିକେ । ସେ ସଂଗେ ସଂଗେ ମୋତେ ପ୍ରଶ୍ନ କଲେ : କେତେ ଟଙ୍କା ପାଇଲେ ତୁମେ କଲିକତା ଛାଡ଼ି ଚାଲିଯାଇପାରିବ ?

ମୁଁ ସ୍ତବ୍ଧ ହୋଇଯାଇଥିଲି । ମୋ ମୁଖରୁ ବଚନ ବାହାରି ନଥିଲା ।

ସେ କହିଥିଲେ : କଲିକତା ଛାଡ଼ି ଚାଲିଯିବା କଥା ବୁଝିପାରୁ ନାହଁ ? ଏ ଦେଶରେ ତମର ରହିବା ଚଳିବ ନାହିଁ । ହୁଏତ ଲଖନଉ, ନହେଲେ ବନାରସ । ସେଇଠି ଯାଇ ତମେ ଆସର ଜମେଇବା ଯାଏ ଯେତେ ଖର୍ଚ୍ଚ ଲାଗିବ ସବୁ ମୁଁ ଦେବି ।

ତଥାପି ମୁଁ ଭଦ୍ରମହିଳାଙ୍କ ଉଦ୍ଦେଶ୍ୟ ବୁଝିପାରି ନଥିଲି । କିନ୍ତୁ ମନେମନେ ଚିଡ଼ିଯାଇଥିଲି ।

ସେ ମୋତେ ପୁଣି ପ୍ରଶ୍ନ କଲେ : ତମେ ଉଦୟଭାନୁ ରାୟଙ୍କୁ ଚିହ୍ନ ?

ମୁଁ ଅତ୍ୟନ୍ତ ଆଗ୍ରହରେ ମୁଣ୍ଡ ହଲାଇ କହିଲି : ହଁ ।

ଭଦ୍ରମହିଳା କହିଲେ : ସେ ମୋର ସ୍ୱାମୀ । ତାଙ୍କର ତିନୋଟି ସନ୍ତାନ । ଏଥର ବୁଝିପାରିଲ ?

ସତରେ ତଥାପି ମୁଁ କିଛି ବୁଝିପାରି ନଥିଲି । କିନ୍ତୁ ଉଦୟଭାନୁ ଯେ ବିବାହ କରିଛନ୍ତି ସେ କଥା ମଧ୍ୟ ମୁଁ ବିଶ୍ୱାସ କରିପାରୁ ନଥିଲି ।

ଭଦ୍ରମହିଳା ମୋତେ କହିଲେ : ତମେ ଭୁଲ୍ କରୁଛ ରଜନୀ । ବର୍ତ୍ତମାନ ବି ସମୟ ଅଛି । ତମର ବୟସ ଅଛି, ସୁଯୋଗ ବି ଅଛି । ତମେ ବାଟ ଭାଂଗି ଚାଲିଯାଅ । ଜମିଦାର

ବଂଶର ଏଇସବୁ ଯୁବକମାନେ ଖୁବ୍ ଉଚ୍ଛୃଙ୍ଖଳ । ଝିଅମାନେ ଏମାନଙ୍କ ହାତର ଖେଳଣା । ଖେଳ ଶେଷରେ ଫିଙ୍ଗିଦିଅନ୍ତି ଦୂରକୁ । ତମର ଅବସ୍ଥା ସେଇଆ ହେବ । ଏଇ ମାଧବୀ ଭିଲାରେ ତମଭଳି କେତେ ନାରୀର ଯେ ସର୍ବନାଶ ହୋଇଛି. ତା'ର ହିସାବ ହୁଏତ ମୁଁ ଦେଇପାରିବି ନାହିଁ । କିନ୍ତୁ ତମେ ଆଜହୁଁ ସାବଧାନ ନହେଲେ ଠକିଯିବ ।

ମୁଁ ସେହି ଭଦ୍ରମହିଳାଙ୍କ ଉପରେ ଭୀଷଣ ଭାବରେ ଚିଡ଼ିଯାଇଥିଲି । ଯଥାସମ୍ଭବ ନିଜକୁ ସଂଯତ କରି କହିଲି : ସେ ମୋତେ କଥା ଦେଇଛନ୍ତି ବିବାହ କରିବେ । ତାଙ୍କ କଥା ମୁଁ ବିଶ୍ୱାସ କରେ । ଆପଣ ମୋତେ କୌଣସି ଉପଦେଶ ନ ଦେଲେ ଚଳିବ ।

ମୁଁ ପଳେଇ ଯାଇଥିଲି ।

ସେ ମୋ ହାତଟାକୁ ଟାଣିଧରି ମୋତେ ଅଟକାଇ କହିଲେ, ତମକୁ ମୋ କଥା ଶୁଣେଇ ଦିବାକୁ ମୁଁ ଆସିଛି । ଉଦୟଭାନୁ ରାୟ କେବେ ତମର ହୋଇ ରହିପାରିବେ ନାହିଁ । ଯଦି ତମେ ତମର ମଙ୍ଗଳ ଚାହ, ତେବେ ଆଗାମୀ ମଙ୍ଗଳବାର ରାତି ଦଶଟା ଭିତରେ ଯିବା ପାଇଁ ପ୍ରସ୍ତୁତ ହୋଇଥିବ । ମୋ ଲୋକ ଆସି ତମକୁ ସମ୍ମାନ ସହକାରେ ଗାଡ଼ିରେ ବସାଇ ନେଇ ତମର ଗନ୍ତବ୍ୟ ସ୍ଥାନରେ ଛାଡ଼ିଦେଇ ଆସିବେ । ତା' ନହେଲେ ତମ କପାଳରେ ଅଶେଷ ଦୁଃଖ । ଯାହାର ଶେଷ ହୁଏତ ସମଗ୍ର ଜୀବନରେ ହୋଇପାରିବ ନାହିଁ ।

ଭଦ୍ରମହିଳା ଆଉ ମୁହୂର୍ତ୍ତେ ଠିଆ ହୋଇ ରହିଲେ ନାହିଁ । ପୁଣି ଘୋଡ଼ାଗାଡ଼ିରେ ବସି ସେ ଲେଉଟି ଗଲେ ।

ମୋ ଦେହଟା ରାଗରେ ଜଳି ଉଠିଥିଲା ।

ସେ ଚାଲିଯିବା ପରେ ମୁଁ ଛେପ ପକାଇଦେଇ ମନେ ମନେ କହିଥିଲି : ତୁ ଯଦି ତାଙ୍କର ସ୍ତ୍ରୀ ହୋଇଥାଉ, ମୁଁ ବା କୋଉ କମ୍ ! ସେଦିନ କୌଣସି ପ୍ରକାର ମନକୁ ସାନ୍ତ୍ୱନା ଦେଇ ରହିଥିଲି । ରାତି ପାହିଲେ ଶନିବାର, ସେଦିନ ଉଦୟଭାନୁ ନିଶ୍ଚୟ ଆସିବେ । ତାଙ୍କ ଆଗରେ ସବୁକଥା କହି ଶୀଘ୍ର ବିବାହର ବନ୍ଦୋବସ୍ତ କରିବା ପାଇଁ ମୁଁ ମନେମନେ ସ୍ଥିର କଲି ।

କିନ୍ତୁ ଉଦୟଭାନୁ ଶନିବାର ଆସିଲେ ନାହିଁ, ରବିବାର ବି ନୁହେଁ ।

ଏ ବ୍ୟତିକ୍ରମ ତାଙ୍କ ଜୀବନରେ ଏହି ପ୍ରଥମ । ମୁଁ କିଛି ଭାବିପାରିଲି ନାହିଁ । ମନଟା ମୋଟେ ସ୍ଥିର ରହିଲା ନାହିଁ । ନିଶ୍ଚୟ ତାଙ୍କର ଦେହ ଖରାପ ହେଲା । ଅଥବା...

ଆଉ ତେଣିକି ଚିନ୍ତା କରିପାରିଲି ନାହିଁ ।

ସୋମବାର ପରେ ମଙ୍ଗଳବାର ଆସିଲା ।

ମୁଁ କିନ୍ତୁ ଧାରଣା କରିପାରି ନଥିଲି ପ୍ରକୃତରେ ମଙ୍ଗଳବାର ରାତି ଦଶଟାରେ ସେମାନେ ଆସିବେ ।

ଠିକ୍ କଣ୍ଟାଏ କଣ୍ଟାଏ ଦଶଟା । ସେଇ ଘୋଡ଼ାଗାଡ଼ି ଆସି ଦୁଆରେ ଲାଗିଲା ।

ଷଣ୍ଢମାର୍କା ଲୋକ କେତେଟା ଓହ୍ଲେଇ ପଶିଆସିଲେ ମାଧବୀ ଭିଲା ଭିତରକୁ ।

ମୋ ଦେହଟା କମ୍ପି ଉଠିଲା । ତଥାପି କଣ୍ଠରେ ଦୃଢ଼ତା ଫୁଟାଇ ପ୍ରଶ୍ନ କଲି : କିଏ ତମେ ?

ସେମାନେ କହିଲେ : ଆମେ ରାଣୀମା'ଙ୍କ ଲୋକ । ଆପଣଙ୍କୁ ନେଇ ନିରାପଦ ସ୍ଥାନରେ ଛାଡ଼ିଦେବାକୁ ଆସିଛୁ । ଆପଣ ବାହାରି ପଡ଼ନ୍ତୁ ।

ମନଟା ମୋର ବିଷେଇ କରି ରହିଥିଲା । ମୁଁ କହିଲି : ତମ ରାଣୀମା'ଙ୍କର ମୁଁ ଚାକର ନା ନୌକର ! ତାଙ୍କ କଥା ମାନି ମୋତେ ଚଳିବାକୁ ହେବ ।

ସେମାନଙ୍କ ଭିତରୁ ଜଣେ ଆଗେଇ ଆସି କହିଲା : ଆପଣ ଯାହା ହୁଅନ୍ତୁ ନ ହୁଅନ୍ତୁ, ଆମେ କିନ୍ତୁ ରାଣୀମା'ଙ୍କର ନୌକର । ତାଙ୍କ ଆଦେଶ ଆମେ ଅକ୍ଷରେ ଅକ୍ଷରେ ପାଳନ କରିବୁ ।

ମୁଁ ଆହୁରି ଚିଡ଼ି ଉଠିଥିଲି । କହିଲି : ମୁଁ ଯଦି ନ ଯାଏ ?

ସେମାନେ କହିଲେ : ଆମେ ଜୋର୍ କରି ନେଇଯିବୁ ।

ଏହିପରି ଯୁକ୍ତିତର୍କ କିଛିସମୟ ଚାଲିବା ପରେ ମୁଁ ରାଗିଯାଇ ସେମାନଙ୍କୁ ଯାହାତାହା ଗାଳି ଦେଇଥିଲି । ତା'ପରର ପରିଣତି ହୋଇ ଉଠିଥିଲା ଅତି ଭୟାବହ ।

ସେମାନେ ତିନି ଚାରିଜଣ ମିଶି, ମୋର ଗୋଡ଼ହାତ ବାନ୍ଧି, ମୋ ପାଟିରେ ଲୁଗା ଭର୍ତ୍ତି କରି ମୋତେ ଉଠେଇ ନେଇଯାଇଥିଲେ ବାହାର ଘରକୁ । ସେଠି ଗୋଟାଏ ଛଣଘର ଥିଲା । ମୋତେ ସେଇ ଘର ଭିତରେ ପୂରାଇ ଘରେ ନିଆଁ ଲଗେଇ ଦେଇଥିଲେ । ଲୋକଗୁଡ଼ାଙ୍କଠାରେ ଦୟାମାୟା କିଛି ନଥିଲା ।

ତା'ପରେ କ'ଣ ହେଲା ନ ହେଲା ମୋତେ କିଛି ଜଣା ନାହିଁ ।

ଯେତେବେଳେ ମୋର ଚେତା ହେଲା ମୁଁ ଦେଖିଲି ସନ୍ନ୍ୟାସୀ ବାବା କୋଳରେ ମୁଣ୍ଡରଖି ଶୋଇଛି ।

ସେ ମୋତେ କୋଉଠୁ ଗଙ୍ଗାଘାଟରୁ ଟୋଳି ଆଣିଥିଲେ ।

ଦଶ ପନ୍ଦରଦିନ ପରେ ଯେତେବେଳେ ମୋର ଉଠି ବସିବାର କ୍ଷମତା ହେଲା, ମୁଁ ମୋ ଦେହକୁ ଚାହିଁ, ମୁହଁକୁ ଚାହିଁ ଅବାକ୍ ହୋଇଯାଇଥିଲି । ମୁଁ ଗଲି କୁଆଡ଼େ ? ରଜନୀ କାହିଁ ?

ମୁଁ ଭୋ ଭୋ ହୋଇ କାନ୍ଦିଥିଲି, ସନ୍ନ୍ୟାସୀବାବାଙ୍କୁ କହିଥିଲି ତମେ ମତେ କାହିଁକି ବଞ୍ଚାଇଲ ବାବା । ଏଇ ରୂପ ନେଇ ଦୁନିଆରେ ମୋର ବଂଚି ରହିବାର କୌଣସି ଅଧିକାର ନାହିଁ ।

ସେ ମୋତେ ସାନ୍ତ୍ୱନା ଦେଇଥିଲେ ।

ଆଉ କିଛିଦିନ ପରେ ଉଦୟଭାନୁଙ୍କୁ ଡାକି ଆଣିଥିଲେ ମୋ ପାଖକୁ । ସେ ମୋତେ ଦେଖିବା କ୍ଷଣି, ପାଞ୍ଚହାତେ ଦୂରେଇ ଯାଇଥିଲେ ପଛକୁ ।

ମୁଁ ତାଙ୍କ ପାଖରେ କାନ୍ଦିଥିଲି, ବହୁତ କାନ୍ଦିଥିଲି ।

କିନ୍ତୁ ସେ ଆଉ ମୋ ଦେହ ଟିକିଏ ବି ସ୍ପର୍ଶ କରି ନଥିଲେ । ଶେଷରେ ମୋ ନାଁରେ 'ମାଧବୀ ଭିଲା'ଟିକୁ ଲେଖିଦେଇ କହିଥିଲେ, ଯାହା ଭଡ଼ା ଉଠିବ ସେଥିରେ ରଜନୀର ଚଳିଯିବ ।

ସେଇ ତାଙ୍କ ସହିତ ମୋର ଶେଷ ଦେଖା ।

ମୁଁ କିନ୍ତୁ ମାଧବୀ ଭିଲାର ମୋହ ଛାଡ଼ିପାରି ନଥିଲି ।

ମଝିରେ ମଝିରେ ଯାଏ, ରାତ୍ରିର ନିର୍ଜନ ପ୍ରହରରେ । ବଉଳ ମୂଳେ ବସି ହାର ଗୁନ୍ଥେ । ଅପେକ୍ଷା କରେ କାହାକୁ । ମନେହୁଏ ଉଦୟଭାନୁ ଆସିବେ । କିନ୍ତୁ...

ମୋର ବ୍ୟର୍ଥ ଜୀବନର କାହାଣୀ ଜାଣୁ ନଥିଲେ କେହି, ଦେଖୁ ନଥିଲେ କେହି । କିନ୍ତୁ ହଠାତ୍ ଦିନେ ରାତ୍ରିର ନିସ୍ତବ୍ଧ ପ୍ରହରରେ ଦୀପକ ଚୌଧୁରୀଙ୍କୁ ଅସହାୟ ଅବସ୍ଥାରେ ବାଡ଼ି ବଗିଚାରେ ପଡ଼ି ରହିଥିବାର ଦେଖି ମୋର ତାଙ୍କ ପ୍ରତି ମୋହ ଜନ୍ମିଗଲା ।

ସେଇ ଯେ ଦେଖାହେଲା ତାଙ୍କ ସହିତ ମୋର କାହିଁକି ମନେହେଲା, ମୁଁ ଯେପରି ଉଦୟଭାନୁଙ୍କୁ ଭେଟିଲି । ଆଉ କଟାଇପାରିଲି ନାହିଁ ତାଙ୍କ ମୋହ । ରାତ୍ରିର ନିସ୍ତବ୍ଧ ପ୍ରହରରେ ଲୁଚି ଲୁଚି ଯାଇ ତାଙ୍କୁ ଦେଖିଆସେ, ତାଙ୍କ ଘରେ ଧୂପଜାଳି ଆସେ, ତାଙ୍କ ଶେଯରେ ବଉଳମାଳା ରଖିଆସେ । କିନ୍ତୁ ତାଙ୍କ ଆଗରେ ମୁହଁ ଦେଖାଇବି କିପରି ? ମୋର ବିକୃତ ଚେହେରା ଦେଖି ସେ ଚିତ୍କାର କରି ଉଠିବେ ସିନା, ଅନୁକମ୍ପା ପ୍ରକାଶ କରିବେ ନାହିଁ ।

କିନ୍ତୁ ମୁଁ ଯାହାକୁ ଭଲପାଏ, ଯାହା ଉପରେ ଅଧିକାର ବିସ୍ତାର କରିଆସୁଛି, ତାକୁ ଆଉଜଣେ ଭଲପାଇ ବିବାହ ହେବ- ଏକଥା ମୁଁ ସହ୍ୟ କରିପାରନ୍ତି କିପରି ?

ସେଇଥିପାଇଁ ମାଧବୀ ଭିଲାରେ ସେଦିନ ମୁଁ ରଂଜିତାକୁ ହତ୍ୟା କରିଛି । ହତ୍ୟାକରି ପ୍ରତିଶୋଧ ନେଇଛି ।

କିନ୍ତୁ...

ମୁଁ କ'ଣ ଜାଣିଥିଲି ମୋର ପ୍ରାଣର ପ୍ରତିମ ଦୀପକ ଚୌଧୁରୀଙ୍କୁ ରଂଜିତାର ହତ୍ୟା ଅପରାଧରେ ଅପରାଧୀ ସାଜିବାକୁ ହେବ !

ଆପଣ ବିଶ୍ୱାସ କରନ୍ତୁ ପୋଲିସ୍ ସାହେବ, ରଂଜିତାକୁ ମୁଁ ହତ୍ୟା କରିଛି । ଦୀପକ ଚୌଧୁରୀ ନିର୍ଦ୍ଦୋଷ । ମୋ କୃତକର୍ମର ଫଳ ମୁଁ ଭୋଗ କରିବି । ଆପଣ ଦୀପକ ଚୌଧୁରୀଙ୍କୁ ମୁକ୍ତି ଦିଅନ୍ତୁ ।

କେତୋଟି ମୁହୂର୍ତ୍ତ ଆମେ ସମସ୍ତେ ସ୍ତବ୍ଧ ହୋଇ ଯାଇଥିଲୁ ।

ସତ୍ୟବ୍ରତ କହିଲା : ଆମକୁ ଏତେ ଶୀଘ୍ର ଛୁଟି ମିଳିଯିବ ଆଶା କରିପାରି ନଥିଲି ।

ପରେଶ ଚକ୍ରବର୍ତ୍ତୀ କହିଲେ : ଆପଣ ସ୍ୱଟ୍‌କୁ ଯିବେ ନାହିଁ ?

: ନା, ସତ୍ୟବ୍ରତ ମନାକଲା । ଆଉ ପକେଟ୍‌ରୁ କାଗଜ ପୁଡ଼ିଆଟି ବାହାର କରି ଦେଇଥିଲା । ଏଇଟା ସେଇ ଲାଲ ପଥର । ଦେଖିବେ ରଜନୀର କୌଣସି ଅଳଙ୍କାରରେ ଏହା ପାଇଁ ସ୍ଥାନ ଖାଲିଥିବ ।

ଦୁଇ ତିନିଘଣ୍ଟା ପରେ ପରେଶ ଚକ୍ରବର୍ତ୍ତୀ ସ୍ୱଟ୍ ଇନ୍‌କ୍ୱାରୀରୁ ଫେରିଆସି କହିଥିଲେ : ଆପଣଙ୍କ ଅନୁମାନ ସତ୍ୟ ମିଷ୍ଟର ମହାପାତ୍ର । ରଜନୀର କାନଫୁଲରୁ ପଥରଟି ଖସି ପଡ଼ିଥିଲା ।

*ରଚନାକାଳ : ୧୯୬୮*



ରାଜେଶ !

: ଇଏସ୍ ସାର୍ ।

: ବସ । ମୋ ସାମ୍ନା ଚେଆରରେ ବସ । ମୋ କଥା ଶୁଣ । ତମର କାମ ବୁଝିନିଅ । ତମେ ହୁଏତ ଜାଣି ନାହଁ, ତମର ଏଇ ପୋଷ୍ଟଟି ପାଇଁ ସାତ ହଜାର ସାତ ଶହ ଅଠର ଖଣ୍ଡ ଦରଖାସ୍ତ ଆସିଥିଲା । ଭାରତବର୍ଷର ପ୍ରତ୍ୟେକ କୋଣରୁ ମୁଁ ଦରଖାସ୍ତ ଓ ଫଟୋ ପାଇଥିଲି ଏବଂ ପ୍ରତ୍ୟେକଟି ଦରଖାସ୍ତ ମୁଁ ନିଜେ ପଢ଼ିଥିଲି । ପ୍ରତିଟି ଫଟୋ ମୁଁ ତନ୍ନ ତନ୍ନ କରି ଦେଖିଥିଲି । ପ୍ରଥମ ନିର୍ବାଚନରେ ବାଦ୍ ପଡ଼ିଲା ସାତ ହଜାର । ପୁଣି ଦ୍ୱିତୀୟ ନିର୍ବାଚନରେ ବାଦ୍ ପଡ଼ିଲା ସାତ ଶହ ତିନିଖଣ୍ଡ । ବାକି ଯେଉଁ ପନ୍ଦର ଖଣ୍ଡ ଦରଖାସ୍ତ ମୋ ସାମ୍ନାରେ ରହିଲା, ସେଇ ପନ୍ଦର ଜଣଙ୍କୁ ମୁଁ ଡାକିଥିଲି ଇଣ୍ଟରଭିଉ ପାଇଁ । ନିଜେ ମୁଁ ଇଣ୍ଟରଭିଉ କରିଚି । ତମେ ତ ଜାଣ, କାରଣ ତମେ ନିଜେ ଇଣ୍ଟରଭିଉ ଦେଇଚ । ଶେଷରେ ଚଉଦ ଜଣ ବାଦ୍ ଯାଇ ନିର୍ବାଚିତ ହୋଇଛ ତମେ ।

ଆଉ ତମେ ଭଲ କରି ଜାଣ କେଉଁ ପୋଷ୍ଟ ପାଇଁ ତମେ ନିର୍ବାଚିତ ହୋଇଛ ଏବଂ ମୁଁ ଆଉଥରେ ତମକୁ ମନେ ପକାଇ ଦେଉଛି । ମନଦେଇ ଶୁଣ । ତମେ ଧୀରାଜ ମେହେରାର "ଏକାନ୍ତ ଘରୋଇ କର୍ମସଚିବ ।" ତମ ଉପରେ ଧୀରାଜ ମେହେରାର ସମସ୍ତ ଦାୟିତ୍ୱ ନ୍ୟସ୍ତ । ଧୀରାଜ ମେହେରାର ଗାଡ଼ି ଚାଳନାଠାରୁ ଆରମ୍ଭ କରି ପର୍ସନାଲ୍ ସେକ୍ରେଟାରୀ ପର୍ଯ୍ୟନ୍ତ ଏବଂ ଦେହରକ୍ଷୀଠାରୁ ଆରମ୍ଭ କରି ସୁକର୍ମ, ଦୁଷ୍କର୍ମ, ସବୁଥିର ସହଚର । ମୋଟ ଉପରେ ଧୀରାଜ ମେହେରାର ତମେ ଏକାନ୍ତ ଏବଂ ଅତି ଏକାନ୍ତ ସଚିବ । ବଡ଼ ଗୁରୁତ୍ୱପୂର୍ଣ୍ଣ ତମର ଦାୟିତ୍ୱ । ବୁଝିପାରୁଥିବ କିପରି ସାଂଘାତିକ ପୋଷ୍ଟରେ ତମେ ଜଏନ୍ କରିଛ ।

ତମେ ତ ଧୀରାଜ ମେହେରାର ପରିଚିତି ସମ୍ବନ୍ଧରେ କିଛି କିଛି ଜାଣ । ତମେ ଏତିକି ଜାଣ ଧୀରାଜ ମେହେରା ଜଣେ ଖଣି ମାଲିକ । ଅକଳନ ସମ୍ପତ୍ତିର ଅଧିକାରୀ । ସମାଜର

ଜଣେ ପ୍ରତିପତ୍ତି ସମ୍ପନ୍ନ ଲୋକ । କିନ୍ତୁ ତମେ ଏକଥା ଜାଣ ନାହିଁ, ଧୀରାଜ ମେହେରା ଗୋଟାଏ ଖୁଣୀ, ବଦ୍‌ମାସ ଏବଂ ବ୍ଲାକ୍‌ମାର୍କେଟିଅର । ସେ ଯେତିକି ଦୁର୍ଦ୍ଧାନ୍ତ, ଯେତିକି ଧନୀ, ସେତିକି ବଦ୍‌ମାସ୍ । ତମେ ହୁଏତ ଜାଣିନା ଧୀରାଜ ମେହେରା ଜୀବନରେ ଅନେକ ଅତ୍ୟାଚାର କରିଛି, ଅନେକ ଦାନ ଧ୍ୟାନ କରିଛି, ଅନେକ ଅସହାୟଙ୍କୁ ସାହାଯ୍ୟ କରିଛି ପୁଣି ଅନେକ ଖୁଣ୍ ଜଖମ ବି କରିଛି । ଏସବୁ ତମେ ଧୀରେ ଧୀରେ ଜାଣିବ । କିନ୍ତୁ ତମର କର୍ମଜୀବନରେ କର୍ତ୍ତବ୍ୟ ହେବ, ସବୁ ଶୁଣି କୌଣସି କଥା କେଉଁଠି ପ୍ରକାଶ ନ କରିବା, କୌଣସି ଘଟଣା ପ୍ରତି କିଛି ଆଗ୍ରହ ପ୍ରକାଶ ନ କରିବା ଏବଂ ପ୍ରଭୁର ଆଦେଶ ଜୀବନ ପଣ କରି ପାଳନ କରିବା । ଅବଶ୍ୟ ପ୍ରଥମେ ପ୍ରଥମେ ଏଥିପାଇଁ ତମକୁ ଯଥେଷ୍ଟ କଷ୍ଟ ହେବ । ତମେ ବିଶ୍ୱବିଦ୍ୟାଳୟର ଜଣେ ଉଚ୍ଚ ଡିଗ୍ରୀଧାରୀ ଯୁବକ । ତମେ ଆଜୀବନ ଜଣେ ସ୍ୱାଧୀନଚେତା ସ୍ପଷ୍ଟଭାଷୀ । ଭାରତବର୍ଷରେ ଶରୀରଚର୍ଚ୍ଚା ବିଷାରଦ ଭାବରେ ତମ ପାଖରେ ଅନେକ ସାର୍ଟିଫିକେଟ୍ ଅଛି । ଖେଳ, କସରତ୍, ମଟରଚାଳନା, ସନ୍ତରଣ ପ୍ରତିଯୋଗିତା ସବୁଥିରେ ତମେ ପ୍ରଥମ ସ୍ଥାନ ଅଧିକାର କରିଛ । ତମେ କାହାରି ପରାଧୀନତା ସ୍ୱୀକାର କରିବାକୁ ଶିଖି ନାହଁ । ଅନ୍ୟାୟ ବିପକ୍ଷରେ ତମେ ସବୁବେଳେ ମୁଣ୍ଡ ଟେକି ଠିଆ ହୋଇଛ । ତମର ଏଇ ସତେଇଶି ବର୍ଷର ଜୀବନ ବୃତ୍ତାନ୍ତ ଟିକିନିଖି ସବୁ ମୁଁ ସଂଗ୍ରହ କରିଛି ।

ସେ ବର୍ଷ ଦିଲ୍ଲୀର ଶରୀର ଚର୍ଚ୍ଚା ପ୍ରତିଯୋଗିତାରେ ଅନ୍ୟାୟ ଭାବରେ ତମକୁ ଦ୍ୱିତୀୟ କରା ହୋଇଥିବାରୁ, ତମେ କର୍ମକର୍ତ୍ତା ଜଣକର ଦାନ୍ତ ଭାଂଗି ଦେଇଥିଲ । ବମ୍ବେରେ ସନ୍ତୋଷ ଟ୍ରଫି ଖେଳରେ ରେଫାରୀର ଅନ୍ୟାୟ ପରିଚାଳନା ପାଇଁ ତମେ ତା'ର ନାକଦଣ୍ଡା ଫଟେଇ ଦେଇଥିଲ । କଲିକତା ମାନ୍ଦ୍ରାଜ ମଟରଚାଳନା ପ୍ରତିଯୋଗିତାରେ ତମେ ପ୍ରଥମ ସ୍ଥାନ ଅଧିକାର କରିଥିଲ ଏବଂ ଆହୁରି ତମ ଜୀବନର ସୁକର୍ମ ଓ ଦୁଷ୍କର୍ମର ସବୁ ଇତିହାସ ମୋର ଏଇ ପ୍ଲାଷ୍ଟିକ୍ ଫାଇଲ୍‌ରେ ଲିପିବଦ୍ଧ ହୋଇଅଛି । ଏପରିକି ତମ ଜୀବନର ସେଇ ଏକାନ୍ତ ଗୋପନୀୟ ହତ୍ୟାକାଣ୍ଡଟି ପର୍ଯ୍ୟନ୍ତ ।

ନା ନା ବିଚଳିତ ହୁଅ ନାହିଁ ରାଜେଶ । ମୁଁ ତମର ଆଦୌ ଅନିଷ୍ଟ କରିବି ନାହିଁ । ମୁଁ ଜାଣେ ଇନ୍ଦ୍ରାଣୀକୁ ହତ୍ୟା କରିବା ଛଡ଼ା ତମର ଅନ୍ୟ ଉପାୟ ନଥିଲା । ଇନ୍ଦ୍ରାଣୀ ଭାବିଥିଲା, ତା'ର ସମସ୍ତ ଦୁଷ୍କର୍ମର ବୋଝ ସେ ତମରି ମୁଣ୍ଡ ଉପରେ ଲଦି ଦେବ । ଇନ୍ଦ୍ରାଣୀ ତମ ପାଖରେ ଯେଉଁଭଳି ଆଚରଣ ଦେଖାଇ ତମକୁ ଆକୃଷ୍ଟ କରିଥିଲା ଏବଂ ତମେ ତାକୁ ନିଷ୍କପଟ ଭାବରେ ବନ୍ଧୁ ଭାବରେ ଗ୍ରହଣ କରିଥିଲ, ତମର ସେଥିରେ କିଛି ଦୋଷ ନଥିଲା । ତମେ ତ ଇନ୍ଦ୍ରାଣୀର ଦ୍ୱିତୀୟ ରୂପ ସମ୍ବନ୍ଧରେ କିଛି ଜାଣି ନଥିଲ । ତେଣୁ ତାକୁ ଭଲପାଇ ବସିଥିଲ । ତମ ମନ ପବିତ୍ର ଥିଲା,ନିର୍ମଳ ଥିଲା, କିନ୍ତୁ ତମେ କ'ଣ ଜାଣିଥିଲ ଇନ୍ଦ୍ରାଣୀ ଏପରି ଏକ ଅପବାଦର ଅଠା ତମ ମୁଣ୍ଡରେ ଆଣି ବୋଳିଦେବ ବୋଲି !

ସେଇଦିନ ରାତି କଥା ତମର ନିଶ୍ଚୟ ମନେ ଥିବ । ଯେଉଁଦିନ ତମେ ସବୁ ବନ୍ଧୁବାନ୍ଧବୀମାନେ ମିଶି ବୁଲି ଯାଇଥିଲ ମୁସୌରୀ । ଚାରିବନ୍ଧୁ ଏବଂ ତିନି ବାନ୍ଧବୀ । ଇନ୍ଦ୍ରାଣୀ ଥିଲା ତମମାନଙ୍କ ମେଳରେ । 'ହିଲ୍‌ଭିଉ' ହୋଟେଲରେ ସେଦିନର ରାତି କଥା ତମର ନିଶ୍ଚୟ ମନେଅଛି । ଦିନଯାକ ସମସ୍ତେ ବୁଲି ବୁଲି, ପର୍ବତ-ନଗରୀର ଶୋଭା ଦେଖି ଦେଖି କ୍ଲାନ୍ତ ହୋଇ ପଡ଼ିଥାଅ । ଖିଆ-ପିଆ ସାରି ଶୋଇଥାଅ ନିର୍ଜନ କୋଠରିରେ । ରାତି ସେତେବେଳକୁ କେତେ ହେବ ? ଦୁଇଟା, ତିନିଟା । ହଠାତ୍ ତମେ ଅନୁଭବ କଲ, ତମ

କମ୍ବଳଟା ଧୀରେ ଧୀରେ ତମ ଦେହଉପରୁ ଖସି ଖସି ଯାଉଛି । ତମର ନିଦ ଭାଂଗିଗଲା । ତମେ କମଳଟାକୁ ଟାଣି ଅଟକେଇବାକୁ ଚେଷ୍ଟା କଲ । କିନ୍ତୁ ଧରିରଖିପାରିଲ ନାହିଁ । ଘଟଣାଟା କ'ଣ ବୁଝି ନ ପାରି ବିଚଳିତ ହୋଇ ତମେ ବେଡ୍‌ସୁଇଚ୍ ଜଳାଇ ଦେଲ ।

କ'ଣ ଦେଖିଲ ତମ ସାମ୍ନାରେ ?

ଇନ୍ଦ୍ରାଣୀ ।

ଇନ୍ଦ୍ରାଣୀ ହସି ହସି ଗଡ଼ିଯାଉଛି । ଦେହରେ ବସନ ତା'ର ସଂକ୍ଷିପ୍ତ । ଅସଂଯତ । ଚାହାଣିରେ କିପରି କାମନାର ଗନ୍ଧ । ତମେ ବୁଝିପାରିଲ । ଜାଣିପାରିଲ ଇନ୍ଦ୍ରାଣୀର ଗୋପନ ଇଚ୍ଛା କଥା । ତମ ଦେହର ତନ୍ତୁଗୁଡ଼ିକ ବି କ୍ଷଣକ ପାଇଁ ଉତ୍ତେଜିତ ହୋଇ ଉଠିଲା । କିନ୍ତୁ ତୁମେ ଶିକ୍ଷିତ, ଭଦ୍ର, ସଂଯମୀ ଯୁବକ । ନିଜକୁ ସଂଯମ କରି ମୁହଁରେ ହସ ଫୁଟାଇ ପଚାରିଲ : ଏତେ ରାତିରେ, ଏକା ଏକା, ମୋ ଘରେ ?

ଇନ୍ଦ୍ରାଣୀ ହସୁଥିଲା । ହସ ଥମେଇ କହିଲା : ଜାଣ ରାଜେଶ, ସେ ଘରଟାରେ ମୋତେ ଭାରି ଡର ମାଡ଼ିଲା । ମୁଁ ଗୋଟାଏ ଦୁଃସ୍ୱପ୍ନ ଦେଖିଲି । ଗୋଟାଏ କଙ୍କାଳ ଆସି ତା' ହାଡୁଆ ହାତଟାରେ ମୋ ଗଳାଟାକୁ ଚିପି ଧରିଲା । ମୋର ମନେହେଲା ଯେପରି ଧୀରେ ଧୀରେ ମୋର ଶ୍ୱାସପ୍ରଶ୍ୱାସ ବନ୍ଦ ହୋଇଯାଉଚି । ମୁଁ ହଲଚଲ ହୋଇ ପାରୁ ନାହିଁ । ବହୁ କଷ୍ଟରେ କଡ଼ ଲେଉଟାଇ ଉଠି ଠିଆ ହୋଇପଡ଼ିଲି । ବତି ଜଳେଇ ଦେଖିଲି ଘରେ କେହି ନାହିଁ । କିନ୍ତୁ ଆଉ ଶୋଇପାରିଲି ନାହିଁ । ଗୋଟାଏ ଅହେତୁକ ଭୟ ମୋ ଆଖିରୁ ନିଦ କାଢ଼ି ନେଇଗଲା ।

ଇନ୍ଦ୍ରାଣୀର କଥା ତମେ ପ୍ରଥମେ ବିଶ୍ୱାସ କରିପାରିଲ ନାହିଁ । କିନ୍ତୁ ହସ ବଦଳରେ ତା' ମୁହଁର କାରୁଣ୍ୟ ଦେଖି ତମ ମନରେ ଦୟା ସଞ୍ଚରିଲା । ତମେ ତାକୁ ପାଖକୁ ଡାକି ବସାଇଲ । କହିଲ, ହଉ ବସ, ଏଇଠି ବସି ବସି ଗଳ୍ପ କରି ରାତି କଟାଇ ଦେବା ।

ଇନ୍ଦ୍ରାଣୀ ବସିଲା । ତମ ଶେଯରେ, ଅନ୍ତରଙ୍ଗ ଭାବରେ । କିନ୍ତୁ ତମେ ଅନୁଭବ କଲ ଇନ୍ଦ୍ରାଣୀ ଆଖିରେ ତନ୍ଦ୍ରାର ପାହାଡ଼ । ସେ ବିଶ୍ରାମ ଚାହେ ଏବଂ ପର ମୁହୂର୍ତ୍ତରେ ତମେ ଦେଖିଲ, ତମର ଶେଯ ଉପରେ ଇନ୍ଦ୍ରାଣୀ ତମର ଅନୁମତି ନ ନେଇ ଧୀରେ ଧୀରେ ଶୋଇ ପଡୁଛି । ଦେହର ସଂକ୍ଷିପ୍ତ ବସନ ତା'ର ଆହୁରି ଅସଂଯତ । ମୁହଁର ହସ, ଆଖିର ଇଙ୍ଗିତ ସବୁ କିପରି ଅସ୍ୱାଭାବିକ । ଯେଉଁଟା ତମ ତରୁଣ ମନରେ ଉତ୍ତେଜନା ସୃଷ୍ଟି କରିଥିଲା ।

ଇନ୍ଦ୍ରାଣୀ ଶୋଇ ପଡ଼ିବା ପରେ ତମେ ଶେଯରୁ ଉଠିଆସି ପାଖ ଚେଆରରେ ବସିବାକୁ ମନସ୍ଥ କରିଥିଲ । କିନ୍ତୁ ଇନ୍ଦ୍ରାଣୀ ତମ ହାତ ଧରି ପକାଇଲା । ତନ୍ଦ୍ରା ଜଡ଼ିତ କଣ୍ଠରେ କହିଲା : ନା ରାଜେଶ, ଆଜିର ରାତିଟାକୁ ବ୍ୟର୍ଥ କର ନାହିଁ । ତମେ ତ ଜାଣିଛ ମୁଁ ଏକାନ୍ତ ଭାବରେ ତମର ଏବଂ ତମେ ବି ମତେ ସେ ପ୍ରତିଶ୍ରୁତି ଦେଇଛ । ତେଣୁ ଆମର ବାଧା କେଉଁଠି ? ପ୍ରତିବନ୍ଧକ କ'ଣ ?

ପ୍ରଥମେ ତମ ମନ ଟିକିଏ ହାଲ୍‌କା ହୋଇ ଯାଇଥିଲା । ତମେ ଇନ୍ଦ୍ରାଣୀର ଯୌବନ-ମତ୍ତ ଅଙ୍ଗ ଅବୟବ ଆଡ଼େ ଚାହିଁ ବିଚଳିତ ହୋଇ ପଡ଼ିଥିଲ । ଇନ୍ଦ୍ରାଣୀ ତମକୁ ଭିଡ଼ି ନେଇଥିଲା ତା' ଛାତି ଉପରକୁ । ତମେ ଇନ୍ଦ୍ରାଣୀର ଓଠ ସହିତ ଓଠ ମିଶାଇଥିଲ ।

କିନ୍ତୁ ପର ମୁହୂର୍ତ୍ତରେ ତମର ବିବେକ ଦଂଶନ କରିଥିଲା । ତମ ଦେହର ସଦ୍ ଓ ମହତ୍ ସତ୍ତାଟି ବାହାରି ଆସି ତମକୁ କଠୋର କଣ୍ଠରେ କହିଥିଲା : ରାଜେଶ ! ତମ ଜୀବନର ସମସ୍ତ ସାଧନା ଗୋଟିଏ ଚପଳା ଯୁବତୀ ଧ୍ୱଂସ କରିଦେବ ?

ତମେ ସଚେତନ ହୋଇ ଉଠିଥିଲ । ଇନ୍ଦ୍ରାଣୀର ବାହୁ ବନ୍ଧନରୁ ନିଜକୁ ମୁକ୍ତ କରି, ଇନ୍ଦ୍ରାଣୀକୁ କଠୋର କଣ୍ଠରେ ଶାସନ କରିଥିଲ । କହିଥିଲ- ନା ନା, ଏହା ଅସମ୍ଭବ । ବିବାହ ପୂର୍ବରୁ ଆମର ସଂପର୍କ ମୁଁ କଳୁଷିତ କରିବି ନାହିଁ । ଏହା ମୋର ଆଦର୍ଶ ନୁହେଁ ।

ସେଦିନ ଇନ୍ଦ୍ରାଣୀ ବ୍ୟର୍ଥ ହୋଇ ଫେରି ଯାଇଥିଲା ।

କିନ୍ତୁ ତା'ପରେ ବି ସେ ତୁମକୁ ତା'ର କାମନା ନିଆଁରେ ଜାଳିବା ପାଇଁ ଚେଷ୍ଟା କରିଥିଲା । ତମେ ତା'ର ଏପରି ଆଚରଣରେ କ୍ଷୁବ୍ଧ ହୋଇଥିଲ ଏବଂ ତା' ପ୍ରତି ତମ ମନରେ କ୍ରମଶଃ ବିକାର ଭାବ ସୃଷ୍ଟି ହୋଇଥିଲା ।

ମୁସୌରୀରୁ ଭ୍ରମଣ ଶେଷ କରି ତମେମାନେ ଯାଇ ପହଞ୍ଚିଲ ସିମ୍‌ଲାରେ । ସେଇଠି ତମେ ଇନ୍ଦ୍ରାଣୀର ସ୍ୱରୂପ ଉଦ୍‌ଘାଟନ କରି ପାରିଥିଲ ।

ସିମ୍‌ଲାର ସେଇ ରାତିଟି କଥା ନିଶ୍ଚୟ ତମର ମନେ ଥିବ । ପାହାଡ଼ର ସର୍ବୋଚ୍ଚ ସ୍ତରରେ ତମେମାନେ ଯେଉଁ ହୋଟେଲରେ ରହିଥିଲ, ସେ ହୋଟେଲର ଅବସ୍ଥିତି ଥିଲା ଅଦ୍ଭୁତ । ହୋଟେଲର ତିନିପାଖ ଯାକ ଥିଲା ଏକ ତିଖ ଜାଗାରେ । ଝରକାକୁ ଚାହିଁଲେ ଦିଶୁଥିଲା ଏକ ଗହ୍ୱର । ତଳକୁ ଆଖି ପାଉ ନଥିଲା । ତଳେ ପାହାଡ଼ୀ ଗଛର ଜଙ୍ଗଲ । ତମ ହୋଟେଲ୍‌ଟା ଏତେ ଉପରେ ଅବସ୍ଥିତ ହୋଇଥିଲା ଯେ, ତଳକୁ ଚାହିଁଲେ ପାହାଡ଼ୀ ଗଛଗୁଡ଼ାକ ମନେହେଉଥିଲା ଛୋଟ ଛୋଟ କପାଗଛ ପରି ।

ସେଦିନ ସମସ୍ତେ ବୁଲି ଯାଇଥିଲେ । ତମ ଦେହ ଅସୁସ୍ଥ ଥିବାରୁ ତମେ ଏକା ରହିଯାଇଥିଲ ତମର ନିରୋଳା କୋଠରିଟିରେ ।

ଶୋଇ ଶୋଇ ବହି ପଢୁଥିଲ । ରାତି ସେତେବେଳକୁ କେତେ ହେବ ? ଦଶ, ଏଗାର ।

ତମ ଦରଜାଟି ଧୀରେ ଧୀରେ ଖୋଲିଗଲା । ତମେ ଚାହିଁ ଦେଖିଲ ଇନ୍ଦ୍ରାଣୀ ଝଡ଼ ବେଗରେ ତମ ଘରକୁ ପଶିଆସୁଛି । ଆଶ୍ଚର୍ଯ୍ୟ ହୋଇ ତା' ଆଡ଼େ ଚାହିଁ କହିଲ - ତମେ ସେମାନଙ୍କ ସାଂଗରେ ଯାଇ ନାହଁ ?

ଇନ୍ଦ୍ରାଣୀ ଆଗେଇ ଆସି ତମ ପାଖ ଚେଆର୍‌ରେ ବସି କହିଲା : କେଉଁଠାକୁ ?

- କାଲ୍‌କା । ସେମାନେ ସମସ୍ତେ କାଲ୍‌କା ଗଲେ । ପିଞ୍ଜୋର ଗାର୍ଡେ଼ନ ଦେଖିବା ପାଇଁ । ଆଜି ରାତିରେ କାଲ୍‌କାରେ ରହିବା କଥା ହେଲା । ତମେ ତ ସେମାନଙ୍କ ସାଂଗରେ ଯାଇଥିଲ । କିନ୍ତୁ ଫେରି ଆସିଲ କାହିଁକି ?

ଇନ୍ଦ୍ରାଣୀ କହିଲା : ହଁ, ମୁଁ ଫେରି ଆସିଲି । ଅଧେ ବାଟରୁ ଯାଇ ଫେରି ଆସିଲି । ମୁଁ ଆଜି ତମ ସହିତ ଗୋଟାଏ ସମାଧାନ କରିବାକୁ ଚାହେଁ ।

: କ'ଣ ସମାଧାନ କରିବାକୁ ଚାହ ?

: ବିବାହ । ମୁଁ ଚାହେ କାଲି ଏଇଠି, ଏଇ ସିମ୍‌ଲାରେ ରେଜିଷ୍ଟ୍ରେସନ ଅଫିସ୍‌ରେ ଆମ ଦୁହିଁଙ୍କର ବିବାହ ହେଉ ।

ତମେ ଇନ୍ଦ୍ରାଣୀର କଥା ଶୁଣି ସେଦିନ ରାତିରେ ସ୍ତବ୍ଧ ହୋଇ ଯାଇଥିଲ । ଇନ୍ଦ୍ରାଣୀର ଏପରି ଏକ ଅନ୍ୟାୟ କଥା ଶୁଣି ତମ ରକ୍ତ ତାତି ଯାଇଥିଲା । ତଥାପି ତମେ ସଂଯତ କଣ୍ଠରେ କହିଥିଲ :

ବିବାହଟା ଏକା ତମେ ହେବ ନାହିଁ ଇନ୍ଦ୍ରାଣୀ । ସମସ୍ୟାଟା ଦୁଇଜଣଙ୍କର । ତମେ ମୋତେ ବିବାହ କରିବା ପାଇଁ ଆଗ୍ରହୀ ହୋଇପାର, ମାତ୍ର ମୋର ଯଦି ଇଚ୍ଛା ନଥାଏ ?

ତମ ମୁହଁରୁ ଏଇ କଥା ପଦକ ଶୁଣି ଇନ୍ଦ୍ରାଣୀ ଆଖିରେ ନିଆଁ ଜଳି ଉଠିଥିଲା । ସେ ଚିତ୍କାର କରି କହିଥିଲା : ତମେ ମୋର ସର୍ବନାଶ କରିସାରି ଆଜି ପଛେଇ ଯିବାକୁ ଚାହ ରାଜେଶ । ମୁଁ କିନ୍ତୁ ଛାଡ଼ିବି ନାହିଁ । ମୁଁ ଅନ୍ୟ ଦଶଟା ଝିଅଙ୍କ ପରି କାଓ୍ୱାଡ଼ ନୁହେଁ ।

ତମେ ବି ଉତ୍ତେଜିତ କଣ୍ଠରେ କହିଥିଲ : ସଂଯତ ହୁଅ ଇନ୍ଦ୍ରାଣୀ । ମୁଁ ତମର ସର୍ବନାଶ କରିଛି ମାନେ ?

ଇନ୍ଦ୍ରାଣୀ ଆହୁରି ଜୋର୍‌ରେ ଚିତ୍କାର କରି କହିଥିଲା : ମୋର କ'ଣ ସର୍ବନାଶ କରିଛ ତମେ ଜାଣି ନାହଁ ? ବର୍ତ୍ତମାନ ନିର୍ବୋଧ ଶିଶୁଟିଏ ହୋଇଯାଉଛ ? କିନ୍ତୁ ତମେ ଜାଣ ରାଜେଶ ? ମୁଁ ଆଜି ଅନ୍ତସତ୍ତ୍ୱା । ତମର ସନ୍ତାନ ମୋର ଗର୍ଭରେ ।

ତମେ ଆଉ ଆତ୍ମସମ୍ବରଣ କରିପାରି ନଥିଲ । ବିଛଣାରୁ ଉଠିପଡ଼ି ଠାସ୍ କରି ଗୋଟାଏ ଚାପୁଡ଼ା ଲଗେଇ ଦେଇଥିଲ ଇନ୍ଦ୍ରାଣୀ ଗାଲରେ । ଚିତ୍କାର କରି କହିଥିଲ, ମିଥ୍ୟାବାଦିନୀ, ଦୁଶ୍ଚରିତ୍ରା । ବାହାରି ଯାଅ ମୋ ଘରୁ । ମୁଁ ତମର ଦେହ ଜୀବନରେ କେବେ ସ୍ପର୍ଶ କରି ନାହିଁ, ଅଥଚ ମୋର ସନ୍ତାନ ତମେ ଗର୍ଭରେ ବହନ କଲ ?

ଇନ୍ଦ୍ରାଣୀ ଚୁପ୍‌ଚାପ୍ ମୁହୂର୍ତ୍ତଟିଏ ନୀରବରେ ବସି ରହିଲା । ଧୀରେ ଧୀରେ ଭ୍ୟାନିଟି ବ୍ୟାଗ୍‌ରୁ ଗୋଟିଏ ଫଟୋଗ୍ରାଫ୍ କାଢ଼ି ତମ ଆଡ଼କୁ ବଢ଼େଇ ଦେଇ ଗର୍ବିତ କଣ୍ଠରେ କହିଲା : ଇନ୍ଦ୍ରାଣୀ କିଛି ପ୍ରମାଣ ନ ରଖି କେବେ କଥା କୁହେ ନାହିଁ ।

ତମେ ଇନ୍ଦ୍ରାଣୀ ହାତରୁ ଫଟୋଗ୍ରାଫ୍‌ଟି ନେଇ ଦେଖିଲ ରାଜେଶ । କ'ଣ ଦେଖିଲ ? ଇହି, କି ଦୃଶ୍ୟ ସେ । ଅକାଟ୍ୟ ପ୍ରମାଣ । ବିଛଣା ଉପରେ ଶୋଇଛି ଇନ୍ଦ୍ରାଣୀ । ତମେ ତା' ବାହୁ ବନ୍ଧନ ଭିତରେ । ଇନ୍ଦ୍ରାଣୀର ଓଠ ସହିତ ତମର ଓଠ ମିଶିଛି । କ'ଣ ସେତେବେଳକାର ତମର ମନର ଅବସ୍ଥା । ରକ୍ତ ତମର ଶୀତଳ ହୋଇଗଲା । ମନେପଡ଼ିଲା ମୁସୌରୀର ସେଇ ରାତିଟି କଥା । ଯେଉଁଦିନ ଇନ୍ଦ୍ରାଣୀ ଦୁଃସ୍ୱପ୍ନର ଶିକାର ହୋଇ ତମ ପାଖରେ ଆଶ୍ରୟ ଲୋଡ଼ିଥିଲା । ଆଉ ତମେ ମୁହୂର୍ତ୍ତକ ପାଇଁ ଆତ୍ମସତ୍ତା ହରାଇଥିଲ । କିନ୍ତୁ ସେତ କେତୋଟି ମୁହୂର୍ତ୍ତର ଘଟଣା । ସେଇ ମୁହୂର୍ତ୍ତଟାକୁ ସେଲୁଲଏଡ୍ ଫିତାରେ ତୋଳିଲା କିଏ ?

ତମେ ବ୍ୟସ୍ତ ହୋଇ ଉଠିଲ । ବିବ୍ରତ ହୋଇ ଉଠିଲ । ହିଂସ୍ର ଚାହାଣି ଫୁଟି ଉଠିଲା ତମ ଆଖିରେ । ତମେ ଫଟୋଗ୍ରାଫ୍ ଖଣ୍ଡିକୁ ଶତଛିନ୍ନ କରି ଝରକା ଦେଇ ଫୋପାଡ଼ି ଦେବାକୁ ଯାଉଥିଲ ।

କିନ୍ତୁ ଇନ୍ଦ୍ରାଣୀ ତମର ପଥରୋଧ କରି କହିଲା : ନା ନା ରାଜେଶ, ମୁଁ ମୋର ଶେଷ ପ୍ରମାଣ ଟିକକ ଏପରି ନଷ୍ଟ କରିଦେବାକୁ ଚାହେ ନାହିଁ । ତମେ ଯଦି ମୋତେ ଅସ୍ୱୀକାର କରିବ, ତମେ ଯଦି ମୋତେ ଗ୍ରହଣ ନ କରିବ, ମୁଁ ଏଇଠି, ତମରି ଆଗରେ, ଏଇ ଝରକା ଦେଇ ଡେଇଁ ପଡ଼ିବି ତଳକୁ । ଦେଖୁଛ ତ ଏଇ ଗହ୍ୱର । ମୋର ସତ୍ତା ରହିବ ନାହିଁ । କିନ୍ତୁ ତମେ ନିସ୍ତାର ପାଇବ ନାହିଁ । ହତ୍ୟା ଅପରାଧରେ ତମେ ଫାଶୀ ଖୁଣ୍ଟରେ ଝୁଲିବ ।

ରାଜେଶ ! ମନେପଡୁଛି ତମର ସେଦିନର କଥା, ସେଇ ମୁହୂର୍ତ୍ତର କଥା ? ତମେ ଶଙ୍କି ନଥିଲ, ତମେ ଦମି ନଥିଲ, ତମେ ଆଗେଇ ଯାଇଥିଲ ଝରକା ଆଡ଼କୁ । କିନ୍ତୁ ତା' ଆଗରୁ ଇନ୍ଦ୍ରାଣୀ କୁଦା ମାରି ଉଠି ବସିଥିଲା ଖୋଲା ଝରକା ଉପରେ ।

ଏଥର ତମେ ଶଙ୍କି ଯାଇଥିଲ । ବାହାରକୁ ଚାହିଁ ଦେଖିଥିଲ, ଥଳକୂଳ କିଛି ନାହିଁ । ସତରେ ଯଦି ଇନ୍ଦ୍ରାଣୀ ଖସି ପଡ଼େ, ତେବେ ତା'ର ସତ୍ତା ଆଉ କେହି ଖୋଜି ପାଇବେ ନାହିଁ ।

ଇନ୍ଦ୍ରାଣୀ କିନ୍ତୁ ଝରକା ଉପରକୁ ଉଠିଯାଇ ଏକ ବିପଜ୍ଜନକ ସ୍ଥାନରେ ବସିରହିଥିଲା । ସାମାନ୍ୟ ବାଲାନ୍‌ସ ହରାଇଲେ, ତାକୁ ଅଟକେଇ ରଖିହେବ ନାହିଁ ।

ମୁହୂର୍ତ୍ତକ ପାଇଁ ତମେ ଶଙ୍କି ଯାଇଥିଲ । କିନ୍ତୁ ତା'ପର ମୁହୂର୍ତ୍ତରେ ଅନ୍ୟାୟ ବିରୁଦ୍ଧରେ ତମ ବିବେକ ଚିତ୍କାର କରି ଉଠିଥିଲା । ତମେ ଦୃଢ଼ କଣ୍ଠରେ କହିଥିଲ : ଏ ବିବାହ ଅସମ୍ଭବ ଇନ୍ଦ୍ରାଣୀ । ମୁଁ ତମକୁ ଭଲ ପାଇଥିଲି । ମୁଁ ତମଠାରେ ଏକ ନିରୀହ ସତ୍ ଆତ୍ମାର ସନ୍ଧାନ ପାଇଥିଲି । କିନ୍ତୁ ତମେ ଯେ ଏପରି ଦୁର୍ଦ୍ଦାନ୍ତ ଆଉ ଦୁଶ୍ଚରିତ୍ର ଏକ ନାରୀ, ଅସମ୍ଭବ । ବିବାହ ତ ଦୂରର କଥା, ତମ ଛାୟା ପର୍ଯ୍ୟନ୍ତ ମୁଁ ସ୍ପର୍ଶ କରିବାକୁ ଚାହେ ନାହିଁ ।

ଇନ୍ଦ୍ରାଣୀ ବି ଚିତ୍କାର କରି କହିଥିଲା : ମୁଁ କିନ୍ତୁ ତମକୁ ଛାଡ଼ିବି ନାହିଁ ରାଜେଶ । ତମର ସନ୍ତାନକୁ ଗର୍ଭରେ ବହନ କରି କୁମାରୀ ମାତାର ଅପବାଦ ମୁଁ ମୁଣ୍ଡେଇ ପାରିବି ନାହିଁ । ପ୍ରମାଣ ତ ମୋ ହାତମୁଠାରେ । ତମେ ଗୋଟିଏ ଫଟୋ ନଷ୍ଟ କରି ଭାବ ନାହିଁ ଯେ, ତା'ର ଆଉ କପି ନାହିଁ । ଆହୁରି ଶହ ଶହ ହଜାର ହଜାର କପି ମୁଁ କରି ରଖିଛି । ତମେ ମୋତେ ଫାଙ୍କିଦେଲେ ବି ଆଇନ୍‌କୁ ଫାଙ୍କି ଦେଇପାରିବ ନାହିଁ ।

ରାଜେଶ, ତମେ ସେଦିନ ସେଇ ମୁହୂର୍ତ୍ତରେ ଆଉ ଆତ୍ମସମ୍ବରଣ କରିପାରି ନଥିଲ । ନ ପାରିବାର ବି କଥା । କାରଣ ଜଣେ ସ୍ୱାଧୀନଚେତା, ସତ୍ ଓ ମହତ୍ ଲୋକ ପକ୍ଷରେ ଏପରି ଏକ ଚରମ ଅପବାଦ ମୃତ୍ୟୁ ତୁଲ୍ୟ । ସେଦିନ ତମ ଶକ୍ତ ହାତଦୁଇଟା ମୁଠା ମୁଠା ହୋଇ ଉଠିଥିଲା । ତମେ ହାତ ଦୁଇଟାକୁ ମୁଠା କରି କରି ଆଖିରୁ ରକ୍ତ ଝରାଇ ଆଗେଇ ଯାଇଥିଲ ଇନ୍ଦ୍ରାଣୀ ଆଡ଼କୁ । ଭୁଲି ଯାଇଥିଲ ଇନ୍ଦ୍ରାଣୀର ଅବସ୍ଥାନ । ଭୁଲିଯାଇଥିଲ ଇନ୍ଦ୍ରାଣୀର ପରିସ୍ଥିତି । ଏକ ନିର୍ଲ୍ଲଜ ଅପମାନ ତମ ଦେହର ସୁପ୍ତ ସିଂହକୁ ଜାଗ୍ରତ କରି ତୋଳିଥିଲା । ତୁମେ କ୍ଷିପ୍ତ ହୋଇ ଉଠିଥିଲ । ପାଦେ ପାଦେ କରି ଆଗେଇ ଯାଇଥିଲ ଇନ୍ଦ୍ରାଣୀ ଆଡ଼କୁ ।

ଇନ୍ଦ୍ରାଣୀ ତମର ହିରଣ୍ୟ ମୂର୍ତ୍ତି ଦେଖି ଆତଙ୍କିତ ହୋଇ ଉଠିଥିଲା । ସେ ହୁଏତ ଏତେଟା ଆଶା କରି ନଥିଲା । କିନ୍ତୁ ତମର ପ୍ରତିଟି ପଦକ୍ଷେପରେ ସେ ହୁଏତ ମୃତ୍ୟୁର ପଦଧ୍ୱନି ଶୁଣିଥିଲା । ତମର ଶକ୍ତ, ବଳିଷ୍ଠ ଓ ହିଂସ୍ର ହାତମୁଠା ତା'ର ଗଳା ବେଷ୍ଟନ କରିବା ପୂର୍ବରୁ, ତମ କାନରେ ଖାଲି ଗୋଟାଏ କରୁଣ ଚିତ୍କାର ବାଜିଥିଲା । ତମେ ଆତ୍ମ ସଚେତନ ହୋଇ ଉଠି ଦେଖିଥିଲ, କ'ଣ ଦେଖିଥିଲ ? ଇନ୍ଦ୍ରାଣୀ ତମ ସାମ୍ନାରେ ନାହିଁ । ତଳକୁ ଚାହିଁ ଦେଖିଥିଲ ଯେପରି କାଗଜ ଖଣ୍ଡେ ଉଡ଼ି ଉଡ଼ି ଖସି ଯାଉଛି, ତଳକୁ, ତଳକୁ ଏବଂ ଅତଳ ତଳକୁ । ତମେ ବି ଚିତ୍କାର କରିବାକୁ ଯାଇ ଚିତ୍କାର କରିପାରି ନଥିଲ । କେବଳ ଝରକାର କାଚ ଦରଜାଟା ଟାଣି ଆଣି କମ୍ବଳ ଘୋଡ଼େଇ ହୋଇ ଶୋଇ ପଡ଼ିଥିଲ ।

ରାଜେଶ ! ତମେ ଡରି ଯାଅ ନାହିଁ । ତମକୁ ଇନ୍ଦ୍ରାଣୀର ହତ୍ୟା ଅପରାଧରେ ଅପରାଧୀ କରିବାକୁ କେହି ସୁଯୋଗ ପାଇ ନାହାନ୍ତି । ଶେଷରେ ପ୍ରମାଣିତ ହୋଇଛି ଇନ୍ଦ୍ରାଣୀ ଏକ ଅତର୍କିତ ମୁହୂର୍ତ୍ତରେ ପାହାଡ଼ ଉପରୁ ଖସିପଡ଼ିଛି । କିନ୍ତୁ ମୁଁ ଜାଣେ ରାଜେଶ, ଇନ୍ଦ୍ରାଣୀର ମୃତ୍ୟୁ ପାଇଁ ଯେ ତମେ ଦାୟୀ, ସେ କଥା ତମ ମନ ତମକୁ ବାରମ୍ବାର ଅପରାଧୀ କରିଛି । କିନ୍ତୁ ଆଉ ଗୋଟାଏ କଥା ତମେ ଜାଣି ନାହଁ, ଯେଉଁ ଘଟଣାଟା ମୋର ଏଇ ପ୍ଲାଷ୍ଟିକ୍ ଫାଇଲ୍‌ରେ ସଂଗୃହୀତ ହୋଇ ରହିଛି । ସିଏ ବି ଖଣ୍ଡିଏ ଫଟୋଗ୍ରାଫ୍ । ଦେଖିବ ? ଏଇ ନିଅ ।

ଆଶ୍ଚର୍ଯ୍ୟ ହେଉଛ ? ଆତଙ୍କିତ ହେଉଛ ? ଏହି ଫଟୋଗ୍ରାଫ୍‌ଟି ଏକମାତ୍ର ପ୍ରମାଣପତ୍ର । ତମେ ଯେତେବେଳେ ତମର ବଳିଷ୍ଠ ହସ୍ତ ସଂଚାଳନ କରି ମୃତ୍ୟୁ ଦୂତ ପରି ଆଗେଇ ଯାଉଥିଲ, ତମର ଆଙ୍ଗୁଳି ଗୁଡ଼ାକ ଯେତେବେଳେ ଅକ୍ଟୋପାଶ ପରି ବିଚିତ୍ର ଭଂଗୀ କରି ଇନ୍ଦ୍ରାଣୀର ଗଳା ବେଷ୍ଟନ କରିବା ପାଇଁ ବ୍ୟସ୍ତ ହୋଇ ଉଠିଥିଲେ, ଠିକ୍ ସେହି ମୁହୂର୍ତ୍ତର ଫଟୋଗ୍ରାଫ୍ ଏ । ଦେଖୁଛ ତ ଇନ୍ଦ୍ରାଣୀ ମୁହଁର ଆତଙ୍କ ଏବଂ ବାହାରେ ଗଭୀର ଗହ୍ୱରର ଅପରିସୀମ ବିସ୍ତୃତି । ଆଉ ଇନ୍ଦ୍ରାଣୀ ? ତା'ର ସ୍ଥିତି ଲକ୍ଷ୍ୟ କରୁଛ ? ଝରକା ଉପରୁ ବେଲୁନ୍ ପରି ସେ ଧୀରେ ଧୀରେ ଖସିଯାଉଛି ତଳକୁ । ଦେଖିଲ ତ ? ଇନ୍ଦ୍ରାଣୀ ଆଉ ତମକୁ ଏବଂ ଇନ୍ଦ୍ରାଣୀର ମୃତ୍ୟୁ ମୁହୂର୍ତ୍ତର ପରିବେଶକୁ । ସେଲୁଲଏଡ୍ ଟେପ୍‌ଟା କିପରି ନିର୍ଭୁଲ ଭାବରେ ଧରି ରଖିଛି, ତା'ର ପ୍ରମାଣ ତମ ହାତରେ ।

ଯା'ହେଉ ସେ ସବୁ ଅତୀତର କଥା । ସେଥିପାଇଁ ତମେ ଚିନ୍ତାକରି କିଛି ଲାଭ ନାହିଁ । ତେବେ ଏଇ ଗୋଟିକ ଫଟୋଗ୍ରାଫ୍ ସାତହଜାର ସାତଶହ ଅଠର ଜଣ କର୍ମପ୍ରାର୍ଥୀଙ୍କ ଭିତରୁ ତମକୁ ଯୋଗ୍ୟ ବିବେଚିତ କରିଛି । ତେଣୁ ବୁଝିପାରୁଥିବ, ମୁଁ ତମ ଅତୀତ ଜୀବନ ସମ୍ବନ୍ଧରେ କେତେ ସଠିକ୍ ଖବର ରଖିଛି ଏବଂ ସବୁଠାରୁ ଯେଉଁ ଖବରଟି ମୋ ପାଇଁ ଅଧିକ ପ୍ରୟୋଜନ, ସେଇଟି ହେଲା ଇନ୍ଦ୍ରାଣୀକୁ ହତ୍ୟା କରିଥିବା ପ୍ରମାଣପତ୍ର । ତା'ବୋଲି ତମେ ଭାବ ନାହିଁ ଯେ ରାଜେଶ, ଏଇ ଫଟୋ ଖଣ୍ଡି ଦେଖାଇ ମୁଁ ତମକୁ ବ୍ଲାକ୍‌ମେଲ୍ କରିବାକୁ ଚାହେ । ସେ କଥା ମୋଟେ ନୁହେଁ । ମୁଁ କେବଳ ତମକୁ ଏତିକି ଜଣାଇଦେବାକୁ ଚାହେ ଯେ, ତମେ ମୋର ଏକାନ୍ତ କର୍ମସଚିବ ଭାବରେ, ମୋ ସହିତ କେବେ ବିଶ୍ୱାସଘାତକତା କରିପାରିବ ନାହିଁ ।

ବେଶ୍ । ମୋର କଥା ଶେଷ ହୋଇଛି । ଏଇ ନିଅ ତମର ଆପଏଣ୍ଟ୍‌ମେଣ୍ଟ୍ ପତ୍ର । ଆଜିଠାରୁ ତମେ 'ମେହେରା ମାଇନିଂ କର୍‌ପୋରେସନ'ର ମ୍ୟାନେଜିଂ ଡାଇରେକ୍ଟର ଧୀରାଜ ମେହେରାଙ୍କର ପର୍ସନାଲ ସେକ୍ରେଟାରୀ । ଏହା ହେଉଛି ତମର ଲିଖିତ ଡେଜିଗ୍ନେସନ । କିନ୍ତୁ ଅଲିଖିତ ଡେଜିଗ୍ନେସନ ତମର ଆହୁରି ଅନେକ ଅଛି, ଯେଉଁଟାକି ଏହା ପୂର୍ବରୁ ମୁଁ ତୁମକୁ କହିଛି ।

ଆଉ ଏଇ ଚାବିଟା ନିଅ । ପ୍ଲାଇ ମାଉଥ୍ ଗାଡ଼ିର । ଏଇଟା ତମ ଡିସ୍‌ପୋଜାଲ୍‌ରେ ରହିବ । ତମେ ସ୍ୱାଧୀନ ଭାବରେ ଏଇ ଗାଡ଼ିକୁ ବ୍ୟବହାର କରିପାରିବ । ଆବଶ୍ୟକ ହେଲେ କମ୍ପାନୀ ସ୍ୱାର୍ଥରେ ବି ଗାଡ଼ିଟି ଲଗାଇବାକୁ ହେବ ।

ଆଉ ତମ ରହିବା ପାଇଁ ଦୋତାଲା ଉପରେ ଦୁଇଟି କୋଠରିର ସୁ-ବନ୍ଦୋବସ୍ତ କରାହୋଇ ରହିଚି । ତା'ରି ତଳେ ଗ୍ୟାରେଜ । ସେଇ ଗ୍ୟାରେଜ୍‌ରେ ଅଛି ତମର ପ୍ଲାଇମାଉଥ୍ ଗାଡ଼ିଟା । ଖାଇବା, ପିଇବା ଓ ଆରାମରେ ରହିବାର ସମସ୍ତ ବନ୍ଦୋବସ୍ତ କରି ରଖାହୋଇଛି । ତମର କୌଣସି ଅସୁବିଧା ହେବ ନାହିଁ ।

ଆଜି, ବର୍ତ୍ତମାନ ତମେ ତମ କୋଠରିକୁ ଫେରିଯାଅ । ଚାରିଟା ବେଳକୁ ଟେଲର ଆସିବ । ତାକୁ ମାପ ଦେଇଦେବ । 'ମେହେରା ମାଇନିଂ କର୍ପୋରେସନ୍'ର ମ୍ୟାନେଜିଂ ଡାଇରେକ୍ଟରଙ୍କ ପର୍ସନାଲ ସେକ୍ରେଟାରୀଙ୍କର କି ଧରଣର ପୋଷାକପତ୍ର ଦରକାର, ତାକୁ ଜଣା ଅଛି । ଯାଅ, ଖାଇପିଇ ବିଶ୍ରାମ କର । ଆଜିଠାରୁ ତମେ ନିଯୁକ୍ତି ପାଇଲ । କର୍ମସୂଚୀ ପାଇଁ ପ୍ରସ୍ତୁତ ହୁଅ ।

\+ + +

ରାଜେଶ ଫେରି ଆସିଲା ।

ଫେରିଆସି ପ୍ରବେଶ କଲା ତା' ପାଇଁ ଉଦ୍ଦିଷ୍ଟ କୋଠରିଟିରେ ।

ଚାକର ଘର ଖୋଲି ଦେଖାଇ ଦେଲା । ଦୁଇଟି ସୁସଜ୍ଜିତ କୋଠରି । ଗୋଟିଏ ଡ୍ରଇଂ କମ୍ ଅଫିସ୍ ରୁମ୍ । ଅନ୍ୟଟି ବେଡ୍ ରୁମ୍ । ଲାଟରିନ୍ ଓ ବାଥ୍ ଆଟେଚ୍‌ଡ । ପରିଷ୍କାର ପରିଚ୍ଛନ୍ନ । ସୁଦୃଶ୍ୟ ଟେବୁଲ ଉପରେ ଗୋଟିଏ ଟେଲିଫୋନ୍ ।

ରାଜେଶ ଘରେ ପଶି ଥକ୍‌କା ମାରି ଠିଆ ହୋଇଥିଲା ।

ଚାକରଟି ଫ୍ୟାନ୍ ଖୋଲିଦେଲା ।

ରାଜେଶ ଚାହିଁଲା ମୁଣ୍ଡ ଉପରକୁ । ଫ୍ୟାନ୍‌ର ସ୍ପିଡ୍ ବଢ଼ିଯାଇଛି । ସେ କୋଟ୍‌ଟା ଦେହରୁ କାଢ଼ି ହ୍ୟାଙ୍ଗରରେ ଟଙ୍ଗାଇଲା । ଭୀଷଣ କ୍ଳାନ୍ତି ଅନୁଭବ କରୁଥିଲା । ସୋଫା ଉପରେ ନଥ୍ କରି ବସିପଡ଼ି ସ୍ୱସ୍ତିର ଗୋଟିଏ ନିଶ୍ୱାସ ପକାଇବାକୁ ଚେଷ୍ଟା କରୁଥିଲା ।

କିନ୍ତୁ ରାଜେଶର ମନେହେଲା, ତା' ଛାତିରେ ଯେପରି ନିଃଶ୍ୱାସ ଅଟକି ଅଟକି ଯାଉଛି । ଶ୍ୱାସରୁଦ୍ଧ ହୋଇ ଆସୁଛି ।

ତା'ର ମନେହେଲା କି ଦୁର୍ଯ୍ୟୋଗରେ ସେଦିନ ସେ ଦରଖାସ୍ତ କରିଥିଲା ଧୀରାଜ ମେହେରାଙ୍କ ବିଜ୍ଞାପନରେ ଆକୃଷ୍ଟ ହୋଇ । ସେ ତ ଆଜିକୁ ଛଅ କି ଆଠମାସ ତଳର କଥା । ମଝିରେ ହଠାତ୍ ଦିନେ ଇଣ୍ଟରଭିଉର କଲ୍ ପାଇଲା । ତା'ପରେ ଆହୁରି ତିନି ଚାରିମାସ ବିତିଯାଇଥିଲା । ସେ ବି ଭୁଲିଯାଇଥିଲା ଇଣ୍ଟରଭିଉ କଥା । କିନ୍ତୁ ହଠାତ୍ ତିନି ଚାରିଦିନ ତଳେ ସେ ଖଣ୍ଡେ ଚିଠି ପାଇଲା ତା'ର ଚାକିରି ହୋଇଛି । ଦରମା ମୋଟା ଅଙ୍କର ।

ରାଜେଶ ଆଗପଛ ଚିନ୍ତା ନ କରି ଉତ୍‌ଫୁଲ୍ଲ ହୋଇ ଛୁଟି ଆସିଲା ଧୀରାଜ ମେହେରାଙ୍କ ଘରକୁ । ଧୀରାଜ ମେହେରା ତାକୁ ଆପଏଣ୍ଟ୍‌ମେଣ୍ଟ୍ ଲେଟର ଦେଲେ । ଆଉ ଚିନ୍ତା କ'ଣ ?

କିନ୍ତୁ ରାଜେଶ କ'ଣ ଜାଣିଥିଲା, ଧୀରାଜ ମେହେରା ତା' ଅତୀତ ଜୀବନର ଟିକିନିଖି ଘଟଣାକୁ ନଖଦର୍ପଣରେ ପ୍ରତିଫଳନ କରି ରଖିଛନ୍ତି ? ରାଜେଶ କ'ଣ ଜାଣିଥିଲା, ତା'ଭଳି ଫୂର୍ତ୍ତିବାଜ୍ ଏକ ଉତ୍ତଙ୍ଗ ଜଳ ପ୍ରବାହ ହଠାତ୍ ଗୋଟାଏ ସରୁ ପଥର ବନ୍ଧ ପାଖରେ ସ୍ଥିର ହୋଇଯିବ ।

ରାଜେଶ କିଛି ଭାବିପାରୁ ନଥିଲା ।

ସୋଫା ଉପରେ ବସିରହି ଆଖିବୁଜି ଚିନ୍ତା କରୁଥିଲା ।

ହଠାତ୍ ଏକ ମଧୁର ଗୁଞ୍ଜରଣରେ ତା'ର ଧ୍ୟାନ ଭଂଗ ହେଲା ।

ସାମ୍‌ନା ଟେବୁଲ୍ ଉପରେ ପ୍ରିୟଦର୍ଶିନୀ ଫୋନ୍‌ଟା ଧୀରେ ବାଜୁଛି ।

ରାଜେଶ ରିସିଭରଟା ଉଠାଇ ନେଲା ।

: ହ୍ୟାଲୋ ?

ମିଷ୍ଟର ରାଜେଶ ! ଅପର ପ୍ରାନ୍ତରୁ ଏକ ସୁମଧୁର ନାରୀକଣ୍ଠର ସ୍ୱର ଶୁଣି ରାଜେଶ ମୁହୂର୍ତ୍ତେ ସ୍ତବ୍ଧ ହୋଇଗଲା ।

ପୁଣି ଅପରପ୍ରାନ୍ତରୁ ସେହି କଳକଣ୍ଠ ଶୁଣାଗଲା : କିଏ ମିଷ୍ଟର ରାଜେଶ !

: ଇଏସ୍ ସ୍ପିକିଂ ।

: ମୁଁ ଆଶା ମେହେରା କହୁଛି, ମାନେ ମିସେସ୍ ଧୀରାଜ ମେହେରା । ଶୁଣିଲି ଆପଣ ଆଜି ନୂତନ ଆପଏଣ୍ଟ୍ ହୋଇଛନ୍ତି । ଏତେ ଶୀଘ୍ର ଆପଣଙ୍କୁ ବିରକ୍ତ କରିବାର ଇଚ୍ଛା ନଥିଲା । କିନ୍ତୁ ଗୋଟାଏ ଅସୁବିଧାରେ ପଡ଼ି...

ରାଜେଶ ମିସେସ୍ ମେହେରାଙ୍କ ଠାରୁ ହଠାତ୍ ଏପରି ଅଯାଚିତ ଭାବରେ ଟେଲିଫୋନ୍ ପାଇବ ଆଶା କରି ନଥିଲା । ସେ ଦ୍ୱିଧାଜଡ଼ିତ କଣ୍ଠରେ କହିଲା :

: କୁହନ୍ତୁ ମିସେସ୍ ମେହେରା, ଆଦେଶ ଦିଅନ୍ତୁ ।

ମିସେସ୍ ମେହେରା ହସିଲେ । କହିଲେ : ଆଦେଶ ନୁହେଁ ମିଷ୍ଟର ରାଜେଶ, ମୋର ଗୋଟିଏ ଅନୁରୋଧ । ଅନୁରୋଧଟା ହେଉଛି ମୁଁ ଟିକିଏ ଗୋଟାଏ ଜରୁରୀ କାମରେ ବାହାରକୁ ଯିବାକୁ ଚାହେ । ମୋ ଗାଡ଼ିଟା ଗ୍ୟାରେଜକୁ କାଲିଠାରୁ ଦିଆହୋଇଛି । ଡ୍ରାଇଭର ଆଣିବାକୁ ଯାଇଥିଲା । ସେଠାରୁ ଫୋନ୍ କରି ଜଣାଇଛି ଯେ, ଗାଡ଼ିର ଇଞ୍ଜିନ୍ କାମ ଟିକିଏ ବାକି ଅଛି, ଆହୁରି ତିନି ଚାରିଘଣ୍ଟା ଲାଗିବ । କିନ୍ତୁ ବାହାରକୁ ଯିବାଟା ମୋର ଖୁବ୍ ଜରୁରୀ ।

: କୁହନ୍ତୁ, ମୋତେ କ'ଣ କରିବାକୁ ହେବ ? ରାଜେଶ ପଚାରିଲା ।

ମିସେସ୍ ମେହେରା କହିଲେ : ଆପଣ ଯଦି ମୋତେ ଟିକେ ଆପଣଙ୍କ ଗାଡ଼ିରେ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଛାଡ଼ିଦେଇ ଆସିପାରନ୍ତେ...

: କିନ୍ତୁ ମିଷ୍ଟର ମେହେରା ଯଦି...

: ନା ମିଷ୍ଟର ମେହେରା ଖୋଜିବେ ନାହିଁ । ସେ ଦିଲ୍ଲୀ ଚାଲିଗଲେଣି । ତାଙ୍କ ପ୍ଲେନ୍‌ଟା ଆଉ ଦଶ ପନ୍ଦର ମିନିଟ୍ ପରେ ଛାଡ଼ିଯିବ । ଯଦି ଆପଣଙ୍କୁ ଅସୁବିଧା ନ ହୁଏ...

: ନା ନା, ମୋର ଅସୁବିଧା କ'ଣ ! ରାଜେଶର କଣ୍ଠସ୍ୱର କିପରି ବିଚଳିତ ଶୁଣା ଯାଉଥିଲା ।

: ତା'ହେଲେ ମୁଁ ସଂଗେ ସଂଗେ ଆସୁଛି । ଆପଣ ପ୍ରସ୍ତୁତ ହୋଇ ଗ୍ୟାରେଜରୁ ଗାଡ଼ି ବାହାର କରନ୍ତୁ ।

ରାଜେଶ ନିଜର ସ୍ଥିତି ଖୋଜି ପାଇବା ପୂର୍ବରୁ ଦ୍ରୁତ ଏଇ ଯେଉଁ ଘଟଣା ଘଟିଗଲା, ସେଥିରେ ସେ ଟିକିଏ ବିଚଳିତ ହୋଇପଡ଼ିଲା । ମିସେସ୍ ମେହେରା ତାକୁ ଅନୁରୋଧ କରିଛନ୍ତି ଗାଡ଼ିରେ ଟିକେ ଲିଫ୍‌ଟ ଦେବା ପାଇଁ । ଏଥିରେ ଅବଶ୍ୟ ଅସ୍ୱାଭାବିକତା କିଛି ନାହିଁ । ଧୀରାଜ ମେହେରାଙ୍କ ଗାଡ଼ି ସଂଖ୍ୟା ଅବଶ୍ୟ ରାଜେଶକୁ ଜଣା ନାହିଁ । କିନ୍ତୁ ମିସେସ୍ ମେହେରାଙ୍କ ପାଇଁ ଯେ ଗୋଟିଏ ଗାଡ଼ି ନିଯୁକ୍ତ ଅଛି ଏବଂ ସେଇ ଗାଡ଼ିଟି ଗ୍ୟାରେଜରେ, ସେକଥା ରାଜେଶ ଜାଣିପାରି ଥିଲା । କିନ୍ତୁ ମିସେସ୍ ମେହେରାଙ୍କର ଏପରି ଆକସ୍ମିକ ଅନୁରୋଧ ସେ ମୋଟେ କଳ୍ପନା କରିପାରୁ ନଥିଲା ।

ରାଜେଶ ଉଠି ଠିଆ ହେଲା ।

ନା, ମନରୁ ସମସ୍ତ ଦୁଶ୍ଚିନ୍ତା, ଗ୍ଲାନି ଝାଡ଼ି ପୋଛି ଦେଇ ତାକୁ କର୍ମଠ ହେବାକୁ ହେବ । ସେ ଯେ ଏକ ଦୁର୍ଦ୍ଦାନ୍ତ ପୂର୍ଣ୍ଣିବାଜ ଉତଙ୍ଗ ପ୍ରବାହ, ସେଇକଥା ମନେରଖି କର୍ମ ଜଞ୍ଜାଳରେ ମତ୍ତ ହୋଇ ଉଠିବ ସେ । ଭୟ, ଭ୍ରାନ୍ତି, ଆତଙ୍କ, ଏସବୁ ରାଜେଶ ଗତି ପଥରେ କେବେ ପ୍ରତିବନ୍ଧକ ହୋଇପାରି ନାହାନ୍ତି, ଆଜି ବି ସେମାନେ ପକ୍ଷ ବିସ୍ତାର କରି ଠିଆ ହୋଇପାରିବେ ନାହିଁ ।

ରାଜେଶ ହ୍ୟାଙ୍ଗରରୁ କୋଟ୍‌ଟି ନେଇ ପୁଣି ଦେହରେ ପିନ୍ଧିଲା । ପକେଟ୍‌ରୁ ପ୍ଲାଇମାଉଥ୍ ଗାଡ଼ିର ଚାବିଟା ବାହାର କରି ଉପରକୁ ଫିଙ୍ଗି, କ୍ୟାଚ୍ ଧରିଲା । ତା'ପରେ ସୁସୁରୀ ବଜାଇ, ସତେଜ ନିର୍ବିକାର ଠାଣିରେ ଶିଡ଼ିର ପାହାଚରେ ଡେଇଁ ଡେଇଁ ତଳକୁ ଓହ୍ଲାଇ ଗଲା ।

ଠିକ୍ ଶିଡ଼ି ଶେଷରେ, ସିଜିନ୍ ଫୁଲ କୁଣ୍ଡ ପାଖରେ, କିଏ ? କିଏ ସେ ?

ରାଜେଶର ପାଦ ଯୋଡ଼ାକ ଶିଥିଳ ହୋଇଗଲା ।

ଜଣେ ରୂପସୀ ମହିଳା । ବୟସ କେତେ ହେବ ? ତିରିଶ ପଇଁତିରିଶ । ଏତେ ମୂଲ୍ୟବାନ୍ ପୋଷାକରେ ସଜ୍ଜିତ ହୋଇ ଠିଆ ହୋଇଛନ୍ତି । ଆଖିରେ ଗୋଟାଏ କଳା ଚଷମା, ହାତରେ ଭ୍ୟାନିଟି ବ୍ୟାଗ୍ ।

ରାଜେଶ ଧୀରେ ଧୀରେ ପାଦେ ପାଦେ କରି ଆଗେଇ ଯାଉଥିଲା ।

: ନମସ୍କାର । ମୋ ନାଁ ଆଶା ମେହେରା । ମାନେ ମୁଁ ଧୀରାଜ ମେହେରାଙ୍କର...

ରାଜେଶ ଏପରି ଏକ ପରିସ୍ଥିତି ମୋଟେ ଆଶା କରି ନଥିଲା ।

ତା'ଛଡ଼ା ମିସେସ୍ ମେହେରା ଗ୍ୟାରେଜ୍‌କୁ ଆସି ତାରି ପଥ ଚାହିଁ ଯେ ଠିଆ ହୋଇଥିବେ, ରାଜେଶ ଏକଥା ଭାବିପାରନ୍ତା କିପରି ? ସେ ପ୍ରତିନମସ୍କାର କରି, ଧୀରେ ଅତି ସନ୍ତର୍ପଣରେ ଗ୍ୟାରେଜ ଭିତରକୁ ପଶିଲା ଏବଂ ଗାଡ଼ିଟି ବାହାର କରି ଆଣିଲା ଗ୍ୟାରେଜରୁ ।

ମିସେସ୍ ମେହେରାଙ୍କ ପାଖରେ ଗାଡ଼ି ଠିଆ କରି ପଛ ଦରଜାଟା ଖୋଲି ଦେବାକୁ ହାତବଢ଼ାଉଥିଲା । କିନ୍ତୁ ମିସେସ୍ ମେହେରା ନିଜେ ଦରଜା ଖୋଲି ଭିତରେ ବସିଲେ । ଏକ ମୃଦୁ ମଧୁର ଗନ୍ଧରେ ଗାଡ଼ି ଭିତରଟା ଆମୋଦିତ ହୋଇ ଉଠିଲା । ଗାଡ଼ିର ଦରଜା ବନ୍ଦ ହେବାର ଶବ୍ଦ ହେଲା ।

ଗାଡ଼ି ଚାଲିଲା ଧୀରେ ଧୀରେ, ଆଗକୁ ।

ରାଜେଶ ଆଶା କରୁଥିଲା, ମିସେସ୍ ମେହେରା ତାକୁ ଏକ ନିର୍ଦ୍ଦିଷ୍ଟ ଜାଗାକୁ ଗାଡ଼ି ଚଳେଇବା କଥା କହିବେ । କିନ୍ତୁ ସେପରି କିଛି ଲକ୍ଷଣ ସେ ଦେଖିଲା ନାହିଁ । କେବଳ ନୀରବତା ଭିତରେ ଗାଡ଼ି ମନ୍ଥର ଗତିରେ ଚାଲିଥିଲା ଆଗକୁ ଆଗକୁ ।

କିଛି ସମୟ ପରେ ମିସେସ୍ ମେହେରାଙ୍କର କଣ୍ଠସ୍ୱର ଶୁଣାଗଲା ।

: ମିଷ୍ଟର ରାଜେଶ !

ରାଜେଶ ପଛକୁ ଚାହିଁଲା । କଳା ଚଷମା ଭିତରୁ ଆଶା ମେହେରାଙ୍କର ଆଖି ଦୁଇଟାର ସଂକେତ ବାରି ହେଉ ନଥିଲା ।

: ମୁଁ ଶୁଣିଥିଲି ଆପଣ କୁଆଡ଼େ କଲିକତା-ମାନ୍ଦ୍ରାଜ ମଟର ଚାଳନା ପ୍ରତିଯୋଗିତାରେ ପ୍ରଥମ ହୋଇଥିଲେ ! ଆଶା ମେହେରା କହିଲେ ।

: ହଁ, ପ୍ରଥମ ହୋଇଥିଲି !

: କିନ୍ତୁ ଆଜିର ଏଇ ଗାଡ଼ି ଚାଳନାରୁ ମୋର ତ ମନେହେଉ ନାହିଁ ଯେ, ଆପଣ ସେହି ପ୍ରଥମ ପୁରସ୍କାର ବିଜୟୀ ମିଷ୍ଟର ରାଜେଶ । ଆଶା ମେହେରାଙ୍କ କଣ୍ଠରେ କିପରି ବିଦ୍ରୂପ ମିଶି ରହିଥିଲା ।

ରାଜେଶ ବୋଧହୁଏ ପ୍ରଶ୍ନର ଉତ୍ତରଟା ଏଡ଼େଇ ଯିବା ପାଇଁ ଚେଷ୍ଟା କରୁଥିଲା । କହିଲା : ବର୍ତ୍ତମାନ ଆମେ କୁଆଡ଼େ ଯିବା ?

: ପ୍ରଥମେ ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲ ।

ସମ୍ପୂର୍ଣ୍ଣ ନୀରବତା ଭିତରେ ଗାଡ଼ି ଆଗେଇ ଚାଲିଥିଲା । ମନେହେଉଥିଲା ଧୀରେ ଧୀରେ ଯେପରି ଗାଡ଼ିର ଗତି ବଢ଼ି ଯାଉଚି ଏବଂ ପବନରେ ପହଁରି ପହଁରି ଦ୍ରୁତ ବେଗରେ ପ୍ଲାଇମାଉଥଟା ଛୁଟି ଚାଲିଚି ।

ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲ ଦୁଆରେ ଗାଡ଼ି ଛିଡ଼ା ହେଲା ।

ଆଶା ମେହେରା ଦରଜା ଖୋଲି ଗର୍ବିତ ଭଙ୍ଗୀରେ ବାହାରି ଗଲେ । ରାଜେଶକୁ ପଦେ ବି କିଛି କହିଲେ ନାହିଁ ।

ରାଜେଶ ଆଉ ଚିନ୍ତା କରିପାରୁ ନଥିଲା । ତା'ର ମନେହେଉଥିଲା ଆଜିକାଲି ପୃଥିବୀରେ ଅସ୍ୱାଭାବିକତା ହିଁ ଯେପରି ସ୍ୱାଭାବିକ ହୋଇ ଦେଖାଦେଇଛି । ସେ ଗାଡ଼ିଟାକୁ ପାର୍କ କରି ଦରଜା ବନ୍ଦ କରି ବାହାରିଲା ବେଳକୁ, ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲର ଗୋଟିଏ ବୟ ଆସି ସଲାମ୍ ବଜେଇଲା ।

ରାଜେଶ ଚାହିଁଲା ତା' ଆଡ଼େ ।

: ମେମ୍ ସାହେବ ସଲାମ ଦେଇଛନ୍ତି ।

ରାଜେଶ ପ୍ରଥମେ କିଛି ବୁଝିପାରିଲା ନାହିଁ । ତା'ପରେ ଧୀରେ ଧୀରେ ସେ ବୟର କଥା ହୃଦୟଙ୍ଗମ କରି ଜାଣିପାରିଲା ଯେ, ମିସେସ୍ ମେହେରା ତାକୁ ଏଇ ବୟ ମାର୍ଫତରେ ଡାକି ପଠାଇଛନ୍ତି ।

ସେ ବୟଟିର ପଥ ଅନୁସରଣ କଲା ।

ଦୋତାଲାର ଗୋଟିଏ ସଜ୍ଜିତ କେବିନ୍ ଭିତରେ ରାଜେଶ ପ୍ରବେଶ କଲା ।

ସାମ୍ନାରେ ମିସେସ୍ ମେହେରା । ଟେବୁଲ୍ ଉପରେ ଦୁଇ ଭାଗରେ ଖାଦ୍ୟ ସାମଗ୍ରୀ, ପାନୀୟ ।

ରାଜେଶ ମୁହୂର୍ତ୍ତେ ଠିଆ ହୋଇ ଆଦେଶକୁ ଅପେକ୍ଷା କରିଥିଲା ।

ମିସେସ୍ ମେହେରା କହିଲେ : ବସ ।

ଏବଂ ସଂଗେ ସଂଗେ କହିଲେ : ମୁଁ ଏଥର ତମ ନାଁ ଧରି ଡାକିବି ଏବଂ ତମେ କହିବି । ମୋତେ ଫର୍ମାଲିଟି ଭଲ ଲାଗେ ନାହିଁ ।

ରାଜେଶ କିଛି କହିଲା ନାହିଁ । ସେହିପରି ଠିଆ ହୋଇ ରହିଥିଲା ।

ମିସେସ୍ ମେହେରା ପୁଣି କହିଲେ : ତମେ ବସ ରାଜେଶ । ମୋତେ ତମକୁ ଦେଖି ଖୁବ୍ ଭଲ ଲାଗିଛି । ତମ ଭଳି ସ୍ୱାସ୍ଥ୍ୟବାନ ଆଉ କର୍ମଠ ଯୁବକମାନେ ଆମ ଦେଶର ଭବିଷ୍ୟତ ।

ମିସେସ୍ ମେହେରା ଟେବୁଲ ଉପରେ ସଜ୍ଜିତ ଖାଦ୍ୟ ସାମଗ୍ରୀରେ ଲୁଣ ଓ ମରିଚ ଗୁଣ୍ଡ ଛିଞ୍ଚୁଥିଲେ । ରାଜେଶ ମୁହଁକୁ ଅନାଇ କହିଲେ-

: ତମେ ଲାଜ କରୁଚ ରାଜେଶ ! ତମେ ଭାବୁଛ ମୁଁ ତମ ବସ୍‌ଙ୍କର ସ୍ତ୍ରୀ, ତେଣୁ ତମେ ଫ୍ରି ହୋଇ ପାରୁ ନାହଁ । ମୁଁ କିନ୍ତୁ ଭିନ୍ନ ପ୍ରକୃତିର ରାଜେଶ । ମୋତେ ଯାହାକୁ ଭଲ ଲାଗେ, ସେଠାରେ ପ୍ରଭୁ ଭୃତ୍ୟର ସମ୍ପର୍କ ମୁଁ ଭୁଲିଯାଏ । ତେଣୁ ତମେ ସଂକୁଚିତ ହୁଅ ନାହିଁ । ବସ । ଖାଅ । ଖାଇ ସାରିଲେ ଆମେ ପୁଣି ବାହାରିବା । ମୋର କେତେଗୁଡ଼ାଏ ଜରୁରୀ କାମ ଅଛି ।

ରାଜେଶ ଏଥର ନୀରବରେ ଦ୍ୱିଧା ଜଡ଼ିତ ପାଦରେ ଆଶା ମେହେରାଙ୍କ ସାମ୍ନାକୁ ବସିଲା । ସେ ରାଜେଶ ଆଡ଼କୁ ଖାଦ୍ୟ ସାମଗ୍ରୀ ବଢ଼ାଇ ଦେଇ କହିଲେ : ତମେ ହୁଏତ ଜାଣି ନାହଁ ରାଜେଶ, ମିଷ୍ଟର ମେହେରାଙ୍କୁ ମୁଁ ଅନୁରୋଧ କରିଥିଲି ତମକୁ ନିଯୁକ୍ତି ଦେବା ପାଇଁ ।

ରାଜେଶ ବୋଧହୁଏ କିଛି ବୁଝିପାରିଲା ନାହିଁ । କଣ୍ଟା ଚାମଚ୍ ଦୁଇ ହାତରେ ଧରି ସେ ମିସେସ୍ ମେହେରାଙ୍କ ମୁହଁକୁ ପ୍ରଶ୍ନବାଚୀ ନୟନରେ ଅନାଇଲା ।

ମିସେସ୍ ମେହେରା ପୁଣି କହିଲେ : ମୁଁ ଅନେକ ପ୍ରାର୍ଥୀଙ୍କର ଫଟୋ ଓ ପରିଚୟ ପତ୍ର ଦେଖିଥିଲି । ମିଷ୍ଟର ମେହେରା ମୋତେ ଦେଖାଇ ଥିଲେ । କିନ୍ତୁ କେଜାଣି କାହିଁକି କହିପାରିବି ନାହିଁ, ମୋତେ ତମର ପରିଚୟ ପତ୍ର ଓ ଫଟୋ ଆକୃଷ୍ଟ କରିଥିଲା । ମୁଁ ମିଷ୍ଟର ମେହେରାଙ୍କୁ ତମ ପାଇଁ ସୁପାରିଶ୍ କରିଥିଲି । ବର୍ତ୍ତମାନ ଦେଖୁଛି, ମିଷ୍ଟର ମେହେରା ମୋ କଥା ରଖିଛନ୍ତି ।

ରାଜେଶ ନୀରବରେ ଖାଇବାକୁ ଆରମ୍ଭ କରିଥିଲା ।

ମିସେସ୍ ମେହେରା ଛୁରୀରେ ଚିକେନ୍ କାଟୁ କାଟୁ ପୁଣି ଆରମ୍ଭ କଲେ : ତମେ ମୋତେ ଓ ମିଷ୍ଟର ମେହେରାଙ୍କୁ ଦେଖି ନିଶ୍ଚୟ ଆଶ୍ଚର୍ଯ୍ୟ ହେଉଥିବ । ମୁଁ ମିଷ୍ଟର ମେହେରାଙ୍କର ଦ୍ୱିତୀୟ ପକ୍ଷର ସ୍ତ୍ରୀ । ଦୋଷ କିନ୍ତୁ ମିଷ୍ଟର ମେହେରାଙ୍କର ନୁହେଁ । ମୁଁ ଇଚ୍ଛା କରି ତାଙ୍କୁ ବିବାହ କରିଛି । ପୁରୁଷ କର୍ମକ୍ଷମ ଥିବାଯାଏ ତା'ର ବୟସ ଯଚେଇ କରିବାର କିଛି ଅର୍ଥ ନାହିଁ । ମୁଁ ଜୀବନଟାକୁ ସ୍ପୋର୍ଟସ୍‌ମ୍ୟାନ୍ ସ୍ପିରିଟ୍‌ରେ ଗ୍ରହଣ କରିଛି । ତେଣୁ ମିଷ୍ଟର ମେହେରାଙ୍କର ବୟସ ସମ୍ବନ୍ଧରେ ବା ତାଙ୍କ ମୁଣ୍ଡର ଶୁକ୍ଳ କେଶ ସମ୍ବନ୍ଧରେ ମୋ ମନରେ କିଛି ବିକାର ନାହିଁ ।

ରାଜେଶ ବୁଝିପାରୁ ନଥିଲା, ମିସେସ୍ ମେହେରା ଏତେ ଚଞ୍ଚଳ ଏବଂ ପ୍ରଥମ ଦର୍ଶନରେ କାହିଁକି ତାଙ୍କ ଜୀବନର ଗୋପନ କାହାଣୀ କହିବାକୁ ଆରମ୍ଭ କରିଛନ୍ତି । ଯେତେହେଲେ ରାଜେଶ ଜଣେ କର୍ମଚାରୀ । ଅଥଚ...

: ରାଜେଶ ! ମିସେସ୍ ମେହେରା ଡାକିଲେ ।

ରାଜେଶ ମୁଣ୍ଡଟେକି ଚାହିଁଲା । ମିସେସ୍ ମେହେରା କହିଲେ : ତମେ ଇମିତି ନୀରବ ରହିଲେ ଚଳିବ ନାହିଁ । ମୁଁ ଚାହେ ତୁମେ ସ୍ୱଚ୍ଛଳ ହୁଅ, ମୁକ୍ତ ହୁଅ । ପ୍ରାଣ ପ୍ରାଚୁର୍ଯ୍ୟରେ ଭରି ଉଠ । ମାଲିକ ଭୃତ୍ୟର ସଂପର୍କ ପରିହାର କରି ବନ୍ଧୁ ଭାବରେ ମୋତେ ଗ୍ରହଣ କର । କାରଣ ତମ କର୍ମ କ୍ଷେତ୍ରରେ ମୋର ପ୍ରବେଶ ପ୍ରସ୍ଥାନର ମାତ୍ରା ହେବ ସବୁଠାରୁ ବେଶି । ତମକୁ ମୋ ସଂସର୍ଗରେ ଏବଂ ମୋତେ ତମ ସାନ୍ନିଧରେ ବାରମ୍ବାର ଆସିବାକୁ ହେବ । ତେଣୁ ଆମର ସଂପର୍କଟା ସ୍ୱଚ୍ଛଳ ନହେଲେ, ତମେ କର୍ମପ୍ରେରଣା ପାଇବ ନାହିଁ । ଆଉ ମୁଁ ମଧ୍ୟ ଅନ୍ୟମାନଙ୍କ ପରି କନ୍‌ଜରଭେଟିଭ ଝିଅ ନୁହେଁ । ମୁଁ ଚାହେ ଉଚ୍ଛଳ ପ୍ରାଣପ୍ରାଚୁର୍ଯ୍ୟ ।

ମିସେସ୍ ମେହେରା ନୀରବ ହେଲେ ।

ରାଜେଶ ମୁହଁଟେକି ଅନାଇଲା ।

ତା'ର ଖିଆ ପ୍ରାୟ ଶେଷ ହୋଇ ସାରିଥିଲା ।

ମିସେସ୍ ମେହେରା ମଧ ବିଶେଷ କିଛି ଖାଇଲେ ନାହିଁ । ଟାୱେଲରେ ହାତ ପୋଛି, ଦୁଇ ଗ୍ଲାସ୍ ପାନୀୟ ଢାଳି କହିଲେ : ଏଥିରେ ନିଶ୍ଚୟ ତମର ଆପତ୍ତି ନାହିଁ ।

ରାଜେଶ ପ୍ରଥମେ ଟିକିଏ ଦ୍ୱିଧାବୋଧ କରୁଥିଲା । କିନ୍ତୁ ପର ମୁହୂର୍ତ୍ତରେ ମିସେସ୍ ମେହେରାଙ୍କ ହାତରୁ ପାନପାତ୍ରଟି ଆଣି ଓଠରେ ଲଗାଇଲା ।

ମିସେସ୍ ମେହେରା ମଧ୍ୟ ନୀରବରେ ଗ୍ଲାସ୍‌ଟି ନିଃଶେଷ କଲେ ।

ରାଜେଶ କହିଲା : ମୁଁ ତେବେ ତଳେ ଅପେକ୍ଷା କରୁଚି । ଆପଣଙ୍କ କାମ ଶେଷ କରି ଆସିବେ ।

ମିସେସ୍ ମେହେରା ହସିଲେ । କହିଲେ : ତମେ ଏଇଠି ଅପେକ୍ଷା କର । ମୋର କାମ ଶେଷ ହୋଇଛି । ଆମେ ବାହାରିବା ।

: ଏହାପରେ କୁଆଡ଼େ ଯିବା ?

: ଆମେ, ହଁ ଯିବା, ଯୁଆଡ଼େ ମନ ଚାହିବ ଯିବା । ଦୂର ଅନେକ ଦୂର । ତମେ ଗାଡ଼ି ଚଳେଇବ ଦ୍ରୁତରୁ ଦ୍ରୁତ ଗତିରେ ଏବଂ ଆହୁରି ଦ୍ରୁତତର ଗତିରେ । ସତରେ ରାଜେଶ ଯେପରି ଦ୍ରୁତ ଗତିରେ ଏଇ ଦୁନିଆ ଆଗେଇ ଚାଲିଚି, ଆମେ ତା' ସହିତ ମୋଟେ ତାଳ ମିଳେଇ ଦଉଡ଼ି ପାରୁ ନାହେଁ । ମୋର ଇଚ୍ଛା ପୃଥିବୀଠାରୁ ଆହୁରି ଦ୍ରୁତ ଗତିରେ ଧାଇଁବା ପାଇଁ । କିନ୍ତୁ ମୋର ଇଚ୍ଛା ପୂରଣ ପାଇଁ କେହି ଜଣେ ସାଥୀ ପାଉ ନାହିଁ । ତମେ ମୋର ଇଚ୍ଛା ପୂରଣ କରିପାରିବ ନାହିଁ ରାଜେଶ ?

ମିସେସ୍ ମେହେରାଙ୍କ କଣ୍ଠସ୍ୱର କିପରି କରୁଣ ହୋଇ ଆସୁଥିଲା ।

ସେ ପୁଣି ଗ୍ଲାସ୍‌ରେ ପାନୀୟ ଭର୍ତ୍ତି କରି, ଗ୍ଲାସ୍‌ରୁ କିଛି ନିଃଶେଷ କରି କହିଲେ : ତମ ପାଖରେ କହିବାକୁ ମୋର ଲଜ୍ଜା ନାହିଁ ରାଜେଶ ! ଦିନକୁ ଦିନ ଜୀବନଟା ମୋର ଦୁର୍ବିସହ ହୋଇ ଉଠୁଛି । ମୋର ବାଲ୍ୟ ଓ କୈଶୋରରେ ମୁଁ ଥିଲି ଏକ ଦୁର୍ଦ୍ଦାନ୍ତ ଲଗାମଛଡ଼ା ଘୋଡ଼ା ପରି । ଯୌବନରେ ଆହୁରି ଦୁର୍ଦ୍ଦାନ୍ତ ହୋଇ ଉଠିଥିଲି ।

ମୋର ଗୋଟାଏ ନିଶା ଥିଲା ପ୍ରତିଯୋଗିତାର ।

ମୁଁ ମୋର ସମବୟସୀ ଯୁବକମାନଙ୍କୁ ଆକୃଷ୍ଟ କରୁଥିଲି । ସେମାନେ ଯେତେବେଳେ ମୋ ପଛରେ ଛୁଟିବାକୁ ଆରମ୍ଭ କରୁଥିଲେ, ମୁଁ ମୋ ମନରୂପୀ ଘୋଡ଼ା ପିଠିରେ ଚାବୁକ୍ ବସାଉଥିଲି । ଚାଲୁଥିଲା ଘୋଡ଼ା ଦଉଡ଼ । ମୋ ପଛରେ ଧାଉଁଥିବା ଯୁବକମାନେ ଆଣ୍ଠୁଗଣ୍ଠି ଛିଣ୍ଡେଇ ରକ୍ତାକ୍ତ ହୋଇ ଫେରିଯାଉଥିଲେ ।

ସେଇଥିରେ ମୁଁ ପାଉଥିଲି ଆନନ୍ଦ ଆଉ ଆତ୍ମ ସନ୍ତୋଷ ।

ଜୀବନ ପ୍ରବାହ ଛୁଟିଥିଲା ଉଲ୍‌କା ବେଗରେ ।

ମିସେସ୍ ମେହେରା ପୁଣି ଗ୍ଲାସ୍‌ରେ ପାନୀୟ ଭର୍ତ୍ତି କଲେ ।

ହସିଲେ ଟିକିଏ । ସ୍ୱର ତାଙ୍କର ଅସ୍ୱାଭାବିକ ଶୁଣା ଯାଉଥିଲା ।

କହିଲେ : ସେଇ ରୁଦ୍ର ଓ ଦୁର୍ଦ୍ଦାନ୍ତ ଜୀବନର ଅବସାନ ଘଟିଛି ଆଜକୁ ଦୀର୍ଘ ପାଞ୍ଚବର୍ଷ ହେବ । ମିଷ୍ଟର ମେହେରା ମୋତେ ସବୁ ଦେଇଛନ୍ତି । ସୁଖ, ସ୍ୱାଚ୍ଛନ୍ଦ୍ୟ, ବିଳାସ । କିନ୍ତୁ ମୋ ଭିତରର ସେଇ ଫୂର୍ତ୍ତିବାଜ ପ୍ରାଣଟିକୁ ସେ ତଣ୍ଟିଚିପି ହତ୍ୟା କରି ଦେଇଛନ୍ତି । ମୋର ମନେହେଉଛି ଦିନ ପରେ ଦିନ ମୁଁ ଯେପରି ନିଃଶେଷ ହୋଇଯାଉଚି । ନିଃସଙ୍ଗତା ମୋତେ ବ୍ୟାକୁଳ କରି ପକାଉଛି । ମୁଁ ବିବ୍ରତ ଛଟପଟ ହୋଇ ହାଇ ମାରୁଚି । ମନେହେଉଚି ମୃତ୍ୟୁର କଳାଛାଇ ଧୀରେ ଧୀରେ ମୋ ଆଡ଼କୁ ଆଗେଇ ଆସୁଛି ।

ଏଥର ମିସେସ୍ ମେହେରା ବୋତଲଟାକୁ ମୁହଁରେ ଲଗାଇ ଅବଶିଷ୍ଟ ପାନୀୟତକ ନିଃଶେଷ କରିଦେଲେ ।

ସେ କ୍ରମଶଃ ଅସ୍ୱାଭାବିକ ହୋଇ ଉଠୁଥିଲେ ।

ରାଜେଶ ଆଡ଼େ ହାତ ବଢ଼ାଇ କହିଲେ : ଧର ରାଜେଶ । ମୋ ହାତ ଧର । ମୋତେ ତମ ଦେହର ସ୍ପର୍ଶ ଦିଅ ଏବଂ ପ୍ରତିଶ୍ରୁତି ଦିଅ ମୋତେ ଏହି ଅଭିଶପ୍ତ ଜୀବନରୁ ତମେ ମୁକ୍ତି ଦେବ । ତମେ ପାରିବ ରାଜେଶ । ତମେ ପାରିବ । ଠିକ୍ ପାରିବ । ମିଷ୍ଟର ମେହେରା ବି ସେଇଆ ଚାହାନ୍ତି । ସେ ଚାହାନ୍ତି, ମୁଁ ସ୍ୱାଭାବିକ ହୁଏ । ଦେହ ମନରେ ପ୍ରାଣପ୍ରାଚୁର୍ଯ୍ୟ ଫେରି ପାଏ ଏବଂ...

ଆରେ ତମେ ଭୟ କରୁଚ ରାଜେଶ ! ମୁଁ ମାତାଲ ହୋଇ ନାହିଁ । ମୁଁ ବିଚଳିତ ହୋଇଚି । ବହୁଦିନ ପରେ ମୋର ପୁଞ୍ଜିଭୂତ ଆକାଂକ୍ଷା ମାନ ତରଳିବାକୁ ଆରମ୍ଭ କରିଚି । ମନେହେଉଚି ମୋ ଜୀବନର ନୂତନ ସୂର୍ଯ୍ୟୋଦୟ ହେବ । ଆଉ ମୁଁ... ହଁ ମୁଁ ପୁଣି ନବଜୀବନ ଫେରି ପାଇବି । ତମେ ସ୍ୱଚ୍ଛଳ ହୁଅ ରାଜେଶ । ମନେକର ତମେ ମୋର ହୃଦୟ... ତମେ ମୋର...

ମିସେସ୍ ମେହେରା ଆଉ କିଛି କହିପାରିଲେ ନାହିଁ । ଧୀରେ ଧୀରେ ମୁଣ୍ଡଟା ତାଙ୍କର ଟେବୁଲ ଉପରେ ନଇଁ ପଡ଼ିଥିଲା ।

\+ \+ \+

ରାଜେଶ ଫେରି ଆସିଥିଲା ଘରକୁ । ଫେରି ଆସିବାକୁ ବାଧ ହୋଇଥିଲା ।

ତା'ର ଇଚ୍ଛା ନଥିଲା ମିସେସ୍ ମେହେରାଙ୍କୁ ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲରେ ଅର୍ଦ୍ଧଚେତନ ଅବସ୍ଥାରେ ଶୁଆଇ ଦେଇ ଫେରି ଆସିବା ପାଇଁ ।

କିନ୍ତୁ ହୋଟେଲର ଲୋକମାନେ ତାଙ୍କୁ ଫେରିଯିବା ପାଇଁ ବାଧ କରିଥିଲେ । ହୋଟେଲର ମ୍ୟାନେଜର ନିଜେ ଆସି ରାଜେଶକୁ ବୁଝାଇ ଥିଲେ ଯେ ମିସେସ୍ ମେହେରା ଏଠାକୁ ବରାବର ଆସନ୍ତି । ଏଇ ଯେଉଁ କେବିନ୍‌ରେ ମିସେସ୍ ମେହେରା ଅର୍ଦ୍ଧଚେତନ ଅବସ୍ଥାରେ ଶୋଇଛନ୍ତି, ସେ କେବିନ୍‌ଟି ମିସେସ୍ ମେହେରାଙ୍କ ପାଇଁ ରିଜର୍ଭ କରାହୋଇଛି ଏବଂ ମିସେସ୍ ମେହେରା ଏଠାରେ ଏହିପରି ଭାବରେ ଅନେକ ସମୟ କଟାଇ ଥାଆନ୍ତି ।

ରାଜେଶ ତଥାପି ମିସେସ୍ ମେହେରାଙ୍କ ଆଡ଼କୁ ଅସହାୟ ଆଖିରେ ଅନେକ ସମୟ ଅନାଇ ରହିଥିଲା । କିନ୍ତୁ କିଛି ଫଳ ହୋଇ ନଥିଲା । ମିସେସ୍ ମେହେରା ଆର ପାଖକୁ ମୁହଁ ବୁଲାଇ ନେଇଥିଲେ ।

ରାଜେଶ ଫେରି ଆସି, ଗାଡ଼ିଟିକୁ ଗ୍ୟାରେଜ୍‌ରେ ରଖିଦେଇ ନିଜ କୋଠରିକୁ ଚାଲି ଯାଇଥିଲା । ତା'ର ଆତ୍ମସତ୍ତା ସମ୍ବନ୍ଧରେ ସେ ସନ୍ଦିହାନ ହୋଇ ଉଠୁଥିଲା ।

କିନ୍ତୁ...

ନା ନା, ରାଜେଶକୁ ପ୍ରସ୍ତୁତ ହେବାକୁ ହେବ । ଏ ସମସ୍ତ ଘଟଣାର ମୁକାବିଲା କରିବା ପାଇଁ ରାଜେଶକୁ ସଚେତନ ହେବାକୁ ହେବ ।

ରାଜେଶ ଲୁଗାପଟା ଖୋଲି ବାଥ୍‌ରୁମ୍‌କୁ ଗଲା । ବାଥ୍‌ରୁମ୍‌ରେ ସାୱାରଟା ଖୋଲିଦେଇ ଠିଆ ହୋଇ ରହିଲା ଅନେକ ସମୟ । ପ୍ରାଣଭରି ଗାଧୋଇ ସାରି ଦେହ ହାତ ପୋଛି, ରାଜେଶ ବାହାରି ଆସିଲା ବାହାରକୁ । ନୂତନ ପୋଷାକ ପତ୍ର ପିନ୍ଧି, ଦେହରେ ପାଉଡ଼ର

ଛିଞ୍ଚ ମନେହେଲା, ସେ ଟିକିଏ ସୁସ୍ଥ ହୋଇଛି । ସଜୀବ ହୋଇଛି । ବର୍ତ୍ତମାନ ନିରୋଳାରେ ବସି ବସି ତାକୁ ପରବର୍ତ୍ତୀ କର୍ମପନ୍ଥା ସ୍ଥିର କରିବାକୁ ହେବ । ସେ ବୁଝିପାରୁଥିଲା ଯେ, ଯେଉଁଠି ଆସି ସେ ପହଞ୍ଚିଛି, ସେଠାରୁ ଆଉ ଛାଡ଼ି ଚାଲିଯିବାର ଉପାୟ ନାହିଁ ଏବଂ ସେ ବୁଝିପାରୁଥିଲା ଯେ ଧୀରାଜ ମେହେରା ତାକୁ ନିଶ୍ଚୟ ତାଙ୍କର ଦୁଷ୍କର୍ମର ସହଚର କରିବା ପାଇଁ ନିଯୁକ୍ତ ଦେଇଛନ୍ତି । ଅବଶ୍ୟ ପ୍ରଥମେ ପ୍ରଥମେ ରାଜେଶକୁ ଟିକିଏ ଅସୁବିଧାର ସମ୍ମୁଖୀନ ହେବାକୁ ହେବ । ନିଜର ଇଚ୍ଛା ବିରୁଦ୍ଧରେ ତାକୁ ହୁଏତ ଅନେକ କାମ କରିବାକୁ ହେବ । ସେଥିପାଇଁ ଟିକିଏ ପ୍ରସ୍ତୁତି ଦରକାର । ରାଜେଶ ମନଟାକୁ କଠୋର କରିବାକୁ ଚେଷ୍ଟା କଲା । ତା'ର ମନେପଡ଼ିଲା ଦୁଃସମୟର ସାଥୀ ରିଭଲଭରଟି କଥା । ସେଇଠି ଅବଶ୍ୟ ବେଆଇନ ଭାବରେ ଦୀର୍ଘ ତିନିବର୍ଷ ହେବ ତା'ର ସହଚର ହୋଇ ଆସିଛି । କିନ୍ତୁ ରାଜେଶର ଲକ୍ଷ୍ୟ ଅବ୍ୟର୍ଥ ।

ରାଜେଶ ଉଠିଯାଇ ଚମଡ଼ା ସୁଟ୍‌କେଶ୍ ଭିତରୁ ରିଭଲଭରଟିକୁ ବାହାର କରି ଚୁମ୍ବନ କଲା । ତା'ପରେ ଗୁପ୍ତ ପକେଟ୍‌ରେ ଭରି ଉଠି ଠିଆ ହେଲା । ମୁହଁରେ ହୁଇସିଲ୍ ବଜାଇ ନିଜକୁ ସତେଜ କରିବା ପାଇଁ ଚେଷ୍ଟା କଲା । ଆଇନା ସାମ୍ନାରେ ଠିଆ ହୋଇ ହିପ୍ ପକେଟ୍‌ରୁ ପାନିଆଁ ବାହାର କରି ମୁଣ୍ଡ କୁଣ୍ଡେଇଲା । ପଛକୁ ଫେରି ଚାହିଁଲା, ଚାକର ପିଲାଟିଏ ଟି'ପଟ୍ ଧରି ଠିଆ ହୋଇଛି ।

ରାଜେଶ ଅପେକ୍ଷା କଲା ନାହିଁ । ସଂଗେ ସଂଗେ ପଟ୍‌ରୁ ଚା' ଢାଳି ଦୁଧ ଚିନି ମିଶାଇ ଚା' ପିଇଲା ।

ତା'ପରେ ?

ରାଜେଶ ଭାବିଲା, ସେ ବାହାରି ଯିବ । ଅନ୍ତତଃ ବାହାରୁ ଟିକିଏ ବୁଲି ଆସିବା ଉଚିତ । ସକାଳଠାରୁ ଏତେବେଳଯାଏ ବହୁ ଘଟଣାପ୍ରବାହ ତା' ଉପର ଦେଇ ବହି ଯାଇଛି । ଘଟଣା ସବୁ ଏପରି ଆକସ୍ମିକ ଆଉ ଅକଳ୍ପନୀୟ ଯେ, ରାଜେଶ କେବଳ ସ୍ତବ୍ଧ ହୋଇ ସବୁ ଅଙ୍ଗେ ନିଭେଇ ନେଇଛି । ଫଳରେ ତା' ଦେହର ଚଳମାନ ଗ୍ରନ୍ଥିଗୁଡ଼ିକ ଶିଥିଳ ହୋଇଯାଇଛି । କିନ୍ତୁ ନା, ଆଉ ନୁହେଁ, ପରିସ୍ଥିତି ଯାହାହେଉ ତାକୁ ସଚଳ ଓ ସଚେତନ ହେବାକୁ ହେବ ।

ରାଜେଶ ମନ ସ୍ଥିର କରି ପ୍ରସ୍ତୁତ ହୋଇଗଲା ।

ହ୍ୟାଙ୍ଗରରୁ କୋଟ୍‌ଟା ଆଣି ଦେହରେ ପିନ୍ଧିଲା ।

ଏଥର ଷ୍ଟାର୍ଟ, ଓ୍ୱାନ, ଟୁ, ଥ୍ରୀ ।

କିନ୍ତୁ ଟେଲିଫୋନ୍‌ଟା ବାଜି ଉଠିଲା ଯେ !

ରାଜେଶ ଫେରି ଆସି ରିସିଭର ଉଠାଇଲା ।

ଟେଲିଫୋନ୍ ଅପରେଟର କହିଲା : ଟ୍ରଙ୍କକଲ୍ ଫ୍ରମ୍ ଡେଲ୍‌ହି ।

ରାଜେଶ ଟିକିଏ ଶଙ୍କି ଯାଇଥିଲା । ପର ମୁହୂର୍ତ୍ତରେ ମନକୁ ଦୃଢ଼ କରିନେଇ କହିଲା : ହ୍ୟାଲୋ, ରାଜେଶ ସ୍ପିକିଂ ।

ଅପର ପ୍ରାନ୍ତରୁ ଶୁଣାଗଲା : ମୁଁ ଧୀରାଜ ମେହେରା ଦିଲ୍ଲୀରୁ କହୁଛି । ଆଜି ପ୍ଲେନ୍‌ରେ ମୋର ଜଣେ ବନ୍ଧୁ ଦମ୍‌ଦମ୍ ଯାଉଛନ୍ତି । ସାତଟା ପନ୍ଦରରେ ସେ ଲ୍ୟାଣ୍ଡ କରିବେ । ସେ ତମକୁ ଚିହ୍ନି ନାହାନ୍ତି । କିନ୍ତୁ ଗାଡ଼ି ନମ୍ବର ତାଙ୍କୁ ଜଣା ଅଛି । ଗାଡ଼ିକୁ ଉଠିଲା ବେଳେ 'ଓକେ' କହିବେ । ତମେ ତାଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେବ ।

ବାସ୍ ସେତିକି । ତା'ପରେ ଟେଲିଫୋନ୍ ଲାଇନ୍ କଟିଗଲା ।

ରାଜେଶକୁ ସମ୍ମତି ବା ଅସମ୍ମତି ଜଣାଇବାର ସୁଯୋଗ ଟିକିଏ ବି ମିଳିଲା ନାହିଁ । ସେ ଟେଲିଫୋନ୍ ରିସିଭରଟାକୁ କିପରି ଏକ ଅସହାୟ ଚାହାଣିରେ ଚାହିଁ, ଧୀରେ ଥୋଇଦେଲା ।

ମୁହୂର୍ତ୍ତକ ଆଗର ଫୂର୍ତ୍ତିବାଜ ମନଟା ପୁଣି ଟିକିଏ ଚଞ୍ଚଳ ହୋଇ ଉଠିଲା । ନା, ସେ କିଛି ନୁହେଁ । ଏଥର ସେ ପ୍ରସ୍ତୁତ ।

ରାଜେଶ ହାତ ଘଡ଼ିକୁ ଚାହିଁଲା ।

ମାତ୍ର ଚାରିଟା । ବର୍ତ୍ତମାନ ହାତରେ ଅନେକ ସମୟ ଅଛି ।

ତେବେ ?

ଦୁଆର ନକ୍ ହେବାର ଶବ୍ଦ ହେଲା ।

: କାମ୍ ଇନ୍, ରାଜେଶ କହିଲା ।

ଭିତରେ ଜଣେ ମଧ୍ୟବୟସ୍କ ଭଦ୍ରଲୋକ ପ୍ରବେଶ କରି, ସଲାମ୍ ବଜାଇଲା ।

ରାଜେଶ ପ୍ରଶ୍ନବାଚୀ ନୟନରେ ତା' ମୁହଁକୁ ଅନାଇଲା ।

: ମୁଁ ଟେଲର, ସାହେବ ! ଆପଣଙ୍କ ସୁଟ୍‌ର ମାପ ନେବା ପାଇଁ ଆସିଛି ।

: ଓଃ, ରାଜେଶର ମନେପଡ଼ିଲା । ମିଷ୍ଟର ମେହେରା ତାକୁ ସକାଳେ ସେ କଥା କହିଥିଲେ ।

ରାଜେଶ ଟେଲର ସାମ୍‌ନାରେ ଠିଆ ହେଲା । ମାପ ନେଇସାରି ଟେଲର ବାହାରି ଚାଲିଗଲା ।

ନା, ଆଉ ଡେରି ନୁହେଁ । ମୁହଁରେ ହୁଇସିଲ୍ ବଜେଇ ବଜେଇ ରାଜେଶ ତଳକୁ ଓହ୍ଲେଇ ଗଲା । ଗ୍ୟାରେଜ୍‌ରୁ ଗାଡ଼ି ବାହାର କଲା । ପହଞ୍ଚିଲାଯାଇ ମେନ୍ ରୋଡ ଉପରେ ।

କୁଆଡ଼େ ଯିବ ? ଏତିକି ବେଳୁ ଦମ୍‌ଦମ୍ ଯାଇ ଲାଭ କ'ଣ ? ଖୁବ୍ ବେଶି ହେଲେ ଦମ୍‌ଦମ୍‌ରେ ପହଞ୍ଚିବାକୁ ତାକୁ ଅଧଘଣ୍ଟା ଲାଗିବ ।

ଗାଡ଼ି ଆଗେଇଲା ଅନିର୍ଦ୍ଦିଷ୍ଟ ପଥରେ ।

ରାଜେଶର ମିସେସ୍ ମେହେରାଙ୍କ କଥା ମନେପଡ଼ିଗଲା । ଭଦ୍ରମହିଳାଙ୍କ ଆଖିରେ ଯେଉଁ ଅସହାୟ ଚାହାଣି ସେ ଦେଖିଥିଲା, ସବୁ ପ୍ରାଚୁର୍ଯ୍ୟ ଭିତରେ ଯେପରି ସର୍ବହରା ପରି ମନେ ହୋଇଥିଲା ମିସେସ୍ ମେହେରାଙ୍କୁ । ଏତେ ଅଳ୍ପ ସମୟ ମଧ୍ୟରେ, ଜଣେ ଅପରିଚିତ ଯୁବକ ଆଗରେ ମିସେସ୍ ମେହେରା ନିଜକୁ ଏତେ ନଗ୍ନ କରିଦେଲେ କାହିଁକି ?

ରାଜେଶର ଗାଡ଼ିଟା ତା'ର ଅଜାଣତରେ ଅଟକି ଗଲା ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲ୍ ସାମ୍‌ନାରେ । ଥରେ ସେ ବୁଝିଯିବ ମିସେସ୍ ମେହେରାଙ୍କ ଖବର । ସେ କିପରି ଅଛନ୍ତି । ସୁସ୍ଥ ହେଲେଣି କି ନାହିଁ ।

ରାଜେଶ ଗାଡ଼ି ପାର୍କ କରି ଦରଜା ଖୋଲି ବାହାରିବା ବେଳକୁ ଦେଖିଲା, ମିସେସ୍ ମେହେରା ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲରୁ ଓହ୍ଲେଇ ଆସୁଛନ୍ତି । ତାଙ୍କ ବାଁ ପାଖରେ ଜଣେ ବଳିଷ୍ଠ ଲୋକ । ବେଶ୍ ଲମ୍ବା । ହୃଷ୍ଟପୁଷ୍ଟ । କିନ୍ତୁ ମୁହଁର ଆକୃତିଟା ଅସ୍ୱାଭାବିକ । କପାଳରେ କିଛି ଅଂଶ ଭିତରକୁ ପଶିଯିବା ପରି ଦିଶୁଛି । ବାଁ ଗାଲରେ ଗୋଟାଏ ବିରାଟ ପୋଡ଼ା କ୍ଷତ ଚିହ୍ନ । ମୁହଁଟା କୁତ୍ସିତ ।

ମିସେସ୍ ମେହେରା ସେଇ ଲୋକଟି ସହିତ କଥାବାର୍ତ୍ତା କରୁ କରୁ ଆଗେଇ ଆସୁଥିଲେ । ରାସ୍ତା କଡ଼ରେ ଅପେକ୍ଷାମାଣ ଗୋଟିଏ ଗାଡ଼ିରେ ଦୁଇଜଣଯାକ ଉଠିଲେ । ଲୋକଟି କଥା କହିଲାବେଳେ କିପରି ଅସ୍ୱାଭାବିକ ମନେ ହେଉଥିଲା ।

ଗାଡ଼ି ଛାଡ଼ିଦେଲା । ଲୋକଟି ନିଜେ ଗାଡ଼ି ଚଳାଉଥିଲା । ମିସେସ୍ ମେହେରା ତା'ରି ପାଖରେ ସାମ୍‌ନା ସିଟ୍‌ରେ ଉଠି ବସିଥିଲେ ।

ରାଜେଶ ଗାଡ଼ିରେ ବସି ସବୁ ଲକ୍ଷ୍ୟ କଲା । କିନ୍ତୁ ଜାଣିପାରିଲା ନାହିଁ ଲୋକଟି କିଏ । ମିସେସ୍ ମେହେରାଙ୍କ ସହିତ ଲୋକଟିର ସଂପର୍କ କ'ଣ !

ଯାହାହେଉ ରାଜେଶର ତେଣେ ଆଉ ମୁଣ୍ଡ ପୂରାଇବାକୁ ଇଚ୍ଛା ନଥିଲା । ତା' ମୁଣ୍ଡରେ ଯେଉଁ ଦାୟିତ୍ୱ ନଦା ହୋଇଛି, ସେତିକି କାମ ସେ ଠିକ୍ ଠିକ୍ କରିପାରିଲେ ରକ୍ଷା ପାଇଯିବ ।

ଧୀରାଜ ମେହେରା ପ୍ରଥମେ ତାକୁ ଏଇ କାମଟି ଦେଇଛନ୍ତି ।

ଏଇ କାମଟି ସମ୍ବନ୍ଧରେ ଗୁରୁତ୍ୱ ତାକୁ ଜଣା ନାହିଁ । ତଥାପି ଆଦେଶ ପାଳନ କରିବାକୁ ହେବ । ଆଦେଶ ପାଳନ କରିବା ତା'ର ଧର୍ମ ।

ରାଜେଶ ଗାଡ଼ି ଚଳେଇଲା । ସିଧା ସେ ଦମ୍‌ଦମ୍ ଚାଲିଯିବ । ଏଠାରେ ଅଯଥା ସମୟ ନଷ୍ଟ କରି କିଛି ଲାଭ ନାହିଁ ।

ଦମ୍‌ଦମ୍‌ରେ ଗାଡ଼ି ପାର୍କ କରି ରାଜେଶ ଅପେକ୍ଷା କଲା । ତା' ମନ ଭିତରେ କିପରି ଏକ ଅହେତୁକ କୌତୂହଳ ଜମି ଆସୁଥିଲା । ସେ ଅପେକ୍ଷା କରୁଥିଲା ସେଇ ମୁହୂର୍ତ୍ତଟିକୁ । ଯେଉଁ ମୁହୂର୍ତ୍ତଟି ତା' ଜୀବନର ଏକ ନୂତନ କର୍ମଧାରାର ସୂଚନା ଦେବ ।

ମାଇକ୍‌ର ଘୋଷଣାରୁ ରାଜେଶ ବୁଝିପାରିଲା ଅଳ୍ପ ସମୟ ଭିତରେ ଦିଲ୍ଲୀ ପ୍ଲେନ୍ ଲ୍ୟାଣ୍ଡ୍ କରିବ ।

ଆକାଶରେ ଚକ୍‌କର ଦେଉଥିବା ଗୋଟିଏ ପ୍ଲେନ୍‌କୁ ସେ ନିରୀକ୍ଷଣ କଲା । ହୁଏତ ଏଇ ସେଇ ପ୍ଲେନ୍ । ଏହାରି ଭିତରୁ ଓହ୍ଲେଇବେ ସେହି ଅପରିଚିତ ଆଗନ୍ତୁକ ଏବଂ...

କିପରି ଏକ ଅସ୍ୱାଭାବିକ ଉତ୍ତେଜନାରେ ରାଜେଶର ଦେହ ଶିହରୀ ଉଠିଲା । ସେ ଧୀରେ ଧୀରେ ଅନ୍ୟମନସ୍କ ହୋଇ ପଡୁଥିଲା ।

ହଠାତ୍ କିଏ ଜଣେ ଗାଡ଼ିର ଦରଜା ଖୋଲିବାର ଶବ୍ଦ ହେଲା । ଆଉ ସଂଗେ ସଂଗେ ଶୁଣାଗଲା 'ଓକେ' ଶବ୍ଦ ।

ରାଜେଶ ପଛକୁ ଚାହିଁ ଦେଖିଲା । କୋଟ୍‌ପ୍ୟାଣ୍ଟ୍ ପରିହିତ ଜଣେ ଲମ୍ବା ଲୋକ । ମୁଣ୍ଡରେ ଫେଲ୍‌ଟ ହ୍ୟାଟ୍ । ହାତରେ ଗୋଟାଏ ଆଟାଚି କେସ୍ ।

ରାଜେଶ ଗାଡ଼ିରେ ଷ୍ଟାର୍ଟ ଦେଲା ।

ଲୋକଟି କହିଲା : ହୋଟେଲ ଇଣ୍ଟରନ୍ୟାସନାଲ ।

ଗାଡ଼ି ଚାଲିଲା । ରାସ୍ତାରେ ଭିଡ଼ । ସ୍ୱଚ୍ଛନ୍ଦରେ ଗାଡ଼ି ଚଳେଇ ହେଉ ନଥିଲା । ଅଟକି ଅଟକି ଅତ୍ୟନ୍ତ ମନ୍ଥର ଗତିରେ ଚାଲିଥିଲା ପ୍ଲାଇ ମାଉଥ୍‌ଟା ।

ଗାଡ଼ି ଭିତରେ ସଂପୂର୍ଣ୍ଣ ନୀରବତା ।

ପଛକୁ ଚାହିଁବାକୁ ଇଚ୍ଛା ଥିଲେ ବି ରାଜେଶ ଚାହିଁ ପାରୁ ନଥିଲା । ତା' ମନରେ କୌତୂହଳ ବଢ଼ି ଚାଲିଥିଲା । କୌଣସି ଗୋଟାଏ ଘଟଣା ବା ଦୁର୍ଘଟଣା ପାଇଁ ସେ ପ୍ରସ୍ତୁତ ହେଉଥିଲା ମନେ ମନେ ।

: ମିଷ୍ଟର ରାଜେଶ ।

ଏକ ଅସ୍ପଷ୍ଟ କଣ୍ଠସ୍ୱର ଶୁଣି ସେ ପଛକୁ ଚାହିଁଲା ।

ଆଗନ୍ତୁକ ଜଣକ ତା' କାନ ପାଖକୁ ମୁହଁ ଆଣି କହିଲେ : ସମୟ ଅତି ଅଳ୍ପ, ଟିକିଏ ଶୀଘ୍ର ଯାଇ ହୋଟେଲରେ ପହଞ୍ଚିବାକୁ ହେବ ।

ରାଜେଶ କହିଲା : ମୁଁ ଚେଷ୍ଟା କରୁଛି । ଏଇଁ ଭିଡ଼ ଭିତରୁ ଖାଲି ଟିକିଏ ବାହାରି ଯାଇ ଭି.ଆଇ.ପି. ରୋଡ଼ ଧରିପାରିଲେ ଆଉ ତେଣିକି ଅସୁବିଧା ହେବ ନାହିଁ ।

: ମିଷ୍ଟର ମେହେରା ଆପଣଙ୍କ କଥା ମୋତେ ସବୁ କହିଛନ୍ତି । ଆଗନ୍ତୁକଟି ସେହିପରି ଧୀରେ ଧୀରେ କହୁଥିଲା ।

: ଆପଣ ଟିକିଏ କର୍ମଠ ହୋଇପାରିଲେ ମିଷ୍ଟର ମେହେରା ଖୁସି ହେବେ ।

ଗାଡ଼ିରେ ସ୍ପିଡ଼ୋମିଟର ଧୀରେ ବଢୁଥିଲା ।

ଭି.ଆଇ.ପି. ରୋଡ଼ ଉପରେ ଗାଡ଼ି ଛୁଟି ଚାଲିଥିଲା ସିଧା ସଳଖ ।

ଆଗନ୍ତୁକ ଜଣକ କହିଲା : ମୁଁ ଶୁଣିଛି ଆପଣ ମଟର ଗାଡ଼ି ଚାଳନାରେ ପ୍ରଥମ ପୁରସ୍କାର ପାଇଛନ୍ତି । ସେଇଥିପାଇଁ ଏ ଦାୟିତ୍ୱ ମିଷ୍ଟର ମେହେରା ଆପଣଙ୍କ ଉପରେ ନ୍ୟସ୍ତ କରିଛନ୍ତି ।

ରାଜେଶ କିଛି ବୁଝିପାରିଲା ନାହିଁ ।

ଆଗନ୍ତୁକ ପୁଣି କହିଲା : ମୋର ଆଜି ଦମ୍‌ଦମ୍‌ରେ ଓହ୍ଲେଇ ଥିବା ଖବର ସେମାନେ ଜାଣିପାରିଛନ୍ତି । ତେଣୁ ଯେକୌଣସି ସମୟରେ ବିପଦର ସମ୍ଭାବନା ଅଛି । ସେଇଥିପାଇଁ...

ରାଜେଶ ହଠାତ୍ ପ୍ଲାଇମାଉଥ୍ ଗାଡ଼ିଟାକୁ ଫୁଟ୍‌ପାଥ ଉପରକୁ ଚଢ଼ାଇ ଦେଲା । ତା' ନ ହୋଇଥିଲେ ନିଶ୍ଚିତ ଭାବରେ ଗୋଟିଏ ପ୍ରାଣ ନଷ୍ଟ ହୋଇ ଯାଇଥାନ୍ତା । ଗାଡ଼ି ସାମ୍‌ନାକୁ କେଉଁଠୁ ଏକ ମହିଳା ଚାଲି ଆସିଥିଲେ ।

ରାଜେଶ ଗାଡ଼ି ଅଟକେଇ ସେହି ମହିଳାଟିର କିଛି ହୋଇଛି କି ନାହିଁ ପ୍ରଶ୍ନ କରିବାକୁ ଯାଉଥିଲା, କିନ୍ତୁ ଆଗନ୍ତୁକ ଜଣକ ବ୍ୟଗ୍ର କଣ୍ଠରେ କହିଲା : ନା ମିଷ୍ଟର ରାଜେଶ, ଗାଡ଼ି ଚଳାନ୍ତୁ ।

ରାଜେଶ ଗାଡ଼ି ଚଳେଇଲା ।

ଆଉ କିଛି ବାଟ ଯିବା ପରେ ରାଜେଶ ଭିଉ ଫାଇଣ୍ଡର ଗ୍ଲାସ୍‌ରେ ଦେଖିଲା, ତା' ପଛରେ ଗୋଟାଏ ପୋଲିସ୍ ଭ୍ୟାନ୍ ଆସୁଛି ।

ସେ ପଛକୁ ଚାହିଁ ଧୀରେ ଧୀରେ କହିଲା : ଆମ ପଛରେ ଗୋଟାଏ ପୋଲିସ୍ ଭ୍ୟାନ୍ ଆସୁଛି, ଆମକୁ ଫଲୋ କରୁ ନାହିଁ ତ ?

: ପୋଲିସ୍ ଭ୍ୟାନ ? ଭଦ୍ରଲୋକ ଜଣକ ଟିକିଏ ବିଚଳିତ ହୋଇ ପଡ଼ିଲେ । କହିଲେ : କିଛି ଅସମ୍ଭବ ନୁହେଁ, ସେମାନେ ଯଦି ଖବରଟା ପୋଲିସ୍‌କୁ ଜଣାଇ ଦେଇଥାଆନ୍ତି...

: ତା'ହେଲେ ?

: ହଁ, ଆପଣ ଗୋଟାଏ କାମ କରନ୍ତୁ ମିଷ୍ଟର ରାଜେଶ । ଗାଡ଼ି ଖୁବ୍ ଦ୍ରୁତ ବେଗରେ ଚଳାଇ ନିଅନ୍ତୁ । କୌଣସି ଏକ ଟର୍ଣ୍ଣିଂରେ ଟିକିଏ ସ୍ଲୋ କରିଦେବେ । ମୁଁ ଧୀରେ ଓହ୍ଲେଇ ପଡ଼ିବି । ପର ମୁହୂର୍ତ୍ତରେ ଆପଣ ଗାଡ଼ି ସେଇ ସ୍ପିଡ୍‌ରେ ନେଇଯିବେ । ପୋଲିସ୍ ଆପଣଙ୍କୁ

ଧରିଲେ ବି ଗାଡ଼ି ସର୍ଚ୍ଚ କରି କିଛି ପାଇବ ନାହିଁ । ମୋତେ ଆପଣ ହୋଟେଲ ଇଣ୍ଟରନାସନାଲ ୭ ନମ୍ବର ରୁମ୍‌ରେ ଭେଟିବେ । ଏହାଛଡ଼ା ଉପାୟ ନାହିଁ ।

ରାଜେଶ ଦେଖିଲା ସାମ୍ନାରେ ଗୋଟାଏ ପ୍ରୋସେସନ ଆସୁଛି । ଆଉ ମୁହୂର୍ତେ ଡେରିକଲେ ତା' ଗାଡ଼ିଟା ଅଟକିଯିବ । ସେ ଦ୍ରୁତ ବେଗରେ ଗାଡ଼ିଟାକୁ ଚଳାଇ ନେଲା । ଦୁଇ ଚାରିଜଣ ଲୋକ ଚାପା ପଡୁ ପଡୁ ବଂଚିଗଲେ । ରାଜେଶ କିନ୍ତୁ ଅଟକିଲା ନାହିଁ ।

କିନ୍ତୁ ଅଟକି ଗଲା ପୋଲିସ୍ ଭ୍ୟାନ୍‌ଟି ।

ଏହି ସୁଯୋଗ । ରାଜେଶ ଗୋଟାଏ ଗଳି ମୋଡ଼ରେ ଗାଡ଼ିଟା ଅଟକେଇ ଦେଲା । ଆରୋହୀ ଜଣକ ଓହ୍ଲେଇ ପଡ଼ି କହିଲେ : ମୋ ନାଁ ମିଷ୍ଟର ଶର୍ମା । ହୋଟେଲ ଇଣ୍ଟରନାସନାଲ ୭ ନମ୍ବର ରୁମ୍‌ରେ ମୋତେ ଆପଣ ଭେଟିବେ ।

ମିଷ୍ଟର ଶର୍ମା ଅପେକ୍ଷାମାଣ ଗୋଟିଏ ଟ୍ୟାକ୍‌ସିରେ ଯାଇ ଉଠିଲେ ।

ରାଜେଶର ଗାଡ଼ିଟା ଆଗେଇ ଗଲା ।

କିନ୍ତୁ ଆଉ କିଛି ଦୂରକୁ ଯାଇ ତାକୁ ଗାଡ଼ି ଅଟକେଇବାକୁ ହେଲା । ସାମ୍‌ନାରେ ଦୁଇଟା ବଳଦ ଗାଡ଼ି ରାସ୍ତା ବନ୍ଦ କରି ଠିଆ ହୋଇଥିଲେ ।

ରାଜେଶ ଗାଡ଼ି ଅଟକେଇ ହର୍ଣ୍ଣ ବଜେଇଲା ।

କିନ୍ତୁ ଗାଡ଼ି ଦୁଇଟା ଯେପରି ଅଚଳ ।

ମୁହୂର୍ତ୍ତକ ପରେ ପୋଲିସ୍ ଭ୍ୟାନ୍‌ଟା ଆସି ପହଞ୍ଚିଗଲା ଏବଂ ଭ୍ୟାନ୍‌ରୁ ସଶସ୍ତ୍ର ପୋଲିସ୍ ତିନିଜଣ ବାହାରି ଆସି, ରାଜେଶର ଗାଡ଼ିକୁ ଅବରୋଧ କରି ଠିଆ ହୋଇଗଲେ । ଜଣେ ପୋଲିସ୍ ଅଫିସର ରାଜେଶର ଗାଡ଼ିର ଦରଜା ଖୋଲି ଭିତରେ ବସିଲେ ଏବଂ କହିଲେ : ଗାଡ଼ି ଥାନାକୁ ନେଇ ଚାଲନ୍ତୁ ।

ରାଜେଶ ଆଶ୍ଚର୍ଯ୍ୟ ହୋଇ ପୋଲିସ୍ ଅଫିସରଙ୍କ ମୁହଁକୁ ଚାହିଁଲା ।

ପୋଲିସ୍ ଅଫିସର କହିଲେ : ଆପଣଙ୍କ ଗାଡ଼ି ବିରୁଦ୍ଧରେ ଅଭିଯୋଗ ଅଛି । ଥାନାକୁ ନେଇ ସର୍ଚ୍ଚ କରିବାକୁ ହେବ ।

: ସର୍ଚ୍ଚ ଆପଣ ଏଇଠି କରି ନିଅନ୍ତୁ । ମୁଁ ଗୋଟାଏ ଜରୁରୀ କାମରେ ଯାଉଛି । ଥାନାକୁ ଗଲେ ମୋର କ୍ଷତି ହେବ ।

ପୋଲିସ୍ ଅଫିସର କହିଲେ : କମିସନରଙ୍କ ଆଦେଶ, ଏ ଗାଡ଼ି ଥାନାକୁ ନ ନେଇ ଆମର ଅନ୍ୟ ଉପାୟ ନାହିଁ ।

ରାଜେଶ ଆଉ କଥା ବଢ଼ାଇଲା ନାହିଁ ।

ପୋଲିସ୍ ଅଫିସର ତା' ପାଖରେ ବସି ରହିଲେ । ଗାଡ଼ି ଆଗକୁ ଚାଲିଲା । ପଛରେ ପୋଲିସ୍ ଭ୍ୟାନ୍‌ଟି ଚାଲିଥିଲା ।

ଆଉ କିଛିବାଟ ଯିବା ପରେ ରାଜେଶ କହିଲା : ମୋ ଗାଡ଼ି ବିରୁଦ୍ଧରେ କି ଅଭିଯୋଗ ଅଛି ?

ଥାନାରେ ଜାଣିପାରିବେ ।

: ବେଳେବେଳେ ଆପଣମାନେ ଅଯଥାରେ ଭଦ୍ରଲୋକମାନଙ୍କୁ ହଇରାଣ କରନ୍ତି ।

ପୋଲିସ୍ ଅଫିସର ନୀରବରେ ବସିଥିଲେ ।

ଗାଡ଼ି ଆଗେଇ ଚାଲିଥିଲା । ଶେଷରେ ରାଜେଶ ଗାଡ଼ିଟାକୁ ନେଇ ଥାନା ଭିତରେ ଭର୍ତ୍ତି କରିଦେଲା । ଗାଡ଼ିରୁ ଓହ୍ଲେଇପଡ଼ି କହିଲା : ଆପଣମାନେ ଦୟାକରି ଟିକିଏ ଶୀଘ୍ର ସର୍ଚ୍ଚ କାମ ଶେଷ କରନ୍ତୁ ।

ଜଣେ କନେଷ୍ଟବଲ ଆସି ରାଜେଶକୁ କହିଲା : ବଡ଼ ସାହେବ ଡାକୁଛନ୍ତି ।

ରାଜେଶ ଥାନା ଭିତରକୁ ଚାଲିଗଲା ।

ପୋଲିସ ସାହେବ ରାଜେଶକୁ ସାମ୍ନାରେ ବସିବା ପାଇଁ କହିଲେ । ରାଜେଶ ନମସ୍କାର କରି ବସିଲା ।

ପୋଲିସ୍ ସାହେବ ପଚାରିଲେ : ଦିଲ୍ଲୀ ଫ୍ଲାଇଟ୍‌ର ଯେଉଁ ଭଦ୍ରଲୋକକୁ ଆପଣ ଆଣିବାକୁ ଯାଇଥିଲେ, ସେ କାହାନ୍ତି ?

: ସେ ଆସି ନାହାନ୍ତି । ରାଜେଶ ନିର୍ବିକାର ଚିତ୍ତରେ କହିଲା ।

: ଆସିଲେ ନାହିଁ କାହିଁକି ?

: ମୁଁ କହିପାରିବି ନାହିଁ ।

: କିଏ ଆସିବାର ଥିଲା । ପୋଲିସ୍ ସାହେବ ପଚାରିଲେ ।

: ମୋ ବସ୍ ।

: କିଏ ଆପଣଙ୍କ ବସ୍ ?

: ଧୀରାଜ ମେହେରା ।

: ଧୀରାଜ ମେହେରା କିଏ ?

: ମେହେରା ମାଇନିଂ କର୍‌ପୋରେସନ୍‌ର ମ୍ୟାନେଜିଂ ଡାଇରେକ୍ଟର ।

: ହୁଁ । କିନ୍ତୁ ମୁଁ ଯଦି କୁହେ ଆପଣ ଯାହା କହୁଛନ୍ତି ମିଛ କହୁଛନ୍ତି ?

ରାଜେଶ କଟମଟ କରି ଚାହିଁଲା ପୋଲିସ୍ ଅଫିସରଙ୍କ ମୁହଁକୁ । ଧୀରେ ଧୀରେ କହିଲା : ମୁଁ ନାଚାର ।

: ମୁଁ ନିଶ୍ଚିତ ଭାବରେ ଜାଣେ ଯେ, ଯେଉଁ ଭଦ୍ରଲୋକ ଦିଲ୍ଲୀରୁ ଆସିବାର ଥିଲା, ସେ ଏଇ ଫ୍ଲାଇଟ୍‌ରେ ଆସିଛନ୍ତି । ମୁଁ ଆପଣଙ୍କଠାରୁ ସତକଥା ଶୁଣିବାକୁ ଆଶା କରୁଛି । ପୋଲିସ୍ ସାହେବ କହିଲେ ।

ରାଜେଶ କହିଲା : ମୁଁ ମିଛ କୁହେ ନାହିଁ ।

: ସତ କଥା କିପରି ଆଦାୟ କରିବାକୁ ହୁଏ ମୋତେ ସେ ପଦ୍ଧତି ଜଣା ଅଛି । ଏଥର ପୋଲିସ୍ ସାହେବଙ୍କ କଣ୍ଠସ୍ୱର ଟିକିଏ ଚଢ଼ା ଶୁଣା ଯାଉଥିଲା ।

ରାଜେଶ କିଛି କହିଲା ନାହିଁ ।

ଦୁଇଜଣ ପୋଲିସ୍ ଅଫିସର ଆସି ଘରେ ପଶିଲେ । ଜଣେ କହିଲା : ନା, ସାର୍ । ସନ୍ଦେହଜନକ ଜିନିଷପତ୍ର କିଛି ଗାଡ଼ିରୁ ମିଳିଲା ନାହିଁ ।

ପୋଲିସ୍ ସାହେବ ରାଜେଶ ମୁହଁକୁ ଚାହିଁ କହିଲେ : ଆପଣଙ୍କ ବସ୍, ମାନେ ଧୀରାଜ ମେହେରା ଦିଲ୍ଲୀ କାହିଁକି ଯାଇଛନ୍ତି ?

: ମୁଁ ଜାଣି ନାହିଁ ।

: ଏ ଯେଉଁ ଗାଡ଼ି ଆପଣ ଚଳାଉଛନ୍ତି, ଏ ଗାଡ଼ିଟା କାହାର ?

: ମେହେରା ମାଇନିଂ କର୍ପୋରେସନର ।

: ଏଇଥିରେ ଏକା ଆପଣ ଚଢ଼ନ୍ତି ନା ଅନ୍ୟକେହି ଏ ଗାଡ଼ିକୁ ବ୍ୟବହାର କରିଥାଏ ?

: ଅନେକେ କରନ୍ତି । କମ୍ପାନୀ ଗାଡ଼ି, କମ୍ପାନୀ ସ୍ୱାର୍ଥରେ ବ୍ୟବହୃତ ହୁଏ ।

: ହୁଁ, ତା'ହେଲେ ସତକଥା ଆପଣ କହିବେ ନାହିଁ ?

: ଆଗରୁ ତ କହିଛି, ମିଛ କଥା ମୁଁ କୁହେ ନାହିଁ ।

ପୋଲିସ୍ ସାହେବ କିଛି ସମୟ ରାଜେଶ ମୁହଁକୁ ଏକ ଦୃଷ୍ଟିରେ ଅନାଇ ରହି ସ୍ମିତ ହସି କହିଲେ : ଆଜି ଆପଣ ଯାଆନ୍ତୁ । କିନ୍ତୁ ସତକଥା କିପରି ଆଦାୟ କରିବାକୁ ହୁଏ, ଆଉଦିନେ ଆପଣଙ୍କୁ ମୁଁ ତା'ର ପ୍ରମାଣ ଦେବି ।

ରାଜେଶ ନୀରବରେ ଉଠି ଠିଆ ହେଲା ।

ପୋଲିସ୍ ସାହେବଙ୍କୁ ନମସ୍କାର କରି ବାହାରି ଆସିଲା ବାହାରକୁ ।

\+ \+ \+

ରାଜେଶ ଥାନାରୁ ବାହାରି ଆସି ବଡ଼ ଅସୁବିଧାରେ ପଡ଼ିଗଲା ।

କିଛି ବାଟ ଆଗେଇ ଯାଇ ସେ ଅନୁଭବ କଲା ବାଁ ପାଖର ପଛ ଚକାଟା ପମ୍ପଚର ହୋଇଯାଇଛି ।

ଅଧିକ ଚକା ଆଉ ଗାଡ଼ିରେ ନାହିଁ ।

ଉପାୟ ? ବାଧ ହୋଇ ରାଜେଶକୁ ଚକଟାକୁ ମରାମତି କରେଇବାକୁ ପଡ଼ିଲା । ସମୟ ଲାଗିଲା ଯଥେଷ୍ଟ ।

ଚକା ଫିଟ୍ କରି ରାଜେଶ ଯେତେବେଳେ ହୋଟେଲ ଇଣ୍ଟରନାସନାଲ ଆଡ଼େ ମୁହାଁଇଲା, ସେତେବେଳକୁ ରାତି ପ୍ରାୟ ସାଢ଼େ ନଅଟା ହୋଇଯାଇଥିଲା । ସେ ଠିକ୍ ଦଶଟା ପାଞ୍ଚରେ ହୋଟେଲ ଦୁଆର ମୁହଁରେ ପହଞ୍ଚିଲା ।

ଅନେକ ଲୋକ । ଯିବା ଆସିବା ଲାଗିଛି । ବୋଧହୁଏ ଆଜି ହୋଟେଲ ଇଣ୍ଟରନାସନାଲରେ କିଛି ଗୋଟାଏ ବିଶେଷ ପ୍ରୋଗ୍ରାମ ଅଛି । ରାଜେଶ ଭିତରକୁ ପଶି ତାହା ବୁଝିପାରିଲା । କାରଣ ଖୁବ୍ ଜୋର୍‌ରେ ବାଜା ବାଜୁଛି । ଅଲୋକ ସଜ୍ଜା ଦେଖି ମନେହେଉଛି ଏକ ବିଶେଷ ଉତ୍ସବର ସମାରୋହ ଚାଲିଛି ।

ରାଜେଶ ଦରବାନ୍‌କୁ ୭ ନମ୍ବର ରୁମ୍ ସମ୍ବନ୍ଧରେ ପଚାରିଲା ।

ଦରବାନ କହିଲା : ତିନିତାଲାରେ ।

ରାଜେଶ ଯାଇ ଲିଫ୍‌ଟ ପାଖରେ ଠିଆ ହେଲା । ଲିଫ୍‌ଟ ତଳକୁ ଓହ୍ଲେଇ ଆସୁଥିଲା । ତଳେ ପହଞ୍ଚିବା ମାତ୍ରକେ ଲିଫ୍‌ଟରୁ ଚାରି ପାଞ୍ଚଜଣ ସ୍ତ୍ରୀ ପୁରୁଷ ଓହ୍ଲେଇ ଗଲେ । କିନ୍ତୁ ସେମାନଙ୍କ ଭିତରେ ସେଇ ଲୋକଟି !

ରାଜେଶ ଲୋକଟିକୁ ଚିହ୍ନି ପାରିଥିଲା । ସେଇ ଲମ୍ବା ଓ କଦାକାର ଲୋକଟି । ଯାହାକୁ ସେ ଆଜି ଗ୍ରେଟ୍‌ଇଷ୍ଟର୍ଣ୍ଣ ହୋଟେଲରେ ମିସେସ୍ ମେହେରାଙ୍କ ସହିତ ଦେଖିଥିଲା । ସେଇ ଲୋକଟି ହାତରେ ଗୋଟିଏ କଳା ଆଟାଚି କେସ୍ ଧରି ଲିଫ୍‌ଟରୁ ବାହାରି ଚାଲିଗଲା ।

ରାଜେଶ ଉପରକୁ ଉଠିଲା । ଲିଫ୍‌ଟ ତିନିତାଲାରେ ଠିଆ ହେବା ମାତ୍ରକେ ରାଜେଶ ଓହ୍ଲେଇ ଗଲା ।

ତିନି ତାଲାଟା ଶୂନ୍‌ଶାନ୍ । ସବୁ ଘରର ଦରଜା ଗୁଡ଼ାକ ବନ୍ଦ । କିନ୍ତୁ ଦୋତାଲାରୁ ବାଦ୍ୟରୋଳ ଭାସିଆସି ତିନିତାଲାକୁ ଜୀବନ୍ତ କରି ରଖିଛି ।

ରାଜେଶ ୭ ନମ୍ବର ରୁମ୍ ପାଖରେ ଯାଇ ଠିଆ ହେଲା । ବାହାରୁ ନକ୍ କଲା । ଭିତରୁ କିଛି ଉତ୍ତର ପାଇଲା ନାହିଁ ।

ବୋଧହୁଏ ମିଷ୍ଟର ଶର୍ମା ତାକୁ ଅପେକ୍ଷା କରି କରି ବାହାରି ଯାଇଛନ୍ତି ।

ରାଜେଶ ଆହୁରି କିଛି ସମୟ ଠିଆହୋଇ ଦରଜାରେ ନକ୍ କଲା । ତଥାପି କିଛି ଉତ୍ତର ପାଇଲା ନାହିଁ ।

ଏକ ସମୟରେ ସେ ଦରଜାଟା ଠେଲି ଦେଲା ।

ଦରଜା ଖୋଲିଗଲା ।

କିନ୍ତୁ ଘର ଭିତରେ ଏ କି ବିଭତ୍ସ ଦୃଶ୍ୟ ? ମିଷ୍ଟର ଶର୍ମା ଚିତ୍‌କାତ ହୋଇ ପଡ଼ିଛନ୍ତି । ରକ୍ତର ସୁଅ ବିଛଣା ଭିଜି ଚଟାଣ ଉପରେ ବହିଯାଉଛି ।

ରାଜେଶର ଆଖି ବନ୍ଦ ହୋଇଗଲା । ମୁହୂର୍ତ୍ତକ ପାଇଁ ତା'ର ମୁଣ୍ଡ ବୁଲେଇ ଦେଲା । ଏ କ୍ଷେତ୍ରରେ ତା'ର କର୍ତ୍ତବ୍ୟ କ'ଣ ?

ସେ ଯେମିତି ଧୀରେ ଧୀରେ ଘରେ ପଶିଥିଲା, ସେମିତି ଧୀରେ ଧୀରେ ବାହାରକୁ ବାହାରି ଆସିଲା । ଦରଜାଟା ଟାଣି ବନ୍ଦ କରି ଦେଲା । କମ୍ପିତ ପାଦରେ ବାହାରକୁ ଆସି ଚାରିଆଡ଼କୁ ଚାହିଁଲା । ନା, କେହି ନାହାନ୍ତି । କେହି ତାକୁ ଦେଖିନାହାନ୍ତି । ଆଉ ଲିଫ୍‌ଟ ନୁହେଁ । ସେ ଶିଡ଼ି ଧରି କମ୍ପିତ ପଦରେ ତଳକୁ ଓହ୍ଲେଇ ଆସିଲା । ତଳେ ଲୋକ ଗହଳି । ଜାତିଜାତିକା ରଙ୍ଗ ବେରଙ୍ଗର ସ୍ତ୍ରୀ ପୁରୁଷ । ଆନନ୍ଦ ବିହ୍ୱଳ ।

ରାଜେଶ ସେଇ ଭିଡ଼ ଭିତରେ ମିଶିଗଲା ।

ହୋଟେଲ ବାହାରକୁ ବାହାରି ଆସି ଯେତେବେଳେ ସେ ଯାଇ ତା' ଗାଡ଼ିର ଦରଜା ଖୋଲି ଭିତରେ ପଶିଲା, ମନେହେଉଥିଲା, ତା'ର ସର୍ବାଙ୍ଗ ଥରୁଛି । ଷ୍ଟିଅରିଂ ଉପରେ ମୁଣ୍ଡ ରଖି ମୁହୂର୍ତ୍ତେ ସେ ବିଶ୍ରାମ କଲା ।

ତା'ହେଲେ ?

ମିଷ୍ଟର ଶର୍ମାଙ୍କୁ କିଏ ଖୁଣ୍ କଲା ? ନିଶ୍ଚୟ ତାଙ୍କର ଆଟାଚି କେସ୍‌ଟା ହସ୍ତାନ୍ତର ହୋଇଯାଇଛି ।

ରାଜେଶର ପର ମୁହୂର୍ତ୍ତରେ ମନେପଡ଼ିଲା, ସେଇ ବିଭତ୍ସ ଲୋକଟା କଥା । ସେ ଲିଫ୍‌ଟରୁ ଓହ୍ଲେଇ ଯିବାବେଳେ ତା' ହାତରେ ଗୋଟାଏ କଳା ଆଟାଚି କେସ୍ ଧରିଥିଲା । ଠିକ୍ ମିଷ୍ଟର ଶର୍ମାଙ୍କ ଆଟାଚି କେସ୍ ଭଳି ।

ତେବେ କ'ଣ...

ରାଜେଶର ଚିନ୍ତା ଶେଷ ହେଲା ନାହିଁ ।

ତା' କାନରେ ସାଇରେନ୍ ଶବ୍ଦ ବାଜିଲା । ଚାହିଁ ଦେଖିଲା ହୋଟେଲ ଦୁଆର ମୁହଁରେ ଦୁଇ ତିନିଟା ପୋଲିସ୍ ଭ୍ୟାନ୍ । ସଶସ୍ତ୍ର କନେଷ୍ଟବଲମାନେ ପୋଲିସ୍ ଭ୍ୟାନ୍‌ରୁ ତଳକୁ ଡେଇଁ ପଡୁଛନ୍ତି ।

ରାଜେଶ ସଚେତନ ହେଲା ।

ନା, ଏଠାରେ ଆଉ ମୁହୂର୍ତ୍ତେ ନୁହେଁ । ରାଜେଶ ଗାଡ଼ିରେ ଷ୍ଟାର୍ଟ ଦେଇ ଫେରି ଆସିଲା ଘରକୁ । ଦେହ ମୁହଁ ତା'ର ଝାଳରେ ଭିଜି ଯାଇଥିଲା । କି ସାଂଘାତିକ ଦୁର୍ଘଟଣା । ଆଉ ଟିକିଏ ଡେରିରେ ସେ ଘଟଣା ସ୍ଥଳରେ ପହଞ୍ଚିଥିଲେ...

ରାଜେଶ ଗାଡ଼ିକୁ ଗ୍ୟାରେଜ୍‌ରେ ରଖି, ଭାରାକ୍ରାନ୍ତ ମସ୍ତିଷ୍କରେ ଉପରକୁ ଉଠିଥିଲା । ଦେହ ମନରେ ତା'ର ଅବସାଦ ଭରି ଯାଇଥିଲା । ଚିନ୍ତାଧାରା ତା'ର ଶୂନ୍ୟ ହୋଇଯାଇଥିଲା । ସେ ଯାଇ କ୍ଲାନ୍ତ ଦେହଟାକୁ ବିଛଣା ଉପରେ ଲୋଟାଇ ଦେବ, ତାହାହିଁ ଥିଲା ତା'ର ଏକମାତ୍ର କାମନା ।

ରାଜେଶ ଦରଜା ଠେଲି ଘର ଭିତରକୁ ପଶିଲା । ଘରେ ମୃଦୁ ଆଲୋକ ଜଳୁଚି ଏବଂ ସାମ୍ନାରେ ଇଜି ଚେଆରଟା ଉପରେ କିଏ ଜଣେ ପଛକରି ବସିଛି ।

ରାଜେଶର ପ୍ରାଣରେ ଯେପରି ବିଦ୍ୟୁତ୍ ପ୍ରବାହ ଖେଳିଗଲା । ଗୋଡ଼ ଦୁଇଟା ଯେପରି ମାଟିରେ ପୋତି ହୋଇଗଲା । ଆଗକୁ କି ପଛକୁ ସେ ପାଦ ଉଠାଇ ପାରିଲା ନାହିଁ ।

: କମ୍‌ଇନ୍ ।

ଭିତରୁ କାହାର ଗମ୍ଭୀର କଣ୍ଠସ୍ୱର ଶୁଣାଗଲା ।

ରାଜେଶର ରକ୍ତ ଯେପରି ପାଣି ହୋଇଗଲା । ତା'ର ମନେହେଲା ବୋଧହୁଏ ପୋଲିସ୍ ସାହେବ ତା' ପାଇଁ ଅପେକ୍ଷା କରି ବସିଛନ୍ତି ।

କିନ୍ତୁ ପର ମୁହୂର୍ତ୍ତରେ ସେହି ଲୋକଟି ଉଠି ଠିଆ ହେଲା ଏବଂ ବୁଲିପଡ଼ି ରାଜେଶ ଆଡ଼କୁ ଆଗେଇ ଆସିଲା ।

: ସାର୍ ଆପଣ ?

ରାଜେଶ କଣ୍ଠରେ ଯେପରି ଆତଙ୍କ ଫୁଟି ଉଠିଥିଲା ।

ଧୀରାଜ ମେହେରା ହସି ହସି କହିଲେ : ମୋତେ ହଠାତ୍ ଏଠାରେ ଦେଖି ଖୁବ୍ ଆଶ୍ଚର୍ଯ୍ୟ ହେଉଛ, ନା ? ମୁଁ ଆଠଟା ପନ୍ଦର ଫ୍ଲାଇଟ୍‌ରେ ଦିଲ୍ଲୀରୁ ଫେରି ଆସିଛି । ମୁଁ ଜାଣେ ତମେ ଖୁବ୍ କ୍ଲାନ୍ତ । ତଥାପି ତମକୁ ଏଇ ମୁହୂର୍ତ୍ତରେ ଟିକିଏ ବାହାରିବାକୁ ହେବ । ଯାଅ ବାଥ୍‌ରୁମ୍‌କୁ ଯାଇ ଫ୍ରେସ୍ ହୋଇ ଆସ । ମୁଁ ଅପେକ୍ଷା କରୁଛି ।

ରାଜେଶ ବାକ୍‌ଶକ୍ତି ହରାଇଥିଲା । ସେ କେବଳ ମିଷ୍ଟର ମେହେରାଙ୍କ ମୁହଁକୁ ସ୍ତବ୍ଧ ହୋଇ ଚାହିଁଥିଲା ।

ମିଷ୍ଟର ମେହେରା କହିଲେ : ନା ରାଜେଶ ! ଶୀଘ୍ର ପ୍ରସ୍ତୁତ ହୋଇ ଆସ । ନଷ୍ଟ କରିବା ଭଳି ସମୟ ମୋ ହାତରେ ନାହିଁ ।

ରାଜେଶ କହିଲା : କିନ୍ତୁ ସାର୍, ମିଷ୍ଟର ଶର୍ମା...

: ମୁଁ ଜାଣେ । ମିଷ୍ଟର ଶର୍ମା ଖୁଣ୍ ହୋଇଛନ୍ତି । ବର୍ତ୍ତମାନ ଆମର କିଛି କରିବାର ନାହିଁ । ତମେ ପ୍ରସ୍ତୁତ ହୋଇପଡ଼ ।

ରାଜେଶ ଶାନ୍ତ ପିଲାଟି ପରି ବାଥ୍‌ରୁମ୍‌ରେ ପଶିଲା । ସେ ହିପ୍‌ନୋଟାଇଜ୍ ହେଲାପରି ଦେହ ହାତ ଧୋଇ ବାହାରକୁ ବାହାରି ଆସିଲା । ଆସି ଦେଖିଲା, ମିଷ୍ଟର ମେହେରା ଗୋଟିଏ ବୋତଲରୁ ଦୁଇ ଗ୍ଲାସ୍ ପାନୀୟ ଢାଳି ଅପେକ୍ଷା କରିଛନ୍ତି । ରାଜେଶକୁ ସାମ୍ନାରେ ବସିବାର ନିର୍ଦ୍ଦେଶ ଦେଇ, ଗୋଟିଏ ଗ୍ଲାସ୍ ତା' ହାତକୁ ବଢ଼ାଇ ଦେଲେ ।

ରାଜେଶ ସତରେ ତୃଷାର୍ତ୍ତ ହୋଇ ଉଠିଥିଲା ।

ସେ ଗ୍ଲାସ୍‌ରୁ ଏକାଥରକେ ଅର୍ଦ୍ଧେକ ନିଃଶେଷ କରି ମିଷ୍ଟର ମେହେରାଙ୍କ ମୁହଁକୁ ଚାହିଁଲା ।

ମିଷ୍ଟର ମେହେରା ଉଠି ଠିଆ ହୋଇଥିଲେ । ବାଁ ପାଖରେ ଥିବା ଗୋଟିଏ ଚମଡ଼ା ସୁଟ୍‌କେଶ୍ ଖୋଲି, ତହିଁରୁ ଗୋଟିଏ ଧୋତି ଓ ପଞ୍ଜାବି ବାହାର କରି ରାଜେଶକୁ ଦେଲେ । କହିଲେ : ଏଇଆକୁ ପିନ୍ଧିନିଅ ।

ରାଜେଶ ଦ୍ୱିଧାଜଡ଼ିତ ଆଖିରେ ମୁହୂର୍ତ୍ତେ ଚାହିଁଲା । ତା'ପରେ ଧୀରାଜ ମେହେରାଙ୍କ ହାତରୁ ଧୋତି ପଞ୍ଜାବି ନେଇ ଅନ୍ତରାଳକୁ ଚାଲିଗଲା । ସେ ଯେତେବେଳେ ଧୋତି ପଞ୍ଜାବି ପିନ୍ଧି ଫେରି ଆସିଲା, ତା'ର ମନେହେଉଥିଲା, ସେ ଯେପରି ଧୀରେ ଧୀରେ ପୁଣି ପ୍ରାଣଶକ୍ତି ଫେରି ପାଉଛି ।

ଧୀରାଜ ମେହେରା କହିଲେ : ଚମତ୍କାର ! ଏ ବେଶରେ ତମେ ଅନ୍ୟ ଏକ ମଣିଷ ହୋଇଯାଇଛ । ଖାଲି ଆଉ ଟିକିଏ ପରିବର୍ତ୍ତନ ଲୋଡ଼ା । ରୁହ ମୁଁ କରି ଦେଉଛି ।

ଧୀରାଜ ମେହେରା ସୁଟ୍‌କେଶ୍ ଭିତରୁ ଗୋଟିଏ ଟିଉବ୍ ବାହାର କଲେ । ଟିଉବ୍ ଭିତରୁ କିଛି ତରଳ ପଦାର୍ଥ କାଢ଼ି ରାଜେଶର ନାକ ଆଗରେ ଘସି ଦେଲେ ଏବଂ ହରଡ଼ ପରି ଛୋଟ କଳା ପଦାର୍ଥଟିଏ ବାହାର କରି ସେଠାରେ ଲଗାଇ ଦେଲେ ।

ତା'ପରେ ରାଜେଶ ମୁହଁକୁ ଚାହିଁ ହୋ ହୋ ହୋଇ ହସିଉଠି କହିଲେ : ତମେ ଆଇନା ସାମ୍‌ନାକୁ ଯାଅ ରାଜେଶ, ଦେଖ ଏ ଲୋକଟି କିଏ ତମ ସାମ୍‌ନାରେ ।

ସତକୁ ସତ ରାଜେଶ ଆଇନା ସାମ୍‌ନାକୁ ଯାଇ ଭ୍ରମରେ ପଡ଼ିଗଲା । ତା' ନାକ ଅଗରେ ଗୋଟାଏ ବିରାଟ ତିଳଚିହ୍ନ । ଏଇ ସାମାନ୍ୟ ପରିବର୍ତ୍ତନ ଯେ ରାଜେଶକୁ ଜଣେ ଅନ୍ୟ ମଣିଷ କରି ପକାଇଛି, ସେ ନିଜ ଆଖିକୁ ବିଶ୍ୱାସ କରିପାରୁ ନଥିଲା ।

ରାଜେଶ ପୁଣି ଫେରିଆସିଲା ଧୀରାଜ ମେହେରାଙ୍କ ସାମ୍‌ନାକୁ ।

ଧୀରାଜ ମେହେରା ଏଥର ସୁଟ୍‌କେଶ୍ ଭିତରୁ ଖଣ୍ଡିଏ ମୋଟା ବହି ବାହାର କଲେ । କହିଲେ : ଏ ବହିଟା ତମକୁ ନେଇ ହୋଟେଲ ଇଣ୍ଟର ନାସନାଲରେ ପହଞ୍ଚାଇ ଦେଇ ଆସିବାକୁ ହେବ ।

ହୋଟେଲ ଇଣ୍ଟରନାସନାଲର ନାଁ ଶୁଣି ରାଜେଶ ଚମକି ଉଠିଲା ।

ଧୀରାଜ ମେହେରା ରାଜେଶ ପିଠିରେ ହାତ ବୁଲାଇ ଦେଇ ଅଭୟ ବାଣୀ ଶୁଣାଇଲେ : ମୁଁ ଜାଣେ ହୋଟେଲ ଇଣ୍ଟରନାସନାଲ ବର୍ତ୍ତମାନ ପୋଲିସ ଘେର ଭିତରେ କିନ୍ତୁ ହୋଟେଲ ଭିତରେ ଉତ୍ସବ ଅବ୍ୟାହତ ରହିଛି । ପୋଲିସର କଡ଼ା ନଜର ସମସ୍ତଙ୍କ ଉପରେ । ଏଇଟା ଆମ ପାଇଁ ସୁଯୋଗ । ଏତିକିବେଳେ ଆମକୁ କାମ ହାସଲ କରି ଫେରି ଆସିବାକୁ ହେବ ।

ରାଜେଶ ନୀରବରେ ମୁଣ୍ଡ ନୋଇଁ ଶୁଣୁଥିଲା ।

ଧୀରାଜ ମେହେରା ବହିଟି ହାତରେ ଧରି ଖୋଲିଦେବା ମାତ୍ରକେ ରାଜେଶ ଶିହରୀ ଉଠିଲା । ସେଇଟି ବହି ତ ନୁହେଁ, ବହି ଆକୃତିର ଗୋଟାଏ ବାକ୍‌ସ ଏବଂ ସେହି ବାକ୍‌ସ ଭିତରେ ଗୋଟାଏ ଉଜ୍ଜ୍ୱଳ ମୟୂରୀ ।

ଧୀରାଜ ମେହେରା କହିଲେ : ଏଇ ପଦାର୍ଥଟିର ନାମ 'ଗୋଲଡେନ୍ ପିକକ୍' । ଏହା ସୁନାରେ ତିଆରି ହେଲେ ବି, ଏହାର ପୁଚ୍ଛ ଇତ୍ୟାଦିରେ ହୀରା ଓ ଅନ୍ୟାନ୍ୟ ମୂଲ୍ୟବାନ ଜହରତ୍ ଖଞ୍ଜା ହୋଇ ରହିଛି । ଏଇଟି ଆକୃତିରେ ଏତେ ଛୋଟ ହେଲେ ମଧ ଏହାର ମୂଲ୍ୟ ହେଉଛି ପାଞ୍ଚଲକ୍ଷ ଟଙ୍କାରୁ ଅଧିକ ।

ଧୀରାଜ ମେହେରା କଥା ବନ୍ଦ କରି ରାଜେଶ ମୁହଁକୁ ଚାହିଁଲେ ଏବଂ କେସ୍‌ଟି ବନ୍ଦ କରି, ରାଜେଶ ହାତକୁ ବହିଟି ବଢ଼ାଇ ଦେଲେ ।

ରାଜେଶ ଦେଖିଲା ବହିଟିର ନାମ ଲେଖା ହୋଇଛି 'ମଡ଼ର୍ଣ୍ଣ ପୋଏମ୍‌ସ ।' ସେ ଏତେବେଳକେ ବହିର ନାଁ ସହିତ ତା' ପୋଷାକର ତାତ୍ପର୍ଯ୍ୟ ଅନୁଭବ କଲା ।

ଧୀରାଜ ମେହେରା କହିଲେ : ତମେ ଏଇ ବହିଟି ହାତରେ ଧରି ହୋଟେଲ ଇଣ୍ଟରନାସନାଲ ଭିତରକୁ ପଶିବ । ଦରଜାରେ ପୋଲିସ ପହରା ଥିବେ । ସେମାନେ ତମର ବେଶ ପୋଷାକ ଦେଖି ପଥରୋଧ କରିବେ ନାହିଁ । ତା'ପରେ ତୁମେ ଉତ୍ତର ପାର୍ଶ୍ୱ ଲିଫ୍‌ଟରେ ଉଠି ତିନିତାଲାକୁ ଯିବ । ଲିଫ୍‌ଟରୁ ଓହ୍ଲାଇ ଡାହାଣ ପାଖକୁ ଯିବ । ଦୁଇଟି ରୁମ୍ ଛାଡ଼ି ଦେଖିବ ୨୧ ନମ୍ବର ରୁମ୍ । ଦରଜାରେ ତିନିଥର ନକ୍ କରିବ । ଦରଜା ଖୋଲିଦେବ ଜଣେ ସୁନ୍ଦରୀ ତରୁଣୀ । ସେ ତୁମକୁ ଚାହିଁ ତିନିଥର ହସିବ । ତମେ ତମ ନାକରେ ତିନିଥର ହାତ ଘସିବ । ତା'ପରେ ସେ ତମକୁ ଭିତରକୁ ଡାକିବ । ତମେ ଭିତରକୁ ଯିବ । ସେ ତୁମକୁ ହାତ ବଢ଼ାଇ ବହିଟି ମାଗିବ । ତମେ ତାକୁ ବହିଟି ଦେଇଦେବ । ବହିଟି ସେ ଖୋଲି ଦେଖିବ । ଆଲମିରାରେ ବନ୍ଦ କରି ଆଉ ଖଣ୍ଡେ ଠିକ୍ ଏହିପରି ବହି ତମ ହାତକୁ ବଢ଼ାଇ ଦେବ । ତମେ ତା'ଠାରୁ ବହିଟି ଆଣି ପୁଣି ପୂର୍ବ ପରି କାଖରେ ଜାକି ସଂଗେ ସଂଗେ ତଳକୁ ଓହ୍ଲେଇ ଆସିବ । ବାସ୍ ଏତିକି । ସେ ବହିଟି ଆଣି ମୋତେ ଦେଇ ଦେଲେ ତମର ଛୁଟି ।

ଧୀରାଜ ମେହେରା ହାତ ଘଡ଼ିକୁ ଚାହିଁଲେ ।

: ଯାଅ ରାଜେଶ ! ମୁଁ ତମର ଶୁଭକାମନା କରୁଛି ।

ରାଜେଶ ଉଠି ଠିଆହେଲା । ଧୀରାଜ ମେହେରା ବି ଉଠିଲେ । ରାଜେଶ ଶଂକିତ ପଦରେ ଧୀରେ ଧୀରେ ଓହ୍ଲେଇ ଆସିଲା ।

ଧୀରାଜ ମେହେରା କହିଲେ : ଖୁବ୍ ସାବଧାନ ରାଜେଶ । ପାଞ୍ଚଲକ୍ଷ ଟଙ୍କାର ଦାୟିତ୍ୱ ତମ ଉପରେ । ସୁଯୋଗ ଜୀବନରେ ଥରେ ଆସେ । ଆଶା କରୁଛି ତମେ ସେ ସୁଯୋଗ ଗ୍ରହଣ କରିବ ।

ରାଜେଶ ଗ୍ୟାରେଜରୁ ଯାଇ କାର୍‌ଟା ବାହାରକଲା ।

ତା' ମନରୁ ସମସ୍ତ ଦୁର୍ବଳତା ଦୂରେଇ ଯାଇଥିଲା । ସେଇ ଗୋଟିଏ ଗ୍ଲାସ୍ ପାନୀୟ ରାଜେଶକୁ ସତେଜ କରିଦେଇଥିଲା ।

ରାସ୍ତା ଫାଙ୍କା ହୋଇ ଯାଇଥିଲା । ହୋଟେଲ ଇଣ୍ଟର ନାସନାଲରେ ପହଞ୍ଚିବାକୁ ତାକୁ ଦଶ ମିନିଟ୍‌ରୁ ଅଧିକ ସମୟ ଲାଗିଲା ନାହିଁ ।

ରାଜେଶ ଦୂରରେ ଗାଡ଼ି ଅଟକେଇ ପରିସ୍ଥିତି ଲକ୍ଷ୍ୟ କଲା । ନା, କୋଳାହଳ ସାମାନ୍ୟ କମିଥିଲେ ବି ଗୋଳ ଚହଳ ସଂପୂର୍ଣ୍ଣ ବନ୍ଦ ହୋଇଯାଇ ନାହିଁ । ସେ ଗାଡ଼ିରୁ ଓହ୍ଲାଇ ଆଗେଇ ଗଲା ।

ହୋଟେଲ ଇଣ୍ଟରନାସନାଲ ଦୁଆରେ ଚାରିଜଣ କନେଷ୍ଟବଲ ଓ ଜଣେ ପୋଲିସ୍ ଅଫିସର ଡିଉଟିରେ ଅଛନ୍ତି । ରାଜେଶ ଦୂରରୁ ଥାଇ ଲକ୍ଷ୍ୟ କଲା, ଯେଉଁମାନେ ଭିତରକୁ ଯାଉଛନ୍ତି, ସେମାନଙ୍କୁ କେହି କିଛି ପଚାରୁ ନାହାନ୍ତି, କିନ୍ତୁ ଯେଉଁମାନେ ଭିତରୁ ବାହାରକୁ ଆସୁଛନ୍ତି, ସେମାନଙ୍କୁ ପ୍ରଶ୍ନ କରୁଛନ୍ତି, ଏପରିକି ଜଣ ଜଣକର ହାତବ୍ୟାଗ୍ ଓ ଭ୍ୟାନିଟି ବ୍ୟାଗ୍ ଇତ୍ୟାଦି ଖୋଲି ଦେଖୁଛନ୍ତି ।

ରାଜେଶ ନିଶ୍ଚିନ୍ତ ମନରେ ଭିତରକୁ ପଶିଲା । ଗୋଟାଏ ପୋଲିସ କନେଷ୍ଟବଳ ତା' ମୁହଁକୁ ଚାହିଁଲା । ସେ କିନ୍ତୁ ଅଟକିଲା ନାହିଁ । ସୁସ୍ଥ ଓ ସହଜ ଭଂଗୀରେ ରାଜେଶ ହୋଟେଲ ଭିତରକୁ ପଶିଗଲା ।

ଉତ୍ତର ପାର୍ଶ୍ୱରେ ଲିଫ୍ଟରେ ଉଠି ତିନିତାଲାରେ ପହଞ୍ଚିଲା । ଲୋକମାନେ ଯିବା ଆସିବା କରୁଥିଲେ । ଗୀତ ନାଚର ଲହରୀ ଭାସି ଆସୁଥିଲା । ରାଜେଶ ୨୧ ନମ୍ବର ରୁମ୍‌ରେ ଯାଇ ତିନିଥର ନକ୍ କଲା ।

ଦରଜା ଖୋଲିଗଲା । ତରୁଣୀଟି ତିନିଥର ହସିଲା । ରାଜେଶ ନାକରେ ତିନିଥର ହାତ ଘସିଲା । ତରୁଣୀଟି ରାଜେଶକୁ ଭିତରକୁ ଡାକିଲା । ହାତ ଲମ୍ବେଇ ବହି ମାଗିଲା । ରାଜେଶ ବହିଟି ଦେଇ ଦେଲା । ତରୁଣୀଟି ଖୋଲି ଦେଖିଲା । ଆଲମାରୀରେ ବନ୍ଦ କରି ଆଉ ଖଣ୍ଡିଏ ବହି ରାଜେଶ ହାତକୁ ବଢ଼ାଇ ଦେଲା ।

ସବୁ ଠିକ୍ ଘଣ୍ଟା କଣ୍ଟା ପରି ନିର୍ଭୁଲ ଭାବରେ ଘଟିଗଲା । ରାଜେଶ ତରୁଣୀ ହାତରୁ ବହିଟି ଆଣି କାଖରେ ଜାକି ପୁଣି ତଳକୁ ଓହ୍ଲେଇ ଆସିଲା ।

ଏଥର ତଳେ ଆସି ଦେଖିଲା ଗେଟ୍‌ରେ ପୋଲିସ୍ ସଂଖ୍ୟା ବଢ଼ି ଯାଇଛି ଏବଂ ଜଣେ ପୋଲିସ୍ ଅଫିସର ଗୋଟାଏ କୁକୁର ଧରି ଠିଆ ହୋଇଛନ୍ତି ।

ରାଜେଶର ପାଦ ଯୋଡ଼ାକ ସେଇଠି ଅଟକି ଗଲା । ତା'ର ମନେପଡ଼ିଲା ସେ ୭ ନମ୍ବର ରୁମ୍‌କୁ ଯାଇଥିଲା ଏବଂ ମି: ଶର୍ମାଙ୍କ ମୃତ୍ୟୁ ସ୍ଥାନରେ ମୁହୂର୍ତ୍ତକ ପାଇଁ ଉପସ୍ଥିତ ଥିଲା । ତେଣୁ କୁକୁରଟା ଯଦି...

କିନ୍ତୁ ରାଜେଶ ଲକ୍ଷ୍ୟ କଲା ପୋଲିସ୍ ଅଫିସର କୁକୁରଟା ଧରି ଉପରକୁ ଉଠୁଛନ୍ତି । ବୋଧହୁଏ କୁକୁରଟା ଏଇକ୍ଷଣି ଆସିଲା । ଏହାପରେ ସେ ତାକୁ ୭ ନମ୍ବର ରୁମ୍‌କୁ ନେଇ ହତ୍ୟାକାରୀର ସନ୍ଧାନ କରିବେ ।

ରାଜେଶ ଆଗେଇ ଗଲା । କୁକୁର ଉପରକୁ ଚାଲି ଯାଇଥିଲା । ରାଜେଶକୁ ଗେଟ୍‌ରେ ଜଣେ ପୋଲିସ୍ ଅଫିସର ଅଟକାଇଲେ । ଇଂଗିତରେ କାଖରେ କ'ଣ ଅଛି ବାହାର କରିବାକୁ କହିଲେ । ରାଜେଶ ବହି ଖଣ୍ଡିକ ପୋଲିସ୍ ଅଫିସରଙ୍କ ହାତକୁ ବଢ଼ାଇ ଦେଲା । ସେ ତାକୁ ଖେଳେଇ ଦେଖିଲେ । ରାଜେଶ ମୁହଁକୁ ଚାହିଁଲେ । କ'ଣ କହିବାକୁ ଯାଉଥିଲେ । କିନ୍ତୁ ପାଖରେ ଠିଆ ହୋଇଥିବା କନେଷ୍ଟବଳଟି କହିଲା : ବାବୁ ଏଇ ଅଳ୍ପ ସମୟ ହେବ ଉପରକୁ ଯାଇଥିଲେ । ମୁଁ ଲକ୍ଷ୍ୟ କରିଛି ।

ପୋଲିସ୍ ଅଫିସର ବହିଟି ରାଜେଶ ହାତକୁ ବଢ଼େଇ ଦେଲେ । ରାଜେଶ ପୁଣି ବହିଟି କାଖରେ ଜାକିଲା ଏବଂ ଦ୍ରୁତ ପଦ ଚାଲି ସେଠାରୁ ଚାଲି ଆସିଲା ।

ଗାଡ଼ିରେ ଆସି ବସିଲା ବେଳକୁ ତା' ଦେହରୁ ପୁଣି ପରସ୍ତେ ଝାଳ ବୋହିଗଲା । ଏ ଯାତ୍ରାରୁ ସେ ରକ୍ଷା ପାଇଯାଇଛି । ଆଉ ଟିକିଏ ଡେରି ହୋଇଯାଇଥିଲେ, ହୁଏତ କୁକୁରଟା ୭ ନମ୍ବର ଘରୁ ଫେରିଆସିଥିଲେ, ରାଜେଶକୁ ସେ ନିଶ୍ଚୟ ଧରିପକାଇ ଥାଆନ୍ତା ।

ରାଜେଶ ଆଉ ଡେରି କଲା ନାହିଁ । ଗାଡ଼ିରେ ଷ୍ଟାର୍ଟ ଦେଇ ଛୁଟି ପଳେଇଲା ଜୀବନ ବିକଳରେ ।

\+ + +

ଲାଲବଜାର ପୋଲିସ୍ ଷ୍ଟେସନର ଏକ ଗୁପ୍ତ କକ୍ଷରେ ଆଲୋଚନା ସଭା ବସିଥିଲା । କ୍ରାଇମ୍‌ବ୍ରାଞ୍ଚର ଏସ୍.ପି. ମୃଗାଙ୍କ ଚୌଧୁରୀ ଅଧକ୍ଷତା କରୁଥିଲେ ।

'ସ୍ୱର୍ଣ୍ଣମୟୂରୀ'ର ଉଦ୍ଧାର କାର୍ଯ୍ୟ ମୃଗାଙ୍କ ଚୌଧୁରୀଙ୍କ ତତ୍ତ୍ୱାବଧାନରେ ଦିଆଯାଇଛି । ଭାରତ ସରକାରଙ୍କ ପକ୍ଷରୁ ଏହି ଉଦ୍ଧାର କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ନିର୍ଦ୍ଦେଶ ଆସିଛି । ସ୍ୱର୍ଣ୍ଣମୟୂରୀ ଭାରତ ସରକାରଙ୍କର ଏକ ସମ୍ମାନନୀୟ ସଂପଦ । ଟଙ୍କା ଦୃଷ୍ଟିରୁ ତା'ର ମୂଲ୍ୟ ଯେତେ କମ୍ ହେଲେ ମଧ, ସମ୍ମାନ ଦୃଷ୍ଟିରୁ ତା'ର ସ୍ଥାନ ବହୁ ଉଚ୍ଚରେ । ତେଣୁ ସ୍ୱର୍ଣ୍ଣମୟୂରୀକୁ ଯେ ନିଶ୍ଚୟ ଫେରାଇ ଆଣିବାକୁ ହେବ ଏହା ନିଶ୍ଚିତ ସତ୍ୟ ।

ମୃଗାଙ୍କ ଚୌଧୁରୀ ନିଜେ ଯାଇ ହୋଟେଲ ଇଣ୍ଟରନାସନାଲର ହତ୍ୟାକାଣ୍ଡଟି ତଦନ୍ତ କରି ଆସିଥିଲେ । ଆବଶ୍ୟକୀୟ ଫଟୋଗ୍ରାଫ୍ ଇତ୍ୟାଦି ଆଣି ସାରି ଲାସ୍‌କୁ ମଇନା ତଦନ୍ତ ପାଇଁ ପଠାଇ ଦିଆ ହୋଇଥିଲା ।

ମୃଗାଙ୍କ ଚୌଧୁରୀ କହିଲେ : ଆପଣମାନେ ଯେଉଁମାନେ ସ୍ୱର୍ଣ୍ଣମୟୂରୀ ଉଦ୍ଧାର କାର୍ଯ୍ୟରେ ନିଯୁକ୍ତି ପାଇଛନ୍ତି, ଏହାର ସଫଳତା ଉପରେ ଆପଣମାନଙ୍କର ପଦୋନ୍ନତିର ଯଥେଷ୍ଟ ସମ୍ଭାବନା ରହିଛି ଏବଂ ଭାରତ ସରକାର ଏଥିପାଇଁ ଉଦ୍ଧାରକାରୀକୁ ପୁରସ୍କୃତ କରିବେ ମଧ । କିନ୍ତୁ ମୋର ବା ଆପଣମାନଙ୍କର ଲକ୍ଷ୍ୟ ନିଶ୍ଚୟ ପଦୋନ୍ନତି ବା ପୁରସ୍କାର ପ୍ରାପ୍ତି ନୁହେଁ । ଆମ ସମସ୍ତଙ୍କର ଲକ୍ଷ୍ୟ ହେବା ଉଚିତ ସୁନାମ ଓ ପୂର୍ବର ଐତିହ୍ୟ ରକ୍ଷା । ଏଇ ସ୍ୱର୍ଣ୍ଣମୟୂରୀ ଉଦ୍ଧାର କାର୍ଯ୍ୟ ଆମ ପାଇଁ ଏକ ଚାଲେଞ୍ଜ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦିଲ୍ଲୀ ପୋଲିସ୍ ଯାହା ନ ପାରିଛି, ଆମକୁ ତାହା କରିବାକୁ ହେବ ।

କାଲି ରାତିରେ ହୋଟେଲ ଇଣ୍ଟରନାସନାଲର ୭ ନମ୍ବର ରୁମ୍‌ରେ ଯେଉଁ ହତ୍ୟାକାଣ୍ଡ ଘଟି ଯାଇଛି, ସ୍ୱର୍ଣ୍ଣମୟୂରୀର ମୂଳ ଉତ୍ସ ସେଇଠି ବୋଲି ସମସ୍ତେ ଭାବୁଛନ୍ତି । ତେବେ ଆମର ଲକ୍ଷ୍ୟ କେବଳ ସେଇଠି ସୀମାବଦ୍ଧ ରହିବା ଉଚିତ ନୁହେଁ । ଏପରି ହୋଇପାରେ ହୁଏତ ସେଇ ହତ୍ୟାକାଣ୍ଡ ସହିତ ସ୍ୱର୍ଣ୍ଣମୟୂରୀର କୌଣସି ସମ୍ପର୍କ ନାହିଁ । କିନ୍ତୁ ସୂତ୍ର ଗୋଟାଏ ଆବଶ୍ୟକ । ଯାହାକୁ କେନ୍ଦ୍ର କରି ଆମକୁ ଆଗେଇବାକୁ ହେବ ।

ମି: ଶର୍ମା, ଯାହାର ରକ୍ତାକ୍ତ ଦେହ ଆମେ ଯାଇ ଦେଖିଲେ ସେଇ ଲୋକଟି କିଏ ? ଆମର ଯଥାସାଧ୍ୟ ଅନୁସନ୍ଧାନ ପରେ ମଧ ସେହି ଶର୍ମା ନାମଧାରୀ ଲୋକଟିର କୌଣସି ପରିଚୟ ଆମେ ପାଇପାରିଲେ ନାହିଁ । ତା'ର ଏକ ରେଡ଼ିଓ ଫଟୋ ମୁଁ ଦିଲ୍ଲୀ ହେଡ଼କ୍ୱାର୍ଟରକୁ ପଠାଇଛି, ହୁଏତ ଆଉ କିଛି ସମୟ ପରେ ସେହି ଶର୍ମା ନାମଧାରୀ ଲୋକଟିର ସର୍ବଶେଷ ବିବରଣୀ ଆସିଯିବ ।

ଏ ତ ଗଲା ନିହତ ଶର୍ମା କଥା । କିନ୍ତୁ ଶର୍ମାର ହତ୍ୟାକାରୀ ? ସେ ବି ଧୂର୍ତ୍ତ ଲୋକ । ସେ ମଧ ସାମାନ୍ୟତମ ସୂତ୍ର ଛାଡ଼ି ନ ଯିବାକୁ ଚେଷ୍ଟା କରିଛି । ଏପରି କି ଛୁରୀ ବେଣ୍ଟରେ ଫିଙ୍ଗର ପ୍ରିଣ୍ଟ ନାହିଁ । ଚଟାଣ ଉପରେ ଫୁଟ୍ ପ୍ରିଣ୍ଟ୍ ନାହିଁ । ଦୁଇ ଚତୁରଙ୍କ ମଧରେ କୋଳାକୋଳି ହୋଇଛି ଯେପରି । କିନ୍ତୁ ହତ୍ୟାକାରୀ ଯଥେଷ୍ଟ ସାବଧାନତା ଅବଲମ୍ବନ କରିଥିଲେ ମଧ, ଗୋଟିଏ କ୍ଲୁ ସେ ଛାଡ଼ି ଯାଇଛି । ଯେଉଁକଥା ଆପଣମାନେ କେହି ଲକ୍ଷ୍ୟ କରି ନାହାନ୍ତି । କ୍ଲୁଟି ହେଉଛି...

ମୃଗାଙ୍କ ଚୌଧୁରୀ ଟିକିଏ ନୀରବ ହୋଇ ପକେଟରୁ ଗୋଟିଏ ଚତୁଷ୍କୋଣ ପଦାର୍ଥ ବାହାର କରି ଦେଖାଇ କହିଲେ : ହତ୍ୟାକାରୀ ଏଇ ଲକେଟ୍‌ଟି ଛାଡ଼ିଯାଇଛି । ମୃତ ମିଷ୍ଟର

ଶର୍ମାଙ୍କ ହାତମୁଠାରୁ ମୁଁ ଏହି ଲକେଟ୍‌ଟି ଉଦ୍ଧାର କରିଛି । ବୋଧହୁଏ ମିଷ୍ଟର ଶର୍ମା ମୃତ୍ୟୁ ପୂର୍ବରୁ ହତ୍ୟାକାରୀ ସହିତ ଯୁଦ୍ଧ କରିଛନ୍ତି । ଶେଷରେ ପରାସ୍ତ ହୋଇଛନ୍ତି ସତ, ମାତ୍ର ହତ୍ୟାକାରୀର ବେକରୁ ହେଉ ବା ବାହୁରୁ ହେଉ ଏଇ ଲକେଟ୍‌ଟି ଛିଡ଼େଇ ରଖିଛନ୍ତି । କିନ୍ତୁ ଏଇ ଲକେଟ୍‌ଟି ଯେ ଆମକୁ ହତ୍ୟାକାରୀକୁ ଖୋଜି ବାହାର କରିବା ପକ୍ଷରେ ବିଶେଷ ସହାୟକ ହୋଇ ନ ପାରେ, ଏପରି ଭାବନା ଆପଣମାନଙ୍କ ମନରେ ଆସିପାରେ । ମୁଁ ବି ପ୍ରଥମେ ସେଇକଥା ଭାବିଥିଲି । କିନ୍ତୁ ଏଇ ଲକେଟ୍ ଭିତରେ ଆଉ ଏକ ସୂତ୍ର ଆତ୍ମଗୋପନ କରିଛି । ତାହା କ'ଣ ଜାଣନ୍ତି ? ଜଣେ ମହିଳାଙ୍କର ଫଟୋଗ୍ରାଫ୍ । ଅବଶ୍ୟ ଫଟୋ ଖଣ୍ଡିକ ୩୫ ମିଲିମିଟରର କଣ୍ଟାକ୍ଟ ପ୍ରିଣ୍ଟ । ତଥାପି ମହିଳାଙ୍କୁ ପରିଷ୍କାର ଚିହ୍ନି ହେଉଛି । ବୟସ ୩୦/୩୫ ହେବ । ବେଶ୍ ସମ୍ଭ୍ରାନ୍ତ । ଏଇ ଦେଖନ୍ତୁ ଆପଣମାନେ ।

ମୃଗାଙ୍କ ଚୌଧୁରୀ ଲକେଟ୍ ଭିତରୁ ଫଟୋଗ୍ରାଫ୍‌ଟି ବାହାର କରି ସାମ୍ନାରେ ବସିଥିବା ଅଫିସରମାନଙ୍କୁ ଦେଖାଇଲେ ।

ତା'ପରେ କହିଲେ : ମୁଁ ଏହାର ଏନ୍‌ଲାର୍ଜ ପ୍ରିଣ୍ଟ ପାଇଁ ବର୍ତ୍ତମାନ ଫଟୋଗ୍ରାଫରକୁ ଦେଇଦେବି । ଏହା କିନ୍ତୁ ଏକ ଗୋପନ ସୂତ୍ର । ଏଇ ମହିଳାଙ୍କର ଅନୁସନ୍ଧାନ ଆମକୁ ଗୋପନରେ କରିବାକୁ ହେବ । କିନ୍ତୁ ମୁଁ ତ ପୂର୍ବରୁ କହିଛି, ଏହି ହତ୍ୟାକାଣ୍ଡ ସହିତ 'ସ୍ୱର୍ଣ୍ଣମୟୂରୀ'ର ଉଦ୍ଧାର ସଂପର୍କ ଆଦୌ ଥାଇ ନ ପାରେ ।

ତଥାପି ହୋଟେଲ ଇଣ୍ଟରନାସନାଲ ଆମର ମୁଖ୍ୟ ଘାଟି । ସେଠାରେ କାଲି ରାତିଠାରୁ ଯାହା ବ୍ୟବସ୍ଥା କରାହୋଇଛି ଆପଣମାନେ ତ ସମସ୍ତେ ସେ କଥା ଜାଣନ୍ତି । କାଲି ରାତି ସାଢ଼େ ଦଶଟାଠାରୁ ଯେଉଁମାନେ ହୋଟେଲକୁ ଯାଇଛନ୍ତି ଏବଂ ବାହାରିଛନ୍ତି ସମସ୍ତଙ୍କର ଫଟୋଗ୍ରାଫ ଗୋପନରେ ଉଠା ହୋଇଥିବା ସମ୍ବାଦ ମଧ୍ୟ ଆପଣମାନେ ଜାଣନ୍ତି । ବର୍ତ୍ତମାନ ଆମର ପରବର୍ତ୍ତୀ କାର୍ଯ୍ୟପନ୍ଥା କ'ଣ ହେବା ଉଚିତ ଏବଂ କି ଉପାୟରେ ସ୍ୱର୍ଣ୍ଣ ମୟୂରୀ ଅନୁସନ୍ଧାନର କାର୍ଯ୍ୟ ସଂପ୍ରସାରିତ କରାଯିବ, ସେ ସମ୍ବନ୍ଧରେ ମୁଁ କିଛି କହିବି ନାହିଁ । ତଦ୍ୱାରା ଆପଣମାନଙ୍କ ମୁକ୍ତ ଚିନ୍ତାଧାରାକୁ ସୀମିତ କରି ଦେବାର ସମ୍ଭାବନା ଅଛି । ଆପଣମାନେ ପ୍ରତ୍ୟେକ ଜଣେ ଜଣେ ସ୍ୱନାମଧନ୍ୟ ଅଫିସର । ଅତୀତରେ ବହୁ ଜଟିଳ ସମସ୍ୟାର ସମାଧାନ ଆପଣମାନେ କରିଛନ୍ତି । ତେଣୁ ନିଜ ନିଜ ଚିନ୍ତାଧାରାକୁ ବିସ୍ତୃତ କରି ଆପଣମାନେ ଏ କେସ୍‌ର ଅନୁସନ୍ଧାନ କରନ୍ତୁ । ସମସ୍ତ ପ୍ରକାର ସାହାଯ୍ୟ ଆପଣମାନେ ମୋଠାରୁ ପାଇବେ । କିନ୍ତୁ କାର୍ଯ୍ୟଧାରା ଦ୍ରୁତ ହେବା ଆବଶ୍ୟକ ।

ମୃଗାଙ୍କ ଚୌଧୁରୀ କଥା ଶେଷ କରି ନୀରବ ହେଲେ ।

ଇନିସ୍‌ପେକ୍ଟର ବରଦା ଚକ୍ରବର୍ତ୍ତୀ ଠିଆ ହୋଇ କହିଲେ : ସାର୍, ଆମେମାନେ ଯେଉଁ ସ୍ୱର୍ଣ୍ଣ ମୟୂରୀ ଉଦ୍ଧାର କାର୍ଯ୍ୟରେ ବାହାରିଛୁ, ସେଇ ସ୍ୱର୍ଣ୍ଣ ମୟୂରୀର ରୂପ ଓ ଆକୃତି ସମ୍ବନ୍ଧରେ ଆମର କିଛି ଧାରଣା ନାହିଁ । ତା'ର ଖଣ୍ଡେ ଖଣ୍ଡେ ଫଟୋଗ୍ରାଫ୍ ଆମ ପାଖରେ ରହିଲେ ଭଲ ହୁଅନ୍ତା ।

ମୃଗାଙ୍କ ଚୌଧୁରୀ କହିଲେ : ସେ କଥା ମଧ୍ୟ ମୁଁ କର୍ତ୍ତୃପକ୍ଷଙ୍କୁ ଜଣାଇଛି । ଆଶା କରୁଛି ଆଜି ପ୍ରଥମ ଫ୍ଲାଇଟ୍‌ରେ ଦିଲ୍ଲୀରୁ ସବୁ ଆସି ପହଞ୍ଚିଯିବ ।

: ଆଉ ଗୋଟିଏ ପ୍ରଶ୍ନ ସାର୍ । ପୁଣି ବରଦା ଚକ୍ରବର୍ତ୍ତୀ କହିଲେ, ହୋଟେଲ ଇଣ୍ଟରନାସନାଲରେ ଯେଉଁ ମିଷ୍ଟର ଶର୍ମା ନିହତ ହେଲେ, ସେ ପ୍ଲେନ୍‌ରୁ ଦମ୍‌ଦମ୍‌ରେ ଓହ୍ଲେଇବା

ପରେ କିପରି କେଉଁ ଗାଡ଼ିରେ ଆସି ହୋଟେଲରେ ପହଞ୍ଚିଲେ, ସେ ସମ୍ବନ୍ଧରେ ସବିଶେଷ କିଛି ଜାଣିପାରିଲେ ?

: ନା, ଭି.ଆଇ.ପି. ରୋଡ଼ରୁ ମି. ଶର୍ମା ଟ୍ୟାକ୍ସିରେ ଉଠିବା ପରଠାରୁ ତାଙ୍କୁ ଫଲୋ କରାହୋଇଛି । ତା'ପୂର୍ବରୁ ସେ କାହା ଗାଡ଼ିରେ ଓ କିପରି ଭାବରେ ଭି.ଆଇ.ପି. ରୋଡ଼ର ସେଇ ନିର୍ଦ୍ଦିଷ୍ଟ ସ୍ଥାନ ଯାଏ ଆସିଥିଲେ, ତା'ର କିଛି ଖବର ମିଳିପାରିଲା ନାହିଁ । ତେବେ ସେଇ ମୁହୂର୍ତ୍ତରେ ବହୁ କାର୍ ଓ ଲରୀ ଅଟକାଇ ସର୍ଚ୍ଚ କରା ହୋଇଥିଲା । କେଉଁଥିରୁ ସନ୍ଦେହଜନକ ତଥ୍ୟ କିଛି ମିଳି ନଥିଲା ।

ଇନିସ୍‌ପେକ୍ଟର ସାଜାଦ୍ ଉଠି ଠିଆ ହେଲେ । କହିଲେ : ସାର୍, ମୋ ମନରେ ଗୋଟାଏ ପ୍ରଶ୍ନର ସମାଧାନ ମୁଁ କରିପାରୁ ନାହିଁ । ଘଟଣାଟା କାଲି ରାତିର । ମି: ଶର୍ମା ଆସି ହୋଟେଲ ଇଣ୍ଟରନାସନାଲରେ ପହଞ୍ଚିବା ପରଠାରୁ ଆମ ପୋଲିସ ବାହିନୀ ଯାଇ ତାଙ୍କର ମୃତ ଦେହ ଆବିଷ୍କାର କରିବା ପର୍ଯ୍ୟନ୍ତ ମଝିରେ ମାତ୍ର ପଇଁଚାଳିଶ ପଚାଶ୍ ମିନିଟ୍‌ର ବ୍ୟବଧାନ ।

ମୁଁ ଅନୁସନ୍ଧାନ କରି ହୋଟେଲ ମ୍ୟାନେଜରଙ୍କ ଠାରୁ ଜାଣିଥିଲି ଯେ ନଅଟା ପନ୍ଦରରୁ କୋଡ଼ିଏ ମିନିଟ୍ ଭିତରେ ମିଷ୍ଟର ଶର୍ମା ୭ ନମ୍ବର ରୁମ୍‌ରେ ପ୍ରବେଶ କରିଥିଲେ । ମି: ଶର୍ମାଙ୍କୁ ଯେଉଁ ବୟଟି ନେଇ ସାତ ନମ୍ବର ରୁମ୍‌ରେ ଛାଡ଼ି ଆସିଥିଲା, ସେ କୁହେ ଯେ ନିଜେ ସେ ଚାବି ଖୋଲି ରୁମ୍‌ରେ ପ୍ରବେଶ କରିଥିଲା ଏବଂ ଖଟ ଇତ୍ୟାଦି ସଜାଡ଼ି ଦେଇଥିଲା । ମି: ଶର୍ମାଙ୍କ ହାତରେ କେବଳ ଗୋଟିଏ କଳା ଆଟାଚି କେସ୍ ଛଡ଼ା ଅନ୍ୟ କିଛି ସେ ଦେଖି ନଥିଲା । କିନ୍ତୁ ଆମର ଯେଉଁ କନେଷ୍ଟବଳ ଜଣକ ମି: ଶର୍ମାଙ୍କୁ ଭି.ଆଇ.ପି. ରୋଡ଼ରୁ ଫଲୋ କରି ଆସିଥିଲେ, ମି: ଶର୍ମା ୭ ନମ୍ବର ରୁମ୍‌ରେ ରହୁଛନ୍ତି ଜାଣି, ସେ ହେଡ୍‌କ୍ୱାର୍ଟରକୁ ଫୋନ୍ କରି ଜଣାଇଥିଲେ । ଲାଇନ୍ ଇନ୍‌ଗେଜ ଥିବାରୁ ସେ ଖବର ଯଥା ସ୍ଥାନରେ ପହଞ୍ଚାଇବାକୁ ପ୍ରାୟ ପନ୍ଦର ମିନିଟ୍ ଲାଗି ଯାଇଥିଲା । ଆଉ ସେଠାରୁ ପୋଲିସ୍ ଅଫିସର ଆସି ହୋଟେଲ ଇଣ୍ଟରନାସନାଲରେ ଦଶଟା ଦଶରେ ପହଞ୍ଚିଥିଲେ ।

ଏଇ ଯେଉଁ ଚାଳିଶ ପଚାଶ ମିନିଟ୍ ସମୟ, ଏଥିରେ ଏକ ହତ୍ୟାକାଣ୍ଡ ସଂଗଠିତ ହେବା କିଛି ବିଚିତ୍ର କଥା ନୁହେଁ । କିନ୍ତୁ ମୋର କହିବାର କଥା ହେଉଛି ହତ୍ୟାକାରୀ ନିଶ୍ଚୟ ଆଗରୁ ଏ ସମ୍ବନ୍ଧରେ ସବୁ ଖବର ପାଇଥିଲା ଏବଂ ନିର୍ଭୁଲ ଖବର ମଧ୍ୟ । ୭ ନମ୍ବର ରୁମ୍‌ରେ ଆସି ମିଷ୍ଟର ଶର୍ମା ରହିବେ ଆଉ ସ୍ୱର୍ଣ୍ଣ ମୟୂରୀ ସେ ବହନ କରି ଆସିଥିବେ ଏଇପରି ଏକ ନିର୍ଭୁଲ ଖବର ସେ ପାଇଲା କିପରି ?

ମୃଗାଙ୍କ ଚୌଧୁରୀ ମୁହୂର୍ତ୍ତେ ନୀରବ ରହି କହିଲେ : ଶତ୍ରୁପକ୍ଷୀୟ ଲୋକ କିପରି ନିର୍ଭୁଲ ସମ୍ବାଦ ପାଇଲା, ସେ କଥା ତ ଆମର ବିଚାର୍ଯ୍ୟ ନୁହେଁ । ଯାହାହେଉ ଶତ୍ରୁପକ୍ଷୀୟ ଲୋକ ନିର୍ଭୁଲ ସମ୍ବାଦ ପାଇବା ଭିତରେ ଆପଣଙ୍କ ମନରେ ନିଶ୍ଚୟ କିଛି ଦ୍ୱନ୍ଦ୍ୱ ଅଛି । ଆପଣ ପ୍ରକାଶ କରନ୍ତୁ ।

ଇନିସ୍‌ପେକ୍ଟର ସାଜାଦ୍ କହିଲେ : ମୋର ମନେହେଉଛି, ଏହା ମୋଟେ ଶତ୍ରୁପକ୍ଷୀୟ ଲୋକର କାମ ନୁହେଁ । ଆପଣ ମି: ଶର୍ମାଙ୍କ ଅବସ୍ଥା କଥା ଚିନ୍ତା କରନ୍ତୁ । ସେ ଯେତେବେଳେ ସ୍ୱର୍ଣ୍ଣମୟୂରୀ ଭଳି ଏକ ମୂଲ୍ୟବାନ ପଦାର୍ଥ ବହନ କରି ଆଣିଥିଲେ, ନିଶ୍ଚୟ ସେ ଜଣେ ଚତୁର ଓ ବୁଦ୍ଧିମାନ ଲୋକ ଏବଂ ଶତ୍ରୁ କବଳରୁ ସ୍ୱର୍ଣ୍ଣମୟୂରୀକୁ ରକ୍ଷା କରିବା ପାଇଁ ସେ ନିଶ୍ଚିତ ସବୁ ପ୍ରକାର ପ୍ରସ୍ତୁତ ହୋଇ ଆସିଥିଲେ । କୌଣସି ଅପରିଚିତ ଲୋକ ତାଙ୍କ ରୁମ୍‌ରେ

ପଶି ମେଷ ଶାବକ ଭଳି ତାଙ୍କୁ ହତ୍ୟା କରି ସ୍ୱର୍ଣ୍ଣମୟୂରୀଟିକୁ ଧରି ଚମ୍ପଟ ଦେଲା, ଏ କଥା ମୁଁ ଆଦୌ ଚିନ୍ତା କରିପାରୁ ନାହିଁ ।

ଇନିସ୍‌ପେକ୍ଟର ସାଜାଦ ନୀରବ ହେଲେ । ସମସ୍ତଙ୍କ ଆଡ଼େ ଆଖି ବୁଲାଇ ଦେଖିଲେ, ସମସ୍ତେ ତାଙ୍କୁ ପ୍ରଶ୍ନବାଚୀ ନୟନରେ ଅନାଇ ରହିଛନ୍ତି । ସେ ପୁଣି କହିଲେ : ମିଷ୍ଟର ଶର୍ମାଙ୍କର ହତ୍ୟାକାରୀ ମୋର ମନେହେଉଛି ତାଙ୍କର ଅତି ପରିଚିତ ଲୋକ ଏବଂ ହୁଏତ ଦଳର ଲୋକ । ତା'ର ଉପସ୍ଥିତିରେ ମି: ଶର୍ମା ଆଶ୍ଚର୍ଯ୍ୟ ହୋଇ ନାହାନ୍ତି କିମ୍ବା ସତର୍କତା ଅବଲମ୍ବନ କରିବା ଆବଶ୍ୟକ ହୋଇ ନାହିଁ । କିନ୍ତୁ ମି: ଶର୍ମାଙ୍କର ସେହି ପରିଚିତ ବା ବନ୍ଧୁଲୋକ ଜଣକ ବିଶ୍ୱାସଘାତକତା କରିଛି । ସେ ମିଷ୍ଟର ଶର୍ମାଙ୍କୁ ଅତର୍କିତ ଆକ୍ରମଣ କରି କାବୁ କରି ନେଇଛି ଏବଂ ପର ମୁହୂର୍ତ୍ତରେ ହତ୍ୟା କରି, ଚାକ୍ଷୁସ ପ୍ରମାଣ ବିଲୋପ କରି, ସ୍ୱର୍ଣ୍ଣମୟୂରୀ ଧରି ସେ ଚମ୍ପଟ ଦେଇଛି ।

ସାମାନ୍ୟ ନୀରବତା ପରେ ମୃଗାଙ୍କ ଚୌଧୁରୀ କହିଲେ : ହୁଏତ ଆପଣଙ୍କ କଥା ସତ ହୋଇପାରେ ମିଷ୍ଟର ସାଜାଦ୍ । କିନ୍ତୁ ତଦ୍ୱାରା ଆମ ଅନୁସନ୍ଧାନର ପଥ କିଛି ସୁଗମ ହେବ କି ?

ଇନିସ୍‌ପେକ୍ଟର ସାଜାଦ୍ କହିଲେ : ମୋର ମନେହେଉଛି ମିଷ୍ଟର ଶର୍ମାଙ୍କର ପରିଚିତି ଆମେ ଜାଣିପାରିଲେ ତାଙ୍କର ଦଳ ସମ୍ବନ୍ଧରେ ଅଭିହିତ ହୋଇପାରିବା ଏବଂ ଦଳର ଜଣେ ଦୁଇଜଣଙ୍କୁ ଧରିପାରିଲେ ସ୍ୱର୍ଣ୍ଣମୟୂରୀର ଅପହରଣକାରୀକୁ ଖୋଜି ବାହାର କରିବାକୁ ବେଶି ସମୟ ଲାଗିବ ନାହିଁ ।

ମୃଗାଙ୍କ ଚୌଧୁରୀ କହିଲେ : ବେଶ୍ ଭଲ କଥା । ଆପଣମାନେ ନିଜେ ନିଜେ ନିଜ ନିଜର ଚିନ୍ତାଧାରା ଉପରେ ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ କରନ୍ତୁ । କାହାରି ସ୍ୱାଧୀନ ଚିନ୍ତାଧାରା ଉପରେ ହସ୍ତକ୍ଷେପ କରିବାକୁ ମୁଁ ଚାହୁଁ ନାହିଁ । ଆଗରୁ ତ ମୁଁ ସେଇ କଥା କହିଚି । ଅପରାଧ ଓ ଅପରାଧୀର ଗତିବିଧି ସମ୍ବନ୍ଧରେ ଆପଣମାନେ ସମସ୍ତେ ବିଜ୍ଞ । ତେଣୁ...

ହଠାତ୍ ଦରଜା ଠେଲି ଗୋଟିଏ କନେଷ୍ଟବଳ ଭିତରକୁ ପଶି ଆସିଲା ।

ସାଲ୍ୟୁଟ୍ ବଜାଇ ମୃଗାଙ୍କ ଚୌଧୁରୀଙ୍କ ହାତକୁ ଗୋଟିଏ ଖାମ୍ ବଢ଼ାଇ ଦେଇ କହିଲା : ବଡ଼ାବାବୁ ଭେଜା ।

ମୃଗାଙ୍କ ଚୌଧୁରୀ ଖାମଟି ଖୋଲି ଦେଖିଲେ - ଟେଲେକ୍ସ ମେସେଜ୍ । ଦିଲ୍ଲୀରୁ ଆସିଛି । କିଛି ସମୟ ନୀରବରେ ପଢ଼ିସାରି କହିଲେ : ମିଷ୍ଟର ଶର୍ମାଙ୍କ ସମ୍ବନ୍ଧରେ ପରିଚିତି ଦିଲ୍ଲୀ ପୋଲିସ ହେଡ଼କ୍ୱାଟର୍ସରୁ ଆସିଛି । ସେମାନେ ମୋ ପ୍ରେରିତ ରେଡ଼ିଓ ଫଟୋରୁ ମି: ଶର୍ମାଙ୍କୁ ନିର୍ଭୁଲ ଭାବରେ ସନାକ୍ତ କରିପାରି ନାହାନ୍ତି । ତେବେ ସେମାନେ କହିଛନ୍ତି ଯେ, ମିଷ୍ଟର ଶର୍ମାର ଫଟୋ ହେଡ଼କ୍ୱାଟର୍ସର ଅପରାଧୀ ଆଲବମ୍ ଭିତରୁ ମିଳିଛି । ସେ ଜଣେ ଇଣ୍ଟରନାସନାଲ ସ୍ମଗଲର । ତେବେ ସେ କେବେ ପୋଲିସ୍ କଷ୍ଟୋଡ଼ି ଭିତରକୁ ଆସି ନାହିଁ । କଲିକତାର 'ଇସ୍‌ମାଇଲ ଗ୍ୟାଙ୍ଗ୍' ସହିତ ଶର୍ମାର ଯୋଗସୂତ୍ର ଥିବା କଥା ଏଠାରେ ଉଲ୍ଲେଖ ଅଛି । ସବିଶେଷ ବିବରଣୀ ସେମାନେ ଯଥାଶୀଘ୍ର ପଠାଉଛନ୍ତି ।

ଇନିସ୍‌ପେକ୍ଟର ସାଜାଦ୍ ଉଠି ଠିଆ ହୋଇ କହିଲେ : ସେତିକି ପରିଚିତି ଯଥେଷ୍ଟ ହେବ ସାର୍ । ଶର୍ମା ଯଦି 'ଇସ୍‌ମାଇଲ ଗ୍ୟାଙ୍ଗ୍' ସହିତ ଜଡ଼ିତ ଥାଏ, ତେବେ ମୁଁ ୨୪ ଘଣ୍ଟା ଭିତରେ ଆପଣଙ୍କୁ ଶୁଭ ସମ୍ବାଦ ଦେବି । ଆପଣ ମୋତେ ଶର୍ମାର ଖଣ୍ଡେ ଫଟୋ ଦିଅନ୍ତୁ ।

ମୃଗାଙ୍କ ଚୌଧୁରୀ ଶର୍ମାର ଖଣ୍ଡେ ଫଟୋ ସାଜାଦ୍ ହାତକୁ ଦେଲେ ଏବଂ କରମର୍ଦ୍ଦନ କରି କହିଲେ : ମୁଁ ଆପଣଙ୍କର ସଫଳତା କାମନା କରୁଛି ।

\+ + +

ରାତିରେ ନିଶ୍ଚିନ୍ତ ନିଦରେ ଶୋଇ ପଡ଼ିଥିଲା ରାଜେଶ ।

ସକାଳୁ ନିଦ ଭାଂଗୁ ଭାଂଗୁ ପ୍ରାୟ ଆଠଟା ବାଜି ଯାଇଥିଲା । ରାଜେଶ ଆଖି ଖୋଲି ଚାହିଁଲା ଚାରି ଆଡ଼କୁ । ନୂତନ ଦିନର ସୂର୍ଯ୍ୟୋଦୟ ହୋଇଛି । ସୁନେଲୀ କିରଣ ଆସି ପ୍ଲାବିତ କରିଛି ତା' ଘରଟାକୁ ।

ରାଜେଶ ଖୁବ୍ ସୁସ୍ଥ ଅନୁଭବ କରୁଥିଲା । ଗତ ଦିନର ସାଫଲ୍ୟ କଥା ମନେପଡ଼ି ସେ ଆହୁରି ଉତ୍‌ଫୁଲ୍ଲ ହୋଇ ପଡ଼ିଲା ।

ଉଠି ଦେଖିଲା, ଦୁଆର ମୁହଁରେ ଗୋଟିଏ ଚାକର ପିଲା ଅପେକ୍ଷା କରିଛି । ଟେବୁଲ ଉପରେ ଥୁଆ ହୋଇଛି ଟି'ପଟ୍, ଖବର କାଗଜ ।

ରାଜେଶର ବେଡ୍ ଟି ଖାଇବାର ଅଭ୍ୟାସ ନଥିଲା । କିନ୍ତୁ ସେଇ ମୁହୂର୍ତ୍ତରେ ସେ ଚାକର ପିଲାଟିକୁ ଚା' ତିଆରି କରିବାକୁ କହିଲା । ନିଜେ ଖବର କାଗଜଟି ଟେବୁଲ ଉପରୁ ଉଠାଇ ନେଇ ଆଖି ଆଗରେ ଧରିଲା ।

ପ୍ରଥମ ପୃଷ୍ଠାର ପ୍ରଥମ ହେଡ଼ିଂ ଦେଖି ସେ ଚମକି ପଡ଼ିଲା ।

**ସ୍ୱର୍ଣ୍ଣମୟୂରୀ ଉପାଖ୍ୟାନ ଓ ମିଃ ଶର୍ମାଙ୍କ ହତ୍ୟା ରହସ୍ୟ :**

ଖବର କାଗଜର ନିଜସ୍ୱ ପ୍ରତିନିଧି ଲେଖିଛନ୍ତି : ଗତକାଲି ରାତି ନଅଟାରୁ ଦଶଟା ମଧ୍ୟରେ, ଉତ୍ସବ ମୁଖରିତ ହୋଟେଲ ଇଣ୍ଟରନାସନାଲର ୭ ନମ୍ବର ରୁମ୍‌ରେ ଏକ ନୃଶଂସ ହତ୍ୟାକାଣ୍ଡ ଘଟି ଯାଇଛି । ମିଷ୍ଟର ଶର୍ମା ନାମରେ ଜଣେ ଯୁବକ ଅଜ୍ଞାତ ଆତତାୟୀ ହସ୍ତରେ ନିହତ ହୋଇଛନ୍ତି । ଏହି ମିଃ ଶର୍ମା ନାମଧାରୀ ଲୋକଟିର ପକେଟରୁ ଗୋଟିଏ ମନିବ୍ୟାଗ୍ ବାହାରିଛି । ସେହି ମନିବ୍ୟାଗ୍ ଭିତରୁ 'ମିଃ ଶର୍ମା' ନାମାଙ୍କିତ ଗୋଟିଏ ଭିଜିଟିଂ କାର୍ଡ଼ ବାହାରିଛି ଏବଂ ମନିବ୍ୟାଗ୍ ଭିତରେ ଶହେ ଟଙ୍କାର ୧୦ ଖଣ୍ଡି ନୋଟ୍ ଓ କିଛି ଖୁଚୁରା ପଇସା ମିଳିଛି । ଏହାଛଡ଼ା ମିଷ୍ଟର ଶର୍ମାଙ୍କର ଆଉ କୌଣସି ପରିଚିତି ମିଳି ନାହିଁ । ରାତି ବାରଟା ପର୍ଯ୍ୟନ୍ତ ପୋଲିସ ମିଷ୍ଟର ଶର୍ମାଙ୍କୁ ସନାକ୍ତ କରିପାରି ନାହାନ୍ତି ।

ତେବେ ମିଷ୍ଟର ଶର୍ମାଙ୍କୁ କେନ୍ଦ୍ର କରି ଆଉ ଏକ ଚାଞ୍ଚଲ୍ୟକର ସମ୍ବାଦ ବିଶ୍ୱସ୍ତ ସୂତ୍ରରୁ ଆମେ ଶୁଣିବାକୁ ପାଉଛୁ ।

ଘଟଣାଟା ହେଉଚି ଗତ ୨୫ ତାରିଖ ରାତିରେ, ଦିଲ୍ଲୀର ନାସନାଲ ମିଉଜିଅମ୍‌ରୁ ମୂଲ୍ୟବାନ 'ସ୍ୱର୍ଣ୍ଣମୟୂରୀ'ଟି ଚୋରି ହୋଇଯାଇଛି । ଏହି ସ୍ୱର୍ଣ୍ଣମୟୂରୀଟି ଜଣେ ରାଜାଙ୍କର ସିଂହାସନର ଶୋଭାବର୍ଦ୍ଧନ କରୁଥିଲା । ଯେତେବେଳେ ସରକାର ରାଜାମାନଙ୍କୁ ଗାଦିଚ୍ୟୁତ କଲେ, ସେହି ସମୟରେ ଏହି 'ସ୍ୱର୍ଣ୍ଣମୟୂରୀ'ଟିକୁ ଆଣି ନାସନାଲ ମିଉଜିଅମରେ ରଖିଥିଲେ । ସେଥିପାଇଁ ମିଉଜିଅମ୍‌ରେ ସୁଦୃଢ଼ ବ୍ୟବସ୍ଥା ହୋଇଥିଲା ଏବଂ ପ୍ରହରୀ ମଧ୍ୟ ମୁତୟନ

କରାହୋଇଥିଲା । ଏହି ସ୍ୱର୍ଣ୍ଣମୟୂରୀଟିର ମୂଲ୍ୟ ପ୍ରାୟ ପାଞ୍ଚ ଲକ୍ଷ ଟଙ୍କା ହେବବୋଲି ଅନୁମାନ କରାଯାଉଛି । ଯାହାହେଉ ସମସ୍ତ ସତର୍କତା ସତ୍ତ୍ୱେ ଗତ ୨୫ ତାରିଖ ରାତିରେ ସେଇ ସ୍ୱର୍ଣ୍ଣମୟୂରୀଟି ନାସନାଲ ମିଉଜିଅମ୍‌ରୁ ହସ୍ତାନ୍ତରିତ ହୋଇଯାଇଥିଲା ।

ସେଥିପାଇଁ ଦିଲ୍ଲୀ ପୋଲିସ୍ ସଂସ୍ଥା ତତ୍ପର ହୋଇ ଉଠିଥିଲେ । ସମସ୍ତ ପ୍ରକାର ସମ୍ଭାବ୍ୟ ଅନୁସନ୍ଧାନ ସେମାନେ ଆରମ୍ଭ କରିଦେଇଥିଲେ । 'ସ୍ୱର୍ଣ୍ଣମୟୂରୀ' ଯେପରି ଦିଲ୍ଲୀରୁ ବାହାରକୁ ଚାଲି ନ ଯାଏ, ସେଥିପାଇଁ ସେମାନେ ସମସ୍ତ ପ୍ରକାର ଉଦ୍ୟମ କରୁଥିଲେ ।

କିନ୍ତୁ ଦିଲ୍ଲୀର ସି.ଆଇ.ଡି. ସଂସ୍ଥା ଗତକାଲି ରାତି ଆଠଟାବେଳେ ଜାଣିପାରିଲେ ଯେ ୬୧୧୫ ଫ୍ଲାଇଟ୍‌ରେ 'ସ୍ୱର୍ଣ୍ଣମୟୂରୀ' କଲିକତା ଉଡ଼ି ଚାଲିଯାଇଛି । ପ୍ଲେନ୍ ବର୍ତ୍ତମାନ କଲିକତା ଆକାଶରେ । ସଂଗେ ସଂଗେ ଓଆର୍‌ଲେସ୍ ହେଲା କଲିକତା ପୋଲିସ୍ ହେଡ୍‌କ୍ୱାର୍ଟର୍ସକୁ । ୬୧୧୫ ଫ୍ଲାଇଟ୍‌ରେ ଯେତେ ଯାତ୍ରୀ ଯାଉଛନ୍ତି, ସମସ୍ତଙ୍କୁ ଗୋପନରେ ଅନୁସନ୍ଧାନ କରାହେଉ ।

କଲିକତାର ପୋଲିସ ବାହିନୀ ତତ୍ପର ହୋଇ ଉଠିଲେ । ସେମାନେ ଦମ୍‌ଦମ୍‌ରେ ପହଞ୍ଚିଲା ବେଳକୁ ପ୍ଲେନ୍ ଲ୍ୟାଣ୍ଡ କରିସାରିଥିଲା ଏବଂ କିଛି ଯାତ୍ରୀ ବାହାରି ଚାଲିଯାଇଥିଲେ । ତଥାପି ଯେଉଁମାନଙ୍କୁ ସନ୍ଦେହ କରି ଗୋଏନ୍ଦା ପୋଲିସମାନେ ତତ୍ପର ହୋଇଉଠିଥିଲେ, ସେମାନଙ୍କ ଭିତରୁ ମୃତ ମିଷ୍ଟର ଶର୍ମା ଅନ୍ୟତମ ।

ଗୋଏନ୍ଦା ବିଭାଗର ଜଣେ ଉଚ୍ଚପଦସ୍ଥ ଅଫିସର କୁହନ୍ତି ଯେ, ମିଃ ଶର୍ମାଙ୍କୁ ଆମ ଲୋକେ ଫଲୋ କରିଥିଲେ ଭି.ଆଇ.ପି. ରୋଡ଼ଠାରୁ । ମିଷ୍ଟର ଶର୍ମା ହାତରେ ଗୋଟିଏ କଳା ଆଟାଚି କେସ୍ ଧରି ଚାରିଆଡ଼କୁ ସତର୍କ ଦୃଷ୍ଟି ବୁଲାଇ ଗୋଟିଏ ଟ୍ୟାକ୍‌ସିରେ ଉଠିଲେ । ଆମ ଲୋକ ତାଙ୍କୁ ଫଲୋ କରି ହୋଟେଲ ଇଣ୍ଟରନାସନାଲ ଯାଏ ଆସିଲେ । ମିଃ ଶର୍ମା ୭ ନମ୍ବର ରୁମ୍‌ରେ ରହିବା ସମ୍ବାଦ ଆମେ ଜାଣିପାରିଲୁ । ସେଦିନ ହୋଟେଲ ଇଣ୍ଟରନାସନାଲର ବାର୍ଷିକ ଉତ୍ସବ ଥିଲା ଏବଂ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ନିମନ୍ତ୍ରିତ ହୋଇଆସିଥିଲେ । ତେଣୁ ଆମେ ବ୍ୟାପକ ଭାବରେ ନହେଲେ ମଧ ୭ ନମ୍ବର ରୁମ୍‌ରୁ ମିଃ ଶର୍ମାଙ୍କୁ ସନାକ୍ତ କରିବା ପାଇଁ ବ୍ୟବସ୍ଥା ଅବଲମ୍ବନ କଲୁ । ଯେଉଁ ପୋଲିସ୍ ଭ୍ୟାନ୍ ଦୁଇଟି ପଠାହେଲା, ରାସ୍ତା ଜାମ୍ ଥିବାରୁ ସେମାନେ ଘଟଣାସ୍ଥଳରେ ପହଞ୍ଚିବାକୁ ପ୍ରାୟ ଅଧଘଣ୍ଟା ଡେରି ହୋଇଯାଇଥିଲା । କିନ୍ତୁ ସେଇ ସୁଯୋଗରେ ଏକ ଅଜ୍ଞାତ ଆତତାୟୀ ମିଃ ଶର୍ମାଙ୍କୁ ହତ୍ୟା କରି, ତାଙ୍କଠାରୁ ସେଇ କଳା ଆଟାଚି କେସ୍‌ଟି ଧରି ଉତ୍ସବର ଭିଡ଼ ଭିତରେ ଆତ୍ମଗୋପନ କରିସାରିଥିଲା ।

ତେଣୁ ଆମର ମନେହେଉଛି, ମିଃ ଶର୍ମା ହେଉଛନ୍ତି ସେହି ଲୋକ ଯିଏ କି 'ସ୍ୱର୍ଣ୍ଣ ମୟୂରୀ' ଘେନି ଦିଲ୍ଲୀରୁ କଲିକତା ପଳେଇ ଆସିଥିଲେ ଏବଂ ମିଷ୍ଟର ଶର୍ମାଙ୍କର ଶତ୍ରୁପକ୍ଷୀୟ ଲୋକ ସେ ସମ୍ବାଦ ଜାଣିପାରି ପ୍ରସ୍ତୁତ ହୋଇ ଅପେକ୍ଷା କରି ରହିଥିଲେ । ହୁଏତ ସେମାନେ ପୂର୍ବରୁ ଯାଇ ହୋଟେଲ ଇଣ୍ଟରନାସନାଲର ୭ ନମ୍ବର ରୁମ୍‌ରେ ଆତ୍ମଗୋପନ କରି ରହିଥିଲେ । ମିଃ ଶର୍ମା ସେହି ରୁମ୍‌ରେ ପ୍ରବେଶ କରିବା ମାତ୍ରକେ, ତାଙ୍କୁ ହତ୍ୟା କରି ତାଙ୍କଠାରୁ 'ସ୍ୱର୍ଣ୍ଣମୟୂରୀ'ଟି ନେଇ ଅନ୍ତର୍ଦ୍ଧାନ ହୋଇଛନ୍ତି । ଏ ଘଟଣାଟି ଘଟିଛି ଅତି ଅଳ୍ପ ସମୟ ଭିତରେ । ତେଣୁ ଶତ୍ରୁପକ୍ଷୀୟ ଲୋକେ ଯେ ପୂର୍ବରୁ ପ୍ରସ୍ତୁତ ହୋଇଥିଲେ, ଏହା ସହଜରେ ଅନୁମାନ କରାଯାଇପାରୁଛି ।

ବର୍ତ୍ତମାନ କଲିକତାର ପୋଲିସ ବାହିନୀ ସଜାଗ ଓ ତତ୍ପର ହୋଇ ଉଠିଛନ୍ତି । 'ସ୍ୱର୍ଣ୍ଣମୟୂରୀ' ଉଦ୍ଧାର ପାଇଁ ସମସ୍ତ ପ୍ରକାର ଉଦ୍ୟମ କରାହୋଇଛି ।

ଆମେ ଆଶା କରୁଛୁ, କଲିକତା ପୋଲିସ ବାହିନୀ ତାଙ୍କର ପୂର୍ବ ସୁଖ୍ୟାତି ଅକ୍ଷୁଣ୍ଣ ରଖି ଏକ ମୂଲ୍ୟବାନ ଜାତୀୟ ସଂପଦ ଉଦ୍ଧାର କାର୍ଯ୍ୟରେ ସଫଳତା ଅର୍ଜନ କରିବେ ।

ରାଜେଶ ସମ୍ବାଦଟି ଏକା ନିଃଶ୍ୱାସରେ ପଢ଼ିସାରି ହତାଶ ହୋଇ ପଡ଼ିଲା । ସ୍ୱର୍ଣ୍ଣମୟୂରୀ ଉପାଖ୍ୟାନ ଓ ମିଷ୍ଟର ଶର୍ମାଙ୍କ ହତ୍ୟା ରହସ୍ୟ ସମ୍ବନ୍ଧରେ ଯାହା ସମ୍ବାଦ ପ୍ରକାଶିତ ହୋଇଛି, ତାହାର ସତ୍ୟତା ସମ୍ବନ୍ଧରେ ରାଜେଶ ସନ୍ଦିହାନ ହୋଇ ଉଠିଥିଲା । କାରଣ 'ସ୍ୱର୍ଣ୍ଣମୟୂରୀ' ନିଜେ ସେ ବହନ କରି ଯାଇଥିଲା ହୋଟେଲ ଇଣ୍ଟରନାସନାଲକୁ । ଅଥଚ...

ହଠାତ୍ ରାଜେଶର ଟେଲିଫୋନ୍‌ଟା ବାଜି ଉଠିଲା ।

: ହ୍ୟାଲୋ, ରାଜେଶ ସ୍ପିକିଂ ।

: ରାଜେଶ, ମୁଁ ଧୀରାଜ ମେହେରା କହୁଛି । ତମେ ବର୍ତ୍ତମାନ ମୋ ଅଫିସ୍‌କୁ ଚାଲିଆସ । ଏଇଠି ବ୍ରେକ୍‌ଫାଷ୍ଟ କରିବା ।

ରାଜେଶ ରିସିଭରଟା ରଖିଦେଇ ଚା' କପ୍‌କୁ ଚାହିଁଲା ।

ଧୂମାୟିତ ଚା' କପ୍‌ଟାରୁ ଧୂଆଁ ସବୁ ନିଃଶେଷ ହୋଇ ଯାଇଚି ।

ରାଜେଶ ଏକାଥରକେ ଚା' କପ୍‌ଟା ଶେଷ କରିଦେଲା ।

ବାଥ୍‌ରୁମ୍‌କୁ ଯାଇ ଯଥାସମ୍ଭବ ଶୀଘ୍ର ନିତ୍ୟକୃତ୍ୟ ଶେଷ କରି ପ୍ରସ୍ତୁତ ହୋଇ ପଡ଼ିଲା । ମିଷ୍ଟର ମେହେରା ତାକୁ ଏଇ ମୁହୂର୍ତ୍ତରେ ଡାକି ନଥିଲେ ବି, ସେ ନିଜେ ଯାଇଥାଆନ୍ତା ସ୍ୱର୍ଣ୍ଣମୟୂରୀ ଉପାଖ୍ୟାନ ଓ ମିଃ ଶର୍ମାଙ୍କର ମୃତ୍ୟୁ ରହସ୍ୟ ଜାଣିବା ପାଇଁ । ମିଷ୍ଟର ମେହେରା ନିଶ୍ଚୟ ଏହି ରହସ୍ୟର ମୂଳ କଥା ଜାଣିଥିବେ ।

ରାଜେଶ ପ୍ରସ୍ତୁତ ହୋଇ ଯାଇ ମିଷ୍ଟର ମେହେରାଙ୍କ ଚେମ୍ବରରେ ପହଞ୍ଚିଲା ।

ମିଷ୍ଟର ମେହେରା ରାଜେଶଙ୍କୁ ବସିବାକୁ କହିଲେ ଏବଂ ବ୍ରେକ୍‌ଫାଷ୍ଟ ପର୍ବ ଶେଷ କରିବାକୁ ଅନୁରୋଧ କଲେ ।

ସଂପୂର୍ଣ୍ଣ ନୀରବତା ଭିତରେ ଖିଆପିଆ ଶେଷ ହେଲା ।

ରାଜେଶ ମନ ଭିତରେ ଅସଂଖ୍ୟ ପ୍ରଶ୍ନ ଉଙ୍କିମାରି ରହିଥିଲା । ଖବରକାଗଜର ସମ୍ବାଦ ସହିତ ଗତ ରାତିର ଘଟଣାର ସାମାନ୍ୟତମ ଯୋଗସୂତ୍ର ସେ ଖୋଜି ପାଉ ନଥିଲା ।

ମିଷ୍ଟର ମେହେରା କିଛି ସମୟ ନୀରବରେ ବସି ରହିଲେ । ସିଗାରେଟ୍ କେସ୍‌ରୁ ସିଗାରେଟ୍ ବାହାର କରି ଅଗ୍ନି ସଂଯୋଗ କଲେ । ତା'ପରେ ଧୀରେ ଧୀରେ ଆରମ୍ଭ କଲେ
: ଆଜିର ଖବରକାଗଜରୁ ତମେ ସ୍ୱର୍ଣ୍ଣମୟୂରୀ ସମ୍ବାଦ ନିଶ୍ଚୟ ପଢ଼ିଚ ।

: ପଢ଼ିଚି ସାର୍ । ରାଜେଶ କହିଲା ।

: ପଢ଼ି କ'ଣ ବୁଝିଲ ?

: ମୁଁ କିଛି ବୁଝିପାରିଲି ନାହିଁ । ଭାବିଥିଲି ଏ ସମ୍ବନ୍ଧରେ ଆପଣଙ୍କୁ ପଚାରି ଜାଣିବି ।

ମିଷ୍ଟର ମେହେରା କହିଲେ : ଘଟଣାର ସତ୍ୟତା ସମ୍ବନ୍ଧରେ ତମେ ଜାଣିବା ଉଚିତ । କାରଣ ତମକୁ ଏଇ କାର୍ଯ୍ୟରେ ନିଯୁକ୍ତ କରାହୋଇଛି ଓ ତମ କାମ ଆରମ୍ଭ ହୋଇଛି ମାତ୍ର ।

: ତେବେ ସ୍ୱର୍ଣ୍ଣମୟୂରୀ ସମ୍ବନ୍ଧରେ ଖବରକାଗଜରେ ଯେଉଁ ସମ୍ବାଦଟି ପ୍ରକାଶ ପାଇଛି, ତାହା ସତ୍ୟ । ମାନେ ଗତ ୨୫ ତାରିଖ ରାତିରେ ନାସନାଲ ମିଉଜିଅମ୍‌ରୁ ସ୍ୱର୍ଣ୍ଣମୟୂରୀଟି ଅପହୃତ ହୋଇଛି । ଆରଦିନ ସକାଳ ୮ଟା ବେଳେ ସ୍ୱର୍ଣ୍ଣମୟୂରୀଟି ମୋ ଅକ୍ତ୍ୟାରକୁ ଆସିଛି । କାଲି ଯେତେବେଳେ ତମ ସହିତ କଥା ହେଉଥିଲି, ତମେ ଚାଲିଯିବା ପରେ ମୁଁ ଦିଲ୍ଲୀରୁ

ଟ୍ରଙ୍କକଲ୍ ପାଇଲି ଯେ ସ୍ୱର୍ଣ୍ଣମୟୂରୀ ମୋ ହାତ ମୁଠାରେ । ସଂଗେ ସଂଗେ ମୋତେ ଦିଲ୍ଲୀ ଉଡ଼ିଯିବାକୁ ହେଲା । ଆଗରୁ ସବୁ ପ୍ରକାର ବ୍ୟବସ୍ଥା ହୋଇ ରହିଥିଲା ।

: ଏତେ ମୂଲ୍ୟବାନ ଓ ଐତିହାସିକ ଏକ ଜାତୀୟ ସଂପଦର ଅପହରଣ ସମ୍ବାଦରେ ପୋଲିସ୍ ବିଭାଗ ଯେ ନିଶ୍ଚୟ ତତ୍ପର ହେବେ ଏଥିରେ ସନ୍ଦେହ କରିବାର କିଛି ନଥିଲା । ମୁଁ ମଧ ପୂର୍ବରୁ ସେହିପରି ପ୍ରସ୍ତୁତ ହୋଇ ରହିଥିଲି । ବହୁ ପୂର୍ବରୁ ସ୍ୱର୍ଣ୍ଣମୟୂରୀର ଏକ ନକଲ ସ୍ୱର୍ଣ୍ଣମୟୂରୀ ପ୍ରସ୍ତୁତ କରି ରଖା ହୋଇଥିଲା । ମିଷ୍ଟର ଶର୍ମା ସେହି ନକଲ ସ୍ୱର୍ଣ୍ଣମୟୂରୀଟି ଧରି କଲିକତା ଅଭିମୁଖେ ଯାତ୍ରା କରିଥିଲେ । କିନ୍ତୁ ଅସଲ ସ୍ୱର୍ଣ୍ଣମୟୂରୀ ବଦଳରେ ସେ ଯେ ନକଲ 'ସ୍ୱର୍ଣ୍ଣମୟୂରୀ' ଧରି ଫ୍ଲାଇ କରୁଛନ୍ତି, ସେ କଥା ମୋ ଛଡ଼ା ଅନ୍ୟ କେହି ଜାଣି ନଥିଲେ । ମୁଁ ଜାଣିଥିଲି ଏହି ସ୍ୱର୍ଣ୍ଣମୟୂରୀ ପାଇଁ ଆଉ ଗୋଟିଏ ଦଳର ସଜାଗ ଦୃଷ୍ଟି ରହିଛି ଏବଂ ଏହା ମଧ ଜାଣିଥିଲି ପୋଲିସ୍ ବିଭାଗ ସ୍ୱର୍ଣ୍ଣମୟୂରୀ ଉଦ୍ଧାର ପାଇଁ ପ୍ରାଣପଣେ ଉଦ୍ୟମ କରିବେ । ତେଣୁ ମୁଁ ଇଚ୍ଛା କରି ଏହିପରି ବ୍ୟବସ୍ଥା କରିଥିଲି । କୌଣସି ସୂତ୍ରରୁ ଖବରଟା ଲିକ୍ କଲେ ବି ଦୁଇ ତରଫର ତୀକ୍ଷ୍ଣ ଓ ସତର୍କ ଦୃଷ୍ଟି ଯାଇ ପଡ଼ିବ ମିଷ୍ଟର ଶର୍ମାଙ୍କ ଉପରେ ଏବଂ ତାହାହିଁ ହେଲା । ମୁଁ ଦିଲ୍ଲୀରେ ଥାଇ ତାହା ବୁଝିପାରିଥିଲି । ତେଣୁ ପରବର୍ତ୍ତୀ ଫ୍ଲାଇଟ୍‌ରେ ଅସଲ ସ୍ୱର୍ଣ୍ଣମୟୂରୀକୁ ଧରି ମୁଁ ନିରାପଦରେ ଆସି କଲିକତାରେ ପହଞ୍ଚିଲି । ତା' ପରର ଘଟଣା ତ ତମେ ସବୁ ଜାଣିଛ ।

ରାଜେଶ ସ୍ତବ୍ଧ ହୋଇ ଧୀରାଜ ମେହେରାଙ୍କ ମୁହଁକୁ ଚାହିଁଥିଲା । ସେ ଅଚଞ୍ଚଳ ଓ ସ୍ଥିର ରହି ସ୍ୱାଭାବିକ କଣ୍ଠରେ ସ୍ୱର୍ଣ୍ଣମୟୂରୀ ଉପାଖ୍ୟାନ ରାଜେଶକୁ ବୁଝାଇ ଦେଇଥିଲେ । ସାମାନ୍ୟତମ ଚିତ୍ତ ବିକାର ମିଷ୍ଟର ମେହେରାଙ୍କର ଘଟି ନଥିଲା ।

ପୁଣି କିଛି ସମୟ ନୀରବତା ପରେ ଧୀରାଜ ମେହେରା କହିଲେ : ଏ ପର୍ଯ୍ୟନ୍ତ ତ ସହଜ ଓ ନିରାପଦ ଭାବରେ ସ୍ୱର୍ଣ୍ଣମୟୂରୀ କଲିକତା ଯାଏ ଉଡ଼ି ଆସିଲା । ଏହାପରେ କିନ୍ତୁ ପରିସ୍ଥିତି ଜଟିଳ ହେବାକୁ ଯାଉଛି । ତମେ କିଛି ଲକ୍ଷ୍ୟ କରିଛ ?

: ନା ସାର୍ ! ରାଜେଶ କହିଲା ।

: ମୁଁ କିନ୍ତୁ ଶର୍ମାର ହତ୍ୟାକାଣ୍ଡ କଥା ଚିନ୍ତା କରିପାରି ନଥିଲି । ମୁଁ ଭାବିଥିଲି ହୁଏତ ଶତ୍ରୁପକ୍ଷୀୟ ଲୋକ ତାକୁ କାବୁ କରି ନକଲ ସ୍ୱର୍ଣ୍ଣମୟୂରୀଟି ତା'ଠାରୁ ଅପହରଣ କରି ନେବେ, ନତୁବା ପୋଲିସ ପକ୍ଷୀୟ ଲୋକ ଶର୍ମାକୁ ଆରେଷ୍ଟ କରିବେ । କିନ୍ତୁ ଘଟଣାଟା ମୋ ପରିକଳ୍ପନାର ବାହାରକୁ ଚାଲିଗଲା । ମୋର ଇଚ୍ଛା ଥିଲା ଶର୍ମା ପୋଲିସ୍ ହାତରେ ଧରା ପଡ଼ିଥିଲେ, ପୋଲିସ୍‌ବାଲା ଏ 'ସ୍ୱର୍ଣ୍ଣମୟୂରୀ'ଟି ପାଇଁ ଆଉ ବିବ୍ରତ ହୋଇପଡ଼ି ନଥାନ୍ତେ । ସେଇଟି ଯେ ନକଲ ସ୍ୱର୍ଣ୍ଣମୟୂରୀ ସେ କଥା ଜାଣିବାକୁ ସେମାନଙ୍କୁ ବେଶ୍ କିଛି ସମୟ ଲାଗିଥାଆନ୍ତା ଏବଂ ସେଇ ସମୟ ଭିତରେ ମୁଁ ଅସଲ ସ୍ୱର୍ଣ୍ଣମୟୂରୀକୁ ଯଥା ସ୍ଥାନକୁ ପଠାଇ ଦେଇପାରିଥାନ୍ତି । କିନ୍ତୁ ବର୍ତ୍ତମାନ ସମସ୍ୟାଟା ଅନ୍ୟ ଆକାର ଧାରଣ କଲା । ଦୁଇଟି ସତର୍କ ଦୃଷ୍ଟି ଏହି ସ୍ୱର୍ଣ୍ଣମୟୂରୀ ପଛରେ ରହିଲା । ଏକ୍‌ରେ ପୋଲିସ୍‌ର, ଦୁଇରେ ଶତ୍ରୁ ପକ୍ଷର । ଶତ୍ରୁ ପକ୍ଷର ଲୋକେ ଏହା ଭିତରେ ନକଲ ସ୍ୱର୍ଣ୍ଣମୟୂରୀକୁ ଫିଙ୍ଗି ଦେଇ ଅସଲିର ସନ୍ଧାନରେ ବାହାରି ସାରିଥିବେ । ତେଣୁ ରାଜେଶ, ବୁଝିପାରୁଥିବ ତମ ମୁଣ୍ଡ ଉପରେ କେତେବଡ଼ ଦାୟିତ୍ୱ ଝୁଲିକରି ରହିଛି ।

ରାଜେଶ କହିଲା : ଆପଣ ଏସବୁ କଥା ଜାଣି ମଧ ସ୍ୱର୍ଣ୍ଣମୟୂରୀଟିକୁ ହୋଟେଲ ଇଣ୍ଟରନାସନାଲକୁ ପଠାଇ ଦେଲେ କାହିଁକି ?

ଧୀରାଜ ମେହେରା ହସିଲେ । କହିଲେ : ବର୍ତ୍ତମାନ ପରିସ୍ଥିତିରେ ହୋଟେଲ ଇଣ୍ଟରନାସନାଲ ହିଁ ସ୍ୱର୍ଣ୍ଣମୟୂରୀ ପାଇଁ ନିରାପଦ ସ୍ଥାନ । ଅନେକ ଦିନଯାଏ ହୋଟେଲ ଇଣ୍ଟରନାସନାଲ ପୋଲିସ୍‌ର କଡ଼ା ନଜରରେ ରହିବ । ତେଣୁ ଆମର ଶତ୍ରୁପକ୍ଷୀୟ ଲୋକେ ଅନ୍ତତଃ ସେଠାକୁ ପ୍ରବେଶ କରିବାର ସାହସ କରିପାରିବେ ନାହିଁ । କିମ୍ବା ସ୍ୱର୍ଣ୍ଣମୟୂରୀ ଯେ ପୁଲିସ ଘେର ଭେଦ କରି ଯାଇ ହୋଟେଲ ଇଣ୍ଟରନାସନାଲରେ ଅଛି ସେ କଥା ଚିନ୍ତା କରିପାରିବେ ନାହିଁ । ତମେ ଗୋଟାଏ କଥା ମନେରଖ, ପୋଲିସ୍ ଅପେକ୍ଷା ଶତ୍ରୁ ପକ୍ଷୀୟ ଲୋକଙ୍କୁ ତମେ ବେଶି ଗୁରୁତ୍ୱ ଦେବ । କାରଣ ସେମାନେ ପୋଲିସ୍‌ଠାରୁ ଅଧିକ ଧୂର୍ତ୍ତ ଏବଂ ଆମ ସମ୍ବନ୍ଧରେ ସେମାନେ ବେଶି ଖବରାଖବର ରଖିଛନ୍ତି ।

ରାଜେଶ କହିଲା : ଆମର ଶତ୍ରୁପକ୍ଷୀୟ ଲୋକମାନଙ୍କୁ ଆପଣ ଚିହ୍ନିଛନ୍ତି ?

ଧୀରାଜ ମେହେରା କହିଲେ : ଅଧିକାଂଶଙ୍କୁ ଚିହ୍ନିଚି ଏବଂ ସେମାନଙ୍କର ମୁଖ୍ୟ କର୍ତ୍ତାମାନଙ୍କ ସହିତ ମୋର ପରିଚୟ ଅଛି । ସେଇମାନଙ୍କ ଭିତରୁ କେତେକଙ୍କ ସହିତ ତମର ପରିଚୟ ରହିବା ଉଚିତ । ସେଇଥିପାଇଁ ମୁଁ ତୁମକୁ ଡାକିଚି । ସବୁଠାରୁ ଅସୁବିଧା କ'ଣ ହୋଇଛି ଜାଣ ରାଜେଶ ! ଆଜି ଚାରିଟା ଫ୍ଲାଇଟ୍‌ରେ ମୋତେ କଲିକତା ଛାଡ଼ି ଚାଲିଯିବାକୁ ହେବ ଚାରିଦିନ ପାଇଁ । ଆମେ ଖଣି ମାଲିକମାନେ ବିଦେଶକୁ ଯାଉଛୁ, ସେଠାକାର ଖଣି ଉନ୍ନୟନ ପଦ୍ଧତି ଅନୁଶୀଳନ କରିବା ପାଇଁ । ଏ ପ୍ରୋଗ୍ରାମରେ ମୋତେ ଯୋଗଦେବାକୁ ହିଁ ହେବ । ତେଣୁ ସ୍ୱର୍ଣ୍ଣମୟୂରୀର ଦାୟିତ୍ୱ ସଂପୂର୍ଣ୍ଣ ତୁମ ଉପରେ ।

: ହେଇ ଦେଖ, ଧୀରାଜ ମେହେରା ଗୋଟିଏ ଫଟୋ ଆଲବମ୍ ବାହାର କରି ରାଜେଶ ଆଗରେ ଖୋଲି ଧରିଲେ । ପ୍ରଥମ ଫଟୋଟି ପଣ୍ଡିତ ନେହେରୁଙ୍କ ସହିତ ଧୀରାଜ ମେହେରା କରମର୍ଦ୍ଦନ କରୁଛନ୍ତି ।

ରାଜେଶ ଆଶ୍ଚର୍ଯ୍ୟ ହୋଇ ଧୀରାଜ ମେହେରାଙ୍କ ମୁହଁକୁ ଅନାଇଲା ।

ଧୀରାଜ ମେହେରା ହସି ହସି କହିଲେ : ପଣ୍ଡିତ ନେହେରୁ ଆମର ଶତ୍ରୁପକ୍ଷୀୟ ଲୋକ ନୁହନ୍ତି । ଏଇ ଆଲବମ୍‌ଟି ଖେଳେଇ ଦେଖିଲେ, ତମେ ବୁଝିପାରିବ ଦେଶରେ ମୋର ସମ୍ମାନ ଓ ପ୍ରତିପତ୍ତିର କଥା । ସ୍ୱାଧୀନତା ଆନ୍ଦୋଳନ ଠାରୁ ଦେଶ ସ୍ୱାଧୀନ ହେବା ଯାଏ ଏବଂ ସ୍ୱାଧୀନୋତ୍ତର ଦିନମାନଙ୍କରେ ମୋର ଦେଶପ୍ରୀତିର ପ୍ରତୀକ ଏଇ ଆଲବମ୍‌ଟି ବହନ କରି ରହିଛି । ତେଣୁ ଏ ସବୁ ଦୃଷ୍ଟିରୁ ପୋଲିସ୍‌ର ଆଖି ଅନ୍ତତଃ ଏଇ ଘର ଉପରକୁ ସହଜରେ ପଡ଼ିବ ନାହିଁ । ସେହିପରି ପୋଲିସ୍‌ର ସନ୍ଦେହ ହେବା ଭଳି କୌଣସି ଜିନିଷପତ୍ର ଆମ ଏ ଘରେ ନାହିଁ । ଆଉ ତୁମେ ବି ରଖିବ ନାହିଁ ।

ମୋର ଏହି ଗୋପନ କର୍ମର ଜଣେ ବିଶ୍ୱାସୀ ଅଂଶୀଦାର ଅଛନ୍ତି । ତାଙ୍କ ସହିତ ମୁଁ ତମର ପରିଚୟ କରାଇ ଦେଇଥାଆନ୍ତି । କିନ୍ତୁ ସେ ବର୍ତ୍ତମାନ ଭୀଷଣ ଅସୁସ୍ଥ, ଶଯ୍ୟାଶାୟୀ କହିଲେ ଚଳେ । ତେଣୁ ତମେ ବର୍ତ୍ତମାନ ଆମର ଏହି ଗୋପନ ସଂସ୍ଥାର ଏକମାତ୍ର ଦାୟିତ୍ୱ ସଂପନ୍ନ ପରିଚାଳକ । ମନେ ରହିଲା ?

ଧୀରାଜ ମେହେରା ଗୋପନ ଡ୍ରୟାର ଭିତରୁ ଆଉ ଗୋଟିଏ ଫଟୋ ଆଲବମ୍ ବାହାର କଲେ । ସେଇଟି ରାଜେଶ ହାତକୁ ବଢ଼ାଇ ଦେଇ କହିଲେ : ଦେଖ, ଯାରି ଭିତରେ ଆମ ଶତ୍ରୁପକ୍ଷୀୟ ଲୋକଙ୍କର ଫଟୋ ଅଛି । ଏଇ ଦେଖ ଏଇ ପ୍ରଥମ ଫଟୋଟି ଦେଖୁଛ ? ଏହି ହେଉଛନ୍ତି ତାଙ୍କ ଦଳର ଅଧିନାୟକ । ଏହାଙ୍କର କିନ୍ତୁ ସମାଜର ଉଚ୍ଚସ୍ତରରେ କୌଣସି

ସୁନାମ ନାହିଁ । ଏମାନେ ଅନ୍ଧକାର ଭିତରେ ଆତ୍ମଗୋପନ କରିଥାଆନ୍ତି, କିନ୍ତୁ ଅତି ସାଂଘାତିକ ଲୋକ ।

ଆଉ ଏମାନେ ହେଲେ ତାଙ୍କର ସହକର୍ମୀ । ଧୀରାଜ ମେହେରା ଗୋଟିକ ପରେ ଗୋଟିଏ ପୃଷ୍ଠା ଓଲଟେଇ ଗଲେ ଆଲବମ୍‌ର । ରାଜେଶ ସମସ୍ତଙ୍କ ଉପରେ ଆଖି ବୁଲେଇ ଯାଉଥିଲା । ହଠାତ୍ ସେ ଗୋଟାଏ ଫଟୋ ପାଖରେ ଅଟକି ଯାଇ କହିଲା : ସାର୍...

ଧୀରାଜ ମେହେରା ରାଜେଶ ମୁହଁକୁ ଚାହିଁ କହିଲେ : ଏଇ ଲୋକଟି ସହିତ ତମର ପରିଚୟ ଅଛି ?

: ନା ସାର୍, ତେବେ ମୁଁ କାଲି ଏଇ ଲୋକଟାକୁ ହୋଟେଲ ଇଣ୍ଟରନାସନାଲରେ ଦେଖିଥିଲି ଏବଂ ଏଇ ଲୋକଟା ମିଷ୍ଟର ଶର୍ମାଙ୍କ ଆଟାଚି କେସ୍ ପରି ଗୋଟିଏ କଳା ଆଟାଚି କେସ୍ ଧରି ଲିଫ୍‌ଟରୁ ଓହ୍ଲେଇ ଚାଲି ଯାଇଥିଲା । ପରେ ମୁଁ ଲିଫ୍‌ଟରେ ଉଠିଯାଇ ଦେଖିଥିଲି ମିଷ୍ଟର ଶର୍ମା ଖୁଣ୍ ହୋଇଛନ୍ତି ।

ଧୀରାଜ ମେହେରା ଟିକିଏ ଅଟକିଗଲେ ଏବଂ ଚିନ୍ତା କଲେ । ତା'ପରେ ପୁଣି ଆଲବମ୍‌ର ପୃଷ୍ଠା ଓଲଟାଇ କହିଲେ : ଏ ଘଟଣାର ଗୁରୁତ୍ୱ ଦେବା ଭଳି କିଛି ନାହିଁ । ଆମେ ବର୍ତ୍ତମାନ ଯଦି ଧରି ନେବା ଯେ ଏଇ ଲୋକଟା ଶର୍ମାକୁ ଖୁଣ୍ କରି ତା'ଠାରୁ ନକଲ ସ୍ୱର୍ଣ୍ଣମୟୂରୀଟି ଅପହରଣ କରିନେଇଛି, ଆମେ ଶର୍ମାର ହତ୍ୟାକାରୀକୁ ଚିହ୍ନି ପାରିଛେ । କିନ୍ତୁ ଲାଭ କ'ଣ ? ଆମେ ତ ଶର୍ମାର ହତ୍ୟାକାରୀକୁ ଖୋଜୁ ନାହେଁ । ତେଣୁ...

: କିନ୍ତୁ ସାର୍... ରାଜେଶ କହିବାକୁ ଯାଉଥିଲା ଯେ, ଏଇ ଲୋକଟିକୁ ସେ ମିସେସ୍ ମେହେରାଙ୍କ ସହିତ ଦେଖିଛି । କିନ୍ତୁ ପୁଣି କ'ଣ ଭାବି ରାଜେଶ ଅଟକିଗଲା ।

ଧୀରାଜ ମେହେରା କହିଲେ : କୁହ, ତମ ମନରେ ଯଦି କିଛି ପ୍ରଶ୍ନ ଥାଏ, ପଚାର ।

ରାଜେଶ କହିଲା : ନା, ମୁଁ କ'ଣ କହୁଥିଲି କି, ସ୍ୱର୍ଣ୍ଣମୟୂରୀଟି ସେଇ ଯେଉଁ ଭଦ୍ରମହିଳାଙ୍କ ତତ୍ତ୍ୱାବଧାନରେ ରହିଛି, ଆପଣ ଫେରିବା ଯାଏ ତାହା ସେଇଠି ନିରାପଦରେ ରହିପାରିବ ତ ?

: ମୁଁ ତ ଆଶା କରୁଛି । ତେବେ ମେରୀକୁ ମୁଁ ତମ କଥା କହି ଯିବି । ଆବଶ୍ୟକ ହେଲେ ସେ ତମର ସାହାଯ୍ୟ ଲୋଡ଼ିବ । କିନ୍ତୁ ସାବଧାନ, ଏ ଘରୁ ବାହାରକୁ କୌଣସି ଫୋନ୍ କଲ୍ କରିବା ବେଳେ, ଭୁଲ୍‌ରେ ଯେପରି ଏ ସମ୍ବନ୍ଧରେ କିଛି କଥା ନ ହୁଅ । ମେରି 'ମେହେରା ମାଇନିଂ କର୍‌ପୋରେସନ୍'ର ଚିଫ୍ କ୍ୟାସିଅର । ଦିନ ବାରଟାରୁ ଚାରିଟା ପର୍ଯ୍ୟନ୍ତ ସେ ଅଫିସରେ ଥାଏ । ତମେ ଧୀରାଜ ମେହେରାଙ୍କ ପର୍ସନାଲ ସେକ୍ରେଟାରୀ । ଏହାଛଡ଼ା ତମର ଅନ୍ୟ କିଛି ପରିଚୟ ନାହିଁ । ମନେ ରହିଲା ?

ଧୀରାଜ ମେହେରା ଆଲବମ୍‌ଟାକୁ ଗୁପ୍ତ ଡ୍ରୟାରରେ ବନ୍ଦ କଲେ । ଉଠି ଠିଆ ହୋଇ କହିଲେ : ମୋ ସାଂଗରେ ଚାଲ । ଅଫିସ୍‌ରେ ତୁମକୁ ସମସ୍ତଙ୍କ ସହିତ ପରିଚୟ କରାଇ ଦେବି । ତମେ କାଲିଠାରୁ ରୀତିମତ ଅଫିସ୍ କରିବ । ଦଶଟାରୁ ଚାରିଟା ତମର ଡିଉଟି । ତେବେ ବିଶେଷ କାର୍ଯ୍ୟରେ ତମେ ବାହାରକୁ ବାହାରି ପାରିବ । ମେରୀ ସହିତ ଅଫିସ୍‌ରେ ମୋ ଗୋପନ ଚେମ୍ବରରେ ବସି ପ୍ରୟୋଜନୀୟ କଥା ଆଲୋଚନା କରିପାର । ଅନ୍ୟ କେଉଁଠି ନୁହେଁ ।

ଧୀରାଜ ମେହେରାଙ୍କ ସହିତ ରାଜେଶ ଉଠି ଠିଆ ହେଲା ।

\+ + +

ରାଜେଶ ଅଫିସରୁ ପାଞ୍ଚଟା ବେଳକୁ ଫେରି ଆସିଲା ।

ମେହେରା ମାଇନିଂ କର୍ପୋରେସନର ଅଫିସ୍‌ଟି 'ଜୀବନ ଦୀପ' ବିଲ୍‌ଡିଂର ୯ ତାଲାରେ ଅବସ୍ଥିତ । ଅଫିସ୍‌ଟି ଛୋଟ ହେଲେ କ'ଣ ହେବ ଖୁବ୍ ସୁଦୃଶ୍ୟ । ଅଫିସ୍ ଭିତରେ ମୋଟ ୧୫ ଜଣ କର୍ମଚାରୀ । ସମସ୍ତେ ଯୁବ, କର୍ମ ପ୍ରବଣ ।

ଧୀରାଜ ମେହେରା ଅଫିସ୍‌ର ସମସ୍ତ କର୍ମଚାରୀମାନଙ୍କ ସହିତ ରାଜେଶର ପରିଚୟ କରାଇ ଦେଲେ । ରାଜେଶର ବସିବା ଜାଗାଟି ନିର୍ଦ୍ଧାରିତ ହୋଇଥିଲା ମିଷ୍ଟର ମେହେରାଙ୍କ ଚେମ୍ବରକୁ ଲାଗି । ତା' ଆର ପାଖକୁ କ୍ୟାସ୍ କାଉଣ୍ଟର । ମେରୀ ସେଠି ବସେ । ମଝିରେ ଗୋଟିଏ କାଚ ପାର୍ଟିସନ୍ ।

ମେରୀକୁ ରାଜେଶ ହୋଟେଲ ଇଣ୍ଟର ନାସନାଲରେ ଦେଖିଥିଲା । କିନ୍ତୁ ଆଜି ମେରୀ ସହିତ କଥାବାର୍ତ୍ତା କରି ସେ ଆତ୍ମସନ୍ତୋଷ ଲାଭ କଲା । ମେରୀ ସୁନ୍ଦରୀ, ମେରୀ ମିଷ୍ଟ ଭାଷିନୀ । ରାଜେଶକୁ ଖୁବ୍ ଭଲ ଲାଗିଲା । ମେରୀ ଭଳି ସହକର୍ମିଣୀ ପାଇଲେ, ଯେକୌଣସି ଲୋକ କର୍ମପ୍ରେରଣା ଫେରି ପାଇବ ।

ରାଜେଶ ଖୁବ୍ ଫୂର୍ତ୍ତି ଥିଲା ପରି ମନେହେଉଥିଲା ।

ଘରକୁ ଫେରି ଆସି ନିତ୍ୟକର୍ମ ଶେଷ କରିବାକୁ ସଂଗେ ସଂଗେ ବାଥ୍‌ରୁମ୍‌କୁ ଚାଲିଯାଇଥିଲା । ଏହାପରେ ସେ ଟିକିଏ ବାହାରିବ । ଦୁଇଦିନ ହେବ ସେ ଯେପରି ଏକ ଦୁଃସ୍ୱପ୍ନ ପଛରେ ଧାଇଁଥିଲା । ଆଜି ଅଫିସ୍‌ରୁ ଫେରିବା ପରେ ତା'ର ମନେହେଉଥିଲା ସେ ପ୍ରକୃତିସ୍ଥ ହୋଇଛି ।

ମିଷ୍ଟର ମେହେରା ଆଜି ଚାରିଟା ପ୍ଳେନ୍‌ରେ ଚାଲି ଯାଇଛନ୍ତି । ଆଉ କିଛି ଅଡୁଆ ନାହିଁ । ସ୍ୱର୍ଣ୍ଣମୟୂରୀ ମେରୀ ମାର୍ଫତରେ । ତେଣୁ ସେ ନିଶ୍ଚିତ ।

ତରବର କରି ନିତ୍ୟକର୍ମ ଶେଷ କରି, ରାଜେଶ ଖଣ୍ଡେ ଟାୱେଲରେ ମୁଣ୍ଡ ପୋଛୁ ପୋଛୁ ବାହାରି ଆସିଲା । ମନ ଆନନ୍ଦରେ ଗୁଣୁଗୁଣୁ ହୋଇ ଗୀତ ଗାଉଥିଲା । ଟାୱେଲ୍‌ଟା ଯେତେବେଳେ ମୁହଁରୁ କାଢ଼ି, ଆଇନା ସାମ୍‌ନାରେ ଯାଇ ଠିଆ ହେଲା, ତା' ମୁହଁ ସହିତ ଆଇନାରେ ଆଉ ଏକ ନାରୀ ମୂର୍ତ୍ତିକୁ ଦେଖି ସେ ଶିହରୀ ଉଠିଲା ।

ମିସେସ୍ ମେହେରା ଇଜି ଚେଆର ଉପରେ ବସିଛନ୍ତି । ତାଙ୍କର ପ୍ରତିଛବି ପ୍ରତିବିମ୍ବିତ ହୋଇଛି ସାମ୍‌ନା ଆଇନାରେ । ଯେପରି ମୁହୂର୍ତ୍ତକ ମଧ୍ୟରେ ରାଜେଶର ସମସ୍ତ ଫୂର୍ତ୍ତି ମଉଳି ପଡ଼ିଲା । ସେ ମିସେସ୍ ମେହେରାଙ୍କ ଆଡ଼କୁ ଫେରି ଚାହିଁ କହିଲା : ଆପଣ, ଏପରି ଅସମୟରେ ?

ମିସେସ୍ ମେହେରା ଅଳ୍ପ ଅଳ୍ପ ହସିଲେ । ତାଙ୍କ ହସ କିପରି ଅସ୍ୱାଭାବିକ ମନେହେଉଥିଲା । କିପରି କରୁଣ କଣ୍ଠରେ କହିଲେ : ତମେ ସେଦିନ ମୋତେ ଏକା ଛାଡ଼ି ଚାଲିଆସିଲ ? ମୁଁ ଅନେକ ଖୋଜିଲି । ନିରାଶ ହେଲି ।

ରାଜେଶ କିଛି ଉତ୍ତର ଦେଲା ନାହିଁ । ଆର ଘରେ ଯାଇ ଲୁଗାପଟା ବଦଳାଇଲା । ପୁଣି ସମସ୍ୟା । ମିସେସ୍ ମେହେରାଙ୍କୁ ଫାଙ୍କି ଦେଇ ସେ କିପରି ବାହାରିଯିବ ସେଇ କଥା ଚିନ୍ତା କରୁଥିଲା ।

ରାଜେଶ ଲୁଗାପଟା ପିନ୍ଧି ଫେରି ଆସିଥିଲା । ମିସେସ୍ ମେହେରାଙ୍କ ସାମ୍ନାରେ ପହଞ୍ଚିବା ମାତ୍ରକେ, ସେ ଉଠି ଠିଆ ହେଲେ । କହିଲେ : ମୋତେ ଆଜି ବି ତମର ଶରଣାପନ୍ନ ହେବାକୁ ପଡୁଛି ରାଜେଶ । ମୋ ଗାଡ଼ିଟା ଗ୍ୟାରେଜରୁ ଆସି ନାହିଁ । ଡ୍ରାଇଭରଟା ବି ଛୁଟିନେଇ ପଳାଇଛି । ତମର ଅସୁବିଧା ହେବ ?

ରାଜେଶ ନୀରବରେ ମିସେସ୍ ମେହେରାଙ୍କ ମୁହଁକୁ ଚାହିଁଲା ।

ମିସେସ୍ ମେହେରା କହିଲେ : ରାଜେଶ ତମର ଅସୁବିଧା ହେଲେ ବି ମୋତେ ଟିକିଏ ସାହାଯ୍ୟ କରିବାକୁ ପଡ଼ିବ । ପ୍ଲିଜ୍ ।

ମିସେସ୍ ମେହେରାଙ୍କ ପଛେ ପଛେ ରାଜେଶ ତଳକୁ ଓହ୍ଲେଇ ଗଲା । ଗ୍ୟାରେଜରୁ ଗାଡ଼ି ବାହାର କଲା । ମିସେସ୍ ମେହେରା ସାମ୍ନା ଦରଜା ଖୋଲି ରାଜେଶ ପାଖରେ ବସିଲେ ।

ମୋତେ ଗ୍ରେଟ୍ ଇଷ୍ଟର୍ଣ୍ଣକୁ ନେଇଚାଲ । ଆଜି କିନ୍ତୁ ଛାଡ଼ି ଚାଲିଆସିବ ନାହିଁ ରାଜେଶ । ଆସିଲା ବେଳେ ସାଂଗରେ ଆଣିବ ।

ରାଜେଶ ଅନୁଭବ କରୁଥିଲା, ମିସେସ୍ ମେହେରା ଆଜି କିପରି ଅସ୍ୱାଭାବିକ ମନେହେଉଛନ୍ତି । ସ୍ୱରରେ ତାଙ୍କର ଅସହାୟତା ଫୁଟି ଉଠୁଚି । ସେ ଆଉ ଟିକିଏ ରାଜେଶ ଆଡ଼କୁ ଘୁଞ୍ଚି ବସି କହିଲେ : ତୁମେ ବିଶ୍ୱାସ କର ରାଜେଶ, ମୋତେ ତୁମକୁ ପ୍ରଥମ ଦର୍ଶନରୁ ହିଁ ଖୁବ୍ ଭଲ ଲାଗିଛି । ମିଷ୍ଟର ମେହେରାଙ୍କର ତମେ ବିଶ୍ୱସ୍ତ ସହଚର, ମୋର ବି ବିଶ୍ୱାସଭାଜନ ହୁଅ ।

ରାଜେଶ କହିଲା : କୁହନ୍ତୁ, ଆପଣଙ୍କ ପାଇଁ ମୋତେ କ'ଣ କରିବାକୁ ହେବ ?

ମିସେସ୍ ମେହେରା କହିଲେ : ମୁଁ ଚାହେ ଟିକିଏ ଶାନ୍ତି । ଦିନୁ ଦିନୁ ଜୀବନଟା ମୋର ଦୁର୍ବିସହ ହୋଇ ଉଠୁଛି । ତମେ ପାରିବ ରାଜେଶ, ଇଚ୍ଛା କଲେ ତୁମେ ମୋର ଶାନ୍ତି ଫେରାଇ ଦେଇ ପାରିବ ।

ରାଜେଶ ମିସେସ୍ ମେହେରାଙ୍କ ମୁହଁକୁ ଚାହିଁଲା । ଏତେ ବଡ଼ ଜଣେ ପୁଞ୍ଜିପତିର ସ୍ତ୍ରୀ ମିସେସ୍ ମେହେରା । ପ୍ରାଚୁର୍ଯ୍ୟ ଭିତରେ ଦିନ କଟୁଛି । ଟଙ୍କା ପଇସା, ଦାସଦାସୀର ଅଭାବ ନାହିଁ । ତଥାପି ଶାନ୍ତି ନାହିଁ ତାଙ୍କ ମନରେ !

ଗାଡ଼ି ଚାଲିଥିଲା । ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲ ପାଖରେ ପହଞ୍ଚାଇ ଦେଇ ରାଜେଶ କହିଲା : ଆପଣ ଯାଆନ୍ତୁ । ମୁଁ ପରେ ଆସି ଆପଣଙ୍କୁ ନେଇଯିବି ।

ମିସେସ୍ ମେହେରା କହିଲେ : ତୁମେ ନିଷ୍ଠୁର ହୁଅ ନାହିଁ ରାଜେଶ । ତମ ଉପରେ ମୋର ଅଶେଷ ଆଶା ଭରସା । ମୋ ସାଂଗରେ ଆସ । ତମେ ମୋ ପାଖେ ପାଖେ ରହିବ । ନହେଲେ ସେମାନେ ମୋତେ ବିବ୍ରତ କରି ପକାଇବେ ।

: କିଏ ସେମାନେ ? କାହା କଥା ଆପଣ କହୁଛନ୍ତି ? ରାଜେଶ ପଚାରିଲା ।

ମିସେସ୍ ମେହେରା ପୁଣି କରୁଣ ହସ ଟିକେ ହସି କହିଲେ : ତମେ ସେମାନଙ୍କୁ ଜାଣି ନାହଁ । ସେମାନେ ଦିନେ ଥିଲେ ମୋର ହିତାକାଂକ୍ଷୀ । ସେମାନେ ହାତରେ ମୋର ସ୍ୱର୍ଗ ତୋଳି ଦେଇଥିଲେ । ପ୍ରାଣରେ ଭରି ଦେଇଥିଲେ ଅସଂଖ୍ୟ କାମନା । ଆଖିରେ ଲେପି ଦେଇଥିଲେ ସୁଖର ମୋହାଞ୍ଜନ । କିନ୍ତୁ ଆଜି ସେମାନେ ସବୁ କାଢ଼ି ନେବାକୁ ଚାହାନ୍ତି । ଏପରିକି ମୋର ସୁଖ, ଶାନ୍ତି ସବୁ ସେମାନେ ଛଡ଼େଇ ନେବାକୁ ବସିଛନ୍ତି । ମୁଁ ସେମାନଙ୍କ

ସହିତ ପାରୁନାହିଁ ରାଜେଶ । ଖାଲି ଟିକିଏ ଶାନ୍ତି । ତମେ ଦୟାକର ରାଜେଶ । ତମେ ବିମୁଖ ହୁଅ ନାହିଁ ।

ମିସେସ୍ ମେହେରା ରାଜେଶର ହାତ ଦୁଇଟାକୁ ଜାବୁଡ଼ି ଧରିଲେ । କହିଲେ : ମୋ ସହିତ ତୁମେ ଆସ । ଅନ୍ତତଃ ରାତିକ ପାଇଁ ମୁଁ ସେମାନଙ୍କ କବଳରୁ ମୁକ୍ତି ପାଏ ।

ରାଜେଶ ମହା ଦ୍ୱନ୍ଦ୍ୱରେ ପଡ଼ିଯାଇଥିଲା । ମିଷ୍ଟର ମେହେରା ମିସେସ୍ ମେହେରାଙ୍କ ସମ୍ବନ୍ଧରେ ତାକୁ କିଛି କହିନାହାନ୍ତି, କିଛି ଇଂଗିତ ବି ଦେଇ ନାହାନ୍ତି । ମିସେସ୍ ମେହେରାଙ୍କ ଆଚରଣରୁ ମନେହେଉଛି ସେ ଆଦୌ ପ୍ରକୃତିସ୍ଥ ନୁହନ୍ତି । ତା'ଛଡ଼ା ରାଜେଶ ମିସେସ୍ ମେହେରାଙ୍କୁ ଦେଖିବା ବେଳଠାରୁ ତା' ଆଖି ଆଗରେ ସେଇ କଦାକାର ଲୋକଟାର ରୂପ ଭାସି ଯାଉଛି । ସେ ଯେ ଗୋଟାଏ ଖୁଣୀ ଆଉ ବଦମାସ୍ ଛଡ଼ା ଅନ୍ୟ କିଛି ହୋଇ ନପାରେ ! ତେବେ କ'ଣ ସେଇ ଲୋକଟା ମିସେସ୍ ମେହେରାଙ୍କ ଆଖିରୁ ନିଦ, ମନରୁ ଶାନ୍ତି କାଢ଼ିନେଇଯାଇଛି ?

ରାଜେଶ ମିସେସ୍ ମେହେରାଙ୍କ ସହିତ ହୋଟେଲକୁ ଗଲା । ସେଇ ରୁମ୍, ଯେଉଁ ରୁମ୍‌ରେ ପ୍ରଥମ ଦିନ ଆସି ସେ ବସିଥିଲା । ମିସେସ୍ ମେହେରା ରୁମ୍‌ରେ ପଶି ଦରଜା ବନ୍ଦ କରିଦେଲେ । କହିଲେ : ଏଇଠି ଆଜି ନିରୋଳାରେ ତମ ସହିତ ଗପି ଗପି ମୁଁ ସମୟ କଟାଇ ଦେବି । ତମେ ମୋ ପାଖେ ପାଖେ ଥିଲେ, ସେମାନେ ଭିତରକୁ ଆସିବାକୁ ସାହସ କରିବେ ନାହିଁ । ତମେ କ'ଣ ଖାଇବ ରାଜେଶ ?

ମିସେସ୍ ମେହେରା କଲିଂବେଲ୍ ଟିପିଲେ ।

ବୟ ଆସି ଖାଇବା ପଦାର୍ଥର ଅର୍ଡ଼ର ନେଇଗଲା ଏବଂ କିଛି ସମୟ ପରେ ଗୋଟିଏ ଟ୍ରେ'ରେ ଦୁଇଟି ବୋତଲ ଏବଂ ଦୁଇଟି ଗ୍ଲାସ୍ ଦେଇଗଲା । ଧୀରେ ଧୀରେ ମିସେସ୍ ମେହେରାଙ୍କ ଦେହ ମନରୁ ଅବସାଦ ଯେପରି ଘୁଞ୍ଚି ଘୁଞ୍ଚି ଯାଉଥିଲା ।

ମିସେସ୍ ମେହେରା ପାନୀୟ ବୋତଲ ଦୁଇଟିରୁ ଅଲଗା ଅଲଗା ଭାବରେ ଦୁଇଟି ଗ୍ଲାସ୍ ପୂର୍ଣ୍ଣ କଲେ । କହିଲେ : ଏଇ ଯେଉଁ ବୋତଲଟି ଦେଖୁଛନ୍ତି ଏଥିରେ ଥିବା ପାନୀୟ ବିଶେଷ ଭାବରେ ମୋ ପାଇଁ ତିଆରି ହୋଇଛି । ଏଇ ବିଶେଷ ଭାବରେ ପ୍ରସ୍ତୁତ ପାନୀୟ ହିଁ ଆଜିଯାଏ ମୋତେ ବଞ୍ଚାଇ ରଖିଛି ।

ମିସେସ୍ ମେହେରା କଥା କହୁ କହୁ ଗ୍ଲାସ୍‌କୁ ମୁହଁରେ ଲଗାଇ ତହିଁରୁ ଅର୍ଦ୍ଧେକ ନିଃଶେଷ କରିଦେଲେ । ପର ମୁହୂର୍ତ୍ତରେ ତାଙ୍କୁ ଆହୁରି ସତେଜ ଓ ଆହୁରି ପ୍ରଫୁଲ୍ଲ ମନେହେଲା ।

ମିସେସ୍ ମେହେରା କହିଲେ : ମୋତେ ଏଇଥିପାଇଁ ଦିନରେ ଦୁଇଥର ଏଠାକୁ ଛୁଟି ଆସିବାକୁ ହୋଇଥାଏ । ଥରେ ସକାଳେ ଓ ଆଉଥରେ ରାତିରେ । ମୁଁ ଏଠାରେ ହୋଟେଲ କର୍ତ୍ତୃପକ୍ଷଙ୍କୁ ବହୁ ଅନୁରୋଧ କରିଛି, ଏପରିକି ତାଙ୍କୁ ଅନେକ ଟଙ୍କାର ଲୋଭ ଦେଖାଇଛି । ସେମାନେ ରାଜି ହୋଇନାହାନ୍ତି । ସେମାନଙ୍କର ସେଇ ଏକା ଜିଦ୍, ବିଶେଷ ଭାବରେ ନିର୍ମିତ ଏହି ପାନୀୟ, ଆମେ ହୋଟେଲ ଛଡ଼ା ଘରକୁ ସପ୍ଲାଇ ଦେବୁ ନାହିଁ । ମୋର ଉପାୟ ନାହିଁ ରାଜେଶ, ଏଇ ପାନୀୟ ଛଡ଼ା ମୁଁ ବଂଚିପାରିବି ନାହିଁ । ହୁଏତ ସକାଳ ବେଳାଟା କେବେ କେମିତି ଅନ୍ୟ ଉତ୍କଟ ପାନୀୟ ପାନ କରି ମୁଁ ରହିଯାଇପାରେ କିନ୍ତୁ ସନ୍ଧ୍ୟାହେଲେ ଆଉ ଉପାୟ ନାହିଁ । ମୋର ଦେହ ହାତ ଅବଶ ହୋଇ ଆସେ, ମୁଣ୍ଡ ବୁଲାଏ । ମୁଁ ଅସ୍ଥିର ବିଚଳିତ ହୋଇ ଛୁଟିଆସେ ଏଠାକୁ ।

ରାଜେଶ ଲକ୍ଷ୍ୟ କଲା, ମିସେସ୍ ମେହେରା ଧୀରେ ଧୀରେ ସହଜ ହୋଇ ଆସୁଛନ୍ତି । ସେ ପଚାରିଲା : ଆପଣଙ୍କର ଏଠାକୁ ଆସିବା କଥା ମିଷ୍ଟର ମେହେରା ଜାଣନ୍ତି ?

: ଜାଣନ୍ତି ରାଜେଶ । ମିଷ୍ଟର ମେହେରା ନିଜେ ମୋତେ ଏଠାରେ ଏହି ରୁମ୍‌ଟି ବ୍ୟବସ୍ଥା କରି ଦେଇଛନ୍ତି । ମୋର ଅବସର ସମୟଟା ନିରୋଳାରେ କଟାଇବା ପାଇଁ ସେ ବ୍ୟବସ୍ଥା କରିଦେଇଥିଲେ । ଦେଖୁନାହଁ, କେତେ ବହି, ଦେଶ ବିଦେଶର କେତେ ମାଗାଜିନ୍ । ଏକ ସମୟରେ ମୁଁ ପ୍ରଚୁର ବହି ପଢୁଥିଲି । ବହି ପଢ଼ିବା ଏବଂ ଚିଠି ଲେଖିବା ମୋର ଗୋଟାଏ ହବି ଥିଲା । ସେଇଥିପାଇଁ ସେ ନିରୋଳାରେ ସମୟ କଟାଇବା ପାଇଁ ମୋତେ ଏ ବ୍ୟବସ୍ଥା କରି ଦେଇଥିଲେ । କିନ୍ତୁ ସେଇ ନିରୋଳା ଶଯ୍ୟା ଯେ ମୋ ଜୀବନର ଦିନେ କଣ୍ଟକ ଶଯ୍ୟା ହୋଇ ଦେଖାଦେବ ଏ କଥା କ'ଣ ମୋତେ ଜଣାଥିଲା !

: ରାଜେଶ ! ଅତୀତରେ, ଛାତ୍ରାବସ୍ଥାରେ ସ୍ତ୍ରୀ ସ୍ୱାଧୀନତା ପାଇଁ ମୁଁ ଅନେକ ଆନ୍ଦୋଳନ କରିଥିଲି । କିନ୍ତୁ ଆଜି ମୋର ମନେହେଉଛି ଆମ ଭାରତବର୍ଷରେ ସ୍ତ୍ରୀକୁ ସ୍ୱାଧୀନତା ଦେବା ଉଚିତ ନୁହେଁ । ଆମ ଏଠାକାର ପାଣି ପବନର ସ୍ୱାଦ ଭିନ୍ନ, ଗନ୍ଧ ଭିନ୍ନ । ତମେ ରାଜେଶ ମୋର ଗୋଟାଏ କଥା ମନେରଖିବ, ତମ ସ୍ତ୍ରୀକୁ ତମେ ଆଦୌ ସ୍ୱାଧୀନତା ଦେବ ନାହିଁ । ନିରୋଳାରେ ଏକାକୀ ବସବାସ କରିବାର ସୁଯୋଗ ଦେବ ନାହିଁ । ସବୁବେଳେ ଆଖି ଆଗରେ ରଖିବ ।

ଦୁଇଜଣ ହୋଟେଲ ବୟ ଖାଦ୍ୟ ସାମଗ୍ରୀ ଧରି ଆସି ପହଞ୍ଚିଲେ । ମିସେସ୍ ମେହେରା ନୀରବ ହେଲେ । ନିଜ ହାତରେ ସେ ପ୍ଲେଟ୍ ସଜାଇ ମୋ ଆଡ଼କୁ ବଢ଼ାଇ ଦେଇ କହିଲେ : ଖାଅ । ରାତ୍ରି ଭୋଜନଟା ଆଜି ଏଇଠି ସାରିନିଅ । ଫେରୁ ଫେରୁ ଅନେକ ଡେରି ହେବ ।

ଅଫିସ୍‌ରୁ ଫେରି ରାଜେଶ କିଛି ଖାଇବାର ସୁଯୋଗ ପାଇ ନଥିଲା । ପେଟରେ ଭୋକ ଥିଲା । ମୁହଁରେ ଲାଜ ଥିଲେ ବି ସେ ଲଜ୍ଜା ପରିହାର କରି ଖାଇ ବସିଲା ।

ମିସେସ୍ ମେହେରା ବି କ୍ଷୁଧାର୍ତ୍ତ ଥିଲା ପରି ମନେହେଉଥିଲେ ।

ନୀରବରେ ଦୁହେଁ ଭୋଜନପର୍ବ ଶେଷ କଲେ ।

ମିସେସ୍ ମେହେରା ଖାଇସାରି, ଗୋଟିଏ ଇଜି ଚେଆର ଉପରେ ଦେହ ଭାର ନଦି ଦେଲେ । ଏହା ମଧ୍ୟରେ ତାଙ୍କ ପାନୀୟ ବୋତଲଟି ନିଃଶେଷ ହୋଇ ଯାଇଥିଲା । ବିଶେଷ ଭାବରେ ନିର୍ମିତ ସେଇ ପାନୀୟର ଗୁଣ ଯେ ଅଶେଷ ସେ କଥା ମିସେସ୍ ମେହେରାଙ୍କ ଆଚରଣରୁ ମୁଁ ବୁଝି ପାରୁଥିଲି । କାରଣ ଘଣ୍ଟାକ ପୂର୍ବର ଭୀତ, ବିବ୍ରତ ନାରୀଟି ଧୀରେ ଧୀରେ ସୁସ୍ଥ ସତେଜ ହୋଇ ଉଠିଥିଲା । ଗଳାର ସ୍ୱର, ଦେହର ଭଙ୍ଗୀ କ୍ରମଶଃ ଉଗ୍ର ହେଉଥିଲା ।

ମିସେସ୍ ମେହେରା କହିଲେ : ତମେ ରାଜେଶ ଆଉ ଯଦି କିଛିଦିନ ଆଗରୁ ମୋ ଜୀବନ ପଥରେ ଦେଖାଦେଇ ଥାଆନ୍ତ, ତା'ହେଲେ ମୋ ଅବସ୍ଥା ଆଜି ଏପରି ଶୋଚନୀୟ ହୋଇ ନଥାନ୍ତା । ମିଷ୍ଟର ମେହେରାଙ୍କର ଦୋଷ ମୁଁ ଦେଇପାରୁ ନାହିଁ । କାରଣ ସେ ମୋତେ ପ୍ରଥମେ ବାଧା ଦେଇଥିଲେ । ମୋ ଖାମଖିଆଲୀ ଆଚରଣକୁ ପରିବର୍ତ୍ତନ କରିବା ପାଇଁ ସେ ଚେଷ୍ଟା କରିଥିଲେ । କିନ୍ତୁ ମୁଁ ତାଙ୍କ କଥା ଶୁଣିଲି ନାହିଁ । ନାରୀ ସ୍ୱାଧୀନତାର ଦୃହି ଦେଖେଇ ତାଙ୍କ ଠାରୁ ସ୍ୱତନ୍ତ୍ରତା ଦାବି କଲି । ମୋର ସ୍ୱତନ୍ତ୍ର ସତ୍ତା କଥା ତାଙ୍କୁ ବାରମ୍ବାର ଚେତେଇ ଦେଲି । ଆମ ଭିତରେ ଅଶାନ୍ତି ଭରିଗଲା ।

ଶେଷରେ ମୋର ଜୟ ହେଲା । ମିଷ୍ଟର ମେହେରା ମୋ ପାଇଁ ସବୁ ସ୍ୱତନ୍ତ୍ର ବନ୍ଦୋବସ୍ତ କରିଦେଲେ । ମୋ ପାଇଁ ଅଲଗା ଘର, ଅଲଗା ଗାଡ଼ି, ଅଲଗା ଦାସଦାସୀ, ସବୁ ବ୍ୟବସ୍ଥା କରିଦେଲେ । ମୋ ନାମରେ ଲକ୍ଷାଧିକ ଟଙ୍କା ହାତଖର୍ଚ୍ଚ ବ୍ୟାଙ୍କରେ ଜମା କରି ଦେଲେ ।

ମୁଁ ମାତି ଉଠିଲି । ମୋର ସ୍ୱତନ୍ତ୍ର ସତ୍ତା ମୋତେ ବହୁ ଉଚ୍ଚକୁ ଟାଣି ନେଇଗଲା । ସଭା, ସମିତି, ହୋଟେଲ, କ୍ଲବ୍ । ଅସମ୍ଭବ ଫୂର୍ତ୍ତି, ଅଫୁରନ୍ତ ଆନନ୍ଦ । ବଂଧୁ ଯୁଟିଲେ, ବାନ୍ଧବୀ ବି ଆସିଲେ । ଏକ, ଦୁଇ, ତିନି । ବଢ଼ି ଚାଲିଲା ମୋର ଉର୍ଦ୍ଧ୍ୱଗାମୀ ହେବାର ମୋହ ।

କିନ୍ତୁ ଯେତେବେଳେ ଅନୁଭବ କଲି ଯେ, ମୋର ସୋପାନ ଶ୍ରେଣୀ ଅତିକ୍ରମ କରିବା ଶେଷ ହୋଇଯାଇଛି । ମୁଁ ସର୍ବୋଚ୍ଚ ଇମାରତ ଉପରେ ଠିଆ ହୋଇଛି, ସେତେବେଳେ ମୋର ଧ୍ୟାନଭଙ୍ଗ ହେଲା । ତଳକୁ ଚାହିଁ ଦେଖିଲି, ବଂଧୁ, ବାନ୍ଧବ, ଆତ୍ମୀୟ ସ୍ୱଜନ ମୋର କେହି ନାହାନ୍ତି । ସେମାନେ ମୋତେ ଇମାରତ୍ ଉପରକୁ ଉଠାଇ ଦେଇ, ତଳୁ ଶିଡ଼ି କାଢ଼ି ନେଇଯାଇଛନ୍ତି । ତଳକୁ ଓହ୍ଲାଇବାର ଉପାୟ ନାହିଁ । ମୋତେ ସେଇ ମୁହୂର୍ତ୍ତରେ ରସାତଳଗାମୀ ହେବାକୁ ହେଲା । ମୁଁ ଆଣ୍ଠୁ ଛିଣ୍ଡାଇ ତଳେ ପଡ଼ିଲି ।

ସେତେବେଳକୁ ବ୍ୟାଙ୍କ୍‌ରୁ ମୋର ସବୁ ଟଙ୍କା ନିଃଶେଷ ହୋଇଯାଇଥିଲା । ନାନା ଆଡ଼େ ଧାର ଦେଣାରେ ମୁଁ ବୁଡ଼ି ଯାଇଥିଲି । ଦିନ ପରେ ଦିନ ହୋଟେଲ ବିଲ୍, କ୍ଲବ୍ ବିଲ୍, ପୋଷାକ ବିଲ୍ ଏପରିକି ପାନୀୟ ବିଲ୍ ଆସି ଏତେ ଜମା ହେଲା ଯେ, ତା'ର ପରିମାଣ ଲକ୍ଷାଧିକ ଟଙ୍କା । ମୋ ଆଖି ଆଗରେ ଜୁଳୁଜୁଳିଆ ପୋକ ଉଡ଼ିବାକୁ ଲାଗିଲେ । ସାଙ୍ଗସାଥୀ କାହାରି ଦେଖା ପାଇଲି ନାହିଁ । ଉପାୟ ?

ମିସେସ୍ ମେହେରା କ୍ଳାନ୍ତ ହୋଇ ପଡ଼ିଥିଲେ ।

ଆଖିରେ ତାଙ୍କର ତନ୍ଦ୍ରା ଭରି ଆସିଥିଲା ।

ସେ ହାଇ ମାରିଲେ । ହାତରେ ଫୁଟ୍‌କି ଫୁଟାଇଲେ । ଟିକିଏ ସତେଜ ହେବାକୁ ଚେଷ୍ଟା କରି କହିଲେ : ଉପାୟ ଗୋଟାଏ ମୋତେ ମିଳିଲା ରାଜେଶ । ମୁଁ ପାଇଲି । ସ୍ରୋତ ମୁଖରେ ଭାସି ଯାଉଥିବା ମଣିଷ କୁଟାଖିଅକୁ ଆଶ୍ରୟ କଲା ପରି ମୁଁ ସେ ଅଫର ଗ୍ରହଣ କଲି । ସେତେବେଳେ ମୋ ଦେହର ରୂପ ଯୌବନ ଛଡ଼ା ମୋର ଆଉ କିଛି ସମ୍ବଳ ନଥିଲା । ମୁଁ ପାଉଣାଦାରମାନଙ୍କୁ ଲୁଚି ଲୁଚି ଅନ୍ଧକାରରେ ଘୂରି ବୁଲୁଥିଲି । ସେଇ ଅନ୍ଧକାର ଭିତରୁ ଯେଉଁ କ୍ଷୀଣ ଆଲୋକଟି ମୋତେ ପଥ ଦେଖାଇଲା, ମୁଁ କ'ଣ ଜାଣିଥିଲି ସେ ଆଲୁଅଟା ଡାଆଣୀ ଆଲୁଅ ବୋଲି ?

ମୁଁ ସେଇ ଆଲୋକ ପଛେ ପଛେ ଛୁଟିଲି ।

ଛୁଟିବାକୁ ବାଧ୍ୟ ହୋଇଥିଲି । ତା'ଛଡ଼ା ମୋର ଆଉ ଅନ୍ୟ ଉପାୟ ନଥିଲା । ନା ରାଜେଶ ଅନ୍ୟ ଉପାୟ ନଥିଲା ।

ମିସେସ୍ ମେହେରା ନୀରବ ହୋଇଗଲେ ।

ତାଙ୍କର ଆଖି ଯୋଡ଼ିକ ବନ୍ଦ ହୋଇ ଯାଇଥିଲା ।

ସେ ବୋଧହୁଏ ଶୋଇ ପଡ଼ିଥିଲେ ।

ରାଜେଶ ତାଙ୍କରି ଆଡ଼େ ଅନାଇ ଅନେକ ବେଳଯାଏ ବସିରହିଲା । ହଁ, ସେ ଶୋଇ ପଡ଼ିଛନ୍ତି । କେତେବେଳେ ଉଠିବେ କେଜାଣି !

ବାସନ ପତ୍ର ଗୋଟାଇବା ପାଇଁ ବୟ ଆସି ଘରେ ପଶିଲା ।

ରାଜେଶ ପଚାରିଲା : ମିସେସ୍ ମେହେରା କେତେବେଳେ ଉଠିବେ ?

ବୟଟି କହିଲା : ମେମ୍‌ସାହେବଙ୍କ ନିଦ ଆଜି ଆଉ ଭାଂଗିବ ନାହିଁ । ଆପଣ ନିଶ୍ଚିନ୍ତରେ ଚାଲିଯାଇପାରନ୍ତି ।

ରାଜେଶ ମିସେସ୍ ମେହେରାଙ୍କ ମୁହଁକୁ ଚାହିଁଲା । ସେ ନିଶ୍ଚିନ୍ତ ହୋଇ ଈଜି ଚେଆରଟା ଉପରେ ଶୋଇ ପଡ଼ିଛନ୍ତି ।

ବୟଟି ପଛେ ପଛେ ରାଜେଶ ଘରୁ ବାହାରି ଚାଲିଗଲା ।

\+ + +

ରାଜେଶ ଅଫିସ୍‌ରେ ପହଞ୍ଚିଲା ବେଳକୁ ଟିକିଏ ଡେରି ହୋଇଯାଇଥିଲା । ଯଦିଓ ଖୁବ୍ ସକାଳୁ ତା'ର ନିଦ ଭାଂଗି ଯାଇଥିଲା, କିନ୍ତୁ ବିଛଣାରୁ ଉଠିବା ପାଇଁ ଦେହରେ ଯେପରି ବଳ ପାଉ ନଥିଲା । ଗତ ରାତିରେ ମିସେସ୍ ମେହେରାଙ୍କୁ ଅଚେତ୍ ଅବସ୍ଥାରେ ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲରେ ଛାଡ଼ି ଆସିବା ପାଇଁ ତା' ମନରେ ଦ୍ୱିଧା ହୋଇଥିଲା । କିନ୍ତୁ ହୋଟେଲର କର୍ମଚାରୀମାନେ କହିଥିଲେ, ମେମ୍‌ସାହେବ ଅଧିକାଂଶ ଦିନ ରାତିରେ ଏଇଠି ରୁହନ୍ତି । ସକାଳୁ ଉଠି ଘରକୁ ଯାଆନ୍ତି, ତେଣୁ ରାଜେଶର ଚିନ୍ତା କରିବାର କିଛି କାରଣ ନାହିଁ ।

ରାଜେଶ ଘରକୁ ଫେରି ଆସିଥିଲା । ଆଉ କୁଆଡ଼େ ଯିବାକୁ ତା'ର ଇଚ୍ଛା ହୋଇ ନଥିଲା । ସେତିକିବେଳଠାରୁ ଆଜି ଶେଯରୁ ଉଠିବା ପର୍ଯ୍ୟନ୍ତ ଆଉ କିଛି ବିଶେଷ ଘଟଣା ଘଟି ନଥିଲା । ସେଇଥିପାଇଁ ଅନେକ ବେଳଯାଏ ରାଜେଶ ଶୋଇ ରହିଥିଲା ବିଛଣାରେ । ମନ ଭିତରେ ଭାସି ଉଠୁଥିଲା ବହୁତ କଥା । କେଇଦିନର କର୍ମ ଜୀବନ ଭିତରେ ଯେପରି ଦ୍ରୁତ ଗତିରେ ଅକଳ୍ପନୀୟ ଘଟଣା ସବୁ ଘଟି ଚାଲିଛି । ସେଇ ସବୁ ଘଟଣାର ପରିଣତି କଥା ଚିନ୍ତା କରି ରାଜେଶ ଶିହରୀ ଉଠୁଥିଲା ।

ତଥାପି ତାକୁ ସମସ୍ତ ପରିସ୍ଥିତିର ସମ୍ମୁଖୀନ ହେବାକୁ ହେବ ।

ରାଜେଶ ଧୀରେ ଧୀରେ ବିଛଣାରୁ ଉଠି ନିତ୍ୟକର୍ମ ଶେଷ କଲା ବେଳକୁ ଦଶଟା ବାଜି ଯାଇଥିଲା । ଅଫିସ୍‌ରେ ପହଞ୍ଚିଲା ବେଳକୁ ପ୍ରାୟ ଏଗାରଟା ।

ରାଜେଶ ଯେତେବେଳେ ଯାଇ ତା' ନିଜ ଚେମ୍ବରରେ କାଚ ଘର ଭିତରେ ପଶିଲା, ମେରୀ ହାତ ହଲାଇ ଅଭିନନ୍ଦନ ଜଣାଇବା ସଂଗେ ସଂଗେ କହିଲା : ଆପଣ ଏକ ଘଣ୍ଟା ଲେଟ୍‌ରେ ଆସିଛନ୍ତି । ଏ ଅଫିସ୍‌ର ସମୟାନୁବର୍ତ୍ତିତା ଗୋଟିଏ ବଡ଼ କ୍ୱାଲିଫିକେସନ୍ ।

ରାଜେଶର ମୁହଁ ଲଜ୍ଜାରେ ଆରକ୍ତ ହୋଇ ଉଠିଲା ।

ସେ ଟେବୁଲ ଉପରେ ରଖା ହୋଇଥିବା ସେଦିନର ଚିଠିପତ୍ର ଭିତରେ ମୁହଁ ଲୁଚେଇବାକୁ ଚେଷ୍ଟା କଲା ।

ମେରୀ କହିଲା : ଆପଣଙ୍କୁ ଟିକେ ବାହାରିବାକୁ ହେବ । ବାଁ ହାତରେ ସେ କାଚର ଗୋଟିଏ ଦରଜା ଖୋଲି ଦେଇ, ରାଜେଶ ଆଡ଼କୁ ଗୋଟିଏ ଫାଇଲ୍ ବଢ଼ାଇ ଦେଇ କହିଲା - ଏଇ ଫାଇଲ୍‌ଟି 'ଇଣ୍ଡିଆ ମେସିନାରୀଜ୍'ର । ଏ ଫାଇଲ୍‌ଟା ନିଜେ ମି: ମେହେରା ଡିଲ୍

କରୁଥିଲେ । ଯାଙ୍କରି ଜରିଆରେ ଜର୍ମାନରୁ ଆମର ତିନିଲକ୍ଷ ଟଙ୍କାର ମେସିନାରୀ ଆସିଥିଲା । ସେମାନଙ୍କୁ ମାତ୍ର ଏକଲକ୍ଷ ଟଙ୍କା ଦିଆହୋଇଛି । ପେମେଣ୍ଟର ଡିଉ ଡେଟ୍‌ଟା ଅନେକ ଦିନରୁ ଚାଲିଯାଇଛି । ମିଷ୍ଟର ମେହେରା ବୋଧହୁଏ ଭୁଲିଯାଇଥିଲେ । ଆଜି 'ଇଣ୍ଡିଆ ମେସେନାରୀଜ୍'ରୁ ଟେଲିଫୋନ୍ କରି ଡାକିଛନ୍ତି । ମିଷ୍ଟର ମେହେରାଙ୍କ ଅନୁପସ୍ଥିତି କଥା ମୁଁ ସେମାନଙ୍କୁ କହିଥିଲି । ସେମାନେ ଫାଇଲ୍‌ଟି ନେଇ ସେଠାକୁ ଥରେ ଯିବାକୁ ଡାକିଛନ୍ତି । ଆପଣ ଟିକିଏ ଯାଆନ୍ତୁ ।

ରାଜେଶ ଫାଇଲ୍‌ଟି ହାତରେ ନେଇ ଦେଖିଲା ।

ଅନେକ ଚିଠିପତ୍ର । ଭାରତ ସରକାରଙ୍କଠାରୁ ଆରମ୍ଭ କରି, ଜର୍ମାନ ସରକାର ଏବଂ ଇଣ୍ଡିଆ ମେସିନାରୀଜ୍‌ର କୋଟେସନ, ବିଲ୍, ମନିରିସିଟ୍ ଯାବତ କଥା ।

ରାଜେଶ କହିଲା : ଏ ସମ୍ବନ୍ଧରେ ମୁଁ ତ କିଛି ଜାଣି ନାହିଁ । ସେଠାରେ ଯାଇ କ'ଣ ଉତ୍ତର ଦେବି ?

ମେରୀ କହିଲା : ଏ ସମ୍ବନ୍ଧରେ ଆମେ କେହି କିଛି ଜାଣି ନାହୁଁ ବରଂ ଆପଣ ଗଲେ କହିବେ ଯେ, ମୁଁ ନୂତନ ନିଯୁକ୍ତି ପାଇଥିବାରୁ ଏବଂ ମିଷ୍ଟର ମେହେରା ଉପସ୍ଥିତ ନଥିବା ଦୃଷ୍ଟିରୁ ସେ ଫେରିଆସିବା ଯାଏ ଅପେକ୍ଷା କରିବାକୁ ଅନୁରୋଧ କରିବେ ।

ରାଜେଶ ଆଉ ପ୍ରତିବାଦ କଲା ନାହିଁ ।

ଫାଇଲ୍‌ଟି ଧରି ସେ ଚେମ୍ବରରୁ ବାହାରି ଚାଲିଗଲା ।

'ଇଣ୍ଡିଆନ୍ ମେସିନାରିଜ୍' କମ୍ପାନୀରେ ପହଞ୍ଚି, ସେ ଖଣ୍ଡିଏ ସ୍ଲିପ୍‌ରେ ନାଁ ଠିକଣା ଲେଖି, ଉଦ୍ଦେଶ୍ୟ ଜଣାଇ ଡାଇରେକ୍ଟରଙ୍କ ସହିତ ଦେଖା କରିବାକୁ ଅପେକ୍ଷା କଲା । ପ୍ରାୟ ଏକଘଣ୍ଟା ଅପେକ୍ଷା କରିବା ପରେ ଖବର ଆସିଲା, ଆଜି ଡାଇରେକ୍ଟରଙ୍କ ସହିତ ଦେଖା ହୋଇପାରିବ ନାହିଁ । ସେ ଏକ ଜରୁରୀ ମିଟିଂରେ ବର୍ତ୍ତମାନ ବାହାରିଗଲେ । ଫେରିବେ ଚାରିଟା ବେଳକୁ ।

ରାଜେଶ ମନେମନେ ଖୁସି ହେଲା । ଏ ଯାତ୍ରାରୁ ସେ ବଂଚିଯାଇଛି । ଫାଇଲ୍ ପତ୍ର ଧରି ପୁଣି ଫେରିଆସିଲା ଅଫିସ୍‌କୁ ।

ଟିଫିନ୍ ଟାଇମ୍ ହୋଇଯାଇଥିଲା । ଅଫିସ୍ ପ୍ରାୟ ଫାଙ୍କା ହୋଇଯାଇଥିଲା । ମେରୀ ତା' ଜାଗାରେ ବସି ସେଦିନର ଖବରକାଗଜଟା ପଢୁଥିଲା । ରାଜେଶ ଫେରି ଆସି କହିଲା : ଆଜି ଡାଇରେକ୍ଟରଙ୍କ ସହିତ ଦେଖା ହେଲା ନାହିଁ । ସେ ମିଟିଂକୁ ଚାଲି ଯାଇଛନ୍ତି ।

ମେରୀ ଖବରକାଗଜ ଉପରୁ ମୁହଁ ଉଠାଇ କହିଲା : ମୁଁ ଜାଣେ, ଆପଣ ଲକି ମିଷ୍ଟର ରାଜେଶ । ଯେତେବଡ଼ ସମସ୍ୟା ହେଉ, ଆପଣଙ୍କ ହାତ ଲାଗିଲେ ସହଜରେ ସମାଧାନ ହୋଇଯିବ୍ ।

ରାଜେଶ କହିଲା : ମିଷ୍ଟର ମେହେରାଙ୍କ ଚେମ୍ବରକୁ ଯିବା ଆସନ୍ତୁ । ଆପଣଙ୍କ ସହିତ ଅନେକ କଥା ଅଛି ।

ମେରୀ ଖବରକାଗଜଟା ଟେବୁଲ ଉପରେ ଥୋଇ ଦେଇ ଉଠି ଠିଆ ହେଲା ।

ଦୁଇଜଣ ଯାକ ଚେମ୍ବରରେ ପଶି କବାଟ ବନ୍ଦ କରିଦେଲେ ।

ରାଜେଶ କହିଲା : ଆଉ ଆପଣଙ୍କ ଖବର କ'ଣ କୁହନ୍ତୁ ମିସ୍ ମେରୀ । ହୋଟେଲ ଇଣ୍ଟରନାସନାଲରୁ ପୋଲିସ୍ ପହରା ଉଠି ଗଲାଣି ?

ମେରୀ କହିଲା : ବରଂ କଡ଼ାକଡ଼ି ହୋଇଛି । ସାଦା ପୋଷାକ ପୋଲିସ୍‌ମାନେ ହୋଟେଲ ଇଣ୍ଟରନାସନାଲକୁ ଘେରି ରହିଛନ୍ତି । ବେଳେବେଳେ ଗୋପନରେ ସେମାନେ ବିଭିନ୍ନ ରୁମ୍‌ରେ ପଶି ଅନୁସନ୍ଧାନ କରୁଛନ୍ତି । ସେଥିପାଇଁ ମୋ ମନରେ ବି ସବୁବେଳେ ଗୋଟାଏ ଅହେତୁକ ଭୟ ରହିଛି । ମୋ ଅନୁପସ୍ଥିତିରେ କେତେବେଳେ ଯଦି ରୁମ୍‌ରେ ପଶି...

ମେରୀ କଥା ଅସମାପ୍ତ ରଖି ରାଜେଶ ମୁହଁକୁ ଅସହାୟ ଭାବରେ ଅନାଇ ରହିଲା ।

ରାଜେଶ କହିଲା : ମିଷ୍ଟର ମେହେରାଙ୍କ ଉଦ୍ଦେଶ୍ୟଟା କ'ଣ ? ସେ ସ୍ୱର୍ଣ୍ଣମୟୂରୀଟାକୁ ଏପରି ବିପଦ୍‌ଜନକ ଅବସ୍ଥାରେ ପକାଇ ରଖିଛନ୍ତି କାହିଁକି ?

ମେରୀ କହିଲା : ମିଷ୍ଟର ମେହେରାଙ୍କ ଉଦ୍ଦେଶ୍ୟ ସମ୍ବନ୍ଧରେ କୌଣସି ମନ୍ତବ୍ୟ କରିହେବ ନାହିଁ । ତାଙ୍କର କାର୍ଯ୍ୟଧାରା ସମ୍ବନ୍ଧରେ ସାମାନ୍ୟତମ ସୂଚନା ବି ସେ କାହାରିକୁ ଦିଅନ୍ତି ନାହିଁ ।

ରାଜେଶ କିଛି ସମୟ ନୀରବରେ ମୁଣ୍ଡରେ ହାତ ବୁଲାଇ ସାରି କହିଲା : କିନ୍ତୁ ମିସ୍ ମେରୀ, ବୁଝିପାରୁନାହିଁ ମିଷ୍ଟର ମେହେରା କାହିଁକି ଏପରି ବିପଦ୍‌ଜନକ କାର୍ଯ୍ୟରେ ହାତ ଦେଉଛନ୍ତି । ଏଇ ସବୁ ଆଇନ୍ ବିରୋଧୀ କାମ ନ କଲେ କ'ଣ ତାଙ୍କର ଚଳନ୍ତା ନାହିଁ ।

ମେରୀ ଚାରିଆଡ଼କୁ ଚାହିଁ ରାଜେଶ ମୁହଁରେ ହାତ ଚାପି କହିଲା : ଚୁପ୍ ମିଷ୍ଟର ରାଜେଶ । ମିଷ୍ଟର ମେହେରାଙ୍କ ସମ୍ବନ୍ଧରେ ଏପରି କଥା ଆଉ କେବେ ଉଚ୍ଚାରଣ କରିବେ ନାହିଁ । ତାଙ୍କ ଆଚରଣ ସମ୍ବନ୍ଧରେ କୌଣସି ମନ୍ତବ୍ୟ ସେ ସହ୍ୟ କରିବେ ନାହିଁ । ଆପଣ ତାଙ୍କର ବିଶ୍ୱସ୍ତ କର୍ମଚାରୀ ହିସାବରେ ତାଙ୍କର ଆଦେଶ ପାଳନ କରିଚାଲିବେ । କୌଣସି ପ୍ରକାର ଦ୍ୱିଧା, ସମାଲୋଚନା ସେ ମୋଟେ ବରଦାସ୍ତ କରିବେ ନାହିଁ । ଖୁବ୍ ସାବଧାନ ମିଷ୍ଟର ରାଜେଶ ।

ରାଜେଶ ନୀରବ ରହିଲା । ମେରୀ ମୁହଁକୁ ଅସହାୟ ଭାବରେ ଅନେକ ସମୟ ଅନାଇ ରହିଲା ।

ମେରୀ କହିଲା : ମୁଁ ଜାଣେ, ଆପଣଙ୍କୁ ମିଷ୍ଟର ମେହେରାଙ୍କ ଆଦେଶ ପାଳନ କରିବା ପାଇଁ ଯଥେଷ୍ଟ କଷ୍ଟ ହେଉଥିବ । ଇଚ୍ଛା ବିରୁଦ୍ଧରେ ଆଗେଇବା ପାଇଁ ବିବେକ ଦଂଶନ କରୁଥିବ । ମୋର ବି ପ୍ରଥମେ ପ୍ରଥମେ ସେହିପରି ହେଉଥିଲା । କିନ୍ତୁ ଧୀରେ ଧୀରେ ସବୁ ଦିହସୁହା ହୋଇଯିବ । ଦେଖିବେ ଦୁଇମାସ ପରେ ଆପଣଙ୍କର ସବୁ ଠିକ୍ ହୋଇଯାଇଛି । ବିବେକ ଦଂଶନ ନାହିଁ । ମନସ୍ତାପ ନାହିଁ । ବରଂ ନୂତନ କାର୍ଯ୍ୟ କରିବା ପାଇଁ ଆଗ୍ରହ ବଢ଼ିଯାଇଛି ।

ରାଜେଶ କହିଲା : ଆପଣ କେତେଦିନ ହେବ ଏଠାରେ କାମ କରୁଛନ୍ତି ?

ମେରୀ ଆଖିଡୋଳା ଯୋଡ଼ିକୁ ଏକ ଅପୂର୍ବ ଭଂଗୀରେ ବୁଲାଇ କହିଲା : ଏସବୁ ନିଷିଦ୍ଧ କଥା ମିଷ୍ଟର ରାଜେଶ, ଆପଣ ଏଠାକାର କୌଣସି କର୍ମଚାରୀଙ୍କ ସମ୍ବନ୍ଧରେ ମଧ୍ୟ କିଛି ପଚାରିବା ନିୟମ ବିରୁଦ୍ଧ କାମ ।

ରାଜେଶକୁ ମେରୀର ମନ୍ତବ୍ୟ ଗୁଡ଼ାକ ମୋଟେ ଭଲ ଲାଗିଲା ନାହିଁ । ସେମାନେ ଏକା ସାଙ୍ଗରେ କାମ କରିବେ । ମାସ ମାସ ବର୍ଷ ବର୍ଷ ଧରି ଏକାଠି ଅଫିସ୍ କରିବେ, ଅଥଚ

କେହି କାହାରି ସମ୍ବନ୍ଧରେ କିଛି ଜାଣିବେ ନାହିଁ । କାହାରି ଆନ୍ତରିକତା ରହିବ ନାହିଁ, ଏ କିପରି କଥା ?

ରାଜେଶର ମୁଖମଣ୍ଡଳ ଆଡ଼େ ଚାହିଁ ମେରୀ କହିଲା : ଆପଣଙ୍କୁ ନିଜ ଇଚ୍ଛା ବିରୁଦ୍ଧରେ ଅନେକ କାମ କରିବାକୁ ହେବ । ତେଣୁ ସେଥିପାଇଁ ପ୍ରସ୍ତୁତ ହୋଇ ରୁହନ୍ତୁ । ହସି ହସି ଆଗେଇ ଯିବାକୁ ହେବ । ଜୀବନ ପଣ କରି ଆଦେଶ ପାଳନ କରିବାକୁ ହେବ ।

ରାଜେଶ କହିଲା : ମୁଁ ଏତେ ସହଜରେ ନିଜକୁ ମନେଇ ନେଇ ପାରୁ ନାହିଁ ମିସ୍ ମେରୀ । ବେଳେବେଳେ ମନ ବିଦ୍ରୋହୀ ହୋଇ ଉଠୁଛି । ଏବଂ....

ମେରୀ ରାଜେଶର କଥା ଶେଷ କରିବାକୁ ନ ଦେଇ କହିଲା : ଆଜି ଅଫିସ୍ ପରେ ଆପଣଙ୍କର ପ୍ରୋଗ୍ରାମ୍ କ'ଣ ଅଛି ?

: କିଛି ନାହିଁ, କାହିଁକି ?

: ଭାବୁଥିଲି ଗୋଟାଏ ପିକ୍‌ଚର ଯାଇଥାଆନ୍ତେ । ଅନେକ ଦିନ ହେବ କିଛି ପିକ୍‌ଚର ଦେଖା ହୋଇ ନାହିଁ । ମେରୀ କହିଲା ।

ରାଜେଶ କହିଲା : ଯାଇପାରେ, ମୋର କିନ୍ତୁ ପିକ୍‌ଚର ଦେଖିବା ପାଇଁ ସେପରି ଆଗ୍ରହ ନାହିଁ ।

: ଆପଣ ତା'ହେଲେ ସମୟ କଟାଉଛନ୍ତି କିପରି ? କାଲି ଅଫିସ୍ ପରେ ଆପଣ ଘରେ ବସି କ'ଣ କରୁଥିଲେ ? ମେରୀ ପଚାରିଲା ।

ହଠାତ୍ ରାଜେଶ ଆଗରେ ଗତକାଲିର ଘଟଣା ଭାସି ଉଠିଲା । ମିସେସ୍ ମେହେରା । ମେରୀ ହୁଏତ ତାଙ୍କ ସମ୍ବନ୍ଧରେ କିଛି ଜାଣିଥିବ । ସେ ଅତ୍ୟନ୍ତ ଆଗ୍ରହ ସହକାରେ ପଚାରିଲା : ମିସେସ୍ ମେହେରାଙ୍କ ସହିତ ଆପଣଙ୍କର ପରିଚୟ ଅଛି ?

ମେରୀ ନୀରବରେ କିଛି ସମୟ ରାଜେଶ ମୁହଁକୁ ଅନାଇ ରହି କହିଲା : ନା, ମୋର ପରିଚୟ ନାହିଁ । ମିସେସ୍ ମେହେରାଙ୍କୁ କିନ୍ତୁ ମିଷ୍ଟର ମେହେରା ଡାଇଭୋର୍ସ କରିଛନ୍ତି ।

ରାଜେଶ ପ୍ରଥମେ କଥାଟା ବିଶ୍ୱାସ କରିପାରିଲା ନାହିଁ । ସେ ଆଶ୍ଚର୍ଯ୍ୟ ହୋଇ କିଛି ସମୟ ମେରୀ ମୁହଁକୁ ଅନାଇ ରହି କହିଲା : ମିସେସ୍ ମେହେରା ଡାଇଭୋର୍ସଡ଼ ? କିନ୍ତୁ ସେ ମିଷ୍ଟର ମେହେରାଙ୍କ ସହିତ ବସବାସ କରୁଛନ୍ତି ଯେ !

: ହଁ, ଏବେ ମିଷ୍ଟର ମେହେରା ତାଙ୍କୁ ଆଣି ଘରେ ରଖିଛନ୍ତି । କିନ୍ତୁ ତାଙ୍କ ସହିତ ମିଷ୍ଟର ମେହେରାଙ୍କର କିଛି ସମ୍ବନ୍ଧ ନାହିଁ ।

: ବଡ଼ ଅଦ୍ଭୁତ ସଂପର୍କ ତ !

: ହଁ, ଖାଲି ଅଦ୍ଭୁତ ସଂପର୍କ ନୁହେଁ, ମିସେସ୍ ମେହେରା ଏକ ରହସ୍ୟମୟ ଚରିତ୍ର । ଅନେକ ଦିନ ମିସେସ୍ ମେହେରା ସ୍ୱାମୀଙ୍କୁ ଛାଡ଼ି ଅନ୍ୟତ୍ର ବସବାସ କରୁଥିଲେ । ମିଷ୍ଟର ମେହେରା ଡାଇଭୋର୍ସ କରିବା ପରେ ତାଙ୍କୁ ଅନେକ ଟଙ୍କା ଦେଇଥିଲେ । କିନ୍ତୁ ମିସେସ୍ ମେହେରା ୨।୩ ବର୍ଷ ମଧ୍ୟରେ ସବୁ ଟଙ୍କା ଚଳୁ କରିଦେଇ ଏକପ୍ରକାର ରାସ୍ତାରେ ଠିଆ ହେଲେ । ଅନେକ ସମୟରେ ମିସେସ୍ ମେହେରାଙ୍କୁ ମାତାଲ ଅବସ୍ଥାରେ ପୋଲିସ୍ ରାସ୍ତାକଡ଼ରୁ ଗୋଟେଇ ନେଲା । ବାରମ୍ବାର ଏଇସବୁ ଖବର ଯାଇ ମିଷ୍ଟର ମେହେରାଙ୍କ କାନରେ ବାଜିଲା । ଶେଷରେ ସେ ବାଧ୍ୟ ହୋଇ ମିସେସ୍ ମେହେରାଙ୍କୁ ଘରେ ଆଣି ରଖିଛନ୍ତି । କିନ୍ତୁ ଦୁଇଜଣଙ୍କ ମଧ୍ୟରେ କଥାବାର୍ତ୍ତା ନାହିଁ କିମ୍ବା କୌଣସି ସଂପର୍କ ନାହିଁ ।

ରାଜେଶ ମେରୀ ମୁହଁରୁ ମିସେସ୍ ମେହେରାଙ୍କ ସବୁ କଥା ଶୁଣି କାବା ହୋଇଯାଇଥିଲା ।

ମେରୀ ପୁଣି କହିଲା : କିନ୍ତୁ ଆଜି ଅବଶ୍ୟ ମିସେସ୍ ମେହେରା ଏକ କରୁଣ ଚରିତ୍ର । କିନ୍ତୁ ଏକଦା ସେ ଏକ ସାଂଘାତିକ ମହିଳା ଥିଲେ । ଅବଶ୍ୟ ତାଙ୍କ ସମ୍ବନ୍ଧରେ ଏସବୁ ମୋର ଶୁଣା କଥା । ମିଷ୍ଟର ମେହେରା ତାଙ୍କ ସ୍ତ୍ରୀଙ୍କ ସମ୍ବନ୍ଧରେ କେବେ କିଛି କୁହନ୍ତି ନାହିଁ । କିନ୍ତୁ ହଠାତ୍ ଆପଣ ମିସେସ୍ ମେହେରାଙ୍କ କଥା ଉଠାଇଲେ କାହିଁକି ?

ରାଜେଶ ଶାନ୍ତ ସ୍ୱରରେ କହିଲା : କାଲି ଭଦ୍ରମହିଳାଙ୍କ ସହିତ ମୋର ଦେଖା ହୋଇଥିଲା । ତାଙ୍କ ଗାଡ଼ିଟା ଗ୍ୟାରେଜ୍‌ରେ ଦିଆ ହୋଇଥିବାରୁ ସେ ମୋତେ ଅନୁରୋଧ କରିଥିଲେ ଟିକିଏ ବାହାରେ ଛାଡ଼ିଦେଇ ଆସିବା ପାଇଁ ।

: ଆପଣ ଛାଡ଼ିଦେଇ ଆସିଥିଲେ ? ମେରୀ ଆଗ୍ରହ ସହକାରେ ପଚାରିଲା ।

: ହଁ ।

: କିନ୍ତୁ ଆପଣ ଆଉ କେବେ ମିସେସ୍ ମେହେରାଙ୍କ କଥା ଶୁଣିବେ ନାହିଁ । ମୁଁ ଶୁଣିଛି ଏବେ ମିସେସ୍ ମେହେରା ପ୍ରକୃତିସ୍ଥ ନୁହନ୍ତି । ତାଙ୍କର ଗାଡ଼ି ନାହିଁ କି ଡ୍ରାଇଭର ନାହିଁ । ଅବଶ୍ୟ ଅତୀତରେ ସବୁ ଥିଲା । କିନ୍ତୁ ଆଜି ସେ ସେଇ ସ୍ମୃତିଚାରଣ କରୁଛନ୍ତି । ଆପଣ ମିସେସ୍ ମେହେରାଙ୍କଠାରୁ ସାବଧାନ ରହିବେ । ଏବେ ବି ମିସେସ୍ ମେହେରାଙ୍କର ଗତିବିଧି ସଂଦେହଜନକ ।

ରାଜେଶ ମେରୀ ମୁହଁରୁ ଯେପରି ରୂପକଥା ଶୁଣୁଥିଲା ।

ମେରୀ ପୁଣି କହିଲା : ମିସେସ୍ ମେହେରାଙ୍କ ସମ୍ବନ୍ଧରେ ମୁଁ ଅନେକ କଥା ଶୁଣିଛି । ତାଙ୍କ ସମ୍ବନ୍ଧରେ ମୋ ମନରେ ଅଶେଷ କୌତୂହଳ । ଭଦ୍ରମହିଳାଙ୍କୁ ଦେଖିଛି ମଧ୍ୟ, କିନ୍ତୁ କଥାବାର୍ତ୍ତା କରିବାର ସୁଯୋଗ ପାଇ ନାହିଁ । କାଲି ଆପଣ ତାଙ୍କୁ ଗାଡ଼ିରେ ନେଇ କେଉଁଠି ଛାଡ଼ିଲେ ?

ରାଜେଶ ମନରେ କିନ୍ତୁ ମିସେସ୍ ମେହେରା ଏକ କରୁଣାର ପ୍ରତିମୂର୍ତ୍ତି ହୋଇ ଠିଆ ହୋଇଥିଲେ । ମେରୀ ଆଗରେ ଗତ ରାତିର ଘଟଣା ବର୍ଣ୍ଣନା କରିବା ପାଇଁ ରାଜେଶର ଇଚ୍ଛା ନଥିଲା । ତଥାପି ସେ କହିଲା : ମିସେସ୍ ମେହେରାଙ୍କୁ ମୁଁ ନେଇ ଗ୍ରେଟ୍‌ଇଷ୍ଟର୍ଣ୍ଣ ହୋଟେଲ୍‌ରେ ଛାଡ଼ିଥିଲି ।

: ତା'ପରେ ? ମେରୀ ମନରେ ଅଶେଷ ଆଗ୍ରହ ।

: ମିସେସ୍ ମେହେରା ମୋତେ ତାଙ୍କ ସହିତ ଯିବାକୁ କହିଲେ ।

: ଆପଣ ଗଲେ ?

: ହଁ ।

: ସେଉଠୁ ।

: ମିସେସ୍ ମେହେରା ମୋତେ ହୋଟେଲର ଏକ ସୁସଜ୍ଜିତ କକ୍ଷକୁ ନେଇଗଲେ । ପେଟଭରି ଖୁଆଇଲେ । ପାନୀୟ ଦେଲେ ଏବଂ...

ରାଜେଶ ଦେଖିଲା ମେରୀ ମୁହଁରେ ଅଶେଷ ଆଗ୍ରହର ଚିହ୍ନ ଫୁଟି ଉଠିଛି । ସେ ଚଞ୍ଚଳ କଣ୍ଠରେ ପ୍ରଶ୍ନ କଲା : ସେଉଠୁ ?

ରାଜେଶ ସ୍ମିତ ହସି କହିଲା : ନା ଆଉ କିଛି ନୁହେଁ । ପାନ ଭୋଜନ ପରେ ମିସେସ୍ ମେହେରା ମୋତେ ଅନେକ ଧନ୍ୟବାଦ ଦେଇ ବିଦାୟ ଦେଲେ । ମୁଁ ଫେରି ଆସିଲି ।

ରାକେଶ ଲକ୍ଷ୍ୟ କଲା : ମେରୀ ମୁହଁରୁ ଆଗ୍ରହର ଫୁଲ ସବୁ ଝରିପଡ଼ିଚି । ସେ ହାତଘଡ଼ିକୁ ଚାହିଁ କହିଲା : ଟିଫିନ୍ ଟାଇମ୍ ଓଭର ହୋଇଯାଇଛି । ଏଥର ଚାଲନ୍ତୁ ।

\+ + +

କାନ୍ଥ ଘଡ଼ିରେ ଚାରିଟା ବାଜିଲା ।

ମୃଗାଙ୍କ ଚୌଧୁରୀ ଫାଇଲ୍ ବନ୍ଦ କରି ଦରଜା ଆଡ଼କୁ ଚାହିଁଲେ । ଚାରିଟାବେଳେ ଆଜି ପୁଣି ମିଟିଂ ଅଛି । ପୋଲିସ୍ ଅଫିସରମାନେ ଅନୁସନ୍ଧାନର ଅଗ୍ରଗତି ସମ୍ବନ୍ଧରେ ରିପୋର୍ଟ ଦେବେ ଏବଂ ନୂତନ କର୍ମପଦ୍ଧତି ନିର୍ଦ୍ଧାରିତ ହେବ ।

ପ୍ରଥମେ ଇନିସ୍‌ପେକ୍ଟର ବରଦା ଚକ୍ରବର୍ତ୍ତୀ ହାସ୍ୟମୁଖରେ ପ୍ରବେଶ କଲେ ।

ତାଙ୍କ ପଛେ ପଛେ ଇନିସ୍‌ପେକ୍ଟର ସାଜାଦ୍ ଏବଂ ଅନ୍ୟମାନେ ।

ପାଞ୍ଚ ମିନିଟ୍ ଭିତରେ ସମ୍ଭାବିତ ସମସ୍ତ ଅଫିସରମାନେ ଉପସ୍ଥିତ ହୋଇଯାଇଥିଲେ ।

ମୃଗାଙ୍କ ଚୌଧୁରୀ କହିଲେ : ଆପଣମାନଙ୍କ କଥା ଶୁଣିବା ପୂର୍ବରୁ ମୁଁ ଆପଣମାନଙ୍କୁ ଗୋଟିଏ ସମ୍ବାଦ ଦେଉଛି । ସମ୍ବାଦଟି ହେଉଛି 'ସ୍ୱର୍ଣ୍ଣମୟୂରୀ' ଆମର ହସ୍ତଗତ ହୋଇଛି ।

ମୁହୂର୍ତ୍ତକ ପାଇଁ ଘରେ ଯେପରି ନିସ୍ତବ୍‌ଧତା ରାଜତ୍ୱ କଲା ।

ଏଥର ମୃଗାଙ୍କ ଚୌଧୁରୀ, ଡ୍ରୟାରରୁ ସ୍ୱର୍ଣ୍ଣମୟୂରୀଟି ବାହାର କରି ଟେବୁଲ ଉପରେ ଥୋଇ ସ୍ମିତ ହସି କହିଲେ : ଏଇ ସେଇ ସ୍ୱର୍ଣ୍ଣମୟୂରୀ, ଯାହାର ସନ୍ଧାନରେ ଆପଣମାନେ ବିବ୍ରତ ହୋଇ ଘୂରି ବୁଲୁଛନ୍ତି ।

ଜଣେ ଦୁଇଜଣ ଅଫିସର ଚେଆରରୁ ଉଠି ସ୍ୱର୍ଣ୍ଣମୟୂରୀଟିକୁ ଦେଖିବା ଉଦ୍ଦେଶ୍ୟରେ ଆଗେଇ ଯାଇଥିଲେ । କିନ୍ତୁ ମୃଗାଙ୍କ ଚୌଧୁରୀ ବାଧା ଦେଇ କହିଲେ : ଆପଣମାନେ ଶୁଣି ହତାଶ ହେବେ ଯେ, ଏହି ସ୍ୱର୍ଣ୍ଣମୟୂରୀଟି ଅସଲ ନୁହେଁ, ଏଇଟି ନକଲ ।

ପୁଣି ମୁହୂର୍ତ୍ତକ ପାଇଁ ଘରେ ନିସ୍ତବ୍‌ଧତା ରାଜତ୍ୱ କଲା । ମୃଗାଙ୍କ ଚୌଧୁରୀ ଗମ୍ଭୀର କଣ୍ଠରେ କହିଲେ : କିନ୍ତୁ ତଥାପି ଏହା ଆମ ପାଇଁ ଏକ ଶୁଭ ସମ୍ବାଦ । ଏହି ନକଲ ସ୍ୱର୍ଣ୍ଣମୟୂରୀ ଦେଖି ଆମେ ବୁଝିପାରୁଛେ ଯେ, କୌଣସି ଜଣେ ଶିଳ୍ପୀଙ୍କ ସହଯୋଗରେ ଏହା ପ୍ରସ୍ତୁତ ହୋଇଛି ଉଦ୍ଦେଶ୍ୟମୂଳକ ଭାବରେ ଏବଂ ଏହି ଶିଳ୍ପୀ ଯେ ଜଣେ ସ୍ୱର୍ଣ୍ଣ-ଶିଳ୍ପୀ ଏଥିରେ ସନ୍ଦେହ ନାହିଁ । ଆହୁରି ମଧ୍ୟ ଆମେ ଚିନ୍ତା କରିପାରିବା ଯେ ଏହି ପଦାର୍ଥଟି ଏଇ କଲିକତାରେ ପ୍ରସ୍ତୁତ ହୋଇଛି । କାରଣ କଲିକତାରେ ହିଁ ନିପୁଣ ସ୍ୱର୍ଣ୍ଣଶିଳ୍ପୀଙ୍କ ସଂଖ୍ୟା ଅଧିକ । ତେଣୁ ଆପଣମାନଙ୍କର ଆଉ ଗୋଟିଏ ଦାୟିତ୍ୱ ବଢ଼ିଗଲା । ଗୋପନରେ ଏହି ସ୍ୱର୍ଣ୍ଣମୟୂରୀର ଶିଳ୍ପୀକୁ ବର୍ତ୍ତମାନ ଅନୁସନ୍ଧାନ କରିବାକୁ ହେବ । ଯଦି ସେଇ ଶିଳ୍ପୀକୁ ଆମେ ଖୋଜି ପାଇବା ତେବେ ଅସଲ ସ୍ୱର୍ଣ୍ଣ ମୟୂରୀର ହରଣକାରୀକୁ ଆମେ ଅକ୍ଳେଶରେ ଆବିଷ୍କାର କରିପାରିବା ।

ଇନିସ୍‌ପେକ୍ଟର ବରଦା ଚକ୍ରବର୍ତ୍ତୀ କହିଲେ : ତା'ହେଲେ ସାର୍ ଏଇ ନକଲ ସ୍ୱର୍ଣ୍ଣମୟୂରୀ ସହିତ ମିଃ ଶର୍ମାଙ୍କର ହତ୍ୟାର କିଛି ସଂପର୍କ ନାହିଁ ?

: ହୁଏତ ଥାଇପାରେ । କିନ୍ତୁ ଆମର ସେ ଦିଗରେ ବର୍ତ୍ତମାନ ଚିନ୍ତା ନ କଲେ ଚଳିବ । ମିଷ୍ଟର ହାଲ୍‌ଦାର୍ ! ଆପଣ ବରଂ ଏଇ ଦାୟିତ୍ୱଟା ନିଅନ୍ତୁ । କାରଣ ଗତବର୍ଷ 'ସରକାର ଜୁଏଲାରୀ ଡକେଇତି' ରହସ୍ୟ ଆପଣ ଉଦ୍‌ଘାଟନ କରିଥିଲେ । ସେ ଲାଇନ୍‌ରେ ତଦନ୍ତ

କରିବାକୁ ଯାଇ ବହୁ ଜୁଏଲାର ଓ ଜୁଏଲ ଶିଳ୍ପୀମାନଙ୍କର ଖୁଣ୍ଟିନାଟି ଆପଣ ଜାଣିଛନ୍ତି । ମୁଁ ଭାବୁଛି ଏହି ନକଲ ସ୍ୱର୍ଣ୍ଣ ମୟୂରୀ ଯଦି କଲିକତାରେ ନିର୍ମିତ ହୋଇଥାଏ, ତେବେ ଆପଣ ଏହାର ଶିଳ୍ପୀକୁ ଖୋଜି ବାହାର କରିପାରିବେ ।

ସବ୍‌ଇନିସ୍‌ପେକ୍ଟର ରଣଜିତ୍ ହାଲ୍‌ଦାର ଠିଆ ହୋଇ କହିଲେ : ଇଏସ୍ ସାର୍ । ଆଶା କରୁଚି ମୁଁ ପାରିବି ।

ଇନିସ୍‌ପେକ୍ଟର ସାଜାଦ୍ ଠିଆ ହୋଇ କହିଲେ : ଆପଣ ଏଇ ନକଲ ସ୍ୱର୍ଣ୍ଣ ମୟୂରୀଟିକୁ କେଉଁଠୁ ପାଇଲେ ?

: ସ୍ୱର୍ଣ୍ଣମୟୂରୀ ନିଜ ଇଚ୍ଛାରେ ପୋଲିସ୍ କଷ୍ଟୋଡ଼ି ଭିତରକୁ ଉଡ଼ି ଆସିଛି । ମୃଗାଙ୍କ ଚୌଧୁରୀ ବ୍ୟଙ୍ଗ କଣ୍ଠରେ କହିଲେ । ଆଜି କେହି ଜଣେ ଅପରିଚିତ ବ୍ୟକ୍ତି ଗୋଟିଏ ସୁନ୍ଦର ପ୍ୟାକେଟ୍‌ରେ ମୋ ନାଁ ଲେଖି 'ଏକ୍ସମାସ ଗିଫ୍‌ଟ' ଭାବରେ ଥାନାରେ ଦେଇ ଯାଇଛି ଏବଂ ସ୍ଲିପ୍ ଖଣ୍ଡେ ଲେଖି ଯାଇଛି, ନକଲ ସ୍ୱର୍ଣ୍ଣମୟୂରୀଟି ଦେଇଗଲି, ଅସଲ ସ୍ୱର୍ଣ୍ଣମୟୂରୀଟିକୁ ଖୋଜି ବାହାର କରିବାର ପଥ ସୁଗମ କରିବା ପାଇଁ ।

ମୃଗାଙ୍କ ଚୌଧୁରୀ ନୀରବ ହେଲେ । ଟେବୁଲ ଉପରୁ ସ୍ୱର୍ଣ୍ଣ ମୟୂରୀଟି ଉଠାଇ ନେଇ ଡ୍ରୟାରରେ ରଖିଲେ ।

ଇନିସ୍‌ପେକ୍ଟର ସାଜାଦ୍ ଆଡ଼େ ଚାହିଁ ପୁଣି କହିଲେ : ଶର୍ମା ସମ୍ବନ୍ଧରେ ଆପଣ କିଛି ସଂବାଦ ପାଇଲେ ମିଷ୍ଟର ସାଜାଦ୍ !

ସାଜାଦ୍ ଉଠି ଠିଆ ହେଲେ । କହିଲେ : କିଛି ପାଇଛି ସାର୍ । କିନ୍ତୁ ଯେତେ ସହଜ ହେବ ବୋଲି ଭାବିଥିଲି, ସେତେଟା ସହଜ ନୁହେଁ । ଇସ୍‌ମାଇଲ ଗ୍ୟାଙ୍ଗର କେତେକ ପୁରୁଣା ଦାଗୀଙ୍କୁ ମୁଁ ଚିହ୍ନେ । ସେମାନଙ୍କ ପାଖକୁ ଶର୍ମାର ଫଟୋ ନେଇ ଆଇଡ଼େଣ୍ଟିଫାଇ କରିବାକୁ ଯାଇଥିଲି । କିନ୍ତୁ ସେମାନେ କେହି ଚିହ୍ନିପାରିଲେ ନାହିଁ । ଅବଶ୍ୟ ଜଣେ ଗୋଟାଏ ସଂବାଦ ଦେଲା । କିନ୍ତୁ ସେ ସଂବାଦଟା ଅବିଶ୍ୱାସ୍ୟ ।

: କିପରି ?

: ସେ କହିଲା ଯେ ଏଇ ଶର୍ମା ନାମଧାରୀ ଲୋକଟି ଗୋଟିଏ ପଲିଟିକାଲ ପାର୍ଟିର ଏଜେଣ୍ଟ । ସରକାରୀ ମହଲରେ ତା'ର ପ୍ରଚୁର ପ୍ରତିପତ୍ତି । ଉପର ମହଲାରେ ତା'ର ଚିହ୍ନା ପରିଚୟ । ଦିଲ୍ଲୀର ବହୁ ମନ୍ତ୍ରୀ ଓ ଏମ୍.ପି.ମାନଙ୍କୁ ସେ ବ୍ଲାକ୍‌ମେଲ୍ କରି ପ୍ରଚୁର ଅର୍ଥ ଉପାର୍ଜନ କରେ । ତା' ନାଁ କିନ୍ତୁ ସେଠାରେ ମିଃ ଶର୍ମା ନୁହେଁ, ମିଃ ସକ୍‌ସେନା ।

ମୃଗାଙ୍କ ଚୌଧୁରୀ ଟିକିଏ ଚିନ୍ତା କଲେ । କହିଲେ : ହଁ, ସମ୍ବାଦଟା ଅବିଶ୍ୱାସ୍ୟ ନିଶ୍ଚୟ । କାରଣ ଏପରି ଏକ ବିଖ୍ୟାତ ଲୋକକୁ ଦିଲ୍ଲୀ ପୋଲିସ୍ ନିଶ୍ଚୟ ଚିହ୍ନି ଥାଆନ୍ତେ । ତା'ଛଡ଼ା ଆପଣଙ୍କ ସୋର୍ସଟା କ'ଣ କିଛି ପରିମାଣରେ ବିଶ୍ୱାସଯୋଗ୍ୟ ?

ସାଜାଦ୍ କହିଲେ : ସୋର୍ସଟା ମନ୍ଦ ନୁହେଁ । କିନ୍ତୁ ସମ୍ବାଦଟା ଅବିଶ୍ୱାସ୍ୟ । ତେବେ ସେ ଗ୍ୟାଙ୍ଗ୍‌ର ଆଉ ଜଣେ ଲୋକକୁ ମୁଁ ଖୋଜୁଛି । ସେ ବହୁ ପୁରୁଣା ଏବଂ ଓସ୍ତାଦ୍ ଲୋକ । ତାକୁ ପାଇଲେ ଆଶା କରୁଛି ଶର୍ମାର ଅସଲ ପରିଚୟଟା ମିଳିଯିବ । ଆଉ ଦିଲ୍ଲୀରୁ କିଛି ଖବର ଆସିଲା ?

: ନା, ଏଯାଏ ଆସି ନାହିଁ । ସେମାନେ ବୋଧହୁଏ ଆଉ କିଛି ଖବର ପାଇ ନାହାନ୍ତି । ପାଇଥିଲେ ନିଶ୍ଚୟ ଜଣାଇ ଥାଆନ୍ତେ । ମୃଗାଙ୍କ ଚୌଧୁରୀ କହିଲେ ।

ବରଦା ଚକ୍ରବର୍ତ୍ତୀ ଠିଆ ହୋଇ କହିଲେ : ହୋଟେଲ ଇଣ୍ଟରନାସନାଲରେ ସାର୍ ଗୋପନରେ ପ୍ରାୟ ସବୁ ଘର ଦେଖା ଶେଷ ହୋଇଯାଇଛି । ପରମାନେଣ୍ଟ ବୋର୍ଡ଼ରମାନଙ୍କ ଘର ମଧ୍ୟ ଦେଖି ନିଆ ହୋଇଛି । ସେପରି କିଛି ଗୋପନ ସୂତ୍ର କେଉଁଠୁ ମିଳିଲା ନାହିଁ । ତେବେ ଖଣ୍ଡେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଚିଠି ମିଳିଛି । ଆଶା କରୁଛି ଏଇ ଚିଠି ଖଣ୍ଡିକ ଆମର ଏହି କେସ୍‌ରେ ତଦନ୍ତ ପାଇଁ ଆଂଶିକ ଭାବରେ ସହାୟତା କରିପାରେ । ବରଦା ଚକ୍ରବର୍ତ୍ତୀ ଆଗେଇ ଯାଇ ଚିଠି ଖଣ୍ଡିକ ମୃଗାଙ୍କ ଚୌଧୁରୀଙ୍କ ହାତକୁ ବଢ଼ାଇ ଦେଲେ ।

ଖଣ୍ଡିଏ ଚିଠି । ସାଦା ଏକ ଦାମୀ କାଗଜରେ ଟାଇପ୍ ହୋଇଛି । ତାରିଖ ନାହିଁ ।

ପ୍ରିୟ ବନ୍ଧୁ,

ଆପଣଙ୍କ ଚିଠି, ଫଟୋ, ସବିଶେଷ ବିବରଣୀ ଏବଂ ଆନୁମାନିକ ମୂଲ୍ୟ ଜଣାଇ କ୍ଲାଏଣ୍ଟକୁ ଚିଠି ଲେଖିଛି । ମୋର ବିଶ୍ୱାସ ସେ ରାଜି ହୋଇଯିବେ । ଭାରତୀୟ ପ୍ରାଚୀନ ଭାସ୍କର୍ଯ୍ୟ ଏବଂ ଜୁଏଲାରୀ ଇତ୍ୟାଦିର ଐତିହାସିକ ମୂଲ୍ୟ ବିବେଚନା କରି ଆମର କ୍ଲାଏଣ୍ଟ ଯେକୌଣସି ମୂଲ୍ୟରେ କିଣିବା ପାଇଁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଏ କ୍ଷେତ୍ରରେ ଆପଣଙ୍କର ଚାହିଦା ଅନୁପାତରେ ମୁଁ ଅଧିକ ମୂଲ୍ୟ ଆଦାୟ କରି ଦେଇ ପାରିବି । କିନ୍ତୁ ଆପଣଙ୍କର ଏହି ପଦାର୍ଥ ଉପରେ ଆଉ ଜଣେ ଏଜେଣ୍ଟଙ୍କ ଠୁରେ ମୋ କ୍ଲାଏଣ୍ଟଙ୍କ ପାଖକୁ ମଧ୍ୟ କୋଟେସନ ଆସିଛି । ଆଶା କରୁଛି ଆପଣ ଏ ସମ୍ବନ୍ଧରେ ଅନୁସନ୍ଧାନ କରି ଦେଖିବେ । ଭାରତବର୍ଷରୁ ଯେଉଁ ହାରରେ ପ୍ରାଚୀନ ଭାସ୍କର୍ଯ୍ୟ ଇତ୍ୟାଦି ଗୁପ୍ତପଥରେ ଆମ ଦେଶକୁ ଆସୁଛି, ଆଉ ଏଠାକାର ତଥାକଥିତ ବଡ଼ଲୋକମାନେ ଯେଉଁ ହାରରେ ଆରିଷ୍ଟୋକ୍ରେସିର ପ୍ରତିଯୋଗିତା ଆରମ୍ଭ କରିଛନ୍ତି, ଆପଣ ଉଦ୍ୟମ କଲେ ମୋ ଜରିଆରେ ଯଥେଷ୍ଟ ଅର୍ଥ ଉପାର୍ଜନ କରିପାରିବେ । କିନ୍ତୁ ଆମର ଅସୁବିଧା କେଉଁଠି ହେଉଛି ଜାଣନ୍ତି ? ଆପଣଙ୍କ ଭାରତବର୍ଷର ବହୁ ବୁଦ୍ଧିଜୀବୀ ଏପରିକି ଉଚ୍ଚପଦସ୍ଥ ସରକାରୀ ଲୋକମାନେ ଏ ଲାଇନ୍‌ରେ ଆଗେଇ ଆସିଲେଣି । ସେମାନେ ସିଧାସଳଖ ଭାବରେ କାରବାର ଆରମ୍ଭ କରିଦେଉଛନ୍ତି ।

ଯାହାହେଉ ଆପଣ ଚେଷ୍ଟା କରିବେ । ବିଶେଷ କରି ଆପଣଙ୍କ ପ୍ରତିଦ୍ୱନ୍ଦ୍ୱୀ ଆପଣଙ୍କର କ୍ଷତି ସାଧନ କରି ନ ପାରିଲେ ଏଇ ପଦାର୍ଥଟି ପାଇଁ ଯଥେଷ୍ଟ ମୂଲ୍ୟ ମୁଁ ଆପଣଙ୍କୁ ଦିଆଇ ଦେବି ।

ଆଉ ଯେଉଁ କୋଟେସନଟି ଅନ୍ୟ ଜଣେ ଭାରତବର୍ଷରୁ ପଠାଇଛି, ତା'ର ମୂଲ୍ୟ ସେମାନେ ଆପଣଙ୍କ ମୂଲ୍ୟଠାରୁ ଯଥେଷ୍ଟ କମ୍ ମାଗିଛନ୍ତି । ତେବେ ମୁଁ ସେ କୋଟେସନ୍‌ଟି ଦିଆଇ ଦେଇ ନାହିଁ । ଆପଣ ଉଦ୍ୟମ କରି ଯଥା ସମ୍ଭବ ଶୀଘ୍ର ମାଲ୍ ପ୍ରାପ୍ତିର ସମ୍ବାଦ ଜଣାଇଲେ, ମୁଁ କାର୍ଯ୍ୟରେ ଅଗ୍ରସର ହେବି । ଆପଣଙ୍କର ଶୁଭକାମନା କରି ରହିଲି ।

ମୃଗାଙ୍କ ଚୌଧୁରୀ ଚିଠିଟି ଶେଷ କରି, ତଳେ କାଳିରେ ଦସ୍ତଖତ ହୋଇଥିବା ନାମଟି ପଢ଼ିବାକୁ ଚେଷ୍ଟା କଲେ । କିନ୍ତୁ ତାହା ଏପରି ତ୍ରିଭୁଜାକାର ଯେ, କେତୋଟି ଲାଇନ୍‌ର ସମଷ୍ଟି ଛଡ଼ା ଆଉ କିଛି ପଢ଼ି ହେଉ ନଥିଲା । କିନ୍ତୁ ମୃଗାଙ୍କ ଚୌଧୁରୀଙ୍କ ମୁହଁରେ ଏକ ବିଜୟର ଦୀପ୍ତି ଫୁଟି ଉଠିଥିଲା । ସେ କହିଲେ : ଧନ୍ୟବାଦ ମିଷ୍ଟର ଚକ୍ରବର୍ତ୍ତୀ । ଏ ଚିଠି ଖଣ୍ଡିକ ଆମ ପାଇଁ ନିଶ୍ଚୟ ମୂଲ୍ୟବାନ । ଏଥର ଏହି ଚିଠିର ମାଲିକର ଇତିବୃତ୍ତି ସମ୍ବନ୍ଧରେ କୁହନ୍ତୁ ।

ବରଦା ଚକ୍ରବର୍ତ୍ତୀ କହିଲେ : ଚିଠିଟା ଅବଶ୍ୟ ମୁଁ ସେଇ ହୋଟେଲ ଇଣ୍ଟର ନାସନାଲରୁ ଆବିଷ୍କାର କରିଛି, କିନ୍ତୁ ଏପରି ଜାଗାରୁ ଏହା ମିଳିଛି, ଯେଉଁଠି ଚିଠିର ମାଲିକ ସମ୍ବନ୍ଧରେ ସଠିକ୍ ସମ୍ବାଦ ସଂଗ୍ରହ କରିବା ସମ୍ଭବ ହେଉ ନାହିଁ ।

ଚିଠିଟି ହୋଟେଲ ଇଣ୍ଟରନାସନାଲର ମଇଳା ଗଦା ଭିତରୁ ମୁଁ ଆବିଷ୍କାର କରିଛି । ପ୍ରତି ଘର ସଫା ହେବା ପରେ ମଇଳା କାଗଜପତ୍ର ଯାଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଜମା ହୁଏ । ସପ୍ତାହକ ପରେ ସେଗୁଡ଼ିକ ବିକ୍ରି କରିଦିଆହୁଏ । ମୁଁ ସେଇ ମଇଳା ସ୍ତୂପ ଭିତରୁ ସ୍ୱର୍ଣ୍ଣମୟୂରୀର ସନ୍ଧାନ କରିବାକୁ ଯାଇ ଏ ଚିଠି ଖଣ୍ଡିକ ପାଇଲି । କିନ୍ତୁ ଏଇ ଚିଠିର ଅସଲ ମାଲିକର ଠିକଣା ସଂଗ୍ରହ କରିପାରୁ ନାହିଁ ।

କିନ୍ତୁ ଏଇ ଚିଠି ସମ୍ବନ୍ଧରେ ସେଠାକାର ଜଣେ କର୍ମଚାରୀ କୁହେ ଯେ, ତା'ର ମନେହେଉଛି ଏହି ଚିଠିଟି ୭ ନମ୍ବର ରୁମ୍‌ର ହେବ । ଶର୍ମାର ହତ୍ୟା ପରେ ୭ ନମ୍ବର ରୁମ୍‌ଟି ବନ୍ଦ ଥିଲା । ଗତକାଲି ସେ ରୁମ୍‌ଟି ଖୋଲା ହୋଇ ପରିଷ୍କାର ହୋଇଛି । ଯିଏ ସେ ଘର ଝାଡୁ ଦେଇ ପରିଷ୍କାର କରିଥିଲା, ସେଇ କର୍ମଚାରୀଟିର ବକ୍ତବ୍ୟ ହେଉଛି, ସେ ୭ ନମ୍ବର ରୁମ୍ ସଫା କଲାବେଳେ କେବଳ ଖଣ୍ଡେ କାଗଜ ଆଉ କିଛି ଧୂଳି ଝାଡ଼ିଥିଲା । ଚାରିଭାଙ୍ଗ ହୋଇ ଗୋଟିଏ କୋଣକୁ ପଡ଼ିଥିବା ଏଇ କାଗଜଟିକୁ ସେଇ କର୍ମଚାରୀଟି କୌତୂହଳୀ ହୋଇ ଖୋଲି ଦେଖିଥିଲା । ତା'ର ମନେହେଉଥିଲା, କାଳେ ଟଙ୍କା ପଇସା କିଛି ଭିତରେ ଅଛି କି । କିନ୍ତୁ ସେ ହତାଶ ହୋଇଥିଲା । ତାହା ଖଣ୍ଡିଏ ଟାଇପ୍ କରା କାଗଜ ଛଡ଼ା ଆଉ କିଛି ନୁହେଁ । ତେଣୁ ସେ କାଗଜ ଖଣ୍ଡିକ ଓ ଧୂଳିତକ ଗୋଟେଇ ନେଇ ମଇଳା ଗଦାରେ ପକାଇ ଦେଇଥିଲା । ସେଇ କର୍ମଚାରୀଟି ଚିଠିଟିକୁ ଚିହ୍ନିଲା ଏବଂ ନିଃସନ୍ଦେହ ଭାବରେ କହିଲା ଯେ- ହଁ, ମୁଁ ଏଇ କାଗଜ ଖଣ୍ଡିକ ୭ ନମ୍ବର ରୁମ୍‌ରେ ପାଇଥିଲି ।

ବରଦା ଚକ୍ରବର୍ତ୍ତୀ କଥା ଶେଷ କରି ନୀରବ ହେଲେ ।

କିଛି ସମୟର ନୀରବତା ପରେ ମୃଗାଙ୍କ ଚୌଧୁରୀ କହିଲେ : ତା'ହେଲେ ଏ ଚିଠି ରହସ୍ୟ ଆମକୁ ଏଇ ଭାବରେ ସମାଧାନ କରିବାକୁ ହେବ ଯେ, ଏ ଚିଠିଟି ମୃତ ଶର୍ମାର କିମ୍ବା ଶର୍ମାର ହତ୍ୟାକାରୀ ସେଇ ଅଜ୍ଞାତ ଲୋକଟିର ।

ସାଜାଦ୍ ଉଠି କହିଲେ : କିନ୍ତୁ ସାର୍, ଯଦି କେହି କୁହେ ଯେ, ଏ ଚିଠିଟି ଶର୍ମାର ନୁହେଁ କିମ୍ବା ଶର୍ମାର ହତ୍ୟାକାରୀର ନୁହେଁ, ଏମାନଙ୍କ ଆଗରୁ ଚିଠିଟି ୭ ନମ୍ବର ରୁମ୍‌ରେ ପଡ଼ି ରହିଥଲା ।

ମୃଗାଙ୍କ ଚୌଧୁରୀ କହିଲେ : ନା, ତାହା ହୋଇପାରେ ନାହିଁ । କାରଣ ପ୍ରତିଦିନ ହୋଟେଲର ସବୁ ରୁମ୍‌ଗୁଡ଼ିକ ପରିଷ୍କାର ହୁଏ ଏବଂ ଫ୍ଲୋର୍‌ଗୁଡ଼ିକ ପାଣି କନାରେ ପୋଛା ହୁଏ । ତେଣୁ ଏ ଦୃଷ୍ଟିରୁ ଆମକୁ ବିବେଚନା କରିବାକୁ ହେବ ଯେ, ଶର୍ମାର ମୃତ୍ୟୁ ପୂର୍ବରୁ ଏ ଚିଠି ଖଣ୍ଡିକ ୭ ନମ୍ବର ରୁମ୍‌ରେ ରହି ନ ପାରେ । ତେବେ ଏ ଚିଠିର ବିଷୟବସ୍ତୁ ଯାହା, ଖୋଲାଖୋଲି ଭାବରେ ଅସଲ ପଦାର୍ଥଟିର ନାମ ଲେଖା ନଥିଲେ ବି ଅନୁମାନ ହେଉଛି, ଏ ଚିଠିଟି ଏଇ ସ୍ୱର୍ଣ୍ଣମୟୂରୀ ସମ୍ବନ୍ଧୀୟ । ଖୁବ୍ ସମ୍ଭବତଃ ଏ ଚିଠିଟି ଆମେରିକାର କୌଣସି ଜଣେ ସାହେବ ଲେଖିଛନ୍ତି । ସ୍ୱର୍ଣ୍ଣମୟୂରୀଟି ଆମେରିକାର କୌଣସି ଏକ ଧନୀ ବଣିକର ଗୃହର ଶୋଭାବର୍ଦ୍ଧନ କରିବା ପାଇଁ ଉଡ଼ିଯିବାକୁ ପ୍ରସ୍ତୁତ ହେଉଛି । କିନ୍ତୁ ଏହି ସ୍ୱର୍ଣ୍ଣ ମୟୂରୀର ହସ୍ତାନ୍ତର ସମ୍ବନ୍ଧରେ ବଳିଷ୍ଠ ବାଧା ହୋଇ ଠିଆ ହୋଇଛି ଆଉ ଜଣେ ପ୍ରତିଦ୍ୱନ୍ଦ୍ୱୀ । ଦୁଇଟି

ଦଳ ଏହି ଗୋଟିକ ସ୍ୱର୍ଣ୍ଣମୟୂରୀକୁ ବିଦେଶ ବଜାରକୁ ଚାଲାଣ କରିବା ପାଇଁ ଲାଗି ପଡ଼ିଛନ୍ତି । ତେଣୁ ଏଇ ହତ୍ୟା ଓ ପ୍ରତିଦ୍ୱନ୍ଦ୍ୱିତା । ଯାହା ହେଉ ଏଇ ଚିଠିରୁ ସ୍ପଷ୍ଟ ପ୍ରମାଣ ମିଳୁଛି ଯେ, ଶର୍ମାର ହତ୍ୟାକାଣ୍ଡ ଏଇ ସ୍ୱର୍ଣ୍ଣମୟୂରୀକୁ କେନ୍ଦ୍ର କରି । ପୁଣି ଏଇ ଚିଠିଟି ସମ୍ବନ୍ଧରେ ଆମେ ନିଶ୍ଚିନ୍ତ ମତବ୍ୟକ୍ତ କରିପାରିବାଯେ, ଏ ଚିଠିଟି ହୁଏତ ଶର୍ମାର ଅଥବା ଶର୍ମାର ହତ୍ୟାକାରୀର ।

କିନ୍ତୁ ବର୍ତ୍ତମାନ କଥା ହେଉଛି, ଅସଲ ସ୍ୱର୍ଣ୍ଣ ମୟୂରୀଟି ଗଲା କୁଆଡ଼େ ? ଶର୍ମା ଯେଉଁଟି ଦିଲ୍ଲୀରୁ ବହନ କରି ଆଣିଥିଲା, ସେଇଟି ଯଦି ଏଇ ନକଲ ପଦାର୍ଥଟି ହୋଇଥାଏ, ତେବେ ଅସଲଟି କାହା ପାଖରେ ?

ତା'ଛଡ଼ା ଏଇ ଘଟଣାକୁ ଆମକୁ ବି ଟିକିଏ ଭିନ୍ନ ପଥରେ ଚିନ୍ତା କରିବାକୁ ହେବ । ଏପରି ବି ହୋଇପାରେ ଶର୍ମାର ସେଇ ପ୍ରତିଦ୍ୱନ୍ଦ୍ୱୀ ଲୋକଟି ଅସଲ ସ୍ୱର୍ଣ୍ଣମୟୂରୀଟି ହାତ କରି, ଆମକୁ ବିଭ୍ରାନ୍ତ କରିବା ପାଇଁ ନକଲ ସ୍ୱର୍ଣ୍ଣମୟୂରୀଟିଏ ଆମ ପାଖକୁ ପଠାଇ ଦେଇଛି । ତା'ର ଉଦ୍ଦେଶ୍ୟ, ଆମ ଦୃଷ୍ଟି ବିଶେଷ ଏକ ସ୍ତର ଉପରେ ରହିବ ଏବଂ ଆମେ ଅସଲ ସ୍ୱର୍ଣ୍ଣମୟୂରୀକୁ ଖୋଜି ଦିଲ୍ଲୀ କଲିକତା ହେଉଥିବା ବେଳେ, ସେ ଅନ୍ୟ ଏକ ସହରରେ ବସି ତା' କାର୍ଯ୍ୟ ହାସଲ କରିନେବ । ତେଣୁ ଆମକୁ ଦୁଇ ଦିଗରୁ ଚିନ୍ତା କରି ଆଗେଇବାକୁ ହେବ । ଅନ୍ୟ ଦିଗଟା କଥା ମୁଁ ପରେ ଚିନ୍ତା କରିବି । ଆଜି ଆପଣମାନେ ନିଜ ନିଜ ଦାୟିତ୍ୱ ତୁଲେଇବା ପାଇଁ ବାହାରି ଯାଆନ୍ତୁ । ଆଉ ଏଇ ଫଟୋ ନିଅନ୍ତୁ, ହତ୍ୟାକାରୀର ଲକେଟ୍‌ରେ ଯେଉଁ ଫଟୋଟି ଥିଲା, ଏଇ ମହିଳାକୁ ଖୋଜି ଶୀଘ୍ର ବାହାର କରିବାକୁ ହେବ ।

ମୃଗାଙ୍କ ଚୌଧୁରୀ ସମସ୍ତଙ୍କ ହାତକୁ ପୋଷ୍ଟକାର୍ଡ଼ ସାଇଜ୍‌ର ଫଟୋ ଖଣ୍ଡେ ଖଣ୍ଡେ ବଢ଼ାଇ ଦେଲେ ।

+ + +

ମେରୀ ଅଫିସ୍‌ର ସମସ୍ତ କାମ ଶେଷ କରି ହାତଘଡ଼ିକୁ ଚାହିଁଲା ବେଳକୁ ପାଞ୍ଚଟା ବାଜି ଯାଇଥିଲା ।

ସେ ଚାହିଁ ଦେଖିଲା, ବାଁ ପାଖ ଘରେ ରାଜେଶ ନାହିଁ । ବୋଧହୁଏ ବାଥ୍‌ରୁମ୍ ଯାଇଛି । ମେରୀ ଯିବା ପାଇଁ ପ୍ରସ୍ତୁତ ହେଲା ।

ରାଜେଶ ଇତ୍ୟବସରରେ ଫେରି ଆସିଥିଲା । ମେରୀ କହିଲା : କ'ଣ ବାହାରିବେ ?

ରାଜେଶ କହିଲା : ଚାଲନ୍ତୁ । ପାଞ୍ଚଟା ତ ବାଜିଲାଣି । ଆଜି ପିକ୍‌ଚର ଦେଖି ଯିବା ନା ?

ମେରୀ କହିଲା : ଗଲେ ମନ୍ଦ ହୁଅନ୍ତା ନାହିଁ । କିନ୍ତୁ ମୋତେ ଟିକିଏ ହୋଟେଲକୁ ଯିବାକୁ ହେବ । ମୁଁ ନିତ୍ୟକର୍ମ ଶେଷ ନ କରି କୁଆଡ଼େ ବାହାରି ପାରିବି ନାହିଁ ।

ରଜେଶ କହିଲା : ଚାଲନ୍ତୁ, ଯଥା ଇଚ୍ଛା ।

ରାଜେଶ ମେରୀକୁ ନେଇ ହୋଟେଲ ଇଣ୍ଟରନାସନାଲ ଦୁଆରେ ଛାଡ଼ି କହିଲା : ଆପଣ ଯାଆନ୍ତୁ । ନିତ୍ୟକର୍ମ ଶେଷ କରି ଆସିବେ, ମୁଁ ଏଇଠି ଅପେକ୍ଷା କରୁଛି ।

ମେରୀ କହିଲା : ନା, ଆପଣ ଆସନ୍ତୁ । ଜଳଖିଆ ପର୍ବଟା ଏଇଠି ଶେଷ କରି ଦେଇଯିବା । ଆଉ ପୁଣି ବାହାରେ ସମୟ ହେବ ନାହିଁ ।

ରାଜେଶ ଆପତ୍ତି କଲା ନାହିଁ ।

ଦୁହେଁ ଯାଇ ହୋଟେଲ ଇଣ୍ଟରନାସନାଲର ୨୧ ନମ୍ବର ରୁମ୍ ଦୁଆରେ ଠିଆ ହେଲେ । ମେରୀ ଚାବି ଖୋଲି ଭିତରେ ପଶିଲା । ଘରେ ଲାଇଟ୍ ଜଳାଇ ଦେଇ ବିଚଳିତ ହୋଇ ଉଠିଲା ।

ରାଜେଶ ହଠାତ୍ ମେରୀର ବିବ୍ରତ ଭାବ ଦେଖି କିଛି ବୁଝିପାରିଲା ନାହିଁ । ମେରୀ ଏ ଘର ସେ ଘର ଧାଁ ଦଉଡ଼ ଆରମ୍ଭ କରିଦେଇଥିଲା ।

: କ'ଣ ହେଲା ମିସ୍ ମେରୀ ?

: ଆପଣ କିଛି ବୁଝିପାରୁ ନାହାନ୍ତି ? ମେରୀ ବିଚଳିତ କଣ୍ଠରେ କହିଲା, ମୋ ଘରେ କେହି ପଶିଥିଲା । ଦେଖୁନାହାନ୍ତି ଜିନିଷପତ୍ର ଏପାଖ ସେପାଖ ହୋଇଛି ।

ମେରୀର ଦେହ ମନରେ ଚଞ୍ଚଳତା ଖେଳି ଯାଇଥିଲା । ସେ ଏ ଜିନିଷ, ସେ ଜିନିଷ ଉଠାଇ କ'ଣ ଯେପରି ଖୋଜିବାରେ ଲାଗିଥିଲା । ତା' ମୁହଁରେ ଆତଙ୍କର ଚିହ୍ନ ଫୁଟି ଉଠିଥିଲା ।

ରାଜେଶ ବି ଆତଂକିତ ହୋଇ ଉଠିଥିଲା ।

: କ'ଣ ହେଲା ମିସ୍ ମେରୀ । ତା'ହେଲେ କ'ଣ...

: ମୋର ମନେହେଉଛି ମିଷ୍ଟର ରାଜେଶ, ହଁ ନିଶ୍ଚୟ ହରଣଚାଳ ହୋଇଯାଇଛି । ମେରୀ ଆହୁରି ବିବ୍ରତ ଓ ବିଚଳିତ ଭାବରେ ପଦଚାରଣ କରି, ଆଲମାରୀ, ଟେବୁଲ ପାଗଳଙ୍କ ପରି ସବୁ ଖେଳେଇବାରେ ଲାଗିଲା ।

ରାଜେଶ କହିଲା : ସେ ବହିଟି ଆପଣ କେଉଁଠି ରଖିଥିଲେ ?

: ବହି ନୁହେଁ ମିଷ୍ଟର ରାଜେଶ, ଗୋଟାଏ ଭଙ୍ଗା ଟେବୁଲ ଲ୍ୟାମ୍ପ ।

: ଭଙ୍ଗା ଟେବୁଲ ଲ୍ୟାମ୍ପ ? ସେଟା ତ ଏଇ ଖଟତଳେ ଗଡୁଛି ।

ମେରୀ ଖଟତଳକୁ ଅନେଇ ଦେଇ କ୍ଷିପ୍ର ଗତିରେ ନଇଁପଡ଼ି ଖଟତଳୁ ଭଙ୍ଗା ଟେବୁଲ ଲ୍ୟାମ୍ପଟି ଗୋଟାଇ ଆଣିଲା । ତା' ମୁହଁରେ ହସ ଫୁଟି ଉଠିଲା । ଫ୍ୟାନ୍‌ଟା ଫୁଲ୍ ସ୍ପିଡ୍‌ରେ ଖୋଲିଦେଇ, କପାଳରୁ ଝାଳ ପୋଛୁ ପୋଛୁ କହିଲା : ଆପଣ ମୋତେ ବଂଚାଇ ଦେଲେ ମିଃ ରାଜେଶ । ମୁଁ ଭାବୁଥିଲି, ସେମାନେ ମୋର ସର୍ବନାଶ କରି ଯାଇଛନ୍ତି ।

ରାଜେଶ ଟେବୁଲ ଉପରେ ଥୁଆ ହୋଇଥିବା ଭଙ୍ଗା ଟେବୁଲ ଲ୍ୟାମ୍ପଟି ଆଡ଼େ ଚାହିଁଥିଲା । କାଠରେ ତିଆରି ଏଇ ଶସ୍ତା ଦାମ୍‌ର ଟେବୁଲ ଲ୍ୟାମ୍ପଟି ଯେ ମେରୀ ପାଖରେ ଏତେ ମୂଲ୍ୟବାନ ରାଜେଶ ସେ କଥା ଆଗରୁ ଚିନ୍ତା କରିପାରି ନଥିଲା ।

ମେରୀ ସଫେଇ ଦେଲା : ମିଷ୍ଟର ମେହେରାଙ୍କର ବୁଦ୍ଧିର ତୁଳନା ହୁଏ ନାହିଁ । ଆପଣ ଆଶ୍ଚର୍ଯ୍ୟ ହେବେ ନାହିଁ ମିଷ୍ଟର ରାଜେଶ ଏଇ ଅବହେଳିତ ଭଙ୍ଗା ଟେବୁଲ ଲ୍ୟାମ୍ପଟି ମିଷ୍ଟର ମେହେରା ବ୍ୟବହାର କରିବାକୁ କହି ନଥିଲେ...

ମେରୀ ହଠାତ୍ ଅଟକି ଯାଇ ଯେପରି ସଚେତନ ହୋଇ ଉଠିଲା । ସେ ଦରଜାଟା ଭଲ ଭାବରେ ବନ୍ଦ କରି ଦେଇ ଆସି, ଚାରିଆଡ଼କୁ ଚାହିଁ କହିଲା, ଦେଖିବେ ମିଷ୍ଟର ମେହେରାଙ୍କର ବୁଦ୍ଧିର ବାହାଦୁରୀ ?

ମେରୀ ଭଙ୍ଗା ଟେବୁଲ ଲ୍ୟାମ୍ପଟି ଉଠାଇ ଆଣି ତଳର ଗୋଲାକୃତି ସ୍ଥାନଟିକୁ ଦେଖାଇ କହିଲା : କାଠ ଷ୍ଟାଣ୍ଡ ଭିତରଟା ଗୋଟିଏ ବାକ୍‌ସ । ଦେଖିବେ ? ମେରୀ ଗୋଟାଏ ସ୍କ୍ରୁ

ଡ୍ରାଇଭର୍ ଆଣି, ତଳ ପାଖରୁ ଦୁଇଟି ସ୍କ୍ରୁ ଖୋଲି ଦେଲା । ଦୁଇ ଆଡ଼କୁ ଦୁଇଖଣ୍ଡ କାଠ ପଟା ଟାଣି ଦେଇ ମେରୀ କହିଲା : ଦେଖନ୍ତୁ ।

ରାଜେଶ ଦେଖିଲା, ସେଇ ଅବହେଳିତ ଗୋଟିଏ ଟେବୁଲ ଲ୍ୟାମ୍ପର ଷ୍ଟାଣ୍ଡ ଭିତରେ 'ସ୍ୱର୍ଣ୍ଣମୟୂରୀ' ଆରାମରେ ବିଶ୍ରାମ କରୁଛି ।

ରାଜେଶ ସ୍ତବ୍ଧ ହୋଇ ଚାହିଁଥିଲା । ମେରୀ ଅଳ୍ପ ଅଳ୍ପ ହସୁଥିଲା ।

ବାହାରେ ଦରଜାରେ କାହାର କରାଘାତ ଶୁଣି ଦୁହେଁ ଚଞ୍ଚଳ ହୋଇ ଉଠିଲେ ।

ମେରୀ କ୍ଷିପ୍ର ହସ୍ତରେ ଟେବୁଲ ଲ୍ୟାମ୍ପଟାକୁ ସଜାଡ଼ି ଯଥା ସ୍ଥାନରେ ରଖିଦେଇ ଯାଇ ଦରଜା ଖୋଲିଲା ।

ବୟ ଚା' ଜଳଖିଆ ଧରି ଠିଆ ହୋଇଛି ।

ମେରୀ ବୟକୁ ଭିତରକୁ ଡାକିଲା ।

ବୟ ଟ୍ରେ'ଟି ଟେବୁଲ ଉପରେ ରଖିଦେଇ ବାହାରି ଚାଲିଗଲା ।

ମେରୀ ଦରଜାଟା ବନ୍ଦ କରି ଆସି ରାଜେଶ ପାଖରେ ଗୋଟିଏ ଚେଆରରେ ବସି ବିଷଣ୍ଣ କଣ୍ଠରେ କହିଲା : ତା'ହେଲେ ବର୍ତ୍ତମାନ ଉପାୟ କ'ଣ ମିଷ୍ଟର ରାଜେଶ ? ବସ୍ ନାହାନ୍ତି । ସେମାନେ ପୋଲିସ୍ ଘେର ଭେଦ କରି ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ସାରିଲେଣି ।

ରାଜେଶ ବି ଚିନ୍ତିତ ହୋଇ ପଡ଼ିଥିଲା । ସେ ଶାନ୍ତ କଣ୍ଠରେ କହିଲା : ଅବଶ୍ୟ ସେମାନେ ହତାଶ ହୋଇ ଫେରି ଯାଇଛନ୍ତି, ଆଉ ହୁଏତ ଏଠାକୁ ଆସି ନ ପାରନ୍ତି । ତା'ଛଡ଼ା ଆପଣ ଗୋଟାଏ କାମ କରନ୍ତୁ । ମିଷ୍ଟର ମେହେରା ନ ଫେରିବା ପର୍ଯ୍ୟନ୍ତ ଆପଣ ଏ ରୁମ୍ ଛାଡ଼ି କୁଆଡ଼େ ବାହାରନ୍ତୁ ନାହିଁ ।

ମେରୀ ଟିକିଏ ଚିନ୍ତା କଲା । କହିଲା : ନ ବାହାରିଲେ ଏମାନେ ସନ୍ଦେହ କରିପାରନ୍ତି । ହୋଟେଲରେ ସାଦା ପୋଷାକ ପୋଲିସ୍ ଅନେକ ଅଛନ୍ତି ।

ରାଜେଶ କହିଲା : ଆପଣ ମେଡ଼ିକାଲ ଗ୍ରାଉଣ୍ଡରେ ଛୁଟି ନିଅନ୍ତୁ । ଅଫିସ୍‌କୁ ଗୋଟାଏ ଦରଖାସ୍ତ କରନ୍ତୁ । ମୁଁ ଜଣେ ଡାକ୍ତର ଆଣି ଆପଣଙ୍କୁ ଦେଖାଇ ନିଏ । ତା'ହେଲେ କାହାରି କିଛି ଅବିଶ୍ୱାସ ରହିବ ନାହିଁ ।

ମେରୀ କଫି ପଟ୍‌ରୁ କଫି ଢାଳୁ ଢାଳୁ ଚିନ୍ତିତ ସ୍ୱରରେ କହିଲା : ହଁ, ସେହିପରି ଗୋଟାଏ କିଛି କରିବାକୁ ହେବ । କିନ୍ତୁ ମିଷ୍ଟର ରାଜେଶ, ମୋତେ ଭାରି ଡର ମାଡୁଛି । କେହି ଯଦି ଅଧ ରାତିରେ ମୋତେ ଆକ୍ରମଣ କରେ ?

ରାଜେଶ ଧୂମାୟିତ କଫି କପ୍‌ଟା ନୀରବରେ ମୁହଁ ପାଖରେ ଧରିଥିଲା । ପ୍ରକୃତରେ ଚିନ୍ତାର ବିଷୟ । ସେ ମନେମନେ ମିଷ୍ଟର ମେହେରାଙ୍କ ଉଦ୍ଦେଶ୍ୟ କଥା ଚିନ୍ତା କରୁଥିଲା । କିଏ ସେଇ ଲୋକ ? କ'ଣ ତାଙ୍କର ଉଦ୍ଦେଶ୍ୟ ?

ମେରୀ କହିଲା : ଆଜି ଆମର ସିନେମା ଦେଖା ହୋଇଗଲା । ମିଷ୍ଟର ରାଜେଶ ! ଆଉ ଉପାୟ ନାହିଁ । ଏହାପରେ ଘର ଛାଡ଼ି ଯିବାକୁ ମୋର ସାହସ ହେଉ ନାହିଁ । ଆପଣ ବରଂ ଯାଆନ୍ତୁ ବିଶ୍ରାମ କରିବେ । ଆଉ କିଛି ଘଟଣା ଯଦି ଘଟେ, ମୁଁ ଆପଣଙ୍କୁ ଫୋନ୍ କରିବି । ଫୋନ୍‌ରେ ଅବଶ୍ୟ କିଛି କହିହେବ ନାହିଁ । ତେବେ ମୁଁ ଫୋନ୍ କଲେ ଆପଣ ଜାଣିବେ ଯେ କିଛି ଗୋଟାଏ ଘଟିଛି । ସେତେବେଳେ ଆପଣ ଯାହା ଉଚିତ ମନେକରିବେ, ସେଇଆ କରିବେ ।

ରାଜେଶ ନୀରବରେ ଭୋଜନ ପର୍ବ ଶେଷ କଲା ।

ମେରୀର ସୁନ୍ଦର ମୁହଁଟି ଚିନ୍ତା ଭାରରେ ଝାଉଁଳି ପଡ଼ିଥିଲା । ରାଜେଶ ଅନେକ ବେଳଯାଏ ମେରୀ ମୁହଁକୁ ନୀରବରେ ଅନାଇ ରହି କହିଲା,

: ମିସ୍ ମେରୀ ।

: ଉଁ ।

: ଆପଣ କେତେଦିନ ହେବ ମିଷ୍ଟର ମେହେରାଙ୍କ କାମରେ ନିଯୁକ୍ତ ହୋଇଛନ୍ତି ?

: ମୁଁ ? ଅନେକ, ଅନେକ, ଅନେକ ଦିନ । ମେରୀ କଣ୍ଠରେ କିପରି ଅସହାୟ ଭାବ ଫୁଟି ଉଠିଥିଲା ।

ରାଜେଶ କହିଲା : ଆପଣ କିପରି ଏଇ କାଳ ଛଞ୍ଚାଣର ଶିକାର ହେଲେ ?

: ମୁଁ ? ମେରୀ ହାତରୁ କଫି କପ୍‌ଟା ଖସି ପଡ଼ିଲା । ମନେହେଲା ଯେପରି ଏକ ବିସ୍ଫୋରଣ ଘଟିଗଲା । ମେରୀ ସଂଯତ ହେଲା । ରାଜେଶ ମୁହଁକୁ ଚାହିଁ କହିଲା : ଆପଣ ତ ସବୁ ଜାଣନ୍ତି ମିଷ୍ଟର ରାଜେଶ । ମିଷ୍ଟର ମେହେରାଙ୍କ ଦୃଷ୍ଟି ସଦା ସଜାଗ । ତାଙ୍କ କାନରେ ଯୋଜନ ଯୋଜନ ଦୂରର ଶବ୍ଦ ଯାଇ ପହଞ୍ଚେ । ଏକ୍‌ସକିଉଜ୍ ମି, ମିଷ୍ଟର ରାଜେଶ । ମୋତେ କ୍ଷମା କରନ୍ତୁ ।

ରାଜେଶ ମେରୀର ଅସହାୟ ଓ ଶେତା ମୁହଁ ଆଡ଼େ ଆହୁରି କିଛି ସମୟ ଅନାଇ ରହି ଗୋଟାଏ ଦୀର୍ଘଶ୍ୱାସ ତ୍ୟାଗ କଲା । କହିଲା : ମିସ୍ ମେରୀ, ଆପଣ ବୋଧହୁଏ ଜାଣନ୍ତି ଉଡ଼ା ଚଢ଼େଇକୁ ସୁନା ପଞ୍ଜୁରି ବି ଭଲ ଲାଗେ ନାହିଁ । ଅବଶ୍ୟ ବାଧ୍ୟ ହୋଇ ଯେଉଁ ଚଢ଼େଇଟି ପଞ୍ଜୁରି ଭିତରେ ବନ୍ଦୀ ହୋଇ ରହିଥାଏ, ଟିକିଏ ଫାଙ୍କା ପାଇଲେ ସେ ଫୁର୍‌ର କରି ଉଡ଼ିଯାଇ ମୁକ୍ତ ଗଗନରେ ମିଶିଯାଏ । ଆପଣ କ'ଣ ମୋ କଥା ଅସ୍ୱୀକାର କରିବେ ?

ରାଜେଶ ଦେଖିଲା, ମେରୀର ମୁହଁ ଆହୁରି ରକ୍ତହୀନ ହୋଇ ଉଠିଛି । ଚଞ୍ଚଳ ଚାହାଣି ତା'ର ବ୍ୟସ୍ତ ବିବ୍ରତ ହୋଇ କୁରାଳ ଚାତକ ପରି ଘର ସାରା ଘୂରି ବୁଲୁଛି । ସେ ରାଜେଶର ହାତ ଦୁଇଟାକୁ ଧରି ପକାଇ କହିଲା : ପ୍ଲିଜ୍ ମିଷ୍ଟର ରାଜେଶ । ଆପଣ ମୋତେ ଆଉ ମୁକ୍ତିର ଆଲୋକ ଦେଖାନ୍ତୁ ନାହିଁ । ଏହି ସୁନା ପଞ୍ଜୁରିର ଦ୍ୱାର କେହି ଖୋଲିଦେଲେ ବି, ମୁକ୍ତ ଗଗନକୁ ଉଡ଼ି ଯିବାର ଶକ୍ତି ମୋର ନାହିଁ । କାରଣ ମୁଁ ପକ୍ଷହୀନ । ପ୍ଲିଜ୍ ମିଷ୍ଟର ରାଜେଶ ! ଆପଣ ମୋତେ କ୍ଷମା କରନ୍ତୁ ।

ରାଜେଶ ଆଉ କିଛି କହିଲା ନାହିଁ ।

ଧୀରେ ଧୀରେ ମେରୀର ସେହି ନିସ୍ତବ୍ଧ କକ୍ଷରୁ ବାହାରି ତଳକୁ ଓହ୍ଲେଇଗଲା ।

ଗାଡ଼ିରେ ବସି ସିଧା ସେ ଚାଲିଗଲା ଗଙ୍ଗା କୂଳକୁ ।

ଟିକିଏ ଶାନ୍ତିରେ ନିଶ୍ଚିନ୍ତରେ ବସି ଅନ୍ତତଃ ନିଜର ଭବିଷ୍ୟତ ସମ୍ବନ୍ଧରେ ଚିନ୍ତା କରିବ । ନିଜ ଭୁଲ୍‌ର ପ୍ରାୟଶ୍ଚିତ କରିବା ପାଇଁ ଅନ୍ତତଃ କିଛି ଉପାୟ ଚିନ୍ତା କରିବ ।

ଅନେକ ବେଳଯାଏ ଗଙ୍ଗା କୂଳରେ ବୁଲିଲା । କିନ୍ତୁ ନିରୋଳା କେଉଁଠି ? ଶାନ୍ତି କାହିଁ ? ଚାରିଆଡ଼େ ଯେ ଖାଲି ମଣିଷର ଭିଡ଼ ।

ରାଜେଶ ଫେରି ଆସିଲା ଘରକୁ । ଘର ଭିତରେ ଚାରିଆଡ଼େ ଦରଜା ବନ୍ଦ କରି ଅନ୍ଧକାର ଭିତରେ ସେ ଆଲୋକର ସନ୍ଧାନ କରିବ । ତା'ଛଡ଼ା ପଥ କାହିଁ ?

ରାଜେଶ ଗାଡ଼ିଟା ଗ୍ୟାରେଜରେ ରଖି ଧୀରେ ଧୀରେ ଉପରକୁ ଉଠିଗଲା । ଦରଜା ଠେଲି ଘର ଭିତରକୁ ପଶି ଦେଖିଲା, ଘର ଭିତରେ ହାଲ୍‌କା ସବୁଜ ଆଲୋକର ଆସ୍ତରଣ । ସକାଳର କୁହେଳୀ ପରି ଘରଟା ମେଘାଚ୍ଛନ୍ନ ।

: କିଏ ?

ରାଜେଶ ଦେଖିଲା କେହି ଜଣେ ତା' ଆରାମ ଚେଆର ଉପରେ ନୀରବରେ ବସି ଧୂମପାନ କରୁଛି । ତା'ହେଲେ ମିଷ୍ଟର ମେହେରା କ'ଣ ଫେରି ଆସିଛନ୍ତି ?

ରାଜେଶ କ୍ଷିପ୍ର ପଦରେ ଆଗେଇ ଗଲା !

ମିସେସ୍ ମେହେରା ଧ୍ୟାନସ୍ଥ ହୋଇ ସିଗାରେଟ୍ ଟାଣୁଛନ୍ତି ।

ରାଜେଶର ପାଦଶବ୍ଦ ଶୁଣି ଧୀରେ ଆଖି ଖୋଲି ଜଡ଼ିତ କଣ୍ଠରେ କହିଲେ : ଆଜି ଅନେକ ଡେରି କରିଦେଲ ରାଜେଶ । ମୁଁ ତମରି ପଥ ଚାହିଁ ବସି ରହିଛି ।

: ମାନେ ? ମୁଁ ତ ଆପଣଙ୍କୁ କିଛି କଥା ଦେଇ ନଥିଲି, ଅଥଚ ଆପଣ... ରାଜେଶର କଣ୍ଠସ୍ୱର ଉତ୍ତେଜିତ ଶୁଣା ଯାଉଥିଲା ।

ମିସେସ୍ ମେହେରା ଟିକିଏ ହସିବାକୁ ଚେଷ୍ଟା କରି କହିଲେ : କଥା ଦିଆନିଆର ଦିନ ମୋର ଅନେକଦିନୁ ଶେଷ ହୋଇଯାଇଛି ରାଜେଶ । ମୁଁ ଏଇକ୍ଷିଣା ଭିକ୍ଷୁ । ମାନେ ଅନ୍ୟର କୃପାଭିକ୍ଷା କରି ଜୀବନ ନିର୍ବାହ କରୁଛି ।

ରାଜେଶ ମିସେସ୍ ମେହେରାଙ୍କ କଥାରେ ମର୍ମାହତ ହେଲା ।

ଜୀବନର ବହୁ ସୁବର୍ଣ୍ଣ ମୁହୂର୍ତ୍ତ ଉପଭୋଗ କରି ସାରି, ମିସେସ୍ ମେହେରା ଏଇକ୍ଷିଣା ଅନୁତାପ ନିଆଁରେ ଜଳୁଛନ୍ତି । ଏ ସମୟରେ ତାଙ୍କୁ ଯାହା କହିଲେ ବି ସେ ଆଘାତ ପାଇବେ । ରାଜେଶ ନିଜକୁ ଟିକିଏ ସଂଯତ କରିବାକୁ ଚେଷ୍ଟା କଲା । ସ୍ୱର କୋମଳ କରିବାକୁ ଚେଷ୍ଟା କରି କହିଲା : ଆପଣ ମୋ ପାଇଁ କାହିଁକି ଅପେକ୍ଷା କରିଛନ୍ତି ମିସେସ୍ ମେହେରା ?

ଭଦ୍ରମହିଳା ଆଖି ଖୋଲିଲେ । ସ୍ନିଗ୍ଧ ଚାହାଣିରେ ରାଜେଶ ମୁହଁକୁ ଚାହିଁ କହିଲେ : ତୁମେ ତ ଜାଣ ରାଜେଶ । ସଂଧ୍ୟା ହେଲେ ମୋତେ ଭୂତ ଗ୍ରାସେ । ଘର ଛାଡ଼ି ସେଇ ଭୂତକୋଠିକୁ ଧାଇଁ ନ ଗଲେ, ମୁଁ ଆତ୍ମସମ୍ବରଣ କରିପାରେ ନାହିଁ । ଆହୁରି ମଧ୍ୟ ତମେ ଜାଣ ମୋର ଗାଡ଼ି ନାହିଁ । ପାଦରେ ଚାଲିଯିବାର ଶକ୍ତି ମଧ୍ୟ ନାହିଁ । ଅନ୍ଧର ଲଉଡ଼ି ପରି ମୁଁ ତମକୁ ଆଶ୍ରୟ କରିଛି । ଯଦି ତମେ ତଡ଼ି ଦିଅ, ମୁଁ ଦୁଃଖ କରିବି ନାହିଁ । କିନ୍ତୁ ରାଜେଶ, ପ୍ଲିଜ୍ ଆଜି ମୋତେ ଗୋଟାଏ ଲିଫ୍‌ଟ ଦିଅ । କାଲି ଦେଖିବ ମୁଁ ତମକୁ ମୋଟେ ବିରକ୍ତ କରିବି ନାହିଁ । ପ୍ଲିଜ୍ ରାଜେଶ, ହେଲ୍‌ପ ମି ।

ରାଜେଶ ଦରଜା ଆଡ଼କୁ ଆଗେଇ ଯାଉଥିଲା । ଡେରି କରି କିଛି ଲାଭ ନାହିଁ । ଭୂତ ଯେତେବେଳେ ମୁଣ୍ଡରେ ବସିଛି, ତାକୁ ଯଥା ସ୍ଥାନରେ ଛାଡ଼ି ନ ଆସିଲେ ସେ ସହଜରେ ଛାଡ଼ିଯିବ ନାହିଁ ।

ରାଜେଶ ଦରଜା ପାଖରେ ପହଞ୍ଚି ପଛକୁ ଚାହିଁ ଦେଖିଲା ମିସେସ୍ ମେହେରା ଇଜି ଚେଆର୍ ଉପରୁ ଉଠିବାକୁ ଚେଷ୍ଟା କରି ଉଠିପାରୁ ନାହାନ୍ତି । ଟିକିଏ ଛିଡ଼ା ହୋଇ ପୁଣି ବସି ପଡୁଛନ୍ତି ।

ରାଜେଶ ବୁଝିପାରିଲା । ମିସେସ୍ ମେହେରା ଆଜି ଆଗରୁ ଆଉଟ୍ ହୋଇଯାଇଛନ୍ତି । ସେ ଫେରି ଯାଇ ମିସେସ୍ ମେହେରାଙ୍କୁ ହାତ ମାରି ଉଠାଇଲା । ସେ ରାଜେଶ କାନ୍ଧରେ

ଭରା ଦେଇ ଧୀରେ ଧୀରେ ତଳକୁ ଓହ୍ଲାଇଲେ । ଗାଡ଼ିରେ ବସି ଯେତେବେଳେ ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲରେ ପହଞ୍ଚିଲେ, ସେତେବେଳକୁ ଘଡ଼ିରେ ଆଠଟା ବାଜୁଥିଲା ।

ରାଜେଶ ମିସେସ୍ ମେହେରାଙ୍କୁ ଘରେ ବସାଇ ଫେରି ଆସିବାକୁ ଚାହୁଁଥିଲା । କିନ୍ତୁ ମିସେସ୍ ମେହେରା ଛାଡ଼ିଲେ ନାହିଁ । କହିଲେ : ନା ରାଜେଶ, ତମେ ନ ଖାଇ ଏ ଘରୁ ଯାଇପାରିବ ନାହିଁ ।

ରାଜେଶ ବାଧ ହୋଇ ମିସେସ୍ ମେହେରାଙ୍କ ଆଡ଼କୁ ଚାହିଁ ବସିରହିଲା ।

ମିସେସ୍ ମେହେରା କହିଲେ : ତମ ସହିତ ମୋର ବଡ଼ ଦୁଃସମୟରେ ଦେଖା ହେଲା ରାଜେଶ । ଆଗରୁ ଦୁଇ ତିନିବର୍ଷ ପୂର୍ବରୁ ତମ ସହିତ ଦେଖା ହୋଇଥିଲେ, ମୁଁ ଅନ୍ତତଃ ବଂଚିଯାଇଥାଆନ୍ତି ।

ରାଜେଶ କହିଲା : ଆପଣ ଟିକିଏ ବିଶ୍ରାମ କରନ୍ତୁ । ମିସେସ୍ ମେହେରା, ଆପଣ ଆଜି ବଡ଼ କ୍ଳାନ୍ତ ମନେହେଉଛନ୍ତି । ମୁଁ ଅପେକ୍ଷା କରୁଛି ।

ମିସେସ୍ ମେହେରା ହସିଲେ । ଶିଶୁଙ୍କ ଭଳି ଅନୁଯୋଗ ସ୍ୱରରେ କହିଲେ : ମୁଁ ଜାଣେ ରାଜେଶ । ମୁଁ ଆଖି ବୁଜିଲେ ତମେ ଏଠୁ ଚାଲିଯିବ । କିନ୍ତୁ ତମେ ଜାଣନା ରାଜେଶ, ମୋ ଜୀବନରେ ଆଜି ଗୋଟାଏ ସ୍ମରଣୀୟ ଦିନ । ସେ କଥା ମୁଁ ପରେ କହିବି । କିନ୍ତୁ ଆଜି ତମେ ମୋତେ ଛାଡ଼ିଦେଇ ଯାଅ ନାହିଁ ।

: ଆପଣ ବିଶ୍ୱାସ କରନ୍ତୁ ମିସେସ୍ ମେହେରା । ମୁଁ ଆପଣଙ୍କୁ ଛାଡ଼ି ଯିବି ନାହିଁ । ଆପଣ ବିଶ୍ୱାସ କରନ୍ତୁ ମୁଁ ଏଇଠି ବସି ବସି ବହି ପଢୁଛି ।

ରାଜେଶ ଉଠିଯାଇ ବହି ଆଲମାରୀ ଖୋଲି ବହି ସବୁ ଖେଳେଇ ଦେଖିଲା ।

ଏତିକିବେଳେ ଘର ଭିତରେ ଗୋଟାଏ ହୋଟେଲ ବୟ ପ୍ରବେଶ କଲା । ହାତରେ ତା'ର ଟ୍ରେ' ଉପରେ ଖାଦ୍ୟସାମଗ୍ରୀ, ଏକ ବୋତଲ ପାନୀୟ ଓ ଦୁଇଟି ପାନ ପାତ୍ର । ମିସେସ୍ ମେହେରା ଚିତ୍କାର କରି ଉଠିଲେ : ଆସିଯାଇଛି ରାଜେଶ ! ତମେ ଏଥର ଚାଲିଆସ । ମୁଁ ଆଜି ତମକୁ ମୋ ନିଜ ହାତରେ ଖୁଆଇବି ।

ରାଜେଶ ଆଲମିରାରୁ ଖଣ୍ଡିଏ ବହି ଧରି ଫେରିଆସିଲା ।

ମିସେସ୍ ମେହେରା ପାନପାତ୍ରରୁ ପାନୀୟ ଢାଳି ପ୍ରଥମେ ପିଇବାକୁ ଆରମ୍ଭ କରିଦେଲେ । ତା'ପରେ ହସି ହସି କହିଲେ : ତମେ ବସ ରାଜେଶ । ମୋର ଆଜି ଜନ୍ମ ଦିନ । ଗତ ୩୭ ବର୍ଷ ହେବ ମୋର ଜନ୍ମଦିନ ମହାଆଡ଼ମ୍ବରରେ ପାଳନ ହୋଇ ଆସିଥିଲା । ଏପରିକି ଗତବର୍ଷ ମୋର ଜନ୍ମଦିନ ଦାର୍ଜିଲିଂରେ ପାଳନ କରାହୋଇଥିଲା । ଏ ବର୍ଷ ଆଜି ଦିନଟା ନିରାଡ଼ମ୍ବର ଭାବରେ ଏହି ସଂକୀର୍ଣ୍ଣ ପ୍ରକୋଷ୍ଠ ଭିତରେ ପାଳନ କରାହେବ । ଆଜି ପରି ମୋ ଜୀବନର ଏକ ସ୍ମରଣୀୟ ଦିନରେ ତମେ ମୋର ବନ୍ଧୁ, ସହୋଦର, ସଖା ।

ମିସେସ୍ ମେହେରା ଖାଦ୍ୟପଦାର୍ଥରୁ କିଛି ନିଜ ହାତରେ ଉଠାଇ ରାଜେଶକୁ ଖୁଆଇ ଦେଲେ । ରାଜେଶ ନୀରବରେ ପାଟି ଆଁ କରି ମିସେସ୍ ମେହେରାଙ୍କ ହାତରୁ ଖାଦ୍ୟ ଗ୍ରହଣ କଲା ।

ମିସେସ୍ ମେହେରା ପୁଣି କହିଲେ : ଜାଣ ରାଜେଶ, ଅନ୍ୟ ସମୟ ହୋଇଥିଲେ, ମାନେ ତମ ସହିତ ମୋର ଦୁଇ ତିନିବର୍ଷ ଆଗରୁ ଦେଖା ହୋଇଥିଲେ, ମୁଁ ତୁମକୁ ଆଜି ନୂତନ ବେଶ ପୋଷାକରେ ସଜାଇ ଦେଇଥାଆନ୍ତି । ତୁମକୁ ନେଇ ଏକ ନିର୍ଜନ ଦର୍ଶନୀୟ

ସ୍ଥାନକୁ ଚାଲିଯାଇ ଥାଆନ୍ତି ଜନ୍ମଲଗ୍ନ ପାଳନ କରିବା ପାଇଁ । ଦିନକ ପାଇଁ ମୁଁ ତୁମକୁ ମୋର କରିନେଇଥାଆନ୍ତି । ତମର କିଛି ବାରଣ ଶୁଣି ନଥାନ୍ତି । ତମେ ମୋର ହୋଇଥାଆନ୍ତ । ଏକାନ୍ତ ଭାବରେ ମୁଁ ତୁମକୁ ମୋର ନ କରି ଛାଡ଼ି ନଥାନ୍ତି ।

ରାଜେଶ ଏଥର ନିଜ ହାତରେ ଖାଇବାକୁ ଆରମ୍ଭ କରିଥିଲା ।

ମିସେସ୍ ମେହେରା ପାନପାତ୍ର ନିଃଶେଷ କରିବାରେ ଲାଗିଥିଲେ ।

ରାଜେଶ କହିଲା : ଯେଉଁମାନଙ୍କ ସହିତ ଆନନ୍ଦ କଳରୋଳରେ ଆପଣ ପ୍ରତିବର୍ଷ ଜନ୍ମ-ବାର୍ଷିକୀ ପାଳନ କରନ୍ତି, ସେମାନେ ଆଜି ଗଲେ କୁଆଡ଼େ ?

ମିସେସ୍ ମେହେରା କରୁଣ ହସ ହସି କହିଲେ : ସମସ୍ତେ ଅଛନ୍ତି । କିନ୍ତୁ ମୋତେ ଛାଡ଼ି ସମସ୍ତେ ଚାଲିଯାଇଛନ୍ତି । ମଣିଷର ଦୁଃସମୟ ଆସେ ରାଜେଶ । ସେତେବେଳେ ସେ ନିସ୍ୱ, ନିଃସହାୟ ହୋଇ ଘୂରି ବୁଲେ । ସେଥିପାଇଁ କିନ୍ତୁ ମୋର ଦୁଃଖ ନାହିଁ । ତମେ ଆଜି ମୋ ସଂଗରେ ଅଛ । ଏକାନ୍ତ ଭାବରେ ମୁଁ ତମକୁ ପାଇଛି, ଏଇ କ'ଣ କମ୍ ଗୌରବର କଥା ।

ମିସେସ୍ ମେହେରା କଥା ଶେଷ କରି ଉଠି ଠିଆ ହେଲେ । ଆଉ ଟିକେ ଆଗେଇ ଯାଇ ଗୋଟିଏ ଆଲମିରା ଖୋଲିଲେ । ଆଲମିରା ଭିତରୁ କିଛି ପୋଷାକ ପତ୍ର ବାହାର କରି କହିଲେ : ତମେ ଶୀଘ୍ର ଖିଆ ଶେଷ କର ରାଜେଶ । ମୁଁ ପ୍ରସ୍ତୁତ ହୋଇ ଆସୁଛି, ଆଜି ରାତିଟା ମୁଁ ତମର ସଂଗ ଚାହେ । ମୋ ଜନ୍ମବାର୍ଷିକୀଟା ତମକୁ ନେଇ ପୂର୍ଣ୍ଣ ହେଉ ।

ମିସେସ୍ ମେହେରା ବାଥ୍‌ରୁମ୍ ଭିତରକୁ ପଶିଗଲେ ।

ରାଜେଶ ସ୍ତବ୍ଧ ହୋଇ ମିସେସ୍ ମେହେରାଙ୍କ ଗତିପଥକୁ ଅନାଇ ରହିଲା । ତା'ର ମନେହେଉଥିଲା ଏତିକିବେଳେ ସେ ଉଠି ଚାଲିଯିବ । ଏଇ ସୁଯୋଗ । ମିସେସ୍ ମେହେରାଙ୍କ ପରି ଏକ ମାନସିକ ବିକୃତ ରୋଗୀ ସହିତ ବେଶି ସମୟ କଟାଇଲେ, ରାଜେଶ ନିଜେ ହୁଏତ ଆତ୍ମସତ୍ତା ହରେଇ ବସିବ ।

ବାଥ୍‌ରୁମ୍ ଭିତରୁ ମିସେସ୍ ମେହେରାଙ୍କର କଣ୍ଠସ୍ୱର ଶୁଣାଗଲା । ସେ ଗୁଣୁ ଗୁଣୁ ହୋଇ ଗୀତ ଗାଉଥିଲେ ।

ରାଜେଶ ଉଠିବାକୁ ଚେଷ୍ଟା କରି ବି ଉଠିପାରିଲା ନାହିଁ । ତା' ମନଟା ଯେପରି କରୁଣାରେ ଭରି ଯାଇଥିଲା । ମିସେସ୍ ମେହେରା ତା'ର ସାହାଯ୍ୟ ପ୍ରାର୍ଥନା କରିଛନ୍ତି, ବିଶେଷ କରି ଆଜି ତାଙ୍କର ଜନ୍ମବାର୍ଷିକୀରେ ସେ ସାଥୀ-ସମ୍ବଳ ହରା । ରାଜେଶ ଯଦି ଛାଡ଼ି ଚାଲିଯାଏ ତେବେ ସେ କଷ୍ଟ ପାଇବେ, ଆଖିରୁ ଲୋତକ ଝରାଇବେ ଏବଂ...

ରାଜେଶ ପଳାଇ ଯାଇପାରିଲା ନାହିଁ । ମିସେସ୍ ମେହେରା ବାଥ୍‌ରୁମ୍‌ରୁ ବାହାରି ଯେତେବେଳେ ରାଜେଶ ଆଗରେ ଆସି ଠିଆ ହେଲେ, ରାଜେଶ କାବା ହୋଇଗଲା । ସେ କାହାକୁ ଦେଖୁଛି ଆଖି ଆଗରେ ? ଏ ତ ମିସେସ୍ ମେହେରା ନୁହନ୍ତି- ଉତର ଚାଳିଶରେ ପାଦ ଦେବାକୁ ଯାଉଥିବା ଏ କ'ଣ ସେଇ ପ୍ରୌଢ଼ା ମହିଳା ?

ରାଜେଶ ଆହୁରି ଭଲ କରି ଚାହିଁଲା ।

ମିସେସ୍ ମେହେରାଙ୍କ ବୟସ ଅନେକ କମି ଯାଇଛି । ସେ ଏକ ଅପରୂପ ବେଶରେ ଲୋଭନୀୟ ଭଙ୍ଗୀରେ ଆସି ଠିଆ ହୋଇଛନ୍ତି । ମୁହଁରେ ସ୍ମିତ ହାସ୍ୟ, ଆଖିରେ ଅସଂଖ୍ୟ କାମନାର ନିଆଁ ।

ମିସେସ୍ ମେହେରା ଆସି ରାଜେଶର ହାତ ଧରି ଉଠାଇଲେ ।

: ଆସ ରାଜେଶ । ଯିବା ଆସ ।

: କୁଆଡ଼େ ? ରାଜେଶ କଣ୍ଠରେ ସନ୍ଦେହ ଫୁଟି ଉଠିଥିଲା ।

: ମୁଁ ତ ତମକୁ କହିଛି ରାଜେଶ । ଆଜି ମୋର ଜନ୍ମଦିନ । ମୋ ଜୀବନର ଏକ ସ୍ମରଣୀୟ ଦିନ । ଆଉ ଆଜି ଦିନରେ ତମେ ମୋର ଏକମାତ୍ର ପରମ ଆତ୍ମୀୟ । ଆସ ତମେ ।

ମିସେସ୍ ମେହେରାଙ୍କ ସ୍ପର୍ଶରେ ରାଜେଶ ଦେହରେ କିପରି ଏକ କମ୍ପନ ସୃଷ୍ଟି ହୋଇଥିଲା । ତା'ର ମନେହେଉଥିଲା, ଯେପରି ପାଦ ଯୋଡ଼ାକ କମ୍ପିବାକୁ ଆରମ୍ଭ କରିଦେଇଛନ୍ତି ।

ତଥାପି ସେ ଉଠି ଠିଆ ହେଲା । କହିଲା : ଆମେ କୁଆଡ଼େ ଯିବା ?

: ମୋ ସାଙ୍ଗରେ ଆସ ରାଜେଶ, ମୋତେ କିଛି ପ୍ରଶ୍ନ କର ନାହିଁ । ଆଜି ଦିନଟାରେ ମୋତେ ମୋର ଇଚ୍ଛା ପୂରଣର ସୁଯୋଗ ଦିଅ । ତମେ ଆଜି ମୋର ପ୍ରିୟ, ଆତ୍ମୀୟ, ପରମ ଆତ୍ମୀୟ ।

ମିସେସ୍ ମେହେରା ରାଜେଶର ଗୋଟାଏ ହାତ ନେଇ ନିଜ କାନ୍ଧ ଉପରେ ରଖି ଘରୁ ବାହାରି ଗଲେ । ଦୂରରେ, କେଉଁଠି ରକ୍-ନ୍-ରୋଲର ମିଉଜିକ୍ ବାଜୁଥିଲା । ସେ ସେଇଆଡ଼େ ଆକୃଷ୍ଟ ହେଲା ପରି ରାଜେଶକୁ ଟାଣି ଟାଣି ନେଇଗଲେ ।

ଗୋଟାଏ ବିରାଟ ହଲ୍ ଘର ।

ସେଇଠି ରକନ୍‌ରୋଲର ମିଉଜିକ୍ ବାଜୁଛି । ବହୁ ନର-ନାରୀ ମତ୍ତ ହୋଇ ନୃତ୍ୟ ଆରମ୍ଭ କରିଛନ୍ତି । ପାନ-ବିଭୋର ସେଇ ଅସଂଲଗ୍ନ ଯୁଗଳମାନଙ୍କ ଆଡ଼େ ଚାହିଁ ରାଜେଶ ମୁହୂର୍ତ୍ତେ ସ୍ତବ୍ଧ ହୋଇଗଲା । ତା'ର ପାଦ ଯୋଡ଼ାକ ଅଟକିଗଲା ମୁହୂର୍ତ୍ତକ ପାଇଁ । କିନ୍ତୁ ମିସେସ୍ ମେହେରା ଯେପରି ଉନ୍ମତ୍ତ ହୋଇ ଉଠିଥିଲେ । ସେ ରାଜେଶର କଟୀଦେଶ ବେଷ୍ଟନ କରି ଟାଣି ଟାଣି ନେଇଗଲେ ସେଇ ହଲ୍ ଘର ଭିତରକୁ ।

ମିଉଜିକ୍‌ର ତାଳେ ତାଳେ ମିସେସ୍ ମେହେରା ପାଦ ପକାଇଲେ । ରାଜେଶକୁ ଉଦ୍‌ବୁଦ୍ଧ କଲେ, ତାଳ ସହିତ ଛନ୍ଦ ମିଳାଇବାକୁ ।

ରାଜେଶ ଚେଷ୍ଟା କଲା । ଅନଭ୍ୟସ୍ତ ପାଦ ତା'ର ଛନ୍ଦପତନ ଘଟାଉଥିଲା । କିନ୍ତୁ ତଥାପି ମିସେସ୍ ମେହେରା ରାଜେଶର ପାଦ ଦୁଇଟାକୁ ବୋଲ ମନେଇବାକୁ ଚେଷ୍ଟା କରୁଥିଲେ ।

ମିଉଜିକ୍ ବାଜି ଚାଲିଥିଲା । ଅର୍ଦ୍ଧ ଅନ୍ଧକାର ହଲ୍ ଗୃହ ଭିତରେ ମିସେସ୍ ମେହେରା ଅର୍ଦ୍ଧ ନିମିଳିତ ଆଖିରେ ରାଜେଶ ମୁହଁକୁ ଚାହିଁ ଆତ୍ମବିଭୋର ହୋଇ ପଡ଼ିଥିଲେ । ସେ ରାଜେଶର ହାତକୁ ନେଇ ନିଜର ଗଳାରେ ବେଷ୍ଟନ କରି ତୃଷିତ ନୟନରେ ରାଜେଶ ଆଖିକୁ ଚାହିଁ ଆକୁଳ କଣ୍ଠରେ ଡାକିଲେ-

: ରାଜେଶ !

: କୁହନ୍ତୁ ମିସେସ୍ ମେହେରା ।

: ନା, ମୁଁ ଏଇକ୍ଷିଣା ମିସେସ୍ ମେହେରା ନୁହେଁ, ମୋତେ କୁହ ଆଶା । ଖାଲି ଆଶା । ନିବିଡ଼ ଭାବରେ ମୋତେ ବେଷ୍ଟନ କରି ବୁକୁରେ ବୁକୁ ମିଶାଇ ଆଜି ଦିନଟାକୁ ମହନୀୟ କରି ଦିଅ ରାଜେଶ । ମୋତେ ମୁକ୍ତି ଦିଅ ।

ରାଜେଶ ମିସେସ୍ ମେହେରାଙ୍କ ବାହୁ ପାଶରେ ଛଟପଟ ହେଉଥିଲା । ମିସେସ୍ ମେହେରା ଆହୁରି ଦୁର୍ଦ୍ଦାନ୍ତ ଭାବରେ ରାଜେଶକୁ ବାହୁ ପାଶରେ ଆବଦ୍ଧ କରି ଏକ ଅନ୍ଧକାର କୋଣକୁ ଟାଣି ଟାଣି ନେଉଥିଲେ ।

ରାଜେଶ ଦେଖିଲା, ମିସେସ୍ ମେହେରାଙ୍କର ଅଙ୍ଗବାସ ଶିଥିଳ ହୋଇ ପଡ଼ିଛି । ନାକରୁ ତାଙ୍କର ଖର ଶ୍ୱାସ ବାହାରୁଛି । ରାଜେଶକୁ ସେ ବିବ୍ରତ କରିବା ପାଇଁ କାନ୍ଧ ଉପରେ ମୁହଁ ରଖି, କାନ ପାଖରେ କହୁଛନ୍ତି, ପ୍ଲିଜ୍ ରାଜେଶ, ତମେ ମୋତେ ପୂର୍ଣ୍ଣ କର ରାଜେଶ । ତମେ ମୋତେ...

ରାଜେଶ ମିସେସ୍ ମେହେରାଙ୍କ ମୁହଁ କାନ୍ଧ ଉପରୁ ଘୁଞ୍ଚେଇ ଦେବା ପାଇଁ ଚେଷ୍ଟା କରୁଥିଲା, କିନ୍ତୁ ମିସେସ୍ ମେହେରା ଜୋର୍ କରି ରାଜେଶର ମୁହଁଟାକୁ ନିଜର ଉଲଗ୍ନ ବୁକୁ ଉପରେ ଚାପି ଧରି, ଅର୍ଦ୍ଧ ନିମିଳିତ ଆଖିରେ ଚାହିଁ କରୁଣ କଣ୍ଠରେ କହିଲେ, ପ୍ଲିଜ୍ ରାଜେଶ, ତମେ କିସ୍ କର, ତମେ ମୋତେ ପୂର୍ଣ୍ଣ କର, ତମେ ମୋତେ ଛିନ୍ନଭିନ୍ନ, କ୍ଷତବିକ୍ଷତ କରି ମୋର ଦେହଟାକୁ ରକ୍ତାକ୍ତ କରିଦିଅ ରାଜେଶ, ମୋତେ ତୁମେ...

ମିସେସ୍ ମେହେରାଙ୍କର କଥା ଅସମାପ୍ତ ରହିଗଲା । ରାଜେଶ ନିଜର ସଂପୂର୍ଣ୍ଣ ବଳ ପ୍ରୟୋଗ କରି, ମିସେସ୍ ମେହେରାଙ୍କୁ ନିଜ ଦେହରୁ ବିଚ୍ଛିନ୍ନ କରାଇ, ଗୋଟାଏ କୋଣକୁ ଏକପ୍ରକାର ଠେଲି ଫିଙ୍ଗି ଦେଇ, ସେଇ ହଲ୍ ଘରୁ ବାହାରି ଆସିଲା ।

ସେ ଯେପରି ଆତ୍ମରକ୍ଷା କରିବା ପାଇଁ ଧାଇଁ ପଳାଉଥିଲା ।

\+ + +

ରାଜେଶର ଦେହରୁ ଗମ୍ ଗମ୍ ହୋଇ ଝାଳ ବହି ଯାଉଥିଲା ।

ସେ ଆଉ ପଛକୁ ଫେରି ଚାହିଁ ନଥିଲା । ତା'ର ମନେ ହୋଇଥିଲା ଏକ ନିଃଶ୍ୱାସକରେ ସେ ହଲ୍ ଘରୁ ଛୁଟି ଆସି ରାଜରାସ୍ତା ଉପରେ ପହଞ୍ଚି ଯାଇଛି ।

ଶ୍ୱାସ ପ୍ରଶ୍ୱାସ ତା'ର ତୀବ୍ର ହୋଇ ଉଠିଥିଲା ।

ନା, ଆଉ ନୁହେଁ । ମିସେସ୍ ମେହେରା, ମିଷ୍ଟର ମେହେରା, ମିସ୍ ମେରୀ ସମସ୍ତଙ୍କ ବନ୍ଧନ ତାକୁ ତୁଟେଇ ଛୁଟି ପଳାଇବାକୁ ହେବ । ସେ ଆଉ ପାରିବ ନାହିଁ । ଏପରି ଏକ ଶ୍ୱାସରୁଦ୍ଧକାରୀ ନାଟକର ସେ ନାୟକ ହୋଇପାରିବ ନାହିଁ ।

ରାଜେଶ ଗାଡ଼ିର ଦରଜା ଖୋଲି ଭିତରେ ପଶିଲା । ତାକୁ ଏଇ ମୁହୂର୍ତ୍ତରେ ଛୁଟି ପଳାଇବାକୁ ହେବ । କାଳେ ଯଦି ମିସେସ୍ ମେହେରା ତା' ପଛରେ ଧାଇଁ ଥାଆନ୍ତି ।

ରାଜେଶର ପଛକୁ ଚାହିଁବାର ସାହସ ନଥିଲା ।

ଆଗକୁ ଆଗକୁ ଗାଡ଼ି ତା'ର ମାଡ଼ି ଚାଲିଥିଲା ।

ସ୍ପିଡ଼ୋମିଟରର କଣ୍ଟା କ୍ରମଶଃ ଉର୍ଦ୍ଧ୍ୱମୁଖୀ ହେଉଥିଲା ।

ସେ କୁଆଡ଼େ ଯିବ ? ଘରକୁ ନା ଅନ୍ୟ କେଉଁଠାକୁ ।

ଶେଷରେ ରାଜେଶ ମନେମନେ ସିଦ୍ଧାନ୍ତ କଲା, ଘରକୁ ହିଁ ଫେରିଯିବ । ଭିତରୁ କବାଟ କିଳି ଶୋଇଯିବ । ଯିଏ ଯେତେ ଡାକିଲେ ମଧ୍ୟ କବାଟ ଖୋଲିବ ନାହିଁ ।

ରାଜେଶ ଗାଡ଼ିର ଷ୍ଟିଅରିଂଟା ଧରି ଡାହାଣ ଆଡ଼କୁ ଘୂରାଉଥିଲା । ସେତିକିବେଳେ ପଛଆଡୁ ତା' ବେକ ପାଖରେ କିଛି ଏକ କଠିନ ପଦାର୍ଥର ଖୁଞ୍ଚା ଅନୁଭବ କଲା । ମୁହଁ

ବୁଲାଇ ପଛକୁ ଅନେଇବା ପୂର୍ବରୁ ସେ ଏକ କର୍କଶ କଣ୍ଠସ୍ୱର ଶୁଣିବାକୁ ପାଇଲା : ଡାହାଣକୁ ନୁହେଁ ମିଷ୍ଟର ରାଜେଶ । ଗାଡ଼ି ସିଧା ରେଡ଼ ରୋଡ଼ ଆଡ଼କୁ ଚଳାନ୍ତୁ ।

: ମାନେ ? ରାଜେଶ ମୁଣ୍ଡ ବୁଲେଇ ପଛକୁ ଚାହିଁ ପାରିଲା ନାହିଁ । ପଛଆଡ଼େ ବେକତଳେ ସେହି ଖୁଞ୍ଚାଟା ରାଜେଶ ଅଧିକ ଭାବରେ ଅନୁଭବ କଲା ।

: ଆପଣଙ୍କୁ ମୋ ନିର୍ଦ୍ଦେଶରେ ଗାଡ଼ି ଚଳେଇବାକୁ ହେବ । ମୋ ଆଦେଶ ପାଳନ ନ କଲେ, ଆପଣଙ୍କ ବେକତଳ ସ୍ପର୍ଶ କରିଥିବା ମୋର ଲୋଡ଼େଡ଼୍ ରିଭଲଭରଟା ଗର୍ଜି ଉଠିବ ।

ଗାଡ଼ିର ସ୍ପିଡ଼ୋମିଟର ଧୀରେ ଧୀରେ ତଳକୁ ଖସି ପଡୁଥିଲା । ଏ ପୁଣି ଏକ ନୂଆ ବିପଦ ଯେ !

ରାଜେଶ ଚିନ୍ତା କରିପାରୁ ନଥିଲା ଲୋକଟା କିଏ ଏବଂ ସେ ତା' ଗାଡ଼ିର ପଛ ସିଟ୍‌ରେ କେତେବେଳୁ ଲୁଚି ରହିଥିଲା ?

ରାଜେଶ କିନ୍ତୁ ବାଧ୍ୟ ହୋଇ ଗାଡ଼ିର ଦିଗ ପରିବର୍ତ୍ତନ କରିଥିଲା । ସେହି ଅଜ୍ଞାତ ଲୋକଟିର ନିର୍ଦ୍ଦେଶ ଅନୁସାରେ ଗାଡ଼ି ସେ ରେଡ଼ରୋଡ଼ ଆଡ଼େ ମୁହାଁଇଥିଲା ।

ରାଜେଶ କହିଲା : ଆପଣ କିଏ ? କ'ଣ ଚାହାନ୍ତି ମୋଠାରୁ ?

ଲୋକଟି କହିଲା : ସତକଥା କହିବାକୁ ଗଲେ ମୁଁ ହୁକୁମ୍‌ର ଚାକର । ମୋର ବସ୍ କିନ୍ତୁ ଆପଣଙ୍କଠାରୁ ବନ୍ଧୁତ୍ୱ କାମନା କରନ୍ତି ।

: କିଏ ଆପଣଙ୍କର ବସ୍ ? ରାଜେଶ ଗାଡ଼ି ଚଳଉ ଚଳଉ ଆଗକୁ ଚାହିଁ ପଚାରିଲା ।

: ମୁଁ ତାଙ୍କରି ପାଖକୁ ଆପଣଙ୍କୁ ନେଇଯାଉଛି । ଏହାଠାରୁ ଆଉ ଅଧିକ ମୋତେ ଜଣା ନାହିଁ କିଛି ।

: ଆମକୁ ଏଇକ୍ଷିଣା କୁଆଡ଼କୁ ଯିବାକୁ ହେବ ?

: ଆପଣ ସିଧା ଚଳାନ୍ତୁ । ମାଜାର୍‌ହାଟ ବ୍ରିଜ୍ ଦେଇ ଆମକୁ ଆଗେଇବାକୁ ହେବ । ମୁଁ ଆପଣଙ୍କୁ ପଥ ଦେଖେଇ ଦେବି । ଲୋକଟି କହି ନୀରବ ହୋଇଗଲା ।

ରାଜେଶ ମନ ଭିତରେ ଅସଂଖ୍ୟ ଆଶଙ୍କା ନେଇ ଗାଡ଼ି ଚଳଉଥିଲା । ଗୋଟିଏ ପରେ ଗୋଟିଏ ରୋମାଞ୍ଚକାରୀ ଘଟଣା ତା' ଜୀବନରେ ଯେପରି ଘଟି ଚାଲିଛି, ହୁଏତ ଏହିପରି ଆଉ କିଛିଦିନ ଲାଗି ରହିଲେ, ରାଜେଶର ପ୍ରାଣଟା କଲବଲ ହୋଇଉଠିବ ।

ହଠାତ୍ ପଛରୁ ଲୋକଟା କହି ଉଠିଲା : ଗାଡ଼ି ବନ୍ଦ କରନ୍ତୁ ମିଷ୍ଟର ରାଜେଶ ।

ରାଜେଶ ଗାଡ଼ି ବନ୍ଦ କରିବା ସଂଗେ ସଂଗେ ତା' ଆଖି ଉପରେ କିଏ ଗୋଟାଏ କଳା ପଟି ଚାପି ଧରିଲା ଏବଂ ପଛପଟରୁ ଡେଇଁପଡ଼ି କହିଲା : ଆପଣ ଷ୍ଟିଅରିଂ ଛାଡ଼ି ଘୁଞ୍ଚି ବସନ୍ତୁ ।

ରାଜେଶ ଆଦେଶ ପାଳନ କଲା । ପଛପଟରେ ବେକ ତଳେ ସେଇ ଖୁଞ୍ଚାଟା ତଥାପି ସେ ଅନୁଭବ କରୁଥିଲା । ତା'ର ମନେହୋଇଥିଲା, ସେଇ ଲୋକଟା ଛଡ଼ା ଆଉ ଜଣେ ଲୋକ ପଛପଟରୁ ଡେଇଁ ଆଗକୁ ଆସିଛି । ସେ ରାଜେଶ ମୁହଁରେ ଭଲକରି କଳାପଟି ବାନ୍ଧି ଦେଲା । ପଛ ଲୋକଟି କହିଲା : ଆପଣ ଚୁପ୍‌ଚାପ୍ ବସି ରୁହନ୍ତୁ । ଏଥର ଗାଡ଼ି କେଉଁଆଡ଼େ ଯିବ, ଆପଣ ଜାଣିବାକୁ ଚେଷ୍ଟା କରିବେ ନାହିଁ । ଆପଣ ଭୟ କରନ୍ତୁ ନାହିଁ । ଆପଣଙ୍କର ଆମେ କିଛି ଅନିଷ୍ଟ କରିବୁ ନାହିଁ ।

ରାଜେଶ ପାଖରେ କେହି ଜଣେ ବସି ଗାଡ଼ି ଚଳାଉଥିବାର ରାଜେଶ ଅନୁଭବ କଲା । ତା'ର ମନେହୋଇଥିଲା, ପକେଟର ଗୁପ୍ତ ସ୍ଥାନରୁ ତା'ର ବିଶ୍ୱସ୍ତ ରିଭଲଭରଟି ବାହାର କରି ଶତ୍ରୁର ମୁକାବିଲା କରିବ । କିନ୍ତୁ ପୁଣି ମନକୁ ସଂଯତ କଲା । ହୁଏତ ସେ ପରାସ୍ତ ହୋଇପାରେ । ହୁଏତ ଏଇଟା ସୁଯୋଗ ନୁହେଁ । ଆତ୍ମରକ୍ଷା ପାଇଁ ତାକୁ ଶତ୍ରୁର ମୁକାବିଲା କରିବାକୁ ହେବ, କିନ୍ତୁ ସୁଯୋଗ ଆସିଲେ ।

ଗାଡ଼ି ଚାଲିଥିଲା । ମନେହେଉଥିଲା ଗତିବେଗ ଅନେକ ବଢ଼ିଯାଇଛି ।

ରାଜେଶ ନୀରବରେ ବସି ଯାତ୍ରା ଶେଷର ଅପେକ୍ଷା କରୁଥିଲା ।

ଏକ ସମୟରେ ଗାଡ଼ି ଯାଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହେଲା । ଡାହାଣ ପାଖ ଲୋକଟି ଉଠିଯାଇ ଗାଡ଼ିର ବାଁ ପାଖ ଦରଜାଟି ଖୋଲିଦେଲା । ପଛ ଲୋକଟି ସେହିପରି କର୍କଶ କଣ୍ଠରେ କହିଲା : ଏଥର ଓହ୍ଲାନ୍ତୁ ମିଷ୍ଟର ରାଜେଶ । ଆମେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ଯାଇଛେ ।

ରାଜେଶ ତଳକୁ ଓହ୍ଲାଇଲା ।

ଲୋକଟି ତା' ସଙ୍ଗୀଟିକୁ କହିଲା : ଭଲ ଭାବରେ ସର୍ଚ୍ଚ କରିନିଅ ।

କ୍ଷଣକ ପାଇଁ ରାଜେଶର ଡାହାଣ ହାତଟା ପକେଟ ଭିତରକୁ ଆଗେଇ ଯାଉଥିଲା । କିନ୍ତୁ ସେଇ କର୍କଶ କଣ୍ଠସ୍ୱର ଶୁଣାଗଲା : ହ୍ୟାଣ୍ଡସ୍ ଅପ୍ ମିଷ୍ଟର ରାଜେଶ !

ରାଜେଶ ହାତ ଦୁଇଟା ଉପରକୁ ଟେକି ଠିଆ ହେଲା ।

ଲୋକଟି ରାଜେଶର ପକେଟ ସର୍ଚ୍ଚ କରି ତା' ବିଶ୍ୱସ୍ତ ରିଭଲଭରଟି କାଢ଼ିନେଲା । ହାତ ଧରି ଆଗକୁ ପାଦ ବଢ଼େଇବାକୁ କହିଲା ।

ରାଜେଶ ସେହିପରି ଆଖି ବନ୍ଧା ହୋଇଥିବା ଅବସ୍ଥାରେ ଆଗକୁ ଆଗକୁ ପାଦ ବଢ଼ାଇଲା । ସେ କେଉଁଠି ପହଞ୍ଚିଛି, କୁଆଡ଼େ ଯାଉଛି, କିଛି ବୁଝିପାରୁ ନଥିଲା ।

ଅବଶେଷରେ ତାକୁ ଗୋଟାଏ ଜାଗାରେ ଠିଆ ହେବାକୁ ପଡ଼ିଲା । ଜଣେ ଲୋକ ତା' ଆଖିରୁ କଳାପଟିଟା ଖୋଲି ଦେଲା ।

ରାଜେଶ ଆଖି ଖୋଲି ଚାହିଁଲା, ସେ ଏକ କୋଠାଘର ସାମ୍ନାରେ, ଶିଡ଼ି ପାଖରେ ଠିଆ ହୋଇଛି । ତା'ର ଦୁଇ ପାଖରେ ଦୁଇଜଣ ଉଦ୍ୟତ ରିଭଲଭରଧାରୀ ଷଣ୍ଢ ମାର୍କା ଲୋକ ।

ରାଜେଶକୁ ସେମାନେ ଇଂଗିତରେ ଶିଡ଼ି ବାଟେ ଉପରକୁ ଉଠିବାକୁ କହିଲେ । ସେ ଦୁଇଆଡ଼େ ଦୁଇଜଣଙ୍କ ମୁହଁକୁ ଶଙ୍କିତ ନୟନରେ ଚାହିଁ ଧୀରେ ଧୀରେ ଉପରକୁ ଉଠିଲା ।

କାଠଶିଡ଼ି ଉପରେ ନିଜର ପାଦଶବ୍ଦ ତା' କାନକୁ କିପରି ଭୟଙ୍କର ଶୁଣାଯାଉଥିଲା । ପ୍ରହରୀ ଦୁଇଜଣ ତା'ର ଦୁଇପାଖରେ ତାକୁ ଗାର୍ଡ଼ କରି ନେଇଯାଉଥିଲେ ।

ଶିଡ଼ିର ଦୁଇଟି ସ୍ତର ଅତିକ୍ରମ କରି ସେ ଯାଇ ଯେଉଁଠି ଠିଆ ହେଲା, ତାହା ଏକ ପ୍ରତୀକ୍ଷା କକ୍ଷ ପରି ମନେହେଉଥିଲା । ଗୋଟିଏ ସୋଫା ସେଟ୍, ଗୋଟିଏ ଛୋଟ ଟେବୁଲ ଏବଂ ଫୁଲଦାନୀରେ ସଜ୍ଜିତ ଜାତି ଜାତିକା ଫୁଲ ସେହି ଘରଟିର ଶୋଭା ବର୍ଦ୍ଧନ କରୁଥିଲା । ସେମାନେ ରାଜେଶକୁ ସେଇ ଘର ଭିତରେ ଅପେକ୍ଷା କରିବାକୁ ଇଂଗିତରେ କହିଲେ ।

ରାଜେଶ ସନ୍ତର୍ପଣରେ ଯାଇ ଗୋଟିଏ ସୋଫା ଉପରେ ବସିଲା ।

ଟେବୁଲ ଉପରେ ସିଗାରେଟ୍ ଟିଣ ଏବଂ ଡିଆସିଲି ଥୁଆ ହୋଇଥିଲା । ଦେଶ ବିଦେଶର ପତ୍ରପତ୍ରିକା ସଜଡ଼ା ହୋଇ ରଖାହୋଇଥିଲା । କାନ୍ଥରେ ପ୍ରାଚୀନ ତୈଳଚିତ୍ର କେତୋଟି ଝୁଲୁଥିଲା ।

ରାଜେଶ ଚାରିଆଡ଼କୁ ଥରେ ଚାହିଁ ନୀରବରେ ତଳକୁ ମୁହଁ କରି ତା'ର ସ୍ଥିତି ସମ୍ବନ୍ଧରେ ଚିନ୍ତା କରିବାକୁ ଲାଗିଲା ।

: ଓ ମିଷ୍ଟର । ଗୋଟାଏ ତରୁଣୀର କଣ୍ଠସ୍ୱର ଶୁଣି ରାଜେଶ ମୁଣ୍ଡ ଟେକି ଚାହିଁଲା ।

ତରୁଣୀ ହସିଲା । ଇଙ୍ଗିତରେ ଉଠି ଆସିବାକୁ ଡାକିଲା ।

ରାଜେଶ ଉଠି ଠିଆ ହେଲା । ତରୁଣୀଟି କହିଲା : ଆସନ୍ତୁ ମୁଁ ଆପଣଙ୍କୁ ଯଥା ସ୍ଥାନକୁ ନେଇଯିବି ।

ବାହାରେ ସେଇ ଷଣ୍ଢମାର୍କା ଲୋକ ଦୁଇଜଣ ଠିଆ ହୋଇଥିଲେ । ରାଜେଶ ତରୁଣୀଟି ପଛେ ପଛେ ଆଗେଇବାକୁ ଲାଗିଲା ।

ଗୋଟାଏ ଲମ୍ବା ବାରଣ୍ଡାର ଶେଷ ଭାଗରେ ଯେଉଁ ଘରଟି, ତରୁଣୀଟି ସେଇ ଘରର ଦରଜା ଟାଣିଧରି କହିଲା : ଭିତରକୁ ଯାଆନ୍ତୁ ।

ରାଜେଶ ଆଗରୁ ନିଜକୁ ପ୍ରସ୍ତୁତ କରୁଥିଲା । ଯେକୌଣସି ସମସ୍ୟାର ମୁକାବିଲା ସେ କରିବ ।

କିନ୍ତୁ ରାଜେଶ ଘରେ ପଶିଯାଇ ଅଟକି ଯାଇଥିଲା । ସେ ଅନୁଭବ କଲା ଘର ଭିତରେ ଅପେକ୍ଷାକୃତ ଲାଇଟ୍ କମ୍ ଏବଂ ଖୁବ୍ ହାଲ୍କା ନୀଳ ଆଲୋକର ଲହରୀ ଘରଯାକ ଖେଳୁଛି ।

ସାମ୍ନାରେ ମନେହେଲା ଗୋଟାଏ ବିରାଟ ମୟୂର ଚନ୍ଦ୍ରିକାର ପର୍ଦ୍ଦା । ଜାଲ ପରି ସେଇ ପର୍ଦ୍ଦା ଭିତରେ ଯାହା ଦୃଷ୍ଟିଗୋଚର ହେଉଛି, ସେଥିରେ ସେ ଅନୁମାନ କଲା, ସେଇ ମୟୂର ଚନ୍ଦ୍ରିକା ପର୍ଦ୍ଦା ସେପାଖରେ ଏକ ଦୁଗ୍ଧ ଫେନନିଭ ଶଯ୍ୟା ଉପରେ ଏକ ସୁନ୍ଦରୀ ତରୁଣୀ ଶୋଇ ରହିଛି । ଭିତରଟା ନୀରବ ନିସ୍ତବ୍ଧ । ସେ ଆହୁରି ଭଲ କରି ଚାହିଁଲା, ହଁ ଗୋଟିଏ ସୁନ୍ଦରୀ ତରୁଣୀ, ଅର୍ଦ୍ଧ ମୁକୁଳିତ ଦେହ ବଲ୍ଲରୀ, ଚକ୍ଷୁ ଅର୍ଦ୍ଧ ନିମିଳିତ ।

ରାଜେଶର ମନେହେଲା, ସେ ବୋଧହୁଏ ଗୋଟାଏ ଭୁଲ୍ ଘରେ ପଶିଯାଇଛି । ସେ ଫେରି ଯାଉଥିଲା ।

କିନ୍ତୁ ଏକ ମଧୁ ହାସ୍ୟର ଗୁଞ୍ଜରଣ ଘରଯାକ ତରଙ୍ଗାୟିତ ହୋଇ ଉଠିଲା । ସେ ଏକ ମଧୁର କଣ୍ଠସ୍ୱର ଶୁଣିଲା : କମ୍‌ଇନ୍ ମିଷ୍ଟର ରାଜେଶ ! ମୁଁ ଆପଣଙ୍କ ପାଇଁ ଅପେକ୍ଷା କରିଛି ।

ରାଜେଶ ଚାହିଁଲା । କିଏ ଡାକୁଛି ତାକୁ ? ତେବେ କ'ଣ ସେଇ ତରୁଣୀଟି...

ହଁ, ସେଇ ତରୁଣୀଟି ଶେଜ ଉପରେ ଅର୍ଦ୍ଧଶାୟିତ ଅବସ୍ଥାରେ ଉଠି ବସୁଛି । ରାଜେଶକୁ ହାତ ହଲାଇ ଡାକୁଛି । ଚାଲି ଆସ ରାଜେଶ, ପର୍ଦ୍ଦା ଆଡ଼େଇ ଭିତରକୁ ଆସ ।

ରାଜେଶର ଗୋଡ଼ ଦୁଇଟା ମୁହୂର୍ତ୍ତକ ପାଇଁ ଅଟକି ଯାଇଥିଲା । କିନ୍ତୁ ପର ମୁହୂର୍ତ୍ତରେ ସେ ସଚେତନ ହୋଇ ଉଠିଥିଲା । ତାକୁ ସବୁ ସମସ୍ୟାର ମୁକାବିଲା କରିବାକୁ ପଡ଼ିବ ।

ରାଜେଶ ଆଗେଇ ଗଲା । ପର୍ଦ୍ଦା ଆଡ଼େଇ ସେ ଯେତେବେଳେ ଭିତରେ ପଶିଲା, ତା' ଆଖି ଯୋଡ଼ାକ ସ୍ଥିର ହୋଇଗଲା । ଗୋଟିଏ ନାରୀ ଅଙ୍ଗରେ ଏତେ ରୂପ ! ରାଜେଶର ଯୁବପ୍ରାଣ ଭିତରେ କିପରି ଏକ ଦେଖିବାର ମୋହ ଜାଗି ଉଠିଲା । ତରୁଣୀଟି ଉପରୁ ଅନେକ ବେଳଯାଏ ସେ ଦୃଷ୍ଟି ଫେରାଇ ପାରିଲା ନାହିଁ ।

ପୁଣି ହସର ଏକ ମୃଦୁ ଗୁଞ୍ଜରଣ ଘରଯାକ ଖେଳିଗଲା । ତରୁଣୀଟି ବୀଣା ନିନାଦିତ କଣ୍ଠରେ କହିଲା : ବସନ୍ତୁ ମିଷ୍ଟର ରାଜେଶ !

ରାଜେଶର ଧ୍ୟାନଭଂଗ ହେବା ପରି ସେ ସାମ୍ନାରେ ପଡ଼ିଥିବା ଏକ ଚେଆର୍ ଉପରେ ବସିପଡ଼ିଲା ।

ତରୁଣୀଟି କହିଲା : ଆପଣ ଏଠାକୁ କାହିଁକି ଆସିଛନ୍ତି ଜାଣିନାହାନ୍ତି । ଆପଣଙ୍କ ମନରେ ଅଶେଷ କୌତୂହଳ ଜାଗ୍ରତ ହୋଇ ରହିଥିବ । ମୋ ନାଁ କୁଇନ୍ । ମୋ ବସ୍‌ଙ୍କର ମୁଁ ଅତ୍ୟନ୍ତ ବିଶ୍ୱାସଭାଜନ । ଆପଣଙ୍କୁ ବସ୍ ଜୋର୍ କରି ଧରି ଆଣିଛନ୍ତି, ଆପଣଙ୍କ ସହିତ ମୁଁ ଏକ ସଉଦା କରିବାକୁ ଚାହେ । ରାଜି ହେଲେ, ବିନିମୟରେ ଅନେକ ପାରିତୋଷିକ ଆମେ ଦେବୁ ।

ରାଜେଶ ପଚାରିଲା : ଆପଣଙ୍କ ବସ୍ କିଏ ?

କୁଇନ୍ ହସିଲା । କହିଲା : ମୋ ବସ୍‌ଙ୍କ ନାଁ ଜାଣି ଆପଣଙ୍କର କିଛି ଲାଭ ହେବ ନାହିଁ । ମୋ ସହିତ ଆପଣ ସଉଦା କରିବେ । ଜିନିଷ ମୋତେ ଦେବେ । ପଇସା ମୁଁ ଆପଣଙ୍କୁ ଦେବି ।

ରାଜେଶ କପାଳରେ ରେଖାଗୁଡ଼ିକ କୁଞ୍ଚିତ ହୋଇଉଠିଲା । ସେ ଆଶା କରି ନଥିଲା ଏପରି ଏକ ଲହୁଣି ପିତୁଳା ମୁହଁରୁ ସେ ଏପରି ଭୟଙ୍କର କଥା ଶୁଣିବ । କିନ୍ତୁ ସେ ମନକୁ ପ୍ରସ୍ତୁତ କରି ସାରିଥିଲା । କହିଲା : ମୋଠାରୁ ଆପଣ କି ସଉଦା କରିବାକୁ ଚାହାନ୍ତି ?

: କହିବି ମିଷ୍ଟର ରାଜେଶ, ନିଶ୍ଚୟ କହିବି । କିନ୍ତୁ ତା' ପୂର୍ବରୁ କହିରଖୁଛି, ଆପଣ ଆମ କଥାରେ ରାଜିହେଲେ ବିନିମୟରେ ଆମେ ଆପଣଙ୍କୁ ପଚାଶ ହଜାର ଟଙ୍କା ଦେବୁ । ଆପଣ ଏତିକି ଟଙ୍କାରେ ସ୍ୱାଧୀନ ଭାବରେ ଜୀବନ ନିର୍ବାହ କରିବାରେ ଅସୁବିଧା ହେବ ନାହିଁ ।

ରାଜେଶ କାନରେ ଟଙ୍କାର ଅଙ୍କଟା ପ୍ରଥମେ କିପରି ମୋହ ସୃଷ୍ଟି କଲା । କିନ୍ତୁ ସେ ଏତେ ସହଜରେ ଆତ୍ମସମର୍ପଣ କରିବାକୁ ରାଜି ନଥିଲା । ତା'ର ଜଡ଼ତା ଧୀରେ ଧୀରେ କଟିଯାଉଛି । ସେ ବି ଛକାପଞ୍ଝା ଖେଳିବା ପାଇଁ ମନେ ମନେ ପ୍ରସ୍ତୁତ ହେଉଛି ।

ରାଜେଶ ମୁହଁରେ ଆଗ୍ରହର ଚିହ୍ନ ଫୁଟାଇ ସହଜ କଣ୍ଠରେ ପଚାରିଲା : ମୁଁ ଆପଣଙ୍କୁ ମିସ୍ କୁଇନ୍ ନା ମିସେସ୍ କୁଇନ୍, କ'ଣ କହିବି ?

: ଖାଲି କୁଇନ୍ । ମିସ୍ କି ମିସେସ୍ ପରି ଏକ ଭଦ୍ରତା ସୁଲଭ ସମ୍ବୋଧନ ମୁଁ ଆପଣଙ୍କଠାରୁ ଆଶା କରେ ନାହିଁ । ଆପଣଙ୍କୁ ମୋ ବସ୍ ଯାହା ମନେକରନ୍ତୁ, ମୁଁ କିନ୍ତୁ ଆପଣଙ୍କ ସହିତ ବନ୍ଧୁତ୍ୱ ଚାହେ ।

: ଶୁଣି ଖୁସି ହେଲି । ଏଥର ଅସଲ କଥାଟା କୁହନ୍ତୁ ।

କୁଇନ୍ ତକିଆକୁ ଆଉଜି ସିଧା ହୋଇ ବସିଲା । କହିଲା : ମୁଁ ଆପଣଙ୍କ ଠାରୁ 'ସ୍ୱର୍ଣ୍ଣ-ମୟୂରୀ' ସଉଦା କରିବାକୁ ଚାହେ ।

ମୁହୂର୍ତ୍ତକ ପାଇଁ ଘର ଭିତରେ ନୀରବତା ରାଜତ୍ୱ କଲା ।

ରାଜେଶ ମୁହଁରେ ହସ ଫୁଟାଇ କହିଲା : ଆପଣଙ୍କ ପ୍ରସ୍ତାବ ଉତ୍ତମ । କିନ୍ତୁ 'ସ୍ୱର୍ଣ୍ଣମୟୂରୀ' ଉପାଖ୍ୟାନ ଯଦିଓ ମୋତେ ଜଣା ଅଛି, ଅସଲ 'ସ୍ୱର୍ଣ୍ଣମୟୂରୀ'ର ସନ୍ଧାନ ମୁଁ ନିଜେ ଏଯାଏ ପାଇ ନାହିଁ । ଆପଣ ନିଶ୍ଚୟ ଜାଣିଥିବେ ମୋ ବସ୍ କିପରି ଚତୁର ଲୋକ ।

: ମୁଁ ଜାଣିଛି ମିଷ୍ଟର ରାଜେଶ । ସେଇଥିପାଇଁ ତ ଆପଣଙ୍କୁ ଏଠାକୁ ଜୋର୍ କରି ଆଣିବାକୁ ହେଲା । ଆମ ବସ୍‌ଙ୍କର ନିଶ୍ଚିତ ବିଶ୍ୱାସ ଯେ ଆପଣ ଅସଲ 'ସ୍ୱର୍ଣ୍ଣମୟୂରୀ'ର ସମ୍ବାଦ ନିଶ୍ଚୟ ଜାଣନ୍ତି । ନକଲ କଥା ତ ଆଉ ଉଠୁ ନାହିଁ । ନକଲଟି ବର୍ତ୍ତମାନ ଯାଇ ପୋଲିସ୍ ମାଲଖାନାରେ ।

: କୋଉଠି ମୁଁ ଜାଣି ନାହିଁ । ତେବେ ନକଲଟିର ସମ୍ବାଦ ମୁଁ ଜାଣିଥିଲି । ଅସଲଟି ସମ୍ବନ୍ଧରେ ମୁଁ ଅଜ୍ଞ ।

: ମିଷ୍ଟର ରାଜେଶ । ଆମ ବସ୍ କେବେ ମରୀଚିକା ପଛରେ ଧାଆନ୍ତି ନାହିଁ । ସେ ଭାରି ବାସ୍ତବବାଦୀ । ତେଣୁ ଆପଣ ଚାହିଲେ ସଉଦାର ମୂଲ୍ୟ ଆମେ ଆଉ ଟିକେ ବଢ଼େଇ ଦେଇପାରିବୁ ।

ରାଜେଶ ଉଠି ଠିଆ ହେଲା । କହିଲା : ମୋ ସହିତ ଆଉ କିଛି କଥା ଅଛି ? ମୋର ଶେଷ ଉତ୍ତର ହେଉଛି, ଅସଲ ସ୍ୱର୍ଣ୍ଣମୟୂରୀ ସମ୍ବନ୍ଧରେ ମୁଁ କିଛି ଜାଣେ ନାହିଁ ।

କୁଇନ୍ ହସିଲା । କହିଲା : ଆପଣ ସବୁ ଜାଣନ୍ତି ମିଷ୍ଟର ରାଜେଶ । ନ ଜାଣିବାର ଛଳନା କଲେ ଆମେ ଆପଣଙ୍କୁ ଛାଡ଼ି ଦେବୁ ନାହିଁ । ଆପଣ ଯେଉଁ ଚକ୍ରବ୍ୟୂହ ଭିତରେ ଆସି ପଶିସାରିଛନ୍ତି, ସେଠୁ ବାହାରି ଯିବାର ସମସ୍ତ ପଥ ଅବରୁଦ୍ଧ । ତେଣୁ ଆପଣ ବର୍ତ୍ତମାନ ଅସହାୟ ।

ରାଜେଶ ଦର୍ପିତ ଭଙ୍ଗୀରେ କହିଲା : ମୁଁ ଅସହାୟ ଠିକ୍ । ଆହୁରି ସ୍ପଷ୍ଟ ଭାବରେ କହିବାକୁ ଗଲେ, ମୁଁ ବନ୍ଦୀ ମଧ୍ୟ । କିନ୍ତୁ ଅନ୍ୟାୟ ଭାବରେ ଜଣେ ନିରୀହ ଲୋକ ଉପରେ ଯଦି ଜବରଦସ୍ତ ଜୁଲୁମ୍ କରାଯାଏ, ସେ କ'ଣ କରିପାରିବ ?

: ନା ମିଷ୍ଟର ରାଜେଶ । ଜବରଦସ୍ତ ଜୁଲୁମ ଆମେ କାହା ଉପରେ କରି ନାହୁଁ । ଆମେ ନିଶ୍ଚିତ ଭାବରେ ସମ୍ବାଦ ପାଇଛୁ ଯେ, ଆପଣ ନିଜ ହାତରେ ସ୍ୱର୍ଣ୍ଣ ମୟୂରୀଟିକୁ ଏକ ନିରାପଦ ସ୍ଥାନରେ ରଖି ଆସିଛନ୍ତି । ତେଣୁ ଆପଣଙ୍କ ଉପରେ ଆମେ ଜବରଦସ୍ତ ଜୁଲୁମ୍ କିଛି କରିବୁ ନାହିଁ । ଆମେ ବେପାରୀ, ଆପଣଙ୍କ ସହିତ ସଉଦା କରିବାକୁ ଚାହୁଁଛୁ ।

ରାଜେଶ ସେହିପରି ଦୃଢ଼ କଣ୍ଠରେ କହିଲା : ମୁଁ ଯଦି କହେ ଆପଣ ଭୁଲ୍ ସଂବାଦ ପାଇଛନ୍ତି ଏବଂ ସେଇ ଭୁଲ୍ ସଂବାଦ ଉପରେ ଭିତ୍ତି କରି ଜଣେ ନିରୀହ ଲୋକ ଉପରେ ଜୁଲୁମ୍ ଆରମ୍ଭ କରିଛନ୍ତି ?

କୁଇନ୍ ପୁଣି ହସର ଗୁଞ୍ଜରଣ ଘରସାରା ଖେଳେଇ ଖେଳେଇ କହିଲା : ବସନ୍ତୁ ମିଷ୍ଟର ରାଜେଶ । ମୁଁ ଆପଣଙ୍କୁ ଗୋଟିଏ ଗୀତ ଶୁଣାଇବି ।

କୁଇନ୍ ପାଖ ଆଲମାରୀ ଖୋଲି ଗୋଟିଏ ଟେପ୍ ରେକର୍ଡ଼ର ବାହାର କଲା ଏବଂ କହିଲା : ବସନ୍ତୁ ମିଷ୍ଟର ରାଜେଶ । ଆପଣ ରାଗୁଛନ୍ତି କାହିଁକି ? ଆମେ ଆପଣଙ୍କ ସହିତ ବେପାର କରିବାକୁ ଚାହୁଁଥିଲୁ, ଯଦି ଆପଣଙ୍କୁ ନ ପୋଷାଏ ଆପଣ ଚାଲିଯିବେ । କିନ୍ତୁ ବନ୍ଧୁତ୍ୱଟା ଅନ୍ୟ ଜିନିଷ । ବସନ୍ତୁ ।

ରାଜେଶ ପୁଣି ଚେଆର୍ ଉପରେ ବସିଲା ।

କୁଇନ୍ ଟେପ୍ ରେକର୍ଡ଼ଟିର ଚାବି ଖୋଲି ଦେଲା ।

...... ....... ......

: ଆଜିର ଖବରକାଗଜରୁ ତମେ ସ୍ୱର୍ଣ୍ଣମୟୂରୀ ସଂବାଦ ନିଶ୍ଚୟ ପଢ଼ିଚ ।

: ପଢ଼ିଚି ସାର୍ ।

: ପଢ଼ି କ'ଣ ବୁଝିଲ ?

: ମୁଁ କିଛି ବୁଝିପାରିଲି ନାହିଁ । ଭାବିଥିଲି ଏ ସମ୍ବନ୍ଧରେ ଆପଣଙ୍କୁ ପଚାରି ଜାଣିବି ।

....... ....... ......

କୁଇନ୍ ଟେପ୍‌ରେକର୍ଡ଼୍‌ଟିର ଚାବି ବନ୍ଦ କରି ଦେଲା ।

ରାଜେଶ ହଠାତ୍ ଘର ଭିତରେ ଧୀରାଜ ମେହେରାଙ୍କ କଣ୍ଠସ୍ୱର ଶୁଣି ଚମକି ଉଠିଥିଲା । ଆହୁରି ଆଶ୍ଚର୍ଯ୍ୟ ହେଲା ଧୀରାଜ ମେହେରାଙ୍କ ସହିତ ସେ କଥାବାର୍ତ୍ତା କରୁଥିବାର ଶୁଣି । ଟେପ ରେକର୍ଡ଼୍‌ଟି ଆଡ଼କୁ ରାଜେଶ ସନ୍ଦେହୀ ଦୃଷ୍ଟିରେ ଚାହିଁଥିଲା ।

କୁଇନ୍ ଦର୍ପିତ ଚାହାଣିରେ ରାଜେଶ ଆଡ଼କୁ ଚାହିଁ ପୁଣି ଟେପ୍ ରେକର୍ଡ଼ର ଚାବିଟି ଖୋଲିଦେଲା ।

....... .......... .........

: ତେବେ ସ୍ୱର୍ଣ୍ଣମୟୂରୀ ସମ୍ବନ୍ଧରେ ଖବରକାଗଜରେ ଯେଉଁ ସମ୍ବାଦଟି ପ୍ରକାଶ ପାଇଛି ତାହା ସତ୍ୟ । ମାନେ ଗତ ୨୫ ତାରିଖ ରାତିରେ ନାସନାଲ ମିଉଜିଅମ୍‌ରୁ ସ୍ୱର୍ଣ୍ଣ ମୟୂରୀଟି ଅପହୃତ ହୋଇଛି । ଆରଦିନ ସକାଳ ଆଠଟାରେ ସ୍ୱର୍ଣ୍ଣମୟୂରୀଟି ମୋ ଅଖ୍ତ୍ୟାରକୁ ଆସିଛି । କାଲି ଯେତେବେଳେ ତମ ସହିତ କଥା ହେଉଥିଲି ତମେ ଚାଲିଯିବା ପରେ ମୁଁ ଦିଲ୍ଲୀରୁ ଟ୍ରଙ୍କ୍ କଲ୍ ପାଇଲି ଯେ ସ୍ୱର୍ଣ୍ଣମୟୂରୀ ମୋ ହାତ ମୁଠାରେ । ସଂଗେ ସଂଗେ ମୋତେ ଦିଲ୍ଲୀ ଉଡ଼ିଯିବାକୁ ହେଲା ।

........ ......... ........

କୁଇନ୍ ଟେପ୍ ରେକର୍ଡ଼୍‌ର ଚାବିଟି ପୁଣି ବନ୍ଦ କରି ଦେଲା ।

ଏହା ଧୀରାଜ ମେହେରାଙ୍କ କଣ୍ଠସ୍ୱର ଛଡ଼ା ଆଉ କାହାରି ନୁହେଁ । କିନ୍ତୁ...

କୁଇନ୍ କହିଲା : ଆପଣଙ୍କ ବସ୍‌ଙ୍କ କଣ୍ଠସ୍ୱର ଶୁଣିପାରୁଛନ୍ତି ? ଏଥର ମନେପକାନ୍ତୁ, କେବେ, କେଉଁଠି ଆପଣ ଏକତ୍ର ହୋଇଥିଲେ ।

କୁଇନ୍ ଟେପ୍‌ରେକର୍ଡ଼ର ଟେପ୍‌କୁ କିଛି ଗୁଡ଼େଇ ଦେଇ ପୁଣି ଚାବି ଖୋଲିଦେଲା ।

........ ....... ........

.... ଅନ୍ୟ ଆକାର ଧାରଣ କଲା । ଦୁଇଟି ସତର୍କ ଦୃଷ୍ଟି ଏହି ସ୍ୱର୍ଣ୍ଣମୟୂରୀ ପଛରେ ରହିଲା । ଏକରେ ପୋଲିସର, ଦୁଇରେ ଶତ୍ରୁପକ୍ଷର । ଶତ୍ରୁପକ୍ଷର ଲୋକେ ଏହା ଭିତରେ ନକଲ ସ୍ୱର୍ଣ୍ଣମୟୂରୀକୁ ଫିଙ୍ଗିଦେଇ ଅସଲଟିର ସନ୍ଧାନରେ ବାହାରି ସାରିଥିବେ । ତେଣୁ ରାଜେଶ ବୁଝିପାରୁଥିବ ତମ ମୁଣ୍ଡ ଉପରେ କେତେ ବଡ଼ ଦାୟିତ୍ୱ ଝୁଲି ରହିଛି ।

ଆପଣ ଏସବୁ କଥା ଜାଣି ମଧ୍ୟ ସ୍ୱର୍ଣ୍ଣମୟୂରୀକୁ ହୋଟେଲ ଇଣ୍ଟର ନାସନାଲକୁ ପଠାଇଲେ କାହିଁକି ?

: ବର୍ତ୍ତମାନ ପରିସ୍ଥିତିରେ ହୋଟେଲ ଇଣ୍ଟର ନାସନାଲ ହିଁ ସ୍ୱର୍ଣ୍ଣମୟୂରୀ ପାଇଁ ନିରାପଦ ସ୍ଥାନ ।

........ ......... .......

କୁଇନ୍ ପୁଣି ଟେପ୍ ରେକର୍ଡ଼ର ଚାବି ବନ୍ଦ କରିଦେଇ କହିଲା : ଆପଣ ବର୍ତ୍ତମାନ ନିଶ୍ଚୟ ଆପଣଙ୍କ ବସ୍‌ର ଓ ନିଜର କଣ୍ଠସ୍ୱର ଚିହ୍ନି ପାରୁଛନ୍ତି । ତେଣୁ ବର୍ତ୍ତମାନ ଆଉ

ଅସ୍ୱୀକାର କରିପାରିବେ ନାହିଁ ଯେ, ଅସଲି ସ୍ୱର୍ଣ୍ଣମୟୂରୀ ସମ୍ବାଦ ଆପଣ କିଛି ଜାଣନ୍ତି ନାହିଁ ।

ରାଜେଶ ମନେମନେ ସେଦିନ କଥା ଚିନ୍ତା କରିବାକୁ ଲାଗିଲା । ଯେଉଁଦିନ ମିଷ୍ଟର ମେହେରା ତାକୁ ତାଙ୍କର ପ୍ରାଇଭେଟ୍ ଚେମ୍ବରକୁ ଡାକି ସବୁ କଥା କହିଥିଲେ । ତାଙ୍କରି କଥାବାର୍ତ୍ତା ଏମାନେ ଟେପ୍ କରି ରଖିଛନ୍ତି । କିନ୍ତୁ ଏହା କିପରି ସମ୍ଭବ ହେଲା ?

କୁଇନ୍ ପୁଣି ହସିଲା । କହିଲା : ମିଷ୍ଟର ରାଜେଶ ! ଏଥର ଆପଣ ନିଜେ କୁହନ୍ତୁ ଆମେ ଭୁଲ୍ ସଂବାଦ ଉପରେ ଭିତ୍ତି କରି କୌଣସି ନିରୀହ ଲୋକ ଉପରେ ଜୁଲୁମ୍ କରୁ କି ନାହିଁ ।

ରାଜେଶ ଗମ୍ଭୀର ହୋଇ କହିଲା : ଆପଣମାନେ ତ ଜାଣନ୍ତି ଅସଲ ସ୍ୱର୍ଣ୍ଣମୟୂରୀ କେଉଁଠି ଅଛି । ସେଠାରୁ ଅତି ସହଜରେ ଉଦ୍ଧାର କରି ଆଣିପାରିବେ । ମୋତେ ଅଯଥାରେ ମୋ ବସ୍‌ଙ୍କର ଅବିଶ୍ୱାସଭାଜନ କରାଇବାକୁ ଚେଷ୍ଟା କରୁଛନ୍ତି କାହିଁକି ?

: ଆମେ ଅସଲ ସ୍ୱର୍ଣ୍ଣମୟୂରୀ ସମ୍ବାଦ ଜାଣୁ ରାଜେଶ । କିନ୍ତୁ ସେଠାରୁ ଉଦ୍ଧାର କରିବାର ଅସୁବିଧା ଅଛି । ତମ ବସ୍ ଠିକ୍ କହିଛନ୍ତି । ହୋଟେଲ ଇଣ୍ଟରନାସନାଲରେ କଡ଼ା ପୋଲିସ୍ ପହରା ବସିଛି । ତା’ଛଡ଼ା ହୋଟେଲର ଶହେ ସତରଟି ରୁମ୍ ଭିତରୁ ସ୍ୱର୍ଣ୍ଣମୟୂରୀକୁ ଖୋଜି ବାହାର କରିବା ସହଜ ହେଉ ନାହିଁ । ସେଇଥିପାଇଁ ଆପଣଙ୍କୁ ଆମେ କଷ୍ଟ ଦେବାକୁ ଚାହୁଁଛୁ । ବଦଳରେ ପାରିଶ୍ରମିକର ଅଙ୍କ ଆମେ ଆହୁରି ଉଚ୍ଚ କରିପାରୁ ।

ରାଜେଶ ମଧ୍ୟ ଅତି ହାଲ୍‌କା ହସ ହସି କହିଲା : ଆପଣ ଯେଉଁ ଦିନର ସମ୍ବାଦ ଟେପ୍ କରି ରଖିଛନ୍ତି, ସେ ସମ୍ବାଦ ଅନେକ ପୁରୁଣା । ତାହାପରେ ଅନେକ ଘଟଣା ଘଟିଯାଇଛି । ମୋ ବସ୍ ଅସଲ ସ୍ୱର୍ଣ୍ଣମୟୂରୀ ଧରି ଆମେରିକା ଚାଲିଯାଇଛନ୍ତି ।

: ମିଷ୍ଟର ରାଜେଶ ! କୁଇନ୍‌ର କଣ୍ଠ ଗମ୍ଭୀର ଶୁଣାଗଲା । ମୁଁ ଶିଶୁ ନୁହେଁ । ଆପଣଙ୍କ ପରି ନିଜକୁ ବୁଦ୍ଧିମାନ୍ ମନେକରୁଥିବା ବହୁ କରିତ୍‌କର୍ମା ଲୋକଙ୍କ ମସ୍ତକ ଧୋଇ ସଫା କରିଦେଇଛି । ଆପଣଙ୍କ ବସ୍ କୁଆଡ଼େ କାହିଁକି ଯାଇଛନ୍ତି, ସେକଥା ଆପଣଙ୍କ ଅପେକ୍ଷା ଆମେ ବେଶି ଜାଣିଛୁ । ଏଇ ସ୍ୱର୍ଣ୍ଣ ମୟୂରୀଟିକୁ ଆମେ ଆମେରିକା ବଜାରରେ ଅଧିକ ଚଡ଼ା ଦାମ୍‌ରେ ବିକ୍ରୟ କରିବାକୁ ପାର୍ଟି ଠିକ୍ କରିଛୁ । ଆପଣଙ୍କ ବସ୍ ଯାହା ସହିତ ଯୋଗାଯୋଗ କରିଥିଲେ, ସେମାନେ ବର୍ତ୍ତମାନ ଆଉ ସ୍ୱର୍ଣ୍ଣମୟୂରୀ କିଣିବାକୁ ଚାହୁଁ ନାହାନ୍ତି । ଫଳରେ ଆପଣଙ୍କ ବସ୍ ଅସୁବିଧାରେ ପଡ଼ିଯାଇଛନ୍ତି । ସେ ପାର୍ଟି ଖୋଜୁଛନ୍ତି । ନ ପାଇବା ଯାଏ ସ୍ୱର୍ଣ୍ଣମୟୂରୀ ବାହାରକୁ ଯିବାର ଉପାୟ ନାହିଁ । ତେଣୁ ଆପଣ ଆଉ ସମୟ ନଷ୍ଟ ନ କରି ମୋ ସହିତ ଫାଇନାଲ୍ କରନ୍ତୁ । କେତେଟଙ୍କା ଆପଣ ଚାହାନ୍ତି, ତାହା ମଧ୍ୟ ଜଣାଇ ପାରନ୍ତି ।

ରାଜେଶ ଏକ ସଂକଟଜନକ ପରିସ୍ଥିତି ଭିତରେ ପଡ଼ିଗଲା । ମିଷ୍ଟର ମେହେରାଙ୍କର କ୍ରୁର ମୁଖ ତା’ ଆଖି ଆଗରେ ଭାସିଉଠିଲା । ତାଙ୍କ ସହିତ ବିଶ୍ୱାସଘାତକତା କରି ରାଜେଶ ତ୍ରାହି ପାଇବ ନାହିଁ । ଶତ୍ରୁପକ୍ଷର ଶକ୍ତି ସମ୍ବନ୍ଧରେ ମଧ୍ୟ ସେ ଅବହିତ ହୋଇ ସାରିଥିଲା । ତେଣୁ ସେ ଯେ ଖଣ୍ଡାଧାର ଉପରେ ଠିଆ ହୋଇଛି, ତାହା ଅନୁଭବ କରିପାରୁଥିଲା ।

କୁଇନ୍ କହିଲା : ଆପଣ ଭଲ ଭାବରେ ଚିନ୍ତା କରି ଦେଖନ୍ତୁ ମିଷ୍ଟର ରାଜେଶ । ସୁଯୋଗ ମଣିଷ ଜୀବନରେ ଥରେ ଆସେ । ଆପଣ ବୁଦ୍ଧିମାନ ଲୋକ । ଦୀର୍ଘ ଜୀବନ ଆଖି ଆଗରେ ପଡ଼ି ରହିଛି । ଖାଲି ସେତିକି ନୁହେଁ, ମୁଁ ଏହା ମଧ୍ୟ ଜାଣେ ଆପଣଙ୍କ ଲାଇନ୍

ଏଇଟା ନୁହେଁ । ତଥାପି ଜୀବନ ବଂଚାଇବା ପାଇଁ ଅର୍ଥର ପ୍ରୟୋଜନ ଅଛି । ଆପଣ ମୋଟା ଅଙ୍କର ଦରମାରେ ପ୍ରଲୋଭିତ ହୋଇ ଏହି କାର୍ଯ୍ୟ ବାଧ ହୋଇ ଗ୍ରହଣ କରିଛନ୍ତି । ଆଉ ଧୀରାଜ ମେହେରା ଯେଉଁ ଭାବରେ ଆପଣଙ୍କୁ କାବୁ କରିଛନ୍ତି ସେକଥା ମଧ୍ୟ ଆମେ ଜାଣିଚୁ । ଆଉ ଜାଣିଚୁ ଆପଣଙ୍କର ଦୁର୍ବଳତା କେଉଁଠି ।

କୁଇନ୍ ଟିକିଏ ରହି, ଟେପ୍ ରେକର୍ଡ଼ରୁ ଟେପ୍‌ଟି କାଢ଼ିନେଇ ଆଉ ଗୋଟିଏ ଟେପ୍ ଲଗାଇଲା । ଚାବି ଖୋଲି ଦେଇ କହିଲା ଶୁଣନ୍ତୁ !

ପୁଣି ମିଷ୍ଟର ମେହେରାଙ୍କ କଣ୍ଠସ୍ୱର ଘର ଭିତରେ ତରଙ୍ଗାୟିତ ହୋଇ ଉଠିଲା ।

....... .......... .........

.... ଆଶ୍ଚର୍ଯ୍ୟ ହେଉଛ ? ଆତଂକିତ ହେଉଛ ? ଏଇ ଫଟୋଗ୍ରାଫ୍‌ଟି ଏକମାତ୍ର ପ୍ରମାଣ ପତ୍ର । ତମେ ଯେତେବେଳେ ତମର ବଳିଷ୍ଠ ହାତ ଯୋଡ଼ିକ ଶକ୍ତ କରି, ଆଙ୍ଗୁଳିଗୁଡ଼ିକ ସଂଚାଳନ କରି ମୃତ୍ୟୁ ଦୂତ ପରି ଆଗେଇ ଯାଉଥିଲ, ତମର ଆଙ୍ଗୁଳିଗୁଡ଼ାକ ଯେତେବେଳେ ଅକ୍ଟୋପାଶ ପରି ବିଚିତ୍ର ଭଂଗୀରେ ଇନ୍ଦ୍ରାଣୀର ଗଳା ବେଷ୍ଟନ କରିବା ପାଇଁ ବ୍ୟସ୍ତ ହୋଇ ଉଠିଥିଲେ, ଠିକ୍ ସେଇ ମୁହୂର୍ତ୍ତର ଫଟୋଗ୍ରାଫ୍ ଏ । ଦେଖୁଛ ତ ଇନ୍ଦ୍ରାଣୀ ମୁହଁରେ ଆତଙ୍କ ଏବଂ ବାହାରେ ଗଭୀର ଗହ୍ୱରର ଅପରିସୀମ ବିସ୍ତୃତି । ଆଉ ଇନ୍ଦ୍ରାଣୀ, ତା'ର ସ୍ଥିତି ଲକ୍ଷ୍ୟ କରୁଛ ? ଝରକା ଉପରୁ ବେଲୁନ୍ ପରି ସେ ଧୀରେ ଧୀରେ ଖସିଯାଉଛି ତଳକୁ । ଦେଖିଲ ତ ? ଇନ୍ଦ୍ରାଣୀ ଆଉ ତମକୁ ଏବଂ ଇନ୍ଦ୍ରାଣୀର ମୃତ୍ୟୁ ମୁହୂର୍ତ୍ତର ପରିବେଶକୁ ସେଲୁଲଏଡ୍ ଟେପ୍‌ଟା କିପରି ନିର୍ଭୁଲ ଭାବରେ ଧରି ରଖିଛି । ତା'ର ପ୍ରମାଣ ତମ ହାତରେ ।

ଯା' ହେଉ ସେ ସବୁ ଅତୀତର କଥା । ସେଥିପାଇଁ ତମେ ଚିନ୍ତା କରି କିଛି ଲାଭ ନାହିଁ । ତେବେ ଏଇ ଗୋଟିକ ଫଟୋଗ୍ରାଫ୍ ସାତ ହଜାର ସାତଶହ ଅଠରଜଣ କର୍ମପ୍ରାର୍ଥୀଙ୍କ ଭିତରୁ ତମକୁ ଯୋଗ୍ୟ ବିବେଚିତ କରିଛି । ତେଣୁ ବୁଝିପାରୁଥିବ ମୁଁ ତମ ଅତୀତ ଜୀବନ ସମ୍ବନ୍ଧରେ କେତେ ସଠିକ୍ ଖବର ରଖିଛି ଏବଂ ସବୁଠାରୁ ଯେଉଁ ଖବରଟି ମୋ ପାଇଁ ଅଧିକ ପ୍ରୟୋଜନ ସେଇଟି ହେଲା ଇନ୍ଦ୍ରାଣୀକୁ ହତ୍ୟା କରିଥିବା ପ୍ରମାଣପତ୍ର । ତା' ବୋଲି ତମେ ଭାବ ନାହିଁ ଯେ ରାଜେଶ, ଏଇ ଫଟୋଖଣ୍ଡିକ ଦେଖାଇ ମୁଁ ତମକୁ ବ୍ଲାକ୍‌ମେଲ୍ କରିବାକୁ ଚାହେ । ସେ କଥା ମୋଟେ ନୁହେଁ । ମୁଁ କେବଳ ତମକୁ ଏତିକି ଜଣାଇଦେବାକୁ ଚାହେ ଯେ, ତମେ ମୋର ଏକାନ୍ତ କର୍ମସଚିବ ଭାବରେ ମୋ ସହିତ କେବେ ବିଶ୍ୱାସଘାତକତା କରିପାରିବ ନାହିଁ ।

....... .......... ........

କୁଇନ୍ ଟେପ୍ ରେକର୍ଡ଼ର ଚାବିଟି ବନ୍ଦ କରିଦେଇ କହିଲା : ଶୁଣିଲେ ମିଷ୍ଟର ରାଜେଶ ? ଆମେ ମଧ୍ୟ ଆପଣଙ୍କ ଅତୀତ ଜୀବନ ସମ୍ବନ୍ଧରେ ସବୁକଥା ଜାଣିସାରିଛୁ । ତେଣୁ ଆମ ସହିତ ଆପଣ ଅସହଯୋଗ କରିଲେ ନିସ୍ତାର ପାଇବେ ନାହିଁ ।

ରାଜେଶ ମନେମନେ ଆତଙ୍କିତ ହୋଇ ପଡ଼ିଥିଲା । ଏମାନେ ଯେ ମିଷ୍ଟର ମେହେରାଙ୍କର ସମସ୍ତ ଗୁପ୍ତ କଥା ଟେପ୍ କରି ରଖିଛନ୍ତି, ରାଜେଶ ସ୍ପଷ୍ଟ ବୁଝିପାରିଥିଲା । କିନ୍ତୁ ଏଇ ମୁହୂର୍ତ୍ତରେ ତା'ର କର୍ତ୍ତବ୍ୟ ସମ୍ବନ୍ଧରେ ସେ ସ୍ଥିର ନିଶ୍ଚୟ କରିପାରୁ ନଥିଲା ।

କୁଇନ୍ ପୁଣି କହିଲା : ମିଷ୍ଟର ରାଜେଶ, ମୋର ବକ୍ତବ୍ୟ ମୁଁ ଶେଷ କରିଛି । ଏଥର ଆପଣଙ୍କର ମତାମତ ମୋତେ ଜଣାନ୍ତୁ ।

ରାଜେଶ ଆତ୍ମ-ସମର୍ପଣ କରିଥିବା ପରି ସ୍ୱରରେ କହିଲା : ଆପଣ ତ ମିଷ୍ଟର ମେହେରାଙ୍କ ଉଦ୍ଦେଶ୍ୟ ନିଜ କାନରେ ଶୁଣିଲେ । ମୁଁ ତାଙ୍କ ସହିତ କେବେ ଯେପରି ବିଶ୍ୱାସ-ଘାତକତା କରି ନ ପାରିବି, ସେଥିପାଇଁ ସେ ମୋର ସମସ୍ତ ଦୁର୍ବଳ ତଥ୍ୟ ସଂଗ୍ରହ କରି ରଖିଛନ୍ତି । ତେଣୁ....

କୁଇନ୍ କହିଲା : ଆମେ ଆପଣଙ୍କର ଜୀବନର ନିରାପତ୍ତା ଦିଗଟା ଚିନ୍ତା କରୁଛୁ । ଆମକୁ ସାହାଯ୍ୟ କରିବା ଦ୍ୱାରା ଆପଣଙ୍କ ଜୀବନ ଯେପରି ବିପନ୍ନ ନ ହୁଏ, ସେଥିପାଇଁ ଆମେ ସତର୍କତା ଅବଲମ୍ବନ କରିବୁ ।

ରାଜେଶ କହିଲା : ଆପଣଙ୍କର ଏ ସମସ୍ତ ଲୋଭନୀୟ ପ୍ରସ୍ତାବ ମୁଁ ଯଦି ପ୍ରତ୍ୟାଖ୍ୟାନ କରେ ? ଆପଣ ମୋତେ କି ଶାସ୍ତି ଦେବେ ?

: ଶାସ୍ତି ! କୁଇନ୍ ପୁଣି ହସର ତରଙ୍ଗ ସୃଷ୍ଟି କଲା । ଶାସ୍ତି ଆମେ ଦେଇପାରନ୍ତୁ । କିନ୍ତୁ ଆପଣଙ୍କୁ ଶାସ୍ତି ଦେବୁ ନାହିଁ । ମୁକ୍ତି ଦେବୁ । କାରଣ ଆପଣଙ୍କୁ ଦେଖିବା ବେଳଠାରୁ ମୋ ମନଟା ଦୁର୍ବଳ ହୋଇପଡ଼ିଛି । ସେ କଥା ପରେ କହିବି । ଆପଣଙ୍କୁ ଅଧିକ ବିରକ୍ତ କରିବାକୁ ମୋର ଇଚ୍ଛା ନାହିଁ । ଆପଣ ଯାଆନ୍ତୁ । ମୋ କଥା ଭଲ ଭାବରେ ଚିନ୍ତା କରିବେ । ମୁଁ ଆହୁରି ଥରେ ମନେପକାଇ ଦେଉଛି, ମଣିଷ ଜୀବନରେ ସୁଯୋଗ ଥରେ ଆସେ । ସେଇ ସୁଯୋଗକୁ ଗୋଡ଼ରେ ଆଡ଼େଇ ଦେଲେ ପରେ ଅନୁତାପ କରିବାକୁ ପଡ଼େ । ଆଜି ଆପଣ ଯାଆନ୍ତୁ । କାଲି ରାତି ଏଗାରଟା ବେଳେ ପାର୍କ ହୋଟେଲର ୧୧ ନମ୍ବର ରୁମ୍‌ରେ ମୁଁ ଆପଣଙ୍କୁ ଅପେକ୍ଷା କରିଥିବି । ଆପଣଙ୍କ ଶେଷ ସିଦ୍ଧାନ୍ତ ମୋତେ ଜଣାଇଦେବେ ।

: ମାନସିଂହ !

କୁଇନ୍ ଚିତ୍କାର କରି ଡାକିଲା ।

ଜଣେ ଲୋକ ଆଗେଇ ଆସି ମୋ ସାମ୍ନାରେ ପଛକରି ଠିଆ ହେଲା ।

କୁଇନ୍ କହିଲା : ମିଷ୍ଟର ରାଜେଶଙ୍କୁ ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଛାଡ଼ିଦେଇ ଆସ । ତାଙ୍କର ଯେପରି କିଛି ଅସୁବିଧା ନ ହୁଏ ।

ଲୋକଟି ରାଜେଶ ଆଡ଼କୁ ଯେତେବେଳେ ବୁଲି ଅନେଇଲା, ରାଜେଶର ସର୍ବାଙ୍ଗରେ କିପରି ବିଦ୍ୟୁତ୍ ପ୍ରବାହ ଖେଳିଗଲା ।

ଏ ଯେ ସେଇ ଲୋକଟି । ଯାହାକୁ ସେ ମିସେସ୍ ମେହେରାଙ୍କ ସହିତ ଗାଡ଼ିରେ ଉଠିବାର ଦେଖିଥିଲା ଏବଂ ହୋଟେଲ ଇଣ୍ଟରନାସନାଲରୁ କଳା ଆଟାଚି କେସ୍‌ଟି ଧରି ଲିଫ୍‌ଟରୁ ଓହ୍ଲେଇ ଯିବାର ଦେଖିଥିଲା ।

ଏଇ ମାନସିଂହ ତେବେ କ'ଣ ମିଷ୍ଟର ଶର୍ମାଙ୍କର ପ୍ରକୃତ ହତ୍ୟାକାରୀ ?

ମାନସିଂହର ମୁହଁଟା ରାଜେଶ ଆଖିରେ ଆହୁରି ବିକୃତ ମନେହୋଇଥିଲା । ତା' ମୁହଁର ସେହି ପୋଡ଼ା ଓ କଟା ଦାଗଗୁଡ଼ାକ ଆହୁରି ଭୟଙ୍କର ଦେଖାଯାଉଥିଲା । ରାଜେଶ ମୁହୂର୍ତ୍ତକ ପାଇଁ ଦୁଇ ହାତରେ ଆଖି ବନ୍ଦ କରି ଧରିଥିଲା ।

କୁଇନ୍ କହିଲା : ଆପଣ ମାନସିଂହ ସାଂଗେ ଯାଆନ୍ତୁ ମିଃ ରାଜେଶ । ସେ ଆପଣଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରେ ନିରାପଦରେ ଛାଡ଼ିଦେଇ ଆସିବ ।

ମାନସିଂହ ଆଗେ ଆଗେ ଓ ରାଜେଶ ପଛେ ପଛେ ଘରୁ ବାହାରି ଯାଇଥିଲେ ।

\+ + +

ରାଜେଶ ଫେରିଆସିଲା ।

ମାନସିଂହ ତା' ଆଖିରେ କଳାପଟି ବାନ୍ଧି କିଛିଦୂର ନିଜେ ଗାଡ଼ି ଚଳେଇ ଯେଉଁଠି ଆଣି ଛାଡ଼ି ଦେଇଗଲା, ସେଇଟା ମାଳୀରହାଟ ବ୍ରିଜ୍ ତଳ ।

ମାନସିଂହ ରାଜେଶ ଆଖିରୁ କଳା ପଟି ଖୋଲିଦେଇ କହିଲା : ଏଥର ଆପଣ ଯାଆନ୍ତୁ ମିଷ୍ଟର ରାଜେଶ ।

ରାଜେଶ ଫେରିଆସି ନିଜ ଘରେ କବାଟ କିଳି ଶୋଇପଡ଼ିଲା ।

ସକାଳର ନୂତନ ସୂର୍ଯ୍ୟୋଦୟ ସଂଗେ ସଂଗେ ରାଜେଶ ସତେଜ ହୋଇ ଉଠିଥିଲା ।

କୁଇନ୍ । କୁଇନ୍‌ର ସୁନ୍ଦର ମୁହଁଟି ତା'ର ଆଖି ଆଗରେ ଭାସି ଉଠିଲା ।

ଏପରି ଏକ ମଧୁର ନିରୀହ ମୁହଁ । ସେଠାରୁ ନାରୀ-ସୁଲଭ କୋମଳତା ଲିଭି ଯାଇଛି । ହୁଏତ ଚାପରେ ପଡ଼ି, ତାରି ପରି କୁଇନ୍ ତା'ର ନିଜତ୍ୱ ହରାଇ ବସିଛି । ବର୍ତ୍ତମାନ ଅନ୍ୟ ହାତର ସେ କ୍ରୀଡ଼ା-ପୁତ୍ତଳିକା ।

ରାଜେଶ ମନେମନେ ଠିକ୍ କଲା, କୁଇନ୍ ସହିତ ସେ ହାତ ମିଳାଇବ । ଦେଖିବ ତା' ଦଉଡ଼ କେତେ ଦୂର ହୋଇପାରେ ।

ନିଶ୍ଚିନ୍ତ ଓ ଶାନ୍ତ ମନରେ ରାଜେଶ ନିତ୍ୟକର୍ମ ଶେଷ କଲା ।

ଠିକ୍ ସମୟରେ ଅଫିସ୍‌କୁ ଗଲା ।

କିନ୍ତୁ ଦେଖିଲା ମେରୀ ଆସି ନାହିଁ । ମନେପଡ଼ିଲା ଗତ ସନ୍ଧ୍ୟାର କଥା । ମେରୀ ଘରେ କେହି ପ୍ରବେଶ କରି ସ୍ୱର୍ଣ୍ଣମୟୂରୀର ସନ୍ଧାନ କରିଥିଲା । ତେଣୁ ମେରୀ ଘର ଛାଡ଼ି ଆସିବାକୁ ଭରସା କରିପାରି ନାହିଁ । ନିଜେ ତ ରାଜେଶ ମେରୀକୁ ଅଫିସ୍ ନ ଆସିବା ପାଇଁ ପରାମର୍ଶ ଦେଇଥିଲା ।

ଅଫିସ୍‌ରେ ସମୟ ମୋଟେ ଭଲରେ କଟିଲା ନାହିଁ । ସେ ଏପାଖ ସେପାଖ ଛଟପଟ ହୋଇ କୌଣସି ପ୍ରକାର ସମୟ କଟାଇ ଦେଲା । ତା'ପରେ ବାହାରି ଆସିଲା ଅଫିସରୁ । କୁଆଡ଼େ ଯିବ ?

ଘରକୁ ଫେରିବାକୁ ସାହସ ହେଉ ନଥିଲା । ପୁଣି ଯଦି ମିସେସ୍ ମେହେରା ଆସି ତାକୁ ଧରନ୍ତି ! ନା ତା'ଠାରୁ ଭଲ ଏଣେତେଣେ ବୁଲି, ରାତି ଏଗାରଟାରେ କୁଇନ୍ ସଂଗରେ ଦେଖାକରି, ନିଃଶବ୍ଦ ରାତିରେ ଫେରିଯାଇ ସେ ଶେଯରେ ଶୋଇ ପଡ଼ିବ । ସେଇଆ ତା' ପକ୍ଷରେ ସବୁଠୁ ଭଲ ଉପାୟ ।

ରାଜେଶ ରାସ୍ତାକୁ ବାହାରି ଆସି, ମନେପଡ଼ିଲା ତା'ର ମେରୀ କଥା । ବିଚାରୀ ଜଖ ହୋଇ ପୋତା ଧନକୁ ଆବୋରି ବସିଛି । ହୁଏତ ଏକ ଅଜ୍ଞାତ ଭୟରେ ସଦାବେଳେ ସେ ବିଚଳିତ ହେଉଥିବ । ମେରୀ ତା'ର ସହକର୍ମିଣୀ । ତାକୁ ସାହାଯ୍ୟ କରିବା ତା'ର କର୍ତ୍ତବ୍ୟ । ମିଷ୍ଟର ମେହେରା ମଧ ସେଇକଥା କହିଯାଇଥିଲେ ।

ରାଜେଶର ଗାଡ଼ିଟା ହୋଟେଲ ଇଣ୍ଟରନାସନାଲ ଆଡ଼େ ମୁହାଁଇଲା ।

୨୧ ନମ୍ବର ରୁମ୍‌ରେ ନକ୍ କରିବା ମାତ୍ରକେ ଦରଜା ଖୋଲିଗଲା । ମେରୀ ଯେପରି ରାଜେଶର ପ୍ରତୀକ୍ଷା କରି ବସି ରହିଥିଲା । ସ୍ୱରରେ ଅଭିମାନ ଫୁଟାଇ କହିଲା : ଏତେ ଡେରି କଲେ ମିଷ୍ଟର ରାଜେଶ ! ଆଜି ଦିନଟାଯାକ ମୋର ଆପଣଙ୍କ ପ୍ରତୀକ୍ଷାରେ କଟିଛି ।

ରାଜେଶ କହିଲା : ସେପରି ତ କଥା ନଥିଲା ।

: ସବୁ କଥା କ'ଣ ଥାଏ ମିଷ୍ଟର ରାଜେଶ । କିଛି କିଛି କଥା ହୃଦୟ ଭିତରେ ସୃଷ୍ଟି ହୁଏ । ସେ ସବୁ ଅନୁଭବର କଥା ।

ରାଜେଶ ଘରର ଚାରିଆଡ଼କୁ ଚାହିଁ କ'ଣ ଯେପରି ଖୋଜୁଥିଲା । ମେରୀ କହିଲା : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ମିଷ୍ଟର ରାଜେଶ । ଆପଣଙ୍କ ସ୍ୱର୍ଣ୍ଣମୟୂରୀ ନିରାପଦରେ ଏଇ ଘରେ ଅବସ୍ଥାନ କରୁଛି ।

: ଚୁପ୍ । ରାଜେଶ ପାଟିରେ ଆଙ୍ଗୁଳି ଦେଇ ମେରୀକୁ ନୀରବ ରହିବା ପାଇଁ ଇଙ୍ଗିତ ଦେଲା ଏବଂ ପାଖକୁ ଘୁଞ୍ଚିଯାଇ ଚୁପି ଚୁପି କହିଲା, ସ୍ୱର୍ଣ୍ଣମୟୂରୀ ଶବ୍ଦ ମୋଟେ ଉଚ୍ଚାରଣ କରନ୍ତୁ ନାହିଁ ମିସ୍ ମେରୀ । ଶତ୍ରୁ ଚତୁର୍ଦ୍ଦିଗରେ ତତ୍ପର ହୋଇ ଉଠିଛନ୍ତି । ଖାଲି ସନ୍ଧାନ ପାଇଲେ ଆଉ ରକ୍ଷା ନାହିଁ ।

ମେରୀ ହସିଲା । କହିଲା : ଆପଣଙ୍କର ଦାୟିତ୍ୱବୋଧ ବଢ଼ିଯାଇଛି ଜାଣି ବିଶେଷ ଖୁସି ହେଲି । କିନ୍ତୁ ଏଇ ଘରର ଚାରିଦିଆଲ ଭିତରେ ମୋତେ ଆଉ ଭଲ ଲାଗୁ ନାହିଁ, ଚାଲନ୍ତୁନା ଟିକିଏ ବାହାରୁ ବୁଲି ଆସିବା ।

ରାଜେଶ ମୁହୂର୍ତ୍ତେ ଚିନ୍ତା କରି ଇଙ୍ଗିତରେ ପଚାରିଲା, ଅସଲ ପଦାର୍ଥଟି କାହିଁ ? ମୁଁ ତ କେଉଁଠି ଦେଖୁ ନାହିଁ ?

ମେରୀ ଆଙ୍ଗୁଳି ଖଟତଳ ଆଡ଼େ ଦେଖାଇଲା ।

ରାଜେଶ ଦେଖିଲା, ଭଙ୍ଗା ଟେବୁଲ ଲ୍ୟାମ୍ପଟା ଖଟତଳେ ଗଡୁଛି । ରାଜେଶ ମନେମନେ ସ୍ୱସ୍ତି ଅନୁଭବ କଲା । ସେଇ ମୁହୂର୍ତ୍ତରେ ତା' ଆଖି ଆଗରେ ଭାସି ଉଠିଲା କୁଇନ୍‌ର ମୁହଁ । ପଚାଶ ହଜାର ଷାଠିଏ ହଜାର ଏପରିକି ସେ ଏକଲକ୍ଷ ଟଙ୍କା ପର୍ଯ୍ୟନ୍ତ ଦେବାକୁ ଚାହେ ।

ତା'ପରେ ସେ ଚାହିଁଲା ମେରୀର ନିରୀହ ମୁହଁଟି ଆଡ଼େ ।

ମେରୀ କହିଲା : କ'ଣ ଦେଖୁଛନ୍ତି ମୋ ମୁହଁରୁ ?

: ଦେଖୁଛି ଗୋଟିଏ ଶାନ୍ତ ନିରୀହ ମୁହଁ । କେତେ ଆଶା ଆକାଂକ୍ଷାର ଫୁଲ ଫୁଟି ମଉଳି ଯାଇଚି ଏଇ ମୁହଁରେ ।

: ମିଷ୍ଟର ରାଜେଶ ! ମେରୀର ସ୍ୱର କମ୍ପି ଉଠିଲା । ସେ ଚାହାଣି ନତ କଲା ।

ରାଜେଶ ଏକ ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲା : ଚାଲ ମିସ୍ ମେରୀ । ଟିକିଏ ବୁଲି ଆସିବା ଚାଲ ।

ମେରୀ ଯେପରି ପ୍ରସ୍ତୁତ ହୋଇ ରହିଥିଲା । କହିଲା : ଚାଲନ୍ତୁ ।

ରାଜେଶ ଓ ମେରୀ ୨୧ ନମ୍ବର ରୁମ୍‌ର ଦରଜା ଭଲ ଭାବରେ ବନ୍ଦ କରି ଲିଫ୍‌ଟରେ ତଳକୁ ଓହ୍ଲେଇ ଗଲେ । ଗାଡ଼ିରେ ବସିଲେ ଦୁହେଁ । ନୀରବତା ଭିତରେ ଗାଡ଼ି ଆଗେଇଥିଲା । ମୁହୂର୍ତ୍ତ ଗୁଡ଼ାକ ଯେପରି ଭାରି ହୋଇ ଉଠୁଥିଲା ।

ଏକ ସମୟରେ ରାଜେଶ ଡାକିଲା : ମିସ୍ ମେରୀ !

: ଉଁ ।

ରାଜେଶ ଚାହିଁଲା ମେରୀ ମୁହଁକୁ । କହିଲା : କୁଆଡ଼େ ଯିବା ?

: ଯୁଆଡ଼େ ଆପଣଙ୍କର ଇଚ୍ଛା ।

: କିନ୍ତୁ ମିସ୍ ମେରୀ ! ଆପଣ କ'ଣ ମୋ ଉପରେ ଭରସା କରିପାରିବେ ?

ମେରୀ ପ୍ରକୃତିସ୍ଥ ହେଲା ପରି ରାଜେଶ ମୁହଁକୁ ଚାହିଁ ପଚାରିଲା : ମାନେ ?

ରାଜେଶ ହସିଲା । କହିଲା : ମୁଁ ଏକ ଉଡ଼ା ଚଢ଼େଇ । ମୋତେ ଜୋର୍ କରି ଆଣି ସୁନା ପଞ୍ଜୁରିରେ ବନ୍ଦୀ କରାହୋଇଛି । ସୁଯୋଗ ପାଇବା ମାତ୍ରକେ ମୁଁ ହୁଏତ ଉଡ଼ି ପଳାଇବି ମୁକ୍ତ ଆକାଶକୁ ।

ମେରୀ ଅବିଶ୍ୱାସ୍ୟ ଦୃଷ୍ଟିରେ ରାଜେଶ ମୁହଁକୁ ଚାହିଁଲା । ଚାରିଆଖିର ମିଳନ ହେଲା ମୁହୂର୍ତ୍ତକ ପାଇଁ । ରାଜେଶ ମେରୀ ମୁହଁରେ କରୁଣ ହସ ଖଣ୍ଡେ ଦେଖିଲା ।

: ମିସ୍ ମେରୀ, ଆପଣ ହୁଏତ ମୋ ସମ୍ବନ୍ଧରେ କିଛି ଜାଣି ନାହାନ୍ତି । କିନ୍ତୁ ମୁଁ ଜଣେ ସ୍ୱାଧୀନଚେତା ଜୀବ । ମୋର ବାଲ୍ୟକାଳରୁ ମୁଁ କାହାରିକୁ କେବେ ଭୟ କରି ଶିଖି ନାହିଁ । ଅନ୍ୟାୟ ବିରୁଦ୍ଧରେ ମୁଁ ସବୁବେଳେ ସଂଗ୍ରାମ କରିଆସିଛି । ସେଇଥିପାଇଁ ମୋର ଭୟ ହେଉଛି, ମୋ ଭିତରର ଚାପା ଉତ୍ତେଜନାକୁ ମୁଁ କେତେଦିନ ଆଉ ଦବେଇ ରଖିପାରିବି । ଯେକୌଣସି ମୁହୂର୍ତ୍ତରେ ବିସ୍ଫୋରଣ ହୋଇଯାଇପାରେ ।

ମେରୀ ହଠାତ୍ ରାଜେଶକୁ ଜଡ଼େଇ ଧରି ଆକୁଳ କଣ୍ଠରେ କହିଲା : ନା ମିଷ୍ଟର ରାଜେଶ, ଆପଣ ସେପରି ଚିନ୍ତା କରନ୍ତୁ ନାହିଁ । ଆପଣ ମିଷ୍ଟର ମେହେରାଙ୍କୁ ଜାଣି ନାହାନ୍ତି । ସେ ଭୀଷଣ ଭୟଙ୍କର । ତାଙ୍କ ସ୍ୱାର୍ଥ ସାଧନରେ ଆପଣ ଅବହେଳା କଲେ, ନା ନା ମିଷ୍ଟର ରାଜେଶ, ମୁଁ ସେ କଥା ଚିନ୍ତା କରିପାରୁ ନାହିଁ । ମେରୀ ଦୁଇ ହାତରେ ତା' ଆଖି ଢାଙ୍କି ପକାଇଲା ।

ରାଜେଶର ଗାଡ଼ି ଯାଇ ଗଙ୍ଗା କୂଳରେ ପହଞ୍ଚି ଯାଇଥିଲା ।

ସେ ଗାଡ଼ି ଅଟକେଇ ମେରୀର ହାତ ଧରି ଡାକିଲା ।

: ଆସନ୍ତୁ । ଗଙ୍ଗାର ଶୀତଳ ସ୍ପର୍ଶରେ ଦେହ ମନ ଟିକିଏ ସତେଜ କରିନେବା । ଭିତରର ସମସ୍ତ ଗ୍ଲାନି, ସମସ୍ତ କ୍ଲେଦ ଗଙ୍ଗା ଜଳରେ ଭସାଇ ଦେଇ ମନକୁ ପବିତ୍ର କରିନେବା ।

ମେରୀ ଗାଡ଼ିରୁ ଓହ୍ଲେଇଲା ।

ସେମାନେ ଗଙ୍ଗା କୂଳରେ ଏକ ନିରୋଳା ସ୍ଥାନ ବାଛି ନେଇ ବସିଲେ ।

ରାଜେଶ କହିଲା : ମିସ୍ ମେରୀ, ଆପଣଙ୍କୁ ଆଜି ନିରୋଳାରେ ଏତେ ନିକଟରେ ପାଇ ମୋର ମନେହେଉଛି...

ରାଜେଶ ଗଙ୍ଗା ଜଳକୁ ଗୋଟିଏ ପଥର ଫିଙ୍ଗି ନୀରବ ହୋଇଗଲା ।

ମେରୀ ଅନ୍ଧକାରରେ ରାଜେଶର ମୁହଁ ଦେଖିପାରୁ ନଥିଲା । କିନ୍ତୁ ଆଗ୍ରହରେ ରାଜେଶର ଅସଂପୂର୍ଣ୍ଣ କଥା ଶୁଣିବା ପାଇଁ ପଚାରିଲା, କ'ଣ ମନେହେଉଛି ଆପଣଙ୍କର ?

ରାଜେଶ ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗ କରି ମେରୀର ଗୋଟିଏ ହାତ ନିଜ ମୁଠା ଭିତରକୁ ନେଇ କହିଲା : ମିସ୍ ମେରୀ...

ମେରୀ ଆଉ ଟିକିଏ ରାଜେଶ ପାଖକୁ ଘୁଞ୍ଚିଯାଇ କହିଲା : ନା ମିସ୍ ମେରୀ ନୁହେଁ, ଖାଲି ମେରୀ ଡାକନ୍ତୁ ।

ରାଜେଶ ବି ମେରୀର ମୁହଁ ଅନ୍ଧକାରରେ ଦେଖିପାରୁ ନଥିଲା । କିନ୍ତୁ ମେରୀର ସାନ୍ନିଧ ଅନୁଭବ କରି, ମେରୀକୁ ଆହୁରି ଟିକିଏ ପାଖକୁ ଟାଣିନେଇ କହିଲା : ମେରୀ, ଏଇ ମୁହୂର୍ତ୍ତରେ ତମର ସାନ୍ନିଧ ଲାଭ କରି ମୋର ମନେହେଉଛି, ତମେ ଯେପରି ମୋର କେତେ ଯୁଗର ଅନ୍ତରଙ୍ଗ ।

ମେରୀ ଗୋଟିଏ ଦୀର୍ଘଶ୍ୱାସ ପକାଇ କହିଲା : ମୋର ବି ସେଇଆ ମନେହେଉଛି ରାଜେଶ ! କିନ୍ତୁ ଭଗବାନ ଆମର ମନୋବାସନା ପୂର୍ଣ୍ଣ କରିବେ ନାହିଁ । ଆମ ମଝିରେ ଯେଉଁ ଶକ୍ତ ପଥରବନ୍ଧଟା ମୁଣ୍ଡ ଟେକି ଠିଆ ହୋଇଛି ଆମେ ତାକୁ ଡେଇଁ ଯାଇପାରିବା ନାହିଁ ।

: କାହିଁକି ପାରିବା ନାହିଁ ମେରୀ । ମଣିଷ ଇଚ୍ଛା କଲେ ସବୁ କରିପାରେ । ଆମେ ନ ପାରିବା କାହିଁକି ? ରାଜେଶ ଜଡ଼ିତ କଣ୍ଠରେ କହିଲା ।

ମେରୀ ମୁହଁରେ ବୋଧହୁଏ ଶୁଖିଲା ହସ ଖଣ୍ଡେ ଫୁଟି ଝରି ପଡ଼ିଲା । ସେ କରୁଣ କଣ୍ଠରେ କହିଲା : ତମେ ମୋର ପରିଚୟ ଜାଣି ନାହଁ ରାଜେଶ । ମୋର ଇତିହାସ ତମକୁ ଜଣା ନାହିଁ । ତା'ଛଡ଼ା...

ମେରୀ କଇଁ କଇଁ ହୋଇ କାନ୍ଦି ଉଠିଲା ।

ରାଜେଶ ଏପରି ଏକ ପରିସ୍ଥିତିର ସମ୍ମୁଖୀନ ହେବ ଆଶା କରି ନଥିଲା । ସେ ମେରୀକୁ ଆହୁରି ନିକଟକୁ ଟାଣିନେଇ, ତା' ଆଖିରୁ ଲୁହ ପୋଛିଦେଇ କହିଲା : ତମ ଜୀବନର ଇତିହାସ ବା ଭୂଗୋଳ ମୋର ଜାଣିବା ଆବଶ୍ୟକ ନାହିଁ । ତମେ ମେରୀ, ତମେ ମୋର ବଂଧୁ, ତମେ ମୋର ପ୍ରିୟ, ତମେ ମୋର ଅନ୍ତରଙ୍ଗ । ତମେ ତୁନି ହୁଅ ମେରୀ । ମୁଁ ତମର ଜୀବନର ସ୍ୱପ୍ନ ସାର୍ଥକ କରିବି । ପ୍ରାଣ ଦେଇ ବି ।

ମେରୀ ରାଜେଶ ଛାତିରେ ମୁହଁ ଗୁଞ୍ଜିଦେଇ ଆହୁରି ଜୋର୍‌ରେ କାନ୍ଦି ଉଠିଲା ।

ରାଜେଶ ମେରୀର ମୁଣ୍ଡ ଆଉଁଶି ଦେଲା । ସାନ୍ତ୍ୱନା ଦେଇ କହିଲା : ଉଠ ମେରୀ । ଆଜି ଗଙ୍ଗା ଜଳରେ ଆମ ମନର ସମସ୍ତ ଦ୍ୱନ୍ଦ୍ୱ, ସମସ୍ତ ଅବସାଦ ଭସାଇ ଦେଇଯିବା । କାଲିର ନୂତନ ସୂର୍ଯ୍ୟୋଦୟ ଠାରୁ ଆମେ ନୂଆ ଜୀବନର ସ୍ୱପ୍ନ ରଚନା କରିବା । ଆମେ ପାରିବା ମେରୀ । ଆମେ ପାରିବା ।

ରାଜେଶର କଣ୍ଠ ଥରି ଉଠିଥିଲା ।

ସେ ମେରୀକୁ ଦୁଇ ହାତରେ ଟୋଳି ଉଠାଇ କହିଲା : ତମେ କିଏ, ମୁଁ କିଏ, କେଇଦିନ ପୂର୍ବରୁ ଆମେ କେହି କାହାକୁ ଜାଣି ନଥିଲେ । କିନ୍ତୁ ଭଗବାନଙ୍କର ଅଶେଷ କରୁଣା ବଳରୁ ଆମେ ଦୁହେଁ ଏକାଠି ହେଲେ । ତାଙ୍କରି ଇଚ୍ଛାରେ ଆମେ ପରସ୍ପରର ଅନ୍ତରଙ୍ଗ ହେବାକୁ ଯାଉଛେ । ସେ ଆମକୁ ନିଶ୍ଚୟ ସାହାଯ୍ୟ କରିବେ ମେରୀ । ମୋର ଆତ୍ମବିଶ୍ୱାସ ଅଛି ।

ମେରୀ ପଣତକାନିରେ ମୁହଁ ପୋଛି ପକାଇଲା ।

ରାଜେଶ ହାତ ବଢ଼େଇ ଗଙ୍ଗା ପାଣି ଆଣି ମେରୀର ମୁହଁ ଧୋଇଦେଲା । ମେରୀ ହାତଧରି ଠିଆ ହୋଇ କହିଲା : ଆମ ଜୀବନର ଏଇ ଏକାନ୍ତ ଗୋପନ କଥା ଆମେ ଜାଣିଲେ ମେରୀ, ସାକ୍ଷୀ ଆମର କେହି ନାହିଁ । କେହି ଜାଣିବା ବି ଦରକାର ନାହିଁ । ତମେ ମନେ ମନେ ପ୍ରସ୍ତୁତ ହୁଅ । ମୁଁ ତମର ପାଖେ ପାଖେ ଅଛି ।

ରାଜେଶ ଓ ମେରୀ ଚାଲି ଚାଲି ଗଙ୍ଗା କୂଳରେ ଲୋକ ମେଳିରେ ଅନେକ ବେଳଯାଏ ବୁଲିଲେ । ତା'ପରେ ଫେରିଯାଇ ଗାଡ଼ିରେ ବସିଲେ ।

ରାଜେଶ ଲକ୍ଷ୍ୟ କଲା ମେରୀ ଯେପରି ସ୍ତବ୍ଧ ହୋଇଯାଇଛି । ତା' ଭିତରର ଚଞ୍ଚଳ ଆତ୍ମାଟି ଯେପରି ଧ୍ୟାନସ୍ଥ ହୋଇପଡ଼ିଛି ।

ବାଟରେ ବିଶେଷ କିଛି ଆଉ କଥାବାର୍ତ୍ତା ହେଲା ନାହିଁ । ରାଜେଶ ଗାଡ଼ି ଚଳାଇ ସିଧା ହୋଟେଲ ଇଣ୍ଟରନାସନାଲ ଦୁଆରେ ନେଇ ମେରୀକୁ ଓହ୍ଲାଇ ଦେଲା । କହିଲା : ମୁଁ ଆଉ ଭିତରକୁ ଯିବି ନହିଁ । ତମେ ଯାଅ । ଖାଇପିଅ ନିଶ୍ଚିନ୍ତରେ ଶୁଅ । ଜୀବନଟା ଅକାଳରେ ଶୁଖି ଝରିଯିବା ପାଇଁ ନୁହେଁ, ଜୀବନଟା ଉପଭୋଗ ପାଇଁ, ଜୀବନଟା ସାର୍ଥକ କରିବାକୁ ଚେଷ୍ଟା କର ।

ମେରୀ ଧୀରେ ଧୀରେ ଗାଡ଼ିରୁ ଓହ୍ଲାଇ ଆଗେଇଗଲା ।

ତା' ମୁହଁରୁ ଯେପରି ଭାଷା ହଜି ଯାଇଥିଲା ।

ରାଜେଶ ମେରୀର ଗତିପଥକୁ ଅନାଇ ରହିଥିଲା ।

ମେରୀ ଅଦୃଶ୍ୟ ହୋଇ ଯିବାର ଅନେକ ବେଳ ଯାଏ ସେଇ ଆଡ଼େ ଅନାଇ ରହିଥିଲା । ମନ ଭିତରେ ତା'ର ଝଡ଼ ଉଠିଥିଲା ।

ଜୀବନରେ ସେ ଅନେକ ପରୀକ୍ଷା ଦେଇଛି । ସବୁଠି, ସବୁ ସ୍ତରରେ ସେ ଉତ୍ତୀର୍ଣ୍ଣ ହୋଇ ଆସିଛି ।

କିନ୍ତୁ ଆଜି ଦିନଟା ଯେପରି ତା' ଜୀବନରେ ଏକ ମହାନ୍ ପରୀକ୍ଷାର ଦିନ ।

ରାଜେଶ ହାତ ଘଡ଼ିକୁ ଚାହିଁଲା ।

ନଅଟା ବାଜିଛି ।

ମାତ୍ର ନ'ଟା ? ରାଜେଶ ଯେପରି ଚମକି ଉଠିଲା । ଆହୁରି ଦୁଇ ଘଣ୍ଟା ବାକି । ଏଗାରଟା ବେଳେ ତାକୁ ଆଉ ଏକ ପରୀକ୍ଷା ଦେବାକୁ ହେବ । ଏଇ ପରୀକ୍ଷା ତା' ଜୀବନର ଶେଷ ପରୀକ୍ଷା ହେଉ, ରାଜେଶ ଭାବୁଥିଲା ।

ଗାଡ଼ି ବୁଲେଇ ସେ ଲେଉଟି ଗଲା ପୁଣି ରେଡ଼୍ ରୋଡ଼୍ ଆଡ଼େ । ଗାଡ଼ି ଚଲେଇଲା ଜୋର୍‌ରେ, ଖୁବ୍ ଜୋର୍‌ରେ । ସମଗ୍ର ରେଡ଼୍ ରୋଡ଼୍ ଇଲାକାଟା ସେ କେତେଥର ଚକ୍କର କାଟିଲା, ସେ ଜାଣିପାରି ନଥିଲା । କେତେ ସ୍ପିଡ୍‌ରେ ଗାଡ଼ି ଚଲଉଥିଲା, ତା'ବି ତାକୁ ଜଣା ନଥିଲା । ସେ ଖାଲି ବାତ୍ୟାଚକ୍ର ପରି ଛୁଟିଥିଲା ରେଡ଼୍‌ରୋଡ଼୍ ଓ ଗଙ୍ଗା କୂଳକୁ କେନ୍ଦ୍ର କରି ।

ସେ ମୁକ୍ତି ଚାହେ । ଏ ଜୀବନ ନାଟକର ଯବନିକା ଟାଣିବାକୁ ହେବ । ସେ କ'ଣ ଏଇଆ ଚାହିଥିଲା ? ଏତେ ବଡ଼ ଗୋଟାଏ ପ୍ରତିଭା, ଏହିପରି ଅନ୍ଧକାରର ଅତଳ ଗହ୍ୱରରେ ଶଢ଼ି ପଚି ଶେଷ ହୋଇଯିବ ?

ନା ନା ନା । ରାଜେଶର ଆତ୍ମା ଚିତ୍କାର କରି ଉଠିଲା ।

କୁଇନ୍ ଠିକ୍ କହିଛି, ମଣିଷ ଜୀବନରେ ସୁଯୋଗ ଥରେ ଆସେ । ଏ ସୁଯୋଗ ତାକୁ ନେବାକୁ ହିଁ ହେବ । ଲକ୍ଷେ ଟଙ୍କା ଗୋଟିଏ ଜୀବନ ଆରମ୍ଭ ପାଇଁ ଯଥେଷ୍ଟ ମୂଳଧନ ! କେତେଜଣଙ୍କ କପାଳରେ ଜୁଟେ ?

ଆଉ ଧୀରାଜ ମେହେରା ?

ରାଜେଶ ଭିତରୁ ଏକ ଭୀରୁ ଛାୟା ମୁଣ୍ଡ ଉଠାଇ ପ୍ରଶ୍ନ କଲା ।

ଧୀରାଜ ମେହେରା... ଧୀରାଜ ମେହେରା ଖାଲି ତା' ପାଇଁ ନୁହେଁ, ଦେଶର ଏକ ଦୁଷ୍ଟବ୍ରଣ । ଦେଶର ଓ ଜାତିର ମଙ୍ଗଳ ପାଇଁ ଆବଶ୍ୟକ ହେଲେ ଧୀରାଜ ମେହେରାକୁ ସେ ଖୁଣ୍ କରିବ, ଖୁଣ୍... ଖୁଣ୍... ଖୁଣ୍...

ହଠାତ୍ ଗୋଟାଏ କାନଫଟା ଶବ୍ଦରେ ରାଜେଶ ଚିତ୍କାର କରି ଉଠିଲା । ତା' ଗାଡ଼ିଟା ଆଉଟ୍‌ରାମ ଘାଟର ଷ୍ଟାଚୁଟା ଉପରେ ପିଟି ହୋଇ ଯାଉ ଯାଉ ରାଜେଶ ପ୍ରାଣ ବିକଳରେ ବ୍ରେକ୍‌ଟା ଚାପି ଧରିଲା ।

ଗାଡ଼ି ଅଟକିଲା ।

କାନଫଟା ବିକଟ ଶବ୍ଦ ଶୁଣି ଲୋକମାନେ ଗାଡ଼ି ପାଖରେ ଆସି ଜମା ହୋଇଗଲେ । ରାଜେଶ ସଚେତନ ହୋଇ ଜାଣିପାରିଲା, ତା' ଗାଡ଼ିର ପଛ ଚକାଟା ବ୍ଲାଷ୍ଟ କରିଚି । ରାଜେଶ ପ୍ରକୃତିସ୍ଥ ହେଲା ।

ଘଡ଼ିକୁ ଚାହିଁ ଦେଖିଲା, ଦଶଟା ବାଜୁଛି । ସମୟ ହାତରେ ଆହୁରି ଏକଘଣ୍ଟା । ଲଗେଜ୍ କେରିଅର୍ ଖୋଲି ସ୍ପେଆର୍ ଚକଟା ବାହାର କରି, ପଛ ଚକଟା ବଦଳାଇବାରେ ସେ ମନଯୋଗ ଦେଲା ।

ଧୀରେ ଧୀରେ ଲୋକମାନେ ଯେ ଯାହାର ବାଟରେ ଚାଲିଗଲେ ।

ରାଜେଶ ମନେ ମନେ ଭାବୁଥିଲା- ଆଉ ଟିକକରେ ଗୋଟାଏ ବିରାଟ ଆକ୍‌ସିଡ଼େଣ୍ଟ ହୋଇଯାଇଥାଆନ୍ତା । କିଏ ଜାଣେ ଏତେ ବେଳକୁ ରାଜେଶର ଅବସ୍ଥା କ'ଣ ହୋଇଥାଆନ୍ତା !

ରାଜେଶ ହସିଲା ମନେ ମନେ । ତା' ଜୀବନର ଚକ ଯେଉଁପରି ଭାବରେ କ୍ଷିପ୍ର ଓ ଦ୍ରୁତ ଗତିରେ ଗଡ଼ି ଚାଲିଛି, ସେଥିରେ ଆକ୍‌ସିଡ଼େଣ୍ଟ ହେବା ଏକ ମାମୁଲି କଥା । ଯେଉଁ ଜୀବନରେ ଘାତ ପ୍ରତିଘାତ ନାହିଁ, ସେ ଜୀବନ କି ଜୀବନ ?

ରାଜେଶ ଚକ ଲଗେଇ, ଫୁଟା ଚକଟାକୁ ଲଗେଜ୍ କେରିଅର୍‌ରେ ନଦି ପୁଣି ଯାଇ ଗାଡ଼ିରେ ବସିଲା ।

ଏଥର ତାକୁ ଯିବାକୁ ହେବ । କୁଇନ୍ ରାଜେଶ ପାଖରୁ ସଉଦା କରିବା ପାଇଁ ଅପେକ୍ଷା କରି ବସିଥିବ ।

ରାଜେଶ ପୁଣି ଥରେ ମନେମନେ ହସି ଉଠିଲା । ତା'ର ମନେ ହୋଇଥିଲା, ଖୋଦା ଯେତେବେଳେ ସଦୟ ହୁଅନ୍ତି, ସେତେବେଳେ ଛପର ଫାଡ଼ି ଦିଅନ୍ତି । କଥାଟା ସତ । ନହେଲେ ଅଦା ବେପାରୀ ରାଜେଶ, ଜାହାଜ ବିକିବାକୁ ଯାଉଛି ।

ହଁ, ସୁଯୋଗ ଜୀବନରେ ଥରେ ଆସେ, ବାର ବାର ନୁହେଁ ।

ରାଜେଶ ଠିକ୍ ଏଗାରଟା ବେଳେ ପାର୍କ ହୋଟେଲର ୧୧ ନମ୍ବର ରୁମ୍‌ରେ ଯାଇ ନକ୍ କଲା ।

: କମ୍ ଇନ୍ ।

ଭିତରୁ ଏକ କୋମଳ କଣ୍ଠସ୍ୱର ଶୁଣାଗଲା ।

ରାଜେଶ ଦରଜା ଠେଲି ଭିତରକୁ ପଶିଲା ।

ଏକ ମଳିନ ନୀଳ ଆଲୋକ ଘର ଭିତରେ କୁହେଳୀର ମାୟା ସୃଷ୍ଟି କରିଥିଲା । କୁଇନ୍ ଗୋଟିଏ ଇଜି ଚେଆର୍ ଉପରେ ଅର୍ଦ୍ଧଶାୟିତ ଅବସ୍ଥାରେ ଖବରକାଗଜ ଭିତରେ ମୁହଁ ଢାଙ୍କି ବସିଥିଲା ।

ରାଜେଶ ଦରଜାଟା ପୁଣି ଭିତରୁ ବନ୍ଦ କରି ଧୀରେ ଧୀରେ ଯାଇ କୁଇନ୍ ସାମ୍ନାରେ ଠିଆ ହେଲା ।

କୁଇନ୍ ସିଧା ହୋଇ ବସି ଖବରକାଗଜଟାକୁ ଟେବୁଲ ଉପରେ ରଖିଦେଇ ସ୍ମିତ ହସି କହିଲା : ଚା' ନା କଫି ? କ'ଣ ଅଣେଇବି ।

ରାଜେଶ କହିଲା : ଖାଲି ଚା' କଫିରେ କିଛି ହେବ ନାହିଁ । ପେଟରେ ଭୀଷଣ ଭୋକ ମିସ୍...

କୁଇନ୍ ହସିଲା । କହିଲା ମିସ୍ ବା ମିସେସ୍ କିଛି ନୁହେଁ । ମୋତେ ଖାଲି ରାଣୀ ଡାକନ୍ତୁ । ମୋର ଡାକ ନାଁ ରାଣୀ । ଏମାନେ ସେଇଟାକୁ କୁଇନ୍ କରି ଦେଇଛନ୍ତି ।

: ବେଶ୍ । କିନ୍ତୁ ଗୋଟାଏ ସର୍ତ୍ତରେ । ମୋ ନାଁ ଆଗରୁ ମିଷ୍ଟର ଉଠେଇ ଦେବାକୁ ହେବ ।

: ମଞ୍ଜୁର । କୁଇନ୍ ହାତ ବଢ଼ାଇ ଦେଲା ରାଜେଶ ଆଡ଼େ । ରାଜେଶ କୁଇନ୍ ସହିତ ହାତ ମିଳେଇଲା ।

: ବସ ରାଜେଶ । କୁଇନ୍ ପାଖ ଚେଆରଟା ଦେଖାଇ ଦେଲା ।

: ଆପଣ କେତେବେଳୁ ଅପେକ୍ଷା କରିଛନ୍ତି ? ରାଜେଶ ଚେଆର୍ ଉପରେ ବସୁ ବସୁ କହିଲା ।

: ଉଁ ହୁ, ଆଉ ଆପଣ ନୁହେଁ । ଏଇ ମୁହୂର୍ତ୍ତଠାରୁ ତମେ ମୋର ବନ୍ଧୁ ରାଜେଶ । ଆଜ୍ଞା ଆପଣର ଦୂରତ୍ୱ ଭିତରୁ ଆମକୁ ଫେରି ଆସିବାକୁ ହେବ । କୁଇନ୍ ମୁହଁରେ ପ୍ରସନ୍ନତା ଫୁଟି ଉଠିଥିଲା ।

ଘର ଭିତରେ ବୟ ଗୋଟିଏ ଟ୍ରେ'ରେ ବହୁ ଖାଦ୍ୟ ସମାଗ୍ରୀ ଧରି ପ୍ରବେଶ କଲା । ରାଜେଶ ସେଇଆଡ଼େ ଚାହିଁ ପଚାରିଲା : ଆପଣ ଆଗରୁ ଅର୍ଡ଼ର ଦେଇ ସାରିଥିଲେ ?

କୁଇନ୍ କିଛି କହିଲା ନାହିଁ । କେବଳ ହସିଲା, ଆଉ ବୟ ହାତରୁ ଟ୍ରେ'ରୁ ଖାଦ୍ୟ ପ୍ଲେଟ୍‌ଗୁଡ଼ିକ ଓହ୍ଲାଇ ଟେବୁଲ ଉପରେ ରଖିଲା ।

ରାଜେଶ ଖାଉ ଖାଉ କହିଲା : ମୋତେ ଦେଖି ତମର କ'ଣ ମନେ ହେଉଛି ରାଣି !

: ଶାନ୍ତ, ସୁଧୀର ।

: ମାନେ ? ରାଜେଶ ମୁଣ୍ଡ ଟେକି ଅନାଇଲା ।

: ଜାଣ ରାଜେଶ ! ବେଳେବେଳେ ମୋର ମନେହୁଏ, ସତରେ ମୁଁ ରାଣୀ ହୋଇ ଏ ପୃଥିବୀରେ ଜନ୍ମଗ୍ରହଣ କରିଥିଲି । କିନ୍ତୁ ଭାଗ୍ୟ ଦୋଷରୁ...

: କୁଇନ୍ ହୋଇଗଲ । ରାଜେଶ ଗମ୍ଭୀର କଣ୍ଠରେ କହିଲା ।

ଦୁହେଁ ଏକା ସାଂଗରେ ହସି ଉଠିଲେ ।

ଖିଆ ଶେଷ ହେବା ପରେ, କୁଇନ୍ ଦୁଇ ଗ୍ଲାସ୍ ପାନୀୟ ଢାଳି, ରାଜେଶ ହାତକୁ ଗୋଟିଏ ଗ୍ଲାସ୍ ବଢ଼ାଇ ଦେଇ କହିଲା : ଏଥର କାମର କଥା କୁହ ରାଜେଶ । ସମ୍ବାଦଟା ପାଇଁ ମୋ ବସ୍ ଗଭୀର ଆଗ୍ରହରେ ପ୍ରତୀକ୍ଷା କରି ବସିଛନ୍ତି ।

ରାଜେଶ କହିଲା : ନା ରାଣୀ । ମୁଁ ପାରିଲି ନାହିଁ । ମନକୁ ଢେର ବୁଝାଇଲି । କିନ୍ତୁ ମୋ ବସ୍‌ଙ୍କ ବିରୁଦ୍ଧରେ ମନ ବିଦ୍ରୋହ କରି ଉଠିଲା ନାହିଁ । ମୁଁ ନାଚାର ରାଣୀ ।

ରାଜେଶ ଭାବିଥିଲା ତା'ଠାରୁ ନାସ୍ତିବାଣୀ ଶୁଣି, କୁଇନ୍‌ର ମୁହଁଟା ହୁଏତ ଶେତା ପଡ଼ିଯିବ ଅଥବା ରାଗରେ ମୁହଁଟା ଜଳି ଉଠିବ । କିନ୍ତୁ ରାଜେଶ ଦେଖିଲା, କୁଇନ୍ ମୁହଁରେ ଏକ ଶାନ୍ତ ଓ ସଲ୍ଲଜ ହସ । ସେ ପାନୀୟ ଗ୍ଲାସ୍‌ଟା ଟେବୁଲ୍ ଉପରେ ରଖି ନିମିଳିତ ଆଖିରେ

ରାଜେଶ ଆଡ଼କୁ ଚାହିଁ କହିଲା : ରାଜେଶ ! ଭଗବାନ ମୋତେ ଏପରି ଏକ ଶକ୍ତି ଦେଇଛନ୍ତି, ଯେଉଁ ଶକ୍ତି ବଳରେ ପ୍ରଥମ ଦର୍ଶନରେ ହିଁ ମୁଁ ମଣିଷର ମନଟାକୁ ଚିହ୍ନିପାରେ । ତେଣୁ ତମେ ଛଳନା କରି ଅଯଥା ସମୟ ନଷ୍ଟ ନ କଲେ ଭଲ ହୁଅନ୍ତା । ସଉଦା କାମଟା ଶେଷ ହୋଇଗଲେ ତେଣିକି ବରଂ...

ରାଜେଶ ହସି ହସି କହିଲା : କାମ ଶେଷ ହୋଇଗଲେ ତମ ସାନ୍ନିଧ୍ୟ ତ ଆଉ ମିଳିବ ନାହିଁ ।

: ପାଇବ ରାଜେଶ । ମୋ ସାନ୍ନିଧ୍ୟ ଯେତେବେଳେ ଇଚ୍ଛା କରିବ ପାଇବ । ଏଥର କୁହ କେତେ ଟଙ୍କାରେ ସଉଦା କରିବାକୁ ଚାହ ।

ରାଜେଶ କହିଲା : ତମେ କେତେ ଯାଏ ପ୍ରସ୍ତୁତ ହୋଇ ଆସିଛ ?

: ମୁଁ ? ଷାଠିଏ ।

: ଉହୁଁ ।

: ସତୁରି ?

ନା, ପୂରାପୂରି ଶହେ ଦରକାର ।

: ମଞ୍ଜୁର । କୁଇନ୍ ଆଉ ଥରେ ରାଜେଶ ଆଡ଼କୁ ହାତ ବଢ଼ାଇଲା ।

ରାଜେଶ କୁଇନ୍‌ର ହାତ ସହିତ ହାତ ମିଳେଇଲା ।

: ତା'ପରେ ? ରାଜେଶ ପଚାରିଲା ।

କୁଇନ୍ ତା' ଚେଆର୍‌ର ବାଁ ପାଖକୁ ହାତ ବଢ଼ାଇ, ଗୋଟିଏ ସବୁଜ ରଙ୍ଗର ଆଟାଚି କେସ୍ ଉଠାଇ ଆଣି, ରାଜେଶ ହାତକୁ ବଢ଼ାଇ ଦେଇ କହିଲା : ଏଇଟା ନିଅ । କାଲି ସଂଧ୍ୟା ୭ଟାରୁ ରାତି ୯ଟା ଯାଏ ଏଇ ରୁମ୍‌ରେ ତମକୁ ଆମର ଜଣେ ବିଶ୍ୱସ୍ତ ଲୋକ ଅପେକ୍ଷା କରିଥିବ । ତମେ ଏଇ ଆଟାଚି କେସ୍‌ଟିରେ ସଉଦା ଭରି ଏଇ ଘରେ ଏଇ ଟେବୁଲ ଉପରେ ରଖି ଦେଇ ଯିବ । ଠିକ୍ ଏଇ ରଙ୍ଗର ଗୋଟିଏ ଆଟାଚି କେସ୍ ଏଇ ଟେବୁଲ ଉପରେ ଥୁଆ ହୋଇଥିବ । ତମେ ତମରଟା ଏଇଠି ରଖି ଦେଇ, ସେଇଟାକୁ ଉଠାଇ ନେଇ ଚାଲିଯିବ । ବାସ୍ କାହାରିକୁ କିଛି ପ୍ରଶ୍ନ କରିବାର ଆବଶ୍ୟକ ପଡ଼ିବ ନାହିଁ ।

ରାଜେଶ କୁଇନ୍ ମୁହଁକୁ ସନ୍ଦିଗ୍ଧ ନୟନରେ ଅନାଇ ଆଟାଚି କେସ୍‌ଟି ହାତକୁ ନେଲା । ଫିଟେଇ ଦେଖିଲା, ତା' ଭିତରେ ଗୋଟିଏ ପିସ୍ତଲ ।

କୁଇନ କହିଲା : ସେଇଟା ତମର । କାଲି ଆମ ଲୋକେ ତମଠାରୁ ନେଇ ଯାଇଥିଲେ । ତମର ଦରକାରରେ ଲାଗିପାରେ । ସେଇଥିପାଇଁ ଫେରାଇ ଦେଲି ।

: ଧନ୍ୟବାଦ । ରାଜେଶ ନିଜର ବିଶ୍ୱସ୍ତ ସହଚରୀଟିକୁ ନେଇ ଗୁପ୍ତ ପକେଟରେ ରଖିଲା ।

ତା'ପରେ ନୀରବତା ।

କୁଇନ୍ କହିଲା : ତମେ ମୋଟେ ଭାବିବ ନାହିଁ । ଆଟାଚି କେସ୍‌ରେ ତମର ସଂପୂର୍ଣ୍ଣ ପାରିଶ୍ରମିକ କରେନ୍‌ସି ନୋଟରେ ରହିଥିବ ।

ରାଜେଶ କହିଲା : ତା'ହେଲେ ବର୍ତ୍ତମାନ ମୁଁ ବିଦାୟ ନେଉଛି ।

କୁଇନ୍ କହିଲା : ମୁଁ ଆପଣଙ୍କର ମଧୁର ବନ୍ଧୁତ୍ୱ କାମନା କରୁଛି । ଆଶା କରୁଛି ଆମେ ପରସ୍ପରର ବିଶ୍ୱାସଭାଜନ ହେବା ।

ରାଜେଶ ପଚାରିଲା : ଏହାପରେ ତମ ସହିତ ଦେଖା ହେବ କେଉଁଠି ?

: ହେବ ରାଜେଶ । ଅନେକ ଥର ଅନେକ ଜାଗାରେ ହେବ ।

ରାଜେଶ ଆଟାଚି କେସ୍‌ଟି ଧରି ରୁମ୍‌ରୁ ବାହାରି ଆସିଲା । ଦରଜା ପାଖରେ ଠିଆ ହୋଇ ପଛକୁ ଚାହିଁ ଦେଖିଲା, କୁଇନ୍ ହାତ ହଲାଇ ବିଦାୟ ସମ୍ବର୍ଦ୍ଧନା ଜଣାଉଛି ।

\+ + +

ମୃଗାଙ୍କ ଚୌଧୁରୀ ଅଫିସ୍‌ରେ କାର୍ଯ୍ୟ ବ୍ୟସ୍ତ ଥିଲେ ।

ଇନିସ୍‌ପେକ୍ଟର ସାଜାଦ୍ ଦରଜା ଠେଲି ଘର ଭିତରେ ପ୍ରବେଶ କଲେ ।

ମୃଗାଙ୍କ ଚୌଧୁରୀ ସାଜାଦ୍‌ଙ୍କ ଆଡ଼େ ଚାହିଁ, ସାମ୍‌ନା ଚେଆର୍‌ରେ ବସିବାକୁ କହି ଫାଇଲ୍ କାମ ଶେଷ କଲେ । ତା'ପରେ ମୁହଁଟେକି ପଚାରିଲେ : କୁହନ୍ତୁ ମିଷ୍ଟର ସାଜାଦ୍ । ଦିଲ୍ଲୀବାଲାଏ ତ ସ୍ୱର୍ଣ୍ଣମୟୂରୀକୁ କଲିକତା ଉଡ଼େଇ ଦେଇ ଆରାମରେ ବସିଗଲେ । ଏଇକ୍ଷିଣା ଆମ ଉପରେ ସବୁ ଦାୟିତ୍ୱ । ଘନ ଘନ ଉପର ମହଲରୁ ତାଗିଦ୍ ଆସୁଛି । ଆପଣ କିଛି ସମ୍ବାଦ ପାଇଲେ ?

ସାଜାଦ କୁଣ୍ଠିତ ସ୍ୱରରେ କହିଲେ : ସାର୍, ଆହୁରି ଗୋଟାଏ ଅବିଶ୍ୱାସ୍ୟକର ଘଟଣା ଘଟିଛି । ଯେଉଁଟା କି ଅବିଶ୍ୱାସ୍ୟ ହେଲେ ମଧ୍ୟ ସତ୍ୟ ।

ମୃଗାଙ୍କ ଚୌଧୁରୀ ଆଗ୍ରହରେ ପଚାରିଲେ : ଘଟଣାଟା କୁହନ୍ତୁ ମିଷ୍ଟର ସାଜାଦ୍ ।

: ଆପଣ ଯେଉଁ ମହିଳାଙ୍କର ଫଟୋ ଆମକୁ ଦେଇଥିଲେ, ମୁଁ ସେ ଫଟୋର ଆସାମୀର ସନ୍ଧାନ ପାଇଛି ।

: ପାଇଛନ୍ତି ?

: ପାଇଛି ସାର୍, ସେ କିନ୍ତୁ ଏଠାକାର ଜଣେ ବିରାଟ ପ୍ରତିପତ୍ତି ସମ୍ପନ୍ନ ଲୋକଙ୍କର ସ୍ତ୍ରୀ ।

: କିଏ ସେ ଭଦ୍ର ମହିଳା ?

: ଆପଣ ଧୀରାଜ ମେହେରାଙ୍କୁ ଚିହ୍ନନ୍ତି ?

: ଧୀରାଜ ମେହେରା ? ମୃଗାଙ୍କ ଚୌଧୁରୀ ନାମଟାକୁ ମନେ ପକାଇବାକୁ ଚେଷ୍ଟା କଲେ । କିଛି ସମୟ ଚିନ୍ତା କରି କହିଲେ, ନାଁଟା ମନେପଡୁ ନାହିଁ ତ ।

: ଧୀରାଜ ମେହେରା ଏକ ପଲିଟିକାଲ ପାର୍ଟିର ପ୍ରସିଦ୍ଧ ଲୋକ ଥିଲେ । ସର୍ବଭାରତୀୟ ଖ୍ୟାତି ମଧ୍ୟ ତାଙ୍କର ଥିଲା । ତେବେ ବର୍ତ୍ତମାନ ଦୀର୍ଘ କେତେବର୍ଷ ଧରି ସେ ଆଉ ପାର୍ଟିରେ ନାହାନ୍ତି । ତେବେ ତାଙ୍କର ବ୍ୟବସାୟ ଅଛି । ସେ ଖୁବ୍ ପ୍ରତିଷ୍ଠିତ ଲୋକ । ମେହେରା ମାଇନିଂ କର୍ପୋରେସନ ତାଙ୍କର ନିଜ ପ୍ରତିଷ୍ଠାନ ।

: ହୁଁ, ତା'ପରେ ?

: ଏ ଫଟୋଟି ଧୀରାଜ ମେହେରାଙ୍କ ସ୍ତ୍ରୀ ଆଶା ମେହେରାଙ୍କର । ଏଇ ଭଦ୍ର ମହିଳାଙ୍କ ସମ୍ବନ୍ଧରେ ମୁଁ ମଧ୍ୟ ଖବର ନେଇଥିଲି । ଆଶା ମେହେରା ରାଜେଶ ମେହେରାଙ୍କର ଡାଇଭୋର୍ସ୍‌ଡ ୱାଇଫ୍ । ସେ କିନ୍ତୁ ଆପାତତଃ ଧୀରାଜ ମେହେରାଙ୍କ ସାଂଗରେ ରହୁଛନ୍ତି ।

: ସେଉଠୁ ?

: ଆଶା ମେହେରାଙ୍କ ସମ୍ବନ୍ଧରେ ଅନୁସନ୍ଧାନ କରି ଯାହା ଜାଣିଲି, ଭଦ୍ର ମହିଳା ସ୍ୱାମୀଙ୍କର ଆନୁଗତ୍ୟ ସ୍ୱୀକାର କରି ନଥିବାରୁ ତାଙ୍କ ମଧ୍ୟରେ ବିଭେଦ ସୃଷ୍ଟି ହୋଇଥିଲା ।

ଯାହା ଫଳରେ ସେଇ ବିଭେଦ ଏପରି ଏକ ସ୍ତରରେ ଯାଇ ପହଞ୍ଚିଲା, ଯେତେବେଳେ ଧୀରାଜ ମେହେରା ଆଶା ମେହେରାଙ୍କୁ ଡାଇଭୋର୍ସ କରିବାକୁ ବାଧ୍ୟ ହୋଇଥିଲେ । ସେ କୁଆଡ଼େ ଆଶା ମେହେରାଙ୍କୁ ଯଥେଷ୍ଟ ଟଙ୍କା ପଇସା ଦେଇ ଡାଇଭୋର୍ସ କରିଥିଲେ ।

ଅନେକ ବର୍ଷ ପରେ ପୁଣି ଆଶା ମେହେରା ଫେରି ଆସିଛନ୍ତି ଧୀରାଜ ମେହେରାଙ୍କ ପାଖକୁ । କିନ୍ତୁ ସେମାନଙ୍କ ମଧ୍ୟରେ ସ୍ୱାମୀ-ସ୍ତ୍ରୀର କିଛି ସଂପର୍କ ନାହିଁ । ଏପରିକି କେବେ ଦୁହିଁଙ୍କ ମଧ୍ୟରେ କଥାବାର୍ତ୍ତା ହୁଏ ନାହିଁ । ଧୀରାଜ ମେହେରା ଆଶା ମେହେରାଙ୍କୁ ତାଙ୍କ ବାସଗୃହର ପଶ୍ଚାଦ୍ ଭାଗରେ ଗୋଟାଏ ଘର ରହିବାକୁ ଦେଇଛନ୍ତି ଏବଂ ଦୁଇବେଳା ଖାଇବାର ବନ୍ଦୋବସ୍ତ କରି ଦେଇଛନ୍ତି । ତା'ଛଡ଼ା ଦୁହିଁଙ୍କ ଭିତରେ କୌଣସି ସଂପର୍କ ନାହିଁ ।

ମୃଗାଙ୍କ ଚୌଧୁରୀ ଗଭୀର ମନଯୋଗ ସହକାରେ ସାଜାଦ୍‌ଙ୍କ ମୁହଁରୁ ଆଶା ମେହେରାଙ୍କ ସମ୍ବାଦ ଶୁଣିଲେ । ସାମାନ୍ୟ ନୀରବତା ପରେ କହିଲେ :

: ଏପରି ଏକ ଭଦ୍ରମହିଳା ଜଣେ ଖୁଣୀ ଆସାମୀର କଣ୍ଠଲଗ୍ନା ହୋଇ ରହିଲେ କିପରି ? ମିଷ୍ଟର ସାଜାଦ୍, ଆପଣ ଏଇ ଫଟୋ ସହିତ ଆଶା ମେହେରାଙ୍କ ସାଦୃଶ୍ୟ ମିଳାଇ ଦେଖିଛନ୍ତି ? ଅନେକ ସମୟରେ ଦେଖିବାର ଭ୍ରମ ହୋଇ ଯାଇଥାଏ ।

: ନା, ସାର୍ । ଏଇ ଫଟୋ ସହିତ ଆଶା ମେହେରାଙ୍କ ଚେହେରା ହୁବହୁ ମିଳିଯାଉଛି । ମୁଁ ନିଜେ ଯାଇ ଆଇଡେଣ୍ଟିଫାଇ କରି ଆସିଛି ।

: ତା'ହେଲେ ଘଟଣାଟା ସୁବିଧାଜନକ ମନେ ହେଉ ନାହିଁ ମିଷ୍ଟର ସାଜାଦ୍ । ହୁଏତ ଆଶା ମେହେରା ଏକ ଅସାମାଜିକ ମହିଳା ଯେଉଁଥିପାଇଁ ମିଷ୍ଟର ମେହେରା ତାଙ୍କୁ ଡାଇଭୋର୍ସ କରିଥିଲେ । ଏପରି ଏକ ମହିଳାଙ୍କର ଅସାମାଜିକ ଲୋକମାନଙ୍କ ସହିତ ସୁସଂପର୍କ ରହିବା କିଛି ଆଶ୍ଚର୍ଯ୍ୟଜନକ କଥା ନୁହେଁ । ତେବେ ଏହି ଆଶା ମେହେରା, ଶର୍ମାର ହତ୍ୟାକାରୀର ଯେ ଅତି ଅନ୍ତରଙ୍ଗ ଏହା ନିଃସନ୍ଦେହରେ ଆମେ ଅନୁମାନ କରିପାରିବା । ତା' ନହେଲେ ସେଇ ଖୁଣୀ ଆସାମୀଟି ଆଶା ମେହେରାଙ୍କ ଫଟୋଟି କବଚ ଭିତରେ ପୂରାଇ ଗଳା-ମାଳା କରି ନଥାନ୍ତା ।

: ହଁ, ସାର । ଆଶା ମେହେରାଙ୍କ ସହିତ ସେହି ଲୋକଟାର ନିଶ୍ଚୟ ସୁସଂପର୍କ ଅଛି । ଏହା ନିଃସନ୍ଦେହରେ ଆମେ ଧରିନେଇ ପାରିବା ।

: ହୁଁ, ମିଷ୍ଟର ମେହେରାଙ୍କ ଘରେ ଆଉ ସବୁ କିଏ ଅଛନ୍ତି ?

: ଖାଲି ଚାକର ବାକରଙ୍କ ଛଡ଼ା ମୁଁ ଆଉ କାହାରିକୁ ଦେଖିଲି ନାହିଁ ।

: ମିଷ୍ଟର ମେହେରା ।

: ସେ ଘରେ ନଥିଲେ ।

: ତା'ହେଲେ ଆମର ପରବର୍ତ୍ତୀ କର୍ମପଦ୍ଧତି ଆଶା ମେହେରାଙ୍କୁ ଆଖି ଆଗରେ ରଖି ସ୍ଥିର କରିବାକୁ ହେବ ।

: ମୁଁ ଆଶା ମେହେରାଙ୍କୁ ଥାନାକୁ ଧରି ଆଣିବି ସାର୍ ?

: ନା, ନା, ମିଷ୍ଟର ସାଜାଦ୍ । ସେ ଭୁଲ୍ କରନ୍ତୁ ନାହିଁ । ଏଇ ଆଶା ମେହେରାଙ୍କ ଜରିଆରେ ଆମକୁ ଶର୍ମାର ଖୁଣୀକୁ ଖୋଜି ବାହାର କରିବାକୁ ହେବ । ଆଶା ମେହେରା ଯେପରି ଘୁଣାକ୍ଷରେ ଜାଣି ନ ପାରେ ଯେ, ଆମେ ତା' ସମ୍ବନ୍ଧରେ ଅନୁସନ୍ଧାନ କରୁଛେ ବା ତା'ର ଗତିବିଧି ଉପରେ ଲକ୍ଷ୍ୟ ରଖିଛେ । ଆଜିଠାରୁ ଆପଣ ଆଶା ମେହେରା ପଛରେ

ଜଣେ ସୁଦକ୍ଷ ଲୋକକୁ ନିଯୁକ୍ତି କରିଦିଅନ୍ତୁ । ସେ ତା'ର ଚାଲିଚଳଣ ଲକ୍ଷ୍ୟ ରଖୁ । ତା' ସହିତ କିଏ ମିଶିବାକୁ ଆସୁଛନ୍ତି, ସେ କୁଆଡ଼େ ଯାଉଛନ୍ତି, କ'ଣ କରୁଛନ୍ତି ଇତ୍ୟାଦି ସବୁ କଥା ତାକୁ ଲକ୍ଷ୍ୟ ରଖିବାକୁ କୁହନ୍ତୁ ।

: ମୁଁ ବ୍ୟବସ୍ଥା କରି ଆସିଛି ସାର୍ । କିନ୍ତୁ ଏପରି ଏକ ଭଦ୍ର ଲୋକଙ୍କ ସ୍ତ୍ରୀ ଯେ ଏତେ ତଳକୁ ଓହ୍ଲାଇ ପାରେ ମୁଁ ମୋଟେ ବିଶ୍ୱାସ କରିପାରୁ ନାହିଁ । ପ୍ରଥମେ ଯେତେବେଳେ ମୁଁ ସମ୍ବାଦଟା ପାଇଲି, ସେତେବେଳେ ଯେଉଁ ଲୋକଟା ସଂବାଦଟା ଆଣି ଦେଲା, ତାକୁ ମୁଁ ମାରିବାକୁ ହାତ ଉଠାଇଥିଲି ।

ମୃଗାଙ୍କ ଚୌଧୁରୀ କହିଲେ : ମଣିଷ ଚରିତ୍ର ସମ୍ବନ୍ଧରେ ବିଶ୍ଳେଷଣ କରିବା ମୋଟେ ସହଜ କଥା ନୁହେଁ । ପୃଥିବୀ ଇତିହାସରେ ଏପରି ବହୁ ଅବିଶ୍ୱାସ୍ୟ ଘଟଣା ଘଟିଛି, ଯାହା ପରବର୍ତ୍ତୀ କାଳରେ ଐତିହାସିକମାନେ ବି ଇତିହାସ ପୃଷ୍ଠାରେ ଲିପିବଦ୍ଧ କରିବାକୁ ଅବିଶ୍ୱାସ ମନେକରିବେ । ଯାହାହେଉ, ଆପଣ ଗୋଟାଏ ସୂତ୍ର ଆବିଷ୍କାର କଲେ । ଆଉ ଶର୍ମା ସମ୍ବନ୍ଧରେ ନୂଆ ତଥ୍ୟ କିଛି ମିଳିଲା ?

: ନା, ତେବେ ଶର୍ମା ଯେ ଜଣେ ଧଡ଼ିବାଜ ଲୋକ ଥିଲା, ସେ କଥା ଶର୍ମାର ଫଟୋ ଦେଖି ଆଉ ଜଣେ ଦି'ଜଣ କହିଛନ୍ତି । ଆଶା କରୁଛି ଶର୍ମା ସମ୍ବନ୍ଧରେ ସଂପୂର୍ଣ୍ଣ ବିବରଣୀ ମୁଁ ସଂଗ୍ରହ କରିନେବି ।

ମୃଗାଙ୍କ ଚୌଧୁରୀ କଲମ କାମୁଡ଼ି ଘଡ଼ିଏ ଚିନ୍ତା କଲେ । ତା'ପରେ ଧୀରେ ଧୀରେ କହିଲେ : ମିଷ୍ଟର ସାଜାଦ୍ ! ଆପଣଙ୍କୁ ଆଉ ଜଣକ ଉପରେ ମଧ୍ୟ ସଜାଗ ଦୃଷ୍ଟି ରଖିବାକୁ ହେବ । ଖାଲି ସଜାଗ ଦୃଷ୍ଟି ନୁହେଁ, ସେଇ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମ୍ବନ୍ଧରେ ସବିଶେଷ ବିବରଣୀ ସଂଗ୍ରହ କରିବାକୁ ପଡ଼ିବ ।

: ଆପଣ କାହା କଥା କହୁଛନ୍ତି ସାର୍ ?

: ଧୀରାଜ ମେହେରା, ଆଶା ମେହେରାଙ୍କ ସ୍ୱାମୀ । ଅତୀତରେ ଏହି ଲୋକଟିର ଯଥେଷ୍ଟ ନାମ, ଯଶ, ଖ୍ୟାତି ଥିଲା । ବର୍ତ୍ତମାନ ମଧ୍ୟ ଏହାଙ୍କର ସାମାଜିକ ସ୍ଥିତି ନିଶ୍ଚୟ ଉଚ୍ଚ ମାନର ଥିବ । କିନ୍ତୁ ଏହାଙ୍କ ଅତୀତ ସହିତ ବର୍ତ୍ତମାନର କାର୍ଯ୍ୟକ୍ରମ, ଚିନ୍ତା-ଭାବନା ଇତ୍ୟାଦି ସମସ୍ତ ବିଷୟରେ ଆପଣ ଟିକିଏ ଅନୁସନ୍ଧାନ କରିବେ ଏବଂ ବର୍ତ୍ତମାନ ଆଶା ମେହେରାଙ୍କ ସହିତ ତାଙ୍କର ସଂପର୍କକୁ ଖୁବ୍ ଧ୍ୟାନ ସହକାରେ ଲକ୍ଷ୍ୟ କରିବେ । ବୁଝିଲେ ?

: ଇଏସ୍ ସାର୍ ।

ଆପଣ ତା'ହେଲେ ଆସନ୍ତୁ ମିଷ୍ଟର ସାଜାଦ୍ । ମନେରଖିବେ ଆପଣଙ୍କ ଘାଟି ଏକ ସମ୍ଭାବନାପୂର୍ଣ୍ଣ ଘାଟି । କର୍ତ୍ତବ୍ୟରେ ଯେପରି ତ୍ରୁଟି ନ ହୁଏ ।

: ଇଏସ୍ ସାର୍ । ସାଜାଦ୍ ସାଲ୍ୟୁଟ ବଜାଇ ଘରୁ ବାହାରି ଗଲେ ।

\+ + +

ରାଜେଶ ମନଟା ଖୁସି ଥିଲା । ସେ ଅଫିସ୍‌ରେ ପହଞ୍ଚି ଦେଖିଲା, ମେରୀ ଆଗରୁ ଆସି ବସିଛି । ରାଜେଶ ଭାବିପାରି ନଥିଲା ମେରୀ ଆଜି ଅଫିସ୍‌କୁ ଆସିବ ବୋଲି ।

ମେରୀ ହସି ହସି ରାଜେଶକୁ ସ୍ୱାଗତ ଜଣାଇଲା । କହିଲା : ଆପଣ ଆଜି କ'ଣ ଗୋଟାଏ ଆଟାଚି କେସ୍ ଧରି ଆସିଛନ୍ତି ।

ରାଜେଶ ନିଜ ହାତରେ ଧରି ଆସିଥିବା ଆଟାଚି କେସ୍‌ଟା ଆଡ଼େ ଚାହିଁ ଟିକିଏ ଦବି ଯାଇଥିଲା, ତା'ପରେ ସେଇଟା ଟେବୁଲ ଉପରେ ରଖୁ ରଖୁ କହିଲା-

: କିଣିଲି ଗୋଟାଏ । କାଗଜପତ୍ର ନେବା ଆଣିବା ପାଇଁ ଭୀଷଣ ଅସୁବିଧା ହେଲା । ଆଉ ତମେ ଆସିଗଲ ଯେ, ତମର ତ ଆସିବାର ନଥିଲା ।

ମେରୀ ଟିକିଏ ଚୁପ୍ ରହି, ମୁହଁରେ ହସ ଫୁଟାଇ କହିଲା : ଜାଣ ରାଜେଶ ! କାଲି ରାତି ଭରି ମୁଁ ମୋଟେ ଶୋଇପାରି ନାହିଁ । କାଲି ମୋ ମନଟା କିପରି ଏକ ଅପରିସୀମ କାମନାରେ ଭରି ଯାଇଥିଲା । ଏ କେତେବର୍ଷ ହେବ, ମୁଁ ମୋ କଥା ଏତେ ଚିନ୍ତା କରିବାର ସ୍ୱପ୍ନ ବି ଦେଖି ନଥିଲି ।

ରାଜେଶ କହିଲା : ମୁଁ ଜାଣେ ମେରୀ । ମଣିଷ ମନରେ ଯେତେବେଳେ ମୁକ୍ତିର ମଶାଲ ଜଳେ, ସେ ପାଗଳ ହୋଇଯାଏ । ପଶୁମାନେ ବି ସ୍ୱାଧୀନତା ପାଇଁ ବ୍ୟସ୍ତ ହୋଇ ଉଠନ୍ତି, ଆଉ ତମେ ତ ମଣିଷ ।

: କିନ୍ତୁ ରାଜେଶ ! ତଥାପି ବେଳେ ବେଳେ ଭୟରେ ମୋର ସମଗ୍ର ଶରୀର କମ୍ପି ଉଠୁଛି । ମୁକ୍ତି ଆଲୋକରେ ପଥ ଯେତିକି ଉଜ୍ଜ୍ୱଳ ହୋଇ ଦିଶୁଚି, ଯନ୍ତ୍ରଣାର କରୁଣ ମୂର୍ତ୍ତି ବିଭତ୍ସ ଆକାର ଧାରଣ କରି ମୋ ସାମ୍ନାରେ ଆସି ଠିଆ ହେଉଛି । ତମେ ରାଜେଶ ମୋ ପ୍ରାଣରେ କାହିଁକି ଏଇ ମୁକ୍ତିର ସ୍ୱପ୍ନ ଜାଗ୍ରତ କଲ । ଯଦି ବ୍ୟର୍ଥ ହୁଏ, ତେବେ ମୁଁ ହୁଏତ ପାଗଳ ହୋଇଯିବି ରାଜେଶ ।

: ତମେ କିଛି ଚିନ୍ତା କର ନାହିଁ ମେରୀ, ସେ ଦାୟିତ୍ୱ ମୋର । ତମେ ଖାଲି ମୋ ନିର୍ଦ୍ଦେଶ ଅନୁସାରେ ଚଳିବ । ଆମର ଅନ୍ତରଙ୍ଗ ଭାବ ବାହାରେ ପ୍ରକାଶ କରିବ ନାହିଁ । ସୁଖର ଦିନ ଆମର ଆସିବ ମେରୀ, ନିଶ୍ଚୟ ଆସିବ ।

ରାଜେଶ ଡ୍ରୟାର ଖୋଲି ଫାଇଲ ପତ୍ର ବାହାର କରି ଟେବୁଲ ଉପରେ ସଜାଇ ରଖିଲା ।

ମେରୀ ନିଜ କାମରେ ମନ ଦେଲା ।

ମଝିରେ ମଝିରେ ଦୁହେଁ ଦୁହିଁଙ୍କ ଆଡ଼କୁ ଚାହୁଁଥିଲେ ଏବଂ ଅଳ୍ପ ଅଳ୍ପ ହସୁଥିଲେ ।

ରାଜେଶ ମନେ ମନେ ଚିନ୍ତା କରୁଥିଲା । ଆଜି ୭ଟାରୁ ୯ଟା ଭିତରେ ତାକୁ କାର୍ଯ୍ୟ ହାସଲ କରିବାକୁ ହେବ । କାର୍ଯ୍ୟ ହାସଲ କରି ସାରି ସେ କ'ଣ ଆଉ ରହିବ କଲିକତାରେ ? ବିଚାରୀ ମେରୀ, ତା'ର ଅବସ୍ଥା କ'ଣ ହେବ ?

ହେବ ଆଉ କ'ଣ ? ତା'ର ବା ଦୋଷ କେଉଁଠି ? କେହି ଯଦି ତା' ଅଜାଣତରେ ସେହି ମୂଲ୍ୟବାନ ପଦାର୍ଥଟିଏ ଚୋରି କରି ନେଇଯାଏ । ସେଥିପାଇଁ ସେ ଦାୟୀ ହେବ କାହିଁକି ?

କିନ୍ତୁ ସେ କଲିକତା ଛାଡ଼ି ଚାଲିଯିବାଟା ଉଚିତ ହେବ ନାହିଁ । ତା'ହେଲେ ଧୀରାଜ ମେହେରା ତାକୁ ସନ୍ଦେହ କରିବେ । ଖାଲି ସନ୍ଦେହ ତ ନୁହେଁ, ସୁଯୋଗ ପାଇଲେ ସେ ତା'ର ପ୍ରାଣ ନାଶ କରିବାକୁ ପଶ୍ଚାତ୍‌ପଦ ହେବେ ନାହିଁ ।

ନା, ସେ କୁଆଡ଼େ ପଳେଇ ଯିବ ନାହିଁ । କିଛିଦିନ ଏଇଠି ରହିବ, ଧୀରାଜ ମେହେରାଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ହୋଇ । ଦେଖାଯିବ କେଉଁ ପାଣି କେଉଁ ଆଡ଼କୁ ଯାଉଛି । ଆଉ ଯଦି ପାରିବ, ମେରୀକୁ...

ରାଜେଶ ଚାହିଁଲା ମେରୀ ଆଡ଼କୁ । ସେ ମନଯୋଗ ସହକାରେ କାମ କରୁଛି । ଚିନ୍ତା କରୁଥିଲା, କିପରି ଭାବରେ ସେ ମେରୀ ରୁମକୁ ଯାଇ ସ୍ୱର୍ଣ୍ଣମୟୂରୀଟି ହସ୍ତଗତ କରିବ । ମେରୀର ସଜାଗ ଦୃଷ୍ଟି ଏଡ଼େଇ କିପରି ସେ ଆଟାଚି କେସ୍ ଭିତରେ ଅସଲ ପଦାର୍ଥଟି ଭରିବ ।

ରାଜେଶ ଆଖି ଆଗରେ ନାଚିଗଲା, ସେଇ ଭଙ୍ଗା ଟେବୁଲ ଲ୍ୟାମ୍ପଟା । ସେଥିପାଇଁ ଗୋଟାଏ ସ୍କ୍ରୁ ଡ୍ରାଇଭର ଦରକାର ଯେ ! ହଁ, ଆଗରୁ ସଂଗ୍ରହ କରି ନେଇଯିବାକୁ ହେବ ।

ରାଜେଶ ମେରୀ ଆଡ଼କୁ ଚାହିଁ କହିଲା : ତମେ ଆଜି କେତେବେଳେ ଫେରିବ ମେରୀ ?

: କାହିଁକି ? ଅନ୍ୟ କିଛି ପ୍ରୋଗ୍ରାମ ଅଛି ?

: ପ୍ରୋଗ୍ରାମ ! ତୁମକୁ ନେଇ ପୁଣି ପ୍ରୋଗ୍ରାମ । ସେଦିନ ସିନେମା ଦେଖା ଯେପରି ହେଲା, ସେହିପରି ସବୁ ପ୍ରୋଗ୍ରାମ ହେବ ।

: ନା, ରାଜେଶ । ଆଜି ଯଦି କିଛି ପ୍ରୋଗ୍ରାମ ଥାଏ, ତେବେ ମୁଁ ତମ ସହିତ ନିଶ୍ଚୟ ଯିବି ।

ରାଜେଶ ଟିକିଏ ଚିନ୍ତା କଲା । କହିଲା : ମୁଁ ଏଇକ୍ଷଣି ଟିକେ ବାହାରକୁ ଯାଉଚି । ଫେରିବି ଚାରିଟା ବେଳକୁ । ତମେ କାମଦାମ ସବୁ ଶେଷ କରି ସାରିଥିବ । ବାହାରିବା ଏକା ସାଙ୍ଗରେ । ତା'ପରେ ତମେ ତ ଥରେ ନିଶ୍ଚୟ ହୋଟେଲକୁ ଫେରିବ । ସେଉଠୁ ଦେଖିବା କ'ଣ କରାଯାଇପାରେ ।

ରାଜେଶ ଟେବୁଲ ଉପରୁ ଆଟାଚି କେସ୍‌ଟି ଉଠାଇ ନେଇ ବାହାରକୁ ବାହାରିଗଲା । ମେରୀ ଅନାଇ ରହିଲା ସେଇଆଡ଼େ ।

କ୍ରମେ ସମୟ ଗଡ଼ି ଚାଲିଲା ।

ଘଣ୍ଟା କଣ୍ଟା ଯେତେ ଆଗେଇ ଚାଲିଲା, ମେରୀର ମନଟା ସେତେ ବ୍ୟଗ୍ର ହୋଇ ଉଠିଲା । ଚାରିଟା ବି ବାଜିଲା ଅଫିସ୍ ଘଣ୍ଟାରେ ।

ନା ଆଉ ନୁହେଁ । ମେରୀ କାଗଜପତ୍ର ଗୋଟେଇ ରଖି ନିଜକୁ ପ୍ରସ୍ତୁତ କଲା । ସେ ଖାଲି ରହି ରହି ବାହାରକୁ ଚାହୁଁଥିଲା । କିନ୍ତୁ ରାଜେଶ କାହିଁ ?

ପାଞ୍ଚଟା ବାଜିଲା ଘଡ଼ିରେ ।

ମେରୀ କେବେ ପାଞ୍ଚଟା ପର୍ଯ୍ୟନ୍ତ ଅଫିସ୍‌ରେ ରୁହେ ନାହିଁ । ଅନ୍ୟାନ୍ୟ କର୍ମଚାରୀମାନେ କୌତୂହଳ ଦୃଷ୍ଟିରେ ମେରୀ ଆଡ଼କୁ ଚାହୁଁଥିଲେ । ମେରୀ କିନ୍ତୁ ଯଥେଷ୍ଟ ବ୍ୟସ୍ତ ଥିବା ପରି କାଗଜ ପତ୍ର ଖେଳାଖେଳି କରୁଥିଲା ଏବଂ ରହି ରହି ବାହାରକୁ ଚାହୁଁଥିଲା ।

ଠିକ୍ ପାଞ୍ଚଟା ପନ୍ଦରରେ ରାଜେଶ ପଶି ଆସିଲା ଘର ଭିତରକୁ । ମେରୀ ଯେପରି ନିଶ୍ଚିନ୍ତ ହେଲା ।

ରାଜେଶ ନିଜ ସିଟ୍‌ରେ ବସୁ ବସୁ କହିଲା : ଡେରି ହୋଇଗଲା । କାମଟା ସରିଲା ନାହିଁ ଶୀଘ୍ର । ଉଠ ଏଥର । ଆଉ ଡେରି କର ନାହିଁ ।

ସେତେବେଳେ ଅଫିସ୍ ଖାଲି ହୋଇଯାଇଥିଲା । ସମସ୍ତ କର୍ମଚାରୀମାନେ ଚାଲି ଯାଇଥିଲେ ।

ରାଜେଶ ପଛେ ପଛେ ମେରୀ ବାହାରି ଆସିଲା ଖୁସି ମନରେ ।

ରାଜେଶ ଗାଡ଼ିରେ ଉଠୁ ଉଠୁ କହିଲା : ଏତେ ଶୀଘ୍ର ହୋଟେଲକୁ ଫେରି କ'ଣ କରିବ ? ଆସ ବରଂ ଟିକେ କୁଆଡ଼େ ବୁଲି ଆସିବା । ମୁଁ ତମକୁ ନେଇ ସାତଟା ସାଢ଼େ ସାତଟା ବେଳକୁ ଛାଡ଼ି ଦେଇ ଆସିବି ।

ମେରୀ ନୀରବ ରହିଲା । ରାଜେଶ ଗାଡ଼ି ଚଳେଇଲା ।

ସେମାନେ ଭିକ୍ଟୋରିଆ ମେମୋରିଆଲ ଭିତରେ ପଶିଲେ । ପାଦରେ ଚାଲି ଚାଲି ଅନେକ ବୁଲିଲେ । ପୁଣି ରାଜେଶ ମେରୀକୁ ନେଇଗଲା ଗଙ୍ଗା କୂଳକୁ । ଗତ ରାତିରେ ସେମାନେ ଯେଉଁଠି ବସି ବସି ନୂଆ ଜୀବନର ସ୍ୱପ୍ନ ଦେଖିଥିଲେ, ରାଜେଶ ସେଇଠି ଠିଆ ହୋଇ କହିଲା-

: ଆସ ମେରୀ, ଆଉଥରେ ଏଇଠି ଏକାଠି ଠିଆ ହୋଇ ଆମ ନୂତନ ଜୀବନର ସ୍ୱପ୍ନ ସାର୍ଥକ କରିବା ପାଇଁ ପ୍ରତିଜ୍ଞା କରିବା ।

ମେରୀ ଆଗେଇ ଗଲା ।

ରାଜେଶ ହାତ ବଢ଼ାଇ ଗଙ୍ଗାରୁ ପାଣି ଆଣି ମେରୀ ଉପରେ ଛିଞ୍ଚିଦେଇ କହିଲା : ଆଜିଠାରୁ ତମେ ପବିତ୍ର ହୁଅ । ମନ ଭିତରର ସମସ୍ତ ଗ୍ଲାନି ଧୋଇ ସଫା କରିଦିଅ ।

ମେରୀ ହସିଲା ।

ରାଜେଶ ମେରୀର ହାତ ଧରି ଟାଣି ଟାଣି ଉପରକୁ ଉଠାଇ ଆଣିଲା । ଘଡ଼ି ଦେଖି କହିଲା : ସାତଟା ବାଜି ଗଲାଣି । ଏଥର ଫେରିବାକୁ ହେବ । ଆଠଟା ବେଳକୁ ମୋର ଗୋଟାଏ ଆପଏଣ୍ଟମେଣ୍ଟ ଅଛି । ମୁଁ ତମକୁ ଛାଡ଼ି ଦେଇ ଫେରି ଆସିବି ।

ପୁଣି ଦୁହେଁ ଯାଇ ଗାଡ଼ିରେ ବସିଲେ ।

ହୋଟେଲ ଇଣ୍ଟରନାସନାଲ ପାଖରେ ଗାଡ଼ି ଠିଆ କରି ରାଜେଶ ଦରଜା ଖୋଲିଦେଲା । ମେରୀ କହିଲା : ତମେ କ'ଣ ଏଇଠୁ ଫେରିଯିବ ରାଜେଶ ? ଆଠଟା ବାଜିବାକୁ ତ ଅନେକ ଡେରି ଅଛି । ଆସନା ଟିକେ ବସି ଗପ କରିବା ।

ରାଜେଶ ଆପତ୍ତି କଲା ନାହିଁ । ହାତରେ ଆଟାଚି କେସ୍‌ଟି ଧରି ଗାଡ଼ିରୁ ଓହ୍ଲାଇ ଆସିଲା । ସେମାନେ ଲିଫ୍‌ଟରେ ଉପରକୁ ଉଠିଗଲେ ।

ମେରୀ ରୁମ୍‌ର ଦରଜା ଖୋଲିଲା ।

ରାଜେଶ ଦରଜାଟାକୁ ଭିତରୁ ବନ୍ଦ କଲା ।

ମେରୀ ତା' ଭ୍ୟାନିଟି ବ୍ୟାଗଟି ଟେବୁଲ ଉପରେ ରଖି ପ୍ରଥମେ ସେହି ଭଙ୍ଗା ଟେବୁଲ ଲ୍ୟାମ୍ପଟି ଆଡ଼େ ଚାହିଁଲା । ତା'ପରେ ସେଇଟିକୁ ହାତରେ ଉଠାଇ ଦେଖିଲା । ହସି ହସି କହିଲା : ଠିକ୍ ଅଛି । ତମେ ବସ ରାଜେଶ । ମୁଁ ଟିକିଏ ବାଥ୍‌ରୁମ୍‌ରୁ ଆସୁଛି । ବରଂ ତମେ ବୟକୁ ଡାକି କିଛି ଖାଇବାକୁ ଅଣାଅ ।

: ଆଚ୍ଛା । ରାଜେଶ ସମ୍ମତି ଜଣାଇଲା ।

ମେରୀ ଆଲ୍‌ଣାରୁ ଲୁଗା ଓ ସାୟା ପ୍ରଭୃତି ନେଇ ବାଥ୍‌ରୁମ୍‌ରେ ପଶିଲା ।

ରାଜେଶ ଆଉ ମୁହୂର୍ତ୍ତେ ଡେରି କଲା ନାହିଁ । ସଂଗେ ସଂଗେ ନଇଁପଡ଼ି ଖଟତଳୁ ଭଂଗା ଟେବୁଲ ଲ୍ୟାମ୍ପଟି ଉଠାଇ ଆଣିଲା । ଆଟାଚି କେସ୍‌ଟି ଖୋଲି ସ୍କ୍ରୁ ଡ୍ରାଇଭର ବାହାର

କରି କ୍ଷିପ୍ର ହସ୍ତରେ ଟେବୁଲ ଲ୍ୟାମ୍ପର ସ୍କୃଟା ଖୋଲି ପକାଇଲା ଏବଂ ଭିତରୁ ସ୍ୱର୍ଣ୍ଣମୟୂରୀ ବାହାର କରି ଆଟାଚି କେସ୍‌ରେ ବନ୍ଦ କଲା । ତା'ପରେ ଟେବୁଲ ଲ୍ୟାମ୍ପର ସ୍କୃଟା ବନ୍ଦ କରି ଯଥା ସ୍ଥାନରେ ରଖିଦେଲା ।

ବାଥ୍‌ରୁମ୍‌ରୁ ମେରୀ ବାହାରି ନଥିଲା । ସାୱାର୍‌ରୁ ପାଣି ଝରିବା ଶବ୍ଦ ସଙ୍ଗରେ ମେରୀର ଗୁଣୁଗୁଣୁ କଣ୍ଠ ସଂଗୀତ ଭାସି ଆସୁଥିଲା ।

ରାଜେଶ ଅଳ୍ପ ସମୟ ମଧ୍ୟରେ, ସବୁ କାମ ନିର୍ବିଘ୍ନରେ ଶେଷ କରି, କଲିଂବେଲ୍ ଟିପି ବୟକୁ ଡାକିଲା ।

ମେରୀ ବାଥ୍‌ରୁମ୍‌ରୁ ଫେରିଲା ବେଳକୁ ବୟ ଖାଦ୍ୟ ପଦାର୍ଥ ଧରି ପ୍ରବେଶ କରିଥିଲା ।

ରାଜେଶ ଓ ମେରୀ ଖୁସି ଗପ କରୁ କରୁ ଖାଇବା ଶେଷ କଲେ । ରାଜେଶ ଘଡ଼ି ଦେଖି କହିଲା : ଏଥର ମୁଁ ଉଠୁଚି ମେରୀ । ସମୟ ହୋଇଗଲାଣି ।

ମେରୀ କହିଲା : ଏତେ ଶୀଘ୍ର ତୁମକୁ ଛାଡ଼ିବାକୁ ଇଚ୍ଛା ହେଉ ନାହିଁ ରାଜେଶ । ମନ ହେଉଛି, ତମେ ଏଇଠି ମୋ ପାଖରେ ବସି ରାତି ରାତି ଗପ କରନ୍ତ, ଆଉ ମୁଁ ଶୋଇ ଶୋଇ ଶୁଣନ୍ତି ।

ରାଜେଶ ହସିଲା । ମେରୀ ଗାଲରେ ଗୋଟିଏ ଛୋଟ ଚାପୁଡ଼ା ମାରି କହିଲା : ସେଦିନ ଆସୁଛି ମେରୀ । ଆଉ ବେଶି ଡେରି ନହିଁ ।

ରାଜେଶ ଆଟାଚି କେସ୍‌ଟି ଟେବୁଲ ଉପରୁ ଉଠାଇ ନେଇ ଚାଲିଗଲା ।

ମେରୀ ରାଜେଶର ଯିବା ପଥକୁ ଅନେଇ ରହିଲା ।

ରାଜେଶ ଲିଫ୍‌ଟରୁ ଓହ୍ଲେଇ କ୍ଷିପ୍ର ଗତିରେ ଆଗେଇ ଯାଇ ଗାଡ଼ିରେ ବସିଲା । ମୁଣ୍ଡରେ ତା'ର ଝାଳ ଜକେଇ ଆସିଥିଲା ।

ନା, ଆଉ ସମୟ ନଷ୍ଟ କରିବା ଉଚିତ ନୁହେଁ ।

ରାଜେଶ ଗାଡ଼ି ଚଳେଇ ପାର୍କ ହୋଟେଲ ଦୁଆରେ ଯାଇ ପହଞ୍ଚିଲା । ତାକୁ ଶୀଘ୍ର କାମ ଶେଷ କରି ଘରକୁ ଫେରିଯିବାକୁ ହେବ ।

ପାର୍କ ହୋଟେଲର ୧୧ ନମ୍ବର ରୁମ୍‌ର ଦୁଆର ଠେଲି ଦେବାରୁ ଧୀରେ ଖୋଲିଗଲା । ରାଜେଶ ଚାରିଆଡ଼କୁ ଚାହିଁ ଦେଖିଲା କେହି କୁଆଡ଼େ ନାହିଁ । କିନ୍ତୁ ଟେବୁଲ ଉପରେ ଗୋଟିଏ ନୀଳ ଆଟାଚି କେସ୍ ଥୁଆ ହୋଇଛି । ରାଜେଶ ପାଦ ଚିପି ଚିପି ଆଗେଇ ଯାଇ, ନିଜ ହାତର ଆଟାଚି କେସ୍‌ଟା ଟେବୁଲ ଉପରେ ରଖି, ଟେବୁଲ ଉପରେ ଥିବା ଆଟାଚି କେସ୍‌ଟା ଉଠାଇ ବାହାରି ଆସିଲା ।

ତା'ପରେ ଧୀରେ ଧୀରେ ଓହ୍ଲେଇ ଆସିଲା ସେ ତଳକୁ ।

ଲୋକ ଗହଳି ଭିତରେ ମିଶିଗଲା ।

ଆଗକୁ ପଛକୁ ଚାହିଁଲା । ନା, କେହି ତା'ର ଗତିବିଧି ଲକ୍ଷ୍ୟ କରୁ ନାହିଁ । ସେ ନିଶ୍ଚିନ୍ତ, ସେ ମୁକ୍ତ ।

ରାଜେଶ ଗାଡ଼ିର ଦରଜା ଖୋଲି ଭିତରେ ପଶିଲା । ଆଟାଚି କେସ୍‌ଟି ଖୋଲି ଦେଖିବା ପାଇଁ ତା' ମନରେ ଆଗ୍ରହ ଦ୍ରୁତ ହୋଇ ଉଠିଥିଲା । ଗାଡ଼ିଟା କିଛି ଦୂର ଚଳେଇ ନେଇ, ରାଜେଶ ଧୀରେ ଆଟାଚି କେସ୍‌ଟି ଖୋଲି ଦେଖିଲା ।

ନା, ସେମାନେ ତାକୁ ଠକି ନାହାନ୍ତି ।

କରେନ୍‌ସି ନୋଟ୍‌ରେ ଆଟାଚି କେସ୍‌ଟି ଭରି ଦେଇଛନ୍ତି ।

ରାଜେଶର ସମଗ୍ର ଶରୀରରେ କିପରି ଏକ ଅଜଣା ପୁଲକ ଖେଳି ଯାଇଥିଲା ।

ମନ ତା'ର ଭାସି ଯାଇଥିଲା ଅନ୍ୟ ଏକ ରାଜ୍ୟକୁ ।

ଏକ ଲକ୍ଷ ଟଙ୍କା । ତା' ପାଇଁ ଏକ ଲକ୍ଷ ଟଙ୍କା କମ୍ ନୁହେଁ । ଏହାକୁ ମୂଳ ପୁଞ୍ଜି କରି ସେ ମହତ୍ ଜୀବନଯାପନ କରିବା ପାଇଁ ଉପାୟ ଚିନ୍ତା କରିବ । ଅବଶ୍ୟ ତାକୁ ପ୍ରଥମେ ଟିକିଏ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ । ଧୀରାଜ ମେହେରା ନିଶ୍ଚୟ ତାକୁ ଅସୁବିଧାରେ ପକାଇବାକୁ ଚେଷ୍ଟା କରିବେ । ତଥାପି ସେ ଡରିବ ନାହିଁ ।

ଆଉ ବିଚାରୀ ମେରୀ ! ଯିଏ ରାଜେଶ ଠାରୁ ଆଶା ଭରସା ପାଇ ନୂତନ ଜୀବନର ସ୍ୱପ୍ନ ଦେଖୁଛି । ତା'ର ଅବସ୍ଥା କ'ଣ ହେବ ?

ଧୀରାଜ ମେହେରା ନିଶ୍ଚୟ ତା' ଉପରେ ପ୍ରତିଶୋଧ ନେବେ ।

ସେତେବେଳେ ରାଜେଶ କ'ଣ ନୀରବ ଦର୍ଶକ ହୋଇ ରହିବ ?

ଦେଖାଯାଉ କ'ଣ ହେଉଛି ? କିନ୍ତୁ ବର୍ତ୍ତମାନ ସେ ଏଇ ଟଙ୍କାଗୁଡ଼ିକ ନେଇ ରଖିବ କେଉଁଠି ? ବ୍ୟାଙ୍କରେ ଜମା ଦେବା ସମ୍ଭବ ହେବ ନାହିଁ । ଏକା ସଂଗରେ ଏତେଗୁଡ଼ିଏ ଟଙ୍କା ଜମା କରିବାର ଦେଖିଲେ, କର୍ତ୍ତୃପକ୍ଷ ତାକୁ ସନ୍ଦେହ କରିବେ । ପୋଲିସ୍‌ରେ ଖବର ଦେଇପାରନ୍ତି ।

ନା, ରାଜେଶ ସେ ସବୁ ସମସ୍ୟା ଭିତରେ ପଶିବ ନାହିଁ ।

ଏହି ଆଟାଚି କେସ୍ ସମେତ ଟଙ୍କାତକ ସେ କେଉଁଠି ଏକ ଗୁପ୍ତ ସ୍ଥାନରେ ଲୁଚାଇ ରଖିବ । ଏତେ ବଡ଼ ବିରାଟ ପୃଥିବୀରେ ଏତେ ଟିକେ ପଦାର୍ଥ ଲୁଚାଇ ରଖିବାକୁ ସେ କ'ଣ ଜାଗା ପାଇବ ନାହିଁ ?

ରାଜେଶ ମନରେ ଏଇସବୁ ଅସଂଲଗ୍ନ ଭାବନା ଉଠି ତାକୁ ବିଭୋର କରି ଦେଇଥିଲା । ଗାଡ଼ି କିନ୍ତୁ ତା'ର ଆଗେଇ ଚାଲିଥିଲା ଠିକ୍ ପଥରେ ! ଏକ ସମୟରେ ସେ ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା ।

ଗାଡ଼ିକୁ ଗ୍ୟାରେଜରେ ବନ୍ଦ କରି, ଆଟାଚି କେସ୍‌ଟି ଧରି ରାଜେଶ ବାହାରି ଆସିଲା ବାହାରକୁ ।

ଆଟାଚି କେସ୍‌ଟା ତା' ହାତକୁ ଭାରି ଭାରି ଲାଗିଲା ।

ମନ ଆନନ୍ଦରେ ରାଜେଶ ଉପରକୁ ଉଠିଯାଉଥିଲା ।

କିନ୍ତୁ ହଠାତ୍ ଅଟକିଗଲା ତା'ର ପାଦ ଦୁଇଟା । ଶିଡ଼ି ମୁଣ୍ଡରେ ଠିଆ ହୋଇଛନ୍ତି ସ୍ୱୟଂ ଧୀରାଜ ମେହେରା ।

: ସାର୍ ଆପଣ...

ରାଜେଶ କମ୍ପିତ କଣ୍ଠରେ ପଚାରିଲା ।

ଧୀରାଜ ମେହେରା କହିଲେ : ମୁଁ ପାଞ୍ଚଟା ବେଳେ ଦମ୍‌ଦମ୍‌ରେ ପହଞ୍ଚିଲି । ତମକୁ ଅପେକ୍ଷା କରିଚି ।

ରାଜେଶର ପାଦ ଦୁଇଟା ଆଗକୁ ବଢୁ ନଥିଲା ।

କିନ୍ତୁ ଧୀରାଜ ମେହେରା ରାଜେଶ ପାଖକୁ ଲାଗିଆସି କହିଲେ : ଏଇ ଆଟାଚି କେସ୍‌ରେ ଅଫିସ୍‌ର ଦରକାରୀ କାଗଜପତ୍ର ଅଛି ବୋଧହୁଏ । ଦିଅ । ମୁଁ ଚେୟରରେ ବସି

ଦେଖୁଛି । ତମେ କାମଦାମ ଶେଷ କରି ଶୀଘ୍ର ଚେୟରକୁ ଆସ । ଅନେକ ଜରୁରୀ କାମ ଅଛି ।

ଧୀରାଜ ମେହେରା ରାଜେଶ ହାତରୁ ଆଟାଚି କେସ୍‌ଟି କାଢ଼ିନେଇ ଧୀରେ ଧୀରେ ଶିଡ଼ିରେ ଓହ୍ଲାଇ ଗଲେ ।

ରାଜେଶର ବାକ୍‌ଶକ୍ତି ରୁଦ୍ଧ ହୋଇ ଯାଇଥିଲା ।

ସେ ଚଳତ୍‌ଶକ୍ତି ବି ହରାଇଥିଲା ।

+ + +

ମୃଗାଙ୍କ ଚୌଧୁରୀ ଅଫିସ୍‌ରେ ପ୍ରବେଶ କରି ଦେଖିଲେ, ସବ୍‌ଇନିସ୍‌ପେକ୍ଟର ରଣଜିତ୍ ହାଲଦାର ତାଙ୍କ ପାଇଁ ଅପେକ୍ଷା କରି ବସି ରହିଛନ୍ତି ।

: ମିଷ୍ଟର ହାଲଦାର ! ଆପଣ ଏତେ ସକାଳୁ ? କିଛି ଶୁଭ ସମ୍ବାଦ ଅଛି ନିଶ୍ଚୟ ।

: ଅଛି ସାର୍ । ସ୍ୱର୍ଣ୍ଣମୟୂରୀର ଶିଳ୍ପୀକୁ ମୁଁ ଖୋଜି ପାଇଛି ।

: ଗୁଡ୍ । ତାକୁ ସାଙ୍ଗରେ ଆଣିଛନ୍ତି ?

: ଇଏସ୍ ସାର୍ । ବାହାରେ ସେ ଅପେକ୍ଷା କରିଛି । କିନ୍ତୁ ସାର୍, ସେ ଲୋକଟି କହୁଚି ଗୋଟାଏ ନୁହେଁ, ଦୁଇଟି ନକଲ ସ୍ୱର୍ଣ୍ଣମୟୂରୀ ସେ ଗଢ଼ିଥିଲା ।

: ଦୁଇଟି ଗଢ଼ିଥିଲା ? ମୃଗାଙ୍କ ଚୌଧୁରୀଙ୍କ କଣ୍ଠରେ ବିସ୍ମୟ ଫୁଟି ଉଠିଲା ।

: ସେଇଆ ସେ କହୁଚି ସାର୍ । ମୁଁ ତାକୁ ଡାକି ଆଣୁଛି, ଆପଣ ତା' ମୁହଁରୁ ସବୁ ଶୁଣିବେ ।

ରଣଜିତ୍ ହାଲଦାର ବାହାରକୁ ବାହାରିଗଲେ ଏବଂ କିଛି ସମୟ ପରେ ଜଣେ ମଧ୍ୟବୟସ୍କ ଲୋକକୁ ଆଣି ଘର ଭିତରେ ହାଜିର୍ କରାଇଲେ ।

ଲୋକଟି ଘର ଭିତରେ ପଶି ସାଷ୍ଟାଙ୍ଗ ପ୍ରଣିପାତ ଜଣାଇ ହାତ ଯୋଡ଼ି ଦୋଷୀ ଆସାମୀ ପରି ଠିଆ ହେଲା ।

ମୃଗାଙ୍କ ଚୌଧୁରୀ ଲୋକଟିର ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଥରେ ଅନେଇ ସାରି କହିଲେ : ହୁଁ, ତୁମେ ତା'ହେଲେ ସ୍ୱର୍ଣ୍ଣମୟୂରୀ ଗଠନ କରିଥିଲ ?

: କରିଥିଲି ଆଜ୍ଞା । ଲୋକଟି ବିନୀତ କଣ୍ଠରେ କହିଲା ।

: ତୁମ ନାଁ କ'ଣ ? ମୃଗାଙ୍କ ଚୌଧୁରୀ ପଚାରିଲେ ।

: ଆଜ୍ଞା ମୋ ନାଁ ମାଣିକ ଚାନ୍ଦ ଜରିଆ, ବାପା ନାଁ ରତନଚାନ୍ଦ ଜରିଆ । ଆଦି ନିବାସ ଢାକା ।

: ତମେ ଏଇ ଲାଇନ୍‌ରେ କେତେବର୍ଷ ହେବ ଅଛ ?

: ଆଜ୍ଞା ଆମର ବଂଶ ପରମ୍ପରା କ୍ରମେ ଏଇ କାମ । ଜରିକାମ ମାନେ ଜୁଏଲାରୀ ନିର୍ମାଣ କାମରେ ଆମ ବଂଶର ଯଥେଷ୍ଟ ସୁଖ୍ୟାତି ଥିଲା । ସେଇ ବଂଶର ଆଜ୍ଞା ମୁଁ ଶେଷ ବଂଶଧର ।

: ହୁଁ, ତମେ ଜାଣିଥିଲ ଯେ ତମେ ଯେଉଁ ସ୍ୱର୍ଣ୍ଣମୟୂରୀ ନିର୍ମାଣ କରୁଛ, ତାହା ନକଲ ?

: ଆଜ୍ଞା, ପିତଳ ଉପରେ ସୁନା ପାଣି ଦେଇ, ଅସଲି ଜହରତ ଜାଗାରେ ନକଲି ପଥର ଲଗାଇ ମୁଁ ତିଆରି କରିଥିଲି ଯେତେବେଳେ ମୁଁ ଜାଣିଥିଲି ଏହା ନକଲ କରୁଛି ।

: କେଇଟି ନକଲ ସ୍ୱର୍ଣ୍ଣମୟୂରୀ ଗଢ଼ିଥିଲ ?

: ଦୁଇଟି ଆଜ୍ଞା ।

: ଦୁଇଟି ଗଢ଼ିବାକୁ ତମକୁ କେତେ ସମୟ ଲାଗିଥିଲା ?

: ଚାରିମାସ ଆଜ୍ଞା ।

: ଆଉ ତମର ସହଯୋଗୀ ଥିଲେ ?

: ନା, ମୁଁ ଏକା ନିଜ ହାତରେ ଗଢ଼ିଥିଲି ।

: ଏ ଦୁଇଟି ସ୍ୱର୍ଣ୍ଣମୟୂରୀ ଗଠନ କରି କେତେ ପାରିଶ୍ରମିକ ପାଇଥିଲ ?

: ପାଞ୍ଚ ହଜାର ଟଙ୍କା ।

: ହୁଁ । ତମେ ଜାଣ ନିଶ୍ଚୟ ତମେ ଯାହା କରିଛ, ଆଇନ ବିରୋଧୀ କାମ କରିଛ ।

: ଆଜ୍ଞା ।

: ଆମେ ଇଚ୍ଛା କଲେ ତମକୁ ଏଇକ୍ଷିଣା ଆରେଷ୍ଟ୍ କରି ଜେଲକୁ ପଠାଇ ପାରୁ ।

: ଆଜ୍ଞା ।

: ଚୁପ୍ କର । ମୃଗାଙ୍କ ଚୌଧୁରୀ ଗର୍ଜି ଉଠିଲେ । ସବୁ ଜାଣି ଜାଣି ତମେ ଅନ୍ୟାୟ କାମ କଲ କାହିଁକି ?

: ପେଟ ପାଇଁ ଆଜ୍ଞା । ଖାଇବାକୁ ନ ପାଇ ପିଲାଛୁଆ ଗଡ଼ି ଯାଉଥିଲେ । ଏପରି ଏକ ପ୍ରଲୋଭନ ମୁଁ ଏଡ଼ାଇ ପାରିଲି ନାହିଁ ଆଜ୍ଞା ।

: ବେଶ୍ କରିଛ । ଏଇକ୍ଷିଣା ପିଲାଛୁଆଙ୍କୁ କିମିତି ବଂଚେଇବ ? ଆଇନ ତ ତମକୁ ଦୟା କରିବ ନାହିଁ ?

: ମୁଁ ଅତି ଗରିବ ଆଜ୍ଞା । ପିଲାଛୁଆ ପାଞ୍ଚୋଟି । ନିତି ଆଣିଲେ ନିତି ଖାଉ । ସମସ୍ତେ ମୋରି ଉପରେ ନିର୍ଭର କରନ୍ତି ଆଜ୍ଞା ।

: ମୁଁ ତ ଆଉ ଭଗବାନ ନୁହେଁ ମାଣିକଚାନ୍ଦ । ମୁଁ ତୁମକୁ ବଂଚେଇ ପାରିବି ନାହିଁ । ତେବେ ତମେ ଯଦି ସବୁ ସତକଥା କୁହ, ଆମକୁ ସାହାଯ୍ୟ କର, ତେବେ ପୋଲିସ୍‌ର ପକ୍ଷ ତୁମକୁ କରିଦେବି । ତମେ ଜେଲ୍ ଯିବାରୁ ରକ୍ଷା ପାଇଯିବ ।

: ମୁଁ ମିଛ କଥା କହିବି ନାହିଁ ଆଜ୍ଞା । ମୋତେ ରକ୍ଷା କରନ୍ତୁ ।

: ବେଶ୍, ଏଥର କୁହ, ତମଠାରୁ କିଏ ଏହି ନକଲ ସ୍ୱର୍ଣ୍ଣମୟୂରୀ ତିଆରି କରାଇଥିଲେ ?

ମାଣିକଚାନ୍ଦ ଜରିଆ ନୀରବରେ କିଛି ସମୟ ଠିଆ ହୋଇ ହାତ ମଳି ମଳି କହିଲା : ସେ ଲୋକଟିର ନାଁ, ଠିକଣା ମୁଁ କିଛି ଜାଣି ନାହିଁ ଆଜ୍ଞା । ଆପଣ ମୋତେ ବିଶ୍ୱାସ କରନ୍ତୁ ।

: ଚୁପ୍‌କର, ମିଥ୍ୟାବାଦୀ, ସଇତାନ ।

: ଆଜ୍ଞା, ମୁଁ ମିଛ କହୁ ନାହିଁ । ଯେଉଁ ନିୟମ ଦେବେ ସେ ନିୟମ ପକାଇ କହିବି । ସେ ମୋତେ ନେଇ କୋଉଠି ଗୋଟାଏ ବନ୍ଦ ଘର ଭିତରେ ବନ୍ଦୀ କରି ସ୍ୱର୍ଣ୍ଣମୟୂରୀ ତିଆରି କରାଇଥିଲା । ନାଁ ଠିକଣା ଜାଣିବାର ସୁଯୋଗ ମୁଁ ପାଇ ନଥିଲି ।

: ହୁଁ, ତା'ହେଲେ ମୁଁ ତୁମକୁ ବଂଚେଇ ପାରିଲି ନାହିଁ ମାଣିକଚାନ୍ଦ । ତୁମେ ଯଦି ସେଇ ଲୋକଟାକୁ ଆମକୁ ଚିହ୍ନେଇ ଦେଇ ପାରିଥାଆନ୍ତ, ଅଥବା ତା'ର ଠିକଣା

ଦେଇପାରିଥାଆନ୍ତ : ତା'ହେଲେ ମୁଁ ତୁମ ପାଇଁ ଚେଷ୍ଟା କରିଥାଆନ୍ତି । ମିଷ୍ଟର ହାଲ୍‌ଦାର୍, ୟାକୁ ଲକ୍‌ଅପ୍‌କୁ ପଠାଇ ଦିଅନ୍ତୁ । ମୃଗାଙ୍କ ଚୌଧୁରୀ ଗମ୍ଭୀର କଣ୍ଠରେ କହିଲେ ।

ମାଣିକ ଜରିଆ କଣ୍ଠରେ କାତରତା ଫୁଟାଇ ହାତଯୋଡ଼ି କହିଲା : ଆଜ୍ଞା, ଲୋକଟାକୁ ମୁଁ ଚିହ୍ନିଚି । ଦେଖିଲେ ଚିହ୍ନି ପାରିବି ।

ମୃଗାଙ୍କ ଚୌଧୁରୀ ସେହିପରି ଗମ୍ଭୀର କଣ୍ଠରେ କହିଲେ : ମୁଁ ନିରୁପାୟ ମାଣିକ ଚାନ୍ଦ । କଲିକତାର ଏହି ଲକ୍ଷ ଲକ୍ଷ ଲୋକଙ୍କୁ ଚିହ୍ନଟ କରିବା ପାଇଁ ତମ ପାଖକୁ ଧରି ଆଣିବା ସମ୍ଭବ ହେବ ନାହିଁ । ତେଣୁ ତମ କପାଳରେ ଅଶେଷ ନିର୍ଯାତନା ଅଛି ମାଣିକ ଚାନ୍ଦ । ତମର ଆଉ ନିସ୍ତାର ନାହିଁ । ପାର ଯଦି ସେହି ଲୋକଟି ପାଖକୁ ଆମକୁ ନେଇଚାଲ, ଅଥବା ଦୂରରୁ ଥାଇ ତା'ର ରୂପ ଆମକୁ ଦେଖାଇ ଦିଅ । ତା'ହେଲେ ତମର ମୁକ୍ତି ପାଇଁ ମୁଁ ଚେଷ୍ଟା କରିବି ।

ମାଣିକ ଜରିଆ ମୁହଁରେ ହତାଶାର ଚିହ୍ନ ଫୁଟି ଉଠିଥିଲା । ସେ କିଛି ସମୟ ନୀରବରେ ଠିଆହୋଇ ହଠାତ୍ ଚିତ୍କାର କରି ଉଠିଲା : ମୁଁ ସେ ଲୋକଟାର ରୂପ ଚିହ୍ନଟ କରାଇ ଦେଇପାରିବି ଆଜ୍ଞା । ଲୋକଟାର ମୁହଁ ଏବେ ବି ମୋର ମନେଅଛି । ଜଳଜଳ ହୋଇ ଲୋକଟା ମୋ ଆଖି ଆଗରେ ଭାସି ଉଠୁଛି ।

: ତମ ଆଖି ଆଗରେ ଭାସି ଉଠିଲେ ଆମର ତ କିଛି ଲାଭ ନାହିଁ ମାଣିକଚାନ୍ଦ । ଆମ ପାଖରେ ଏପରି କିଛି ଏକ୍ସରେ ଯନ୍ତ୍ର ନାହିଁ, ଯାହା ସାହାଯ୍ୟରେ ତମ ଆଖି ଭିତରୁ ଆମେ ସେହି ଲୋକଟାର ରୂପ ଟାଣି ଆଣିପାରିବୁ ।

: ଅଛି ଆଜ୍ଞା ଅଛି । ମୋ ପାଖରେ ଅଛି । ମୋତେ ଖଣ୍ଡେ କାଗଜ ଆଉ ଗୋଟାଏ ପେନ୍‌ସିଲ୍ ଦିଅନ୍ତୁ । ଅଧଘଣ୍ଟା ସମୟ ଦିଅନ୍ତୁ । ମୁଁ ସେ ଲୋକଟାର ରୂପ ଆଙ୍କି ଦେଇ ପାରିବି ଆଜ୍ଞା । ପାରିବି, ପାରିବି । ମାଣିକଚାନ୍ଦ ଜରିଆର ଆଖିରୁ ଯେପରି ବିଜୟର ଦୀପ୍ତି ଝରି ପଡୁଥିଲା ।

ମୃଗାଙ୍କ ଚୌଧୁରୀ କହିଲେ : ମିଷ୍ଟର ହାଲ୍‌ଦାର, ମାଣିକକୁ ଆପଣଙ୍କ ସିଟ୍‌କୁ ନେଇଯାଆନ୍ତୁ । କାଗଜ, ରଙ୍ଗ, ଯାହା ସେ ମାଗୁଚି ତାକୁ ସଂଗ୍ରହ କରି ଦିଅନ୍ତୁ । ମାଣିକ ଶିଳ୍ପୀ ଜାତି । ତେଣୁ ତା' ପକ୍ଷରେ ସେଇ ଲୋକଟିର ରୂପ ମନେ ପକାଇ ଆଙ୍କି ଦେବା ଅସମ୍ଭବ ହେବ ନାହିଁ । ଆପଣ ଶୀଘ୍ର ଯାଆନ୍ତୁ । ଡେରି କଲେ ମାଣିକର ଭାବ ନଷ୍ଟ ହୋଇଯାଇପାରେ ।

ରଣଜିତ୍ ହାଲଦାର ମାଣିକଚାନ୍ଦ ଜରିଆକୁ ସଂଗରେ ନେଇ ଘରୁ ବାହାରି ଗଲେ ।

ମୃଗାଙ୍କ ଚୌଧୁରୀ ଆଖି ବୁଜି ଚିନ୍ତା କରିବାକୁ ଲାଗିଲେ । ସେ ଯେପରି ବିସ୍ତାରିତ ଭାବରେ ଜାଲ ପକାଇ ବସିଛନ୍ତି, ସଂପୂର୍ଣ୍ଣ ଜାଲ ଟାଣି ଆଣିଲା ବେଳକୁ, ଗଭୀର ଜଳର ମାଛମାନେ ଯେ ଧୀରେ ଧୀରେ ଶୁଖିଲାରେ ଆସି ପଡ଼ିବେ ସେ ଧାରଣା ତାଙ୍କର କ୍ରମଶଃ ଦୃଢ଼ ହେଉଥିଲା ।

କବାଟ ଖୋଲିବାର ଶୁଣି ମୃଗାଙ୍କ ଚୌଧୁରୀ ଆଖି ଖୋଲି ଚାହିଁଲେ । ସାଜାଦ୍ ଘର ଭିତରେ ପ୍ରବେଶ କରୁଛନ୍ତି । ମୁହଁରେ ତାଙ୍କର ବିଚଳିତ ଭାବ ।

: ସାର୍ ! ସାଜାଦ୍ ସାଲ୍ୟୁଟ ବଜାଇ କ'ଣ କହିବାକୁ ଯାଇ ଅଟକି ଗଲା ।

ମୃଗାଙ୍କ ଚୌଧୁରୀ ଉତ୍ସାହିତ ହୋଇ କହିଲେ : ନିଶ୍ଚୟ କିଛି ଶୁଭ ସଂବାଦ ଆପଣ ଆଣିଛନ୍ତି ମିଷ୍ଟର ସାଜାଦ୍ । କିନ୍ତୁ ଆପଣ ଏପରି ବିବ୍ରତ ମନେହେଉଛନ୍ତି କାହିଁକି ?

: ସେ ଅନେକ କଥା ସାର୍ । ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀ କିଛି ଦେଇଛନ୍ତି ?

: ନା ତ ! ଘଟଣା କ'ଣ ?

: ସେ ଆଉ ଏକ ରହସ୍ୟର ସନ୍ଧାନରେ ବାହାରି ଯାଇଛନ୍ତି । ସମ୍ଭବତଃ ଖୁବ୍ ଶୀଘ୍ର ତାଙ୍କ ପାଖରୁ ମଧ୍ୟ ସାଫଲ୍ୟର ସଂବାଦ ଶୀଘ୍ର ଆସି ପହଞ୍ଚିବ । ମୁଁ ବି ଏକ ସାଫଲ୍ୟର ସଂବାଦ ବହନ କରି ଆଣିଛି ସାର୍ ।

ସାଜାଦ୍ ପକେଟରୁ ଗୋଟିଏ ପଦାର୍ଥ ବାହାର କରି ମୃଗାଙ୍କ ଚୌଧୁରୀଙ୍କ ହାତକୁ ବଢ଼ାଇ ଦେଲା ।

: ଏଇଟା ଯେ ଗୋଟାଏ ଟେପ୍ । କ'ଣ ଅଛି ଯା ଭିତରେ ?

: ଆପଣ ସେଇଟା ଟେପ୍ ରେକର୍ଡ଼ରେ ବଜାଇ ଶୁଣନ୍ତୁ । ସବୁ ରହସ୍ୟର ସୂତ୍ର ସେଥିରେ ରେକର୍ଡ଼ ହୋଇରହିଛି ।

: ଏଇଟିକୁ କେଉଁଠୁ ପାଇଲ ?

: ଆଶା ମେହେରାଙ୍କ ବେଡ୍ ରୁମ୍‌ରୁ । ସେ ଆଙ୍କା ରୀତିମତ ଗୋଟାଏ ରହସ୍ୟ ଉପନ୍ୟାସ । ସେକଥା ଆଗ ଶୁଣିବେ ନା ଟେପ୍ ବଜେଇ ଆଗ ଶୁଣିବେ ।

ମୃଗାଙ୍କ ଚୌଧୁରୀ ଗୋଟିଏ କନେଷ୍ଟବଲକୁ ଡାକି କହିଲେ, ଷ୍ଟୋରରୁ ଟେପ୍‌ରେକର୍ଡ଼ରଟିଏ ଆଣିବା ପାଇଁ । ସାଜାଦ୍ ଆଡ଼େ ଅନାଇ କହିଲେ : ଆପଣ କୁହନ୍ତୁ ଆପଣଙ୍କ ରହସ୍ୟ ଉପନ୍ୟାସର କାହାଣୀ ।

ସାଜାଦ୍ କହିଲେ : କାଲି ରାତିରେ ସାର୍ । ରାତି ସେତେବେଳକୁ ସାଢ଼େ ନଅଟା । ମୁଁ ଖବର ପାଇଲି ଧୀରାଜ ମେହେରା ବାହାରୁ ଫେରିଛନ୍ତି । ମୁଁ ସଂଗେ ସଂଗେ ବାହାରିଲି ଧୀରାଜ ମେହେରାଙ୍କ ଘରକୁ । ବାଟରେ ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀ ଦେଖାହେଲେ । ସେ ମଧ୍ୟ ମୋ ସହିତ ଯୋଗ ଦେଲେ । ଆମେ ଧୀରାଜ ମେହେରାଙ୍କ ଘରେ ପହଞ୍ଚିଲୁ । ଆମର ଇନ୍‌ଫରମର ଆମକୁ ଧୀରାଜ ମେହେରାଙ୍କର ଅବସ୍ଥାନ ସମ୍ବନ୍ଧରେ ସବୁ କଥା ଜଣାଇଦେଲା ଏବଂ ସେ ତାଙ୍କର ଚେୟରରେ ବସି ବସି ସିଗ୍ରେଟ୍ ଟାଣୁଥିବା କଥା କହିଲା ।

ଦୂରରୁ, ଆମେ ଗୋଟାଏ ଖିଡ଼ିକି ବାଟେ ଚାହିଁ ଦେଖିଲୁ । ମିଷ୍ଟର ମେହେରା ଆରାମ ଚେଆର୍ ଉପରେ ଅଧା ଶୁଆ ହୋଇ ସିଗ୍ରେଟ୍ ଟାଣୁଛନ୍ତି । ଆମେ ଅନେକ ବେଳ ଯାଏ ସେଇଆଡ଼େ ଅନେଇ ରହିଥିଲୁ ।

ପୁଣି ଇନ୍‌ଫର୍ମର ଆସି ଖବର ଦେଲା ଯେ, ଆଶା ମେହେରାଙ୍କ ଶୋଇବା ଘର ବର୍ତ୍ତମାନ ଖାଲି ।

ଆମେ ସଂଗେ ସଂଗେ ଛୁଟିଲୁ । କାରଣ ଆଶା ମେହେରାଙ୍କର ଶୋଇବା ଘର ଥରେ ପରୀକ୍ଷା କରି ଦେଖିବା ପାଇଁ ଆମେ ସୁଯୋଗ ପାଉ ନଥିଲୁ । ଆଶା ମେହେରା ବାଥ୍‌ରୁମ୍‌କୁ ଯାଇଥିଲେ ଏବଂ ଇନ୍‌ଫର୍ମରର ହିସାବ ଅନୁସାରେ ଘଣ୍ଟାଏ ପର୍ଯ୍ୟନ୍ତ ସେ ଭିତରେ ରହିବେ ।

ଆମେ ଆଶା ମେହେରାଙ୍କ ବେଡ୍‌ରୁମ୍ ଭିତରେ ପଶି ଆଲମାରୀ ଖୋଲି, ଟେବୁଲ ଡ୍ରୟାର ଟାଣି ଦେଖୁଥିଲୁ । ହଠାତ୍ 'ଟକ୍' କରି ଗୋଟାଏ ଶବ୍ଦ ହେଲା ଏବଂ ଟେବୁଲ ଉପରେ ଥୁଆ ହୋଇଥିବା ଟେପ୍ ରେକର୍ଡ଼ରଟି ଚାଲିବାକୁ ଆରମ୍ଭ କରିଦେଲା । ଆମେ ସ୍ତବ୍ଧ ହୋଇ ସେଇ ଆଡ଼େ ଅନାଇ ରହିଲୁ । ଘଟଣା କ'ଣ ?

ଟେପ୍ ରେକର୍ଡ଼ର ଫିତା କିନ୍ତୁ ଟେପ୍ କରି ଚାଲିଥିଲା । କାହା କଥା, କିଏ ଟେପ୍ କରୁଛି ? ଟେପ୍ ରେକର୍ଡ଼ରଟାକୁ ଚଲାଇଲା ବା କିଏ ?

ଟେପ୍ ରେକର୍ଡ଼ର ଚାଲିଥିଲା ।

ଆମେ ଅପଲକ ନୟନରେ କିଛି ସମୟ ସେଇଆଡ଼େ ଅନାଇ ଠିଆ ହୋଇଥିଲୁ । ତା'ପରେ ଆମେ ଖୋଜିବାକୁ ବାହାରି ଗଲୁ, କାହା କଥା ଏଠାରେ ଟେପ୍ ହେଉଛି ଦେଖିବା ପାଇଁ ।

ଧୀରାଜ ମେହେରାଙ୍କର ବିରାଟ କୋଠାଟା ଶୂନ୍‌ଶାନ୍ । କିଏ କେଉଁଠି ନାହାନ୍ତି । ଆମେ ସମ୍ଭାବିତ ଅନେକ ରୁମ୍‌କୁ ଚାହିଁ ଦେଖିଲୁ । ସବୁଠି ଅନ୍ଧାର । ଖାଲି ଦୋତାଲାରେ ଚାକରବାକରମାନଙ୍କର ପାଟି ଶୁଭୁଛି ।

ପୁଣି ଇନ୍‌ଫର୍ମରର ଆସି ଆମ ପାଖରେ ପହଞ୍ଚିଲା । ସେ ଆମକୁ ନେଇଗଲା ଧୀରାଜ ମେହେରାଙ୍କ ଚେମ୍ବର ଆଡ଼କୁ । ଆମେ ସେହିପରି ଏକ ଆଡୁଆଳ ଜାଗାରେ ଠିଆ ହୋଇ ରହିଲୁ । ଧୀରାଜ ମେହେରା ଉତ୍ତେଜିତ । ତାଙ୍କ ମୁହଁରେ ଉତ୍ତେଜନାର ଭାବ । ସାମ୍ନାରେ ତାଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ରାଜେଶ । ଧୀରାଜ ମେହେରା ହାତ ହଲେଇ କ'ଣ କହୁଛନ୍ତି । କେତେବେଳେ ଠିଆ ହୋଇ ଆଙ୍ଗୁଳି ହଲାଉଛନ୍ତି । କାଚ ଝିଡ଼ିକି ବନ୍ଦ ଥିବା ହେତୁ, ଭିତରର କଥା ଆମେ ଶୁଣିପାରୁ ନଥିଲୁ । କିନ୍ତୁ ଧୀରାଜ ମେହେରାଙ୍କ ଉତ୍ତେଜିତ ଭାବ ଦେଖି ପାରୁଥିଲୁ ।

ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀଙ୍କୁ ମୁଁ ସେଇଠି ଠିଆ କରାଇ ଧାଇଁଗଲି ଆଶା ମେହେରାଙ୍କ ଘରକୁ । ଏଠାରୁ ଆଶା ମେହେରାଙ୍କ ବେଡ୍‌ରୁମ୍ ଅନେକ ଦୂରରେ । ପ୍ରାୟ ୭/୮ଟା ରୁମ୍ ଛାଡ଼ି । ଗୋଟାଏ କୋଣକୁ । ଆଶା ମେହେରା ବାଥ୍‌ରୁମ୍‌ରୁ ଫେରି ନଥିଲେ । ଟେପ୍ ରେକର୍ଡ଼ର କିନ୍ତୁ ରେକର୍ଡ଼ କରି ଚାଲିଥିଲା । କାହା କଥା ? ଧୀରାଜ ମେହେରାଙ୍କ କଥା ?

ମୁଁ ପୁଣି ଫେରି ଆସିଲି ମିଷ୍ଟର ଚକ୍ରବର୍ତ୍ତୀଙ୍କ ପାଖକୁ । ସେ ସେଇଠି ଠିଆ ହୋଇ ଧୀରାଜ ମେହେରାଙ୍କ ଚେମ୍ବରକୁ ଚାହିଁଥିଲେ । ଧୀରାଜ ମେହେରା ଏଥର ଶାନ୍ତ ହେଲା ପରି ଜଣା ଯାଉଥିଲେ । ତାଙ୍କ ମୁହଁରେ କ୍ରୂର ହସ ଫୁଟି ଉଠିଥିଲା । ସେ ହାତ ହଲାଇ ରାଜେଶକୁ କ'ଣ କହୁଥିଲେ ।

ଆହୁରି କିଛି ସମୟ କଥାବାର୍ତ୍ତା କରିବା ପରେ ବୋଧହୁଏ ରାଜେଶର ଉତ୍ତରରେ ସେ ଉତ୍‌କ୍ଷିପ୍ତ ହୋଇ ଉଠିଲେ । ହାତକୁ ମୁଠା ମୁଠା କରି ରାଜେଶ ମୁହଁ ପାଖକୁ ଆଗେଇ ଆସି ଶକ୍ତ ଏକ ଘୁଷି ମାରିବାକୁ ଯାଉଥିଲେ, ପୁଣି ଆତ୍ମସମ୍ବରଣ କରି ରାଜେଶର କଲର ଧରି ଟାଣି ଉଠାଇଲେ । ତା'ପରେ କ'ଣ କହି ଧକ୍କା ମାରି ଘରୁ ବାହାର କରିଦେଲେ ।

ରାଜେଶ ବାହାରକୁ ବାହାରି ଆସିଲା ।

ମୁଁ ମିଷ୍ଟର ଚକ୍ରବର୍ତ୍ତୀଙ୍କୁ ରାଜେଶକୁ ଅନୁସରଣ କରିବା ପାଇଁ କହି, ପୁଣି ଦଉଡ଼ିଲି ଆଶା ମେହେରାଙ୍କ ଘରକୁ । ମୋର ଦୃଢ଼ ଧାରଣା ଜନ୍ମି ଯାଇଥିଲା ଯେ, ଧୀରାଜ ମେହେରାଙ୍କ ଚେମ୍ବରର ସମସ୍ତ କଥୋପକଥନ ଆଶା ମେହେରାଙ୍କ ଘରେ ରେକର୍ଡ଼ ହେଉଛି ।

ମୁଁ ଛୁଟି ଯାଇ ଦେଖିଲି ଏଥର ଆଶା ମେହେରା ବାଥ୍‌ରୁମ୍‌ରୁ ବାହାରିଛନ୍ତି ଏବଂ ଟେପ୍ ରେକର୍ଡ଼ଟି ପାଖରେ ଠିଆ ହୋଇ, କ'ଣ ଟିକେ ଚିନ୍ତା କରି ପୁଣି ଟେପ୍ ରେକର୍ଡ଼ରୁ ଟେପ୍‌ଟି ବାହାର କରୁଛନ୍ତି ।

ମୁଁ ଆଢୁଆଳରେ ଠିଆ ହୋଇ ସବୁ ଲକ୍ଷ୍ୟ କଲି ।

ଆଶା ମେହେରା ଟେପ୍‌ଟି ଖୋଲି ତାଙ୍କର ଭ୍ୟାନିଟ୍ ବ୍ୟାଗ୍ ଭିତରେ ଭରିଲେ । ଆଇନା ସାମ୍ନାରେ ଠିଆ ହୋଇ ପ୍ରସାଧନ କଲେ । ଅନେକ ସମୟ ଯାଏ ତାଙ୍କର ପ୍ରସାଧନ ଚାଲିଲା । ତା'ପରେ ଧୀରେ ଧୀରେ ଘରୁ ବାହାରି, ଭ୍ୟାନିଟି ବ୍ୟାଗ୍‌ଟି ଉଠାଇ ଘରୁ ବାହାରି ଆସିଲେ ।

ମୁଁ ତାଙ୍କ ପଛେ ପଛେ ଚାଲିଲି ।

ମୋ ମନରେ ଧାରଣା ହୋଇଥିଲା ଯେ, ଆଶା ମେହେରା ଏଇ ଟେପ୍‌ଟି ହସ୍ତାନ୍ତର କରିବାକୁ ନେଉଛନ୍ତି ଏବଂ ଟେପ୍‌ରେ କୌଣସି ଗୁପ୍ତ ତଥ୍ୟ ରେକର୍ଡ଼ ହୋଇଛି । ମୁଁ ଇନ୍‌ଫର୍ମରକୁ ଧୀରାଜ ମେହେରାଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ କହି, ଆଶା ମେହେରାଙ୍କ ପିଛା ଧରିଲି ।

ଆଶା ମେହେରା ମେନ୍‌ରୋଡ଼ ଉପରକୁ ଆସି ଅପେକ୍ଷା କଲେ । ମୋର ଧାରଣା ହୋଇଥିଲା ସେ ଟ୍ୟାକ୍‌ସି ପାଇଁ ଅପେକ୍ଷା କରିଛନ୍ତି । ଯଦି ଟ୍ୟାକ୍‌ସିରେ ଉଠି ସେ କୁଆଡ଼େ ଚାଲିଯାଆନ୍ତି...

ମୁଁ ପଛକୁ ଫେରିଯାଇ ଗୋଟାଏ ଦ୍ରୁତଗାମୀ ଟ୍ୟାକ୍‌ସିକୁ ଅଟକାଇଲି । ମୋର ପରିଚୟ ଦେଇ ଟ୍ୟାକ୍‌ସି ଚାଳକକୁ ମୋ ଉଦ୍ଦେଶ୍ୟ ବୁଝାଇ ସେଇ ଟ୍ୟାକ୍‌ସିରେ ଆଗରେ ବସି ମୁଁ ଆଗେଇ ଆସିଲି ଆଶା ମେହେରା ଅପେକ୍ଷା କରିଥିବା ଜାଗାକୁ । ସେ ହାତ ଦେଖାଇ ଟ୍ୟାକ୍‌ସି ଅଟକାଇଲେ । ମୁଁ ଟ୍ୟାକ୍‌ସି ଚାଳକର ସଙ୍ଗୀ ହିସାବରେ ଆଗରେ ବସି ରହିଲି । ଆଶା ମେହେରା ଟ୍ୟାକ୍‌ସିରେ ଉଠିଲେ ।

ଟ୍ୟାକ୍‌ସି ଚାଲିଲା ।

ଆଶା ମେହେରା ଗ୍ରେଟ୍‌ଇଷ୍ଟର୍ଣ୍ଣ ହୋଟେଲକୁ ଯିବା ପାଇଁ କହିଲେ ।

ଗ୍ରେଟ୍‌ଇଷ୍ଟର୍ଣ୍ଣ ହୋଟେଲ ଦୁଆରେ ଓହ୍ଲେଇ ଆଶା ମେହେରା ଟ୍ୟାକ୍‌ସି ଭଡ଼ା ମେଣ୍ଟେଇ ଉପରକୁ ଉଠିଗଲେ ।

ମୁଁ ବି ତାଙ୍କୁ ଅନୁସରଣ କଲି ।

ଆଶା ମେହେରା ଗୋଟିଏ କେବିନ୍‌ରେ ପଶିଲେ । ମୋର ବାହାରେ ଅପେକ୍ଷା କରିବା ଛଡ଼ା ଅନ୍ୟ ବାଟ ନଥିଲା ।

ଅନେକ ସମୟ ବାହାରେ ଅପେକ୍ଷା କରିବା ପରେ ମଧ ଆଶା ମେହେରା ଆଉ ବାହାରକୁ ବାହାରିଲେ ନାହିଁ । ଗୋଟିଏ ହୋଟେଲ ବୟ କିଛି ଖାଦ୍ୟ ସାମଗ୍ରୀ ଧରି ସେହି କେବିନ୍ ଭିତରକୁ ପଶିଲା । ସେ ଫେରି ଆସିବା ଯାଏ ମୁଁ ଅପେକ୍ଷା କଲି ।

ବୟଟିକୁ ପଚାରି ବୁଝିଲି, ଆଶା ମେହେରା ଆଜି ଆଉ କେବିନ୍ ଭିତରୁ ବାହାରିବେ ନାହିଁ । କାଲି ସକାଳ ଆଠଟା ଆଗରୁ ତାଙ୍କର ନିଦ୍ରାଭଙ୍ଗ ହେବ ନାହିଁ ।

ମୁଁ ବଡ଼ ସମସ୍ୟାରେ ପଡ଼ିଗଲି । ପରବର୍ତ୍ତୀ କର୍ତ୍ତବ୍ୟ ସମ୍ବନ୍ଧରେ ଚିନ୍ତା କରୁଛି, ଦେଖିଲି ଗୋଟିଏ ବିକୃତ ଚେହେରାର ଲୋକ ସେଇ କେବିନ୍ ଆଡ଼କୁ ଆଗେଇ ଆସୁଛି । ଲୋକଟାର ମୁହଁ ଫାଳେ ପୋଡ଼ି ଯାଇଛି, କପାଳରେ ଗୋଟାଏ ବିରାଟ କ୍ଷତଚିହ୍ନ । ଲୋକଟା ସିଧା ସଳଖ ସେଇ କେବିନ୍ ଭିତରକୁ ପଶିଗଲା ।

ମୁଁ ଦୂରରେ ଥାଇ ଲୋକଟାକୁ ଲକ୍ଷ୍ୟ କଲି ।

କିଛି ସମୟ ପରେ ବୟଟି ପୁଣି ଟ୍ରେ'ରେ ବିଦେଶୀ ପାନୀୟ ଧରି ଭିତରକୁ ପଶିଲା । ଫେରି ଆସିବା ପରେ ମୁଁ ତାକୁ ଲୋକଟି ସମ୍ବନ୍ଧରେ ପଚାରିଲି । ସେ ମୋତେ କିଛି ଉତ୍ତର ନ ଦେଇ ଚାଲିଯାଉଥିଲା । ମୋର ମନେହେଉଥିଲା, ନିଜର ପରିଚୟ ଦେଇ ତାକୁ ଧମକାଇବି । କିନ୍ତୁ କାଳେ ବିପରୀତ ଫଳ ଫଳିପାରେ ଭାବି ବୟଟିର ପଛେ ପଛେ ଅନେକ ବାଟ ଯାଏ ଗଲି ଏବଂ ଏକ ନିରୋଳା ଜାଗାରେ ପକେଟରୁ ଦଶଟଙ୍କା ବାହାର କରି ତା' ହାତରେ ଗୁଞ୍ଜି ଦେଲି ।

ସେ ହସିଲା । ହସି ହସି ମୋତେ ଆହୁରି ନିରୋଳାକୁ ଡାକିନେଇ କହିଲା : ଆପଣ କିଛି ବୁଝିପାରୁ ନାହାନ୍ତି ?

: ନା । ମୁଁ ସରଳ କଣ୍ଠରେ କହିଲି ।

: ଲୋକଟା ମେମ୍ ସାହେବଙ୍କର ଇଏ, ମାନେ... ବୟଟି ପୁଣି ହସିଲା ।

ମୁଁ କହିଲି : ଏଡ଼େ ସୁନ୍ଦର ମେମ୍ ସାହେବ ଏପରି ଏକ ବିଭତ୍ସ ଲୋକ ସହିତ ଏକା ଘରେ ରହିପାରୁଛନ୍ତି କିପରି ?

: ଅଭ୍ୟାସ ହୋଇଗଲେ ସବୁ ଚଳେ ହଜୁର । ତେବେ ମୁଁ ଶୁଣିଚି ମାନସିଂହ ସାହେବ, ସେଇ ଆଶା ମେମ୍ ସାହେବଙ୍କୁ ରକ୍ଷା କରିବାକୁ ଯାଇ ନିଜର ମୁହଁ ପୋଡ଼ିଛନ୍ତି, କପାଳରେ ହାତୁଡ଼ି ପାହାର ସହ୍ୟ କରିଛନ୍ତି ।

କିପରି ?

ବୟଟି ଏଣେତେଣେ ଅନେଇ କହିଲା : ସେ ଅନେକ କଥା ଆଜ୍ଞା, ମୁଁ ଶୁଣିଛି । ଆମ ଏଠିକା ପୁରୁଣା ଲୋକମାନେ କୁହନ୍ତି- ଆଶା ମେମ୍‌ସାହେବ କୁଆଡ଼େ କୋଉ ମେହେରା ସାହେବକୁ ବାହା ହୋଇଥିଲେ, କିନ୍ତୁ ସେ ଜାଣି ନଥିଲେ ଯେ, ଆଶା ମେମ୍ ସାହେବଙ୍କର ଜଣେ ପ୍ରେମିକ ଅଛନ୍ତି ।

ଆଶା ମେମ୍ ସାହେବ ବାହା ହୋଇ ସାରିବା ପରେ ମଧ୍ୟ ଏଇ ମାନସିଂହ ସାହେବ ତାଙ୍କ ଘରକୁ ଯିବା ଆସିବା କରୁଥିଲେ । ଦିନେ କୁଆଡ଼େ ମେହେରା ସାହେବ ସ୍ୱଚକ୍ଷୁରେ ଦୁହିଁଙ୍କୁ ଏକା ବିଛଣାରେ ଶୋଇଥିବାର ଦେଖି ପକାଇଥିଲେ ।

ମେହେରା ସାହେବ କୁଆଡ଼େ ଗୋଟାଏ ଏସିଡ୍ ବୋତଲ ଆଣି, ଆଶା ମେମ୍ ସାହେବ ଉପରେ ଢାଳି ଦେବାକୁ ଯାଇଥିଲେ । କିନ୍ତୁ ମାନସିଂହ ସାହେବ ଆଶା ମେମ୍ ସାହେବଙ୍କୁ ଟାଣି ନେଇଗଲେ । ଏସିଡ୍ ତାଙ୍କ ମୁହଁରେ ଢାଳି ହୋଇଗଲା ଆଉ ମେହେରା ସାହେବଙ୍କ ହାତୁଡ଼ି ପାହାର ମଧ୍ୟ ତାଙ୍କ କପାଳ କଣା କରି ଦେଇଥିଲା ।

: ଆଚ୍ଛା !

: ତା'ହେଲେ ଏଇ ମାନସିଂହ ସାହେବଟି କିଏ ? ମୁଁ ପଚାରିଲି ।

ବୟଟି କହିଲା : ସେ ଆପଣମାନଙ୍କ ପରି ଜଣେ ସାହେବ । ମଝିରେ ମଝିରେ ଏଠାକୁ ଆସନ୍ତି । ଆଶା ମେମ୍‌ସାହେବ ସାଂଗରେ ରାତି କଟାନ୍ତି, ପୁଣି ଫେରି ଯାଆନ୍ତି । ଆମେ ସବୁ ମୋଟା ଅଙ୍କର ବକ୍‌ସିସ୍ ପାଉ । ସେ କିଏ, କ'ଣ କରନ୍ତି, କୁଆଡୁ ଆସନ୍ତି, ସେସବୁ କଥା ଆମେ କିମିତି ଜାଣିବୁ ?

ବୟଟି ପୁଣି କହିଲା : ମୁଁ ଆସୁଚି ଆଜ୍ଞା । ମୋତେ ଯାଇ ଆଶା ମେମ୍‌ସାହେବଙ୍କ ଘରୁ ଖାଲି ପ୍ଲେଟ୍ ଇତ୍ୟାଦି ଉଠାଇ ଆଣିବାକୁ ହେବ ।

: ମାନସିଂହ ସାହେବ ଫେରିବେ କେତେବେଳେ ? ମୁଁ ପଚାରିଲି ।

: କାଲି ସକାଳ ଆଗରୁ ନୁହେଁ ।

ବୟଟି ଚାଲି ଯାଉଥିଲା । ସେ ଯିବା ଆଗରୁ ମୁଁ ତା' ହାତକୁ ଆଉ ପାଞ୍ଚୋଟି ଟଙ୍କା ବଢ଼େଇ ଦେଇ କହିଲି : ତମେ କାମ ସାରି ଆସ । ମୋର ଟିକେ ଆଶା ମେମ୍ ସାହେବଙ୍କ ସାଂଗରେ କାମ ଅଛି । ଦେଖା କରିବାକୁ ହେବ ।

ବୟଟି ହସିଲା । କହିଲା : ଆଜି ସେ ଆଶା ଛାଡ଼ନ୍ତୁ । କାଲି ସକାଳ ଆଠଟା ବେଳେ ଆସିବେ ଯଦି ମୁଁ ଚେଷ୍ଟା କରିବି ତାଙ୍କ ସହିତ ଦେଖା କରାଇ ଦେବାକୁ ।

: ଆଜି କୌଣସି ପ୍ରକାର ହେବ ନାହିଁ ?

: ଅସମ୍ଭବ । ଆଶା ମେମ୍‌ସାହେବ ଡ୍ରିଙ୍କ୍ କରି ୟା ଭିତରେ ଆଉଟ୍ ହୋଇ ସାରିଥିବେ । ସେ ପ୍ରକୃତିସ୍ଥ ହେଉ ହେଉ ପୁଣି କାଲି ସକାଳ ଆଠଟା । ତା' ଆଗରୁ ନୁହେଁ ।

: ଆଉ ତାଙ୍କର ମାନସିଂହ ସାହେବ ?

: ସେ ବି । ସେ ତ ଆଶା ମେମ୍ ସାହେବକୁ ପାଇଲେ... ବୟଟି ମୁହଁ ଲୁଚେଇ ହସିଲା । ... ଛି ଛି, ସେ ଲଜ୍ଜାର କଥା ଆଜ୍ଞା । ଆପଣଙ୍କ ଆଗରେ କହି ହେବ ନାହିଁ । ଆଶା ମେମ୍ ସାହେବଙ୍କ ଦେହ ଛାଡ଼ି ମାନସିଂହ ସାହେବ ମରିବାକୁ ବି ଯିବେ ନାହିଁ । ଲୋକଟା ଭାରି ଇଏ, ସେ ଆଶା ମେମ୍ ସାହେବକୁ ଏତେ ଭଲପାଏ ଯେ, ଏପରି ଭଲପାଇବା ମୁଁ ଆଉ କୋଉଠି ଦେଖି ନାହିଁ ।

: ତା'ହେଲେ ?

: ଆପଣ କାଲି ସକାଳ ଆଠଟା ବେଳକୁ ଆସନ୍ତୁ, ମୁଁ ନିଶ୍ଚୟ ଦେଖା କରେଇ ଦେବି ।

ବୟଟି ତା' କାମରେ ଚାଲିଗଲା ।

ଚାରିଆଡ଼କୁ ଚାହିଁ ଚାହିଁ ଧୀରେ ଧୀରେ ମୁଁ ତଳକୁ ଓହ୍ଲେଇ ଆସିଲି ।

ସେତେବେଳକୁ ରାତି ପ୍ରାୟ ଏଗାରଟା ବାଜି ଯାଇଥିଲା ।

ମୁଁ ତଳେ ଆସି ଅନେକ ବେଳଯାଏ ଅପେକ୍ଷା କଲି । ମୋର ଦୃଢ଼ ଧାରଣା ହୋଇଥିଲା ଯେ, ଆଶା ମେହେରାଙ୍କ ସହିତ ଏଇ ମାନସିଂହ ନାମଧାରୀ ଲୋକଟିର ସଂପର୍କ ଯାହା ହୋଇଥାଉ ନା କାହିଁକି ସେ ନିଶ୍ଚୟ ଆଶା ମେହେରା ଠାରୁ ସେଇ ଟେପ୍‌ଟି ନେବାକୁ ଆସିଛି । ଖାଲି ସେତିକି ନୁହେଁ, ମୋ ଆଖି ଆଗରେ ମିଷ୍ଟର ଶର୍ମାର ହତ୍ୟାକାଣ୍ଡ ଘଟଣା ଭାସି ଉଠିଲା । ମୁଁ ମନେ ମନେ ମାନସିଂହକୁ ଶର୍ମାର ହତ୍ୟାକାରୀ ହିସାବରେ କଳ୍ପନା କରି, ଚିନ୍ତା କରି ଚାଲିଲି ଆଶା ମେହେରା ସହିତ ମାନସିଂହର ଯେଉଁଠି ଏତେ ଆନ୍ତରିକତା, ତା'ହେଲେ ସେ ଆଶା ମେହେରାର ଫଟୋଟିକୁ କବଚ ଭିତରେ ବାନ୍ଧି ନିଜ ଗଳା-ହାର ନ କରିବ କାହିଁକି ? ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲ ତଳେ ଠିଆ ହୋଇ ମୁଁ ବିଜୟ ଆନନ୍ଦରେ ଉତ୍ତେଜିତ ହୋଇ ଉଠିଥିଲି ।

ଏ ସୁଯୋଗ ଆଉ ଛାଡ଼ିଲେ ଆସିବ ନାହିଁ ।

ମୁଁ ସ୍ଥିର କଲି ମାନସିଂହକୁ ଆଉ ହାତଛଡ଼ା କରିବା ଉଚିତ ହେବ ନାହିଁ । ତେଣୁ ଏ ଦାୟିତ୍ୱ ମୁଁ ନିଜେ ନେବି ଏବଂ ମାନସିଂହ ହୋଟେଲରୁ ବାହାରିବା ପର୍ଯ୍ୟନ୍ତ ମୁଁ ଏଇଠି ଅପେକ୍ଷା କରିବି ।

ରାସ୍ତାବିଟ୍‌ର କନେଷ୍ଟବଳକୁ ଡାକି ମୁଁ ଥାନାକୁ ଖବର ପଠାଇଲି ।

ଘଣ୍ଟାକ ପରେ ଦୁଇଜଣ ସଶସ୍ତ୍ର ପୋଲିସ୍ ସହ ଗୋଟିଏ ଭ୍ୟାନ୍ ଆସି ପହଞ୍ଚିଲା । ଗ୍ରେଟ୍ ଇଷ୍ଟର୍ଣ୍ଣ ହୋଟେଲର ଅନ୍ୟ ପାର୍ଶ୍ୱରେ ସେହି ଭ୍ୟାନ୍‌ରେ ମୁଁ ସମଗ୍ର ରାତି ଉଜାଗର ହୋଇ ମାନସିଂହର ପ୍ରତୀକ୍ଷା କଲି । କାଳେ ଯଦି ଆଶା ମେହେରା ହାତରୁ ସେଇ ମୂଲ୍ୟବାନ ଟେପ୍‌ଟି ନେଇ ମାନସିଂହ ଚମ୍ପଟ ଦିଏ । ଅବଶ୍ୟ ମୁଁ ଇଚ୍ଛା କରିଥିଲେ, ହୋଟେଲ ଭିତରେ ପଶି କ୍ୟାବିନ୍ ସର୍ଚ୍ଚ କରି ସେହି ଟେପ୍‌ଟି ସହ ମାନସିଂହକୁ ଆରେଷ୍ଟ କରି ଆଣିପାରିଥାଆନ୍ତି । କିନ୍ତୁ ତାଦ୍ୱାରା କାଳେ ମୋ ଉଦ୍ଦେଶ୍ୟ ସାଧନ ହୋଇ ନ ପାରିବ, ସେଇଥିପାଇଁ ମୁଁ ଘଣ୍ଟାକ ପରେ ଘଣ୍ଟା ମାନସିଂହକୁ ଅପେକ୍ଷା କରି ବସି ରହିଲି ।

ଶେଷରେ ମୋର ଉଦ୍ଦେଶ୍ୟ ସଫଳ ହେଲା ସାର୍ ।

ମାନସିଂହ ଆଜି ନଅଟା ବେଳେ ତଳକୁ ଓହ୍ଲାଇଲା ।

ଫୁଟ୍‌ପାଥ୍‌ରେ ଠିଆ ହୋଇ ସେ ବୋଧହୁଏ ଟ୍ୟାକ୍‌ସିକୁ ଅପେକ୍ଷା କରିଥିଲା । ମୁଁ ନେଇ ତା' ପାଖରେ ପୋଲିସ୍ ଭ୍ୟାନ୍‌ଟା ଲଗାଇ ଦେଲି ଏବଂ ସଂଗେ ସଂଗେ ଭ୍ୟାନ୍‌ରୁ ଓହ୍ଲେଇ ପଡ଼ି ମାନସିଂହକୁ ରିଭଲଭର ଦେଖାଇ ଉପରକୁ ହାତ ଉଠାଇବାକୁ କହିଲି ।

ସେ ବୋଧହୁଏ ଆକସ୍ମିକ ଭାବରେ ଏପରି ଏକ ଆକ୍ରମଣ ପାଇଁ ପ୍ରସ୍ତୁତ ନଥିଲା ।

ସେଇଠି, ସେଇ ଫୁଟ୍‌ପାଥ୍ ଉପରେ ପକେଟ ସର୍ଚ୍ଚ କରି, ମୋ ଇପ୍‌ସିତ ବସ୍ତୁ ଏଇ ଟେପ୍‌ଟିକୁ ପାଇଗଲି ।

ଉଦ୍ଦେଶ୍ୟ ମୋର ସଫଳ ହେଲା ।

ମାନସିଂହକୁ ଲକ୍‌ଅପ୍‌କୁ ପଠାଇ ଦେଇଛି । ବର୍ତ୍ତମାନ ଏଇ ଟେପ୍ ଉପରେ ଆମର ଭବିଷ୍ୟତ କର୍ମପନ୍ଥା ନିର୍ଭର କରୁଛି ।

ସାଜାଦ୍ ଯେପରି ଏକା ନିଃଶ୍ୱାସକରେ ସବୁ କଥା କହି ପକାଇ ନିଶ୍ଚିନ୍ତ ହେଲେ । ବିଜୟର ଦୀପ୍ତି ତାଙ୍କ ଦେହ ମୁହଁରେ ଫୁଟି ଉଠୁଥିଲା ।

ମୃଗାଙ୍କ ଚୌଧୁରୀ ସାଜାଦ୍‌ଙ୍କ କଥା ଶୁଣୁଥିଲେ । କନେଷ୍ଟବଳ ଟେପ୍ ରେକର୍ଡ଼ଟି ଅନେକ ବେଳୁ ଦେଇ ଯାଇଥିଲେ ବି ମୃଗାଙ୍କ ଚୌଧୁରୀ ସାଜାଦ୍‌ଙ୍କ କଥା ଶେଷ ହେବା ଯାଏ ଅପେକ୍ଷା କରିଥିଲେ । ପ୍ରକୃତରେ ଏହା ଏକ ରହସ୍ୟ-ଉପନ୍ୟାସର କାହାଣୀ ପରି । ଯେଉଁ ଆଶା ମେହେରା ଜଣେ ସମ୍ଭ୍ରାନ୍ତ ସମାଜପତିର କୁଳବଧୂ, ଅଥଚ ସେ ବିବାହ ପରେ ମଧ୍ୟ ମାନସିଂହ ପରି ଏକ ଖୁଣୀ ଆସାମୀ ସହିତ...

ପୁଣି ଦରଜା ଖୋଲିବାର ଶବ୍ଦ ହେଲା ।

ସବ୍‌ଇନିସ୍‌ପେକ୍ଟର ରଣଜିତ୍ ହାଲ୍‌ଦାର ମାଣିକଚାନ୍ଦ ଜରିଆକୁ ସାଂଗରେ ଧରି ଭିତରେ ପ୍ରବେଶ କଲେ ।

ହାତରେ ଖଣ୍ଡିଏ ସାଦା କାଗଜ ।

କାଗଜ ଖଣ୍ଡିକ ସେ ମୃଗାଙ୍କ ଚୌଧୁରୀଙ୍କ ହାତକୁ ବଢ଼ାଇ ଦେଲେ । ମୃଗାଙ୍କ ଚୌଧୁରୀ ଥରେ କାଗଜ ଆଡ଼କୁ ଓ ଥରେ ମାଣିକଚାନ୍ଦ ଆଡ଼କୁ ଚାହିଁ କହିଲେ : ସାବାସ୍ ମାଣିକଚାନ୍ଦ । ତମେ ତ ଖାଲି ନିପୁଣ ସ୍ୱର୍ଣ୍ଣଶିଳ୍ପୀ ନୁହଁ, ତମେ ଜଣେ ଅଙ୍କନ ଶିଳ୍ପୀ ମଧ୍ୟ । ଏଇ ଲୋକଟି ତା'ହେଲେ ତମ ହାତରେ ନକଲ ସ୍ୱର୍ଣ୍ଣମୟୂରୀ ଗଢ଼ାଇଥିଲା । ଆମେ ଯାକୁ ଖୋଜି ବାହାର କରିବାରେ ଆଉ ଅସୁବିଧା ହେବ ନାହିଁ ।

ମୃଗାଙ୍କ ଚୌଧୁରୀ ସେହି ଅଙ୍କନଟି ଭଲ ଭାବରେ ନିରୀକ୍ଷଣ କରି କହିଲେ : ମୋର ମନେହେଉଛି ମାଣିକଚାନ୍ଦର ଏହି ଅଙ୍କନରେ ସେହି ଲୋକଟିର ମୁହଁର ପ୍ରତିଟି ଶିରା ଉପଶିରା ପର୍ଯ୍ୟନ୍ତ ଫୁଟାଇ ପାରିଛି ।

ଇନିସ୍‌ପେକ୍‌ଟର ସାଜ୍ଜାଦ୍ ଉଠିଗଲେ ଛବିଟି ଦେଖିବା ପାଇଁ । ଛବିଟି ଉପରେ ଆଖି ପଡ଼ିବା ମାତ୍ରକେ ସେ ଚିତ୍କାର କରି ଉଠିଲେ : ସାର୍, ଏ ତ ଧୀରାଜ ମେହେରାଙ୍କ ମୁହଁ । ମୁଁ ସ୍ପଷ୍ଟ ଚିହ୍ନି ପାରିଛି ।

+ + +

ମୃଗାଙ୍କ ଚୌଧୁରୀ ଟେପ୍ ରେକର୍ଡ଼ର ସୁଇଚ୍ ଟିପିଦେଲେ ।

..... .....

: ରାଜେଶ !

: ସାର୍ !

: ତମେ କ'ଣ କରିଛ ନିଶ୍ଚୟ ବୁଝିପାରିଛ । ମୋ ଅନୁପସ୍ଥିତିରେ ସ୍ୱର୍ଣ୍ଣମୟୂରୀକୁ ମୋର ଶତ୍ରୁ ପକ୍ଷୀୟ ଲୋକଙ୍କୁ ବିକ୍ରୟ କରି ବଦଳରେ ଲକ୍ଷେ ଟଙ୍କା ଆଣିଛ ।

: ଆଣିଛି ସାର୍ ।

: କିନ୍ତୁ ସେହି ସ୍ୱର୍ଣ୍ଣମୟୂରୀର ଦାମ୍ ବଜାରେ କେତେ ଜାଣ ?

: ପାଞ୍ଚ ଲକ୍ଷ ଟଙ୍କାରୁ ଅଧିକ ।

: ହାଃ ହଃ ହାଃ । ମୁଁ ଜାଣିଥିଲି ରାଜେଶ । ଏହିପରି ଗୋଟାଏ ଅଘଟଣ ଘଟିବ । ଲୋକ ଯେତେ ବିଶ୍ୱସ୍ତ ହେଲେ ବି ପ୍ରଲୋଭନ ସେ ଏଡ଼େଇ ପାରେ ନାହିଁ । ତମେ ପ୍ରଲୋଭନରେ ପଡ଼ି ଏହା କରିଛ । କିନ୍ତୁ ଏହାର ପରିଣତି କ'ଣ ହେବ ଜାଣ ରାଜେଶ ?

ମୁଁ ଜାଣେ ।

ତମାର ଆଜିର ଉତ୍ତର ଦେବାକୁ ଭାଷା ନାହିଁ । କିନ୍ତୁ ତୁମେ ମୋତେ ଏକଲକ୍ଷ ଟଙ୍କା ଲାଭ କରାଇ ଦେଇଛ । ତମେ ଯେଉଁ ସ୍ୱର୍ଣ୍ଣମୟୂରୀଟିକୁ ସେମାନଙ୍କୁ ବିକ୍ରୟ କରିଛ, ସେହି ସ୍ୱର୍ଣ୍ଣମୟୂରୀଟି କ'ଣ ଜାଣ ?

: ନା ସାର୍ ।

: ହାଃ... ହାଃ... ହାଃ... ସେଇ ସ୍ୱର୍ଣ୍ଣମୟୂରୀଟି ମଧ୍ୟ ନକଲ ।

: ସାର୍...

: ହଁ ରାଜେଶ । ତମେ ଆଶ୍ଚର୍ଯ୍ୟ ହୁଅ ନାହିଁ । ମୋ ନାଁ ଧୀରାଜ ମେହେରା । ମୋ ଆଖିରେ ଧୂଳି ଦେବା ଲୋକ ବର୍ତ୍ତମାନ ଏଇ ପୃଥିବୀରେ ଅତି କମ୍ ଜନ୍ମ ଗ୍ରହଣ କରିଛନ୍ତି । ତମେ ତମ ନିଜ ଗୋଡ଼ରେ କୁଠାରଘାତ କରିଛ । ବର୍ତ୍ତମାନ ତମ ପରିଣତି ସମ୍ବନ୍ଧରେ ତମେ ଚିନ୍ତା କର ।

: କିନ୍ତୁ ସାର୍ । ମୋର ଅନ୍ୟ ଉପାୟ ନଥିଲା । ସେମାନେ ମୋତେ ଧରିନେଇ ମୃତ୍ୟୁର ଭୟ ଦେଖାଇଥିଲେ । ସେମାନେ ଜାଣିପାରିଥିଲେ ଯେ, ମୁଁ ସ୍ୱର୍ଣ୍ଣମୟୂରୀର ସମ୍ବାଦ ଜାଣେ ଏବଂ ମୁଁ ଇଚ୍ଛା କଲେ ସ୍ୱର୍ଣ୍ଣମୟୂରୀ ସେମାନଙ୍କୁ ଦେଇପାରିବି ।

: ମିଥ୍ୟା, ତମେ ମିଥ୍ୟା କଥା କହୁଛ ରାଜେଶ ।

: ନା ସାର୍, ମୁଁ ସତ କଥା କହୁଛି । ସ୍ୱର୍ଣ୍ଣମୟୂରୀ ସମ୍ବନ୍ଧରେ ଆପଣ ମୋ ସହିତ ଯାହା କଥାବାର୍ତ୍ତା କରିଥିଲେ, ସେମାନେ ସେ ଖବର ସବୁ ପାଇଛନ୍ତି । ଏ ଘରର ସମସ୍ତ କଥାବାର୍ତ୍ତା ସେମାନେ ଟେପ୍ କରି ରଖିଛନ୍ତି ।

: ରାଜେଶ ! ମିଥ୍ୟା କଥାର ଗୋଟାଏ ସୀମା ଥାଏ । ତମେ ଧୀରେ ଧୀରେ ସୀମା ଲଙ୍ଘନ କରୁଛ । ତମେ ହୁଏତ ଜାଣିନାହଁ, ମୋର ଏଇ ଗ୍ଲାସ୍ ଚେମ୍ବରଟି ସାଉଣ୍ଡ ପ୍ରୁଫ୍ଡ଼ । ଏ ଘର ଭିତରୁ ଟୁଁ ଶବ୍ଦଟିଏ ବାହାରକୁ ବାହାରିବ ନାହିଁ । ସେଇଥିପାଇଁ ସ୍ୱର୍ଣ୍ଣମୟୂରୀ ସମ୍ବନ୍ଧୀୟ ସମସ୍ତ ଦରକାରୀ କଥା ଏହି ଚେମ୍ବର ଛଡ଼ା ଅନ୍ୟ କେଉଁଠି ମୁଁ ତମ ସାଂଗରେ ହୋଇ ନାହିଁ । ତେଣୁ ଶତ୍ରୁ ପକ୍ଷର ସାଧ୍ୟ ନାହିଁ ମୋ କଥାବାର୍ତ୍ତା ସେମାନେ ଟେପ୍ କରିବେ ।

: ଆପଣଙ୍କର ଏହି ଦୃଢ଼ ବିଶ୍ୱାସ ଆପଣଙ୍କର ସର୍ବନାଶ କରିଛି ସାର୍, ସଂଗେ ସଂଗେ ମୋର ବି ।

: ରାଜେଶ ! ମୁଁ ଆହୁରି ଥରେ କହୁଛି, ମିଥ୍ୟାର ସୀମା ତୁମେ ଲଙ୍ଘନ କର ନାହିଁ । ତମେ ମତେ ଲକ୍ଷେ ଟଙ୍କା ଲାଭ କରାଇ ଦେଇଛ, ସେଥିପାଇଁ ତମେ ଧନ୍ୟବାଦାର୍ହ, କିନ୍ତୁ ବିଶ୍ୱାସଘାତକତାର ଶାସ୍ତି ତୁମକୁ ଭୋଗିବାକୁ ହେବ ।

: ମୁଁ ନାଚାର ସାର୍ । ମୋର କିଛି ଉପାୟ ନଥିଲା । ମୁଁ ସ୍ୱର୍ଣ୍ଣମୟୂରୀ ସମ୍ବାଦ ଅସ୍ୱୀକାର କଲେ ମଧ୍ୟ ସେମାନେ ଆପଣ ଓ ମୋର କଥୋପକଥନର ଟେପ୍ ବଜାଇ ମୋତେ ଶୁଣାଇଥିଲେ । ମୁଁ ଯେ ଅସଲି ସ୍ୱର୍ଣ୍ଣମୟୂରୀ ନେଇ ହୋଟେଲ ଇଣ୍ଟରନାସନାଲକୁ ଯାଇଥିଲି, ମୋର ଅସ୍ୱୀକାର କରିବାର ବାଟ ନଥିଲା ।

: ରାଜେଶ ! ତମେ ମିଥ୍ୟାବାଦୀ, ତମେ ବିଶ୍ୱାସଘାତକ, ବାହାରିଯାଅ ମୋ ସାମ୍ନାରୁ, ଏଇ ଘରୁ । ନହେଲେ... ନହେଲେ...

: ମୋତେ କ୍ଷମା କରନ୍ତୁ ସାର୍ । ଜୀବନ ବିକଳରେ ମୁଁ ଅନ୍ୟାୟ କରିଛି । ମୁଣ୍ଡପାତି ଶାସ୍ତି ଗ୍ରହଣ କରିବି ।

: ରାଜେଶ ! ଶାସ୍ତି ମୁଁ ତୁମକୁ ଦେଇଥାଆନ୍ତି । କିନ୍ତୁ ବର୍ତ୍ତମାନ ମୁଁ ଆଉ ରକ୍ତରେ ହାତ ଧୋଇବାକୁ ଚାହେ ନାହିଁ । ତମେ ମୋତେ ଲକ୍ଷେ ଟଙ୍କା ଲାଭ କରେଇ ଦେଇଛ । ତଥାପି ତୁମେ ବିଶ୍ୱାସଘାତକ । ଶାସ୍ତି ତୁମକୁ ସେଇମାନେ ଦେବେ, ଯେଉଁମାନଙ୍କୁ ତମେ ନକଲ ସ୍ୱର୍ଣ୍ଣମୟୂରୀ ବିକ୍ରୟ କରିଛ । ହାଃ... ହାଃ... ହାଃ... ସେମାନେ ତୁମର ରକ୍ତ ଶୋଷି ନେବେ । ସେମାନେ ତୁମର ମାଂସକୁ ଖଣ୍ଡ ଖଣ୍ଡ କରି କାଟି କୁକୁର ଆଡ଼କୁ ଫିଙ୍ଗିବେ । ରାଜେଶ, ତମେ ମୋ ସହିତ ବିଶ୍ୱାସଘାତକତା କରି ଜିତି ପାରିବ ନାହିଁ । ନା, ନା, ନା । ଅସଲ ସ୍ୱର୍ଣ୍ଣମୟୂରୀ ବର୍ତ୍ତମାନ କେଉଁଠି ଜାଣ ? ହାଃ... ହାଃ... ହାଃ... ତମେ ତା'ର ସଂଧାନ ତମ ଜୀବନ କାଳରେ ପାଇବ ନାହିଁ । ତମେ ହାରିଯାଇଛ ରାଜେଶ । ତମେ ଚାଲିଯାଅ । ତମଠାରୁ ମୋର କାର୍ଯ୍ୟ ଶେଷ ହୋଇଯାଇଛି । ତମ ଭଳି ବିଶ୍ୱାସଘାତକମାନେ ମୋ ଦୁଇ ଆଖିରେ ବିଷ ।

: କିନ୍ତୁ ସାର୍ ! ଆପଣ ମୋ କଥା ଆଉ ଥରେ ବିଚାର କରନ୍ତୁ । ମୋ ସ୍ଥାନରେ ଆପଣ ଥିଲେ କ'ଣ କରିଥାଆନ୍ତେ ?

: ଚୁପ୍ କର ରାଜେଶ । ଛୋଟ ମୁହଁରେ ତମର ବଡ଼ କଥା ଶୋଭା ପାଏ ନାହିଁ । ତମେ ବାହାରିଯାଅ । ଏଇ ମୁହୂର୍ତ୍ତରେ ମୋ ସାମ୍ନାରୁ ଦୂର ହୋଇଯାଅ ।

: ହଁ, ମୁଁ ଯାଉଛି ସାର୍, କିନ୍ତୁ ମନେରଖନ୍ତୁ, ଏହାଦ୍ୱାରା ଆପଣଙ୍କର କିଛୁ ମଙ୍ଗଳ ହେବ ନାହିଁ ।

: ହ୍ୱାଟ୍ ନନ୍‌ସେନ୍‌ସ ? ମୋତେ ନାଲି ଆଖି ଦେଖାଉଚୁ । ଗେଟ୍ ଆଉଟ୍ । ଆଇ ସେ ଗେଟ୍ ଆଉଟ୍ ।

\+ + +

ରାଜେଶ ଧୀରାଜ ମେହେରାଙ୍କ ଚେମ୍ବରରୁ ବାହାରି ଆସିଲା ।

ସେ ହାରି ଯାଇଛି ।

ସେ ଆଜି ତା'ର ଜୀବନ ସଂଗ୍ରାମରେ ହାରି ଯାଇଛି । ବର୍ତ୍ତମାନ ତା'ର ବାଟ କ'ଣ ? କେଉଁଆଡ଼େ ସେ ଯିବ ? କାହା ପାଖରେ ଆଶ୍ରୟ ନେବ ?

ଲକ୍ଷେ ଟଙ୍କାର ସ୍ୱପ୍ନ ତା'ର ଚୂର୍ଣ୍ଣ ହୋଇଛି । କଳ୍ପନାର ସୌଧ ତା'ର ଭାଂଗିପଡ଼ିଛି । ସେ ହୋଇଛି ବିଶ୍ୱାସଘାତକ । ମେରୀ, ଧୀରାଜ ମେହେରା, ରାଣୀ ସମସ୍ତଙ୍କ ଆଖିରେ ସେ ଆଜି ଘୃଣ୍ୟ । ସମସ୍ତେ ତା'ଠାରୁ ପ୍ରତିଶୋଧ ନେବାକୁ ଚାହିଁବେ । ସମସ୍ତେ ତା' ପ୍ରାଣ ନେଇ ଖେଳ ଖେଳିବେ ।

ରାଜେଶ ପାଦ ଗଣି ଗଣି ନିଜ କୋଠରିକୁ ଫେରିଗଲା । ସେଇଠି ବସି ନିରୋଳାରେ ସେ ତା'ର ପରବର୍ତ୍ତୀ କର୍ତ୍ତବ୍ୟର କର୍ମପନ୍ଥା ନିର୍ଣ୍ଣୟ କରିବ ।

ଧୀରାଜ ମେହେରା ଏକ ସାଂଘାତିକ ଲୋକ । ସେ ତା'ର ଶତ୍ରୁ ହାତରେ ରାଜେଶକୁ ସମର୍ପଣ କରି ଦେଇଛି । ବିଶ୍ୱାସଘାତକତାର ଶାସ୍ତି ସେଇମାନେ ରାଜେଶକୁ ଦେବେ । କି ଚମତ୍କାର କୌଶଳ ।

ରାଜେଶ ଘରେ ଯାଇ ଫ୍ୟାନ୍‌ଟା ଫୁଲ୍ ସ୍ପିଡ୍‌ରେ ଚଳାଇ ଦେଇ, ଆରାମଚଉକି ଉପରେ ନିଜର ଅବଶ ଦେହଟାକୁ ଶୁଆଇ ଦେଲା । ଆଜି ଯାହା ସବୁ ଆକସ୍ମିକ ଭାବରେ ଘଟିଗଲା, ରାଜେଶ ସେଥିପାଇଁ ମୋଟେ ପ୍ରସ୍ତୁତ ନଥିଲା । କରେନ୍‌ସି ନୋଟ୍‌ପୂର୍ଣ୍ଣ ଆଟାଚି କେସ୍ ଧରି ତା'ର ଘରକୁ ଫେରି ଆସିବା ଉଚିତ ହୋଇ ନାହିଁ । ସେ ଠକିଯାଇଚି, ସେ ହାରି ଯାଇଚି ।

ରାଜେଶର ସୁପ୍ତ ମନ ଧୀରେ ଧୀରେ ଉତ୍ତେଜିତ ହେବାକୁ ଲାଗିଲା । ସେ ବି ମଣିଷ । ଜଣେ ସ୍ୱାଧୀନଚେତା ମଣିଷ । ରକ୍ତ ମାଂସରେ ତା' ଦେହ ଗଢ଼ା । ତେଣୁ ତାକୁ ବି ପ୍ରତିଶୋଧ ନେଇ ଆସେ । ସେ ପ୍ରତିଶୋଧ ନେବ । ଧୀରାଜ ମେହେରାଙ୍କର ସବୁ ଚକ୍ରାନ୍ତ ସେ ଧରା ପକାଇ ଦେବ । ହଁ, ହଁ, ଏଇ ସୁଯୋଗ । ଏହାପରେ ହୁଏତ ଧୀରାଜ ମେହେରା ସେହି ଅସଲି ସ୍ୱର୍ଣ୍ଣମୟୂରୀଟି ଧରି କୁଆଡ଼େ ବାହାରି ଚାଲିଯିବେ । ନା, ସେ ତାକୁ ଛାଡ଼ିବ ନାହିଁ, ଛାଡ଼ିବ ନାହିଁ ।

ରାଜେଶ ଟେଲିଫୋନ୍ ରିସିଭରଟା ଉଠାଇଲା । କିନ୍ତୁ...

ନା, ଡାଏଲ୍ ଟୋନ୍ ଶୁଭୁ ନାହିଁ ।

ରାଜେଶ ଆହୁରି ଥରେ ଚେଷ୍ଟା କଲା ।

ନା, ଟେଲିଫୋନ୍ ଲାଇନ୍‌ଟା କଟା ହୋଇଛି । ଧୀରାଜ ମେହେରା ଚତୁର ଲୋକ । ବୁଦ୍ଧିମାନ ଲୋକ । ତେଣୁ ଟେଲିଫୋନ୍‌ରେ ପୋଲିସ୍ ଷ୍ଟେସନ ସହିତ ସଂଯୋଗର ଇଚ୍ଛା ରାଜେଶକୁ ଦମନ କରିବାକୁ ପଡ଼ିଲା । ସେ ପୁଣି ଆରାମ ଚେଆର ଉପରେ ଆଖିବୁଜି ଚିନ୍ତା କରିବାକୁ·ଲାଗିଲା ।

ଘର ଭିତରେ କାହାର ପାଦଶବ୍ଦ ଶୁଣି ରାଜେଶ ଚମକି ଉଠିଲା ।

: କିଏ ?

ଘରେ ଜଣେ ଅପରିଚିତ ଲୋକ । ସେ ଆଗେଇଗଲା ରାଜେଶ ପାଖକୁ । ସାମ୍ନାରେ ଗୋଟିଏ ଚେଆର୍ ଉପରେ ବସୁ ବସୁ କହିଲା : ମୋ ନାଁ ବରଦା ଚକ୍ରବର୍ତ୍ତୀ । ମୁଁ କ୍ରାଇମ୍ ବ୍ରାଞ୍ଚର ଇନିସ୍‌ପେକ୍ଟର ।

ରାଜେଶ ଯେପରି ହାତରେ ସ୍ୱର୍ଗ ପାଇଲା । ସେ ଉଠିପଡ଼ି ବରଦା ଚକ୍ରବର୍ତ୍ତୀଙ୍କୁ ଏକ ପ୍ରକାର କୁଣ୍ଢାଇ ଧରି କହିଲା : ମୋତେ ବଞ୍ଚାନ୍ତୁ ମିଷ୍ଟର ଚକ୍ରବର୍ତ୍ତୀ । ମୁଁ ବର୍ତ୍ତମାନ ଅସହାୟ । ମୋର ଘରେ ବାହାରେ ଚାରିଆଡ଼େ ଶତ୍ରୁ । ମୋ ଜୀବନ ବିପନ୍ନ । ବରଦା ଚକ୍ରବର୍ତ୍ତୀ କହିଲେ : ମୁଁ ଜାଣେ ମିଷ୍ଟର ରାଜେଶ । ମୁଁ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ଆସିଛି । ଆପଣ ସତକଥା କହିଲେ, ବଞ୍ଚିଯିବେ । ନହେଲେ... ।

: ମିଷ୍ଟର ଚକ୍ରବର୍ତ୍ତୀ । ଆପଣ ମୋତେ ବିଶ୍ୱାସ କରନ୍ତୁ । ଧୀରାଜ ମେହେରା ଏକ ସଇତାନ । ସେ ଦେଶର ପରମ ଶତ୍ରୁ । ନ୍ୟାସନାଲ ମିଉଜିଅମରୁ ସେଇ ସ୍ୱର୍ଣ୍ଣମୟୂରୀ ଚୋରିକରି ଆଣିଛି ।

: କିନ୍ତୁ ମିଷ୍ଟର ରାଜେଶ ! ଆପଣଙ୍କ ମୁହଁର କଥା ଶୁଣି ତ କିଛି ଲାଭ ହେବ ନାହିଁ । ସ୍ୱର୍ଣ୍ଣମୟୂରୀର ସନ୍ଧାନ ଆମକୁ ଆପଣ ଦେଇ ପାରିଲେ ଆମେ ସିନା ଅସଲ ଆସାମୀକୁ ଶାସ୍ତି ଦେବୁ । ତା'ନହେଲେ...

ରାଜେଶ ହତାଶ କଣ୍ଠରେ କହିଲା : ମୁଁ ଯେଉଁ ସ୍ୱର୍ଣ୍ଣମୟୂରୀର ସନ୍ଧାନ ଜାଣିଥିଲି ଏବଂ ଯାହାକୁ ଏକ ଲକ୍ଷ ଟଙ୍କାରେ ବିକ୍ରୟ କରିଥିଲି, ବର୍ତ୍ତମାନ ଧୀରାଜ ମେହେରାଙ୍କ ମୁହଁରୁ ଶୁଣିଲି ଯେ, ସେଇଟା ମଧ୍ୟ ନକଲ । ତେଣୁ ବୁଝି ପାରୁଛନ୍ତି ମିଷ୍ଟର ଚକ୍ରବର୍ତ୍ତୀ, ମୁଁ ଆଜି ଦୁଇ କୂଳରୁ ଯାଇଛି । ମୋ ପ୍ରାଣ ଆଜି ସଙ୍କଟାପନ୍ନ ।

ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀ କହିଲେ : ଆପଣ ନକଲ ସ୍ୱର୍ଣ୍ଣମୟୂରୀ କାହାକୁ ବିକ୍ରୟ କରିଥିଲେ ?

ରାଜେଶ ଏକ ଦୀର୍ଘଶ୍ୱାସ ତ୍ୟାଗକରି କହିଲା : ସେ ଆଉ ଏକ କାହାଣୀ ମିଷ୍ଟର ଚକ୍ରବର୍ତ୍ତୀ । ସେ କାହାଣୀ ମୁଁ ଆପଣଙ୍କୁ ସଂକ୍ଷେପରେ କହୁଚି ଶୁଣନ୍ତୁ ।

ରାଜେଶ ଧୀରାଜ ମେହେରାଙ୍କ ପାଖରେ ନିଯୁକ୍ତିଠାରୁ ଆଜି ଗଳାରେ ଧକ୍କାଖାଇ ବାହାରି ଆସିବା ପର୍ଯ୍ୟନ୍ତ ସମସ୍ତ ଘଟଣା ବରଦା ଚକ୍ରବର୍ତ୍ତୀଙ୍କ ଆଗରେ ସଂକ୍ଷେପରେ କହିଗଲା ।

ବରଦା ଚକ୍ରବର୍ତ୍ତୀ ସବୁ ଶୁଣି ସାରି କହିଲେ : ମିଷ୍ଟର ରାଜେଶ ! ଏଇ ହେଉଛି ସୁଯୋଗ, ଆପଣଙ୍କ ପାଇଁ ଏବଂ ଆମ ପାଇଁ । ଆପଣ ଯଦି ବଞ୍ଚିବାକୁ ଚାହାନ୍ତି, ଆମ ସହିତ ଆପଣଙ୍କୁ ସହଯୋଗ କରିବାକୁ ପଡ଼ିବ । ମୋର ମନେ ହେଉଛି ଗୋଟିଏ ଟେକାରେ ଆମେ ଦୁଇଟି ଯାକ ଚଢ଼େଇ ମାରି ପାରିବୁ ।

ରାଜେଶ କିଛି ବୁଝି ନପାରି ବରଦା ଚକ୍ରବର୍ତ୍ତୀଙ୍କ ମୁହଁକୁ ବଲ ବଲ କରି ଅନାଇ ରହିଥିଲା ।

ବରଦା ଚକ୍ରବର୍ତ୍ତୀ ଆହୁରି ଟିକିଏ ଚିନ୍ତା କରି କହିଲେ : ଧୀରାଜ ମେହେରା ଠିକ୍ କହିଛନ୍ତି । ଆପଣ ଯେଉଁ ଦୁର୍ଦ୍ଦାନ୍ତ ସଇତାନ ଦଳକୁ ସ୍ୱର୍ଣ୍ଣମୟୂରୀ ଲକ୍ଷେ ଟଙ୍କାକୁ ବିକ୍ରୟ କରିଛନ୍ତି, ସେମାନେ ଯେତେବେଳେ ଜାଣି ପାରିବେ ଆପଣ ତାଙ୍କୁ ଠକିଛନ୍ତି, ସେମାନେ ନିଶ୍ଚୟ ଆପଣଙ୍କଠାରୁ ଭୀଷଣ ପ୍ରତିଶୋଧ ନେବାକୁ ଆଗେଇ ଆସିବେ । ଏଇତ ସୁଯୋଗ । ଆପଣ ବାହାରି ପଡ଼ନ୍ତୁ । ରାସ୍ତାରେ ସେମାନେ ନିଶ୍ଚୟ ଆପଣଙ୍କର ଅପେକ୍ଷା କରୁଥିବେ ।

: ମାନେ ?

: ଆପଣ ରାସ୍ତାକୁ ବାହାରିବା ମାତ୍ରକେ ସେମାନେ ଆପଣଙ୍କୁ ନିଶ୍ଚୟ ଆକ୍ରମଣ କରିବେ ଏବଂ ସେମାନଙ୍କ ସର୍ଦ୍ଦାର ପାଖକୁ ନେଇ ଯିବାକୁ ଚେଷ୍ଟା କରିବେ ।

: ତା'ପରେ ?

: ମୁଁ ଆପଣଙ୍କୁ ଅନୁସରଣ କରି ସେମାନଙ୍କ ଆଡ଼୍‌ଡ଼ାରେ ପହଞ୍ଚିବି ଏବଂ ସମସ୍ତଙ୍କୁ ଅତି ସହଜରେ ଆରେଷ୍ଟ୍ କରି ପାରିବି ।

ରାଜେଶ ଅବିଶ୍ୱାସୀ ଦୃଷ୍ଟିରେ ଅନେକ ବେଳଯାଏ ବରଦା ଚକ୍ରବର୍ତ୍ତୀଙ୍କ ମୁହଁକୁ ଅନାଇ ରହିଲା । ତା'ପରେ ଧୀରେ ଧୀରେ କହିଲା,

: ମିଷ୍ଟର ଚକ୍ରବର୍ତ୍ତୀ, ପ୍ରକୃତରେ ଯଦି ଆପଣ କ୍ରାଇମ ବ୍ରାଞ୍ଚର ଇନିସ୍‌ପେକ୍ଟର ହୋଇ ନଥାନ୍ତି ?

ବରଦା ଚକ୍ରବର୍ତ୍ତୀ ହସିଲେ । ପକେଟରୁ ତାଙ୍କର ଆଇଡେଣ୍ଟିଟି କାର୍ଡଟି ରାଜେଶ ହାତକୁ ବଢ଼ାଇ ଦେଇ କହିଲେ : ଏଥର କିନ୍ତୁ ଆପଣ ଠକୁ ନାହାନ୍ତି ମିଷ୍ଟର ରାଜେଶ । ଆପଣ ନିର୍ଭୟରେ ରାସ୍ତାକୁ ବାହାରି ପାରନ୍ତି ।

: ଆଉ ଧୀରାଜ ମେହେରା ? ସେ ଯେ ଅସଲ ସ୍ୱର୍ଣ୍ଣମୟୂରୀ ଧରି ଏଣେ ଖସି ପଳାଇବେ । ରାଜେଶ କହିଲା ।

: ନା, ତାଙ୍କ ସମ୍ବାଦ ବର୍ତ୍ତମାନ ଥାନାରେ ପହଞ୍ଚି ସାରିବଣି । ଧୀରାଜ ମେହେରାଙ୍କ ଚେମ୍ବର ଭିତରେ ଆପଣ ଓ ଧୀରାଜ ମେହେରା ଯାହା କଥାବାର୍ତ୍ତା ହେଉଥିଲେ, ସେ ସବୁର ଟେପ୍ ବର୍ତ୍ତମାନ ସୁଦ୍ଧା ଥାନାରେ ପହଞ୍ଚି ସାରିଥିବ । ତା'ଛଡ଼ା ଏଠାରେ ଧୀରାଜ ମେହେରାଙ୍କ ଗତିବିଧି ଲକ୍ଷ୍ୟ ରଖିବା ପାଇଁ ଲୋକ ନିଯୁକ୍ତ ହୋଇ ରହିଛନ୍ତି । ସେ ଫାଙ୍କି ଦେଇ କୁଆଡ଼େ ଯାଇ ପାରିବେ ନାହିଁ ।

ରାଜେଶ ଟେପ୍ କଥା ଶୁଣି ଉତ୍ସାହିତ ହୋଇ ପଚାରିଲା : ଆମେତ ଧୀରାଜ ମେହେରାଙ୍କ ସାଉଣ୍ଡପ୍ରୁଫ୍‌ଡ଼ ଚେମ୍ବର ଭିତରେ କଥାବାର୍ତ୍ତା ହେଉଥିଲୁ, ଆପଣ ସେ କଥା ସବୁ ଟେପ୍ କଲେ କିପରି ?

: ଆମେ ଟେପ୍ କରି ନାହୁଁ ମିଷ୍ଟର ରାଜେଶ । ଧୀରାଜ ମେହେରାଙ୍କ ସାଉଣ୍ଡପ୍ରୁଫ୍‌ଡ଼ ଚେମ୍ବରରେ କେଉଁଠି ଏକ ଗୋପନ ସ୍ଥାନରେ ମାଇକ୍ରୋଫୋନ୍ ଖଞ୍ଜା ହୋଇଛି ଏବଂ ଟେପ୍ ରେକର୍ଡ଼ର ବ୍ୟବସ୍ଥା ହୋଇଛି ଯାଇ ମିସେସ୍ ମେହେରାଙ୍କ ଶୟନ କକ୍ଷରେ । ତେଣୁ ଧୀରାଜ ମେହେରାଙ୍କ ଚେମ୍ବରରେ ହେଉଥିବା ସମସ୍ତ କଥାବାର୍ତ୍ତା ସେଠାରେ ଗୋପନରେ ଟେପ୍ ହେଉଛି ।

ରାଜେଶ ବିସ୍ମୟ ବିସ୍ଫାରିତ ନେତ୍ରରେ ଚାହିଁଲେ ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀଙ୍କ ମୁହଁକୁ ।

ବରଦା ଚକ୍ରବର୍ତ୍ତୀ ହାତ ଘଡ଼ିକୁ ଚାହିଁ କହିଲେ : ରାତି ଅନେକ ହେଲାଣି ମିଷ୍ଟର ରାଜେଶ ! ଆପଣ ବାହାରି ପଡ଼ନ୍ତୁ । ସେମାନେ ଆପଣଙ୍କୁ ରାସ୍ତାରେ ଅପେକ୍ଷା କରିଥିବେ ।

ରାଜେଶ ଉଠି ଠିଆ ହେଲା । କହିଲା : ଆପଣ ଯଦି ମୋତେ ଅନୁସରଣ କରିବାରେ ବ୍ୟର୍ଥ ହୁଅନ୍ତି ? ମୋର ଅବସ୍ଥା କ'ଣ ହେବ ଚିନ୍ତା କରି ପାରୁଛନ୍ତି ?

ବରଦା ଚକ୍ରବର୍ତ୍ତୀ କିଛି ଉତ୍ତର ଦେବା ପୂର୍ବରୁ ରାଜେଶ ପକେଟରେ ହାତ ଭରି ଉତ୍ସାହିତ ହୋଇ କହିଲା : ଗୋଟାଏ ଆଇଡ଼ିଆ ମିଷ୍ଟର ଚକ୍ରବର୍ତ୍ତୀ । ମୋ ଡିସ୍‌ପୋଜାଲରେ ବର୍ତ୍ତମାନ ସୁଦ୍ଧା ଗୋଟାଏ ପ୍ଲାଇମାଉଥ୍ ଗାଡ଼ି ଅଛି । ସେଇ ଗାଡ଼ିରେ ଯଦି...

: ନା, ସେଇଟା ସମ୍ଭବ ନୁହେଁ ମିଷ୍ଟର ରାଜେଶ । ଗୋଟାଏ ଗାଡ଼ିରେ ଆମେ ଦୁଇଜଣ ରହିଲେ, ସେମାନେ ନିଶ୍ଚୟ ମୋତେ ମଧ୍ୟ ଧରି ପକାଇବେ । ତେଣୁ ଆମର ଉଦ୍ଦେଶ୍ୟ ସାଧନ ହେବ ନାହିଁ ।

: ତା'ହେଲେ ?

: ତେବେ ଗୋଟାଏ ଉପାୟ ଅଛି । ମୁଁ ଯଦି ଗାଡ଼ିର ଲଗେଜ୍ କ୍ୟାରିଅରରେ ଚୁପ୍ ଚାପ୍ ଶୋଇରହେ, ତାହାହେଲେ ସେମାନେ ହୁଏତ ସହଜରେ ବୁଝି ପାରିବେ ନାହିଁ । କିନ୍ତୁ ସେଥିରେ ଆଉ ଗୋଟାଏ ଅସୁବିଧା ଅଛି ।

: କିପରି ?

: ସେମାନେ ଯଦି ଏଇ ଗାଡ଼ିଟିକୁ ରାସ୍ତାରେ ଛାଡ଼ିଦେଇ ଯାଆନ୍ତି ?

: ନା, ସେମାନେ ଏଇ ଗାଡ଼ିଟିକୁ ଛାଡ଼ି ଯିବେ ନାହିଁ । ଗାଡ଼ି ସୁଦ୍ଧା ମୋତେ ସେମାନଙ୍କ ଆଡ୍‌ଡ଼ାକୁ ନେଇଯିବେ । ତେଣୁ ଆପଣ...

: ତା'ହେଲେ ଚାଲନ୍ତୁ ।

ରାଜେଶ ଆଗେ ଆଗେ ଓ ବରଦା ଚକ୍ରବର୍ତ୍ତୀ ପଛେ ପଛେ ଓହ୍ଲାଇ ଆସିଲେ ତଳକୁ ।

+ + +

ଟେପ୍ ରେକର୍ଡ଼ର ଚାବି ବନ୍ଦ କରି ମୃଗାଙ୍କ ଚୌଧୁରୀ କିଛି ସମୟ ଆଖି ବୁଜି ଚିନ୍ତା କଲେ । ଧୀରେ ଧୀରେ କହିଲେ : ଆପଣମାନଙ୍କ କର୍ମନିଷ୍ଠା ପାଇଁ ମୁଁ ସମସ୍ତଙ୍କୁ ଧନ୍ୟବାଦ ଦେଉଛି । ବର୍ତ୍ତମାନ ଧୀରାଜ ମେହେରାଙ୍କୁ ସଂପୂର୍ଣ୍ଣ ନଜରବନ୍ଦୀ କରି ରଖିବାର ବ୍ୟବସ୍ଥା କରିବାକୁ ହେବ ।

: ସେ ବ୍ୟବସ୍ଥା ମୁଁ କରି ଆସିଛି ସାର୍ । ଇନିସ୍‌ପେକ୍ଟର ସାଜାଦ୍ କହିଲେ । ବରଂ ବର୍ତ୍ତମାନ ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀଙ୍କ ସମ୍ବାଦ...

ସାଜାଦ୍‌ଙ୍କ କଥା ଶେଷ ହେଲା ନାହିଁ । ଗୋଟିଏ କନେଷ୍ଟବଲ ଦରଜା ଖୋଲି ସାଲ୍ୟୁଟ୍ ବଜାଇ କହିଲା : ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀ ଆର୍ମଡ଼ ଫୋର୍ସ ପଠାଇବାକୁ ଫୋନ୍ କରିଛନ୍ତି ସାର୍ !

ମୃଗାଙ୍କ ଚୌଧୁରୀ ଉତ୍ସାହିତ ହୋଇ ପଚାରିଲେ : କେଉଁଠୁ ?

: ନିଉ ଆଲିପୁରରୁ । କନେଷ୍ଟବଲଟି କହିଲା ।

: ସଙ୍ଗେ ସଙ୍ଗେ ପଠାଇ ଦେବାର ବ୍ୟବସ୍ଥା କରିବାକୁ କୁହ ।

କନେଷ୍ଟବଲଟି ଚାଲିଯିବା ସଙ୍ଗେ ସଙ୍ଗେ ମୃଗାଙ୍କ ଚୌଧୁରୀ ଫୋନ୍ ଉଠାଇ ଭାରପ୍ରାପ୍ତ ଅଫିସରଙ୍କ ଠାରୁ ବରଦା ଚକ୍ରବର୍ତ୍ତୀଙ୍କ ସମ୍ବାଦ ଶୁଣିଲେ ଏବଂ ସଙ୍ଗେ ସଙ୍ଗେ ଆର୍ମଡ଼୍ ଫୋର୍ସ ପଠାଇବାର ବ୍ୟବସ୍ଥା କରିବାକୁ ନିର୍ଦ୍ଦେଶ ଦେଲେ । ଟେଲିଫୋନ୍‌ଟା ରଖିଦେଇ କହିଲେ : ମିଷ୍ଟର ସାଜାଦ୍, ଇତ୍ୟବସରରେ ଆପଣ ମାନସିଂହକୁ ଏଠାକୁ ଡାକି ଆଣନ୍ତୁ । ତାଠାରୁ କେତେକ ସଂବାଦ ବୁଝି ଆମକୁ ଧୀରାଜ ମେହେରାଙ୍କ ଘରକୁ ଯିବାକୁ ହେବ । ଅସଲ ସ୍ୱର୍ଣ୍ଣମୟୂରୀ ଯେ ସେଇଠି ଲୁଚି ରହିଛି !

ଇନିସ୍‌ପେକ୍ଟର ସାଜାଦ୍ ଘରୁ ବାହାରି ଗଲେ ।

କିଛି ସମୟ ପରେ ଯାହାକୁ ସେ ସାଙ୍ଗରେ ଧରି ଆଣି ଉପସ୍ଥିତ ହେଲେ, ମୃଗାଙ୍କ ଚୌଧୁରୀ ବି ତା' ଆଡ଼େ ବିସ୍ଫାରିତ ନେତ୍ରରେ କିଛି ସମୟ ଅନାଇ ରହିଲେ ।

: ତମ ନାଁ ? ମୃଗାଙ୍କ ଚୌଧୁରୀ ପଚାରିଲେ ।

: ମାନସିଂହ ।

: ଖାଲି ମାନସିଂହ ?

: ହଁ ସାର୍, ପିଲାଦିନେ ମାନସିଂହ ଆଗରେ ଆଉ ଗୋଟାଏ କ'ଣ ଥିଲା, କିନ୍ତୁ ମୁଁ ଭୁଲି ଗଲିଣି ।

: ବେଶ୍ ବେଶ୍ । କିନ୍ତୁ ବର୍ତ୍ତମାନ ତୁମେ ଯେଉଁ ଅଭିଯୋଗରେ ଅଭିଯୁକ୍ତ ସେ ସମ୍ବନ୍ଧରେ ତମର ବକ୍ତବ୍ୟ କ'ଣ ?

: ମୋ ଅଭିଯୋଗ ସମ୍ବନ୍ଧରେ ମୋତେ କିଛି ଜଣା ନାହିଁ ସାର୍ ।

: ଅବଶ୍ୟ ତମେ କିଛି ଜାଣି ନାହଁ । ତମ ବିରୁଦ୍ଧରେ ଅଭିଯୋଗ ହେଉଛି, ତମେ ଶର୍ମାର ହତ୍ୟାକାରୀ, ସ୍ୱର୍ଣ୍ଣମୟୂରୀ ଅପହରଣକାରୀ ଦଳର ତମେ ସହଯୋଗୀ ।

: ଇଏସ୍ ସାର୍ । ଆପଣଙ୍କ ଅଭିଯୋଗ ସମସ୍ତ ସତ୍ୟ ।

ମୃଗାଙ୍କ ଚୌଧୁରୀ ବୋଧହୁଏ ମାନସିଂହଠାରୁ ଏପରି ଉତ୍ତର ପ୍ରତ୍ୟାଶା କରି ନଥିଲେ । ମୁହୂର୍ତ୍ତେ ନୀରବ ରହି କହିଲେ : କିନ୍ତୁ ତମେ ଜାଣ ଯେ ଏଇସବୁ ଅପରାଧ, ଦୋଷାବହ । ଅଦାଲତରେ ତମର ପ୍ରାଣଦଣ୍ଡ ହୋଇପାରେ ।

: ଜାଣେ ସାର୍ ।

: ତେବେ ଜାଣି ଜାଣି ତମେ ଏପରି ଅପରାଧ କଲ କାହିଁକି ?

: ମୁଁ ଯାହା କରିଛି, ସେ ସବୁକୁ କେବେ ଅପରାଧ ମନେକରି କରି ନାହିଁ ।

: ତେବେ ?

: ସେ ସବୁ ମୋର ପ୍ରଫେସନ । ମୋତେ ସେଇଆ କରି ଜୀବିକା ନିର୍ବାହ କରିବାକୁ ପଡ଼େ ।

: ଦୁନିଆରେ ଏତେ ପ୍ରଫେସନ ଥାଉ ଥାଉ ତମେ ଏପରି ଏକ ଅପରାଧ ପୂର୍ଣ୍ଣ ପ୍ରଫେସନ ବାଛି ନେଲ କାହିଁକି ?

: ପ୍ରଫେସନ ଇଜ୍ ପ୍ରଫେସନ ସାର୍ । ତା'ର ବିଶ୍ଳେଷଣ ମୁଁ କରି ପାରିବି ନାହିଁ ।

: ହୁଁ, ଅଦାଲତରେ ତମେ ତା'ହେଲେ ଏହିପରି ସତକଥା କହିବ ?

: ନିଶ୍ଚୟ ସାର୍ । ମାନସିଂହ ତା' ଜୀବନରେ କେବେ ମିଛକଥା କହି ନାହିଁ ।

: ହୁଁ, ତମର ବସ୍ କିଏ ?

: ମୁଁ କହିବି ନାହିଁ ।

: ତମକୁ କହିବାକୁ ହେବ ମାନସିଂହ । ନହେଲେ ତମେ ପ୍ରଚଣ୍ଡ ଶାସ୍ତି ପାଇବ ।

ମାନସିଂହ ହୋ ହୋ ହୋଇ ହସି ଉଠି କହିଲା : ମୃତ୍ୟୁକୁ ଯାହାର ଖାତିର୍ ନାହିଁ, ତାକୁ ଆପଣ କି ଶାସ୍ତି ଦେବେ ସାର୍ । ତା'ଛଡ଼ା ମାନସିଂହ କେବେ ନିମକ ହାରାମି କରେ ନାହିଁ । ଆପଣ ମୋଠାରୁ ମୋ ବସ୍‌ଙ୍କ ଠିକଣା ଆଦାୟ କରି ପାରିବେ ନାହିଁ ।

: ବେଶ୍ । ତମେ ଆଶା ମେହେରାଙ୍କୁ ଚିହ୍ନ ?

: ଚିହ୍ନେ ସାର୍ ।

: ସେ କିଏ ?

: ଧୀରାଜ ମେହେରାଙ୍କର ସ୍ତ୍ରୀ ।

: ତମ ସହିତ ତା'ର ସଂପର୍କ କ'ଣ ?

: ସେ ମୋର ପ୍ରେମିକା ସାର୍ । ଅତି ପିଲାଟି ଦିନରୁ ମୁଁ ତାକୁ ଭଲ ପାଉଥିଲି ଏବଂ ଆଜି ପର୍ଯ୍ୟନ୍ତ ତାହା ବଜାୟ ରଖିଛି ।

: ସେ ଅନ୍ୟର ସ୍ତ୍ରୀ ହେଲା ପରେ ବି ?

ମାନସିଂହ ମୁହୂର୍ତ୍ତେ ନୀରବ ରହି ମୃଗାଙ୍କ ଚୌଧୁରୀଙ୍କ ମୁହଁକୁ ଚାହିଁଲା । ଆଖି ତା'ର ଛଳ ଛଳ ହୋଇ ଆସିଲା ଧୀରେ ଧୀରେ । ସେ କହିଲା : ପାରିଲି ନାହିଁ ସାର୍ । ଆଶାର ବିବାହ ପରେ ମୁଁ ଚେଷ୍ଟା କରିଥିଲି । କିଛିଦିନ ଘରେ କବାଟ କିଳି ନିଜକୁ ବନ୍ଦ କରି ରଖିଥିଲି, କିନ୍ତୁ ଦିନେ ମୁଁ ଜାଣି ପାରିଲି ଯେ ଧୀରାଜ ମେହେରା ଆଶାକୁ ବିବାହ କରିଛି ସ୍ତ୍ରୀର ସମ୍ମାନ ଦେବାପାଇଁ ନୁହେଁ, ତା'ର ଅପରୂପ ରୂପ ଜରିଆରେ ବ୍ୟବସାୟ କରିବା ପାଇଁ । ସେତେବେଳେ ମୁଁ ଆଉ ସ୍ଥିର ରହି ପାରିଲି ନାହିଁ । ପୁଣି ଛୁଟିଲି ଆଶା ପାଖକୁ । ଛାଇ ପରି ତା' ସଙ୍ଗେ ସଙ୍ଗେ ରହିଲି ।

: ତଦ୍ୱାରା ତମେ କ'ଣ ଭଲ କଲ ମାନସିଂହ ? ଆଶାର ଦାମ୍ପତ୍ୟ ଜୀବନରେ ନିଆଁ ଲଗେଇ ଦେଲ ନାହିଁ କି ?

ଆପଣ ଧୀରାଜ ମେହେରାଙ୍କୁ ଚିହ୍ନି ନାହାନ୍ତି ସାର୍ । ସେ ଆଶାକୁ ବିବାହ କରି ନଥିଲେ ଦାମ୍ପତ୍ୟ ଜୀବନ ସୁଖରେ କଟାଇବା ପାଇଁ ।

: ତା'ହେଲେ ?

: ସେ ଅନେକ କଥା ସାର୍ । ଆଜି ଏଠାରେ ସେ ପ୍ରସଙ୍ଗ ଉତ୍‌ଥାପନ କରିବା କିଛି ଆବଶ୍ୟକ ନାହିଁ । ବରଂ ଆପଣ ମୋ କଥା ମୋତେ ପଚାରନ୍ତୁ ।

: କିନ୍ତୁ ମାନସିଂହ, ଆଜି ତମ କଥା ସହିତ ଆଶା ମେହେରାଙ୍କ କଥା ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ପୁଣି ଆଶା ମେହେରା ଧୀରାଜ ମେହେରାଙ୍କ ସ୍ତ୍ରୀ ଏବଂ ଆମେ ଜାଣି ପାରିଛୁ ଯେ ଧୀରାଜ ମେହେରା ସ୍ୱର୍ଣ୍ଣମୟୂରୀ ଅପହରଣକାରୀ । ଏହା କ'ଣ ସତ୍ୟ କି ?

: ଇଏସ୍ ସାର୍ ।

: ସେଇ ସ୍ୱର୍ଣ୍ଣମୟୂରୀକୁ ଧୀରାଜ ମେହେରାଙ୍କ ଠାରୁ ଅପହରଣ କରିବା ପାଇଁ ତମେ ଆପ୍ରାଣ ଚେଷ୍ଟା କରିଚ । ଶର୍ମାକୁ ଖୁଣ୍ କରିଚ ଏବଂ ଆଶା ମେହେରାକୁ ଏହି ଉଦ୍ଦେଶ୍ୟରେ ବ୍ୟବହାର କରିଚ ।

ମାନସିଂହ ନୀରବ ରହିଲା ।

ମୃଗାଙ୍କ ଚୌଧୁରୀ କହିଲେ : ଉତ୍ତର ଦିଅ ମାନସିଂହ ।

ତମେତ କହୁଥିଲ ଧୀରାଜ ମେହେରା ଆଶା ମେହେରାର ଅସମ୍ମାନ କରିବାରୁ ତମେ ପୁଣି ତା'ପଛରେ ଛାଇ ପରି ଘୂରିଲ, ପୁଣି ତମେ ନିଜେ ତମର ସେହି ସମ୍ମାନିତ ମହିଳାଟିକୁ ଏପରି ଏକ ଘୃଣ୍ୟ କାର୍ଯ୍ୟରେ ବ୍ୟବହାର କଲ କାହିଁକି ?

: ନିରୁପାୟ ହୋଇ ସାର୍ ।

: କିପରି ?

: ସେ ସବୁ ମୁଁ କହିବି ନାହିଁ । ତେବେ ଆପଣଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେବି ।

: ହୁଁ, ମୁଁ ଦେଖୁଛି ତମେ ସହଜରେ ବଶ ମାନିବ ନାହିଁ ମାନସିଂହ । ହେଉ ମୋ ପ୍ରଶ୍ନର ଉତ୍ତର ଦିଅ । ଏକ୍ସରେ, ତମେ ଆଶା ମେହେରାଙ୍କୁ ତମ ଦଳୀୟ କାର୍ଯ୍ୟରେ କାହିଁକି ଲଗାଇଥିଲ ?

: ସେଥିପାଇଁ ତାଙ୍କୁ ଯଥେଷ୍ଟ ପାରିଶ୍ରମିକ ଦିଆ ଯାଉଥିଲା ।

: ତାଙ୍କର କ'ଣ ସେହି ପାରିଶ୍ରମିକର ଆବଶ୍ୟକତା ଥିଲା ?

: ହଁ ।

: ତମର ଦଳୀୟ କାର୍ଯ୍ୟରେ ଆଶା ମେହେରାଙ୍କର କ'ଣ ଭୂମିକା ଥିଲା ?

: ଅତି ସାମାନ୍ୟ । ଧୀରାଜ ମେହେରା ଯେଉଁ ସାଉଣ୍ଡ ପ୍ରୁଫ୍ଡ଼ ଗ୍ଲାସ ଚେମ୍ବର କରିଥିଲେ, ତାହା ଭିତରେ ଯାହା କଥାବାର୍ତ୍ତା ହେଉଥିଲେ ସେଇ କଥାବାର୍ତ୍ତା ସବୁ ଆଶା ମେହେରାଙ୍କ ଘରେ ଟେପ୍ ହେଉଥିଲା ଏବଂ ସେଇ ଟେପ୍‌ଟି ଆଣି ସେ ମୋତେ ଗ୍ରେଟ୍‌ଇଷ୍ଟର୍ଣ୍ଣ ହୋଟେଲରେ ହସ୍ତାନ୍ତର କରୁଥିଲା ।

: ଧୀରାଜ ମେହେରାଙ୍କ ଗ୍ଲାସ ଚେମ୍ବରରୁ ମାଇକ୍ ଖଞ୍ଜି ଆଶା ମେହେରାଙ୍କ ଘରେ ଟେପ୍ କରିବାର ବ୍ୟବସ୍ଥା କିଏ କରିଥିଲା ?

: ମୋ ବସ୍‌ଙ୍କ ନିର୍ଦ୍ଦେଶରେ ମୁଁ କରିଥିଲି ସାର୍ ।

: କିନ୍ତୁ ଆଶା ମେହେରା ନିଶ୍ଚୟ ଜାଣିଥିଲେ ସେ ଯାହା କରୁଛନ୍ତି ତାଙ୍କ ସ୍ୱାମୀଙ୍କ ବିରୁଦ୍ଧରେ କରୁଛନ୍ତି ଏବଂ ତଦ୍ୱାରା ତାଙ୍କ ସ୍ୱାମୀଙ୍କର କ୍ଷତି ହୋଇପାରେ ।

: ଆଶା ଜାଣିଲେ ବି ଏହା କରିବାକୁ ବାଧ୍ୟ ହୋଇଥିଲା ।

କାରଣ ତା'ର ଟଙ୍କାର ଦରକାର ଥିଲା ଏବଂ ତା' ଅଭାବ ଧୀରାଜ ମେହେରା ପୂରଣ କରୁ ନଥିଲେ ।

: ହଁ, ମୁଁ ଶୁଣିଥିଲି ଆଶା ମେହେରାଙ୍କୁ ଧୀରାଜ ମେହେରା ଡାଇଭୋର୍ସ କରିଥିଲେ ?

: ରାଇଟ୍ ସାର୍ ।

: ପୁଣି ତାଙ୍କୁ ଘରକୁ ଆଣିଲେ କାହିଁକି ?

: ଲୋକ ଅପବାଦରୁ ବଞ୍ଚିବା ପାଇଁ ।

: କିପରି ?

: ଆଶା ଧୀରାଜ ମେହେରାଙ୍କ ପ୍ରଦତ୍ତ ସମସ୍ତ ଟଙ୍କା ନିଃଶେଷ କରି ସାରି ଯେତେବେଳେ ନିଃସ୍ୱ ହୋଇଗଲା ସେତେବେଳେ ସେ ଯାଇ ଧୀରାଜ ମେହେରାଙ୍କ ବନ୍ଧୁ ବାନ୍ଧବଙ୍କ ପାଖରେ ହାତ ପତେଇଲା ।

: ହୁଁ, ଆଚ୍ଛା ମାନସିଂହ ! ମୁଁ ଶୁଣିଛି ତମ ମୁହଁର ଏଇ ପୋଡ଼ା ଦାଗ ଓ କପାଳର ଏହି ବିରାଟ କ୍ଷତ ଚିହ୍ନ ଆଶା ମେହେରାଙ୍କ ପାଇଁ ହୋଇଛି ।

: ଆପଣ ଠିକ୍ କହିଛନ୍ତି ସାର୍ ।

: ସେଦିନର ଘଟଣାଟା କହିବ ?

: ନ କହିବାର କ'ଣ ଅଛି ? ମୁଁ ତ ଆଗରୁ କହିଛି ଆଶାକୁ ମୁଁ ଭଲ ପାଉଥିଲି । ଦିନେ ଏକ ଅସଂଯତ ଅବସ୍ଥାରେ ଧୀରାଜ ମେହେରା ଆମକୁ ଦେଖିଲେ । ସେ ବୋଧହୁଏ ଆଗରୁ ପ୍ରସ୍ତୁତ ହୋଇ ଆସିଥିଲେ । ବାଁ ହାତରେ ଏସିଡ୍ ବୋତଲ ଏବଂ ଡାହାଣ ହାତରେ ଗୋଟାଏ ଲୁହା ରଡ଼ ଧରି । ମୁଁ ଆଶାକୁ ବଞ୍ଚାଇବାକୁ ଯାଇ ଦୁଇଟି ଯାକ ମୋ ଉପରେ ପ୍ରୟୋଗ ହୋଇଥିଲା ।

: ବୁଝିଲି, ଏଥର ସ୍ୱର୍ଣ୍ଣମୟୂରୀ ସମ୍ବାଦ କିଛି କୁହ ।

: ସ୍ୱର୍ଣ୍ଣମୟୂରୀ ସମ୍ବାଦ ମୋ ପାଖରେ ଆଉ କିଛି ନାହିଁ ସାର୍ ! ମୋ ହିସାବ ଅନୁସାରେ ଏହା ମଧ୍ୟରେ ସ୍ୱର୍ଣ୍ଣମୟୂରୀ ଆକାଶ ମାର୍ଗରେ ବିଦେଶ ଯାତ୍ରା ଆରମ୍ଭ କରି ସାରିଥିବ ।

: ବିଦେଶ ଯାତ୍ରା କହିଲେ, କେଉଁ ଦେଶ କଥା ତୁମେ କହୁଛ ?

: ଆମେରିକା ।

: ସ୍ୱର୍ଣ୍ଣମୟୂରୀକୁ ତମ ବସ୍ ଆମେରିକା ପଠାଇ ଦେଇଛନ୍ତି ?

: ସେହିଭଳି କଥା ଥିଲା ସାର୍ । ରାଜେଶ କାଲି ରାତିରେ ସ୍ୱର୍ଣ୍ଣମୟୂରୀ ହସ୍ତାନ୍ତର କରି ଆସିଥିଲା । ତେଣୁ ନିୟମ ମାଫିକ୍ ସେ ଆଜି ସକାଳୁ ଯାତ୍ରା ଆରମ୍ଭ କରି ଦେଇଥିବ ।

: ବୁଝିଲି । ଆଚ୍ଛା ମାନସିଂହ ! ତମେ ଯେଉଁଦିନ ହୋଟେଲ ଇଣ୍ଟର ନାସନାଲକୁ ଯାଇଥିଲ, ଶର୍ମାକୁ ଖୁଣ୍ କରି ଫେରି ଆସିଲ, ସେଦିନ ତୁମେ ହୋଟେଲରେ କିଛି ହରେଇ ଆସିଥିଲ କି ?

: ମାନେ ?

: ଏଇ ଧର ତମର କିଛି ମୂଲ୍ୟବାନ ପଦାର୍ଥ କିମ୍ବା କିଛି ଦାମୀ ଡକୋମେଣ୍ଟ ?

: ହଁ ସାର୍ । ମୋ ଗଳାର ଗୋଟିଏ ଲକେଟ୍ ଆଉ ପକେଟ୍‌ର ଗୋଟାଏ ଚିଠି ହରେଇଥିଲି ।

: ଆଚ୍ଛା ସେଇ ଶର୍ମା ଲୋକଟି କିଏ ?

: ସେ ଜଣେ ଆମ ଲାଇନ୍‌ର ଲୋକ ।

: ତା'ସହିତ ତମର ପୂର୍ବରୁ ପରିଚୟ ଥିଲା ?

: ଥିଲା ସାର୍ !

: ତଥାପି ତୁମେ ତାକୁ ଖୁଣ୍ କଲ ?

: ଆମ ଲାଇନ୍ ସେଇଆ ସାର୍ । ବସ୍‌ର ଆଦେଶ ପାଳନ କରିବା ଆମର ଧର୍ମ । ନହେଲେ ନିଜର ପ୍ରାଣ ଦେବାକୁ ହୁଏ ।

: ତମ ବସ୍ ସମ୍ବନ୍ଧରେ କିଛି କହିବ ନାହିଁ ।

: ଥରେ ତ ନା କହିଛି ସାର୍ ।

: କିନ୍ତୁ ମାନସିଂହ ତମେ ହୁଏତ ଜାଣି ନାହଁ, ତମର ବସ୍ ଏବଂ ତମର ସମସ୍ତ ଗ୍ୟାଙ୍ଗ୍ ଏଠାକୁ ଧରାହୋଇ ଆସିବେ ।

: ଅସମ୍ଭବ ସାର୍ । ଆପଣ ମୋତେ ମିଛ କଥା କହି ଠକନ୍ତୁ ନାହିଁ ।

: ତମେ ଜାଣି ନାହଁ ମାନସିଂହ, ତମେ କାଲି ରାତିରେ ଆଶା ମେହେରା ସାଙ୍ଗରେ ଗ୍ରେଟ ଇଷ୍ଟର୍ଣ୍ଣ ହୋଟେଲରେ ଆରାମରେ ଥିଲାବେଳେ ଅନେକ ଘଟଣା ଘଟି ଯାଇଛି । ଯେଉଁ ଘଟଣା ଗୁଡ଼ିକ...

ହଠାତ୍ ଘର ଭିତରେ ଜଣେ କନେଷ୍ଟବଳ ପଶି ସମ୍ବାଦ ଦେଲା ଯେ ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀ ବିଜୟ ହାସଲ କରି ସଦଳବଳେ ଫେରି ଆସିଛନ୍ତି ।

ମୃଗାଙ୍କ ଚୌଧୁରୀଙ୍କ କଥା ଅସମାପ୍ତ ରହିଗଲା । ସେ ମାନସିଂହକୁ ସେଠାରୁ ଲକ୍‌ଅପ୍‌କୁ ପଠାଇ ଦେବାର ନିର୍ଦ୍ଦେଶ ଦେଇ ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀଙ୍କୁ ସଙ୍ଗେ ସଙ୍ଗେ ଭିତରକୁ ପଠାଇ ଦେବା ପାଇଁ କହିଲେ ।

କନେଷ୍ଟବଳଟି ବାହାରି ଚାଲିଗଲା ।

ଅଳ୍ପ ସମୟ ପରେ ଘରେ ପ୍ରବେଶ କଲେ ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀ ଏବଂ ତାଙ୍କ ପଛେ ପଛେ ରାଜେଶ ।

ଦୁହେଁ କ୍ଷତ-ବିକ୍ଷତ । ରକ୍ତାକ୍ତ ।

ମୃଗାଙ୍କ ଚୌଧୁରୀ ଉଠି ଠିଆ ହୋଇ ପଡ଼ିଲେ ।

ଇନିସ୍‌ପେକ୍ଟର ବରଦା ଚକ୍ରବର୍ତ୍ତୀ କହିଲେ : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ସାର୍ । ଆମର କ୍ଷତ ସେପରି କିଛି ଗଭୀର ହୋଇ ନାହିଁ । ସେ ରାଜେଶ ଆଡ଼େ ଆଙ୍ଗୁଳି ଦେଖାଇ କହିଲେ, ଏଇ ହେଉଛନ୍ତି ମିଷ୍ଟର ରାଜେଶ । ଇଏ ଏହି ସ୍ୱର୍ଣ୍ଣମୟୂରୀ ନାଟକର ହିରୋ ଏବଂ ଏହାଙ୍କ ସହଯୋଗରେ ମୁଁ ଆଜି ଦୁର୍ଦ୍ଦାନ୍ତ ଏକ କୁଖ୍ୟାତ ଗ୍ୟାଙ୍ଗକୁ ଧରିବାରେ ସଫଳ ହୋଇଛି ।

: ସେମାନେ କ'ଣ ସଦଳବଳେ ଆରେଷ୍ଟ୍ ହୋଇଛନ୍ତି ? ମୃଗାଙ୍କ ଚୌଧୁରୀ ପଚାରିଲେ ।

ସଦଳବଳେ ମାନେ, ଆମେ ମୋଟରେ ସାତଜଣଙ୍କୁ ଆରେଷ୍ଟ୍ କରିଛୁ । ତା' ଭିତରେ ଦୁଇଜଣ ଯୁବତୀ ଅଛନ୍ତି ।

: ସେମାନଙ୍କ ସର୍ଦ୍ଦାର ?

: ମିଷ୍ଟର ରାଜେଶଙ୍କ କହିବା ଅନୁସାରେ ଆରେଷ୍ଟ୍ ହୋଇଛନ୍ତି ।

: ସେ ତାଙ୍କୁ ଚିହ୍ନନ୍ତି ?

: ନା, ତେବେ ମିଷ୍ଟର ରାଜେଶଙ୍କ ବସ୍ ଅର୍ଥାତ୍ ଧୀରାଜ ମେହେରା ଏଇ ସର୍ଦ୍ଦାରଙ୍କ ଫଟୋ ସହିତ ରାଜେଶଙ୍କର ପରିଚୟ କରାଇ ଦେଇଥିଲେ । ସେହି ସୂତ୍ରରୁ...

ଏଥର ମୃଗାଙ୍କ ଚୌଧୁରୀଙ୍କ ଫୋନ୍‌ଟା ବାଜି ଉଠିଲା । ସେ ରିସିଭର ଉଠାଇ କହିଲେ : ହ୍ୟାଲୋ ?

ଅପର ପ୍ରାନ୍ତରୁ ଯାହା ବାର୍ତ୍ତା ଆସିଲା, ମୃଗାଙ୍କ ଚୌଧୁରୀ ତାହା ଅତ୍ୟନ୍ତ ଉଦ୍‌ଗ୍ରୀବ ହୋଇ ଶୁଣୁଥିଲା ପରି ମନେ ହେଲା । ମିନିଟ୍‌କ ପରେ ସଙ୍ଗେ ସଙ୍ଗେ ସେ ଫୋନ୍‌ଟା ରଖିଦେଇ କହିଲେ : ବର୍ତ୍ତମାନ ଆମକୁ ଧୀରାଜ ମେହେରାଙ୍କ ଘରକୁ ଯିବାକୁ ହେବ । ନହେଲେ ସେ ଅଳ୍ପ ସମୟ ମଧ୍ୟରେ ବାହାରକୁ ବାହାରି ଯିବେ ବୋଲି ମନେ ହେଉଛି ।

ମୃଗାଙ୍କ ଚୌଧୁରୀ ଉଠି ଠିଆ ହେଲେ ।

ବରଦା ଚକ୍ରବର୍ତ୍ତୀ କହିଲେ : ସାର୍ ! ମିଷ୍ଟର ରାଜେଶଙ୍କୁ ସାଙ୍ଗରେ ନିଅନ୍ତୁ । ସେ ସେଠାକାର ସବୁ ଖବର ଜାଣନ୍ତି । ଏହା ଭିତରେ ଅସଲ ସ୍ୱର୍ଣ୍ଣମୟୂରୀର କିଛି ଖବର ମିଳିଛି ?

: ନା, ଅସଲ ସ୍ୱର୍ଣ୍ଣମୟୂରୀ ଯେ ଧୀରାଜ ମେହେରାଙ୍କ ତତ୍ତ୍ୱାବଧାନରେ ଅଛି, ଏହା ନିଃସନ୍ଦେହ । ବର୍ତ୍ତମାନ ଆମକୁ ଧୀରାଜ ମେହେରାଙ୍କ ସହ ସ୍ୱର୍ଣ୍ଣମୟୂରୀକୁ ଆବିଷ୍କାର କରିବାକୁ ହେବ ।

ମୃଗାଙ୍କ ଚୌଧୁରୀଙ୍କ ସହ ଇନିସ୍‌ପେକ୍ଟର ସାଜାଦ୍, ଇନିସ୍‌ପେକ୍ଟର ଚକ୍ରବର୍ତ୍ତୀ ଏବଂ ମିଷ୍ଟର ରାଜେଶ .ଗୋଟିଏ ଗାଡ଼ିରେ ବସିଲେ ।

ତାଙ୍କ ପଛେ ପଛେ ଗୋଟିଏ ସଶସ୍ତ୍ର ପୋଲିସ୍‌ଭ୍ୟାନ୍ ଚାଲିଲା ।

ସେମାନେ ଯାଇ ଧୀରାଜ ମେହେରାଙ୍କ ଘର ସାମ୍ନାରେ ଓହ୍ଲାଇଲେ । ଇନ୍‌ଫରମର୍ ଖବର ଦେଲା ଯେ, ଧୀରାଜ ମେହେରା ତାଙ୍କ ଗ୍ଲାସ ଚେମ୍ବରରେ ବସି କାହାକୁ ଫୋନ୍ କରୁଛନ୍ତି ।

ପୋଲିସ୍ ବାହିନୀ ସଦଳବଳେ ଧୀରାଜ ମେହେରାଙ୍କ ଗ୍ଲାସ ଚେମ୍ବର ଆଡ଼କୁ ଆଗେଇ ଗଲେ ।

ଧୀରାଜ ମେହେରା ଗ୍ଲାସ ଚେମ୍ବର ଭିତରୁ ସମସ୍ତଙ୍କୁ ଦେଖି ପାରୁଥିଲେ ।

ପୋଲିସ ବାହିନୀ ଧୀରେ ଧୀରେ ଆଗେଇ ଯାଉଥିଲେ ।

ଦୂରତ୍ୱ ଆଉ ଅଳ୍ପ ।

ସାମନାରେ ମୃଗାଙ୍କ ଚୌଧୁରୀ । ତାଙ୍କ ପଛକୁ ଇନିସ୍‌ପେକ୍ଟର ସାଜାଦ୍, ତାଙ୍କ ପଛକୁ ରକ୍ତାକ୍ତ ମିଷ୍ଟର ରାଜେଶ, ତାଙ୍କ ପଛକୁ...

ହଠାତ୍ ଗୋଟିଏ କାନଫଟା ଶବ୍ଦ ହେଲା ।

ପର ମୁହୂର୍ତ୍ତରେ ଦେଖାଗଲା ମୃଗାଙ୍କ ଚୌଧୁରୀ ଦଉଡ଼ି ଧୀରାଜ ମେହେରାଙ୍କ ଗ୍ଲାସ ଚେମ୍ବର ଭିତରେ ପଶୁଛନ୍ତି । କିନ୍ତୁ କିଛି ଲାଭ ହେଲା ନାହିଁ, ସେତେବେଳକୁ ଧୀରାଜ ମେହେରାଙ୍କ ମୁଣ୍ଡଟା ଟେବୁଲ ଉପରେ ଲୋଟି ଯାଇଥିଲା ଏବଂ ରକ୍ତ ସ୍ରୋତ ବହି ଚାଲିଥିଲା ।

ଧୀରାଜ ମେହେରା ନିଜ ପାଟି ଭିତରେ ରିଭଲଭର ଭର୍ତ୍ତିକରି ଟ୍ରିଗାର ଟିପିଥିଲେ । ତେଣୁ ତାଙ୍କ ଠାରୁ ପଦଟିଏ କଥା ଶୁଣିବାର ବି ଅବକାଶ ନଥିଲା ।

ସମସ୍ତେ ଧୀରାଜ ମେହେରାଙ୍କ ଚେମ୍ବରରେ ପଶି ସ୍ତବ୍ଧ ହୋଇ ଯାଇଥିଲେ ।

ଧୀରାଜ ମେହେରାଙ୍କ ମୁଣ୍ଡଟା ଟେବୁଲ ଉପରେ ନଇଁ ପଡ଼ିଥିଲା । ଡାହାଣ ହାତଟା ରିଭଲଭର ସହ ପାଟି ଭିତରେ ରହିଯାଇଥିଲା । ବାଁ ହାତରେ ସେ ଟେଲିଫୋନ୍‌ଟାକୁ ଜାକି ଧରିଥିଲେ ।

ଟେବୁଲ ଉପରେ କାଗଜ ପତ୍ର କିଛି ନଥିଲା । ଚେମ୍ବରଟି ସମ୍ପୂର୍ଣ୍ଣ କାଚ କାନ୍ଥ ଦ୍ୱାରା ନିର୍ମିତ ହୋଇଥିଲା । ଘରଟି ଛୋଟ । ଘର ଭିତରେ ଗୋଟିଏ ଟେବୁଲ, ଦୁଇଟି ଚେଆର୍ ଓ ଟେବୁଲ ଉପରେ ଗୋଟିଏ ଟେଲିଫୋନ୍ ଛଡ଼ା ଆଉ କିଛି ନଥିଲା ।

ମୃଗାଙ୍କ ଚୌଧୁରୀ ଘରର ଚାରିଆଡ଼େ ଥରେ ଆଖି ବୁଲେଇ ନେଇ ରାଜେଶ ଆଡ଼େ ସ୍ଥିର ନେତ୍ରରେ କିଛି ସମୟ ଅନାଇ ରହିଲେ ।

ତା'ପରେ ଧୀରେ ଧୀରେ କହିଲେ : ମିଷ୍ଟର ରାଜେଶ ! ଏହା ପରେ ଆମର କର୍ତ୍ତବ୍ୟ ?

ରାଜେଶ ଚାହାଣି ନତ କରି ସଂଯତ ସ୍ୱରରେ କହିଲା : ଆଦେଶ କରନ୍ତୁ ସାର୍ !

: ଧୀରାଜ ମେହେରା ତ ଆମକୁ ଫାଙ୍କି ଦେଇ ଚାଲିଗଲେ । କିନ୍ତୁ ସ୍ୱର୍ଣ୍ଣମୟୂରୀ ?

ମୁଁ ବି ସେଇକଥା ଚିନ୍ତା କରୁଚି ସାର୍ । ଆପଣ ଯଦି ମୋତେ ଅନୁମତି ଦିଅନ୍ତି, ତେବେ ମୁଁ ଏହି ଟେବୁଲର ଡ୍ରୟାର ଓ ମିଷ୍ଟର ମେହେରାଙ୍କ ପକେଟ ଟିକିଏ ଦେଖନ୍ତି ।

ମୃଗାଙ୍କ ଚୌଧୁରୀ ଅନୁମତି ଦେଲେ ।

ରାଜେଶ ଡ୍ରୟାର ଖୋଲି, କେବଳ ମେହେରା ମାଇନିଂ କର୍‌ପୋରେସନ୍‌ର ହିସାବ ଖାତା ଛଡ଼ା ଆଉ କିଛି ପାଇଲା ନାହିଁ । ତା'ପରେ ଧୀରାଜ ମେହେରାଙ୍କ କୋଟ୍ ପକେଟରେ ହାତ ପୂରାଇ, କେତେକ ଚିରା କାଗଜ ସହ ଗୋଟିଏ ଛୋଟ ସ୍କ୍ରୁ ଡ୍ରାଇଭର ପାଇଲା ।

ରାଜେଶ ଆନନ୍ଦରେ ଚିତ୍କାର କରି ଉଠିଲା । ପାଇଛି ସାର୍ । ମୋ ଅନୁମାନ ଯଦି ସତ୍ୟ ହୋଇଥାଏ...

ରାଜେଶ ସମସ୍ତଙ୍କୁ ଚକିତ କରି ଧୀରାଜ ମେହେରାଙ୍କ କୋଳରୁ ଟେଲିଫୋନ୍‌ଟା ଟାଣି ନେଇଗଲା ଏବଂ ସଙ୍ଗେ ସଙ୍ଗେ ଟେଲିଫୋନ୍ ଯନ୍ତ୍ରଟାକୁ ଓଲଟାଇ ପକାଇ ସେହି ଛୋଟ ସ୍କ୍ରୁ ଡ୍ରାଇଭରଟିରେ ଟେଲିଫୋନ୍ ଯନ୍ତ୍ରର ତଳ ପ୍ଲେଟଟା ଖୋଲିବାରେ ଲାଗିଗଲା । ସେହି ଟେଲିଫୋନ୍ ଯନ୍ତ୍ରଟାରୁ ପ୍ଲେଟ ଖୋଲିଲା ବେଳେ ରାଜେଶର ଦେହ ଉତ୍ତେଜନାରେ ଥରୁଥିଲା । କିଏ ଜାଣେ ଭାଗ୍ୟ ତା'ର ପ୍ରସନ୍ନ ହେବ କି ନାହିଁ ? ସେ'ତ କେବଳ ଗୋଟାଏ ଚାନ୍‌ସ ନେଉଛି ।

ହୁର୍‌ର୍‌ରେ... ରାଜେଶ ଆନନ୍ଦରେ ନାଚି ଉଠିଲା । ତା' ଅନୁମାନ ସତ୍ୟ । ଧୀରାଜ ମେହେରା ଟେଲିଫୋନ୍ ଯନ୍ତ୍ର ଭିତରେ ଅସଲି ସ୍ୱର୍ଣ୍ଣମୟୂରୀଟି ଲୁଚାଇ ରଖିଛନ୍ତି ।

ମୃଗାଙ୍କ ଚୌଧୁରୀ ନଇଁପଡ଼ି ଟେଲିଫୋନ୍ ଯନ୍ତ୍ରଟି ଦେଖିଲେ । ଭିତରେ ସେହି ପିତଳର ବେଲ୍ ଦୁଇଟି ନାହିଁ । ବଦଳରେ ସେହି ଫାଙ୍କା ସ୍ଥାନଟିରେ ଆରାମରେ ସ୍ୱର୍ଣ୍ଣମୟୂରୀଟି ବସି ରହିଛି ।

ସେ ରାଜେଶ ଆଡ଼କୁ ପ୍ରଶ୍ନବାଚୀ ନୟନରେ ଚାହିଁ ପଚାରିଲେ : ଆପଣ କ'ଣ ପୂର୍ବରୁ ଏଠାରେ ସ୍ୱର୍ଣ୍ଣମୟୂରୀ ଥିବା ସମ୍ବାଦ ଜାଣିଥିଲେ ?

: ନା ସାର୍ । ତେବେ ଏ କେତେଦିନରେ ଧୀରାଜ ମେହେରାଙ୍କ ଗତିବିଧି ସମ୍ପର୍କରେ ମୋର ସାମାନ୍ୟ ଜ୍ଞାନ ହୋଇଥିଲା । ଏ ଘରେ ପଶିବାକ୍ଷଣି, ଧୀରାଜ ମେହେରା ମୃତ୍ୟୁ ପରେ ବି ଯେପରି ଭାବରେ ବାଁ ହାତରେ ଟେଲିଫୋନ୍‌ଟାକୁ ଜାବୁଡ଼ି ଧରିଥିଲେ, ତାହା ଦେଖି ହଠାତ୍ ମୋ ମନରେ ଷ୍ଟ୍ରାଇକ୍ କରିଥିଲା ଯେ, ହୁଏତ ଏଇ ଫୋନ୍ ଭିତରେ... ତା'ପରେ ସାର୍ ତାଙ୍କ ପକେଟରୁ ଏଇ ସ୍କ୍ରୁ-ଡ୍ରାଇଭରଟି ପାଇବା ପରେ ମୋ ସନ୍ଦେହ ଆହୁରି ଦୃଢ଼ ହୋଇ ଉଠିଥିଲା ।

ମୃଗାଙ୍କ ଚୌଧୁରୀ ରାଜେଶ ସହିତ କରମର୍ଦ୍ଦନ କରି କହିଲେ, ଆପଣ ଏହି ଦେଶଦ୍ରୋହୀ ମାନଙ୍କୁ ଧରାଇ ଦେବାରେ ଆମକୁ ଯଥେଷ୍ଟ ସାହାଯ୍ୟ କରିଛନ୍ତି ମିଷ୍ଟର ରାଜେଶ । ତେଣୁ ଆପଣଙ୍କ ମୁକ୍ତି ପାଇଁ ମୁଁ ସୁପାରିଶ୍ କରିବି ।

ରାଜେଶ କୃତଜ୍ଞତା ଜଣାଇ ମୁଣ୍ଡ ନୁଆଁଇଲା ।

ରଚନାକାଳ : ୧୯୭୪



ବା ଲିଗଞ୍ଜ ସାର୍କୁଲାର ରୋଡ଼ ଉପରେ ଗୋଟିଏ ଦୋତାଲା ଘର ସାମ୍ନାରେ ଟ୍ୟାକ୍ସିଟା ଠିଆ ହେଲା । ଟ୍ୟାକ୍ସିର ଆରୋହୀ ଜଣକ ଟ୍ୟାକ୍ସିରୁ ଓହ୍ଲାଇ ଯାଇ ଘରର ନମ୍ବରଟା ଦେଖିଲେ । ତା'ପରେ ଟ୍ୟାକ୍ସି ପାଖକୁ ଆଗେଇ ଯାଇ ପଛ ସିଟ୍ରୁ ଗୋଟିଏ ଚମଡ଼ା ସୁଟ୍‌କେଶ୍ ଟାଣି ତଳେ ଥୋଇଲେ । ଟ୍ୟାକ୍ସିବାଲାର ଭଡ଼ା ମେଣ୍ଟେଇ ଦେଲେ । ବାଁ ହାତରେ ଚମଡ଼ା ସୁଟ୍‌କେଶଟି ଏବଂ ଡାହାଣ ହାତରେ ଆଟାଚି କେସ୍‌ଟି ଧରି ପୁଣି ଯାଇ ଘର ସାମ୍ନାରେ ଠିଆ ହେଲେ ।

ସଦର ଦରଜା ଭିତରୁ ବନ୍ଦ ଥିଲା । କଲିଂ ବେଲ୍‌ଟିଏ ଆଖିରେ ପଡ଼ିଲା । ଆଗନ୍ତୁକ ଏପାଖ ସେପାଖକୁ ଥରେ ଚାହିଁ ଆଟାଚି କେସ୍‌ଟି ତଳେ ଥୋଇ କଲିଂ ବେଲ୍‌ଟାର ବୋତାମ ଟିପିଲେ ।

ସ୍ଥିର ହୋଇ ଠିଆ ହେଲେ କିଛି ସମୟ ।

କିନ୍ତୁ ଦରଜା କେହି ଖୋଲିଲେ ନାହିଁ କିମ୍ବା ଭିତରୁ କୌଣସି ପ୍ରକାର ଶବ୍ଦ ଶୁଭିଲା ନାହିଁ ।

ପୁଣି ଥରେ କଲିଂ ବେଲ୍‌ଟା ଟିପିଲେ ।

ଆହୁରି କିଛି ସମୟ ଅତିବାହିତ ହୋଇଗଲା । ତଥାପି ଦରଜା ଖୋଲିଲା ନାହିଁ ।

ଆଗନ୍ତୁକ କେଇ ପାହୁଣ୍ଡ ପଛେଇ ଆସି ଦୋତାଲାକୁ ଚାହିଁଲେ । ତଳୁ ଠିଆ ହୋଇ ଦୋତାଲାର କୌଣସି ବସ୍ତୁ ତାଙ୍କ ଆଖିରେ ପଡ଼ିଲା ନାହିଁ ।

ପୁଣି ସେ ସଦର ଦରଜା ପାଖକୁ ଆଗେଇ ଗଲେ ଏବଂ ଏଥର କଲିଂବେଲ୍ ବଦଳରେ ଦରଜାଟାକୁ ଠେଲି ଦେଲେ ।

ଆଶ୍ଚର୍ଯ୍ୟ ! ଦରଜାଟା ଖୋଲିଗଲା ।

ଆଗନ୍ତୁକ ଅବିଶ୍ୱାସ୍ୟ ନୟନରେ ଘର ଭିତରକୁ ପାଦ ବଢ଼ାଇଦେଲେ । ତଳେ ପ୍ରଥମେ ଯେଉଁ ଘରେ ସେ ଯାଇ ପାଦ ଦେଲେ, ସେଇ ଘରଟା ବୋଧହୁଏ ଡ୍ରଇଂ ରୁମ୍ । ସୋଫା ସେଟ୍‌ଟିଏ ପଡ଼ିଛି । ଫ୍ଲୋର୍ ଉପରେ କାର୍ପେଟ୍ ବିଛା ହୋଇଛି । ଗୋଟିଏ କୋଣରେ ରେଡ଼ିଓଗ୍ରାମ, ତିନୋଟି ପୁସ୍ତକପୂର୍ଣ୍ଣ କାଚ ଆଲମାରୀ ।

ଆଗନ୍ତୁକ ନିଜର ସୁଟ୍‌କେଶ୍ ଏବଂ ଆଟାଚି କେସ୍‌କୁ ସୋଫା ଟେବୁଲ ଉପରେ ଥୋଇ ଘରର ଚାରିଆଡ଼କୁ ଥରେ ଚାହିଁଲେ । ଝରକାଗୁଡ଼ାକ ବନ୍ଦ । କିନ୍ତୁ...

ଡ୍ରଇଂ ରୁମ୍‌ର ବହଳ ଅନ୍ଧକାର ଏଡ଼େଇବା ପାଇଁ ଭଦ୍ରଲୋକ ଗୋଟିଏ ଝରକା ଖୋଲିଲେ । ମେଞ୍ଚାଏ ଆଲୋକ ଆସି ଡ୍ରଇଂ ରୁମ୍‌ର ଗୋଟାଏ ପାଖ ଆଲୋକିତ କରିଦେଲା ।

ଆଗନ୍ତୁକ ଘରର ତିନୋଟିଯାକ ଝରକା ଖୋଲି ଦେଇ ଯେତେବେଳେ ସଂପୂର୍ଣ୍ଣ ଆଲୋକରେ ଡ୍ରଇଂ ରୁମ୍‌ର ସ୍ୱରୂପଟା ଦେଖିଲେ, ତାଙ୍କ ମନରେ ବୋଧହୁଏ ସନ୍ଦେହ ଜନ୍ମିଲା । ସୋଫା ଉପରେ ଆଙ୍ଗୁଳି ଚଳେଇ ଦେଖିଲେ ସେପରି ମଇଳା ତ ଜମି ନାହିଁ ।

ତା'ହେଲେ ?

ସେ ମୁହୂର୍ତ୍ତେ ଚିନ୍ତା କଲେ । ତା'ପରେ ଆଗେଇ ଯାଇ ସଦର ଦରଜାଟି ଭିତରୁ ବନ୍ଦ କରିଦେଇ ପୁଣି ଡ୍ରଇଂ ରୁମ୍‌ରେ ପ୍ରବେଶ କଲେ ।

ଚାରିଆଡ଼େ ଭଲ ଭାବରେ ଆଉ ଥରେ ଆଖି ବୁଲେଇ ନେଇ ଡ୍ରଇଂ ରୁମ୍‌ରୁ ବାହାରି ଅନ୍ୟ ଘରର ସନ୍ଧାନ କଲେ ।

କିନ୍ତୁ ଡ୍ରଇଂ ରୁମ୍ ପାଖକୁ ଲାଗି ଯେଉଁ ଘରଟି ସେଇ ଘରେ ବାହାରୁ ଗୋଟାଏ ତାଲା ପଡ଼ିଛି ।

ତା' ପାଖକୁ ଆଉ ଦୁଇଟି ଘର । ଗୋଟିଏ ରୋଷେଇ ଘର, ଅନ୍ୟଟି ଖାଇବା ଘର ।

ଆଗନ୍ତୁକ ଭଦ୍ରଲୋକ ବୋଧହୁଏ ଟିକିଏ ସମସ୍ୟାରେ ପଡ଼ିଗଲେ । ତାଙ୍କ ଦେହ ମୁହଁରେ ବିଚଳିତ ଭଂଗୀ ଫୁଟି ଉଠିଲା ।

ପୁଣି ସେ ଫେରି ଆସିଲେ ଡ୍ରଇଂ ରୁମ୍‌କୁ ।

କ୍ରମଶଃ ତାଙ୍କ ମୁଖମଣ୍ଡଳରେ ଚିନ୍ତାର ରେଖା ଫୁଟି ଉଠିଥିଲା ।

ଡ୍ରଇଂ ରୁମ୍ ଦୁଆର ମୁହଁର ଡାହାଣ ପାଖକୁ ଉପରକୁ ଉଠି ଯିବାର ଶିଡ଼ି । ଆଗନ୍ତୁକ ଶିଡ଼ି ପାଖରେ ଠିଆ ହେଲେ । ବୋଧହୁଏ ଉପରକୁ ଯିବେ କି ନାହିଁ ଚିନ୍ତା କରୁଥିଲେ ।

ଏ ଘରେ ଆଉ ବୋଧହୁଏ ଅଧିକ ସମୟ ନଷ୍ଟ କରିବା ଉଚିତ ନୁହେଁ । ସେ କ୍ଷିପ୍ର ପାଦଚାଳି ଉପରକୁ ଉଠିଲେ । ଶିଡ଼ି ଯେଉଁଠି ଶେଷ ହୋଇଛି, ଶିଡ଼ି ମୁଣ୍ଡରେ ସେ ଦେଖିଲେ ଗୋଟିଏ ଶାରୀ ମରି ପଡ଼ିଛି । ଶାରୀଟା ଦେହରେ ପ୍ରଚୁର ଜନ୍ଦା ପିମ୍ପୁଡ଼ି ଘେରିଛନ୍ତି । ଠିକ୍ ଉପରକୁ ଗୋଟିଏ ଶୂନ୍ୟ ପଞ୍ଜୁରି ଝୁଲୁଛି ।

ଆଉ ଟିକିଏ ଆଗକୁ ଗୋଟାଏ ଘର । ଦୁଆରଟା ଦରମୁକୁଳା ହୋଇଛି । ଆଗନ୍ତୁକ ଜଣକ ବାହାରୁ ଠିଆ ହୋଇ ଭିତରକୁ ଚାହିଁଲେ । ଗୋଟାଏ ଖଟ ପଡ଼ିଛି । ଆଲମାରୀ, ବୁକ୍ ସେଲ୍‌ଫ ଆହୁରି ଅନେକ ଆସବାବ ପତ୍ର ।

ଧୀରେ ଧୀରେ ସେ ଘର ଭିତରକୁ ପ୍ରବେଶ କଲେ । ସୁସଜ୍ଜିତ ଘର । ଘର ଭିତରେ ତିନୋଟି ଆଲମାରୀ । ସବୁଗୁଡ଼ିକ ଖୋଲା । କାଚ ଆଲମାରୀ ଭିତରେ ଦେଶ ବିଦେଶର ନାନା ଜାତିର ଖେଳଣା ଭର୍ତ୍ତି ହୋଇଛି । ବିଚିତ୍ର ଏବଂ ବିଭିନ୍ନ ଧରଣର ଖେଳଣାରେ ଆଲମାରୀଟା ପରିପୂର୍ଣ୍ଣ ।

ଆଗନ୍ତୁକ ଘରର ଚାରିଆଡ଼େ ଥରେ ଆଖି ବୁଲେଇ ଦେଇ ପୁଣି ବାହାରକୁ ବାହାରି ଆସିଲେ ।

ଏହାପରେ ଯେଉଁ ଘରଟି, ସେ ଘରଟିର ଦରଜା ବନ୍ଦ ଥିଲା । ଆଗନ୍ତୁକ ସେହି ଦରଜାଟି ଠେଲିଦେବା କ୍ଷଣି ଖୋଲିଗଲା ।

ଏ ଘର ଭିତରେ ଗୋଟିଏ ବଡ଼ ସେକ୍ରେଟେରୀଏଟ୍ ଟେବୁଲ୍ । ଟେବୁଲ୍ ଚାରିପାଖରେ ଚାରି ପାଞ୍ଚଟି ଚେଆର । ଘରର ଅନ୍ୟ କୋଣକୁ ଗୋଟିଏ ଆରାମ ଚେଆର । ଏହାଛଡ଼ା ଦୁଇଟି ଗଡ଼ରେଜ୍ ଷ୍ଟିଲ୍ ଆଲମାରୀ । ଆଉ ଛୋଟବଡ଼ ଆସବାବପତ୍ର କିଛି ଏବଂ ଟେବୁଲ୍ ଉପରେ ଗୋଟିଏ ଟେଲିଫୋନ୍ ।

ଏହା ପରର ଘରଟା ଆଡ଼କୁ ଆଗନ୍ତୁକ ପାଦ ବଢ଼ାଇଲା ବେଳକୁ ଶୁଣିପାରିଲେ ତଳ ଦରଜାରେ କିଏ ଯେପରି ଖୁବ୍ ଜୋର୍‌ରେ କରାଘାତ କରୁଛି । ହଠାତ୍ ତାଙ୍କର ସର୍ବାଙ୍ଗରେ କିପରି ଏକ ଶିହରଣ ଖେଳିଗଲା । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ ମୁହୂର୍ତ୍ତେ ଠିଆ ହୋଇପଡ଼ିଲେ । ତା'ପରେ ଧୀରେ ଧୀରେ ଓହ୍ଲେଇ ଗଲେ ତଳକୁ ।

ହଁ, ବାହାରୁ କିଏ ଦରଜାରେ ଖୁବ୍ ଜୋର୍‌ରେ କରାଘାତ କରୁଛି ।

ଆଗନ୍ତୁକ ଅତି ସହଜ ଭଂଗୀରେ ଦରଜାଟି ଖୋଲିଦେଲେ ।

ବାହାରେ ବିଚଳିତ ଭଂଗୀରେ ଠିଆ ହୋଇଛି ଗୋଟିଏ ସୁନ୍ଦରୀ ତରୁଣୀ । ତା' ପଛକୁ ମାଲପତ୍ର ମୁଣ୍ଡେଇ ଠିଆ ହୋଇଛି ଗୋଟିଏ କୁଲି ।

ଆଗନ୍ତୁକ ତରୁଣୀଟିକୁ ହଠାତ୍ ପ୍ରଶ୍ନ କଲେ : ଆପଣଙ୍କ ନାଁ ବେଗମ ଚଉଧୁରୀ ?

ତରୁଣୀଟି ଯେପରି ପ୍ରଥମେ କିଛି ବୁଝିପାରିଲା ନାହିଁ । ଏପରି ଏକ ଅପରିଚିତ ଭଦ୍ରଲୋକଙ୍କୁ ସେ ବୋଧହୁଏ ଏଠାରେ ଆଶା କରି ନଥିଲା ।

ଆଗନ୍ତୁକ ପୁଣି ପ୍ରଶ୍ନ କଲେ : ଆପଣ ଏଲାହାବାଦରୁ ଆସିଲେ ?

: କିନ୍ତୁ... ତରୁଣୀଟି କ'ଣ କହିବାକୁ ଯାଇ କହିପାରିଲା ନାହିଁ ।

ଆଗନ୍ତୁକ ଜଣକ କହିଲେ : ମୁଁ ମଧ୍ୟ ଠିକ୍ ଆପଣଙ୍କ ଆଗେ ଆଗେ ଆସି ଏ ଘରେ ପ୍ରବେଶ କରିଛି ।

: କିନ୍ତୁ ଆପଣ, ଆପଣ କିଏ ?

: ମୁଁ ଆପଣଙ୍କର ବନ୍ଧୁ । ମୋର ମନେହେଉଛି ରମଣୀ ରଞ୍ଜନ ବାବୁ...

: ଏଁ ବାବା ନାହାନ୍ତି ? ବାବା... ବାବା... ତରୁଣୀଟି ଚିତ୍କାର କରିଉଠି ଡ୍ରଇଂ ରୁମ୍‌ର ଗୋଟିଏ ସୋଫା ଉପରେ କଚାଡ଼ି ହୋଇ ପଡ଼ିଲା ।

ଆଗନ୍ତୁକ ଜଣକ ମହା ସମସ୍ୟାରେ ପଡ଼ିଗଲେ ।

ଦୁଆର ମୁହଁରେ ଜିନିଷପତ୍ର ମୁଣ୍ଡେଇ କୁଲିଟା ଠିଆ ହୋଇଥିଲା ।

ଆଗନ୍ତୁକ ଜଣକ କୁଲି ମୁଣ୍ଡରୁ ଜିନିଷପତ୍ର ତକ ଓହ୍ଲେଇ ରଖି କୁଲିକୁ ବିଦା କରିଦେଇ ସଦର ଦରଜାଟା ଭିତରୁ ବନ୍ଦ କରିଦେଲେ ।

ଫେରି ଆସିଲେ ବେଗମ୍ ଚଉଧୁରୀ ପାଖକୁ ।

ମନେହେଲା ସେ ଚେତା ହରାଇଛି ।

ଆଗନ୍ତୁକ ଜଣକ ବିଚଳିତ ହୋଇପଡ଼ିଲେ ମୁହୂର୍ତ୍ତେ, ତା'ପରେ ବେଗମ ଚଉଧୁରୀକୁ ସେଇଠି ସେହିପରି ଅଚେତ ଅବସ୍ଥାରେ ଛାଡ଼ିଦେଇ ସେ ଛୁଟିଗଲେ ଦୋତାଲା ଉପରକୁ, ଗୃହସ୍ୱାମୀ ରମଣୀ ରଞ୍ଜନ ଚଉଧୁରୀଙ୍କୁ ଆବିଷ୍କାର କରିବା ପାଇଁ ।

ଦୋତାଲାର ଦୁଇଟା ଘର ଆଗରୁ ଦେଖା ହୋଇସାରିଥିଲା । ତୃତୀୟ ଘରଟା ଭିତରେ ପ୍ରବେଶ କରି ଦେଖିଲେ ସେଇଟା ମଧ୍ୟ ଗୋଟାଏ ବେଡ୍‌ରୁମ୍ । କିନ୍ତୁ ଯେପରି ବହୁତ ଦିନରୁ ଅବ୍ୟବହୃତ ।

ତା'ପରେ ଚତୁର୍ଥ ଘରର କବାଟଟା ଖୋଲିଦେଇ ଆଗନ୍ତୁକ ଜଣକ ନିଜେ ଚିତ୍କାର କରିଉଠିଲେ ।

ଫ୍ଲୋର୍ ଉପରେ ଏକ ବିଭତ୍ସ ମୃତ ଦେହ ।

ରକ୍ତର ଛିଟା ଦିଆଲରେ, ଫ୍ଲୋର୍‌ରେ, ଚାରିଆଡ଼େ ।

ତା'ହେଲେ ରମଣୀ ରଞ୍ଜନ ଚଉଧୁରୀ ଆତତାୟୀ ହାତରେ ନିହତ ହୋଇଛନ୍ତି । ଆଗନ୍ତୁକଙ୍କର ସମସ୍ତ ଉତ୍ସାହ ବୋଧହୁଏ ଦବିଗଲା । ଖୋଲିଥିବା ଦରଜାଟି ଧୀରେ ସେ ବନ୍ଦ କରି ପାଦେ ପାଦେ କରି ପଛକୁ ଫେରି ଆସିଲେ ।

ଏ କ୍ଷେତ୍ରରେ କ'ଣ ତାଙ୍କର କର୍ତ୍ତବ୍ୟ ?

ବୋଧହୁଏ ସେ ଟିକିଏ ବିଚଳିତ ହୋଇ ପଡ଼ିଥିଲେ । ପାଦ ଦୁଇଟା ଇତସ୍ତତଃ ହୋଇ ପଡୁଥିଲା ।

ସେ ଓହ୍ଲେଇ ଯାଉଥିଲେ ତଳକୁ ।

ଶିଡ଼ି ମୁଣ୍ଡର ମୃତ ଶାରୀଟାକୁ ଦେଖି ମୁହୂର୍ତ୍ତେ ଠିଆ ହେଲେ । ଖାଲି ପଞ୍ଜୁରିଟାକୁ ଚାହିଁଲେ ।

ମୃଦୁ ପବନରେ ପଞ୍ଜୁରିଟା ଧୀରେ ଧୀରେ ଦୋହଲୁଛି ।

ଆଗନ୍ତୁକ ପୁଣି ଲେଉଟିଲେ ପଛକୁ । ଦ୍ୱିତୀୟ ଘରଟାକୁ ଥରେ ଭଲ କରି ଚାହିଁଲେ । ସେହି ବିରାଟ ସେକ୍ରେଟେରୀଏଟ୍ ଟେବୁଲ୍ ଉପରେ ସାମାନ୍ୟ କିଛି ଜିନିଷପତ୍ର । ଗୋଟାଏ ବ୍ଲଟିଂପ୍ୟାଡ୍, ଗୋଟାଏ ଡେଟ୍‌ପ୍ୟାଡ୍, ଗୋଟାଏ କଲମ ଷ୍ଟାଣ୍ଡ, ଗୋଟାଏ ଆସ୍‌ଟ୍ରେ ଏବଂ...

ହଠାତ୍ ଟେଲିଫୋନ୍‌ଟା ବାଜି ଉଠିଲା ।

ଆଗନ୍ତୁକ ମୁହୂର୍ତ୍ତେ ସ୍ତବ୍ଧ ହୋଇ ଠିଆ ହୋଇପଡ଼ିଲେ । ତା'ପରେ ରିସିଭରଟା ଉଠାଇ କାନରେ ଦେଇ କହିଲେ : ହ୍ୟାଲୋ !

ଅପର ପ୍ରାନ୍ତରୁ ଗୋଟିଏ ମଧୁର ନାରୀ କଣ୍ଠର ସ୍ୱର ଶୁଣାଗଲା : କିଏ କହୁଚ ?

: ମୁଁ, ମାନେ ଆଗନ୍ତୁକ କ'ଣ କହିବା ପୂର୍ବରୁ ଅପରପ୍ରାନ୍ତରୁ ଟେଲିଫୋନ୍‌କାରିଣୀଙ୍କ କଣ୍ଠ ପୁଣି ଶୁଣାଗଲା, ବେଗମ ଚଉଧୁରୀ...

ତା'ପରେ ଆଉ କିଛି ଶୁଣାଗଲା ନାହିଁ । ଅପର ପ୍ରାନ୍ତରେ ଯେପରି ଗୋଟାଏ କିଛି ଅଶୋଭନ କାଣ୍ଡ ଘଟିଗଲା । ଆଗନ୍ତୁକ ଜଣକ ଖାଲି ଟେଲିଫୋନ୍ ରିସିଭରଟା କଚାଡ଼ି ଦେବାର ଶବ୍ଦ ଶୁଣିଲେ ।

ଆଗନ୍ତୁକ ହ୍ୟାଲୋ, ହ୍ୟାଲୋ ଦୁଇ ଚାରିଥର ଡାକି ରିସିଭରଟା ରଖି ଦେଲେ ।

ତା'ହେଲେ ?

ବେଗମ ଚଉଧୁରୀ ସହିତ କେହି କଥା କହିବାକୁ ଚାହୁଁଥିଲା ? ସେ କିପରି ବା ଜାଣିଲା ବେଗମ ଚଉଧୁରୀ ଏଲାହାବାଦରୁ ଆସି ଗଲେଣି ?

ବୋଧହୁଏ ଆଗନ୍ତୁକ ଏଇ କଥା ମନେ ମନେ ଚିନ୍ତା କରୁଥିଲେ ।

କିନ୍ତୁ ପ୍ରକୃତରେ ବେଗମ ଚଉଧୁରୀର ଖବର କ'ଣ ? ସେ ଡ୍ରଇଂରୁମ୍‌ରେ କିପରି ଅବସ୍ଥାରେ ଅଛି ? ତା'ର ଚେତା ହେଲାଣି ନା ନାହିଁ ?

ଆଗନ୍ତୁକ ଭଦ୍ରଲୋକ ଟିକିଏ ଚଞ୍ଚଳ ହୋଇ ପଡ଼ିଲେ ।

ସେ ବୁଲିପଡ଼ିଲା ବେଳକୁ ତାଙ୍କ ଗୋଡ଼ରେ ଓୟେଷ୍ଟପେପର ବାସ୍‌କେଟ୍‌ଟା ଲାଗି ପଡ଼ିଗଲା । କେତେଖଣ୍ଡ ଚିରା କାଗଜ ପଡ଼ିଗଲା ଫ୍ଲୋର୍ ଉପରେ ।

ଆଗନ୍ତୁକ ନଇଁପଡ଼ି କାଗଜଗୁଡ଼ିକ ଉଠାଇ ଦେଖିଲେ । ଖଣ୍ଡେ ଇନ୍‌ଲାଣ୍ଡ ଲେଟର ଚିରା ହୋଇ ପଡ଼ିଛି । ଆଉ ଦି' ତିନିଖଣ୍ଡ ସ୍ଲିପ୍ ପେପର ଏବଂ ବାସ୍‌କେଟ୍‌ରେ ଗୋଟାଏ ଚିଠିକଟା ପିତଳ ଛୁରୀ ।

ଆଉ ?

ଆହୁରି ଅନେକ କଥା ଦେଖିବାକୁ ଥିଲା, ଯେପରି ଖୋଲା ଷ୍ଟିଲ୍ ଆଲମିରା ଦୁଇଟା, ଟେବୁଲ ଡ୍ରୟାରର ଆସବାବପତ୍ର...

କିନ୍ତୁ ବେଗମ ଚଉଧୁରୀର ଅବସ୍ଥା କ'ଣ ହେଲା ଦେଖିବା ଏହାଠାରୁ ବେଶି ପ୍ରୟୋଜନ !

ତା'ଠାରୁ ଆହୁରି ପ୍ରୟୋଜନୀୟ ହେଉଛି, ପୋଲିସ୍‌କୁ ସମ୍ବାଦଟା ଜଣାଇ ଦେବା ।

ଆଗନ୍ତୁକ ସଂଗେ ସଂଗେ ଟେଲିଫୋନ୍ ରିସିଭର ଉଠାଇ ଡାଏଲ୍ କଲେ ।

\+ \+ \+

ବେଗମ ଚଉଧୁରୀର ଚେତା ଫେରିଥିଲା । ସେ କିନ୍ତୁ ପ୍ରକୃତିସ୍ଥ ହୋଇପାରି ନଥିଲା । ଯେପରି ଗୋଟାଏ ଦୁଃସ୍ୱପ୍ନର ରାଜ୍ୟରେ ସେ ବିଚରଣ କରୁଛି ।

ଆଗନ୍ତୁକ ଆଡ଼କୁ ପ୍ରଶ୍ନବାଚୀ ନୟନରେ ଚାହିଁ ମଧ କିଛି ପଚାରି ପାରୁ ନଥିଲା ।

ଆଗନ୍ତୁକ କହିଲେ : ଆପଣଙ୍କର ଫୋନ୍ ଆସିଥିଲା ।

: ମୋର ଫୋନ୍ ? କିଏ ବେବି... ହଠାତ୍ ପୁଣି ସବୁ ଗୋଳମାଳ ହୋଇଗଲା । ବେଗମ ଚଉଧୁରୀ ଏତିକି କହି ହସି ଉଠିଲା ଜୋର୍‌ରେ । ଅର୍ଦ୍ଧପାଗଳୀଙ୍କ ପରି କହିଲା, ଆପଣ ମୋତେ...

ବାହାରେ ଗାଡ଼ି ଅଟକିବାର ଶବ୍ଦ ହେଲା ।

ଆଗନ୍ତୁକ ଉଠିଯାଇ ସଦର ଦରଜାଟା ଖୋଲିଦେଲେ । ତାଙ୍କ ଅନୁମାନ ଠିକ୍ । ଗୋଟିଏ ପୋଲିସ୍ ଭ୍ୟାନ୍ । ପୋଲିସ୍ ଅଫିସର ସଦଳବଳେ ଆଗେଇ ଆସୁଛନ୍ତି ତାଙ୍କ ଆଡ଼େ ।

ପୋଲିସ୍ ଅଫିସର ଘର ଭିତରେ ପାଦ ଦେଇ କିଛି ପଚାରିବା ଆଗରୁ ଆଗନ୍ତୁକ ଜଣକ କହିଲେ : ମୋ ନାଁ ସତ୍ୟବ୍ରତ ମହାପାତ୍ର । ରମଣୀ ରଞ୍ଜନ ଚଉଧୁରୀଙ୍କ ମୃତ୍ୟୁ ସମ୍ବାଦ ମୁଁ ଆପଣଙ୍କୁ ଫୋନ୍‌ରେ ଜଣାଇଥିଲି । ଆଉ ଏ ହେଉଛନ୍ତି ବେଗମ ଚଉଧୁରୀ । ରମଣୀ ରଞ୍ଜନ ଚଉଧୁରୀଙ୍କର ଏକମାତ୍ର ସନ୍ତାନ । ସେ ମାତ୍ର ଅଧଘଣ୍ଟା ହେବ ଏଲାହାବାଦରୁ ଫେରିଲେ । ବାପାଙ୍କ ମୃତ୍ୟୁ ସମ୍ବାଦ ଶୁଣି ଏଇଠି ଅଚେତ ହୋଇ ପଡ଼ିଛନ୍ତି ।

ପୋଲିସ୍ ଅଫିସର ସତ୍ୟବ୍ରତ ମହାପାତ୍ରଙ୍କ କଥା ଶୁଣି ସାରି କହିଲେ : ଆପଣ ତା'ହେଲେ ଏଇ ଘରର...

: ନା ନା ନା, ମୁଁ ଏ ଘରର କେହି ନୁହେଁ । ମୁଁ ମଧ ବେଗମ ଚଉଧୁରୀଙ୍କ ଆସିବା

ପନ୍ଦର ମିନିଟ୍ ପୂର୍ବରୁ ଏଠାରେ ପହଞ୍ଚିଛି । ଏଇ ଦେଖୁନାହାନ୍ତି ମୋର ସୁଟ୍‌କେସ, ମୋର ଆଟାଚି ଏ ପର୍ଯ୍ୟନ୍ତ ଏଇଠି ପଡ଼ି ରହିଛି ।

: ଆପଣ କ'ଣ ତା'ହେଲେ ଏମାନଙ୍କର ଆତ୍ମୀୟ ? ପୋଲିସ୍ ଅଫିସର ପଚାରିଲେ ।

: ନା, ତା' ମଧ୍ୟ ନୁହେଁ, ସତ୍ୟବ୍ରତ କହିଲେ । ତେବେ ରମଣୀ ରଞ୍ଜନ ଚଉଧୁରୀଙ୍କ ସହିତ ମୋର ଦୁଇମାସ ପୂର୍ବରୁ ପୁରୀରେ ପରିଚୟ ହୋଇଥିଲା । ସେ ମୋତେ ଗୋଟାଏ ଚିଠି ଦେଇଥିଲେ ଆସିବା ପାଇଁ । ମୋର ପରିଚୟ ପାଇଲେ ଆପଣ ସବୁ ବୁଝିପାରିବେ ।

ସତ୍ୟବ୍ରତ ପକେଟରୁ ଖଣ୍ଡିଏ କାର୍ଡ଼ ବାହାର କରି ପୋଲିସ୍ ଅଫିସର ହାତକୁ ବଢ଼ାଇ ଦେଲେ ।

ପୋଲିସ୍ ଅଫିସର କାର୍ଡ଼ଟି ଉପରେ ଆଖି ବୁଲାଇ ନେଇ ଉଲ୍ଲସିତ ହୋଇ ସତ୍ୟବ୍ରତ ଆଡ଼କୁ ହାତ ବଢ଼ାଇ ଦେଇ କହିଲେ : ଆଇ ସି, ଆପଣ ତା'ହେଲେ ଓଡ଼ିଶାରୁ ଛୁଟି ଆସିଛନ୍ତି ।

ସତ୍ୟବ୍ରତ ପୋଲିସ୍ ଅଫିସରଙ୍କ ସହିତ କରମର୍ଦ୍ଦନ କରୁ କରୁ ନୀରସ କଣ୍ଠରେ କହିଲେ : ଆସି ମଧ୍ୟ କିଛି ଲାଭ ହେଲା ନାହିଁ । କାରଣ ରମଣୀ ରଞ୍ଜନ ବାବୁଙ୍କୁ ବଂଚାଇ ପାରିଲି ନାହିଁ ।

ପୋଲିସ୍ ଅଫିସର ମଧ୍ୟ ଗୋଟାଏ ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲେ : ବଡ଼ ବିଚିତ୍ର ଏଇ ପୃଥିବୀର ଗତି ମିଃ ମହାପାତ୍ର । ଛାଡ଼ନ୍ତୁ, ଏଥର କର୍ତ୍ତବ୍ୟ କରିବାକୁ ହେବ । ତାପରେ କୁହନ୍ତୁ, କେସ୍‌ଟା କ'ଣ ହତ୍ୟା ନା ଆତ୍ମହତ୍ୟା ?

ସତ୍ୟବ୍ରତ ପୋଲିସ୍ ଅଫିସରଙ୍କ ମୁହଁକୁ ମୁହୂର୍ତ୍ତେ ଚାହିଁ କହିଲେ : ଆପଣ ନିଜ ଆଖିରେ ଦେଖି ସେଇଟା ସ୍ଥିର କରନ୍ତୁ ।

: ହୁଁ, ଆପଣ ତା'ହେଲେ ଘଣ୍ଟାଏ ହେବ ଏଠାରେ ଆସି ପହଞ୍ଚିଛନ୍ତି ।

: ହଁ ।

: ଆଉ ବେଗମ ଚଉଧୁରୀ ? ଆଗରୁ କ'ଣ ଆପଣଙ୍କର ତାଙ୍କ ସହିତ ପରିଚୟ ଥିଲା ?

ସତ୍ୟବ୍ରତ ବେଗମ ଚଉଧୁରୀ ଆଡ଼େ ଚାହିଁ ଦେଖିଲେ, ସେ ଧୀରେ ଉଠିବାକୁ ଚେଷ୍ଟା କରୁଛି । ବୋଧହୁଏ ସତ୍ୟବ୍ରତ ପୋଲିସ୍ ଅଫିସରଙ୍କ ପ୍ରଶ୍ନଟା ଏଡ଼େଇ ଯିବାକୁ ବସିଥିଲେ, କିନ୍ତୁ ସେ ପୁଣି ପ୍ରଶ୍ନ କଲେ : ବେଗମ ଚଉଧୁରୀଙ୍କ ସହିତ ଆପଣଙ୍କର ପରିଚୟ କେତେଦିନର ?

: ମାତ୍ର ଏଇ ପଇଁଚାଳିଶ ମିନିଟ୍‌ର ।

: ତା'ହେଲେ ଆପଣ କିପରି ଜାଣିଲେ ଭଦ୍ରମହିଳା ବେଗମ ଚଉଧୁରୀ ଏବଂ ସେ ରମଣୀ ରଞ୍ଜନଙ୍କର ଏକମାତ୍ର କନ୍ୟା ।

ପୋଲିସ୍ ଅଫିସରଙ୍କ ପ୍ରଶ୍ନ ଶୁଣି ସତ୍ୟବ୍ରତ ହସି ଉଠୁଥିଲେ । କିନ୍ତୁ ନିଜକୁ ସଂଯତ କରି କହିଲେ : ରମଣୀ ରଞ୍ଜନ ବାବୁ ମୋତେ ସବୁ କଥା କହିଥିଲେ ଏବଂ ଚିଠିରେ ମଧ୍ୟ ଲେଖିଥିଲେ ଯେ...

: ମୋତେ ବାପା କିନ୍ତୁ ଆପଣଙ୍କ କଥା କିଛି ଲେଖି ନଥିଲେ ମିଃ ମହାପାତ୍ର । ବେଗମ ଚଉଧୁରୀ କଥା କାଟି କହିଲେ ।

ସତ୍ୟବ୍ରତଙ୍କ ଦୃଷ୍ଟି ବେଗମ ଚଉଧୁରୀ ଆଡ଼େ ଆକର୍ଷିତ ହେଲା । ସେ ସାମାନ୍ୟ ପ୍ରକୃତିସ୍ଥ ହୋଇଛି ।

ପୋଲିସ୍ ଅଫିସର ଘରର ଚାରିଆଡ଼େ ସନ୍ଧାନୀ ଆଖିରେ ଚାହିଁ ସତ୍ୟବ୍ରତ ଉପରେ ଦୃଷ୍ଟି ନିବଦ୍ଧ କରି କହିଲେ : ଆପଣଙ୍କୁ ତା'ହେଲେ ଏଇ ହତ୍ୟାକାଣ୍ଡ ସମ୍ବନ୍ଧରେ ଅନେକ ତଥ୍ୟ ଜଣାଥିବ ମିଷ୍ଟର ମହାପାତ୍ର ।

ସତ୍ୟବ୍ରତ ମୁହୂର୍ତ୍ତେ ନୀରବ ରହି, ପୋଲିସ ଅଫିସରଙ୍କ ମୁହଁକୁ କିଛି ସମୟ ନିର୍ନିମେଷ ନୟନରେ ଚାହିଁ, ପକେଟରୁ ଖଣ୍ଡିଏ ଚିଠି ବାହାରକରି ବଢ଼ାଇ ଦେଇ କହିଲେ : ଏଇଟା ପଢ଼ନ୍ତୁ । ଏହାଛଡ଼ା ମୋତେ ଆଉ ଅଧିକ କିଛି ଜଣା ନାହିଁ ।

ପୋଲିସ୍ ଅଫିସର କ୍ଷିପ୍ର ହସ୍ତରେ ଚିଠିଖଣ୍ଡିକ ଟାଣିନେଇ ପଢ଼ିଲେ :

ଡିଅର ମିଷ୍ଟର ମହାପାତ୍ର,

ଆପଣଙ୍କ ସହିତ ପୁରୀ ହୋଟେଲରେ ମୋର ଦେଖା ମାତ୍ର କେତୋଟି ଘଣ୍ଟା ପାଇଁ । ମୁଁ ଆପଣଙ୍କୁ ସେଦିନ କଥା ଛଳରେ କହିଥିଲି ମୋର ଯଦି ପ୍ରୟୋଜନ ହୁଏ ମୁଁ ଆପଣଙ୍କୁ ଡାକିଲେ ଆପଣ ଯାଇ ମୋତେ କ'ଣ ସାହାଯ୍ୟ କରିପାରିବେ ।

ଆପଣ ମତେ ସେଦିନ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ, ମୋ ଚିଠି ପାଇବା ମାତ୍ରକେ ଆପଣ ମୋ ପାଖକୁ ଛୁଟି ଆସିବେ ।

ଆଜି ସେଇ ଦିନଟି ଆସିଛି । ମୁଁ ଅନୁଭବ କରୁଛି, ମୁଁ ଖୁବ୍ ବିପଦଗ୍ରସ୍ତ । ମୋର ମନେହେଉଛି ପ୍ରାଣହାନିର ଆଶଙ୍କା ମଧ୍ୟ ରହିଛି ।

ଆପଣ ଜାଣିନାହାନ୍ତି, ମୋର ଏକମାତ୍ର କନ୍ୟା 'ବେଗମ' ଏଲାହାବାଦରେ ପଢ଼େ । ମୋର ବିପଦର ଆଶଙ୍କା କଥା ତାକୁ ମଧ୍ୟ ଲେଖି ଜଣାଇଛି ଏବଂ ଶୀଘ୍ର ଚାଲିଆସିବା ପାଇଁ ଲେଖିଛି ।

ମୋର ବିପଦର ମୂଳ କାରଣ ହେଉଛି ପାଖରେ ଥିବା ଖଣ୍ଡିଏ ହୀରା । ମୋର ଅନେକ ବନ୍ଧୁବାନ୍ଧବମାନେ ସେ ସମ୍ବନ୍ଧରେ କିଛି କିଛି ଜାଣନ୍ତି । ସେମାନଙ୍କ ଭିତରୁ ଅନେକେ ସେ ଖଣ୍ଡିକ ହସ୍ତଗତ କରିବା ପାଇଁ ଲାଳାୟିତ । ସେ ହୀରା ଖଣ୍ଡିକ ମୋ ପାଖରେ ଥିଲେ ମଧ୍ୟ କେଉଁଠି ରଖିଛି କେହି ତା'ର ସନ୍ଧାନ ପାଉ ନଥିବାରୁ ସୁବିଧା କରିପାରୁ ନାହାନ୍ତି ।

ଯାହାହେଉ, ଏହି ସପ୍ତାହକ ମଧ୍ୟରେ ସେମାନେ ସେ ଖଣ୍ଡିକ ସଂଗ୍ରହ କରିବା ପାଇଁ ଶେଷ ଚେଷ୍ଟା କରିବେ । ତହିଁରେ ମୋର ଜୀବନ ବିପନ୍ନ ହେବାର ସମ୍ଭାବନା ଅଛି । ଆପଣ ଏ ଚିଠି ପାଇ ନିଶ୍ଚୟ ଆସିବେ । ବେଗମ ମଧ୍ୟ ଆସିବ । ସେହି ହୀରା ଖଣ୍ଡିକ ମୁଁ ବେଗମକୁ ଦେଇ ଆପଣଙ୍କୁ ତା'ର ରକ୍ଷଣାବେକ୍ଷଣର ଦାୟିତ୍ୱ ଦେଇ ନିଶ୍ଚିନ୍ତ ହେବି । ଅନ୍ୟାନ୍ୟ ସମସ୍ତ ଚଳନ୍ତି ଓ ଅଚଳନ୍ତି ସମ୍ପତ୍ତି ମଧ୍ୟ ମୁଁ ଉଇଲ୍ କରି ଯାହାକୁ ଯାହା ଦେବା କଥା, ଦେଇସାରି ନିଶ୍ଚିନ୍ତ ହେବି ।

ଏ କ୍ଷେତ୍ରରେ କେତେକ କାରଣରୁ ଆପଣଙ୍କ ସହଯୋଗ ମୁଁ ବିଶେଷ ଭାବରେ କାମନା କରୁଛି । ଚିଠିରେ ସବୁ କଥା ଖୋଲି ଲେଖିବା ଉଚିତ ନୁହେଁ, ତେଣୁ ଆପଣ ଆସିଲେ, ଖୋଲାଖୋଲି ଭାବେ ସବୁକଥା ମୁଁ ଆପଣଙ୍କୁ କହିବି ।

ଆପଣଙ୍କର ଗୁଣମୁଗ୍ଧ
ରମଣୀ ରଞ୍ଜନ ଚଉଧୁରୀ ।

ପୋଲିସ୍ ଅଫିସର ଚିଠିଟି ପଢ଼ିସାରି ସତ୍ୟବ୍ରତ ହାତକୁ ବଢ଼ାଇ ଦେଇ ବେଗମ ଚଉଧୁରୀ ଆଡ଼େ ଚାହିଁ ପଚାରିଲେ : ରମଣୀ ରଞ୍ଜନ ବାବୁ ଆପଣଙ୍କୁ କ'ଣ ଚିଠି ଲେଖିଥିଲେ ?

: ଚିଠି ପାଇବା କ୍ଷଣି ଏଠାକୁ ଚାଲିଆସିବା ପାଇଁ ଲେଖିଥିଲେ ।

: ଆଉ କିଛି ?

: ନା, ତାଙ୍କ ଚିଠି ପଢ଼ି ମୋର ମନେହୋଇଥିଲା ସେ ଖୁବ୍ ବିପଦଗ୍ରସ୍ତ । ଶତ୍ରୁମାନେ ବୋଧହୁଏ ତାଙ୍କୁ ଘେରି ଯାଇଛନ୍ତି । ବେଗମ ଚଉଧୁରୀ ଶାନ୍ତ ଗଳାରେ ଉତ୍ତର ଦେଲା ।

: ରମଣୀ ରଞ୍ଜନ ବାବୁଙ୍କ ଶତ୍ରୁମାନେ ଯେ ତାଙ୍କ ଚାରିପାଖରେ ଘୂରି ବୁଲୁଛନ୍ତି, ଆପଣ କ'ଣ ସେ କଥା ଆଗରୁ ଜାଣିଥିଲେ ? ପୋଲିସ୍ ଅଫିସର ପ୍ରଶ୍ନ କଲେ ।

: ନା, ମାନେ... ବେଗମ ଚଉଧୁରୀ କିପରି ଇତସ୍ତତଃ ହେଲେ ।

ସତ୍ୟବ୍ରତ କହିଲେ : ଆପଣ ଆଗ ଉପରକୁ ଚାଲନ୍ତୁ । ରମଣୀ ରଞ୍ଜନ ବାବୁଙ୍କ ମୃତ ଦେହଟା ପ୍ରଥମେ ଦେଖିସାରି ତା'ପରେ...

ବେଗମ ଚଉଧୁରୀ ପୁଣି ଭୋ ଭୋ ହୋଇ କାନ୍ଦି ଉଠିଲା ।

ପୋଲିସ୍ ଅଫିସର ଆଉ କୌଣସି ପ୍ରଶ୍ନ ନ ପଚାରି ସିଧାସଳଖ ଉପର ଘରକୁ ଉଠି ଚାଲିଗଲେ ।

ସତ୍ୟବ୍ରତ ମହାପାତ୍ର ଠିଆ ହୋଇ ରହିଲେ ବେଗମ ଚଉଧୁରୀ ପାଖରେ, ସାନ୍ତ୍ୱନା ଦେବା ପାଇଁ । ଶାନ୍ତ କରାଇବା ପାଇଁ ।

ବେଗମ ଚଉଧୁରୀ କିନ୍ତୁ ସୋଫା ଉପରେ ମୁହଁ ରଖି କାନ୍ଦୁଥିଲା । ନିଜର ପିତୃ ବିୟୋଗ ଏତେ ଚଞ୍ଚଳ ସହ୍ୟ କରିବା ହୁଏତ ତା' ପରି ଗୋଟିଏ ଏକୋଇଶ ବାଇଶ ବର୍ଷର ତରୁଣୀ ପକ୍ଷରେ ସମ୍ଭବ ହେଉ ନଥିଲା ।

ସତ୍ୟବ୍ରତ କହିଲା : ଆଉ ଦିନକ ଆଗରୁ ମୁଁ ଏ ଚିଠିଟି ପାଇଥିଲେ ହୁଏତ ଆପଣଙ୍କ ଜୀବନରେ ଏହି ଦୁର୍ଯ୍ୟୋଗ ଏତେ ଶୀଘ୍ର ନଇଁ ଆସି ନଥାନ୍ତା ।

ବେଗମ ଚଉଧୁରୀ ପ୍ରାଣରେ ହୁଏତ ସତ୍ୟବ୍ରତର ଏହି ସାନ୍ତ୍ୱନା ବାଣୀ କୌଣସି ଆଶା ସଂଚାର କରିପାରୁ ନଥିଲା । ବରଂ ସେ ଅଧିକ ଜୋର୍‌ରେ କାନ୍ଦି ଉଠିଥିଲା ।

ସତ୍ୟବ୍ରତ କେତୋଟି ମୁହୂର୍ତ୍ତ ନୀରବରେ ଠିଆ ହୋଇ ଆଉ ସ୍ଥିର ରହିପାରିଲେ ନାହିଁ । ସେ ମଧ୍ୟ ଧୀରେ ଧୀରେ ଉପରକୁ ଉଠିବାକୁ ଲାଗିଲେ । ଏ କେସ୍‌ଟି ଯଦି ତାଙ୍କୁ ତଦନ୍ତ କରିବାକୁ ହୁଏ, ତେବେ ଅବହେଳିତ ହୋଇ ପଡ଼ିଥିବା ବହୁ ଛୋଟ ଛୋଟ ତଥ୍ୟ ପ୍ରାଥମିକ ଅବସ୍ଥାରେ ତାଙ୍କର ସଂଗ୍ରହ କରିବା ଉଚିତ । ନହେଲେ ପୋଲିସ ବାହିନୀ ସେ ସବୁର ସତ୍ତା ଲୋପ କରିଦେଇପାରନ୍ତି ।

ସତ୍ୟବ୍ରତ ପାଦେ ପାଦେ କରି ଯାଇ ପୋଲିସ ଅଫିସରଙ୍କ ପାଖରେ ପହଞ୍ଚିଲେ । ସେତେବେଳକୁ ସେ ତୃତୀୟ ଘରେ ସେକ୍ରେଟେରୀଏଟ୍ ଟେବୁଲ୍‌ଟାର ଡ୍ରୟାର ଟାଣି ପରୀକ୍ଷା କରୁଥିଲେ ।

ସତ୍ୟବ୍ରତ ପଚାରିଲେ : ଲାସ୍ ଦେଖିଲେ ?

ପୋଲିସ୍ ଅଫିସର ମୁଣ୍ଡ ଟେକି ସତ୍ୟବ୍ରତ ଆଡ଼େ ଚାହିଁ କହିଲେ : ହଁ ।

: କ'ଣ ମନେହେଲା ? ହତ୍ୟା ନା ଆତ୍ମହତ୍ୟା ?

ପୋଲିସ୍ ଅଫିସର ଟେବୁଲ ଉପରୁ ଆସ୍‌ଟ୍ରେଟି ଉଠାଇ, ଗଭୀର ମନଯୋଗ ସହକାରେ

ନିରୀକ୍ଷଣ କରୁଥିଲେ । ଏକ ସମୟରେ ଆସ୍‌ଟ୍ରେ ଭିତରେ ଥିବା ପୋଡ଼ା ସିଗାରେଟ୍ କେତୋଟି ଟେବୁଲ୍ ଉପରେ ଢାଳି ଦେଇ କହିଲେ : ଏକ୍, ଦୁଇ, ତିନି, ଚାରି । ବୋଧହୁଏ ରମଣୀ ରଞ୍ଜନଙ୍କ ମୃତ୍ୟୁ ପୂର୍ବରୁ ଏଠାରେ ଚାରିଜଣ ଏକତ୍ର ହୋଇଥିଲେ ।

ସତ୍ୟବ୍ରତ କହିଲେ : ଚାରିଜଣ କାହିଁକି, ପାଞ୍ଚ କି ଛ'ଜଣ ବି ହୋଇପାରନ୍ତି, ପୁଣି କେବଳ ରମଣୀ ରଞ୍ଜନଙ୍କ ଛଡ଼ା ଅନ୍ୟ କେହି ବି ହୋଇ ନ ପାରନ୍ତି ।

: ତା'ମାନେ ? ପୋଲିସ୍ ଅଫିସର ପ୍ରଶ୍ନ କଲେ ।

: ଆପଣ ଆସ୍‌ଟ୍ରେ ଭିତରୁ ଚାରି ରକମର ଚାରିଖଣ୍ଡ ସିଗାରେଟ୍ ଆବିଷ୍କାର କରି ଚାରିଜଣଙ୍କ ଉପସ୍ଥିତି ଅନୁଭବ କରୁଛନ୍ତି । ହୁଏତ ଆଉ ଜଣେ ଦି'ଜଣ କେହି ଥିଲେ ଯେଉଁମାନେ ସିଗାରେଟ୍ ଖାଆନ୍ତି ନାହିଁ ଅଥବା ସିଗାରେଟ୍‌ର ଏହି ଅଂଶବିଶେଷ ତିନି ଚାରି ଦିନ ପୂର୍ବରୁ ରହିଥାଇପାରେ । ସତ୍ୟବ୍ରତ କହିଲେ ।

: ଅବଶ୍ୟ । ଟିକିଏ ନୀରବ ରହି ପୋଲିସ୍ ଅଫିସର ପୁଣି କହିଲେ, ଆଚ୍ଛା ମିଷ୍ଟର ମହାପାତ୍ର, ଏ ଘରେ କ'ଣ ରମଣୀ ରଞ୍ଜନ ବାବୁ ଏକା ରହୁଥିଲେ ? କୌଣସି ଚାକର ବାକର, ଅଥବା କୌଣସି...

: ମୁଁ ମଧ୍ୟ ସେଇ କଥା ଅନେକ ବେଳରୁ ଚିନ୍ତା କରୁଛି । କେହି ନହେଲେ ବି ଜଣେ ଅଧେ ଚାକର ରହିବା କଥା । ତେବେ ମିସ୍ ଚଉଧୁରୀ ହୁଏତ କହିପାରିବେ ।

: ଆପଣ ଆସିବା ବେଳଠାରୁ ଏ ଘରେ ଆଉ କାହାରିକୁ ଦେଖି ନାହାନ୍ତି ?

: ନା ।

: ଆପଣଙ୍କୁ ତ ପୁଣି କେହି ଦରଜା ଖୋଲି ଦେଇଥିବ ?

: ଦରଜା ଖୋଲା ଥିଲା ।

: ହୁଁ, ପୋଲିସ୍ ଅଫିସର ତାଙ୍କର ପୋଲିସ୍ ସୁଲଭ ଭଙ୍ଗୀରେ ମୁଣ୍ଡ ଟୁଙ୍ଗାରି ପୁଣି ଇନ୍‌କ୍ୱାରୀରେ ଲାଗି ପଡ଼ିଲେ ।

କିଛି ସମୟ ପରେ ସେ ଘରୁ ବାହାରି ବାରଣ୍ଡାରେ ପାଦ ଦେଇ କହିଲେ ଆଚ୍ଛା ମିଷ୍ଟର ମହାପାତ୍ର, ରମଣୀ ରଞ୍ଜନ ଚଉଧୁରୀଙ୍କ ହତ୍ୟା ସହିତ, ଏହି ବିଚାରୀ ନିରୀହ ଶାରୀଟିର ପ୍ରାଣନାଶର କି କାରଣ ଥାଇପାରେ ?

: ହୁଏତ କିଛି ନିଗୂଢ଼ ସଂପର୍କ ଅଛି । ତା' ନ ହୋଇଥିଲେ...

ସତ୍ୟବ୍ରତ ଚାହିଁ ଦେଖିଲେ ବେଗମ ଚଉଧୁରୀ ଟଳି ଟଳି ଆଗେଇ ଆସୁଛି । ପୋଲିସ୍ ଅଫିସର ତାକୁ ସାମ୍‌ନାରେ ଦେଖି ପଚାରିଲେ : ଆଚ୍ଛା ମିସ୍ ଚଉଧୁରୀ, ଆପଣଙ୍କ ଘରେ କ'ଣ କେହି ଚାକର ଚାକରାଣୀ ନଥିଲେ ?

ବେଗମ ଚଉଧୁରୀ ହଠାତ୍ ଯେପରି ସ୍ତବ୍ଧ ହୋଇଗଲେ । ସେ ପୋଲିସ୍ ଅଫିସରଙ୍କ ମୁହଁକୁ ଅସହାୟ ଆଖିରେ ଚାହିଁ କହିଲେ : ରଘୁଆ ନାହିଁ ? ଜାନକୀ ମା' ନାହିଁ ? ସେମାନେ କ'ଣ ସମସ୍ତେ ଭୟରେ ପଳାଇ ଯାଇଛନ୍ତି ?

ହଠାତ୍ ସତ୍ୟବ୍ରତ କ'ଣ ଭାବି ପୋଲିସ୍ ଅଫିସରଙ୍କ ହାତ ଧରି ଟାଣି ଟାଣି ତଳକୁ ନେଇଗଲେ । ଡ୍ରଇଂ ରୁମ୍ ପାଖ ଘରେ, ଯେଉଁ ଘରଟା ବାହାରୁ ତାଲା ବନ୍ଦ ଥିଲା, ସତ୍ୟବ୍ରତ କହିଲେ : ଏଇ ଘରର ତାଲା ଭାଂଗି ଖୋଲିଲେ, ମୋର ମନେହେଉଛି ଆତତାୟୀମାନେ ହୁଏତ ଏଇ ଘରେ ସେମାନଙ୍କୁ ବନ୍ଦୀ କରି ଉଦ୍ଦେଶ୍ୟ ସାଧନ କରିଛନ୍ତି ।

ପୋଲିସ୍ ଅଫିସର ଘରର ତାଲା ଭାଂଗି ଦେଖିଲେ, ରଘୁଆ ଆଉ ଜାନକୀ ମା' ଦୁଇଜଣଯାକ ହାତଗୋଡ଼ ବନ୍ଧା ହୋଇ ଗଡୁଛନ୍ତି । ପାଟିରେ କନା ବିଣ୍ଡା ଭରି ପାଟି ମଧ ବନ୍ଦ କରା ହୋଇଛି ।

ସତ୍ୟବ୍ରତ ମହାପାତ୍ର କ୍ଷିପ୍ର ହସ୍ତରେ ସେମାନଙ୍କ ବନ୍ଧନ ମୁକ୍ତ କଲେ ।

ରଘୁଆ କାନ୍ଦି କାନ୍ଦି ପୋଲିସ୍ ଅଫିସରଙ୍କ ଗୋଡ଼ତଳେ ଗଡ଼ି ଗଲା । ମୁହଁ ଖୋଲି ସେ କିଛି କହିପାରିଲା ନାହିଁ ।

ଜାନକୀର ମା' କେବଳ ଜଳଜଳ କରି ଚାହିଁଥିଲା । ହୁଏତ ସେ ଏହି ଦୀର୍ଘ ସମୟ ବନ୍ଦିନୀ ଅବସ୍ଥାରେ ପଡ଼ିରହି ସେ ତା'ର ଆତ୍ମସତ୍ତା ହରାଇଥିଲା କିମ୍ବା ଆଖି ଆଗରେ ପୋଲିସ୍ ଦେଖି ସେ ସବୁ ଭୁଲିଯାଇଥିଲା ।

ସତ୍ୟବ୍ରତ କହିଲେ : ବର୍ତ୍ତମାନ ଏମାନେ ଆମ ପ୍ରଶ୍ନର କୌଣସି ଜବାବ ଦେଇପାରିବେ ନାହିଁ । ଟିକିଏ ସୁସ୍ଥ ହୋଇ ଉଠନ୍ତୁ । ତା'ପରେ ଦେଖାଯିବ ।

ପୋଲିସ୍-ଅଫିସର ଜଣେ କନେଷ୍ଟବଲକୁ ଡାକି କହିଲେ : ସେମାନଙ୍କୁ ପାଣି ପିଇବାକୁ ଦେଇ ସୁସ୍ଥ କରିବା ପାଇଁ ।

ବାହାରେ ଧୀରେ ଧୀରେ କୌତୂହଳୀ ଜନତାର ଭିଡ଼ ବଢୁଥିଲା ।

\+ \+ \+

ପୋଲିସ୍ ଅଫିସର ସରଜମିନ ତଦନ୍ତ ଶେଷ କରି ଯେତେବେଳେ ହତ୍ୟାକାରୀର କୌଣସି କ୍ଲୁ ପାଇଲେ ନାହିଁ, ଅସହାୟ ଆଖିରେ ସେ ସତ୍ୟବ୍ରତଙ୍କ ମୁହଁକୁ ଚାହିଁ କହିଲେ : ମନେ ହେଉଛି ସମ୍ଭବତଃ ରମଣୀ ରଞ୍ଜନ ବାବୁ ଆତ୍ମହତ୍ୟା କରିଛନ୍ତି ।

ସତ୍ୟବ୍ରତ ମହାପାତ୍ର ହଠାତ୍ କିଛି ଉତ୍ତର ଦେଇପାରିଲେ ନାହିଁ । ଅଳ୍ପ ସମୟ ନୀରବ ରହି କହିଲେ : ମୁଁ କିନ୍ତୁ ଆତ୍ମହତ୍ୟା ସପକ୍ଷରେ କୌଣସି ଯୁକ୍ତି ଦେଖୁ ନାହିଁ । ତେବେ ମଣିଷ ମନର ବିଚିତ୍ର ବିକୃତି ପାଖରେ ସବୁ ସମ୍ଭବ ।

ବେଗମ ଚଉଧୁରୀ ସାମାନ୍ୟ ପ୍ରକୃତିସ୍ଥ ହୋଇଥିଲେ ।

ସତ୍ୟବ୍ରତ କହିଲେ : ଆପଣ ଏଥର ଆମକୁ କିଛି ସାହାଯ୍ୟ କରନ୍ତୁ ମିସ୍ ଚଉଧୁରୀ । ଆପଣଙ୍କର ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନ କିଏ କେଉଁଠି ରୁହନ୍ତି, ସେମାନଙ୍କୁ ଖବର ଦେବାକୁ ହେବ, ତା'ଛଡ଼ା ରମଣୀବାବୁଙ୍କର ସେହି ବହୁ ମୂଲ୍ୟବାନ ହୀରକ ଖଣ୍ଡ ସମ୍ବନ୍ଧରେ ଆପଣ କ'ଣ ଜାଣନ୍ତି ବିସ୍ତାରିତ ଭାବରେ ସବୁ କଥା ନ କହିଲେ ଆମେ ହତ୍ୟାକାରୀକୁ ଧରିପାରିବୁ ନାହିଁ ।

ବେଗମ ଚଉଧୁରୀଙ୍କ ଠାରେ କିନ୍ତୁ କୌଣସି ଉତ୍ସାହ ପରିଲକ୍ଷିତ ହେଲା ନାହିଁ । ସେ ସେହିପରି ବ୍ୟଥିତ ସ୍ୱରରେ କହିଲେ : ବାପାଙ୍କର ସମ୍ପଦ ସମ୍ବନ୍ଧରେ ମୋତେ କିଛି ଜଣା ନାହିଁ । ସେ ଇଚ୍ଛା କରି ମୋତେ କିଛି ଜଣାଇ ଦେଇ ନାହାନ୍ତି । ଆଉ ଆମର ବନ୍ଧୁବାନ୍ଧବ ଆତ୍ମୀୟ ସ୍ୱଜନ ଅନେକ ଅଛନ୍ତି, କିନ୍ତୁ କିଏ କୋଉଠି ରହନ୍ତି ମୋତେ ଜଣା ନାହିଁ ।

ଏଥର ସତ୍ୟବ୍ରତ ମହାପାତ୍ରଙ୍କ ଅସହାୟ ଚାହାଣି ପୋଲିସ ଅଫିସରଙ୍କ ଚାହାଣି ସହିତ ନିବଦ୍ଧ ହେଲା ।

ସାମାନ୍ୟ ନୀରବତା ପରେ ପୋଲିସ୍ ଅଫିସର କହିଲେ : ଏଥର ରଘୁଆ ଆଉ ଜାନକୀର ମା'କୁ ଜେରା କରାଯାଇପାରେ, ନା କ'ଣ କହୁଛନ୍ତି ମିଷ୍ଟର ମହାପାତ୍ର ?

ରଘୁଆ ତଥାପି ପ୍ରକୃତିସ୍ଥ ହୋଇ ନଥିଲା । ଅସଂଲଗ୍ନ ଭାବରେ ସେ ଯାହା କହିଲା : ତା'ର ସାରମର୍ମ ହେଉଛି- ବଡ଼ବାବୁ ଅର୍ଥାତ୍ ରମଣୀ ରଞ୍ଜନ ଚଉଧୁରୀ ଗତ ଏକ ସପ୍ତାହ ହେଲା ଅସୁସ୍ଥ ଥିଲେ । ତେଣୁ ସେ ମୋଟେ ବାହାରକୁ ବାହାରି ନାହାନ୍ତି । କିନ୍ତୁ ତାଙ୍କର ଏହି ଅସୁସ୍ଥତାର ସମ୍ବାଦ ପାଇ ବହୁ ହିତାକାଂକ୍ଷୀ ତାଙ୍କୁ ଦେଖିବାକୁ ଆସିଛନ୍ତି । ଯେଉଁମାନେ ସବୁ ଆସିଛନ୍ତି, ସମସ୍ତଙ୍କୁ ପ୍ରାୟ ରଘୁଆ ଚିହ୍ନେ । କେବଳ ଦୁଇଜଣ ଅଚିହ୍ନା ଲୋକ ଦିନେ ଆସିଥିଲେ, ସେମାନଙ୍କ ଭିତରୁ ଜଣେ ନାରୀ ଓ ଜଣେ ପୁରୁଷ ।

ତେବେ ବଡ଼ବାବୁଙ୍କର ଦେହ ସେପରି ସାଂଘାତିକ କିଛି ହୋଇ ନଥିଲା । ସେ ବିଛଣାରେ ଶୋଇ ରହୁ ନଥିଲେ । କିମ୍ବା କୌଣସି ଡାକ୍ତର ଚିକିତ୍ସା କରିବାକୁ ଆସି ନଥିଲେ । ବଡ଼ବାବୁଙ୍କ ନିଜ ମୁହଁରୁ ରଘୁଆ ବାରମ୍ବାର ଶୁଣିଥିଲା ସେ ଅସୁସ୍ଥ । ତେଣୁ କାହାରି ସହିତ କଥାବାର୍ତ୍ତା କରିବାକୁ ସେ ପ୍ରସ୍ତୁତ ନୁହନ୍ତି ।

ରଘୁଆ ଅନେକ ହିତାକାଂକ୍ଷୀଙ୍କୁ ଏହି କଥା କହି ଦୁଆର ମୁହଁରୁ ବିଦା କରି ଦେଇଥିଲା, ଆଉ ଅନେକଙ୍କୁ ପାରି ନଥିଲା । ଯେଉଁମାନେ ଗତ ସାତଦିନ ମଧ୍ୟରେ ରମଣୀ ରଞ୍ଜନଙ୍କ ସହିତ ଦେଖାସାକ୍ଷାତ କରିଥିଲେ, ରଘୁଆ ସେମାନଙ୍କର ଗୋଟାଏ ସମ୍ଭାବ୍ୟ ତାଲିକା ଦେଇଥିଲା । ପୋଲିସ୍ ଅଫିସର ତାହା ନୋଟ୍ କରିଥିଲେ ।

ଆଉ ଗତ ରାତିର ଘଟଣା ସମ୍ବନ୍ଧରେ ରଘୁଆ କହିଲା : ଗତ କାଲି ସକାଳେ ବିଛଣାରୁ ଉଠିବା ପରଠାରୁ ସେ ବଡ଼ ବାବୁଙ୍କୁ କିପରି ଅସ୍ୱାଭାବିକ ଦେଖୁଥିଲା । ତାଙ୍କ ଆଚରଣ, କଥାବାର୍ତ୍ତାରେ ସେ ମୋଟେ ସନ୍ତୁଷ୍ଟ ହୋଇପାରୁ ନଥିଲା । ତା'ର ମନେହୋଇଥିଲା, ବଡ଼ବାବୁଙ୍କ ଦେହ ବେଶି ଖରାପ ହୋଇଛି ।

ଗତକାଲି ସକାଳଠାରୁ ରାତି ନଅଟା ଭିତରେ ସାତ ଆଠଜଣ ଲୋକ ଆସିଥିଲେ । ଦେଖା କରିଥିଲେ । ସେମାନଙ୍କ ସହିତ କ'ଣ କଥାବାର୍ତ୍ତା ହୋଇଥିଲା ରଘୁଆ ଜାଣି ନାହିଁ । ତେବେ ସମସ୍ତଙ୍କୁ ସେ ଚା' କରି ଦେଇଛି । କାହାରି କାହାରିକୁ ଜଳଖିଆ ଆଣି ଦେଇଛି । ବଡ଼ବାବୁ କିନ୍ତୁ କେହି ଲୋକ ଆସିଲେ ଆଗ୍ରହରେ ତାଙ୍କ ସହିତ କଥାବାର୍ତ୍ତା କରୁଥିଲେ ।

କାଲି ସମସ୍ତ ଦିନ ବଡ଼ବାବୁ ତାଙ୍କ ଶୋଇବା ଘରେ ବିଛଣାରେ ଶୋଇ ରହିଥିଲେ । ଗାଧୋଇ ଯାଇ ନଥିଲେ । ଯେତେବେଳେ ବାଥ୍‌ରୁମ୍‌କୁ ଯାଇଥିଲେ ରଘୁଆକୁ ସେ ଶୋଇବା ଘରେ ଠିଆ କରେଇ ଯାଇଥିଲେ ।

ଏହିପରି ରାତି ନଅଟା ହେଲା । ରଘୁଆ ପ୍ରାୟ ସାଢ଼େ ନଅଟା ବେଳେ ବଡ଼ ବାବୁଙ୍କୁ ଖୁଆଇ ପିଆଇ, ଶୁଆଇ ଦେଇ ତଳକୁ ଚାଲି ଆସିଲା । ରଘୁଆ ତଳକୁ ଆସିଲା ବେଳେ ବଡ଼ବାବୁ କହିଥିଲେ, ସଦର ଦରଜା ଭଲ ଭାବରେ ବନ୍ଦ କରିବାକୁ । ରଘୁଆ ସଂଗେ ସଂଗେ ସଦର ଦରଜା ବନ୍ଦ କରି ଜାନକୀର ମା'କୁ ଡାକିଥିଲା ।

କିନ୍ତୁ ଜାନକୀର ମା'ଠାରୁ କିଛି ଜବାବ ନ ପାଇ ରଘୁଆ ଯେତେବେଳେ ବ୍ୟସ୍ତ ହୋଇ ତାକୁ ଖୋଜିବାକୁ ପାଖ ଘରକୁ ପଶି ଯାଇଥିଲା, ହଠାତ୍ କିଏ ଜଣେ ତା' ପଛଆଡୁ ତାକୁ ଜାବୁଡ଼ି ଧରିଥିଲା ଏବଂ ଆଉ ଜଣେ ତା' ମୁହଁରେ କନାବିଣ୍ଡା ଭର୍ତ୍ତି କରି ଦେଇଥିଲା ।

ତା'ପରେ କ'ଣ ଘଟିଥିଲା ରଘୁଆ କିଛି ଜାଣି ନାହିଁ । ଆଜି ସକାଳେ ସେ ବନ୍ଧନମୁକ୍ତ ହେଲା ।

ପୋଲିସ୍ ଅଫିସର ଜାନକୀର ମା' ମୁହଁରୁ କିଛି କଥା ଶୁଣିପାରିଲେ ନାହିଁ । ସେ ଜଳଜଳ କରି ଚାହିଁଥିଲେ ମଧ୍ୟ ତା' ମୁହଁରୁ ମୋଟେ କଥା ବାହାରୁ ନଥିଲା । ପୋଲିସ୍ ଅଫିସରଙ୍କ ଧମକରେ ଭୋ ଭୋ ହୋଇ କାନ୍ଦି ଉଠିଲା ସିନା, କିନ୍ତୁ ଗତକାଲିର ଘଟଣା କିଛି କହିପାରିଲା ନାହିଁ ।

ଏଣେତେଣେ ଆଉ ପାଞ୍ଚଟା ପଦାର୍ଥ ଦେଖାଶୁଣା କରି ପୋଲିସ୍ ଅଫିସର ଶବକୁ ମାଇନା ତଦନ୍ତ ପାଇଁ ପଠାଇ ଦେଲେ । ସେ ଘରେ ଦୁଇଜଣ ପୋଲିସ୍ ମୁତୟନ କରି ନିଜେ ଯିବାକୁ ପ୍ରସ୍ତୁତ ହେଲେ । ଯିବା ପୂର୍ବରୁ ବେଗମ ଚଉଧୁରୀଙ୍କୁ କହିଗଲେ : ଆପଣ ଭୟ କରିବେ ନାହିଁ ମିସ୍ ଚଉଧୁରୀ । ମୁଁ ଦୁଇଜଣ କନେଷ୍ଟବଳ ରଖି ଯାଉଛି । ଦରକାର ହେଲେ ଆଉ ଜଣେ ଦି'ଜଣ ପଠାଇ ଦେବି । ଆପଣଙ୍କ ବାପାଙ୍କର ଏହି ଆକସ୍ମିକ ମୃତ୍ୟୁରେ ମୁଁ ଖୁବ୍ ଦୁଃଖିତ । ତେବେ ହତ୍ୟାକାରୀକୁ ଧରିବା ପାଇଁ ଆମେ ଆପ୍ରାଣ ଚେଷ୍ଟା କରିବୁ । ତା'ଛଡ଼ା ମିଷ୍ଟର ମହାପାତ୍ର ତ ଅଛନ୍ତି । ସେ ଆପଣଙ୍କ ବାପାଙ୍କର ବନ୍ଧୁ । ଆପଣଙ୍କୁ ନିଶ୍ଚୟ ସାହାଯ୍ୟ କରିବେ ।

ପୋଲିସ୍ ଅଫିସର ବେଗମ ଚଉଧୁରୀଙ୍କ ଉପରୁ ଆଖି ଫେରାଇ ନେଇ ସତ୍ୟବ୍ରତ ଆଡ଼କୁ ଚାହିଁ କହିଲେ : ବର୍ତ୍ତମାନ ମୁଁ ଆସୁଛି ମିଷ୍ଟର ମହାପାତ୍ର । ଦରକାର ହେଲେ ଆପଣ ମୋତେ ଖବର ଦେବେ । ମୁଁ ବି ସନ୍ଧ୍ୟାବେଳକୁ ଆଉ ଥରେ ଆସିବି ।

ପୋଲିସ୍ ଅଫିସର ଚାଲିଯିବା ପରେ କିଛି ସମୟର ନୀରବତା ପରେ ସତ୍ୟବ୍ରତ ମହାପାତ୍ର କହିଲେ : ଆଚ୍ଛା ମିସ୍ ଚଉଧୁରୀ, ଏହି ଦୁର୍ଘଟଣା ପଛରେ କାହାର ହାତ ଅଛି ବୋଲି ଆପଣଙ୍କର ଧାରଣା ।

ବେଗମ ଚଉଧୁରୀ ଆଖି ପୁଣି ଛଳଛଳ ହୋଇ ଆସିଲା । ସେ କ'ଣ କହିବାକୁ ଯାଇ କିଛି କହି ନ ପାରି ନୀରବରେ ବସି ପଡ଼ିଲା ।

ସତ୍ୟବ୍ରତ ବେଗମ ଚଉଧୁରୀଙ୍କୁ ଆଉ କିଛି ନ ପଚାରି ଧୀରେ ଧୀରେ ସେଠାରୁ ଚାଲିଗଲେ । ରଘୁଆକୁ ପାଖକୁ ଡାକି ପଚାରିଲେ : କାଲି ତା'ହେଲେ ତମେ ରାତି ସାଢ଼େ ନଅଟା ବେଳେ ବଡ଼ବାବୁଙ୍କୁ ସୁସ୍ଥ ଶରୀରରେ ଦେଖିଥିଲ ?

: ଆଜ୍ଞା ।

: ଆଉ ଏଇ ଶାରୀଟା ?

: ସେ ବି ମୁଁ ତଳକୁ ଓହ୍ଲେଇ ଗଲାବେଳେ 'ରଘୁ ରଘୁ' ଡାକିଥିଲା ।

: ଆଚ୍ଛା, ଶାରୀଟା ତା'ହେଲେ ଅନେକ କଥା କହିପାରେ ?

: ଆପଣ ଜାଣିନାହାନ୍ତି କି ଆଜ୍ଞା ! ବଡ଼ବାବୁଙ୍କର ଶାରୀଟି ଅତି ପ୍ରିୟ ଥିଲା । ସେ ଅନେକ କଥା ଶିଖିଥିଲା । ଶିଡ଼ିରେ କାହାରିକୁ ଆସିବାର ଦେଖିଲେ ବଡ଼ ପାଟି କରି ଡାକ ଛାଡୁଥିଲା- 'ବାବା ବାବା, ହୁସିଆର ।'

: ତମେ ଶିଡ଼ିରେ ଆସିଲେ ବି ସେ ସେହିପରି କହୁଥିଲା ? ସତ୍ୟବ୍ରତ ପଚାରିଲେ ।

: ନା ନା, ଆମେ ଘର ଲୋକ କେହି ଗଲେ ଆସିଲେ ସେ କିଛି କହୁ ନଥିଲା । କିନ୍ତୁ ବାହାରର ଲୋକ କେହି ତଳ ଶିଡ଼ିରେ ପାଦ ଦେବା ମାତ୍ରକେ ବଡ଼ବାବୁଙ୍କୁ ସାବଧାନ କରାଇ ଦେଉଥିଲା ।

: କାହିଁକି? ବଡ଼ବାବୁ କ'ଣ ସବୁବେଳେ ଅସାବଧାନ ରହୁଥିଲେ ?

: ନା ଆଜ୍ଞା, ଅବଶ୍ୟ ବଡ଼ବାବୁ ଅନେକ ସମୟରେ ଘରେ କବାଟ କିଳି କ'ଣ ସବୁ କରନ୍ତି । ତେବେ ଶାରୀଟା ଯେତେହେଲେ ପକ୍ଷୀ । ତା'ର ବୁଦ୍ଧି କେତେ ? ତାକୁ ଯାହା ଶିଖେଇ ଥିବେ, ସେ ତ ସେଇଆ କହିବ ।

: ହୁଁ ବୁଝିଲି । ଆଉ ତମ ଦେଈ, ମାନେ ବେଗମ ଚଉଧୁରୀଙ୍କ କଥା ମୁଁ କହୁଛି । ସେ କ'ଣ ଘରେ ମୋଟେ ରହନ୍ତି ନାହିଁ ?

ରଘୁଆ ବେଗମ ଚଉଧୁରୀ ନାଁ ଶୁଣି ଟିକିଏ ଚିନ୍ତା କଲା । କହିଲା : ମୁଁ ଏ ଘରେ ଅଛି ଆଜ୍ଞା ଦଶ ବରଷ ହେବ । ବେଗମ ଦିଦିଙ୍କି ମୁଁ କୋଳରେ କାଖରେ ଧରି ମଣିଷ କରିଛି । ମୁଁ ଏ ଘରେ ରହିବାର ବର୍ଷକ ପରେ ବାବୁଆଣୀ ଦେହ ତ୍ୟାଗ କଲେ । ବାବୁ କିନ୍ତୁ ବେଗମ ଦିଦିଙ୍କି ସେହି ବାର ତେର ବର୍ଷ ବୟସରୁ ହଷ୍ଟେଲରେ ରଖେଇବାର ଅଭ୍ୟାସ କରେଇଲେ । ପୂଜା ପାର୍ବଣ ଛୁଟିମୁଟିରେ ବେଗମ ଦିଦି ଆସି ମାସେ ପନ୍ଦର ଦିନ ଯାହା ରୁହନ୍ତି, ନହେଲେ ସବୁବେଳେ...

ବେଗମ ଚଉଧୁରୀ ଟଳି ଟଳି ସେଇ ଆଡ଼କୁ ଆସୁଥିବାର ଦେଖି ରଘୁଆ ଚୁପ୍ ହୋଇଗଲା ।

ସତ୍ୟବ୍ରତ କହିଲେ : ଆସନ୍ତୁ ମିସ୍ ଚଉଧୁରୀ । ଆପଣ କିନ୍ତୁ ଏତେ ଭାଂଗି ପଡ଼ିଲେ ଚଳିବ ନାହିଁ । ଅବଶ୍ୟ ଆପଣଙ୍କର ଏହି ଦୁଃସମୟରେ ଆପଣଙ୍କୁ ବିରକ୍ତ କରିବା ଉଚିତ ହେବ ନାହିଁ, ତଥାପି...

ଆର ଘରୁ ଟେଲିଫୋନ୍‌ର ଶବ୍ଦ ଶୁଣି ବେଗମ ଚଉଧୁରୀ ଟିକିଏ ଚଞ୍ଚଳ ହୋଇ ଉଠିଲା । କିନ୍ତୁ ପାଦରେ କୌଣସି ପ୍ରକାର କ୍ଷିପ୍ରତା ପରିଲକ୍ଷିତ ହେଲା ନାହିଁ । ସତ୍ୟବ୍ରତ ମଧ୍ୟ ଛୁଟିଗଲେ ନାହିଁ ଟେଲିଫୋନ୍ ଧରିବା ପାଇଁ ।

ବେଗମ ଚଉଧୁରୀ ନିଜେ ଯାଇ ରିସିଭର ଉଠାଇଲା ।

ସତ୍ୟବ୍ରତ ଦୁଆର ମୁହଁରେ ଠିଆ ହୋଇଥିଲେ ।

ଅପର ପ୍ରାନ୍ତରୁ କିଏ କ'ଣ କହିଲା କେଜାଣି, ବେଗମ ଚଉଧୁରୀ କେବଳ କହିଲା : ତୁ ଚାଲିଆ ।

ତା'ପରେ ରିସିଭରଟା ଯଥା ସ୍ଥାନରେ ରଖିଦେଇ ଖଣ୍ଡିଏ ଚେଆର ଉପରେ ବସିପଡ଼ି ବେଗମ ଚଉଧୁରୀ କହିଲା : ଏଇ ଚେଆର ଉପରେ ବାପା ବସି ଦିନେ ମୋତେ କହିଥିଲେ, ତୁ ବଡ଼ ହେଇ ମଣିଷ ହେଲେ ମୋର ଦୁଃଖ ଯିବ । କିନ୍ତୁ ମୁଁ ବାପାଙ୍କର ଦୁଃଖ କିଛି ଲାଘବ କରିପାରିଲି ନାହିଁ ମିଷ୍ଟର ମହାପାତ୍ର । ବାପା ମୋର...

ବେଗମ ଚଉଧୁରୀ ଭୋ ଭୋ ହୋଇ କାନ୍ଦି ଉଠିଲା ।

ସତ୍ୟବ୍ରତ ପଚାରିଲେ : ମିଷ୍ଟର ଚଉଧୁରୀଙ୍କର ପୁଣି ଦୁଃଖ କ'ଣ ଥିଲା ।

: ସେ ଅନେକ ଦୁଃଖ ମିଷ୍ଟର ମହାପାତ୍ର । ମା'ଙ୍କର ଅକାଳ ମୃତ୍ୟୁ ତାଙ୍କ ମନରେ ଭୀଷଣ ଆଘାତ ସୃଷ୍ଟି କରିଥିଲା । ମା'ଙ୍କ ପାଇଁ ଏକ ପ୍ରକାର ସେ ଅର୍ଦ୍ଧ ପାଗଳ ହୋଇ ଉଠିଥିଲେ ।

: ହୁଁ, ସତ୍ୟବ୍ରତ ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିଲେ ।

ବେଗମ ଚଉଧୁରୀ ଟେବୁଲ୍ ଉପରେ ମୁଣ୍ଡ ମାଡ଼ି କାନ୍ଦୁଥିଲା ।

ରଘୁଆ କହିଲା : ଜାଣ ବେଗମ ଦିଦି, ବଡ଼ବାବୁ ଦି'ଦିନ ହେବ ତମକୁ ଦେଖିବା ପାଇଁ ଭୀଷଣ ବ୍ୟାକୁଳ ହୋଇ ଉଠିଥିଲେ । ମୋତେ ସେ ଦି'ଦିନ ଭିତରେ କେତେଥର ଯେ ତମ କଥା ପଚାରିଛନ୍ତି, ମୁଁ ତା'ର ହିସାବ ରଖିପାରି ନାହିଁ । ଶେଷରେ...

ରଘୁଆ ମଧ୍ୟ କଥା ଅସମାପ୍ତ ରଖି କାନ୍ଦି ଉଠିଲା ।

ସତ୍ୟବ୍ରତ ମହାପାତ୍ର ସେଠାରେ ଆଉ ଅପେକ୍ଷା ନ କରି ଧୀରେ ଧୀରେ ବାହାରକୁ ବାହାରି ଆସିଲେ ।

ବଡ଼ ସମସ୍ୟାରେ ପଡ଼ି ଯାଇଥିଲେ ସେ ।

ତାଙ୍କର ଏଠାରେ ଆଉ ପ୍ରୟୋଜନ ଅଛି କି ନାହିଁ, ସେ ମନ ସ୍ଥିର କରିପାରୁ ନଥିଲେ ।

କିନ୍ତୁ ସବୁଠାରୁ ତାଙ୍କୁ ବେଶି ଆଶ୍ଚର୍ଯ୍ୟ ଲାଗୁଥିଲା, ରମଣୀ ବାବୁଙ୍କର କ'ଣ କେହି ଆତ୍ମୀୟ ସ୍ୱଜନ ନାହାନ୍ତି ? ଦୁର୍ଘଟଣା ବାହାରେ ପ୍ରକାଶିତ ହେବାର ପ୍ରାୟ ତିନି ଚାରିଘଣ୍ଟା ହୋଇଗଲେ ମଧ୍ୟ କେହି ତ ଜଣେ ବେଗମ ଚଉଧୁରୀକୁ ସମବେଦନା ଜଣାଇବା ପାଇଁ ଛୁଟି ଆସୁ ନାହାନ୍ତି । ଆଶ୍ଚର୍ଯ୍ୟ !

ସତ୍ୟବ୍ରତ ଚାଲ ଚାଲ ହୋଇ ଯାଇ ଶିଡ଼ି ମୁଣ୍ଡରେ ପଡ଼ିଥିବା ମଲା ଶାରୀଟି ପାଖରେ ଠିଆ ହେଲେ । ଜନ୍ଦା ପିମ୍ପୁଡ଼ିମାନେ ଶାରୀଟିର ଦେହ ମୁଣ୍ଡ ଚାରିଆଡ଼େ କଣା କରି ସାରିଲେଣି । ଶୂନ୍ୟ ପଞ୍ଜୁରିଟି ପୂର୍ବ ପରି ଝୁଲୁଛି ।

ତା'ହେଲେ କ'ଣ ଶାରୀଟି ଥିଲା ରମଣୀ ରଞ୍ଜନ ବାବୁଙ୍କର ସତର୍କ ପ୍ରହରୀ ! ଶାରୀର ଡାକ ଶୁଣି ସେ ସଜାଗ ହେଉଥିଲେ ?

ସତ୍ୟବ୍ରତ ମହାପାତ୍ର ହାତ ବଢ଼ାଇ ପଞ୍ଜୁରିଟିକୁ ହଲେଇ ଦେଲେ । ନିର୍ଜୀବ ଲୁହା ପଞ୍ଜୁରିଟା କେବଳ ହଲିବା ଛଡ଼ା ସତ୍ୟବ୍ରତଙ୍କ ମନର ଦ୍ୱନ୍ଦ୍ୱକୁ ସମାଧାନ କରିପାରିଲା ନାହିଁ ।

ସତରେ କ'ଣ ରମଣୀ ରଞ୍ଜନଙ୍କ ପାଖରେ ଖଣ୍ଡେ ହୀରା ଥିଲା ? ତା'ହେଲେ ଆତତାୟୀମାନେ ସେ ଖଣ୍ଡିକ ହସ୍ତଗତ କରି ଚାଲିଯାଇ ନାହାନ୍ତି ତ ?

ସତ୍ୟବ୍ରତଙ୍କ ମନରେ ଉଠିଥିବା ଏହି ସବୁ ପ୍ରଶ୍ନ ଅବାନ୍ତର ନହେଲେ ବି ଏଗୁଡ଼ିକର ଉତ୍ତର ଏତେ ସହଜ ନୁହେଁ । ତଥାପି...

ସତ୍ୟବ୍ରତର ମନର ଭାବନା ହଠାତ୍ ଥମିଗଲା । ସେ ଶୁଣିଲେ ଯେପରି ବେଗମ ଚଉଧୁରୀ କାହା ସହିତ କଥାବାର୍ତ୍ତା କରୁଛି । କିଏ ଆସିଲା ତା'ହେଲେ ?

ସତ୍ୟବ୍ରତ କ୍ଷିପ୍ର ଗତିରେ ଆଗେଇ ଯାଇ ଦେଖିଲେ, ବେଗମ ଚଉଧୁରୀ ରିସିଭରଟା ଟେଲିଫୋନ୍ ଉପରେ ରଖି ଦେଉଛି ।

ହଠାତ୍ ସତ୍ୟବ୍ରତଙ୍କୁ ଦୁଆର ମୁହଁରେ ଦେଖି ବେଗମ ଚଉଧୁରୀ ଶାନ୍ତ କଣ୍ଠରେ କହିଲା : ମୋର ଜଣେ ସାଙ୍ଗକୁ ଫୋନ୍ କଲି । ଆସିବାକୁ କହିଲି । କେହି ଜଣେ ନ ଆସିଲେ ମୁଁ ବଂଚିପାରିବି ନାହିଁ ।

: ଏହା ଆଗରୁ ଆପଣଙ୍କୁ କିଏ ଫୋନ୍ କରିଥିଲା ? ସତ୍ୟବ୍ରତ ପଚାରିଲେ ।

: ସିଏ ବି ମୋର ଜଣେ ବନ୍ଧୁ । ସେ କିନ୍ତୁ ବାପାଙ୍କ ଅକାଳ ବିୟୋଗ କଥା କିଛି ଜାଣି ନାହିଁ । ମୁଁ କଲିକତାରେ ଆଜି ପହଞ୍ଚିବା କଥା ଏଲାହାବାଦରୁ ତାକୁ ଲେଖିଥିଲି ।

: ବୁଝିଲି । ଆପଣ ତାକୁ ବି ତ ଆସିବାକୁ କହିଲେ ।

: ମୋ ମନର ଅବସ୍ଥା ବର୍ତ୍ତମାନ ଯାହା ମିଷ୍ଟର ମହାପାତ୍ର, ଦଳେ କେହି ପରିଚିତ ଲୋକ ଆସି ମୋ ଚାରିପାଖରେ ବେଢ଼ି ନ ବସିଲେ ମୁଁ ପାଗଳୀ ହୋଇଯିବି । ହଁ, ମୁଁ ପାଗଳୀ ହେଇଯିବି ମିଷ୍ଟର ମହାପାତ୍ର ।

: କିନ୍ତୁ ଆପଣଙ୍କ ବାପାଙ୍କର ହତ୍ୟାକାରୀକୁ ଖୋଜି ବାହାର କରିବାକୁ ହେଲେ, ଆପଣଙ୍କୁ ପ୍ରତିଶୋଧ ପରାୟଣା ହେବାକୁ ହେବ ମିସ୍ ଚଉଧୁରୀ । ଆପଣ ପାଗଳୀ ହେଲେ ଚଳିବ ନାହିଁ ।

: ମୁଁ କ'ଣ କରିବି କୁହନ୍ତୁ ମିଷ୍ଟର ମହାପାତ୍ର ? ଆପଣ ଯଦି ମୋ ଜାଗାରେ ଥାଆନ୍ତେ, ଅବଶ୍ୟ ମୁଁ ଜାଣେନା ଆପଣ ମୋ ପରି...

ପୁଣି ହଠାତ୍ ନୀରବ ହୋଇଗଲା ବେଗମ ଚଉଧୁରୀ । ସତ୍ୟବ୍ରତ ଆଡ଼େ ଛଳଛଳ ଆଖିରେ ଚାହିଁ କହିଲା : ବର୍ତ୍ତମାନ ଆପଣ ମୋର ଏକମାତ୍ର ସାହା ଭରସା ମିଷ୍ଟର ମହାପାତ୍ର । ଆପଣ ମୋତେ ରକ୍ଷା କରନ୍ତୁ ।

: ଆଚ୍ଛା ମିସ୍ ଚଉଧୁରୀ, ମିଷ୍ଟର ଚଉଧୁରୀଙ୍କ ବନ୍ଧୁ, ମାନେ ଯେଉଁମାନେ ତାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ସେମାନଙ୍କ ମଧ୍ୟରୁ ଆପଣଙ୍କର କାହାରି ସହିତ ପରିଚୟ ନାହିଁ ? ସତ୍ୟବ୍ରତ ପଚାରିଲେ ।

: ଅଛି । ସେମାନେ ଆସନ୍ତି ଯାଆନ୍ତି । ମୋତେ ସ୍ନେହ ଆଦର କରନ୍ତି । କିଏ କେତେବେଳେ ଗୋଟେ ଅଧେ ଉପହାର ନେଇ ଆସନ୍ତି । ବେଶ୍ ସେଇ ପର୍ଯ୍ୟନ୍ତ, ତା'ଠାରୁ ଅଧିକ ଆଉ କିଛି ସେମାନଙ୍କ ସହିତ ମୋର ସଂପର୍କ ନାହିଁ ।

: ହୁଁ, ବୁଝିଲି । ଆଉ ଗୋଟାଏ କଥା ମିସ୍ ଚଉଧୁରୀ ! ଆପଣ ତ ଏହି ଘର ଭିତରେ, ମାନେ ତଳ ଠାରୁ ଉପର ପର୍ଯ୍ୟନ୍ତ ମୁଁ ସବୁ ଘରର କଥା କହୁଛି । ଏହା ଭିତରେ ଯେଉଁଠି ଯାହା ଜିନିଷ ପତ୍ର ଅଛି, ଅଳ୍ପ ବହୁତେ ଆପଣ ସବୁ ଜାଣିଛନ୍ତି । ଆଚ୍ଛା କହିଲେ, ଘରର ସେହିସବୁ ଜିନିଷପତ୍ର ଭିତରୁ କିଛି ଅପହରଣ ହୋଇଛି କି ?

ବେଗମ ଚଉଧୁରୀ ହତାଶ ସ୍ୱରରେ କହିଲେ : ଆପଣଙ୍କର ଏହି ପ୍ରଶ୍ନ ଆପଣ ବରଂ ରଘୁ କକାକୁ ପଚାରନ୍ତୁ । ମୋ ଠାରୁ ସେ ଏହି ସବୁ ଘରର ଜିନିଷପତ୍ର ସହିତ ବେଶି ପରିଚିତ । ତା'ଛଡ଼ା ମୁଁ ବା କେଇ ଦିନ ଏ ଘରେ ଥାଏ ।

ସତ୍ୟବ୍ରତ ମହାପାତ୍ର ମୁହୂର୍ତ୍ତେ କ'ଣ ଚିନ୍ତା କଲେ ।

ତା'ପରେ ଧୀରେ ଧୀରେ ଫେରି ଆସିଲେ ଦୋତାଲାର ପ୍ରଥମ ଘରଟାକୁ ।

ରଘୁଆ ସେଇ ଘର ଦୁଆର ମୁହଁରେ ଠିଆ ହୋଇଥିଲା ।

ସତ୍ୟବ୍ରତ ମହାପାତ୍ର ଘର ଭିତରେ ଗୋଟିଏ ଚେଆର ଉପରେ ବସୁ ବସୁ କହିଲେ : ତମେ ମୋ ପାଖକୁ ଆସ ରଘୁ । ଆଉ କାଲି ସକାଳଠାରୁ ରାତି ଯାଏ ମାନେ ଯେତେବେଳଯାଏ ତୁମେ ସଚଳ ଥିଲ, ସବୁ କଥା ମନେ ପକେଇବାକୁ ଚେଷ୍ଟା କର ।

ରଘୁଆ ପାଦେ ପାଦେ କରି ଯାଇ ଘର ଭିତରେ ଠିଆ ହେଲା ।

: ଆଚ୍ଛା ରଘୁ, ଏଇ ଘର ଭିତରେ ଯାହା ସବୁ ଜିନିଷପତ୍ର ଦେଖୁଛ, କାଲି ପରି ସବୁ ଠିକ୍ ଜାଗାରେ ଅଛି ନା କିଛି ଏପାଖ ସେପାଖ ହୋଇଛି ?

: ରଘୁଆ କହିଲା : ମୋର କିନ୍ତୁ ମନେ ହେଉଛି ସବୁ ଘଣ୍ଟା ଚକଟା ହୋଇଛି ।

: କିଛି ଅପହରଣ ହୋଇ ନାହିଁ ତ ?

: ସେ କଥା କହିବା ବଡ଼ କଠିନ ଆଜ୍ଞା । ଛୋଟ ବଡ଼ କେତେ ଜିନିଷ ଘର ଭିତରେ ଥିଲା । ତା' ଭିତରୁ ଗୋଟାଏ ଅଧେ ଯଦି କିଏ ନେଇ ଯାଇଥାଏ ତେବେ ଜାଣିବା କ'ଣ ସହଜ କଥା ।

: ହୁଁ, ତା' ଅବଶ୍ୟ ସତ । ତେବେ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ମଧରୁ କିଛି ଏପାଖ ସେପାଖ ହୋଇଥିଲେ ନିଶ୍ଚୟ ଆଖିରେ ପଡ଼ିବ ।

ରଘୁଆ ଆଉ ଥରେ ଘରର ଚାରିଆଡ଼େ ଦୃଷ୍ଟି ବୁଲେଇ ନେଲା । ନା, ସେପରି କିଛି ତ ମନେ ହେଉ ନାହିଁ ।

ମୁଣ୍ଡ ହଲେଇ ସେ ମନା କଲା ।

ସତ୍ୟବ୍ରତ ପୁଣି ପଚାରିଲେ : କାଲି ସକାଳ ଠାରୁ ରାତି ଯାଏ ଯେଉଁମାନେ ତମର ବଡ଼ବାବୁଙ୍କ ସହିତ ଦେଖା କରିବାକୁ ଆସିଥିଲେ, ଠିକ୍ ଠିକ୍ ମନେ କରି ସେମାନଙ୍କର ନାମ ମୋତେ କୁହ । ସର୍ବ ପ୍ରଥମ କିଏ ଆସିଥିଲା ?

ସତ୍ୟବ୍ରତ ପକେଟ୍‌ରୁ ନୋଟ୍ ବୁକ୍ ବାହାର କଲେ ।

ରଘୁଆ ଆଖି ବୁଜି ଚିନ୍ତା କରିବାକୁ ଲାଗିଲା ।

\+ \+ \+

ଯେଉଁ ଝିଅଟିକୁ ବେଗମ ଚଉଧୁରୀ ଫୋନ୍ କରିଥିଲା ଆସିବା ପାଇଁ ତା' ନାଁ ହେଲେନ୍ ।

ହେଲେନ୍ ଆସି ବେଗମ ଚଉଧୁରୀର ବେକରେ ହାତ ଛନ୍ଦି ବହୁତ ବେଳ ଯାଏ କାନ୍ଦିଲା । ଝିଅଟି ସୁନ୍ଦରୀ, ବେଗମର ସମବୟସୀ ହେବ ।

ହେଲେନ୍‌ର ବାବା ତଳେ ଡ୍ରଇଂ ରୁମ୍‌ରେ ବସିଥିଲେ । ଭଦ୍ରଲୋକଙ୍କର ବୟସ ପଚାଶ ପଞ୍ଚାବନ ହେବ । ମୁଣ୍ଡଟି ଦେହ ତୁଳନାରେ ଟିକିଏ ଛୋଟ । ପେଟଟା ବାହାରି ପଡ଼ିଛି । ଆଖିରେ ଚଷମା ପିନ୍ଧିଛନ୍ତି । ଭଦ୍ରଲୋକ ସତ୍ୟବ୍ରତଙ୍କୁ ଦେଖି ଉଠି ଠିଆ ହୋଇ ପଡ଼ିଲେ । କହିଲେ : ମୋ ନାଁ ବ୍ରିଜଲାଲ । ମୁଁ ହେଲେନ୍‌ର ବାବା । ହଠାତ୍ ଚଉଧୁରୀ ସାହେବଙ୍କର ଏ ଅକାଳ ବିୟୋଗ ଶୁଣି, ମୁଁ ବିଶ୍ୱାସ କରିପାରିଲି ନାହିଁ ।

ସତ୍ୟବ୍ରତ ଇଙ୍ଗିତରେ ଭଦ୍ରଲୋକଙ୍କୁ ବସିବାକୁ କହି ନିଜେ ସୋଫା ଉପରେ ବସୁ ବସୁ କହିଲେ : ଆପଣଙ୍କର ଚଉଧୁରୀ ସାହେବଙ୍କ ସହିତ କେତେ ଦିନର ପରିଚୟ ?

: ସେ ଅନେକ ଦିନର ହେବ । ଆମେ, ମାନେ ଚଉଧୁରୀ ସାହେବ ଏ ଘର ତିଆରି କରିବା ପୂର୍ବରୁ ଭବାନୀପୁରରେ ପାଖାପାଖି ଦୁଇଟି ଫ୍ଲାଟ୍‌ରେ ଥିଲୁ । ତାଙ୍କ ସହିତ ଆମ ସଂପର୍କ ଏକ ପ୍ରକାର ଘରୋଇ ଥିଲା କହିଲେ ଚଳେ ।

: ଏହା ପୂର୍ବରୁ ଆପଣଙ୍କର କେବେ ଦେଖା ହୋଇଥିଲା ଚଉଧୁରୀ ସାହେବଙ୍କ ସହିତ ?

ବ୍ରିଜଲାଲ ଟିକିଏ ମନେ ପକେଇବାକୁ ଚେଷ୍ଟା କଲେ । କହିଲେ : ପ୍ରାୟ ଆଠ ଦଶଦିନ ପୂର୍ବରୁ ।

: ଆପଣ କ'ଣ ଏଠାକୁ ଆସିଥିଲେ, ନା ସେ ଆପଣଙ୍କ ଘରକୁ ଯାଇଥିଲେ ।

: ନା ଆଜ୍ଞା ! କ୍ଲବ୍‌ରେ ଦେଖା ହୋଇଥିଲା ।

: କ୍ଲବ୍ ?

: ହଁ, କ୍ଲବ୍ । 'ଇଭିନିଂ କ୍ଲବ୍' ନାଁ ଆପଣ ଶୁଣିଛନ୍ତି ? କଲିକତାର ଗୋଟାଏ ବଡ଼ କ୍ଲବ୍ । ଅବଶ୍ୟ କ୍ଲବ୍‌ଟା ଭବାନୀପୁର ଅଞ୍ଚଳରେ । ଆମେ ତହିଁରେ ଅନେକ ଦିନରୁ ମେମ୍ବର ।

: ତା'ହେଲେ ଇଭିନିଂ କ୍ଲବ୍‌ରେ ଚଉଧୁରୀ ସାହେବଙ୍କ ସହିତ ଆପଣଙ୍କର ସାତ ଆଠଦିନ ପୂର୍ବରୁ ଭେଟ ହୋଇଥିଲା । ସତ୍ୟବ୍ରତ ଆଖିବୁଜି କ'ଣ ଚିନ୍ତା କରି ପୁଣି କହିଲେ, ସେଦିନ ଚଉଧୁରୀ ସାହେବ ଆପଣଙ୍କୁ ଏ କଥା କିଛି କହୁଥିଲେ ?

: କୋଉ କଥା ? ବ୍ରିଜଲାଲ ଯେପରି ଚମକି ଉଠିଲେ ।

: ମାନେ ତାଙ୍କର ଏହି ଦୁର୍ଦ୍ଦିନର କଥା । କିପରି ସେ ଦୁଶ୍ଚିନ୍ତାରେ ଅଛନ୍ତି । ଶତ୍ରୁମାନେ କିପରି ତାଙ୍କ ଚାରି ପାଖରେ ବ୍ୟୂହ ରଚନା କରି ଘୂରି ବୁଲୁଛନ୍ତି ।

ବ୍ରିଜଲାଲ ବୋଧହୁଏ ସତ୍ୟବ୍ରତଙ୍କର ଏହି ଧରଣର କଥାରୁ କିଛି ବୁଝିପାରୁ ନଥିଲେ ।

ସେ କହିଲେ : ଶତ୍ରୁମାନେ ବ୍ୟୂହ ରଚନା କରିଛନ୍ତି, ମାନେ ?

: ତା'ହେଲେ ଚଉଧୁରୀ ସାହେବ ତାଙ୍କ ଜୀବନର ଚରମ ଦୁର୍ଦ୍ଦିନର କଥା ଆପଣଙ୍କୁ କିଛି କହି ନାହାନ୍ତି ? ସତ୍ୟବ୍ରତ ସହଜ ଓ ସରଳ ସ୍ୱରରେ ପଚାରିଲେ ।

: ନା, ତା'ଛଡ଼ା ଚଉଧୁରୀ ସାହେବଙ୍କର ଅଭାବ ତ କିଛି ନଥିଲା । ସଂସାରରେ ବି ଝିଅ ଛଡ଼ା ଦ୍ୱିତୀୟ କେହି ନଥିଲେ । ତେଣୁ ତାଙ୍କର ଦୁର୍ଦ୍ଦିନ ହୁଅନ୍ତା କାହିଁକି ?

ସତ୍ୟବ୍ରତ ବ୍ରିଜଲାଲ ମୁହଁକୁ ବହୁତ ସମୟ ଯାଏ ଅନାଇ ରହି କହିଲେ : ଚଉଧୁରୀ ସାହେବ ଯେ କିଛିଦିନ ହେବ ଖୁବ୍ ଦୁଶ୍ଚିନ୍ତାରେ ପଡ଼ିଥିଲେ, ସେ କଥା ଆପଣଙ୍କୁ କିଛି କହି ନାହାନ୍ତି ?

: ନା, ମୋ ସଂଗରେ ଯେଉଁଦିନ ଦେଖା ହୋଇଥିଲା ସେଦିନ ତ ସେ ଖୁବ୍ ଭଲ ଥିଲେ । ଅତି ସହଜ ଓ ତାଙ୍କର ସ୍ୱଭାବ ସୁଲଭ କଥାବାର୍ତ୍ତା କରୁଥିଲେ । ମୁଁ ତ ତାଙ୍କର କୌଣସି ପରିବର୍ତ୍ତନ ଲକ୍ଷ୍ୟ କରି ନଥିଲି ।

: ହୁଁ, ତା'ହେଲେ ଆପଣ କହୁଛନ୍ତି ଆପଣ ଯେଉଁଦିନ ଚଉଧୁରୀ ସାହେବଙ୍କୁ ଭେଟିଥିଲେ ସେଦିନ ସେ ମାନସିକ ଦିଗରୁ ସୁସ୍ଥ ସବଳ ଥିଲେ । କ୍ଲବ୍‌ରେ ଆଉ କେଉଁ ବନ୍ଧୁମାନଙ୍କର ତାଙ୍କ ସହିତ ଭେଟ ହୋଇଥିଲା ?

ବ୍ରିଜଲାଲ ସତ୍ୟବ୍ରତଙ୍କର ଏତେ ଖୋଳି ତାଡ଼ି ପଚାରିବାର ଅର୍ଥ କିଛି ବୁଝିପାରୁ ନଥିଲେ । ସ୍ୱରରେ ତାଙ୍କର ଟିକିଏ ଅସ୍ୱାଭାବିକତା ପରିଲକ୍ଷିତ ହେଲା, ସେ କହିଲେ : ଚଉଧୁରୀ ସାହେବଙ୍କ ସଂପର୍କରେ ଏତେ କଥା ଆପଣ କାହିଁକି ପଚାରୁଛନ୍ତି ?

ସତ୍ୟବ୍ରତ ସ୍ମିତ ହସି କହିଲେ : ଆପଣ ଜାଣି ନାହାନ୍ତି ବୋଧେ, ଚଉଧୁରୀ ସାହେବଙ୍କର ଅସ୍ୱାଭାବିକ ମୃତ୍ୟୁ ହୋଇଛି ।

: ଅସ୍ୱାଭାବିକ ମୃତ୍ୟୁ, ମାନେ ?

: ତାଙ୍କୁ ଖୁଣ୍ କରା ହୋଇଛି ।

: ଖୁଣ୍ ? ବ୍ରିଜଲାଲ ହଠାତ୍ ସୋଫା ଉପରୁ ଉଠି ଠିଆ ହୋଇ ପଡ଼ିଲେ ।

ସତ୍ୟବ୍ରତ ସେହିପରି ଶାନ୍ତ କଣ୍ଠରେ କହିଲେ : ସେଇଥିପାଇଁ ମୋର ଆପଣଙ୍କୁ ଏତେ ପ୍ରଶ୍ନ । ଚଉଧୁରୀ ସାହେବ ଆପଣଙ୍କର ପୁରାତନ ବନ୍ଧୁ । ତାଙ୍କର ହତ୍ୟାକାରୀକୁ ଧରିବା ପାଇଁ ଆପଣଙ୍କର ସହଯୋଗ ଆମର ଏକାନ୍ତ ଭାବରେ କାମ୍ୟ ।

ବ୍ରିଜଲାଲଙ୍କ ମୁହଁରେ ଭୟର ଛାଇ ଫୁଟି ଉଠିଥିଲା । ଧୀରେ ଧୀରେ ସେ ଶାନ୍ତ ହୋଇ କହିଲେ : ମୁଁ ଭାବିଥିଲି ଚଉଧୁରୀ ସାହେବ ହାର୍ଟଫେଲ୍ କରିଛନ୍ତି । ପ୍ରଥମେ ତ ତାଙ୍କ

ମୃତ୍ୟୁ ସମ୍ବାଦ ମୁଁ ବିଶ୍ୱାସ କରପାରି ନଥିଲି । ସେ ଯାହାହେଉ, ଚଉଧୁରୀ ସାହେବଙ୍କ ଭଳି ଲୋକକୁ କିଏ କାହିଁକି ଯେ ଖୁଣ୍ କଲା..

: ହଁ, ଆପଣ ସେଇ ଦିନର ଘଟଣା କୁହନ୍ତୁ ବ୍ରିଜଲାଲଜୀ, ଯେଉଁଦିନ ଇଭିନିଂ କ୍ଲବ୍‌ରେ ତାଙ୍କ ସହିତ ଆପଣଙ୍କର ଭେଟ ହୋଇଥିଲା । ସେଦିନ ଆଉ କିଏ କିଏ ତାଙ୍କ ସହିତ ଥିଲେ । ଯଥା ସମ୍ଭବ ମନେପକାଇ ଆପଣ ସେଦିନର ଗୋଟିଏ ତାଲିକା ମୋତେ ଦେଇପାରିଲେ ଯଥେଷ୍ଟ ଉପକାର ହୁଅନ୍ତା ।

: ନିଶ୍ଚୟ, ନିଶ୍ଚୟ । ବ୍ରିଜଲାଲ ଟିକିଏ ବ୍ୟସ୍ତ ହେଲା ପରି ହୋଇ ନୀରବରେ ଆଖି ବୁଜିଲେ । ବୋଧହୁଏ ସେ ଫେରି ଯାଇଥିଲେ ଅତୀତକୁ । କିଛି ସମୟ ପରେ ଦରନିମିଳିତ ଆଖିରେ କହିଲେ, ହଁ, ମନେପଡ଼ିଲା, ସେଦିନ ଥିଲା ଶନିବାର । ମୁଁ ରେସ୍‌କୋର୍ସରୁ ସିଧା ଫେରି ଆସିଥିଲି କ୍ଲବ୍‌କୁ । ଏଇ ସଞ୍ଜ ସାଢ଼େ ଛଅ କି ସାତଟା ହେବ ।

ଚଉଧୁରୀ ସାହେବ କିନ୍ତୁ ମୋଠାରୁ ଅନେକ ଆଗରୁ ଆସିଥିଲେ । ମୁଁ ପ୍ରଥମେ ତାଙ୍କୁ ଭେଟିଥିଲି ଚେସ୍ ଖେଳ ଟେବୁଲ୍‌ରେ । ତାଙ୍କ ସହିତ ଜର୍ଜ ବସି ଖେଳୁଥିଲେ । ସେମାନେ ଦୁହେଁ ଅତ୍ୟନ୍ତ ଗମ୍ଭୀର ହୋଇ ବସିଥିଲେ । ତେଣୁ ପ୍ରଥମ ଦେଖାରେ ସେମାନଙ୍କ ସହିତ ମୋର କିଛି କଥା ହୋଇ ନଥିଲା । ମୁଁ ଅନ୍ୟତ୍ର ଚାଲିଯାଇଥିଲି ।

ତା'ପରେ ପୁଣି ଭେଟ ହେଲା ଡାଇନିଂ ହଲ୍‌ରେ । ଏକା ସେ ଗୋଟାଏ କୋଣରେ ବସି କଫି ପିଉଥିଲେ । ମୋତେ ଦେଖିବାକ୍ଷଣି ଡାକ ପକେଇଲେ । ମୁଁ ଯାଇ ତାଙ୍କର ଗମ୍ଭୀର ମୁଖଭାବ ଦେଖି ପଚାରିଥିଲି : ଆଜି ଜର୍ଜ ସହିତ ଚାଲ୍‌ରେ ହାରିଗଲେ ବୋଧହୁଏ ।

ଚଉଧୁରୀ ସାହେବ କହିଲେ : ସମୟ ଖରାପ ପଡ଼ିଲେ ମଣିଷ ହାରିଯାଏ । ମୋର ଦୁଃସମୟ ଘନେଇ ଆସୁଛି ।

ମୁଁ ସେଦିନ ହସିଥିଲି ।

ତା'ପରେ ରାଘବନ ଆସି ଆମ ପାଖରେ ବସିଥିଲା । ସେ ଭାରି ମଜାର ଲୋକ । ଦୁଇ ମିନିଟ୍‌ରେ ଚଉଧୁରୀ ସାହେବଙ୍କ ମନ ପୁଣି ସତେଜ ହୋଇ ଉଠିଲା ।

ଆମେ ସେଇ ଟେବୁଲ୍‌ରେ ସେଦିନ ପ୍ରାୟ ରାତି ଦଶଟା ବେଳଯାଏ ବସିଥିଲୁ । ନନ୍ଦ ଦୁଲାଲ, ସାଦିକ୍, ସେନ୍‌ଗୁପ୍ତ ଅନେକ ଆସି ରୁଣ୍ଡ ହୋଇଥିଲେ । ଏଣୁତେଣୁ ବାଜେ ଗପରେ ସବୁ ସମୟ ଚାଲି ଯାଇଥିଲା । ଅବଶ୍ୟ ସେଦିନ ଚଉଧୁରୀ ସାହେବଙ୍କ ପୂର୍ବରୁ ମୁଁ କ୍ଲବ୍ ଛାଡ଼ି ଚାଲି ଆସିଥିଲି ।

: ଆଚ୍ଛା ବ୍ରିଜଲାଲଜୀ ! ଆପଣ ଯେଉଁମାନଙ୍କ ନାଁ କହିଲେ, ମାନେ ସେଦିନ କ୍ଲବ୍‌ରେ ଯେଉଁମାନଙ୍କ ସହିତ ଆପଣଙ୍କର ଓ ଚଉଧୁରୀ ସାହେବଙ୍କର ଭେଟ ହୋଇଥିଲା, ସେମାନେ ନିଶ୍ଚୟ ସମାଜର ଜଣେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି !

: ହଁ, ହଁ, ନିଃସନ୍ଦେହରେ ପ୍ରତିଷ୍ଠିତ ସେମାନେ । ତା'ଛଡ଼ା ଇଭିନିଂ କ୍ଲବ୍‌ରେ ଯେଉଁମାନେ ମେମ୍ବର ସମସ୍ତେ ପ୍ରାୟ ଟିକିଏ ଉଚ୍ଚସ୍ତରର ଜୀବ । ମାନେ ସମସ୍ତଙ୍କର ଆୟ ମାସରେ ତିନି ହଜାରରୁ ବେଶି ନିଶ୍ଚୟ ।

: ହୁଁ, ବୁଝିଲି । ଆପଣ ତା'ହେଲେ ସେଦିନ ଚଉଧୁରୀ ସାହେବଙ୍କ ପୂର୍ବରୁ କ୍ଲବ୍ ଛାଡ଼ି ଚାଲି ଆସିଥିଲେ । କିନ୍ତୁ...

ପୁଣି କିଛି ସମୟର ନୀରବତା ।

ହଠାତ୍ ସତ୍ୟବ୍ରତ ପୁଣି ପଚାରିଲେ : ଆଚ୍ଛା, ଆପଣ ଚଉଧୁରୀ ସାହେବଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ଯେତେବେଳେ, ହୁଏତ ଜାଣିଥିବେ ମିଷ୍ଟର ଚଉଧୁରୀଙ୍କ ମୃତ୍ୟୁ ପରେ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରୀ ବେଗମ ନା ଅନ୍ୟ କେହି ଅଛି ? ମାନେ ସେମାନଙ୍କର ନିକଟ ଆତ୍ମୀୟ ଆଉ କେହି ଥିବାର ଆପଣ ଜାଣିଛନ୍ତି ?

: ନା, ତାଙ୍କ ପାରିବାରିକ ଘଟଣା ସମ୍ବନ୍ଧରେ ବିସ୍ତାରିତ ମୁଁ କିଛି ଜାଣେ ନାହିଁ। ତେବେ ମୋର ଯେତେଦୂର ମନେହୁଏ, ବେଗମ ଛଡ଼ା ତାଙ୍କର ଆଉ କେହି ନିକଟ ଆତ୍ମୀୟ ନାହାନ୍ତି ।

ସତ୍ୟବ୍ରତ ମହାପାତ୍ର ପୁଣି ନୀରବ ହୋଇଗଲେ । ଏଥର କିନ୍ତୁ ସେ ବ୍ରିଜଲାଲଙ୍କୁ ଆଉ କିଛି ନ ପଚାରି ଯେପରି ଧୀରେ ଧୀରେ ଆସି ଡ୍ରଇଂ ରୁମ୍‌ରେ ପ୍ରବେଶ କରିଥିଲେ, ସେହିପରି ଧୀରେ ଧୀରେ ପୁଣି ଉପରକୁ ଉଠି ଚାଲିଗଲେ ।

ରଘୁଆ ଦୋତାଲାର ପ୍ରଥମ ଘର ପାଖରେ ତଳେ ବସିଥିଲା ।

ଦ୍ୱିତୀୟ ଘରଟା ଭିତରେ ବେଗମ ଚଉଧୁରୀ ଆଉ ହେଲେନ୍ ବସିଥିଲେ । ସେମାନେ ଧୀରେ ଧୀରେ କ'ଣ କଥାବାର୍ତ୍ତା ହେଉଥିଲେ ।

ସତ୍ୟବ୍ରତ ବାହାରେ ଠିଆ ହୋଇ ଶୁଣିପାରୁ ନଥିଲେ ।

ଯେଉଁ ଘରେ ରମଣୀ ରଞ୍ଜନଙ୍କର ମୃତ ଦେହଟା ଆବିଷ୍କାର କରିଥିଲେ ସତ୍ୟବ୍ରତ ସେଇ ଘର ଆଡ଼କୁ ଆଗେଇ ଗଲେ ।

ଘରଟା ଭଲ ଭାବରେ ଆଉ ଥରେ ଦେଖିବାକୁ ତାଙ୍କର ଇଚ୍ଛା ହୋଇଥିଲା ।

ଏ ଘର ଭିତରେ ଆସବାବପତ୍ରର ସେପରି ଭିଡ଼ କିଛି ନଥିଲା, ବୋଧହୁଏ ଏକ ସମୟରେ ଚଉଧୁରୀ ପରିବାର ଏଇ ଘରଟାକୁ ଡାଇନିଂ ରୁମ୍ ହିସାବରେ ବ୍ୟବହାର କରୁଥିଲେ । କାରଣ ଗୋଟାଏ କୋଣରେ ଖଣ୍ଡେ ଲମ୍ବା ଟେବୁଲ ଏବଂ କାଚ ଆଲମାରୀରେ ବାସନ ପତ୍ର କିଛି ଦେଖା ଯାଉଥିଲା ।

ଘରଟା ଅନେକ ଦିନରୁ ଅପରିଷ୍କାର ହୋଇ ପଡ଼ି ରହିଥିବା ପରି ମନେ ହେଉଥିଲା ।

ତା'ହେଲେ ହଠାତ୍ ରମଣୀ ରଞ୍ଜନ ଚଉଧୁରୀ ଏଇ ଘରଟାକୁ ଆସିଥିଲେ କାହିଁକି ?

ହୁଏତ ରମଣୀ ରଞ୍ଜନ ବାବୁ ଏଇ ଘରେ ପ୍ରବେଶ କରିବା ମାତ୍ରକେ ଆତତାୟୀ ତାଙ୍କୁ ଆକ୍ରମଣ କରିଛି, ଅଥବା...

ଅଥବା ଆଉ କ'ଣ ହୋଇପାରେ ?

ରମଣୀ ରଞ୍ଜନ ନିଶ୍ଚୟ ତାଙ୍କର ଶୋଇବା ଘରେ ବା ଅଫିସ୍ ଘରେ ମର୍ଡ଼ର ହୋଇ ନାହାନ୍ତି ।

ହତ୍ୟାକାରୀ ଯଦି ଅନ୍ୟ କୌଣସି ଘରେ ତାଙ୍କୁ ମର୍ଡ଼ର କରିଥାଆନ୍ତା, ତା'ହେଲେ ସେଠାରୁ ଟାଣି ଟାଣି ଏଠାକୁ ବା ଆଣିଥାଆନ୍ତା କାହିଁକି ?

ତା'ହେଲେ ରମଣୀ ରଞ୍ଜନ କୌଣସି କାରଣରୁ ଏଇ ଘରକୁ ନିଶ୍ଚୟ ଆସିଥିଲେ ।

ଯଦି ଆସିଥିଲେ, ସେଇ ଆସିବାର କାରଣଟା କ'ଣ ହୋଇପାରେ ?

ସତ୍ୟବ୍ରତ ସ୍ଥିର ଓ ଗମ୍ଭୀର ହୋଇ ଘର ଭିତରେ ଠିଆହୋଇ ଚାରିଆଡ଼କୁ ଚାହିଁଲେ । ଏସବୁ କ୍ଷେତ୍ରରେ ମଣିଷ ଯେଉଁସବୁ ପଏଣ୍ଟଗୁଡ଼ିକୁ ଅବହେଳା କରି ଛାଡ଼ିଦିଏ, ଦେଖାଯାଏ ସେହି ପଏଣ୍ଟଗୁଡ଼ିକ ହିଁ ଅସଲ ପଏଣ୍ଟ ।

ତା'ହେଲେ ରମଣୀ ରଞ୍ଜନ କ'ଣ ଏଇ ଅଳିଆଗଦା ଭିତରେ ତାଙ୍କର ସେହି ଅମୂଲ୍ୟ ସମ୍ପଦ ଲୁଚେଇ ରଖିଥିଲେ ?

ସତ୍ୟବ୍ରତ ତା'ପରେ ତନ୍ନ ତନ୍ନ କରି ଘରର ପ୍ରତିଟି ଜିନିଷ ଦେଖିବାକୁ ଲାଗିଲେ ।

କାଛ ଆଲମାରୀ ଭିତରେ କେତେଗୁଡ଼ିଏ କପ୍ ପ୍ଲେଟ୍, କଳଙ୍କି ଧରା କଣ୍ଟା ଚାମଚ, ଆଉ...

ହଠାତ୍ ସତ୍ୟବ୍ରତ ସ୍ତବ୍ଧ ହୋଇ ଦେଖିଲେ, ଗୋଟିଏ ହାତବନ୍ଧା ଘଡ଼ି ।

ସତ୍ୟବ୍ରତ ଘଡ଼ିଟା ଉଠେଇ ନେଇ ଦେଖିଲେ । ଫେବରଲିଉବା, ସି'କିଙ୍ଗ୍ । ସେକେଣ୍ଡ କଣ୍ଟାଟା ଦ୍ରୁତ ଗତିରେ ଧାଇଁଛି ।

ଆଶ୍ଚର୍ଯ୍ୟ ବ୍ୟାପାର ତ !

ଏହି ଅଳିଆଗଦା ଭିତରେ ଏହି ଘଣ୍ଟାଟା ରଖିଲା କିଏ ?

ରମଣୀ ରଞ୍ଜନଙ୍କର ସେହି ମୂଲ୍ୟବାନ ଗୋପନୀୟ ବସ୍ତୁଟି ଏହାରି ଭିତରେ ଲୁଚି ରହି ନାହିଁ ତ !

ସତ୍ୟବ୍ରତ ବାହାରେ କାହାର ପାଦଶବ୍ଦ ଶୁଣି ଘଡ଼ିଟିକୁ ଦ୍ରୁତ ପକେଟ ଭିତରେ ରଖି ଦେଲେ । ବାହାରକୁ ଚାହିଁ ଦେଖିଲେ, ରଘୁଆ ତାଙ୍କରି ଆଡ଼କୁ ଆସୁଛି ।

: କ'ଣ କି ? ସତ୍ୟବ୍ରତ ପଚାରିଲେ ।

ରଘୁଆ କହିଲା : କିଏ ଜଣେ ବାବୁ ତଳେ ଆସି ଖୋଜୁଛନ୍ତି !

: ମୋତେ ?

: ନା, ଠିକ୍ ଆପଣଙ୍କୁ ନୁହେଁ । ତେବେ ସେ ବଡ଼ବାବୁଙ୍କର ଅକାଳ ବିୟୋଗ କଥା ଶୁଣି ଆସିଛନ୍ତି । ଉପରକୁ ଆସିବେ କହୁଥିଲେ । ମୁଁ ତାଙ୍କୁ ତଳେ ବସେଇ ଆସିଛି ।

: ବ୍ରିଜଲାଲ ବାବୁ ତଳେ ଡ୍ରଇଂ ରୁମ୍‌ରେ ବସିଥିଲେ ?

: ନା, ସେ ଚାଲିଗଲେଣି । ତାଙ୍କର କ'ଣ ଜରୁରୀ କାମ ଥିଲା ।

: ଆଉ ହେଲେନ୍ ?

: ସେ ଦିଦିଙ୍କ ପାଖରେ ବସିଛନ୍ତି ।

: ଆଚ୍ଛା ଚାଲ, ମୁଁ ଯାଉଛି ।

ରଘୁଆ ପଛେ ପଛେ ସତ୍ୟବ୍ରତ ମହାପାତ୍ର ତଳକୁ ଓହ୍ଲାଇ ଆସିଲେ । ଏଥର ଆସିଲା ବେଳକୁ ବେଗମ ଘରର ଦୁଆର ଭିତରୁ ବନ୍ଦ ହୋଇଥିଲା । ହେଲେନ୍ ଓ ବେଗମ ଆଗପରି ଫୁସ୍‌ଫାସ୍ କ'ଣ କଥାବାର୍ତ୍ତା ହେଉଥିଲେ ।

ସତ୍ୟବ୍ରତ ତଳେ ଡ୍ରଇଂ ରୁମ୍‌ରେ ଆସି ଦେଖିଲେ ଜଣେ ଦୀର୍ଘକାୟ ଲୋକ, ଝରକା ବାଟେ ବାହାରକୁ ଚାହିଁ ଠିଆ ହୋଇଛି ।

ପାଦଶବ୍ଦ ଶୁଣି ସତ୍ୟବ୍ରତ ଆଡ଼କୁ ବୁଲି ଅନେଇଲା । ଚାରିଆଖି ସ୍ଥିର ରହିଲା କିଛି ସମୟ ଯାଏ ।

ପ୍ରଥମେ ସେହି ଲୋକଟି କଥା ଆରମ୍ଭ କଲା : ମୁଁ ତ ଆପଣଙ୍କୁ ଚିହ୍ନିପାରୁ ନାହିଁ । ଆପଣ ରମଣୀ ରଞ୍ଜନ ବାବୁଙ୍କର...

: ନା ନା, ମୁଁ ତାଙ୍କର କେହି ହୁଏ ନାହିଁ । ଆପଣ କ'ଣ...

: ଦୂର ସଂପର୍କୀୟ ଭଣଜା ।

ସତ୍ୟବ୍ରତ ଚାହିଁଲେ ରଘୁଆ ମୁହଁକୁ ।

ଭଦ୍ରଲୋକ ସତ୍ୟବ୍ରତଙ୍କ ଚାହାଣିର ଅର୍ଥ ବୁଝିପାରି କହିଲେ : ନା ନା, ଏମାନେ କେହି ମୋତେ ଚିହ୍ନି ନାହାନ୍ତି । ମୁଁ ଏଲାହାବାଦ୍‌ରେ ଥାଏ । ବେଗମ୍‌ର ଲୋକାଲ୍ ଗାର୍ଡ଼ିଆନ୍ ।

: ହଠାତ୍ ଆପଣ...

: ମାମୁ ମୋତେ ଲେଖିଥିଲେ ଆସିବା ପାଇଁ । ଅବଶ୍ୟ ଚିଠିଟା ମୁଁ ଡେରିରେ ପାଇଲି । କାରଣ ମୁଁ ଏଲାହାବାଦରେ ନଥିଲି । କିନ୍ତୁ ଏଠାରେ ଆସି ଯେ ମୋତେ ଏପରି ଏକ ଦୁଃସମ୍ବାଦ ଶୁଣିବାକୁ ହେବ, ଆଶା କରି ନଥିଲି ।

: ଆପଣ କ'ଣ ସିଧା ଷ୍ଟେସନରୁ ଏଠାକୁ ଆସୁଛନ୍ତି ।

ହଁ, ଅବଶ୍ୟ ମୋର ଜଣେ ବନ୍ଧୁ ମୋ ସାଂଗରେ ଆସିଲେ । ତେଣୁ ତାଙ୍କ ଘରେ ମୋତେ ବାଧ ହୋଇ ଓହ୍ଲେଇବାକୁ ପଡ଼ିଲା । କିନ୍ତୁ ଆପଣଙ୍କର ପରିଚୟଟା...

: ମୋ ନାଁ ସତ୍ୟବ୍ରତ ମହାପାତ୍ର । ମୁଁ ଜଣେ ପ୍ରାଇଭେଟ୍ ଡିଟେକ୍‌ଟିଭ୍ ।

: ଓଃ, ବୁଝିଲି । ନମସ୍କାର । ଆପଣ ତା'ହେଲେ..

: ନା, ମୁଁ ବି ଆପଣଙ୍କ ପରି ଆଜି ଆସି ପହଞ୍ଚିଛି । ଆପଣ ଆସିଯାଇ ଖୁବ୍ ଭଲ କରିଛନ୍ତି । କାରଣ ବେଗମ ଖୁବ୍ ଅସହାୟ ହେଇ ପଡ଼ିଥିଲା । ଆପଣଙ୍କ ନାଁଟା...

: ମୋ ନାଁ ବ୍ୟୋମକେଶ ଚଉଧୁରୀ ।

: ଆପଣ କ'ଣ ଏହା ପୂର୍ବରୁ କେବେ ଏଠାକୁ ଆସି ନଥିଲେ ?

: ନା, ଅନ୍ତତଃ ଦଶ ବାର ବର୍ଷ ଭିତରେ ମୁଁ ଏଠାକୁ ଆସି ନାହିଁ । ମାମୁଙ୍କ ଠାରୁ ଏପରି ଏକ ଜରୁରୀ ଚିଠି ପାଇ ନଥିଲେ...

ବ୍ୟୋମକେଶ ବାବୁ କଥା ଅସମାପ୍ତ ରଖି ପକେଟ୍ ଅଣ୍ଡାଳିଲେ । ପ୍ୟାଣ୍ଟ ପକେଟ୍, ସାର୍ଟ ପକେଟ୍, କିନ୍ତୁ... ଏ କାଗଜ, ସେ କାଗଜ ଏପାଖ ସେପାଖ କରି ଶେଷରେ ଅସହାୟ ଦୃଷ୍ଟିରେ ସତ୍ୟବ୍ରତ ମୁହଁକୁ ଚାହିଁ କହିଲେ : ତରତରରେ ଚିଠିଟା ଛାଡ଼ି ଆସିଲି ବୋଧହୁଏ ।

: ଚିଠିର ବିଷୟବସ୍ତୁ କ'ଣ ଥିଲା ? ସତ୍ୟବ୍ରତ ପଚାରିଲେ ।

: ମାମୁ ଲେଖିଥିଲେ, ସେ ଖୁବ୍ ଅସହାୟ ହୋଇ ପଡ଼ିଛନ୍ତି । ତାଙ୍କର ମନେହେଉଛି ସେ ଆଉ ହୁଏତ ବେଶିଦିନ ବଂଚିପାରିବେ ନାହିଁ । ଶୀଘ୍ର ଆସି ତାଙ୍କ ସହିତ ଦେଖା କରିବା ଖୁବ୍ ଜରୁରୀ ।

: ହୁଁ, ଚିଠିଟା ତା'ହେଲେ ଆପଣ କେବେ ପାଇଲେ ?

: ମୁଁ କାଲି ରାତିରେ ଦିଲ୍ଲୀରୁ ଫେରି ପାଇଥିଲି । ଖବର ନେଲି ବେଗମ ମଧ ହଷ୍ଟେଲ ଛାଡ଼ି ଚାଲିଯାଇଛି । ଭାବିଲି ସିରିଅସ୍ ଗୋଟାଏ କିଛି ହୋଇଛି । ମୋର ତେଣେ ବହୁତ ଜରୁରୀ କାମ ଥିଲେ ମଧ ବାଧ ହେଲି ଆସିବା ପାଇଁ । ବେଗମ କିପରି ଅଛି ?

ସତ୍ୟବ୍ରତ ରଘୁଆ ଆଡ଼େ ଚାହିଁ କହିଲେ : ବାବୁଙ୍କୁ ଦିଦିଙ୍କ ପାଖକୁ ନେଇଯାଆ ରଘୁ ।

ବ୍ୟୋମକେଶ ଚଉଧୁରୀ ସୋଫାରୁ ଉଠି ଠିଆ ହେଲେ ।

ଦୁଇପାଦ ଆଗେଇ ଯାଇ ପୁଣି ପଛକୁ ଫେରିଆସି କହିଲେ : ବେଗମ ଆଗରେ ମୁଁ ଯାଇ ଯେ କିପରି ଠିଆ ହେବି, କିଛି ଭାବିପାରୁ ନାହିଁ ମିଷ୍ଟର ମହାପାତ୍ର ।

: ମଣିଷ ଜୀବନରେ ବହୁ ଦୁର୍ଘଟଣା ଘଟେ ବ୍ୟୋମକେଶ ବାବୁ । ସବୁ ଦୁର୍ଘଟଣାର ସମ୍ମୁଖୀନ ହେବା ପାଇଁ ଧୈର୍ଯ୍ୟର ଏକାନ୍ତ ପ୍ରୟୋଜନ । ଆପଣ ଯାଆନ୍ତୁ । ବେଗମ ଖୁବ୍ ଅସହାୟ ବୋଧ କରୁଛି ।

ବ୍ୟୋମକେଶ ଚଉଧୁରୀ ଧୀରେ ଧୀରେ, ପାଦେ ପାଦେ କରି ଉପରକୁ ଉଠି ଯାଉଥିଲେ ।

ସତ୍ୟବ୍ରତ ତାଙ୍କରି ଯିବା ପଥକୁ ନୀରବରେ ଅନାଇ ରହିଥିଲେ ।

ପୁଣି ଜଣେ ଅନାଗତ ଅତିଥି ।

ଏହାଙ୍କ ସମ୍ବନ୍ଧରେ ସତ୍ୟବ୍ରତର ଡାଇରୀରେ କୌଣସି ଟିପ୍‌ପଣୀ ନାହିଁ । ହୁଏତ ସତ୍ୟବ୍ରତଙ୍କ ଡାଇରୀର ପୃଷ୍ଠା ଏହାଙ୍କ ପାଇଁ ଉନ୍ମୋଚନ ହେବ ନାହିଁ ।

ତଥାପି ବ୍ୟୋମକେଶ ଚଉଧୁରୀ ଗୋଟିଏ ନାଁ ।

ଗୋଟିଏ ଚରିତ୍ର ।

ବ୍ୟୋମକେଶ ଚଉଧୁରୀ ରମଣୀ ରଞ୍ଜନଙ୍କର ଦୂର ସଂପର୍କୀୟ ।

ବେଗମ ଚଉଧୁରୀର ନିକଟ ସଂପର୍କୀୟ କି ?

ସତ୍ୟବ୍ରତ ଉଠି ଠିଆ ହେଲେ ।

\+ + +

ସେଦିନ ଆହୁରି ଅନେକ ଲୋକ ଆସିଥିଲେ ବେଗମ ଚଉଧୁରୀଙ୍କ ସହିତ ଦେଖା କରିବା ପାଇଁ । ବନ୍ଧୁ, ବାନ୍ଧବ, ଆତ୍ମୀୟସ୍ୱଜନ, ଅନେକ ଅନେକ ଆସିଥିଲେ । ସତ୍ୟବ୍ରତଙ୍କର ଧାରଣା ବଦଳିଗଲା ।

କିନ୍ତୁ ସେହି ଭିଡ଼ ଭିତରେ ସତ୍ୟବ୍ରତ ନିଜର ସତ୍ତା ହରାଇ ବସିଲେ । ଏହି ସମୁଦ୍ର ମନ୍ଥନରୁ କ'ଣ ଅମୃତଭାଣ୍ଡ ଆବିଷ୍କାର କରିବା ସମ୍ଭବ ହେବ ?

ରାତି ପ୍ରାୟ ନଅଟାବେଳକୁ ଧୀରେ ଧୀରେ ସତ୍ୟବ୍ରତ ସେ ଘରୁ ବାହାରିଗଲେ । ଯିବା ପୂର୍ବରୁ ପୋଲିସ୍ କନେଷ୍ଟବଲଙ୍କ କାନ ପାଖରେ କହିଗଲେ : ଲକ୍ଷ୍ୟ ରଖିଥିବ, ଏ ଘରୁ ଯେପରି ସୂତାଖିଏ କେହି ବାହାରକୁ ନେଇ ନ ପାରେ ।

କିନ୍ତୁ ତାହା କ'ଣ ସମ୍ଭବ ? କେହି ଯଦି ଅସତ୍ ଉଦ୍ଦେଶ୍ୟରେ ଘରେ ପ୍ରବେଶ କରେ ଏବଂ କୌଣସି ପଦାର୍ଥ ଧରି ବାହାରିଯାଏ, କନେଷ୍ଟବଲଙ୍କ ପକ୍ଷରେ ତାହାର ପ୍ରତିରୋଧ କରିବା କ'ଣ ସମ୍ଭବ ହେବ ?

ତଥାପି ଅନ୍ୟ ଉପାୟ ନାହିଁ ।

ସମୁଦ୍ର ଢେଉ ପରି ତୁହାକୁ ତୁହା ଲୋକ ବେଗମ ଚଉଧୁରୀକୁ ସମବେଦନା ଜଣାଇବା ପାଇଁ ଆସିବେ ଏକଥା ସତ୍ୟବ୍ରତ ମହାପାତ୍ର ମୋଟେ କଳ୍ପନା କରିପାରି ନଥିଲେ ।

ସେମାନଙ୍କ ମଧ୍ୟରୁ ଅନେକଙ୍କୁ କିଛି କିଛି ପ୍ରଶ୍ନ କରିଥିଲେ ସତ୍ୟବ୍ରତ ମହାପାତ୍ର, କିନ୍ତୁ କାହାରିଠାରୁ ଆଶାଜନକ ଉତ୍ତର କିଛି ପାଇ ନଥିଲେ ।

ରମଣୀ ରଞ୍ଜନ ଚଉଧୁରୀଙ୍କ ହତ୍ୟା ଅତି ଆକସ୍ମିକ ଏବଂ ଅବିଶ୍ୱାସ୍ୟକର । ସମସ୍ତେ ଏହି କଥାର ଉତ୍ତର ଦେଇଥିଲେ ।

କିନ୍ତୁ ରମଣୀରଞ୍ଜନ ଚଉଧୁରୀ ଯେ ଅନେକ ଦିନରୁ ଭୀତ ସଂତ୍ରସ୍ତ ହୋଇଥିଲେ, ସେକଥା କେହି ବିଶ୍ୱାସ କରିପାରିଲେ ନାହିଁ । ସତ୍ୟବ୍ରତ ମହାପାତ୍ର ମଧ୍ୟ ତାହା ସପକ୍ଷରେ କୌଣସି ଯୁକ୍ତି ଠିଆ କରିପାରିଲେ ନାହିଁ ।

ଶେଷ ପର୍ଯ୍ୟନ୍ତ ସତ୍ୟବ୍ରତ ଗୃହ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । କାରଣ ତାଙ୍କୁ ସମସ୍ତେ ଆସି ପ୍ରଶ୍ନ କରୁଥିଲେ, ନାନା ଧରଣର, ନାନା ପ୍ରକାରର ।

ଉତ୍ତର ଦେଇ ଦେଇ ଅବଶ ହୋଇ ପଡ଼ିଥିଲେ ସେ । ତାଙ୍କର ସମସ୍ତ ଉତ୍ସାହ ଯେପରି ପକ୍ଷାଘାତଗ୍ରସ୍ତ ହୋଇ ପଡ଼ିଥିଲା ।

ମନେହେଉଥିଲା, ସେ ଏ ଘରୁ ବାହାରିଗଲେ, ହୁଏତ ରକ୍ଷା ପାଇଯିବେ ।

ଶେଷ ପର୍ଯ୍ୟନ୍ତ ବାହାରିଯିବାକୁ ବାଧ ହୋଇଥିଲେ ।

କେଉଁଠାକୁ ଯିବେ ?

ରାସ୍ତାକୁ ବାହାରିପଡ଼ି ତାଙ୍କର ମନେହୋଇଥିଲା ସେ ଯେପରି ଏକ ଗୋଲକଧନ୍ଦା ମଧ୍ୟରେ ପାଦ ଦେଇଛନ୍ତି ।

ପ୍ରକୃତରେ ରମଣୀ ରଞ୍ଜନ ଚଉଧୁରୀଙ୍କ ହତ୍ୟାକାଣ୍ଡ ପଛରେ କାହାର କି ଉଦ୍ଦେଶ୍ୟ ନିହିତ ଅଛି ?

ହୀରାଚୋରି ଯଦି ଏ ହତ୍ୟାକାଣ୍ଡର ମୁଖ୍ୟ ପଟ୍ଟଭୂମି ହୋଇଥାଏ, ତେବେ ହତ୍ୟାକାରୀ ହୁଏତ ଉଦ୍ଦେଶ୍ୟ ସାଧନ କରି ଅଦୃଶ୍ୟ ହୋଇଛି ।

ସତ୍ୟବ୍ରତ ଧୀରେ ଧୀରେ ରାଜରାସ୍ତା ଉପରେ ଆଗେଇ ଥିଲେ । ଅନାବନା ଚିନ୍ତା ଭାବନା । ଏହାପରେ ତାଙ୍କର କର୍ତ୍ତବ୍ୟ ?

ଅବଶ୍ୟ ବେଗମ ଚଉଧୁରୀର ଏ କ୍ଷେତ୍ରରେ ସକ୍ରିୟ ଭୂମିକା ଗ୍ରହଣ କରିବା ଉଚିତ ଥିଲା । ସେ କିନ୍ତୁ ନିଷ୍କ୍ରିୟ ମନେହେଉଛି । ନିଜ ଘର ସମ୍ବନ୍ଧରେ, ବନ୍ଧୁବାନ୍ଧବ ଆତ୍ମୀୟ ସ୍ୱଜନ ସମ୍ବନ୍ଧରେ ତା'ର ମୋଟେ କିଛି ବାସ୍ତବ ଅଭିଜ୍ଞତା ନାହିଁ । ଏ କ୍ଷେତ୍ରରେ ଏହି ପ୍ରଚଣ୍ଡ ଭିଡ଼ ଭିତରୁ ହତ୍ୟାକାରୀକୁ ଟାଣି ବାହାର କରିବା ଆଦୌ ସହଜ ନୁହେଁ ।

ସାମ୍ନାରେ ଗୋଟାଏ ଟ୍ୟାକ୍ସି ଦେଖି ସତ୍ୟବ୍ରତ ଅଟକାଇଲେ ।

ଟ୍ୟାକ୍ସିରେ ବସି ନିର୍ଦ୍ଦେଶ ଦେଲେ, ଭବାନୀପୁର ।

'ଇଭିନିଂ କ୍ଲବ୍'ଟା ଠିକ୍ ବଡ଼ ରାସ୍ତା କଡ଼ରେ । ନିଅନ୍ ସାଇନ୍ ଲାଇଟ୍‌ରେ କ୍ଲବ୍‌ର ପ୍ରବେଶ ପଥ ଉଜ୍ଜ୍ୱଳ ହୋଇ ଉଠିଛି ।

ସତ୍ୟବ୍ରତ ଟ୍ୟାକ୍ସିରୁ ଓହ୍ଲାଇ ପ୍ରଥମେ ରିସେପ୍‌ସନ୍ କାଉଣ୍ଟରରେ ପହଞ୍ଚିଲେ । ଭଦ୍ରମହିଳା ଭାରତୀୟା ନୁହନ୍ତି । ଅଳ୍ପ ବୟସ୍କା, ସୁଶ୍ରୀ ଚେହେରା ସତ୍ୟବ୍ରତ ଆଡ଼େ ଚାହିଁ ସ୍ମିତ ହସିଲେ ।

ସତ୍ୟବ୍ରତ କହିଲେ : ଆପଣଙ୍କୁ ମୋତେ ଟିକିଏ ସାହାଯ୍ୟ କରିବାକୁ ହେବ ।

ପୁଣି ଭଦ୍ରମହିଳା ହସିଲେ : ମୁଁ ସଦାସର୍ବଦା ଆପଣଙ୍କ ସେବା କରିବାକୁ ପ୍ରସ୍ତୁତ ମହାଶୟ, ଆଦେଶ କରନ୍ତୁ ।

: ଆପଣଙ୍କ ନାଁ ? ସତ୍ୟବ୍ରତ ପଚାରିଲେ ।

: ମିସ୍ ମାର୍ଗାରେଟା ।

ସତ୍ୟବ୍ରତ କହିଲେ : ଏହି କ୍ଲବ୍‌ର କେତେଜଣ ମେମ୍ବରଙ୍କ ସହିତ ମୋର ଏକାନ୍ତ ପ୍ରୟୋଜନ । ସେମାନଙ୍କର ପୂରା ନାମ ମୋତେ ଜଣା ନାହିଁ । ତେବେ ଆପଣ ଟିକିଏ ସାହାଯ୍ୟ କରିଲେ...

: ଉଦ୍ଦେଶ୍ୟ ? ମାର୍ଗାରେଟା ସ୍ମିତ ହସି ପଚାରିଲା ।

: ଆପଣ ରମଣୀ ରଞ୍ଜନ ଚଉଧୁରୀଙ୍କୁ ଚିହ୍ନନ୍ତି ? ସତ୍ୟବ୍ରତ ପୁଣି ପ୍ରଶ୍ନ କଲେ ।

ମାର୍ଗାରେଟା ଅଳ୍ପ ସମୟ ଆଖି ବୁଜି ଚିନ୍ତା କଲା । ତା'ପରେ ଉଚ୍ଛ୍ୱସିତ ହୋଇ କହିଲା : ଓଃ ହଁ, ମିଷ୍ଟର ଚଉଧୁରୀଙ୍କ କଥା ଆପଣ କହୁଛନ୍ତି ? ବିଚରା ଅତ୍ୟନ୍ତ ଭଦ୍ରଲୋକ । ତାଙ୍କ ଠିକଣାଟା ମୁଁ ଆପଣଙ୍କୁ ଦେଇପାରେ ।

ମାର୍ଗାରେଟା ଆଲମାରୀ ଖୋଲି ଗୋଟାଏ ଖାତା ଆଣିବାକୁ ହାତ ବଢ଼େଇ ଥିଲା ।

ସତ୍ୟବ୍ରତ କହିଲେ : ତାଙ୍କ ଠିକଣାଟା ମୋତେ ଜଣା ଅଛି । ଆପଣ ବରଂ ମିଷ୍ଟର ଚଉଧୁରୀଙ୍କର ଅନ୍ତରଙ୍ଗ ବନ୍ଧୁ ଜଣେ ଦୁଇଜଣଙ୍କର ଠିକଣା ଦିଅନ୍ତୁ ।

ମାର୍ଗାରେଟା କ'ଣ କହିବାକୁ ଯାଉଥିଲା । କିନ୍ତୁ ଆଉ ଜଣେ ଭଦ୍ରଲୋକ ଭିତରକୁ ପଶି ଆସୁଥିବାର ଦେଖି କହିଲା : ଓୟେଲ୍ କମ୍ ମିଷ୍ଟର ଜର୍ଜ । ଆଜି ଆପଣଙ୍କର ଏତେ ଡେରି କାହିଁକି ?

ମି: ଜର୍ଜ ସତ୍ୟବ୍ରତ ଆଡ଼କୁ ଚାହିଁ ଆନମନା ହୋଇ କହିଲେ : ଅନ୍ୟ ଗୋଟାଏ କାମରେ ଅଟକି ଯାଇଥିଲି । ଏ ଭଦ୍ରଲୋକଙ୍କୁ ତ ଚିହ୍ନିପାରିଲି ନାହିଁ ।

ମାର୍ଗାରେଟା କହିଲା : ସେ ଆପଣଙ୍କୁ ଖୋଜିବାକୁ ଆସିଛନ୍ତି ।

: ମୋତେ ?

: ମାନେ ଠିକ୍ ଆପଣଙ୍କୁ ନୁହେଁ, ମାର୍ଗାରେଟା ହସିଲା । କହିଲା, ମିଷ୍ଟର ଚଉଧୁରୀଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କୁ ସେ ଖୋଜୁଛନ୍ତି ।

ଜର୍ଜ ମିଷ୍ଟର ଚଉଧୁରୀଙ୍କ ନାଁ ଶୁଣି ଟିକିଏ ଯେପରି ଚଞ୍ଚଳ ହୋଇ ଉଠିଲେ । ସଂଗେ ସଂଗେ ଉତ୍ତର ଦେଲେ : ମିଷ୍ଟର ଚଉଧୁରୀ ଇଜ୍ ଡେଡ୍ ।

: ଡେଡ୍ ? ମାର୍ଗାରେଟା ସ୍ୱରରେ ବିସ୍ମୟ ଫୁଟି ଉଠିଲା ।

ସତ୍ୟବ୍ରତ କିନ୍ତୁ ଶାନ୍ତ କଣ୍ଠରେ କହିଲେ : ମୁଁ ଜାଣେ ।

: ଆପଣ ଜାଣନ୍ତି ? ଆପଣ ତା'ହେଲେ ତାଙ୍କର କ'ଣ କେହି ଆତ୍ମୀୟ ? ଜର୍ଜ ପଚାରିଲେ ।

: ଆତ୍ମୀୟ ନୁହେଁ, କିନ୍ତୁ ଶୁଭାକାଂକ୍ଷୀ । ଖୁବ୍ ଅସୁବିଧାରେ ପଡ଼ି ଆପଣଙ୍କ ପାଖକୁ ଆସିଛି ! ମିଷ୍ଟର ଚଉଧୁରୀଙ୍କର ପ୍ରାଇଭେଟ୍ ଜୀବନର କେତେକ କଥା ଜାଣିବା ନିତାନ୍ତ ଆବଶ୍ୟକ ହୋଇ ପଡ଼ିଛି, ସତ୍ୟବ୍ରତ କହିଲେ ।

: ଆପଣ କ'ଣ ପୋଲିସ ବିଭାଗରୁ ଆସିଛନ୍ତି ?

: ନା, ମୁଁ ଜଣେ ପ୍ରାଇଭେଟ୍ ଡିଟେକ୍ଟିଭ୍ ।

: ଓଃ ! ଜର୍ଜ ଆଉଥରେ ସତ୍ୟବ୍ରତ ମୁହଁକୁ ଚାହିଁ କହିଲେ, ଆପଣ ତା'ହେଲେ ମୋ ସହିତ ଭିତରକୁ ଆସନ୍ତୁ । ଅବଶ୍ୟ ମୁଁ ମିଷ୍ଟର ଚଉଧୁରୀଙ୍କ ମୃତ୍ୟୁ ସମ୍ବନ୍ଧରେ ବିଶେଷ କିଛି ଜାଣି ନାହିଁ । ତଥାପି ଆପଣଙ୍କୁ ସାହାଯ୍ୟ କରିବି । ମିଷ୍ଟର ଚଉଧୁରୀଙ୍କର ଏହି ଅକାଳ ବିୟୋଗ ଆମ ସମସ୍ତଙ୍କୁ ଖୁବ୍ ମର୍ମାହତ କରିଛି ।

ସତ୍ୟବ୍ରତ ମହାପାତ୍ର ଜର୍ଜ ସହିତ କ୍ଲବ୍‌ର କାଚ ଦୁଆର ଠେଲି ଭିତରକୁ ପଶିଲେ ।

ହଲ୍ ଭିତରେ ଅନେକ ଲୋକ ।

ଖାଦ୍ୟ ପାନୀୟରେ ବ୍ୟସ୍ତ ।

ଗୋଟିଏ ଜାଗାରେ ନାଚ ହେଉଛି । ଅର୍ଦ୍ଧ ଉନ୍ମାଦ ଲୋକମାନେ ହୋ ହୋ ହେଉଛନ୍ତି ।

ନର୍ତ୍ତକୀର ଅର୍ଦ୍ଧ ଉଲଙ୍ଗ ଦେହ ଆଡ଼େ ଚାହିଁ ହାତ ତାଳି ଦେଉଛନ୍ତି ।

ଜର୍ଜ ସେହି ଲୋକଗହଳି ଭିତରେ ଆଗେଇ ଥିଲେ, ପଛ ପଛେ ସତ୍ୟବ୍ରତ ।

ଏମାନେ ଯେ ହଲ୍ ମଝିରେ ଆଗେଇ ଚାଲିଛନ୍ତି, କାହାରି ଯେପରି ଏମାନଙ୍କ ଆଡ଼କୁ ଚାହିଁବାର ଫୁରୁସତ୍ ନାହିଁ ।

ଜର୍ଜ ଗୋଟାଏ ଲୁହା ଶିଡ଼ି ପାଖରେ ପହଞ୍ଚି ଟିକିଏ ଅପେକ୍ଷା କଲେ । ସତ୍ୟବ୍ରତ ପାଖରେ ପହଞ୍ଚିବାରୁ କହିଲେ : ଆପଣ ଏଇ ଶିଡ଼ିରେ ଉପରକୁ ଉଠି ଯାଆନ୍ତୁ । ଶିଡ଼ି ମୁଣ୍ଡର ପ୍ରଥମ ଘରଟାର ଦରଜା ଠେଲି ଭିତରକୁ ପଶିବେ । ଅପେକ୍ଷା କରିବେ । ମୁଁ ଏଇ ପାଞ୍ଚ ମିନିଟ୍ ଭିତରେ ଗୋଟାଏ ଜରୁରୀ କାମ ଶେଷ କରି ଯାଉଛି ।

ଜର୍ଜ ଅପେକ୍ଷା କଲେ ନାହିଁ । ସଂଗେ ସଂଗେ ସେଠାରୁ ଅନ୍ୟଆଡ଼େ ଚାଲିଗଲେ ।

ସତ୍ୟବ୍ରତ ମୁହୂର୍ତ୍ତେ ଠିଆ ହୋଇ ପଛକୁ ଚାହିଁଲେ । ହଲ୍ ଭର୍ତ୍ତି ନର-ନାରୀ । ଉତ୍କଟ ଆନନ୍ଦରେ ଆତ୍ମବିଭୋର ।

ପାଶ୍ଚାତ୍ୟ ସଙ୍ଗୀତର ମୂର୍ଚ୍ଛନା ହଲ୍ ଭିତରର ବାତାବରଣକୁ ଆହୁରି ଉତ୍ତେଜିତ କରି ରଖିଛି ।

ସତ୍ୟବ୍ରତ ଗୋଲେଇ ଶିଡ଼ିଟାର ପ୍ରଥମ ପାହାଚରେ ଗୋଡ଼ ଦେଇ ଉପରକୁ ଉଠିଲେ ।

ଏକ, ଦୁଇ, ତିନି ପୁଣି ଠିଆହେଲେ ଟିକିଏ... ଚାରି, ପାଞ୍ଚ, ଛଅ, ସତ୍ୟବ୍ରତ ଉପରକୁ ଚାହିଁଲେ । ଆଉ ସାତ ଆଠଟା ପାହାଚ ବାକି ।

କେଉଁଠିକି ସେ ଯାଉଛନ୍ତି ? ଜର୍ଜ ଯଦି ଏହି ହତ୍ୟାକାଣ୍ଡର ନାୟକ ହୋଇଥାଏ ?

ଶିଡ଼ି ଶେଷରେ ପ୍ରଥମ ଯେଉଁ ଘରଟି, ସତ୍ୟବ୍ରତ ସେଇ ଘରର ଦୁଆର ମୁହଁରେ ଠିଆ ହେଲେ । ଦରଜା ବନ୍ଦ ଥିଲା ।

ପାଖକୁ ପାଖ ଆଉରି କେତୋଟି ରୁମ୍ ।

କିନ୍ତୁ ସବୁ ରୁମ୍‌ଗୁଡ଼ିକ ଯେପରି ଶାନ୍ତ । ତଳେ ଏହି ସମୟରେ ଜୀବନର କଳରୋଳ ଉଠୁଥିବା ବେଳେ ଉପରର ଏହି ଘରଗୁଡ଼ିକ ସ୍ତବ୍ଧ କାହିଁକି ?

ସତ୍ୟବ୍ରତ ନିର୍ଦ୍ଦିଷ୍ଟ ରୁମ୍‌ଟିର ଦରଜା ଠେଲିଲେ । ଆଉଜା ହୋଇଛି । ଖୁବ୍ ଧୀରେ ଠେଲିଲେ, ଭିତରୁ ଯେପରି...

ହଁ ହଁ, ଟୁଂ... ଟାଂ... ଟିଂ...

ପିଆନୋର ଅତି କ୍ଳାନ୍ତ ସ୍ୱର ।

ଘର ଭିତରେ କିଏ ଯେପରି ଅବଶ ହୋଇ ବସି ପିଆନୋର ରିଡ୍‌ଗୁଡ଼ା ଉପରେ ଆନମନା ହୋଇ ଆଙ୍ଗୁଳି ଚଳାଉଛି ।

ତା'ହେଲେ ଏ ଘରଟା ନୁହେଁ ନା କ'ଣ ?

ଜର୍ଜ କିନ୍ତୁ କହିଥିଲା ଶିଡ଼ି ମୁଣ୍ଡର ପ୍ରଥମ ଘରଟା ।

ଏଇଟା ତ !

ସତ୍ୟବ୍ରତ ଆଉ ଟିକିଏ କବାଟ ଫାଙ୍କ କରି ଦେଖିଲେ, ରୁମ୍ ଭିତରେ ନୀଳ ଆଲୋକର ହାଲ୍‌କା ଆସ୍ତରଣ । ଅଳ୍ପ ଦୂରରେ ଜଣେ ମହିଳା ପିଆନୋ ଉପରେ ଦେହ ଭାର ନଦି ଶୋଇଛନ୍ତି । ଟୁଂ ଟାଂ ଶବ୍ଦ ବନ୍ଦ ହୋଇ ନାହିଁ ।

ସତ୍ୟବ୍ରତ ପୁଣି ଦରଜା ବନ୍ଦ କରି ଦେଉଥିଲେ ।

ଭିତରୁ କିନ୍ତୁ ଏକ କ୍ଲାନ୍ତ କଣ୍ଠର ସ୍ୱର ଶୁଣାଗଲା : କମ୍ ଇନ୍ ।

ସତ୍ୟବ୍ରତ ପୁଣି ଦରଜା ଖୋଲିଲେ । ଭଦ୍ରମହିଳା ସେହିପରି ପିଆନୋ ଉପରେ ଶୋଇରହି କହିଲେ : ଆପଣ ବସନ୍ତୁ ।

ସ୍ୱର କ୍ଲାନ୍ତ ହେଲେ ବି କଥା ଅସଂଲଗ୍ନ ନୁହେଁ । ଭଦ୍ରମହିଳା ତା'ହେଲେ ପ୍ରକୃତିସ୍ଥ ଅଛନ୍ତି ।

ସତ୍ୟବ୍ରତ ନୀରବରେ ଗୋଟିଏ ସୋଫା ଉପରେ ବସି ପଡ଼ିଲେ ।

ଭଦ୍ରମହିଳାଙ୍କର ଆଚରଣରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହେଲା ନାହିଁ ।

ମୁହୂର୍ତ୍ତକର ନୀରବତା ପରେ ଭଦ୍ରମହିଳା କଥା ଆରମ୍ଭ କଲେ : ଆପଣଙ୍କର କିନ୍ତୁ ଅନେକ ପୂର୍ବରୁ ଆସିବାର ଥିଲା । ମୁଁ ପ୍ରାୟ ଘଣ୍ଟାଏ ହେବ ଏଠାରେ ଆପଣଙ୍କୁ ଅପେକ୍ଷା କରି ବସିଛି ।

: ମୋତେ ? ସତ୍ୟବ୍ରତର ସ୍ୱର କିପରି ଅସ୍ୱାଭାବିକ ମନେହେଲା ।

: ହଁ, ଆପଣଙ୍କର ନଅଟାବେଳେ ଆସିବାର କଥା ନଥିଲା ?

: ନା, ମୋର ଆଜି ଏଠାକୁ ଆସିବାର ଆଦୌ କଥା ନଥିଲା ।

: କ'ଣ ? ଭଦ୍ରମହିଳା ଯେପରି ସଚେତନ ହୋଇ ଉଠିଲେ । ଆଖି ମଳି ଚାହିଁଲେ ସତ୍ୟବ୍ରତ ମୁହଁକୁ । କିଛି ସମୟର ନୀରବତା ପରେ କହିଲେ, ଆପଣ ମିଷ୍ଟର ହାଜରା ନୁହନ୍ତି ?

: ନା, ମୁଁ ମିଷ୍ଟର ମହାପାତ୍ର ।

: ମହାପାତ୍ର ! ଭଦ୍ରମହିଳା ଯେପରି କ୍ଷିପ୍ତ ହୋଇ ଉଠିଲେ । ଆପଣ କାହିଁକି ଆସିଲେ ଏଠାକୁ ? ଏ ରୁମ୍‌କୁ ଆସିବାକୁ କିଏ ଆପଣଙ୍କୁ ଅନୁମତି ଦେଲା ?

ସତ୍ୟବ୍ରତ ସୋଫା ଉପରୁ ଉଠି ଠିଆ ହୋଇ ପଡ଼ିଥିଲେ ।

ଭଦ୍ରମହିଳା ବି ଉଠି ପଡ଼ିଥିଲେ ପିଆନୋ ଉପରୁ ।

: ନା ନା, ଆପଣ ଖୁବ୍ ଅନ୍ୟାୟ କରିଛନ୍ତି, ଏଇ ମୁହୂର୍ତ୍ତରେ ଆପଣ...

ଭଦ୍ରମହିଳାଙ୍କ କଥା ଅସମାପ୍ତ ରହିଗଲା । ଦରଜା ଠେଲି ଘର ଭିତରେ ପ୍ରବେଶ କଲେ ଜର୍ଜ । ଭଦ୍ରମହିଳା ଓ ସତ୍ୟବ୍ରତକୁ ସେ ଏକ ଉତ୍ତେଜକ ପରିସ୍ଥିତିରେ ଦେଖି ତୀକ୍ଷ୍ଣ କଣ୍ଠରେ କହିଲେ : ମିସ୍ ରେବେକା, ଆପଣଙ୍କୁ ମୁଁ ବହୁତ ଥର କହିଛି ମୋର ଅନୁପସ୍ଥିତିରେ ଆପଣ ଏ ରୁମ୍‌ରେ ପଶିବେ ନାହିଁ । ଆପଣ ମୋ କଥା ମୋଟେ ଶୁଣୁ ନାହାନ୍ତି । ଆପଣଙ୍କର ଏହି ଅବାଧ ଆଚରଣ ପାଇଁ ଦିନେ ଗୋଟାଏ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହେବ ।

ଭଦ୍ରମହିଳା ଉଁ ଚୁଁ କିଛି କହିଲେ ନାହିଁ । କେବଳ ସତ୍ୟବ୍ରତଙ୍କ ମୁହଁକୁ କିଛି ସମୟ ଅସହିଷ୍ଣୁ ଦୃଷ୍ଟିରେ ଅନାଇ ରହି କହିଲେ : ଏକ୍ସକିଉଜ୍ ମି । ତା'ପରେ ଧୀରେ ଧୀରେ ସେ ରୁମ୍‌ରୁ ବାହାରି ଚାଲିଗଲେ ।

ରେବେକା ଚାଲିଯିବା ପରେ ଜର୍ଜ ଦରଜାଟାକୁ ବନ୍ଦ କରି, ଛିଟ୍‌କିଣି ଲଗେଇ ଦେଇ ଫେରିଆସି କହିଲେ : ପୃଥିବୀରେ କେତେପ୍ରକାର ଚରିତ୍ରର ଲୋକ ଯେ ଅଛନ୍ତି, ଆପଣ କଳନା କରିପାରିବେ ନାହିଁ ।

: ଏ ଭଦ୍ରମହିଳା...

ସତ୍ୟବ୍ରତ କଥା ଅସମାପ୍ତ ରଖି ନୀରବ ହେଲେ ।

: ମିସ୍ ରେବେକା ମୁଖାର୍ଜୀ । ୟାଙ୍କର ବୟସ କେତେ ହେବ ଜାଣନ୍ତି ? ପ୍ରାୟ ପଇଁତିରିଶ । କିନ୍ତୁ ଦୀର୍ଘ ଦଶବର୍ଷ ହେବ ସେ ଆମ ଏହି କ୍ଲବ୍‌ର ଅଧିକାଂଶ ମେମ୍ବରଙ୍କୁ ଜଳାଇବାରେ ଲାଗିଛନ୍ତି । ଜର୍ଜ କଣ୍ଠରେ ବିରକ୍ତି ମିଶିଥିଲା ।

ସତ୍ୟବ୍ରତ କହିଲା : ଭଦ୍ରମହିଳାଙ୍କଠାରେ ସେପରି କିଛି ଲକ୍ଷଣ ତ ଦେଖିଲି ନାହିଁ । କ'ଣ ସେ ଚାହାନ୍ତି ?

: ପ୍ରିୟନାଥ ହାଜରାଙ୍କୁ ।

: ସେ କିଏ ?

: ଭଦ୍ରମହିଳାଙ୍କର ଭାବୀ ସ୍ୱାମୀ- ଜର୍ଜ ହସି ହସି କହିଲେ । କିନ୍ତୁ ଦୀର୍ଘ ଏହି ଦଶବର୍ଷ ଭିତରେ ଆମେ ପ୍ରିୟନାଥ ହାଜରାଙ୍କର ଛାଇ ପର୍ଯ୍ୟନ୍ତ ଦର୍ଶନ କରି ନାହୁଁ । ରେବେକା କିନ୍ତୁ ପ୍ରତିଦିନ ଆସୁଛି । ସନ୍ଧ୍ୟା ପାଞ୍ଚଟା ଠାରୁ ରାତି ଏଗାର, ବାର, ମାନେ କ୍ଲବ୍ ବନ୍ଦ ହେବା ଯାଏ ସେ ଅପେକ୍ଷା କରି ବସିରହୁଛି ପ୍ରିୟନାଥ ହାଜରାଙ୍କ ପାଇଁ ।

: ଭାରି ଇଣ୍ଟରେଷ୍ଟିଂ ଘଟଣା ତ ? ସତ୍ୟବ୍ରତ କହିଲେ ।

: ଖାଲି ଇଣ୍ଟରେଷ୍ଟିଂ ନୁହେଁ ମିଷ୍ଟର ମହାପାତ୍ର, କରୁଣ ବି । ରେବେକା ମୁଖାର୍ଜୀ, ଖୁବ୍ ଗୋଟାଏ ଭଲ ବୁନିଆଦି ଘରର ଝିଅ । ତାଙ୍କ ବାପାଙ୍କୁ ମୁଁ ଜାଣିଥିଲି । ଭଦ୍ରଲୋକ ହାଇକୋର୍ଟର ଜଣେ ନାମଜାଦା ଆଡ଼ଭୋକେଟ ଥିଲେ । ପ୍ରଚୁର ପଇସା ରୋଜଗାର କରିଥିଲେ ଏକ ସମୟରେ । ସେ ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ ଏହି ରେବେକା ମୁଖାର୍ଜୀ । କିନ୍ତୁ ଭାରି କରୁଣ ଏହି ରେବେକାର ଇତିହାସ ।

: ନିଶ୍ଚୟ କୌଣସି ବିକୃତି ଭୋଗୁଛି ରେବେକା ? ସତ୍ୟବ୍ରତ ପଚାରିଲେ ।

: ହଁ ବିକୃତି ନୁହେଁ ତ ଆଉ କ'ଣ ! ଜର୍ଜ କହିଲେ । କିନ୍ତୁ ରେବେକାର ବାପା ଅନେକ ଚେଷ୍ଟା କରିଥିଲେ । ବହୁ ଚିକିତ୍ସକ, ବହୁ ମନୋବିଜ୍ଞାନୀ କିଛି କରିପାରିଲେ ନାହିଁ । ରେବେକା କିନ୍ତୁ ପ୍ରିୟନାଥ ହାଜରାଙ୍କ ପାଇଁ ଅପେକ୍ଷା କରି ବସିଛି । ତା'ର ଧାରଣା ଦିନେ ନା ଦିନେ ସେ ଆସିବେ ।

: ଏଇ ପ୍ରିୟନାଥ ହାଜରା ଭଦ୍ରଲୋକ ଜଣକ କିଏ ? ତାଙ୍କ ସମ୍ବନ୍ଧରେ ଆପଣ କିଛି ଜାଣନ୍ତି । ସତ୍ୟବ୍ରତ ପଚାରିଲେ ।

: ମୁଁ ବି କେବଳ ଶୁଣିଛି ମିଷ୍ଟର ମହାପାତ୍ର ।

: ପ୍ରିୟନାଥ ହାଜରା ତା'ହେଲେ କ'ଣ ଜୀବିତ ?

: ସେକଥା ଏକା ରେବେକା କହିପାରିବ । କାରଣ ପ୍ରିୟନାଥ ହାଜରାଙ୍କ ସହିତ ପ୍ରତ୍ୟକ୍ଷ ପରିଚୟ ଆମ କାହାରି ନାହିଁ । ରେବେକା ପ୍ରଥମ ଯେଉଁଦିନ ପ୍ରିୟନାଥ ହାଜରାଙ୍କ ଉଦ୍ଦେଶ୍ୟରେ ଏଠାରେ ଆସି ପହଞ୍ଚିଥିଲା, ସେଦିନ ମୁଁ ଉପସ୍ଥିତ ଥିଲି । ମିଷ୍ଟର ହାଜରା ଜଣେ ମେରିନ୍ ଇଂଜିନିଅର । ସେ କୌଣସି ଏକ ବିଦେଶୀ କମ୍ପାନୀରେ ଚାକିରି କରନ୍ତି । ସିଏ ଆମର ଏହି କ୍ଲବ୍‌ର ମେମ୍ବର ବି ନୁହନ୍ତି, ରେବେକା ସେଦିନ ଖୋଜିବାକୁ ଆସିଥିଲା ।

: ତା'ପରେ ?

: ତା'ପରେ- ଅନେକ ଦିନ ପରେ ଦେଖିଲି ରେବେକା ନିଜେ ଏହି କ୍ଲବ୍‌ର ମେମ୍ବର ହୋଇ ପଡ଼ିଛି । ଅବଶ୍ୟ ସେତେବେଳେ ରେବେକା ସମ୍ବନ୍ଧରେ ବିଶେଷ କିଛି ଜଣାଯାଇ

ନଥିଲା । ରେବେକା କ୍ରମେ କ୍ରମେ ଯେପରି ଅନେକଙ୍କର ନିକଟ ସଂପର୍କକୁ ଆସିଲା, ଆମେ ସେତେବେଳେ ଜାଣିଲୁ ଯେ...

ବାହାର ଦୁଆରେ କିଏ ନକ୍ କରିବାର ଶବ୍ଦ ହେଲା ।

ଜର୍ଜ ଉଠିଯାଇ କବାଟ ଖୋଲି ଦେଲେ ।

: ଆରେ ମିଷ୍ଟର ରାଘବନ୍ ଯେ ! ଆସନ୍ତୁ ଆସନ୍ତୁ ।

ମିଷ୍ଟର ରାଘବନ୍ ହଠାତ୍ ଘର ଭିତରେ ଜଣେ ତୃତୀୟ ବ୍ୟକ୍ତିଙ୍କୁ ଦେଖି ଜର୍ଜ ମୁହଁକୁ ଚାହିଁଲେ !

ଜର୍ଜ କହିଲେ : ମିଷ୍ଟର ମହାପାତ୍ର । ଚଉଧୁରୀ ସାହେବଙ୍କ କେସ୍ ତଦନ୍ତରେ ଏଠାକୁ ଆସିଛନ୍ତି ।

ରାଘବନ ସତ୍ୟବ୍ରତଙ୍କ ସହିତ ହାତ ମିଳେଇ କହିଲେ : ଭେରି ସ୍ୟାଡ୍ ନିଉଜ୍ ମିଷ୍ଟର ମହାପାତ୍ର । ଆମେ କେହି ଏପରି ଆଶା କରି ନଥିଲୁ । ମିଷ୍ଟର ଚଉଧୁରୀ ଆମ କ୍ଲବ୍‌ର ମେରୁଦଣ୍ଡ ପରି ଥିଲେ । ହଠାତ୍ ଯେ ଏପରି ଏକ ଦୁର୍ଘଟଣା ଘଟିବ, ଆମେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲୁ ।

ସତ୍ୟବ୍ରତ କହିଲେ : ଦୁର୍ଘଟଣାଟା ସବୁବେଳେ ଦୁର୍ଘଟଣା ମିଷ୍ଟର ରାଘବନ । ତାହା ସମସ୍ତଙ୍କ ଭାବନା ଦୁର୍ଭାବନାର ବାହାରେ । ଯାହାହେଉ, ଆପଣମାନେ ମିଷ୍ଟର ଚଉଧୁରୀଙ୍କର ବିଶ୍ୱସ୍ତ ବନ୍ଧୁ । ମୋତେ ଟିକିଏ ସହଯୋଗ କଲେ ହୁଏତ ହତ୍ୟାକାରୀକୁ ଖୋଜି ବାହାର କରିବା ସମ୍ଭବ ହେବ ।

: ନିଶ୍ଚୟ, ନିଶ୍ଚୟ । ଆପଣଙ୍କ ସହିତ ଆମେ ପୂର୍ଣ୍ଣ ପ୍ରାଣରେ ସହଯୋଗ କରିବୁ । କିନ୍ତୁ ହତ୍ୟାକାରୀର ମୋଟିଭ୍ ସଂକ୍ରାନ୍ତରେ ଆପଣ କିଛି ଅନୁମାନ କରିପାରିଲେଣି ? ରାଘବନ ପଚାରିଲେ ।

: ମୋଟିଭ୍ ତ ଗୋଟାଏ କିଛି ନିଶ୍ଚୟ ଅଛି । ଧୀରେ ଧୀରେ ତାହା ଫୁଟି ବାହାରିବ । ଆଚ୍ଛା ମିଷ୍ଟର ରାଘବନ, ଚଉଧୁରୀ ସାହେବଙ୍କ ସହିତ ଆପଣଙ୍କର ଶେଷ ଦେଖା କେବେ ହୋଇଥିଲା ?

ରାଘବନ ଟିକିଏ ଚିନ୍ତା କରି ମନେ ପକେଇବାକୁ ଚେଷ୍ଟା କଲେ । କହିଲେ : କ୍ଲବ୍‌କୁ ସେ ପ୍ରାୟ ଆଠ ନଅ ଦିନ ହେବ ଆସି ନାହାନ୍ତି । କିନ୍ତୁ ତାଙ୍କ ଘରକୁ ମୁଁ ଦୁଇ ତିନିଦିନ ପୂର୍ବରୁ ଯାଇଥିଲି । ସେ ଖୁବ୍ ବିଷଣ୍ଣ ମନେ ହେଉଥିଲେ ।

: କାରଣ ? ସତ୍ୟବ୍ରତ ପଚାରିଲେ ।

କାରଣଟା ମୋତେ ବି ଅଜ୍ଞାତ ମିଷ୍ଟର ମହାପାତ୍ର । କ'ଣ ଯେ ଚଉଧୁରୀ ସାହେବଙ୍କର ହଠାତ୍ ହେଲା, ମୁଁ କିଛି ବୁଝିପାରିଲି ନାହିଁ । ସେଦିନ ମ୍ଳାନ ହସ ହସି ମୋତେ କହିଥିଲେ - ଦିନ ସବୁଦିନ ସମାନ ଯାଏ ନାହିଁ ଭାଇ, ମୋର ସୁଖର ଦିନ ଶେଷ ହୋଇଛି, ଦୁଃଖର ଦିନ ଘନେଇ ଆସୁଛି ।

ମୁଁ ସେଦିନ ଭାବିପାରି ନଥିଲି ଚଉଧୁରୀ ସାହେବ ତାଙ୍କ ଅନ୍ତରର କଥା କହିଛନ୍ତି । ହସି ହସି ସାନ୍ତ୍ୱନା ଦେଇଥିଲି, ଦେହ ଭଲ ହୋଇଗଲେ ସବୁ ଠିକ୍ ହୋଇଯିବ ।

ସେ କିନ୍ତୁ ମୋ ଆଡ଼କୁ ଅନେକ ବେଳ ଯାଏ କରୁଣ ଆଖିରେ ଚାହିଁ ରହିଥିଲେ । ଆଉ ତାଙ୍କ ସହିତ ବିଶେଷ କିଛି କଥାବାର୍ତ୍ତା କରିବାକୁ ଉଚିତ ମନେକରି ନଥିଲି ।

: ସେ ତା'ହେଲେ ମନେ ମନେ ଖୁବ୍ ଆତଙ୍କିତ ହୋଇ ପଡ଼ିଥିଲେ ?

: ମୋର ତ ବର୍ତ୍ତମାନ ମନେ ହେଉଛି ସେଇଆ, କିନ୍ତୁ ସେତେବେଳେ ଏତେଟା ମୁଁ ଭାବିପାରି ନଥିଲି ।

: ସେଇ ଆତଙ୍କର କାରଣଟା କ'ଣ ହୋଇପାରେ ମିଷ୍ଟର ରାଘବନ ?

: କହି ପାରିବି ନାହିଁ । ସେଇଟା ମୋର ଚିନ୍ତାର ବାହାରର କଥା ।

: ହୁଁ, ଆପଣ ତା'ହେଲେ...

: ନା ମିଷ୍ଟର ମହାପାତ୍ର, ରାଘବନ ବ୍ୟସ୍ତ କଣ୍ଠରେ କହିଲେ, ମୁଁ ଚଉଧୁରୀ ସାହେବଙ୍କ ହତ୍ୟା ସମ୍ବନ୍ଧରେ କିଛି ଚିନ୍ତା କରିପାରୁ ନାହିଁ । ମନେ ହେଉଛି ଘଟଣାଟା ଯେପରି ଆକସ୍ମିକ । ଯା'ହେଉ ମୁଁ ଆପଣଙ୍କର ସଫଳତା କାମନା କରୁଛି ।

ତା'ପରେ ମିଷ୍ଟର ରାଘବନ ବାଁ ହାତର ସାର୍ଟଟା ଟାଣି ରିଷ୍ଟ୍ ଓ୍ୱାଚ୍‌ଟା ଦେଖିବାକୁ ଯାଇ ହଠାତ୍ ଯେପରି ଚମକି ଉଠିଲେ ।

ସତ୍ୟବ୍ରତ ଦେଖିଲେ ମିଷ୍ଟର ରାଘବନଙ୍କ ବାଁ ହାତର ରିଷ୍ଟରେ ଘଡ଼ି ନାହିଁ, କିନ୍ତୁ ଘଡ଼ିବନ୍ଧାର ଗୋଟାଏ ସାଦା ଦାଗ ରହିଛି ।

ରାଘବନ ପୁଣି କ୍ଷିପ୍ର ଗତିରେ ସାର୍ଟର ହାତଟା ଟାଣି ଦେଇ କହିଲେ : ମୋର ଗୋଟାଏ ଜରୁରୀ କାମ ଅଛି ଜର୍ଜ, ଭୁଲି ଯାଇଥିଲି ।

ରାଘବନ ଉଠି ଠିଆହେଲେ ।

ସତ୍ୟବ୍ରତଙ୍କ ହାତଟା ନିଜର ପ୍ୟାଣ୍ଟ ପକେଟରେ ପଶି ବୋଧହୁଏ ଗୋଟାଏ ରିଷ୍ଟଓ୍ୱାଚ୍‌ର ସନ୍ଧାନ କରୁଥିଲା । ହଁ ହଁ, ଏପର୍ଯ୍ୟନ୍ତ ପକେଟରେ ରହିଛି ସେହି ରିଷ୍ଟଓ୍ୱାଚ୍‌ଟା, ଯେଉଁଟାକୁ ସେ ଉଦ୍ଧାର କରିଥିଲେ ଚଉଧୁରୀ ସାହେବଙ୍କ ଡାଇନିଂ ରୁମ୍‌ରୁ । ତେବେ ସେଇ ଘଡ଼ିଟା କ'ଣ ମିଷ୍ଟର ରାଘବନଙ୍କର ?

ରାଘବନ ଚାଲି ଯାଇଥିଲେ । ଜର୍ଜ ସତ୍ୟବ୍ରତଙ୍କର ଚିନ୍ତାନ୍ୱିତ ମୁଖମଣ୍ଡଳ ଆଡ଼େ ଚାହିଁ କହିଲେ : ତା'ପରେ କୁହନ୍ତୁ ମିଷ୍ଟର ମହାପାତ୍ର !

ସତ୍ୟବ୍ରତ ଆତ୍ମସତ୍ତା ଫେରି ପାଇଲେ ।

: ହଁ, ତା'ପରେ କ'ଣ ହେଲା ?

: ତା'ପରେ ସେ ବହୁତ ଲମ୍ବା କାହାଣୀ ମିଷ୍ଟର ମହାପାତ୍ର । ରେବେକା ମୁଖାର୍ଜୀଙ୍କ ସହିତ ପ୍ରଥମେ ଯେଉଁଦିନ ମୋର ପରିଚୟ ହେଲା, ମାନେ ଯେଉଁଦିନ ତାଙ୍କ ସହିତ ଅନ୍ତରଙ୍ଗତା ସ୍ଥାପନ କରିବା ପାଇଁ ମୋର ମନରେ ଆଗ୍ରହ ଜନ୍ମିଲା, ସେଦିନ ରେବେକା ମୁଖାର୍ଜୀ ମୋତେ ନିରୋଳାକୁ ଡାକିନେଇ କ'ଣ କହିଥିଲେ ଜାଣନ୍ତି ?

ସତ୍ୟବ୍ରତଙ୍କ ମୁହଁରେ କିନ୍ତୁ କୌଣସି ଆଗ୍ରହ ଫୁଟିଲା ନାହିଁ । ସେ ଶାନ୍ତ ସ୍ୱରରେ କହିଲେ : ରେବେକା ମୁଖାର୍ଜୀଙ୍କ କାହାଣୀ ମୁଁ ଆଉଦିନେ ଆସି ଆପଣଙ୍କ ଠାରୁ ଶୁଣିଯିବି । ବର୍ତ୍ତମାନ ରାତି ଅନେକ ହେଲାଣି, ମୋତେ ଫେରିଯିବାକୁ ହେବ । ଆଚ୍ଛା, ଆପଣ ତ ଚଉଧୁରୀ ସାହେବଙ୍କ ହତ୍ୟା ସମ୍ବନ୍ଧରେ କିଛି କହିଲେ ନାହିଁ ?

: ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର ! ମୋତେ ତାଙ୍କ ମୃତ୍ୟୁ ସମ୍ବନ୍ଧରେ କିଛି ଜଣା ନାହିଁ । ମୁଁ ଆଜି ଦିନ ଦୁଇଟାରେ ଯେତେବେଳେ ଖବର ପାଇଲି, ପ୍ରଥମେ ବିଶ୍ୱାସ କରିପାରିଲି ନାହିଁ ।

: ଆପଣଙ୍କ ସହିତ ଚଉଧୁରୀ ସାହେବଙ୍କର ଶେଷ ଦେଖା କେବେ ହୋଇଥିଲା ?

: ମୋ ସହିତ ? ପ୍ରାୟ ଆଠ ନଅ ଦିନ ପୂର୍ବରୁ ଏଇ କ୍ଲବ୍‌ରେ ।

: ତା'ପରେ ତାଙ୍କ ଅସୁସ୍ଥତାର ଖବର ଆପଣ ପାଇ ନଥିଲେ ?

: ପାଇଥିଲି, ତେବେ ଅସୁସ୍ଥଟା ସେପରି ଭୟଙ୍କର ନୁହେଁ ବୋଲି ଦେଖା କରିବାକୁ ଯାଇ ନଥିଲି । ତା'ଛଡ଼ା ମୁଁ ଏତେ କାର୍ଯ୍ୟବ୍ୟସ୍ତ ଥିଲି ଯେ, ଆପଣ ଠିକ୍ ବୁଝିପାରିବେ ନାହିଁ ମିଷ୍ଟର ମହାପାତ୍ର ! ମୁଁ କିପରି ବ୍ୟସ୍ତ ଥିଲି ।

: ହୁଁ, ଆଚ୍ଛା ଆପଣ କହିପାରିବେ ଚଉଧୁରୀ ସାହେବଙ୍କ ମନରେ ଯେଉଁ ଗୋଟାଏ ଆଶଙ୍କଟା ଉଙ୍କି ମାରି ଉଠିଥିଲା, ସେ ଆଶଙ୍କାଟା କେଉଁଥିପାଇଁ ?

ମିଷ୍ଟର ଜର୍ଜ ଟିକିଏ ହସିବାକୁ ଚେଷ୍ଟା କରି କହିଲେ : ପୁଣି ସେହି ଜଟିଳ ପ୍ରଶ୍ନ ମିଷ୍ଟର ମହାପାତ୍ର । ମୁଁ ଏ କେତେମାସ ହେବ ମୋର ଗୋଟାଏ ଆଭ୍ୟନ୍ତରୀଣ ସମସ୍ୟାରେ ଏପରି ଆତ୍ମବିଭୋର ଅଛି ଯେ, କାହାରି କଥା ଗଭୀର ଭାବରେ ଚିନ୍ତା କରିବାକୁ ମୋ ମନରେ ଆଗ୍ରହ ନାହିଁ । ତେଣୁ ଚଉଧୁରୀ ସାହେବଙ୍କର ଏହା ଭିତରେ ଯଦି କୌଣସି ସମସ୍ୟାର ଉଦ୍ଭବ ହୋଇଥାଏ ବା ସେ ଯଦି କୌଣସି କାରଣରୁ ଆତଙ୍କିତ ହୋଇପଡ଼ିଥାଆନ୍ତି, ତେବେ ତାଙ୍କ ମନର ଖବର ମୋ ମନ ପାଖରେ ପହଞ୍ଚି ପାରି ନାହିଁ ।

: ହୁଁ, ତା'ହେଲେ ବର୍ତ୍ତମାନ ଆପଣ କୁଆଡ଼େ ଯିବେ ?

: ମୁଁ ଆହୁରି ଅଧଘଣ୍ଟା ଖଣ୍ଡେ ଏଇଠି ରହିବି । କେତେକ ଅଫିସିଆଲ କାମ ଶେଷ ନ କରିବା ଯାଏ ଯାଇପାରିବି ନାହିଁ ।

: ଆଚ୍ଛା, ମୁଁ ବର୍ତ୍ତମାନ ଉଠୁଛି । ଆପଣଙ୍କୁ କିନ୍ତୁ ପୁଣି ଆସି ବିରକ୍ତ କରିବି ।

: ନିଶ୍ଚୟ ନିଶ୍ଚୟ, ମିଷ୍ଟର ମହାପାତ୍ର- ଜର୍ଜ ଉଚ୍ଛ୍ୱସିତ ହୋଇ କହିଲେ । ଖାଲି ସେତିକି ନୁହେଁ, ରେବେକା ମୁଖାର୍ଜୀଙ୍କ ସହିତ ଆପଣଙ୍କୁ ବି ମୋତେ ପରିଚୟ କରେଇ ଦେବାକୁ ହେବ । ଆପଣ କାଳେ ଯଦି ପ୍ରିୟନାଥ ହାଜରାଙ୍କର ସନ୍ଧାନ ଦେଇପାରନ୍ତି, ତା'ହେଲେ ଭଦ୍ରମହିଳା ବଂଚିଯିବେ ।

ସତ୍ୟବ୍ରତଙ୍କ ମୁହଁରେ କୌଣସି ଆଗ୍ରହ ଫୁଟିଲା ନାହିଁ । ସେ ହାତ ହଲେଇ ଅଭିବାଦନ ଜଣାଇ ଫେରି ଆସୁଥିଲେ । ହଠାତ୍ ପୁଣି ଅଟକି ଯାଇ କହିଲେ : ଆଚ୍ଛା ମିଷ୍ଟର ରାଘବନଙ୍କ ଘର ଠିକଣାଟା ଆପଣଙ୍କୁ ଜଣାଅଛି ?

: ହଁ, ସେ ଗାରିଆହଟାରେ ରୁହନ୍ତି । କିନ୍ତୁ ଘର ନମ୍ବରଟା... କିଛି ସମୟ ଚିନ୍ତା କରି କହିଲେ, ଘର ନମ୍ବରଟା ଠିକ୍ ମୋର ମନେପଡୁ ନାହିଁ । ଆପଣ ଗୋଟାଏ କାମ କରିବେ । ଗଲାବେଳକୁ ରିସେପ୍‌ସନ କାଉଣ୍ଟରରେ ମାର୍ଗାରେଟାକୁ ପଚାରିବେ, ସେ କହିଦେବ ।

: ଧନ୍ୟବାଦ । ସତ୍ୟବ୍ରତ ଆଉ ଦ୍ୱିତୀୟ କଥା ନ କହି ଶିଡ଼ିର ପାହାଚ ଅତିକ୍ରମ କରି ତଳକୁ ଓହ୍ଲେଇ ଆସିଲେ ।

ହଲ୍ ଘରଟା ସାମାନ୍ୟ ଫାଙ୍କା ହୋଇଯାଇଥିଲା । ପାଶ୍ଚାତ୍ୟ ସଂଗୀତର ଏକ ଲଘୁ ବାତାବରଣ ହଲ୍ ଯାକ ଭାସି ବୁଲୁଥିଲା ।

ସତ୍ୟବ୍ରତ କିନ୍ତୁ ସିଧା ବାହାରିଗଲେ ବାହାରକୁ ।

\+ \+ \+

: ଆସନ୍ତୁ ମିଷ୍ଟର ମହାପାତ୍ର । ମାର୍ଗାରେଟା ସତ୍ୟବ୍ରତଙ୍କ ଆଡ଼କୁ ଚାହିଁ ସ୍ମିତ ହସିଲା ।

: ମୋତେ ପୁଣି ଆପଣଙ୍କ ନିକଟକୁ ଆସିବାକୁ ହେଲା । ସତ୍ୟବ୍ରତ କହିଲେ ।

ମୁଁ ଜାଣିଥିଲି ଆପଣ ଆସିବେ । କଫି ପିଅନ୍ତୁ । ଆପଣଙ୍କ ପାଇଁ ଅନେକ ବେଳୁ ମଗେଇ ରଖିଛି । ମାର୍ଗାରେଟା ଗୋଟାଏ କଫି ପୂର୍ଣ୍ଣ କପ୍ ସତ୍ୟବ୍ରତଙ୍କ ଆଡ଼କୁ ବଢ଼ାଇ ଦେଲା ।

: ମୁଁ ପୁଣି ଆସିବି ଆପଣ ଜାଣିଥିଲେ ? ସତ୍ୟବ୍ରତ ରହସ୍ୟମୟ ସ୍ୱରରେ ମାର୍ଗାରେଟାକୁ ପଚାରିଲେ ।

: ହଁ ମିଷ୍ଟର ମହାପାତ୍ର, ମୁଁ ଜାଣିଥିଲି । କାରଣ ପୁରୁଷ ଜାତିର ସାଇକୋଲୋଜି ମୁଁ ପଢ଼ି ଶେଷ କରିସାରିଲିଣି । କ୍ଷମା କରିବେ ମିଷ୍ଟର ମହାପାତ୍ର ! ମୁଁ ଏପରି କହୁଛି ବୋଲି କିଛି ଭାବିବେ ନାହିଁ ।

ସତ୍ୟବ୍ରତ ମୁହୂର୍ତ୍ତେ ଚାହିଁଲେ ମାର୍ଗାରେଟା ଆଡ଼କୁ । ସଦା ଚଞ୍ଚଳ ମାର୍ଗାରେଟାକୁ ଯେପରି ଆଳସ୍ୟ ଛୁଇଁପାରି ନାହିଁ । ରାତି ସାଢ଼େ ଦଶଟାରେ ବି ସେ କର୍ମ ଚଞ୍ଚଳ । ମାର୍ଗାରେଟା ତାଙ୍କ ପାଇଁ କଫି ରଖିଛି । କଥା କହିବା ପାଇଁ ଆଗ୍ରହୀ ଏବଂ ସେ ଜାଣିଥିଲା ସତ୍ୟବ୍ରତ ପୁଣି ତା' ପାଖକୁ ଆସିବେ । ତା'ହେଲେ କ୍ଷତି କ'ଣ ? ଏ ସୁଯୋଗ ହରେଇଲେ ହୁଏତ ଆଉ ମିଳିବ ନାହିଁ ।

ସତ୍ୟବ୍ରତ ନୀରବରେ କଫି କପ୍‌ରେ ମୁହଁ ଲଗାଇଲେ ।

ସଂପୂର୍ଣ୍ଣ ପ୍ରସଙ୍ଗ ବଦଳାଇ କହିଲେ : ବର୍ତ୍ତମାନ ମୋର କଫି କପ୍‌ଟା ଖୁବ୍ ଦରକାର ଥିଲା ।

ମାର୍ଗାରେଟା କିନ୍ତୁ କ୍ଷିପ୍ର ହସ୍ତରେ ଡ୍ରୟାର, ଆଲମିରା ସବୁ ବନ୍ଦ କରି ଚାଲିଥିଲା । କାମ ଶେଷରେ କହିଲା : ଆପଣ କେଉଁଆଡ଼େ ଯିବେ ?

: ମୁଁ ? ହଠାତ୍ ମୋ ସମ୍ବନ୍ଧରେ ଆପଣଙ୍କର ଏତେ ଆଗ୍ରହ କାହିଁକି ? ସତ୍ୟବ୍ରତ ସ୍ମିତ ହସି କହିଲେ ।

: ଆପଣଙ୍କ ପରି ରହସ୍ୟ ସନ୍ଧାନୀମାନଙ୍କୁ ମୋତେ ଭାରି ଭଲ ଲାଗେ । ସେଇଥିପାଇଁ ଆପଣଙ୍କ ପ୍ରତି ମୋ ମନରେ ଅସୀମ ଆଗ୍ରହ ।

: କିନ୍ତୁ ଖୁବ୍ ସାବଧାନ ମିସ୍ ମାର୍ଗାରେଟା । ନିଆଁ ସଂଗରେ ଖେଳିଲେ ହୁଏତ ହାତ ପୋଡ଼ିଯାଇପାରେ ।

: ଏ ଯୁଗରେ ବହୁ ପ୍ରତିଷେଧକ ବାହାରିଲାଣି ମିଷ୍ଟର ମହାପାତ୍ର । ମାର୍ଗାରେଟା ହୋ ହୋ ହୋଇ ହସି ଉଠିଲା । ସତ୍ୟବ୍ରତ ବି ହସିଲେ ।

: ତା'ହେଲେ ଆପଣ କ'ଣ ଆଜି ଏଇଠି ରାତ୍ରିଯାପନ କରିବେ ? ମାର୍ଗାରେଟା ପଚାରିଲା ।

: ନା ନା, ମୁଁ ବର୍ତ୍ତମାନ ଫେରିଯିବି । ମୋର କିନ୍ତୁ ଆପଣଙ୍କ ପାଖରେ ଗୋଟାଏ ଜରୁରୀ କାମ ଥିଲା ।

: ମୋ ପାଖରେ ? ମାର୍ଗାରେଟା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

: ହଁ, ମିଷ୍ଟର ରାଘବନଙ୍କର ଘର ଠିକଣାଟା ମୋର ଦରକାର ।

: ଓଁ ! ମାର୍ଗାରେଟା ପାଟିରେ ଆଙ୍ଗୁଠି କାମୁଡ଼ି କହିଲା, ଆଲମାରୀପତ୍ର ବନ୍ଦ କରିଲିଣି । ଥରେ ବନ୍ଦ କରି ସାରିବା ପରେ ଆଉ ମୁଁ ଖୋଲେ ନାହିଁ ମିଷ୍ଟର ମହାପାତ୍ର । ଆପଣ ବରଂ ଗୋଟାଏ କାମ କରନ୍ତୁ । ମୋ ସାଙ୍ଗରେ ଆସନ୍ତୁ, ମୁଁ ସେଇ ବାଟେ ଯିବି ତ ! ଆପଣଙ୍କୁ ଘରଟା ଦେଖେଇ ଦେଇ ଯିବି ।

ସତ୍ୟବ୍ରତ ଆଉ କିଛି ପ୍ରତିବାଦ କଲେ ନାହିଁ । ଉଠି ଠିଆ ହୋଇପଡ଼ିଲେ । ମାର୍ଗାରେଟା ସାଂଗରେ ବାହାରକୁ ବାହାରି ଗଲେ ।

ଟ୍ୟାକ୍ସିରେ ଉଠିବା ପୂର୍ବରୁ ମାର୍ଗାରେଟା କହିଲା : ମୋତେ କିନ୍ତୁ ରାଘବନଙ୍କ ଘରକୁ ଡାକିବେ ନାହିଁ ମିଷ୍ଟର ମହାପାତ୍ର । ମୁଁ ଖାଲି ଘରଟା ଚିହ୍ନେଇ ଦେବି ।

: କାହିଁକି ? ସତ୍ୟବ୍ରତ ପଚାରିଲେ ।

: ଏତେ ରାତିରେ କାହାରି ଘରକୁ ଯିବାକୁ ମୋତେ ଭଲ ଲାଗେ ନାହିଁ । ତା'ଛଡ଼ା ମିଷ୍ଟର ରାଘବନ ମୋର ବସ୍ ଶ୍ରେଣୀୟ ।

: ମିଷ୍ଟର ରାଘବନଙ୍କର ନିକଟ ସଂପର୍କରେ ଆପଣ କେବେ ଆସିଛନ୍ତି ?

: ମାନେ ? ମାର୍ଗାରେଟାର ସ୍ୱରଟା କିପରି ଅସ୍ୱାଭାବିକ ଶୁଣାଗଲା ।

: ନା ନା, ମୁଁ କ'ଣ କହୁଥିଲି କି ଆପଣ ମିଷ୍ଟର ରାଘବନଙ୍କ ପାରିବାରିକ ଜୀବନ ସଂପର୍କରେ କେତେଟା ଜାଣନ୍ତି ?

: ହଠାତ୍ ତାଙ୍କ ପାରିବାରିକ ଜୀବନ ସଂପର୍କରେ ଆପଣଙ୍କ ମନରେ ଆଗ୍ରହ ଜନ୍ମିଲା କାହିଁକି ? ମାର୍ଗାରେଟା ଏଥର ରହସ୍ୟମୟ ସ୍ୱରରେ ପଚାରିଲା ।

ସତ୍ୟବ୍ରତଙ୍କ ମୁହଁରେ ବି ରହସ୍ୟମୟ ହସ ଖଣ୍ଡେ ଫୁଟି ଉଠିଲା । ସେ କହିଲେ : ମୁଁ ଦେଖୁଛି ଆପଣ ମୋଠାରୁ ବି ଅଧିକ ଚତୁର ।

ମାର୍ଗାରେଟା ଖାଲି ହସିଲା ।

ସତ୍ୟବ୍ରତ କହିଲେ : ପ୍ରଥମ ଦର୍ଶନରେ ଆପଣଙ୍କୁ ମୋତେ ଖୁବ୍ ଭଲ ଲାଗିଛି ।

: ଆପଣଙ୍କୁ ମୋତେ ବି ।

: ଆଚ୍ଛା ! ତା'ହେଲେ ତ ରାଜଯୋଟକ ।

: ହେଲେ ବି ମ୍ୟାରେଜ୍ ରେଜିଷ୍ଟ୍ରେସନ୍ ଅଫିସ୍ ଆମକୁ ଅନୁମତି ଦେବ ନାହିଁ । ମାର୍ଗାରେଟା ହସି ହସି କହିଲା ।

: କାହିଁକି ? ସତ୍ୟବ୍ରତ ରହସ୍ୟମୟ ସ୍ୱରରେ ପଚାରିଲେ ।

: ଆଗରୁ ମୋ ନାଁରେ ଜଣେ କେହି ମ୍ୟାରେଜ୍ ଆପ୍ଲିକେସନ ଦେଇ ସାରିଛନ୍ତି ।

: ଓଁ, ଆପଣ ତା'ହେଲେ ଚୁକ୍ତିବଦ୍ଧ ହୋଇସାରିଛନ୍ତି । ପାତ୍ରଟି ନିଶ୍ଚୟ ରାଜକୁମାର ?

ସତ୍ୟବ୍ରତ ଲକ୍ଷ୍ୟ କଲେ ମାର୍ଗାରେଟାର ଆଖି ଆଉ ମୁହଁରେ ଯେପରି ଆନନ୍ଦର ପ୍ଲାବନ ଖେଳିଗଲା ।

: ନା, କ୍ୟାପ୍‌ଟେନ୍ । ଶାନ୍ତ ସ୍ୱରରେ ମାର୍ଗାରେଟା କହିଲା ।

: ତା'ହେଲେ ଆପଣ ତ ବାଜିମାତ୍ କରିଛନ୍ତି ।

: ଅନେକଟା ତାହାହିଁ ମିଷ୍ଟର ମହାପାତ୍ର । କ୍ୟାପ୍‌ଟେନ୍ ମିରାଜ୍‌କରଙ୍କର ପ୍ରାର୍ଥୀ ଥିଲେ ଅନେକ । ବିଶେଷ କରି ଏଆର ହୋଷ୍ଟେସ୍ ରତ୍ନା ମାଲହୋତ୍ରା ତାଙ୍କୁ ଜାବୁଡ଼ି ଧରିଥିଲା । ପ୍ରକୃତରେ ମୁଁ ବାଜିମାତ୍ କରିଛି ।

ହଠାତ୍ ମାର୍ଗାରେଟା ଚିତ୍କାର କରି ଟ୍ୟାକ୍ସି ଅଟକେଇବାକୁ କହିଲା ।

ଟ୍ୟାକ୍ସି ଚାଳକ କିଛି ବୁଝି ନ ପାରି ଏତେ ଜୋର୍‌ରେ ବ୍ରେକ୍ ମାରିଲା ଯେ, ଗୋଟିଏ ବିକଟ ଚିତ୍କାରରେ ସ୍ଥାନଟା କଂପି ଉଠିଲା ।

ଏପରି ଏକ ଅତର୍କିତ ଅବସ୍ଥା ପାଇଁ କେହି ପ୍ରସ୍ତୁତ ନଥିଲେ ।

ସତ୍ୟବ୍ରତ ମାର୍ଗାରେଟା ମୁହଁକୁ ଚାହିଁଲେ ।

ମାର୍ଗାରେଟା ବାହାରକୁ ଅଙ୍ଗୁଳି ଦେଖାଇ କହିଲା : ଏଇ କୋଠାଟାରେ ମିଷ୍ଟର ରାଘବନ ରୁହନ୍ତି । ଦୋତାଲାଟି ସଂପୂର୍ଣ୍ଣ ତାଙ୍କରି ।

ସତ୍ୟବ୍ରତ କହିଲେ : ଓଃ, ଆପଣ ଏଇଥିପାଇଁ ଟ୍ୟାକ୍ସିଟାକୁ ଏତେ ଜୋର୍‌ରେ ଅଟକାଇଲେ ?

ମାର୍ଗାରେଟା ଲଜ୍ଜିତ ହୋଇ କହିଲା : କଥା ଛଳରେ ମୁଁ ଭୁଲିଯାଇଥିଲି ରାଘବନଙ୍କ କଥା, ହଠାତ୍ କୋଠାଟା ସାମ୍‌ନାରେ ଦେଖି ଚିତ୍କାର କରି ଉଠିଥିଲି ।

ସତ୍ୟବ୍ରତ ଟ୍ୟାକ୍ସିର ଦରଜା ଖୋଲୁଥିଲେ ।

ମାର୍ଗାରେଟା କହିଲା : ଏତେ ରାତିରେ ଆପଣ ଆଉ ତାଙ୍କ ପାଖକୁ ଯାଇ ଲାଭ ନାହିଁ । କେହି ଦରଜା ଖୋଲିବେ ନାହିଁ ।

: ହୁଁ, ତା'ହେଲେ ? ବର୍ତ୍ତମାନ ମୁଁ ଫେରିଯାଉଛି । ଆପଣଙ୍କ ପାଖରେ କିନ୍ତୁ ମୋର ଅନେକ କାମ ବାକି ରହିଗଲା ।

: ଆପଣ ଆସନ୍ତୁ ନା ଆମ ଘରକୁ ।

: ଏତେ ରାତିରେ ?

: ମୋର କିଛି ଅସୁବିଧା ହେବ ନାହିଁ । ଆପଣ ଅନ୍ତତଃ ରାତ୍ରି ଭୋଜନଟା ଶେଷ କରି ଚାଲିଯିବେ ।

ସତ୍ୟବ୍ରତ କିଛି ଉତ୍ତର ଦେଲେ ନାହିଁ ।

ମାର୍ଗାରେଟା ଟ୍ୟାକ୍ସି ଚାଳକକୁ ଆଗେଇବାକୁ ନିର୍ଦ୍ଦେଶ ଦେଇ କହିଲା : ବୁଝିଲେନା ମିଷ୍ଟର ମହାପାତ୍ର । କ୍ୟାପ୍‌ଟେନ୍ ମିରାଜକର କିନ୍ତୁ ଭାରି ମଜାର ଲୋକ । ଥରେ ତାଙ୍କ ସଂଗରେ ଦେଖାହେଲେ, ଆପଣ ତାଙ୍କୁ ମୋଟେ ଭୁଲିପାରିବେ ନାହିଁ ।

ସତ୍ୟବ୍ରତ ନୀରବରେ ବସି କ'ଣ ଚିନ୍ତା କରୁଥିଲେ ।

ମାର୍ଗାରେଟା କହି ଚାଲିଥିଲା : ତାଙ୍କ ସହିତ ପ୍ରଥମ ସାକ୍ଷାତ ମୋର ଭାରି ଅଦ୍‌ଭୁତ ଭାବରେ ହୋଇଥିଲା । ସେ ଏକ ଏକ୍‌ସିଡେଣ୍ଟ କହିଲେ ଚଳେ ! ମୁଁ ଅବଶ୍ୟ ଇଭିନିଂ କ୍ଲବ୍ ତରଫରୁ ଯାଇଥିଲି ଦମ୍‌ଦମ୍, ଜଣେ ଭି.ଆଇ.ପି.ଙ୍କୁ ରିସିଭ୍ କରିବା ପାଇଁ ।

କିନ୍ତୁ ନିର୍ଦ୍ଦିଷ୍ଟ ସମୟର ପ୍ରାୟ ଅଧଘଣ୍ଟା ଅତିବାହିତ ହୋଇଯାଇଥିଲେ ମଧ୍ୟ ପ୍ଲେନ୍‌ଟା ଲ୍ୟାଣ୍ଡ୍ କରି ନଥିଲା । ମୁଁ ନହେଲେ ବି ଅନ୍ୟାନ୍ୟମାନେ ଉତ୍‌କଣ୍ଠିତ ହୋଇ ପ୍ଲେନ୍‌ଟିର ପ୍ରତୀକ୍ଷା କରିଥିଲେ ।

ହଠାତ୍ ଘୋଷଣା କରାହେଲା, ପାଗ ଖରାପ ଯୋଗୁଁ ପ୍ଲେନ୍‌ଟା ନିର୍ଦ୍ଦିଷ୍ଟ ସ୍ଥାନରୁ ଡେରିରେ ଛାଡ଼ିଛି । ତେଣୁ ଲ୍ୟାଣ୍ଡ କରିବାକୁ ଆହୁରି ପନ୍ଦର ମିନିଟ୍ ଡେରି ହେବ ।

ମୁଁ ଅଧୈର୍ଯ୍ୟ ହୋଇ ପଡ଼ିଥିଲି ।

ପ୍ଲେନ୍ ଲ୍ୟାଣ୍ଡିଂ ଡେରି ଅଛି ଶୁଣି ରେଷ୍ଟୁରେଣ୍ଟ ଆଡ଼େ ଆଗେଇ ଯାଉଥିଲି, କପେ କଫି ଖାଇ ଦେହଟାକୁ ଟିକିଏ ତାଜା କରିନେବି ।

କିନ୍ତୁ ହଠାତ୍ ଏଆର ପୋର୍ଟର ବିପଦ ସଂକେତ ବାଜିଉଠିଲା ।

ଲୋକମାନେ ଧାଁ ଦଉଡ଼ା କରି କିଏ କେଉଁଠୁ ବାହାରି କୁଆଡ଼କୁ ଯେ ଦଉଡ଼ିଲେ, ମୁଁ ସେହି ଠେଲାପେଲାରେ ଏକପ୍ରକାର ତଳେ ପଡ଼ିଯାଇଥିଲି । ଗୋଟାଏ ଦରଜାରେ ମୋର ମୁଣ୍ଡ ବାଜି ମୋର ଚେତା ହଜି ଯାଇଥିଲା ।

କିନ୍ତୁ ଯେତେବେଳେ ମୋର ଚେତା ହେଲା, ମୁଁ ଦେଖିଲି, କ'ଣ ଦେଖିଲି କହିଲେ ?

ମାର୍ଗାରେଟା ସତ୍ୟବ୍ରତଙ୍କ ଆଡ଼କୁ ଚାହିଁ ଦେଖିଲା ସେ ନୀରବରେ ଧ୍ୟାନମଗ୍ନ ହୋଇ ବସିଛନ୍ତି ।

ମାର୍ଗାରେଟାର ସମସ୍ତ ଉତ୍ସାହ ଯେପରି ନିମିଷକେ କମିଗଲା ।

ସେ ଅଭିମାନ ମିଶା ସ୍ୱରରେ ଡାକିଲା : ମିଷ୍ଟର ମହାପାତ୍ର ।

: ଉଁ, ଆଚ୍ଛା ମିସ୍ ମାର୍ଗାରେଟା, ମିଷ୍ଟର ରାଘବନଙ୍କ ସହିତ ଆପଣଙ୍କର କେତେ ଦିନର ପରିଚୟ ? ସତ୍ୟବ୍ରତ ଶାନ୍ତ ସ୍ୱରରେ ପଚାରିଲେ ।

ଏପରି ଏକ ଅସ୍ୱାଭାବିକ ପ୍ରଶ୍ନର ଉତ୍ତର ଦେବା ପାଇଁ ମାର୍ଗାରେଟା ବୋଧହୁଏ ଆଦୌ ପ୍ରସ୍ତୁତ ନଥିଲା । ସେ ଚିତ୍କାର କରି କହିଲା : ଆପଣଙ୍କର କୌଣସି ପ୍ରଶ୍ନର ଉତ୍ତର ଦେବା ପାଇଁ ମୁଁ ବାଧ୍ୟ ନୁହେଁ ମିଷ୍ଟର ମହାପାତ୍ର ।

ସତ୍ୟବ୍ରତ ମଧ୍ୟ ସଚେତନ ହୋଇଥିଲେ ଏବଂ ଅବସ୍ଥାର ଗୁରୁତ୍ୱ ବୁଝିପାରି ସ୍ମିତ ହସି କହିଲେ : ମୋତେ କ୍ଷମା କରିବେ ମିସ୍ ମାର୍ଗାରେଟା । ମୁଁ ଟିକିଏ ଅନ୍ୟମନସ୍କ ହୋଇପଡ଼ିଥିଲି । ଆପଣଙ୍କ ଘର ଆଉ କେତେଦୂର ରହିଲା ?

ମାର୍ଗାରେଟା ସତ୍ୟବ୍ରତଙ୍କ ମୁହଁକୁ କିଛି ସମୟ ନୀରବରେ ଅନାଇ ରହି ଶାନ୍ତ ସ୍ୱରରେ କହିଲା : ଏଇ ପାଖେଇ ଆସିଲାଣି ।

: ବେଶ୍ ଚାଲନ୍ତୁ, ଆପଣଙ୍କ ଘରେ ବସି ମୁଁ କ୍ୟାପ୍‌ଟେନ୍ ମିରାଜକରଙ୍କର ସମସ୍ତ କାହାଣୀ ଶୁଣିବି ।

ଅଳ୍ପ ସମୟର ନୀରବତା ପରେ ଟ୍ୟାକ୍‌ସି ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ଠିଆ ହେଲା । ଟ୍ୟାକ୍‌ସିର ଭଡ଼ା ଅବଶ୍ୟ ସତ୍ୟବ୍ରତ ମହାପାତ୍ର ମେଣ୍ଟେଇ ଦେଲେ ।

ଦୋତାଲାର ଗୋଟିଏ ତିନି ରୁମ୍‌ର ସୁନ୍ଦର ଫ୍ଲାଟ୍‌ରେ ମାର୍ଗାରେଟା ରୁହେ । ସତ୍ୟବ୍ରତ ପ୍ରଥମେ ଡ୍ରଇଂ ରୁମ୍‌ରେ ପ୍ରବେଶ କରି ମୁଗ୍ଧ ହୋଇ ଯାଇଥିଲେ । ଭାରି ସୁନ୍ଦର ଭାବରେ ସଜା ହୋଇଥିଲା ଘରଟି । ଘରଟିର ବିଶେଷ ଆକର୍ଷଣ ଥିଲା, ଦେଶ ବିଦେଶର ନାନା ପ୍ରକାର ଖେଳଣା ସଂଗ୍ରହ । ଦୁଇଟି ପୂର୍ଣ୍ଣ ଆଲମାରୀ ଛଡ଼ା ରେଡ଼ିଓଗ୍ରାମ ଓ ବିଭିନ୍ନ ଥାକ ଉପରେ ଖେଳଣାଗୁଡ଼ିକ ଯେପରି ଖେଳି ବୁଲୁଥିଲେ ।

ସତ୍ୟବ୍ରତ ମୁଗ୍ଧ ନୟନରେ ଚାରିଆଡ଼କୁ ଚାହିଁ ଦେଖୁଥିଲେ ।

ମାର୍ଗାରେଟା ହାତର ବ୍ୟାଗ୍‌ଟାକୁ ଗୋଟାଏ ସୋଫା ଟେବୁଲ ଉପରେ ରଖିଦେଇ ଅନ୍ୟ ଗୋଟାଏ ରୁମ୍‌କୁ ପଶି ଯାଇଥିଲା ।

ସତ୍ୟବ୍ରତ ଏକ ଆଶ୍ଚର୍ଯ୍ୟ ଦେଶରେ ପଶିଲା ପରି ତାଙ୍କର ମନେ ହେଉଥିଲା । କାରଣ ଏକତ୍ର ଏତେଗୁଡ଼ିଏ ଦେଶର ଖେଳଣା ସଂଗ୍ରହ ସେ ଅନ୍ୟ କେଉଁଠି ଦେଖି ନଥିଲେ । ତା'ଛଡ଼ା

ଏହି ସଂଗ୍ରହଶାଳାରେ ଏତେ ପ୍ରକାରର ଖେଳଣା ଥିଲା ଯେ, ସେଗୁଡ଼ିକ ମଧ୍ୟରୁ ପ୍ରାୟ ଅଧିକରୁ ବେଶି ଭାଗ ଆଗରୁ କେବେ ସେ ଆଦୌ ଦେଖି ନଥିଲେ ।

ଅଳ୍ପ ସମୟ ପରେ ମାର୍ଗାରେଟା ଖଣ୍ଡିଏ ହାଲ୍‌କା ପୋଷାକ ପିନ୍ଧି ଫେରିଆସି କହିଲା : ଆରେ ଆପଣ ଏତେବେଳଯାଏ ଏଇଠି ଠିଆ ହୋଇଛନ୍ତି । ଆପଣଙ୍କୁ ପାଖ ରୁମ୍‌କୁ ଯିବାକୁ କହିଗଲି ନା ।

ସତ୍ୟବ୍ରତ ସ୍ମିତ ହସି କହିଲେ : ଆପଣ୍ ମୋତେ ଯେଉଁ 'ୱାଣ୍ଡରଲ୍ୟାଣ୍ଡ'ରେ ଛାଡ଼ି ଯାଇଛନ୍ତି, ସେଠାରୁ ଅନ୍ୟତ୍ର ଚାଲିଯିବା କ'ଣ ଏତେ ସହଜ ବୋଲି ଭାବିଛନ୍ତି ?

ମାର୍ଗାରେଟା ମୁହଁରେ ପରିପୂର୍ଣ୍ଣ ଆନନ୍ଦ ଖେଳିଗଲା । ସେ କହିଲା : ଏ କୃତିତ୍ୱ କିନ୍ତୁ ମୋର କିଛି ନୁହେଁ ମିଷ୍ଟର ମହାପାତ୍ର । ଆପଣଙ୍କ କଥିତ ଏହି 'ୱାଣ୍ଡରଲାଣ୍ଡ'ର ସ୍ରଷ୍ଟା ହେଉଛନ୍ତି କ୍ୟାପ୍‌ଟେନ୍ ମିରାଜକର । ଏସବୁଗୁଡ଼ିକ ତାଙ୍କରି ସଂଗ୍ରହ । ଦେଶ ବିଦେଶର ଖେଳଣା ସଂଗ୍ରହ ତାଙ୍କର ସବୁଠାରୁ ବଡ଼ ହବି ।

ସତ୍ୟବ୍ରତ ରେଡ଼ିଓଗ୍ରାମ ଉପରେ ରଖା ହୋଇଥିବା ଗୋଟିଏ ଦୁଇଟି ଖେଳଣାକୁ ଉଠାଇ ଏପାଖ ସେପାଖ କରି ଦେଖି କହିଲେ : ଏ ଖେଳଣାଗୁଡ଼ିକ ବେଶ୍ ମୂଲ୍ୟବାନ ହୋଇଥିବ, ନୁହେଁ ?

ମାର୍ଗାରେଟା ସତ୍ୟବ୍ରତଙ୍କ ପାଖକୁ ଲାଗିଆସି କହିଲା : ଇଏ ଗୋଟିଏ ଜାପାନୀ ଖେଳଣା । ଏଇଟା ସେ ଆଣିଛନ୍ତି ଏଇ ଚାରି ପାଞ୍ଚଦିନ ପୂର୍ବରୁ । ୟା ନାଁ ହେଉଛି ୱାକିଂଡଲ୍ ।

ମାର୍ଗାରେଟା ସେଇ ବିରାଟକାୟ ଜାପାନୀ ଖେଳଣାଟାରେ ଚାବି ମୋଡ଼ିବାରେ ଲାଗିଲା । କିଛି ସମୟ ପରେ ଚାବି ଦେବା ଶେଷ କରି କହିଲା : ଦେଖିବେ ମଜାଟା ! ଧୀରେ ସେ ଖେଳଣାଟିକୁ ତଳେ ଥୋଇଦେଲା ।

ସେହି ଜାପାନୀ ଖେଳଣାଟା ସଂଗେ ସଂଗେ ଫ୍ଲୋର୍ ଉପରେ ଚାଲିବାକୁ ଆରମ୍ଭ କରିଦେଲା । ଆଖି ଦୁଇଟା ନଚେଇ ନଚେଇ ଖେଳଣାଟା ଚାଲି ଚାଲି ଦୁଆର ମୁହଁ ସେପାଖକୁ ଆଗେଇ ଗଲା । ମାର୍ଗାରେଟା ଛୁଟିଯାଇ ଖେଳଣାଟାକୁ ମାଟିରୁ ଉଠାଇ ଆଣି କହିଲା : ଦେଖିଲେ, ଜାପାନୀ ବାଳିକାଟି ବର୍ତ୍ତମାନ ଆମ ଆଖିରେ ଧୂଳି ଫିଙ୍ଗି ଛୁଟି ପଳାଇବାକୁ ବସିଥିଲା ।

ସତ୍ୟବ୍ରତ କହିଲା : ବାସ୍ତବିକ୍ ଅପୂର୍ବ । ଖାଲି ଏହି ଜାପାନୀ ବାଳିକା କାହିଁକି, ଆପଣଙ୍କ ସଂଗ୍ରହଶାଳାର ପ୍ରତିଟି ବାଳକ-ବାଳିକା, ନର-ବାନର, ମୋ ମତରେ କାହାରି ତୁଳନା ହୁଏ ନାହିଁ । ଆଉ ଆଦୌ ତୁଳନା କରିହୁଏ ନାହିଁ ଏହି ୱାଣ୍ଡର ଲ୍ୟାଣ୍ଡର ସାମ୍ରାଜ୍ଞୀଙ୍କୁ ।

: ମାନେ ? ମାର୍ଗାରେଟା ଆଖିରେ ବିସ୍ମୟ ଫୁଟି ଉଠିଲା ।

: ମାନେ ମୁଁ ଏହି ଜୀବନ୍ତ ବାଳିକାଟିର କଥା କହୁଛି । ଯାହାଙ୍କ ପାଇଁ ଏଠାରେ ଗଢ଼ି ଉଠିଛି ଏହି ୱାଣ୍ଡରଲ୍ୟାଣ୍ଡଟି । ସତ୍ୟବ୍ରତ ସ୍ମିତ ହସି କହିଲେ ।

ମାର୍ଗାରେଟା ସତ୍ୟବ୍ରତଙ୍କ ଉଦ୍ଦେଶ୍ୟ ବୁଝିପାରି ଲାଜେଇ ଗଲା । ହାତଘଡ଼ି ଆଡ଼େ ଚାହିଁ କହିଲା : ରାତି କେତେ ହେଲାଣି ଦେଖୁଛନ୍ତି ? ଆସନ୍ତୁ, ଡିନର ରେଡ଼ି ।

ସତ୍ୟବ୍ରତ ଆଉ କଥା ବଢ଼ାଇଲେ ନାହିଁ ।

ପ୍ରକୃତରେ ରାତି ଅଧିକ ହୋଇଯାଇଥିଲା ।

ଫେରିଯିବାକୁ ହେବ ସେଇ ବାଲିଗଞ୍ଜ ସାର୍କୁଲାର ରୋଡ଼କୁ ।

ଡାଇନିଂ ଟେବୁଲରେ ବସି ମାର୍ଗାରେଟା କହିଲା : ଆପଣ ନିଶ୍ଚୟ ମୋର ଆଚରଣରେ ଆଶ୍ଚର୍ଯ୍ୟ ହେଉଥିବେ । ଜଣା ନାହିଁ, ଶୁଣା ନାହିଁ ଅଥଚ ଅନ୍ତରଙ୍ଗତାରେ ବହୁଦିନର ପରିଚିତଠାରୁ ବଳେଇ ଯିବାକୁ ବସିଛି ।

ସତ୍ୟବ୍ରତ ଡିସ୍‌ରୁ ଏକଚାମଚ ସୁପ୍ ଉଠାଇ ନେଇ କହିଲେ : ଏଥିପାଇଁ ମୁଁ ମୋଟେ ଆଶ୍ଚର୍ଯ୍ୟ ହେଉ ନାହିଁ ମିସ୍ ମାର୍ଗାରେଟା । ମୁଁ କିନ୍ତୁ ଆଶ୍ଚର୍ଯ୍ୟ ହେଉଛି ଯେଉଁଥିପାଇଁ, ସେ କଥାଟି ଆଜି ଆପଣଙ୍କୁ କହିବି ନାହିଁ ।

: ମାନେ ? ମୋର ତା'ହେଲେ କୌଣସି ଏକ ଆଚରଣ ଆପଣଙ୍କୁ ଆଶ୍ଚର୍ଯ୍ୟ କରିଛି ?

: ନିଶ୍ଚୟ । ତା' ନ ହୋଇଥିଲେ ଆପଣଙ୍କର ଚପଳତାର ଖେଳସାଥୀ ହୋଇ ଏହି ଅର୍ଦ୍ଧ ନିଶିଥରେ ହିପ୍‌ନୋଟାଇଜ୍ ହେଲା ପରି ମୁଁ ଆପଣଙ୍କ ପଛେ ପଛେ ଛୁଟି ଆସି ନଥାନ୍ତି । ସତ୍ୟବ୍ରତଙ୍କ ସ୍ୱର ଗମ୍ଭୀର ଶୁଣାଯାଉଥିଲା ।

ମାର୍ଗାରେଟା ମୁହଁର ସମସ୍ତ ଖୁସି ହଠାତ୍ ଯେପରି ଶୁଖି ଝରି ପଡ଼ିଲା ।

ସତ୍ୟବ୍ରତ ସେହିପରି ସ୍ମିତ ହସି କହିଲେ : ଆପଣ ଡରିଗଲେ ମିସ୍ ମାର୍ଗାରେଟା ? ମୁଁ କିନ୍ତୁ ଆପଣଙ୍କୁ ବିପଦରେ ପକାଇବି ନାହିଁ । ଆପଣ ମୋତେ ବିଶ୍ୱାସ କରନ୍ତୁ ।

ମାର୍ଗାରେଟା ମୁହଁରେ କିନ୍ତୁ ଅଳ୍ପ ସମୟ ପୂର୍ବର ସେହି ଅନାବିଳ ଦୀପ୍ତି ଆଉ ଫୁଟିଲା ନାହିଁ । ଡାଇନିଂ ଟେବୁଲରେ ନୀରବରେ ବସି ସେମାନେ ରାତ୍ରି ଭୋଜନ ଶେଷ କରିଥିଲେ ।

ସତ୍ୟବ୍ରତ ଫେରିଆସିଲା ବେଳକୁ କହି ଆସିଲେ : ଆପଣ ପ୍ରକୃତରେ ଡରିଗଲେ ମିସ୍ ମାର୍ଗାରେଟା । ମୁଁ କିନ୍ତୁ ଆପଣଙ୍କ ସହିତ ଟିକିଏ ରସିକତା କରୁଥିଲି ।

ମାର୍ଗାରେଟା କହିଲା : ଆପଣମାନଙ୍କ ପରି ଲୋକଙ୍କୁ ବିଶ୍ୱାସ କରିବା ମୋଟେ ଉଚିତ ନୁହେଁ । ସୁବିଧା ପାଇଲେ ଆପଣମାନେ ମୋତେ ଛାଡ଼ିବେ ନାହିଁ ।

: ତା'ହେଲେ ଜାଣି ଜାଣି ଆପଣ ସାପ ସହିତ ବନ୍ଧୁତା କରିବାକୁ ଗଲେ କାହିଁକି ? ଅବଶ୍ୟ ସତ୍ୟବ୍ରତ ହସି ହସି କହିଲେ ।

ମାର୍ଗାରେଟା ବି ସେହିପରି ହସି ହସି କହିଲା : ସାପ ଚୋଟ ମାରିବା ପୂର୍ବରୁ ଯଦି ବିଷ ଦାନ୍ତ ଝାଡ଼ି ଦେଇ ହୁଏ, ତା'ହେଲେ କ୍ଷତି କ'ଣ ?

: ଆଚ୍ଛା, ତା'ହେଲେ ଆପଣ କହୁଛନ୍ତି ପଦ୍ମତୋଳା ପଢ଼ି ସାପକୁ ବଶ କରିବା କୌଶଳ ଆପଣଙ୍କୁ ଜଣା ଅଛି ?

: ଆପଣ ସେଇଆ ଧରିନେଇ ପାରନ୍ତି ।

: ଆଚ୍ଛା, ଗୁଡ୍ ନାଇଟ୍ ମିସ୍ ମାର୍ଗାରେଟା । ପୁଣି ସାକ୍ଷାତ ହେବ ।

: ଗୁଡ୍ ନାଇଟ୍ ।

ସତ୍ୟବ୍ରତ ମାର୍ଗାରେଟା ଘରୁ ବାହାରି ଚାଲିଆସିଲେ । ଅନେକ ପ୍ରଶ୍ନର ଧୂଆଁ ଭାସି ଉଠିଲା ଆଖି ଆଗରେ ।

ଏକରେ - 'ଇଭିନିଂ କ୍ଲବ୍'ର ରହସ୍ୟମୟ ପରିବେଶ ସହିତ ରମଣୀ ରଞ୍ଜନ ଚଉଧୁରୀଙ୍କ ହତ୍ୟାର କୌଣସି ଯୋଗସୂତ୍ର ଅଛି କି ?

ଦୁଇରେ - ରମଣୀ ରଞ୍ଜନଙ୍କ ଡାଇନିଂ ରୁମରୁ ମିଳିଥିବା ରିଷ୍ଟୱାଚ୍‌ଟା କ'ଣ ମିଷ୍ଟର ରାଘବନ୍‌ଙ୍କର ?

ତିନ୍‌ରେ- ରମଣୀ ରଞ୍ଜନଙ୍କ କଣ୍ଢେଇ ଆଲମାରୀ ସହିତ ମାର୍ଗାରେଟାର ଏହି ସଂଗ୍ରହଶାଳାର କୌଣସି ଯୋଗସୂତ୍ର ଅଛି କି ?

ଆଉ ଚାରିରେ...

: ଏ ଟ୍ୟାକ୍‌ସି, ସତ୍ୟବ୍ରତ ସାମ୍‌ନାରେ ଗୋଟାଏ ଟ୍ୟାକ୍‌ସି ଦେଖି ଉଠିବସିଲେ ।

\+ \+ \+

ବେଗମ ଚଉଧୁରୀ ସହିତ ସକାଳେ ଯେତେବେଳେ ସତ୍ୟବ୍ରତଙ୍କର ଦେଖା ହେଲା, ସେତେବେଳେ ହେଲେନ ଆଉ ସେ ବସି ଚା’ ପିଉଥିଲେ ।

ନିଜକୁ ଅନେକ ସମ୍ଭାଳି ନେଇଥିଲା ବେଗମ ।

ହେଲେନ୍‌କୁ ବୋଧହୁଏ ବ୍ରିଜଲାଲ ଛାଡ଼ି ଦେଇ ଯାଇଥିଲେ ବେଗମ ପାଖରେ ।

ସତ୍ୟବ୍ରତଙ୍କୁ ଦେଖି ବେଗମ ଚଉଧୁରୀ ପାଖକୁ ଡାକି କହିଲା : କିଛି ଖବର ପାଇଲେ ଆପଣ ? କାଲି ରାତିରେ ପୁଣି ପୋଲିସ୍ ଇନିସ୍‌ପେକ୍ଟର ଆସିଥିଲେ । ମୋତେ ଏଣୁ ତେଣୁ ଅନେକ ପ୍ରଶ୍ନ ପଚାରି ନାକେଦମ୍ କରି ଛାଡ଼ିଛନ୍ତି ।

: ଆଉ କ’ଣ କହିଲେ ?

: ଆଉ ଦି’ଜଣ ଅଧିକ କନେଷ୍ଟବଳ ନିଯୁକ୍ତ କରି ଦେଇ ଯାଇଛନ୍ତି ।

ସତ୍ୟବ୍ରତ ଗୋଟିଏ ଖାଲି ଚେଆର ଅଧିକାର କରି ବସିଲେ ।

ବେଗମ ଚଉଧୁରୀ ପଚାରିଲା : କାଲି ରାତିରେ ଆପଣ କୁଆଡ଼େ ଚାଲି ଯାଇଥିଲେ ?

: ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲି । ଆଚ୍ଛା ମିସ୍ ଚଉଧୁରୀ, ଆପଣ ଯଦି କିଛି ନ ଭାବନ୍ତି ମୋ ସହିତ ଟିକିଏ ଆର ଘରକୁ ଯିବାକୁ ହେବ । ମାନେ ମିଷ୍ଟର ଚଉଧୁରୀଙ୍କ ଶୋଇବା ଘରକୁ ।

: ନା ନା, ଏଥିରେ ଭାବିବାର କ’ଣ ଅଛି ? ବେଗମ ଚଉଧୁରୀ ଉଠିଲା । ସଙ୍ଗେ ସଙ୍ଗେ ହେଲେନ୍ ବି ଉଠୁଥିଲା । ସତ୍ୟବ୍ରତ କିନ୍ତୁ ହାତଠାରି ହେଲେନ୍‌କୁ ବସିବାକୁ କହି ନିଜେ ବେଗମ ପଛରେ ଉଠି ଚାଲିଗଲେ ।

: ଆଚ୍ଛା ମିସ୍ ଚଉଧୁରୀ, ଏଇ ଘରଟା ମିଷ୍ଟର ଚଉଧୁରୀଙ୍କର ବେଡ୍ କମ୍ ଡ୍ରଇଂ ରୁମ୍ ଥିଲା । ଦେଖିଲେ ଅନ୍ତତଃ ସେଇଆ ମନେ ହେଉଛି ।

: ହଁ ସେଇଆ । ଯଦିଓ ତଳେ ଅଲଗା କରି ଗୋଟିଏ ଡ୍ରଇଂ ରୁମ୍ ଥିଲା, ବାପା କିନ୍ତୁ ଅଧିକାଂଶ ସମୟରେ ଏଇଠି ବସି ବାହାର ଲୋକଙ୍କ ସହିତ ଆଳାପ ଆଲୋଚନା କରୁଥିଲେ ।

: କିନ୍ତୁ ଗୋଟାଏ କଥା କ’ଣ ଜାଣନ୍ତି ମିସ୍ ଚଉଧୁରୀ, ମିଷ୍ଟର ଚଉଧୁରୀ ଏ ଘରକୁ ଯେଉଁସବୁ ଲୋକମାନଙ୍କୁ ଡାକୁଥିଲେ ସେମାନେ ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ ବା ଅତ୍ୟନ୍ତ ଅନ୍ତରଙ୍ଗ ଥିଲେ ।

: ହୁଏତ ହୋଇଥିବେ । କିନ୍ତୁ ଆପଣଙ୍କର ଏପରି ସନ୍ଦେହ କରିବାର କାରଣ ?

ସତ୍ୟବ୍ରତ ବେଗମ ଚଉଧୁରୀ ପ୍ରଶ୍ନର କିଛି ଉତ୍ତର ନଦେଇ ପୁଣି ପଚାରିଲେ : ଆଚ୍ଛା ଆପଣଙ୍କ ବାପାଙ୍କର ଦୁଇ ଚାରିଜଣ ଅନ୍ତରଙ୍ଗ ବନ୍ଧୁଙ୍କ ନାଁ ଆପଣ କହିଲେ, ଯେଉଁମାନେ ପ୍ରାୟ ଯିବା ଆସିବା କରନ୍ତି ବା ଚଉଧୁରୀଙ୍କ ସହିତ ମିଳାମିଶା କରନ୍ତି ।

ବେଗମ ଚଉଧୁରୀ ଟିକିଏ ଚିନ୍ତା କରି ତିନି ଚାରୋଟି ନାଁ କହିଲେ । ସତ୍ୟବ୍ରତ ଟିପା ଖାତାରେ ନାଁ ଗୁଡ଼ିକ ଟିପି ରଖିଲେ ।

: ଆଚ୍ଛା, ଏ ଘରେ, ଏଇ ଯେଉଁ ଖେଳଣା ପୂର୍ଣ୍ଣ ଆଲମାରୀଟି ରହିଛି, ଖେଳଣା ଗୁଡ଼ିକ କ'ଣ ଆପଣଙ୍କ ପିଲାଦିନର ନା ମିଷ୍ଟର ଚଉଧୁରୀଙ୍କର ଖେଳଣା ସଂଗ୍ରହ ଗୋଟାଏ ହବି ଥିଲା ?

ବେଗମ ଚଉଧୁରୀ ଟିକିଏ ଚିନ୍ତା କରି କହିଲା : ଏଇ ଆଲମାରୀ ଭିତରେ ମୋ ପିଲାଦିନର ଖେଳଣା ଅବଶ୍ୟ କେତେ ଗୁଡ଼ିଏ ଅଛି, କିନ୍ତୁ ଖେଳଣା ସଂଗ୍ରହ ବାବାଙ୍କର ହବି ନଥିଲେ ବି ସେ କେଉଁଠୁ ଗୋଟିଏ ଭଲ ଖେଳଣା ପାଇଲେ କିଣି ଆଣୁଥିଲେ । ଖେଳଣା ପ୍ରତି ତାଙ୍କର ଗୋଟାଏ ଆସକ୍ତି ଥିଲା ।

: ହୁଁ, ତା'ହେଲେ ଏଇ ଆଲମାରୀ ଭିତରେ ଯେଉଁସବୁ ଖେଳଣା ଅଛି, ସବୁ ଗୁଡ଼ିକ ଆପଣଙ୍କର ପରିଚିତ ?

: ପ୍ରାୟ ।

: ଆପଣ ଗତଥର ଘରକୁ ଆସି ଯାହା ସବୁ ଦେଖି ଯାଇଥିଲେ, ଏଥର ଠିକ୍ ସେଇଗୁଡ଼ିକ ଅଛି ନା କିଛି ଯୁକ୍ତ ବିଯୁକ୍ତ ହୋଇଛି ?

ବେଗମ ଚଉଧୁରୀ ସତ୍ୟବ୍ରତଙ୍କର ଏପରି ପ୍ରଶ୍ନରେ ଖେଳଣା ଆଲମାରୀଟାକୁ ଆଉ ଥରେ ଭଲ ଭାବରେ ଚାହିଁ କହିଲା : ମୁଁ ଠିକ୍ ବୁଝିପାରୁ ନାହିଁ ମିଷ୍ଟର ମହାପାତ୍ର । କାରଣ ଅନେକ ଦିନରୁ ଖେଳଣା ପ୍ରତି ମୁଁ ମୋଟେ ଆସକ୍ତ ନୁହେଁ । ସେଇଥିପାଇଁ ମୁଁ କେବେ ଘରକୁ ଆସିଲେ ଗଲେ ଏ ଆଡ଼େ ବିଶେଷ ଲକ୍ଷ୍ୟ ଦିଏ ନାହିଁ । ମୋଟ ଉପରେ କହିବାକୁ ଗଲେ ବାପାଙ୍କର ଏଇ ଘରଟାକୁ ମୁଁ କ୍ୱଚିତ୍ ଆସିଥାଏ ।

: ହୁଁ, ତା'ହେଲେ... ଆଚ୍ଛା ମିସ୍ ଚଉଧୁରୀ, ଆପଣ ଇଭିନିଂ କ୍ଲବକୁ କେବେ ମିଷ୍ଟର ଚଉଧୁରୀଙ୍କ ସାଙ୍ଗରେ ଯାଇଛନ୍ତି ?

: ନା ।

: ମିଷ୍ଟର ରାଘବନଙ୍କୁ ଚିହ୍ନନ୍ତି ?

: ରାଘବନ ? ବେଗମ ଚଉଧୁରୀ ଟିକିଏ ଚିନ୍ତା କଲା ।

: ହଁ ମିଷ୍ଟର ରାଘବନ । ଆପଣଙ୍କ ବାପାଙ୍କର ବନ୍ଧୁ ।

: ମୋର ନାଁଟାତ ମନେ ପଡୁ ନାହିଁ । ଦେଖିଲେ ହୁଏତ ଚିହ୍ନି ପାରିବି । କାଲି କ'ଣ ସେ ଆମ ଏଠାକୁ ଆସିଥିଲେ ?

ସତ୍ୟବ୍ରତ କହିଲେ : ଆପଣ ତା'ହେଲେ ଯାଆନ୍ତୁ ମିସ୍ ଚଉଧୁରୀ । ହେଲେନ୍ ଏକା ବସିଛି । ମୁଁ ବର୍ତ୍ତମାନ ଟିକିଏ ବାହାରି ଯାଉଛି ।

ସତ୍ୟବ୍ରତ ତଳକୁ ଓହ୍ଲେଇ ଯାଇ ଦେଖିଲେ ବ୍ୟୋମକେଶ ଚଉଧୁରୀ ଦରଜା ଠେଲି ଭିତରକୁ ପଶୁଛନ୍ତି ।

: ଗୁଡ୍ ମର୍ଣ୍ଣିଂ ମିଷ୍ଟର ମହାପାତ୍ର । ଉଚ୍ଛ୍ୱସିତ ସ୍ୱରରେ ବ୍ୟୋମକେଶ ଚଉଧୁରୀ ସତ୍ୟବ୍ରତ ମହାପାତ୍ରଙ୍କ ସହିତ କରମର୍ଦ୍ଦନ କରିବା ପାଇଁ ଆଗେଇ ଆସିଲେ ।

ସତ୍ୟବ୍ରତ କରମର୍ଦ୍ଦନ କରି କହିଲେ : ମୁଁ ଭାବୁଥିଲି ଆପଣଙ୍କ ସହିତ ଆଉ ବୋଧହୁଏ ଦେଖା ହୋଇ ପାରିବ ନାହିଁ ।

: ଆପଣଙ୍କର ଏପରି ଧାରଣା ହେବାର କାରଣ ?

ଆପଣ ଏଲାହାବାଦରେ ବହୁତ ଜରୁରୀ କାମ ସବୁ ଛାଡ଼ି ଚାଲି ଆସିଥିବା କଥା ମୋତେ କହୁଥିଲେ ତ, ସେଇଥିପାଇଁ ମୁଁ ଭାବୁଥିଲି...

: ଆପଣ ତା'ହେଲେ ମୋ କଥା ଭାବୁଥିଲେ ।

: ନ ଭାବିବାର ବାଟ ନାହିଁ ବ୍ୟୋମକେଶ ବାବୁ । ଆମ ପେଶା ଏପରି ଗୋଟାଏ ବାଜେ ପେଶା ଯେ କାହାରି ସହିତ ସଂପ୍ରୀତି ସ୍ଥାପନ ଆମ ଜୀବନରେ ହୋଇ ପାରିଲା ନାହିଁ । ଛାଡ଼ନ୍ତୁ, ଆପଣଙ୍କ ପ୍ରୋଗ୍ରାମଟା ତା'ହେଲେ କୁହନ୍ତୁ । କାରଣ ବର୍ତ୍ତମାନ ପରିସ୍ଥିତିରେ ଆପଣ ମିସ୍ ଚଉଧୁରୀଙ୍କର ଏକାନ୍ତ ଆପଣାର ଲୋକ । ଆପଣଙ୍କ ଉପସ୍ଥିତି ଅନ୍ତତଃ ମିସ୍ ଚଉଧୁରୀଙ୍କ ମାନସିକ ପ୍ରଶାନ୍ତି ପାଇଁ ଏକାନ୍ତ ଅପରିହାର୍ଯ୍ୟ ।

ବ୍ୟୋମକେଶ ଚଉଧୁରୀ ଟିକିଏ କ'ଣ ଚିନ୍ତା କରି ଡ୍ରଇଂରୁମ୍ ଭିତରକୁ ଆଗେଇ ଆସି ଗୋଟାଏ ସୋଫା ଉପରେ ବସି ପଡ଼ି କହିଲେ : ଜାଣନ୍ତି ମିଷ୍ଟର ମହାପାତ୍ର, ମୋର ଏଇ ମାମୁଙ୍କର ମୃତ୍ୟୁ ଦେଖିବା ପରଠାରୁ ଜୀବନର ଦର୍ଶନ କିପରି ବଦଳି ଯାଇଛି । ମନେ ହେଉଛି ମଣିଷର ଜୀବନ ଅନିତ୍ୟ । ଧନ, ଦୌଲତ, ଖ୍ୟାତି, ପ୍ରତିପତ୍ତି ଯେତେ ଯାହା ଅର୍ଜନ କଲେ ମଧ୍ୟ ନିମିଷକ ମଧ୍ୟରେ ସବୁ କୁଆଡ଼େ ମିଳେଇ ଯିବ । ଆଖି ଆଗରେ ମାମୁଙ୍କର ଏହି ଅକାଳ ମୃତ୍ୟୁ ମୋ ଜୀବନର ଧାରାକୁ ବଦଳେଇ ଦେଇଛି ।

: ବୁଝିଲି । ଆପଣ ତା'ହେଲେ ଆପାତତଃ କିଛିଦିନ ଏଠାରେ ଅଛନ୍ତି ।

: ବେଗମର ମୁହଁ ଚାହିଁ ମୋତେ ପଡ଼ି ରହିବାକୁ ହେଉଛି ମିଷ୍ଟର ମହାପାତ୍ର । ସେ କହୁଛି, ତମେ ଯଦି ଚାଲିଯିବ ମୋତେ ସାଙ୍ଗରେ ନେଇଯାଅ । ମୋର ଏଠି ନିଶ୍ୱାସ ମାରିବାକୁ କଷ୍ଟ ହେଉଛି । ହେବା କଥା, ବେଗମର ଏଠି ନିଜର ହୋଇ କେହି ନାହାନ୍ତି କହିଲେ ଚଳେ । ଯେଉଁମାନେ ସବୁ ଆସି କାଲି ରାତିରୁ ଭିଡ଼ କରିଛନ୍ତି, ମାମୁଙ୍କର ଆତ୍ମୀୟ ସ୍ୱଜନ କହି ବେଗମକୁ ସାନ୍ତ୍ୱନା ଦେବା ପାଇଁ ଲାଇନ୍ ଲଗେଇଛନ୍ତି, ସେଗୁଡ଼ା ସମସ୍ତେ ସ୍ୱାର୍ଥପର । ସମସ୍ତେ ସୁଯୋଗ ଉଣ୍ଡି ଆସି ରୁଣ୍ଡ ହୋଇଛନ୍ତି । ବେଗମର ଏହି ଦୁର୍ଦ୍ଦିନରେ ମୁଁ ଯଦି ତାକୁ ଛାଡ଼ି ଚାଲିଯାଏ, ତା'ହେଲେ ସେମାନେ ହୁଏତ ବେଗମକୁ କିଲିବିଲି କରି ପକାଇବେ ।

: ଅବଶ୍ୟ ଗୋଟାଏ ଦୃଷ୍ଟିରୁ ଆପଣଙ୍କ ଅନୁମାନ ସତ୍ୟ । ତଥାପି ଆପଣଙ୍କର ନିଜ ବ୍ୟବସାୟ ବାଣିଜ୍ୟ ପ୍ରତି ସଜାଗ ରହିବାକୁ ପଡ଼ିବ । ଜୀବନ ଦର୍ଶନରେ ଥରେ ନୈରାଶବାଦ ଦେଖା ଦେଲେ, ଜୀବନର ଧାରା ସଂପୂର୍ଣ୍ଣ ଭିନ୍ନମୁଖୀ ହୋଇଯିବ । ସେ ଯା' ହେଉ, ଆପଣ ତା'ହେଲେ ଆପାତତଃ ଏଠାରେ ଅଛନ୍ତି ।

: ଭାବିଛି ସେଇଆ । ତେବେ ଜାଣି ନାହିଁ କ'ଣ ହେଉଛି । ବେଗମ ସହିତ କଥା କହି ଆଜି ସବୁ ସ୍ଥିର କରିବି । ତା'ପରେ ଆପଣଙ୍କ ଖବର କୁହନ୍ତୁ । କେତେଦୂର ଆଗେଇଲେ ?

: ମୁଁ ! ପାଦେ ବି ଆଗେଇ ପାରି ନାହିଁ । ଆଚ୍ଛା କାଲି ଯେଉଁମାନେ ସବୁ ଆସିଥିଲେ ସମବେଦନା ଜଣାଇବା ପାଇଁ, ସେମାନଙ୍କ ମଧ୍ୟରୁ ଆପଣଙ୍କର କେହି ପରିଚିତ ଥିଲେ ?

: ଜଣେ ବି ନୁହେଁ । ନ ରହିବା ବି ସ୍ୱାଭାବିକ । କାରଣ ମୁଁ ତ କୌଣସି ଦିନ ଆସୁ ନଥିଲି ମାମୁଙ୍କ ପାଖକୁ । ତେଣୁ ତାଙ୍କ ପରିବେଶ ସହିତ ମୋର ପରିଚିତି କଳ୍ପନା କରିବା ମୂର୍ଖତା ମାତ୍ର ।

: ହୁଁ, ଆପଣ ଯାଆନ୍ତୁ ଉପରକୁ । ମୁଁ ଟିକିଏ ବାହାରକୁ ଯାଉଛି । ଟିକିଏ ଲକ୍ଷ୍ୟ ରଖିଥିବେ । ବହୁତ ଲୋକ ଆସୁଛନ୍ତି ଯାଉଛନ୍ତି । କୌଣସି ପଦାର୍ଥ ଯେପରି ସ୍ଥାନାନ୍ତର ନହୁଏ । ସତ୍ୟବ୍ରତ ଚାଲି ଯାଉଥିଲେ ।

ବ୍ୟୋମକେଶ ଚଉଧୁରୀ ପଛରୁ ଡାକି କହିଲେ : ଆଚ୍ଛା ମିଷ୍ଟର ମହାପାତ୍ର, ମୁଁ ଶୁଣିଲି ମାମୁ ଆପଣଙ୍କୁ ଚିଠି ଲେଖିଥିଲେ ଆସିବା ପାଇଁ । ଖବରଟା କ'ଣ ସତ୍ୟ ?

: ଆପଣ ଠିକ ଶୁଣିଛନ୍ତି ।

: କିଛି ମନେ କରିବେ ନାହିଁ ମିଷ୍ଟର ମହାପାତ୍ର । ମୋ ମନରେ ଗୋଟାଏ ପ୍ରଶ୍ନ ଅନେକ ବେଳରୁ ଉଙ୍କି ମାରୁଛି । ମାମୁ କାହିଁକି ଆପଣଙ୍କୁ ଆସିବାକୁ ଚିଠି ଦେଇଥିଲେ ?

ସତ୍ୟବ୍ରତ ଟିକିଏ ଚିନ୍ତା କରି ସ୍ମିତ ହସି କହିଲେ : ଆପଣ କ'ଣ ସେ କଥା ଜାଣି ନାହାନ୍ତି ?

: ନା ମିଷ୍ଟର ମହାପାତ୍ର । ଆପଣ ବିଶ୍ୱାସ କରନ୍ତୁ, ମୁଁ ମୋଟେ କିଛି ଜାଣି ନାହିଁ ।

: ଅବଶ୍ୟ ଆପଣଙ୍କୁ କହିବାରେ କିଛି ଆପତ୍ତି ନାହିଁ । ଆପଣଙ୍କ ମାମୁଙ୍କର କେତେକ ମୂଲ୍ୟବାନ ପଦାର୍ଥ ଥିଲା । ସେଗୁଡ଼ିକର ରକ୍ଷଣାବେକ୍ଷଣ ତାଙ୍କ ପକ୍ଷରେ ଆଉ ସମ୍ଭବ ହେଉ ନଥିଲା । ସେ ମନେ କରୁଥିଲେ ସେଗୁଡ଼ିକ ଯେକୌଣସି ଦିନ ହସ୍ତାନ୍ତର ହୋଇଯାଇପାରେ । ତେଣୁ...

: କ'ଣ ସେହି ମୂଲ୍ୟବାନ ପଦାର୍ଥ ମିଷ୍ଟର ମହାପାତ୍ର ! ବ୍ୟୋମକେଶ କଣ୍ଠରେ ଉତ୍କଣ୍ଠା ଫୁଟି ଉଠିଥିଲା ।

ସତ୍ୟବ୍ରତ ସେହିପରି ଶାନ୍ତ ସ୍ୱରରେ କହିଲେ : ମୋତେ ଖୋଲା ଖୋଲି ଭାବରେ ସେ ଚିଠିରେ କିଛି ଲେଖି ନଥିଲେ । ମୋର ଯାହା ଅନୁମାନ କୌଣସି ମୂଲ୍ୟବାନ ଧାତୁ ତାଙ୍କ ପାଖରେ ଥିଲା ।

: ହୀରା, ନୀଳା, ମୋତି ? ବ୍ୟୋମକେଶ କଣ୍ଠରେ ଚଞ୍ଚଳତା ଫୁଟାଇ ପଚାରିଲେ ।

: ହୋଇପାରେ ।

: ତା'ହେଲେ ଆପଣ କ'ଣ ଭାବୁଛନ୍ତି ? ସେଗୁଡ଼ିକ ଅଛି ନା ହସ୍ତାନ୍ତର ହୋଇ ଯାଇଛି ?

ସତ୍ୟବ୍ରତ ଆଖି ବୁଜି କହିଲେ : ମୁଁ ଏ ପର୍ଯ୍ୟନ୍ତ କିଛି ସ୍ଥିର କରି ପାରି ନାହିଁ ବ୍ୟୋମକେଶ ବାବୁ । ତେବେ ସେଗୁଡ଼ିକ ଯେ ଏହି ଘରେ କେଉଁଠି ଗଚ୍ଛିତ ଅଛି ଆମକୁ ଧରି ନେବାକୁ ହେବ ।

ବ୍ୟୋମକେଶ ଚଉଧୁରୀ ନୀରବରେ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ରହିଲେ । ତାଙ୍କ ଆଖି ଓ ମୁହଁରେ ଏକ ଉଚ୍ଛ୍ୱସିତ ଭାବ ଫୁଟି ଉଠୁଥିଲା ।

ସତ୍ୟବ୍ରତ ଧୀରେ ବାହାରି ଗଲେ ବାହାରକୁ ।

ତାଙ୍କୁ ପ୍ରଥମେ ରାଘବନଙ୍କ ପାଖକୁ ଯିବାକୁ ହେବ । ଘଡ଼ିଟା ସମ୍ବନ୍ଧରେ ସଠିକ୍ ଖବର ଯଦି କିଛି ମିଳିଯାଏ, ତା'ହେଲେ ହତ୍ୟାକାରୀ ସମ୍ବନ୍ଧରେ ସାମାନ୍ୟତମ ଧାରଣା କରି ହେବ ।

ସତ୍ୟବ୍ରତ ଗୋଟିଏ ଟ୍ୟାକ୍ସିରେ ଉଠି ସିଧା ଛୁଟିଲେ ଗାରିଆହଟାକୁ ।

ଚାକର କହିଲା ମିଷ୍ଟର ରାଘବନ ଘରେ ଅଛନ୍ତି । କିନ୍ତୁ ସେ ଡ୍ରଇଂରୁମ୍‌ରେ ପଶିବା

କ୍ଷଣି ଦେଖିଲେ, କିଏ ? ତାଙ୍କର ପରିଚିତ, ହଁ ହଁ ମନେ ପଡ଼ିଲା- ରେବେକା ମୁଖାର୍ଜୀ । ଚୁପ୍‌ଚାପ୍ ବସି ଗୋଟିଏ ବିଦେଶୀ ପତ୍ରିକା ଖେଳାଉଛନ୍ତି ।

ସତ୍ୟବ୍ରତ ଭିତରକୁ ପଶିବେ କି ନାହିଁ, ରେବେକା ମୁଖାର୍ଜୀର ସମ୍ମୁଖୀନ ହେବେ କି ନାହିଁ ଚିନ୍ତା କରୁଥିଲେ ।

ହଠାତ୍ ସେହି ଘରେ ମିଷ୍ଟର ରାଘବନଙ୍କର ଆବିର୍ଭାବରେ ସତ୍ୟବ୍ରତ ମହାପାତ୍ରଙ୍କର ଜଡ଼ତା କଟିଗଲା ।

: ହ୍ୟାଲୋ ମିଷ୍ଟର ମହାପାତ୍ର । ମି: ରାଘବନ ସେଇଆଡୁ ପାଟି କରି ଉଠିଲେ ।

ରେବେକା ମୁଖାର୍ଜୀ ବି ବୁଲି ଅନେଇଲେ ପଛକୁ ।

ସତ୍ୟବ୍ରତ ଯୋଡ଼ହାତ କରି ପ୍ରବେଶ କଲେ ଭିତରେ ।

ମିଷ୍ଟର ରାଘବନ କହିଲେ : ବର୍ତ୍ତମାନ ଆମେ ଆପଣଙ୍କ ପାଖକୁ ବାହାରିଥିଲୁ ।

: ମୋ ପାଖକୁ ? ସତ୍ୟବ୍ରତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

: ହଁ, ମିସ୍ ମୁଖାର୍ଜୀଙ୍କୁ ଆପଣ ବୋଧହୁଏ ଚିହ୍ନି ନାହାନ୍ତି । ପ୍ରଥମେ ମୁଁ ତାଙ୍କ ସହିତ ଆପଣଙ୍କର ପରିଚୟ କରାଇଦିଏ ।

ସତ୍ୟବ୍ରତ କଥା ମଝିରେ ବାଧା ଦେଇ କହିଲେ : କାଲି ତାଙ୍କ ସହିତ ମୋର ଭେଟ ହୋଇଥିଲା । ଜର୍ଜ ମୋତେ ତାଙ୍କ ସମ୍ବନ୍ଧରେ ସାମାନ୍ୟ ଧାରଣା ଦେଇଛନ୍ତି । ତେଣୁ ମୁଁ ତାଙ୍କର ପରିଚିତି ଜାଣେ ।

ରେବେକା ମୁଖାର୍ଜୀ ସତ୍ୟବ୍ରତ ନିକଟକୁ ଆଗେଇ ଆସି କରୁଣ ସ୍ୱରରେ କହିଲା : ମୋତେ କ୍ଷମା କରିବେ ମିଷ୍ଟର ମହାପାତ୍ର । ମୁଁ ଆପଣଙ୍କୁ ଚିହ୍ନି ନଥିଲି । କାଲି ସେଇଥିପାଇଁ ସେପରି ଏକ ଅପ୍ରୀତିକର ଘଟଣା ଘଟି ଯାଇଛି ।

: ନା ନା ମିସ୍ ମୁଖାର୍ଜୀ । ମୁଁ ମୋଟେ କିଛି ମନେ କରି ନାହିଁ । ଆପଣ ମୋ ଦିଗରୁ ନିଶ୍ଚିନ୍ତ ହୋଇ ପାରନ୍ତି ।

ରାଘବନ କହିଲେ : ମିସ୍ ମୁଖାର୍ଜୀ ଆଜି ସକାଳୁ ଆସି ମୋତେ ଧରିଛନ୍ତି ଆପଣଙ୍କ ପାଖକୁ ନେଇଯିବା ପାଇଁ । ସେ କେଉଁଠୁ ଶୁଣିଛନ୍ତି ଯେ ଆପଣ ଭାରତବର୍ଷର ଜଣେ ବିଖ୍ୟାତ ଗୁଇନ୍ଦା । ଆପଣ ଇଚ୍ଛା କଲେ ତାଙ୍କର ଗୋଟାଏ ସୁବ୍ୟବସ୍ଥା କରି ଦେଇ ପାରିବେ ।

: ହଁ ମିଷ୍ଟର ମହାପାତ୍ର । ରେବେକା ମୁଖାର୍ଜୀ କହିଲେ, : ଟଙ୍କା ପଇସା ପାଇଁ ଆପଣ ମୋଟେ ଚିନ୍ତା କରିବେ ନାହିଁ । ଯେତେ ଟଙ୍କା ଖର୍ଚ୍ଚ ହେଲେ ବି ମୁଁ ଖର୍ଚ୍ଚ କରିବା ପାଇଁ ପ୍ରସ୍ତୁତ ଅଛି । ମୋର ବ୍ୟାଙ୍କ୍ ବାଲାନ୍‌ସ ବହୁତ । ଆପଣ ହୁଏତ କଳ୍ପନା କରି ପାରିବେ ନାହିଁ । କିନ୍ତୁ ସବୁ ଥାଇ ବି ମୁଁ କାଙ୍ଗାଳ । ଏମାନଙ୍କୁ ବହୁତ ଅନୁରୋଧ କରିଛି । ପାଦ ଧରିଛି, କିନ୍ତୁ ଏମାନେ କେହି ମୋ କଥା ଶୁଣି ନାହାନ୍ତି ।

ସତ୍ୟବ୍ରତ ଲକ୍ଷ୍ୟ କଲେ ଖଣ୍ଡେ ଦୂରରେ ଛିଡ଼ା ହୋଇ ରାଘବନ ମୁହଁରେ ରୁମାଲ ଚାପି ହସୁଛନ୍ତି ।

ରେବେକା ମୁଖାର୍ଜୀର ଆଖି କିନ୍ତୁ ଛଳ ଛଳ ହୋଇ ଆସିଥିଲା ।

ବଡ଼ ସମସ୍ୟାର କଥା ।

ସତ୍ୟବ୍ରତ କହିଲେ : ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ମିସ୍ ମୁଖାର୍ଜୀ । ଆପଣଙ୍କର ସମସ୍ୟା କ'ଣ କୁହନ୍ତୁ । ମୁଁ ସମାଧାନର ଚେଷ୍ଟା କରିବି ।

ରେବେକା ଚାହିଁଲା ରାଘବନଙ୍କ ମୁହଁକୁ ।

ରାଘବନ ପାଖ ଘରକୁ ହାତ ଦେଖାଇ ଦେଇ କହିଲେ : ଆପଣ ସେଇ ଘରକୁ ଯାଆନ୍ତୁ । ମିଷ୍ଟର ମହାପାତ୍ରଙ୍କ ପାଖରେ ଆପଣଙ୍କର ସମସ୍ୟାର କଥା କହନ୍ତୁ । ସେ ନିଶ୍ଚୟ ସମାଧାନର ପଥ ଆପଣଙ୍କୁ ବତେଇ ଦେବେ ।

ରେବେକା ମୁଖାର୍ଜୀ ସତ୍ୟବ୍ରତଙ୍କୁ ନିର୍ଦ୍ଦିଷ୍ଟ ଘର ଭିତରକୁ ଯିବା ପାଇଁ ଅନୁରୋଧ କଲା । ସତ୍ୟବ୍ରତ ମହା ସମସ୍ୟାରେ ପଡ଼ିଗଲେ ।

ମିଷ୍ଟର ରାଘବନ ଇଙ୍ଗିତରେ କହିଲେ : ରେବେକା ସହିତ ଯିବା ପାଇଁ ।

କିନ୍ତୁ ସତ୍ୟବ୍ରତଙ୍କର ଆଗମନର ଉଦ୍ଦେଶ୍ୟ ତ ରେବେକା ମୁଖାର୍ଜୀ ନୁହେଁ ।

ତଥାପି ଉପାୟ ନାହିଁ ।

ସତ୍ୟବ୍ରତ କହିଲେ : ମୋର ଆପଣଙ୍କ ସହିତ କେତେକ ଜରୁରୀ ଦରକାର ଥିଲା ମିଷ୍ଟର ରାଘବନ ।

: ମୁଁ ବର୍ତ୍ତମାନ ଘରେ ଅଛି । ଆପଣ ମିସ୍ ମୁଖାର୍ଜୀଙ୍କ ସହିତ କଥା ଶେଷ କରନ୍ତୁ । ତା'ପରେ ଯାହାହେବ ।

ସତ୍ୟବ୍ରତ ମହାପାତ୍ର ଗୋଟାଏ ଜାଗାରେ ଠିଆ ହୋଇ ଯିବାର ଦେଖି ରେବେକା ହାତଧରି ଟାଣି ଟାଣି ଭିତରକୁ ନେଇଗଲା ।

\+ + +

: ଆପଣ ମିଷ୍ଟର ହାଜରାଙ୍କୁ ଚିହ୍ନି ନାହାନ୍ତି । ରେବେକା ମୁଖାର୍ଜୀ ସଙ୍ଗେ ସଙ୍ଗେ ଆରମ୍ଭ କରିଦେଲେ । ଇଂଜିନିଅରିଂ ବିଦ୍ୟାରେ ତାଙ୍କର ଗଭୀର ଜ୍ଞାନ, ଆଉ ଅସମ୍ଭବ ସମ୍ମାନ । ତାଙ୍କର ପୂରା ନାଁ ପ୍ରିୟ ନାଥ ହାଜରା । ସେ ମୋର ବାପାଙ୍କର ଅନ୍ତରଙ୍ଗ ବନ୍ଧୁ ପ୍ରେମାଙ୍କୁର ହାଜରାଙ୍କର ଏକମାତ୍ର ସନ୍ତାନ ।

ରେବେକା ସଙ୍ଗେ ସଙ୍ଗେ ଭ୍ୟାନିଟ୍ ବ୍ୟାଗ୍ ଖୋଲି ଗୋଟିଏ ପେପର କଟିଂ ଫଟୋ ବାହାର କରି ମୋ ହାତକୁ ବଢ଼ାଇ ଦେଲା । କହିଲା : ଏଇଟି ତାଙ୍କର ଇଂଜିନିଅରିଂ ପାସ୍ କରିବା ସମୟର ଫଟୋ । ମୁଁ ପେପରରୁ କାଟି ରଖିଥିଲି । ଆଜିଯାଏ ମୋ ପାଖରେ ସାଇତା ହୋଇ ରହିଛି ।

ରେବେକା ମୁଖାର୍ଜୀ ନୀରବ ହୋଇ ସତ୍ୟବ୍ରତଙ୍କ ମୁହଁକୁ ଚାହିଁଲେ ।

ସତ୍ୟବ୍ରତ କହିଲେ : ତା'ପରେ ?

: ମିଷ୍ଟର ହାଜରାଙ୍କର ସେତେବେଳେ ପ୍ରଚୁର ଖ୍ୟାତି । ଇଂଜିନିଅରିଂରେ ଏପରି ସୁଖ୍ୟାତିର ସହ ପାସ୍ କରିବା ଯୋଗୁଁ ସମଗ୍ର ଦେଶରେ ଗୋଟାଏ ଆଲୋଡ଼ନ ସୃଷ୍ଟି ହୋଇ ଯାଇଥିଲା । ନାନା ସ୍ଥାନରୁ ନାନା କମ୍ପାନୀରୁ ତାଙ୍କୁ ନିଯୁକ୍ତି ଦେବା ପାଇଁ ପ୍ରତିନିଧିମାନେ ଛୁଟି ଆସିଥିଲେ ।

ମିଷ୍ଟର ହାଜରା କିନ୍ତୁ ଛୁଟି ଆସିଥିଲେ ମୋ ପାଖକୁ । ମୋର ପଣତ ତଳେ ଆଶ୍ରୟ ନେଇ କହିଲେ : ମୋତେ ରକ୍ଷାକର ରେବେକା, ତା' ନହେଲେ ମୁଁ ପାଗଳ ହୋଇଯିବି ।

ଦୁଇଦିନ ମୁଁ ମିଷ୍ଟର ହାଜରାଙ୍କୁ ଲୁଚାଇ ରଖିଥିଲି ମୋ ଘରେ ।

ତା'ପରେ ପ୍ରେମାଙ୍କୁର ହାଜରାଙ୍କ ପରାମର୍ଶ କ୍ରମେ ସେ ଏକ ପ୍ରାଇଭେଟ୍ ଜାହାଜ କମ୍ପାନୀରେ ନିଯୁକ୍ତ ହେଲେ ।

କିଛିଦିନ କଟିଗଲା ବେଶ୍ ଆନନ୍ଦରେ ।

ତାଙ୍କ ସହିତ ଅନ୍ତରଙ୍ଗତା ଦୃଢ଼ରୁ ଦୃଢ଼ତର ହେଲା ।

ବିବାହର ସମସ୍ତ କଥାବାର୍ତ୍ତା ସ୍ଥିର ହୋଇ ରହିଲା ।

କାହାରି ତରଫରୁ କୌଣସି ଆପତ୍ତି ନାହିଁ, ଅଭିଯୋଗ ନାହିଁ ।

ହଠାତ୍ ତାଙ୍କ ଅଫିସରୁ ଏକ ଜରୁରୀ ନିର୍ଦ୍ଦେଶ ଆସିଲା । ଯେଉଁ ଜାହାଜଟା ଦୁଇଦିନ ପରେ ବିଦେଶ ଯାତ୍ରା କରିବାର କଥା, ସେ ଜାହାଜର ଇଂଜିନିଅର ଅସୁସ୍ଥ ହୋଇ ପଡ଼ିଛନ୍ତି । ତାଙ୍କ ଜାଗାରେ ମିଷ୍ଟର ହାଜରାଙ୍କୁ ଯିବାକୁ ହେବ ।

ଗୋଟାଏ ଦୃଷ୍ଟିରୁ ଅବଶ୍ୟ ଆନନ୍ଦର କଥା ।

ଆମ ପରିବାର ଓ ତାଙ୍କ ପରିବାରରେ ସମସ୍ତେ ଖୁସି ହେଲେ । କିନ୍ତୁ ଖୁସି ହୋଇ ପାରିଲି ନାହିଁ ମୁଁ, ଖୁସି ହୋଇ ପାରିଲେ ନାହିଁ ମିଷ୍ଟର ହାଜରା ।

ଅନ୍ୟ ଉପାୟ ନଥିଲା ।

ଦୀର୍ଘ ଛଅମାସର ବିଚ୍ଛେଦ ଚିନ୍ତାକରି ଆମେ ସେଦିନ ବିଚଳିତ ହୋଇ ପଡ଼ିଥିଲୁ ।

ସେଦିନ ଡକ୍‌ରେ ଜାହାଜ ଛାଡ଼ିବାବେଳେ ମିଷ୍ଟର ହାଜରାଙ୍କୁ ବିଦାୟ ଦେବାକୁ ଯାଇ ମୋ ଆଖିରେ ଶ୍ରାବଣ ଧାରାରେ ଅଶ୍ରୁ ଗଡ଼ି ପଡ଼ିଥିଲା ।

ତା'ପରେ କେବଳ ଚିଠି ପତ୍ରର ସମ୍ପର୍କ ।

ଛଅଟି ମାସ ମୋତେ ଛଅଶହ ବର୍ଷ ପରି ମନେ ହୋଇଥିଲା ।

ମିଷ୍ଟର ହାଜରା ଛଅ ମାସ ପରେ ଫେରି ଆସିଥିଲେ ।

ମୁଁ ଅନୁଭବ କଲି ସେ ଅନେକ ବଦଳି ଯାଇଛନ୍ତି ।

ତଥାପି ମୁଁ ଭାବିଥିଲି ସଦ୍ୟ ବିଦେଶରୁ ଫେରିଥିବାରୁ ତାଙ୍କ ମନଟା ଘର ଧରି ନାହିଁ । ଧୀରେ ଧୀରେ ସବୁ ଠିକ୍ ହୋଇଯିବ ।

କିନ୍ତୁ ମାସ ଗୋଟାଏ ନ ପୂରୁଣୁ ତାଙ୍କୁ ଆଉ ଗୋଟାଏ ଜାହାଜରେ ପୁଣି ବିଦେଶଯାତ୍ରା କରିବାକୁ ପଡ଼ିଲା ।

ସେ ବିଦେଶରେ ଥିବା ସମୟରେ ତାଙ୍କର ପିତୃ ବିୟୋଗ ଘଟିଲା । ଆଗରୁ ମାତୃ ବିୟୋଗ ଘଟିଥିଲା ।

ମିଷ୍ଟର ହାଜରା ତା'ପରେ ଟିକିଏ ବିଚଳିତ ହୋଇ ପଡ଼ିଥିଲେ ।

ମୋତେ ବହୁତ ମନର କଥା ଜଣେଇ ଚିଠି ଲେଖିଥିଲେ ।

ଆମର ଦାମ୍ପତ୍ୟ ଜୀବନ କିପରି ଭାବରେ ଗଢ଼ି ଉଠିବ, ଆମର ସଂସାର କିପରି ଆଦର୍ଶ ସଂସାର ହେବ, ମୋତେ ପତ୍ନୀ ରୂପେ ପାଇ ସେ କେଡ଼େ ଭାଗ୍ୟବାନ ଇତ୍ୟାଦି ଇତ୍ୟାଦି ବହୁତ୍ କଥା ଲେଖି ମୋତେ ସେ ପ୍ରତି ସପ୍ତାହରେ ଚିଠି-ଦେଉଥିଲେ ।

କିନ୍ତୁ ମୁଁ ଲକ୍ଷ୍ୟ କଲି, ଚିଠି ଦେବାର ସମୟ ଧୀରେ ଧୀରେ ଯେପରି ବଢ଼ି ଯିବାକୁ ଲାଗିଲା । ସପ୍ତାହକ ପରିବର୍ତ୍ତେ ପନ୍ଦର ଦିନ, ପନ୍ଦର ଦିନ ପରିବର୍ତ୍ତେ ଏକ ମାସ ଏବଂ ଏକ ମାସ ପରିବର୍ତ୍ତେ ଦୁଇ ମାସର ବ୍ୟବଧାନ ହେବାକୁ ଲାଗିଲା ।

କାରଣ ?

କାରଣ ମୁଁ ଅସ୍ଥିର ହୋଇ ଖୋଜି ବୁଲିଲି ।

ତାଙ୍କର କଲିକତା ଅଫିସ୍‌ରେ ଯାଇ ଖବର ନେଲି ।

ସେ ଯେଉଁ ଜାହାଜରେ ଯାଇଥିଲେ, ସେ ଜାହାଜ ଫେରି ଆସିଲା । କିନ୍ତୁ ସେ କାହାନ୍ତି ?

ତାଙ୍କର ସହକର୍ମୀମାନଙ୍କ ମଧ୍ୟରୁ ଅନେକଙ୍କୁ ଖୋଜି ବାହାର କରି ତାଙ୍କର କୁଶଳ ପ୍ରଶ୍ନ ପଚାରିଲି । କେହି କିନ୍ତୁ ସନ୍ତୋଷଜନକ ଉତ୍ତର କିଛି ଦେଲେ ନାହିଁ ।

ମୁଁ ଆହୁରି ଖୋଜିଲି, ଆହୁରି ଖୋଜିଲି ।

ଶେଷରେ ଜାଣିଲି, କଲିକତାସ୍ଥିତ ଏହି କମ୍ପାନୀର ହେଡ୍ ଅଫିସ୍‌ରେ ସେ ନିଯୁକ୍ତି ନେଇଛନ୍ତି ।

କିନ୍ତୁ କାହିଁକି ?

ଅନୁଶୋଚନାରେ ମୁଁ ବିବ୍ରତ ହୋଇ ପଡ଼ିଲି ।

ଶେଷରେ ସ୍ଥିର କଲି ମୁଁ ନିଜେ ଛୁଟି ଯାଇ ତାଙ୍କର ସନ୍ଧାନ ନେବି ।

ବାପାଙ୍କୁ ମୋର ମନ କଥା ଜଣାଇଲି ।

ବାପା ମୋର ବିଦେଶ ଯିବାର ସମସ୍ତ ବନ୍ଦୋବସ୍ତ କରିଦେଲେ ।

କିନ୍ତୁ ସେଠାରେ ପହଞ୍ଚି ଶୁଣିଲି, ସପ୍ତାହକ ପୂର୍ବରୁ ସେ ଗୋଟାଏ ଜାହାଜରେ ସିଙ୍ଗାପୁର ବାହାରି ଯାଇଛନ୍ତି ।

ସେଠିକା କମ୍ପାନୀର ମ୍ୟାନେଜର ଖୁବ୍ ସଦାଶୟ ଲୋକ ।

ସେ ମୋତେ ସେଠାରେ ରହିବାର ସମସ୍ତ ବନ୍ଦୋବସ୍ତ କରି ଦେଲେ ।

ମୋତେ ଉପଦେଶ ଦେଲେ ସ୍ୱଦେଶକୁ ଫେରି ଯିବା ପାଇଁ । କାରଣ ତାଙ୍କର ଫେରିବାକୁ ତିନି ମାସରୁ ତ କମ୍ ଲାଗିବ ନାହିଁ । ତେଣୁ ଦୀର୍ଘ ତିନିମାସ ସେଠାରେ ଅପେକ୍ଷା କରିବା ମୋ ପକ୍ଷରେ ସମ୍ଭବ ହେବ ନାହିଁ । ବରଂ ସେ ଫେରି ଆସିଲେ, ମିସ୍ ମୁଖାର୍ଜୀଙ୍କ କଥା ସେ ତାଙ୍କୁ କହିବେ ଏବଂ ଦୁଇମାସ ଛୁଟି ଦେବେ ବିବାହ ଉତ୍ସବ ପାଇଁ ।

ମୋର ଅନ୍ୟ ଉପାୟ ନଥିଲା । ତଥାପି ପନ୍ଦର ଦିନ ସେଠାରେ ରହି ତାଙ୍କ ସମ୍ବନ୍ଧରେ ବହୁତ ଖୋଜ ଖବର ନେଲି ।

କିନ୍ତୁ କୌଣସି ଚାରିତ୍ରିକ ଦୋଷ ତ୍ରୁଟିର ସମ୍ବାଦ କେଉଁଠୁ ପାଇଲି ନାହିଁ ।

ଦିନେ ବାଧ୍ୟ ହୋଇ ଫେରି ଆସିଲି ।

ସେଇ ଯେ ଫେରି ଆସିଛି, ଆଉ ମୋର ଆଜିଯାଏ ମିଷ୍ଟର ହାଜରାଙ୍କ ସହିତ ଦେଖା ହୋଇ ନାହିଁ ।

ରେବେକା ମୁଖାର୍ଜୀ ଏତକ କହିସାରି ନୀରବ ହେଲେ ।

ସତ୍ୟବ୍ରତ ପଚାରିଲେ : ତା'ପରେ ଆପଣ ଆଉ ତାଙ୍କ ସମ୍ବନ୍ଧରେ କିଛି ଖବର ପାଇ ନାହାନ୍ତି ?

: ପାଇଛି, ଅନେକ ସମ୍ବାଦ ପାଇଛି । ଅବଶ୍ୟ ଲୋକ ମୁଖରୁ, କିନ୍ତୁ ଲୋକ ମୁଖ କଥା ମୁଁ ବିଶ୍ୱାସ କରିବାକୁ ଚାହେ ନାହିଁ । ମୁଁ ମୋ ଆତ୍ମବିଶ୍ୱାସ ବାହାରେ ଅନ୍ୟ କିଛି ଚିନ୍ତାକରି ପାରିବି ନାହିଁ ।

: ଲୋକ ମୁଖରୁ କ'ଣ ଶୁଣିଛନ୍ତି ?

: ସେ ନାନା କଥା ମିଷ୍ଟର ମହାପାତ୍ର । କିଏ କହୁଛି ମିଷ୍ଟର ହାଜରା ବିଦେଶରେ ବିବାହ କରି ପୁତ୍ର ସନ୍ତାନ ଧରି ଆନନ୍ଦରେ ଜୀବନଯାପନ କରୁଛନ୍ତି । ଆଉ କିଏ କହୁଛି

ଜାହାଜ ଦୁର୍ଘଟଣାରେ ସମୁଦ୍ରର ଅତଳ ଜଳରେ ସେ ମିଳେଇ ଯାଇଛନ୍ତି । ଆଉ କିଏ କହୁଛି ସଂସାର ପ୍ରତି ତାଙ୍କର ବୈରାଗ୍ୟ ଆସି ଯାଇଥିବା ହେତୁ ଯୋଗୀ ବେଶରେ ସେ ପୃଥିବୀର ଅନ୍ଦିକନ୍ଦିରେ ବୁଲି ଯେପରି କାହାର ସନ୍ଧାନ କରୁଛନ୍ତି ।

: ଏ ସବୁ କଥାକୁ ଆପଣ ବିଶ୍ୱାସ କରିପାରୁ ନାହାନ୍ତି ?

: ନା ।

: ତେବେ ଆପଣଙ୍କର ଧାରଣା ?

: ସେ ଅଛନ୍ତି ଏବଂ ମୋତେ ଅପେକ୍ଷା କରିଛନ୍ତି । ମୋର ବିଶ୍ୱାସ, ଦିନେ ନା ଦିନେ ତାଙ୍କର ମୋ ସହିତ ସାକ୍ଷାତ ହେବ । ସେ ମୋତେ ଗ୍ରହଣ କରିବେ । ଆମେ ସୁଖର ସଂସାର ଗଢ଼ି ତୋଳିବୁ ।

ସତ୍ୟବ୍ରତ କହିଲେ : ଆପଣଙ୍କ ଅନୁମାନ ନିଃସନ୍ଦେହରେ ସତ୍ୟ ମିସ୍ ମୁଖାର୍ଜୀ । ମିଷ୍ଟର ହାଜରାଙ୍କର ପିତୃ ବିୟୋଗ ପରେ ସେ ହୁଏତ ଅଧିକ ମାତ୍ରାରେ ମାନସିକ ଆଘାତ ପାଇ ସଂସାର ପ୍ରତି ଉଦାସୀନ ହୋଇ ଉଠିଥିଲେ । ଯାହା ଫଳରେ ଦୁନିଆର କୌଣସି ବିଭବ ତାଙ୍କୁ ଭଲ ଲାଗୁ ନଥିଲା । ଆପଣଙ୍କ କଥା ବି ତାଙ୍କ ମାନସପଟରେ ଅବଲୁପ୍ତ ହୋଇ ଯାଇଥିଲା । ଫଳରେ ତାଙ୍କର ଚେତନ ମନରେ ସେ ଆପଣଙ୍କୁ ସ୍ମରଣ କରିପାରୁ ନାହାନ୍ତି । ଯେତେବେଳେ ତାଙ୍କର ଆପଣଙ୍କ ସହିତ ହଠାତ୍ ଦେଖା ହୋଇ ଯିବ, ସେତେବେଳେ ଧୀରେ ଧୀରେ ତାଙ୍କର ମାନସ ପଟରେ ଚେଇଁ ଉଠିବ ପୂର୍ବ ସ୍ମୃତି । ସେ ସଚେତନ ହେବେ । ପ୍ରକୃତିସ୍ଥ ହେବେ । ଆପଣଙ୍କୁ ଦୁଇବାହୁ ବଢ଼ାଇ କୋଳକୁ ଟାଣି ନେବେ । ଆପଣଙ୍କ ସୁନାର ସଂସାର ଗଢ଼ି ଉଠିବ ।

ସତ୍ୟବ୍ରତ ଦେଖିଲେ, ରେବେକା ମୁଖାର୍ଜୀ ମୁହଁରେ ଆନନ୍ଦର ଉଚ୍ଛ୍ୱାସ ଫୁଟି ଉଠୁଛି । ଆଖି ଦୁଇଟା ପୂରି ଉଠିଛି ପ୍ରଶାନ୍ତ ଆନନ୍ଦରେ ।

: ମି.ମହାପାତ୍ର ! ରେବେକା ମୁଖାର୍ଜୀ ଆନନ୍ଦରେ ଯେପରି ନାଚି ଉଠିଲେ । ଆପଣ ଠିକ୍ କହିଛନ୍ତି ମିଷ୍ଟର ମହାପାତ୍ର । ମୋ ମନର ଗୋପନ କଥାଟି, ଯାହା ମୁଁ ନିଜେ ବି ଆବିଷ୍କାର କରିପାରି ନଥିଲି, ଆପଣ ତାହା ଆଜି ପ୍ରକାଶ କରି ଦେଇଛନ୍ତି । ବାସ୍ତବିକ୍ ଆପଣଙ୍କର ଶକ୍ତି ଅପରିସୀମ । ଆପଣ ନମସ୍ୟ, ଆପଣ ପୂଜ୍ୟ ।

ରେବେକା ମୁଖାର୍ଜୀ ଉଠିଆସି ସତ୍ୟବ୍ରତର ଗୋଡ଼ରୁ ପାଦଧୂଳି ନେବା ପାଇଁ ନଇଁ ପଡ଼ିଥିଲା ।

ସତ୍ୟବ୍ରତ ବାଧା ଦେଲେ । କହିଲେ : ପ୍ରକୃତିସ୍ଥ ହୁଅନ୍ତୁ ମିସ୍ ମୁଖାର୍ଜୀ । ମୁଁ ଜଣେ ସାମାନ୍ୟ ମନୁଷ୍ୟ ମାତ୍ର । ମୁଁ ଆପଣଙ୍କ ପାଇଁ ଆପ୍ରାଣ ଚେଷ୍ଟା କରିବି ।

: ନା ମିଷ୍ଟର ମହାପାତ୍ର । ମୋତେ ଆପଣଙ୍କର ପାଦଧୂଳି ଦିଅନ୍ତୁ । ଦୀର୍ଘ ବର୍ଷ ପରେ ମୁଁ ଆଜି ଜଣେ ପ୍ରକୃତ ଗୁଣୀ ଜନର ସନ୍ଧାନ ପାଇଛି । ଶହ ଶହ ହଜାର ହଜାର ମଣିଷ ଆଗରେ ମୋର ମନର କଥା ମୁଁ ବ୍ୟକ୍ତ କରିଛି, କିନ୍ତୁ କେହି ଆପଣଙ୍କ ପରି ଆନ୍ତରିକତା ସହକାରେ ମୋ ସମସ୍ୟାକୁ ନିଜର ସମସ୍ୟା ପରି ଗ୍ରହଣ କରି ନାହାନ୍ତି । ଏତେ ବର୍ଷ ପରେ ମୋର ଆତ୍ମବିଶ୍ୱାସ ଫେରି ଆସିଛି । ମୁଁ ମିଷ୍ଟର ହାଜରାଙ୍କୁ ନିଶ୍ଚୟ ଫେରି ପାଇବି । ଆପଣ ଠିକ୍ କହିଛନ୍ତି, ସେ ଆତ୍ମବିସ୍ମୃତ ହୋଇ ମୋ କଥା ମନ ଭିତରୁ ହଜେଇ ଦେଇଛନ୍ତି । ମୋତେ ଦେଖିବା ମାତ୍ରକେ, ହଁ ହଁ ସେ ଦୁଇ ବାହୁ ପ୍ରସାରିତ କରି କୋଳକୁ ଟାଣି ନେବେ ।

ମୁଖରେ ଚୁମ୍ବନ ଦେବେ । ଆଲିଙ୍ଗନ ପାଶରେ ଆବଦ୍ଧ ରଖିବେ ଦିନ ପରେ ଦିନ, ରାତି ପରେ ରାତି, ମାସ, ବର୍ଷ, ଶତାବ୍ଦୀ ପରେ ଶତାବ୍ଦୀ ।

ରେବେକା ଚଉଧୁରୀ ଆତ୍ମହରା ହୋଇ ତଳେ ପଡ଼ିଗଲା ।

ବୋଧହୁଏ ତା'ର ଚେତା ହଜିଗଲା ।

ସତ୍ୟବ୍ରତ ଛୁଟି ଯାଇଥିଲେ ତାକୁ ଉଠାଇବା ପାଇଁ ।

ମିଷ୍ଟର ରାଘବନ ସେତିକିବେଳେ ଘର ଭିତରେ ପଶି ସତ୍ୟବ୍ରତଙ୍କୁ ବାଧା ଦେଲେ । କହିଲେ : ତାଙ୍କୁ ସେହିପରି ଅବସ୍ଥାରେ କିଛି ସମୟ ଛାଡ଼ି ଦିଅନ୍ତୁ ମିଷ୍ଟର ମହାପାତ୍ର । ପ୍ରାୟ ଅଧଘଣ୍ଟାଏ ସେ ଜ୍ଞାନ ହରାଇ ପଡ଼ି ରହିବେ । ତା'ପରେ ଅପଣାଛାଏଁ ତାଙ୍କର ଚେତା ଫେରି ଆସିବ ।

ସତ୍ୟବ୍ରତ ଅବାକ୍ ହୋଇ ରେବେକା ମୁଖାର୍ଜୀ ଆଡ଼କୁ ଚାହିଁ ଥିଲେ ।

ଲକ୍ଷଣ ତ ଭଲ ନୁହେଁ ତା'ହେଲେ ।

ରାଘବନ କହିଲେ : ରେବେକା ମୁହଁରୁ ଆପଣ ଯେଉଁ କାହାଣୀ ଶୁଣିଲେ, ସେଇ କାହାଣୀ ଶୁଣି ପ୍ରଥମେ ତାଙ୍କ ପ୍ରତି ମୋର ଖୁବ୍ ଗୋଟାଏ ସହାନୁଭୂତି ଜାଗି ଉଠିଥିଲା । କିନ୍ତୁ କ୍ରମେ ଯେତେବେଳେ ଜାଣିଲି ଯେ ସେଇଟା ତାଙ୍କର ଗୋଟାଏ ମେନିଆ, ଧୀରେ ଧୀରେ ଅନ୍ୟମାନଙ୍କ ପରି ମୁଁ ବି ଚୁପ୍ ହୋଇଗଲି ।

ସତ୍ୟବ୍ରତ କହିଲେ : ରେବେକାର ଏହି କାହାଣୀ ମୂଳରେ କ'ଣ କୌଣସି ସତ୍ୟତା ନାହିଁ ?

: ହୁଏତ ଥାଇପାରେ, କିନ୍ତୁ ଏଇଟା ସତ୍ୟ ଯେ ରେବେକା ମୁଖାର୍ଜୀ ସୁସ୍ଥ ମଣିଷ ନୁହନ୍ତି । ପୁଣି ପାଗଳ ମଧ୍ୟ ନୁହନ୍ତି । ତାଙ୍କ ମନର ବିକୃତି କେତେବେଳେ ଯେ ତାଙ୍କୁ କେଉଁ ପଥରେ ପରିଚାଳିତ କରୁଛି, ନିଜେ ସେ ତାହା ବୁଝି ପାରୁ ନାହାନ୍ତି । ରାଘବନ ନୀରବ ହେଲେ ।

: ଆପଣ ଯାହା କୁହନ୍ତୁ ମିଷ୍ଟର ରାଘବନ, ମିସ୍ ମୁଖାର୍ଜୀ ଗୋଟାଏ ଶକ୍ତ ମାନସିକ ଆଘାତ କିଛି ପାଇଛନ୍ତି, ଯହିଁରୁ ତାଙ୍କର ଏହି ବିକୃତି ଜନ୍ମ ଗ୍ରହଣ କରିଛି । ଯାହାହେଉ ପ୍ରକୃତରେ ମୁଁ ତାଙ୍କର ଆରୋଗ୍ୟ ପାଇଁ ଯଥା ସମ୍ଭବ ଚେଷ୍ଟା କରିବି ।

: ତାଙ୍କ ବାପା ମିଷ୍ଟର ମୁଖାର୍ଜୀ ଅନେକ ଚେଷ୍ଟା କରିଥିଲେ । ଡାକ୍ତର, ସାଇକୋଲୋଜିଷ୍ଟ କାହାରିକୁ ସେ ବାଦ୍ ଦେଇ ନାହାନ୍ତି । କିନ୍ତୁ କିଛି ଲାଭ ହୋଇ ନାହିଁ । ଯାହାହେଉ, ଆପଣ ଆସନ୍ତୁ । ମିଷ୍ଟର ଚଉଧୁରୀଙ୍କ ହତ୍ୟାକାରୀ ସମ୍ପର୍କରେ କିଛି ସନ୍ଧାନ ପାଇଲେ ?

ସତ୍ୟବ୍ରତ ମିଷ୍ଟର ରାଘବନଙ୍କ ସହିତ ଡ୍ରଇଂ ରୁମ୍‌ରେ ଆସି ବସୁ ବସୁ କହିଲେ : ସେଇ ସନ୍ଧାନରେ ମୁଁ ତ ଆପଣଙ୍କ ଏଠାକୁ ଛୁଟି ଆସିଛି ।

ମିଷ୍ଟର ରାଘବନଙ୍କ ମୁହଁରେ କିପରି ଚଞ୍ଚଳତା ଫୁଟି ଉଠିଲା । ସେ ବିଚିତ୍ର କଣ୍ଠରେ କହିଲେ : ମାନେ ?

ସତ୍ୟବ୍ରତ କହିଲେ : ଆପଣ ଭୟ କରନ୍ତୁ ନାହିଁ ମିଷ୍ଟର ରାଘବନ । ଆପଣ ମନେକରନ୍ତୁ ନାହିଁ ଯେ ମୁଁ ଆପଣଙ୍କୁ ଚଉଧୁରୀ ସାହେବଙ୍କ ହତ୍ୟାକାରୀ ରୂପେ ଧରିବାକୁ ଛୁଟି ଆସିଛି ।

: ତା'ହେଲେ ?

: ସମସ୍ୟାଟା ଖୁବ୍ ଜଟିଳ ମିଷ୍ଟର ରାଘବନ ।

: ମାନେ ?

ସତ୍ୟବ୍ରତ ମୁହୂର୍ତ୍ତେ ନୀରବ ରହି ଗମ୍ଭୀର ଭାବରେ କହିଲେ : ଆପଣ କିଛି ମନେ କରିବେ ନାହିଁ ମିଷ୍ଟର ରାଘବନ । ଆପଣଙ୍କ ହାତ ଘଡ଼ିଟା ଆପଣ କେଉଁଠି ଛାଡ଼ି ଆସିଛନ୍ତି ?

ରାଘବନଙ୍କ ମୁଣ୍ଡରେ ବଜ୍ରପାତ ହେଲାପରି ସେ ଚମକି ଉଠିଲେ । ପର ମୁହୂର୍ତ୍ତରେ ପ୍ରକୃତିସ୍ଥ ହୋଇ କହିଲେ : ବଡ଼ ଆଶ୍ଚର୍ଯ୍ୟର କଥା ମିଷ୍ଟର ମହାପାତ୍ର । ମୋ ହାତ ଘଡ଼ିଟା ଦୁଇ ତିନି ଦିନ ପୂର୍ବରୁ ଚୋରି ହୋଇ ଯାଇଛି ।

ସତ୍ୟବ୍ରତ ହସିଲେ । ଧୀରେ ଧୀରେ ପକେଟରୁ ହାତ ଘଡ଼ିଟିଏ ବାହାର କରି କହିଲେ : ହେଇ ଦେଖନ୍ତୁ ତ, ଏଇ ଘଡ଼ିଟା ନିଶ୍ଚୟ ଆପଣଙ୍କର ?

ରାଘବନ କ୍ଷିପ୍ର ହସ୍ତରେ ଘଡ଼ିଟା ସତ୍ୟବ୍ରତଙ୍କ ହାତରୁ ଟାଣି ନେଇ ଆହୁରି ଆଶ୍ଚର୍ଯ୍ୟ ହେଲେ । ହଠାତ୍ ତାଙ୍କ ପାଟିରୁ କଥା ବାହାରିଲା ନାହିଁ ।

ସତ୍ୟବ୍ରତ କହିଲେ : ଚିହ୍ନି ପାରୁଛନ୍ତି ?

ରାଘବନଙ୍କ ସ୍ୱର ନରମି ଯାଇଥିଲା । ସେ ଆସ୍ତେ ଆସ୍ତେ କହିଲେ : ଆପଣ ଏଇଟାକୁ କେଉଁଠୁ ପାଇଲେ ?

: ଅସଲ ଜାଗାରୁ ।

: ମାନେ ?

: ଚଉଧୁରୀ ସାହେବଙ୍କୁ ଯେଉଁ ଘରେ ଖୁଣ୍ କରାହୋଇଛି ସେଇ ଘରୁ ।

ରାଘବନଙ୍କ ମୁହଁ ଆହୁରି ଝାଉଁଳି ପଡ଼ିଲା । ସେ ଜଡ଼ିତ କଣ୍ଠରେ କହିଲେ : ଆପଣ ବିଶ୍ୱାସ କରନ୍ତୁ ମିଷ୍ଟର ମହାପାତ୍ର, ମୋ ଘଡ଼ିଟା ଚୋରି ହୋଇ ଯାଇଛି ।

: କେଉଁଠୁ ? ସତ୍ୟବ୍ରତଙ୍କ କଣ୍ଠରେ ତୀକ୍ଷ୍ଣତା ଫୁଟି ଉଠିଲା ।

: ମୋର ଠିକ୍ ମନେ ପଡୁ ନାହିଁ । ତେବେ ଖୁବ୍ ସମ୍ଭବ ମୋର ଏଇ ଘର ଭିତରୁ ଚୋରି ହୋଇ ଯାଇଛି ।

: ଆପଣଙ୍କ ଘରେ ଆଉ କିଏ ସବୁ ଅଛନ୍ତି ?

: ମୋ ପରିବାରର ଲୋକ ଛଡ଼ା ଦୁଇଜଣ ଚାକର ଚାକରାଣୀ ।

: ସେମାନେ କ'ଣ ଚୋରି କରିଥିବା ସମ୍ଭବ ?

: ସମ୍ଭବ ହେଲେ ବି ସେମାନେ ତ ଯାଇ ଚଉଧୁରୀ ସାହେବଙ୍କୁ ଖୁଣ୍ କରି ଆସିବା ସମ୍ଭବ ନୁହେଁ । ରାଘବନ ସେହିପରି ଶାନ୍ତ ସ୍ୱରରେ ଉତ୍ତର ଦେଲେ ।

: ତା'ହେଲେ ? ସତ୍ୟବ୍ରତ ପଚାରିଲେ ।

: ତା'ହେଲେ ଚିନ୍ତାର ବିଷୟ ମିଷ୍ଟର ମହାପାତ୍ର । ମୋ ହାତ ବନ୍ଧା ଘଡ଼ି ମୋ ହାତରୁ ଯାଇ...

ସତ୍ୟବ୍ରତ କହିଲେ : ଅବଶ୍ୟ ଏହି ପ୍ରଶ୍ନଟା ଏତେ ଖୋଲାଖୋଲି ଭାବରେ ଆପଣଙ୍କ ସହିତ ଆଲୋଚନା କରିବା ମୋର ଉଚିତ ନଥିଲା । ତଥାପି ମୁଁ ଆପଣଙ୍କ ସହଯୋଗ କାମନା କରି ଏହା କରିଛି । ଆପଣ ଯଦି ଚଉଧୁରୀଙ୍କ ହତ୍ୟାକାଣ୍ଡ ସମ୍ପର୍କରେ କିଛି ଜାଣିଥାଆନ୍ତି ମୋତେ ଖୋଲାଖୋଲି ଭାବରେ କୁହନ୍ତୁ । ମୁଁ ଆପଣଙ୍କୁ ବଞ୍ଚେଇବା ପାଇଁ ସାହାଯ୍ୟ କରିବି ।

ଏଥର ରାଘବନଙ୍କ ଆଖି ଦୁଇଟା ଛଳ ଛଳ ହୋଇ ଉଠିଲା । ସେ କହିଲେ,

: ବିପକ୍ଷରେ ଯୁକ୍ତି କରିବାର ସତ୍‌ସାହସ ମୋର ନାହିଁ ମିଷ୍ଟର ମହାପାତ୍ର । ପୋଲିସ୍‌ବାଲା ହୋଇଥିଲେ ମୋତେ ସଙ୍ଗେ ସଙ୍ଗେ ଆରେଷ୍ଟ୍ କରି ଥାଆନ୍ତେ । ତେବେ ଆପଣ ବିଶ୍ୱାସ କରିବେ କି ନାହିଁ ମୁଁ ଜାଣି ନାହିଁ, ଚଉଧୁରୀ ସାହେବଙ୍କ ହତ୍ୟାକାଣ୍ଡ ସଂପର୍କରେ ମୁଁ ସଂପୂର୍ଣ୍ଣ ଅଜ୍ଞ ।

ସତ୍ୟବ୍ରତ ନୀରବରେ ଠିଆ ହୋଇ ମୁହୂର୍ତ୍ତେ କ'ଣ ଚିନ୍ତା କଲେ । ତା'ପରେ ଶାନ୍ତ ସ୍ୱରରେ କହିଲେ : ଆପଣଙ୍କ କଥାକୁ ମୁଁ ବିଶ୍ୱାସ କଲେ ବି ଆପଣଙ୍କୁ ଅଭିଯୁକ୍ତ ଲିଷ୍ଟରୁ ବାଦ ଦେଇପାରୁ ନାହିଁ । ଆପଣ ମନେ ରଖନ୍ତୁ ମୋ ସହିତ ଛକା ପଞ୍ଝା ଖେଳି ଆଜିଯାଏ କେହି ନିସ୍ତାର ପାଇ ନାହାନ୍ତି । ଆପଣ ଯଦି ଏହି ହତ୍ୟାକାଣ୍ଡ ସହିତ ସଂପୃକ୍ତ ଥାଆନ୍ତି, ଆଜି ନହେଲେ ବି ଦୁଇଦିନ ପରେ ଆପଣଙ୍କୁ ସ୍ୱୀକାରୋକ୍ତି କରିବାକୁ ପଡ଼ିବ । ଏଇ କଥାଟା ମନେ ରଖିବେ । ମୁଁ ଆଜି ଆସୁଛି ମିଷ୍ଟର ରାଘବନ ।

ସତ୍ୟବ୍ରତ ରାଘବନଙ୍କର କୌଣସି ଉତ୍ତରକୁ ଅପେକ୍ଷା ନକରି ଘରୁ ବାହାରି ଚାଲି ଆସିଲେ ।

ମି: ରାଘବନଙ୍କ ମୁହଁରୁ ଯେପରି ଭାଷା ହଜି ଯାଇଥିଲା ।

\+ + +

: ମତେ କାହିଁକି ଏଗୁଡ଼ା କିଛି ଭଲ ଲାଗୁ ନାହିଁ ଆଜ୍ଞା । ଦିନେ ନାହିଁ, କାଳେ ନାହିଁ, ଆଜି ଆପଣାର ଲୋକମାନେ ଏତେ ଦରଦୀ ହୋଇ ପଡ଼ିଲେ । କାଲି ରାତି ଭରି ଆଜ୍ଞା ମୁଁ ଶୋଇ ପାରି ନାହିଁ । ଏ ଘର, ସେ ଘର, ତଳ ଉପର ସବୁଆଡ଼େ ଯେପରି କ'ଣ ସେମାନେ ଖୋଜି ବୁଲୁଛନ୍ତି । ରାତ୍ରିର ଅନ୍ଧକାର ଭିତରେ ବେଳେ ବେଳେ ରହି ରହି ଧପ୍ ଧାପ୍ ଆଲୁଅ ଜଳି ଉଠୁଛି ପୁଣି ଲିଭି ଯାଉଛି । ନା ଆଜ୍ଞା, ମୋର ମନେ ହେଉଛି କେହି ଦିଦିଙ୍କ ଦୁଃଖରେ ଲୁହ ଢାଳିବାକୁ ଆସି ନାହାନ୍ତି, ସମସ୍ତେ ଯେପରି ସ୍ୱାର୍ଥ ସାଧନ ପାଇଁ ଛୁଟି ଆସିଛନ୍ତି ।

ସତ୍ୟବ୍ରତ ଡ୍ରଇଂରୁମ୍‌ରେ ବସି ରଘୁଆ ଠାରୁ ସବୁ କଥା ଶୁଣୁଥିଲେ ।

ସେ ଗତ କାଲି ସକାଳ ଠାରୁ ଏ ଘର ଛାଡ଼ି ଚାଲି ଯାଇଛନ୍ତି ।

ଗୋଟାଏ ହୋଟେଲରେ ଯାଇ ଉଠିଛନ୍ତି ।

ଏପରି କରିବା ମୂଳରେ ତାଙ୍କର ଉଦ୍ଦେଶ୍ୟ ଥିଲା । ବେଗମ ଚଉଧୁରୀଙ୍କର ଯେଉଁ ଆତ୍ମୀୟସ୍ୱଜନ ବା ହିତାକାଂକ୍ଷୀମାନେ ଆସି ରୁଣ୍ଡ ହୋଇଛନ୍ତି, ସେମାନଙ୍କ ଗତିବିଧି ଲକ୍ଷ୍ୟ କରିବା ଥିଲା ସତ୍ୟବ୍ରତଙ୍କର ଉଦ୍ଦେଶ୍ୟ । ନିଜେ ସେ ସେଠାରେ ରହିଲେ ସେମାନଙ୍କ ଗତିବିଧିରେ ଶିଥିଳତା ଆସିପାରେ ଭାବି ସତ୍ୟବ୍ରତ ଗୃହତ୍ୟାଗ କରିଛନ୍ତି । ଆଉ ତାଙ୍କର ବିଶ୍ୱସ୍ତ ସହଚର ରୂପେ ନିଯୁକ୍ତ କରି ଯାଇଛନ୍ତି ରଘୁଆକୁ । ପ୍ରତ୍ୟେକଙ୍କ ଉପରେ ଲକ୍ଷ୍ୟ ରଖିବାକୁ ଉପଦେଶ ଦେଇ ଯାଇଛନ୍ତି ତାକୁ ।

: ହୁଁ, ତମ ମନରେ ତା'ହେଲେ ସେମାନଙ୍କ ପ୍ରତି ସନ୍ଦେହ ହେଉଛି । ସତ୍ୟବ୍ରତ ପଚାରିଲେ ।

: ଆଜ୍ଞା । ଦିଦିଙ୍କ ଘରେ ବା ଦିଦିଙ୍କ ପାଖରେ କେହି ମୁହୂର୍ତ୍ତେ ବସୁ ନାହାନ୍ତି । ଖାଲି ଏ ଘର, ସେ ଘର, ଏ ଜିନିଷ, ସେ ଜିନିଷ ଖେଳେଇବାରେ ଲାଗିଛନ୍ତି । ସବୁ ଛକା ପଞ୍ଝାରେ ଚାଲିଛି ଆଜ୍ଞା । ଜଣକୁ ଲୁଚି ଆଉ ଜଣେ, ଆଉ ଜଣକୁ ଲୁଚି ଆଉ ଜଣେ, କ'ଣ ଯେ ସେମାନେ ଖୋଜୁଛନ୍ତି ମୁଁ କିଛି ବୁଝିପାରୁ ନାହିଁ । କିନ୍ତୁ ମୋ ଆଖି ଏଡ଼େଇ ଯିବେ

ସହଜରେ । ବରଂ ମୋତେ ସମସ୍ତେ ସାଉଁଳେଇ କଥା କହୁଛନ୍ତି । ବିଶେଷ ଭାବରେ ବ୍ୟୋମକେଶ ବାବୁ ମୋତେ ତ ଦେବତା ତୁଲ୍ୟ ଜ୍ଞାନ କରୁଛନ୍ତି ।

: ତମେ କ'ଣ ସେମାନଙ୍କ କାର୍ଯ୍ୟକଳାପରେ କିଛି ବାଧା ଦେଉଛ ? ସତ୍ୟବ୍ରତ ପଚାରିଲେ ।

: ନା, ନା, ଆପଣ ମନା କରିଛନ୍ତି ଯେତେବେଳେ ମୁଁ ସବୁ ଦେଖି ବି ନ ଦେଖିଲା ପରି ଦୂରେଇ ଯାଉଛି । ସେଇଥିପାଇଁ ସେମାନେ ବି ମୋ ଉପରେ ଖୁବ୍ ଖୁସି । ରଘୁଆ କହିଲା ।

: ତମର ତା'ହେଲେ ଏମାନଙ୍କୁ ସନ୍ଦେହ ହେଉଛି ?

: ଆଜ୍ଞା ।

: ଆଚ୍ଛା ତମେ ସବୁଠାରୁ ବେଶି ସନ୍ଦେହ କାହାକୁ କରୁଛ ?

: ବ୍ୟୋମକେଶ ବାବୁକୁ ! କାରଣ ସେ ଅଳିଆଗଦା ପର୍ଯ୍ୟନ୍ତ ଘାଣ୍ଟୁଛନ୍ତି । କାରଣ କ'ଣ ଆଜ୍ଞା ?

: କାରଣ ଅନେକ ଅଛି ରଘୁ । ତମ ବଡ଼ବାବୁ ମୋଟେ ଭଲ ଲୋକ ନଥିଲେ । ସେ ଏପରି ସବୁ କିଛି ଜିନିଷ ଲୁଚେଇ ରଖିଥିଲେ, ଯାହା ପାଇଁ ଆଜି ତାଙ୍କ ଜୀବନ ଗଲା । ଲୋକେ ସେଇ ସବୁ ଜିନିଷ ଖୋଜୁଛନ୍ତି । ତମେ କ'ଣ କିଛି ଜାଣି ନାହଁ ରଘୁ ? ତମ ବାବୁ ତମକୁ କିଛି କହି ନାହାନ୍ତି ?

: ନା, ଆଜ୍ଞା । ତେବେ ଏ କେତେଦିନ ହେବ ସେ ଭାରି ଡରି ଡରି ରହିଲା ପରି ମନେ ହେଉଥିଲା । ଯେପରି କାହାର ପ୍ରତୀକ୍ଷା କରି ସେ ଆତଙ୍କିତ ହେଲା ପରି ଲାଗୁଥିଲା । ତେବେ ମୁଁ କିଛି ବୁଝିପାରି ନଥିଲି । ତାଙ୍କ ଦେହ ଖରାପ ଯୋଗୁଁ ଏପରି ହେଉଛି ବୋଲି ମୋର ମନେ ହେଉଥିଲା ।

ସତ୍ୟବ୍ରତ ପ୍ରସଙ୍ଗ ଏଡ଼େଇ ଯାଇ କହିଲେ : ହଁ, ବ୍ୟୋମକେଶ ବାବୁ ତ ଅଳିଆଗଦା ପର୍ଯ୍ୟନ୍ତ ଘାଣ୍ଟୁଛନ୍ତି, ଆଉ ଅନ୍ୟମାନେ ?

: ଅନ୍ୟମାନଙ୍କ ଭିତରେ ସଦାଶିବ ବାବୁ ଟିକିଏ ବୟସ୍କ ଲୋକ ହୋଇ ଥିବାରୁ ସେ ବସି ବସି କେବଳ ଢୁଳୋଉଛନ୍ତି, ଆଉ ବେଳେ ବେଳେ ଉଠି ଯାଇ ଆଲମାରୀ ସନ୍ଧି, ଖଟ ଉପରୁ ତୋଷକ ଟେକି କ'ଣ ଯେପରି ଖୋଜୁଛନ୍ତି । ମୁଁ ଥରେ ହଠାତ୍ ସାମନା ସାମନି ହୋଇ ଯିବାରୁ ମୋତେ କହିଲେ : ହତ୍ୟାକାରୀ ଛୁରୀଟା କୋଉଠି ଲୁଚେଇଲା ସେଇଆ ଦେଖୁଛି ।

ସତ୍ୟବ୍ରତ ମନେ ମନେ ହସିଲେ । କହିଲେ : ଆଉ ଭୂପେନ ବାବୁ ?

: ସେ ତ ବାବୁଙ୍କ ଅଫିସ୍ ଘରେ ବସି ଅଧଘଣ୍ଟାକୁ ଅଧଘଣ୍ଟା କାହାକୁ ଫୋନ୍ କରୁଛନ୍ତି । ଗୋଟାଏ ଡାଇରୀ ବହିରେ କ'ଣ ସବୁ ଟିପି ଯାଉଛନ୍ତି । କାଲି ରାତିରେ ଭୂପେନ ବାବୁ ଶାରୀ ପଞ୍ଜୁରିଟା ଛାତ ଉପରକୁ ନେଇ କ'ଣ ଯେମିତି କରୁଥିଲେ । ମୋତେ ଦେଖିବାକ୍ଷଣି ପଞ୍ଜୁରିଟାକୁ ଦୂରକୁ ଠେଲି ଦେଇ କହିଲେ : ରଘୁ ! ମୁଁ ଆଉଁ ଆଉଁ ରମଣୀର ଏ ଦୁର୍ଦ୍ଦଶା ଘଟିବ ମୋଟେ ଭାବିପାରି ନଥିଲି । ଖାଲି ପଞ୍ଜୁରିଟା ସେଠି ଟଙ୍ଗେଇ ଆଉ ଲାଭ କ'ଣ ! ସେଇଥିପାଇଁ ଏଇଟାକୁ ଛାତ କୋଣରେ ରଖି ଦେଇଛି ।

: ଆଉ ହେଲେନ୍ ? ସତ୍ୟବ୍ରତ ପଚାରିଲେ ।

: ସେ ଦିଦିଙ୍କ ସଙ୍ଗେ ସଙ୍ଗେ ଅଛନ୍ତି । ସେଇ ବିଚାରୀ ଏକା ଦିଦିଙ୍କର ପ୍ରକୃତ ବନ୍ଧୁ । କାଲି ସଞ୍ଜପହରୁ ରାତି ବାରଟାଯାଏ ସେ ଦିଦିଙ୍କୁ ବାବୁଙ୍କ ବେଡ୍‌ରୁମ୍‌ରେ ବସାଇ ଖେଳଣାଯାକ ବାହାର କରି ଖେଳଉଥିଲେ । ଦିଦି ବି ହେଲେନ୍ ସାଙ୍ଗରେ ସାନ ପିଲାଟି ପରି ଖେଳରେ ମାତି ଯାଇଥିଲେ । ତାଙ୍କ ପିଲାଦିନର ସ୍ମୃତି ବୋଧେ ଚେଇଁ ଉଠିଥିଲା । କିନ୍ତୁ ବାରମ୍ବାର ବ୍ରିଜ୍‌ଲାଲ ବାବୁ ଆସି ଖାଲି ବିରକ୍ତ କରୁଥିଲେ । ଅଧଘଣ୍ଟା ଘଣ୍ଟାଏ ଅନ୍ତରରେ ଆସି ତଳେ ବସି ଡାକି ପଠାଉଥିଲେ । ହେଲେନ୍ ଆସୁଥିଲା । ଦି'ପଦ ପଦେ କଥା ହୋଇ ପୁଣି ଫେରି ଯାଉଥିଲା ଦିଦିଙ୍କ ପାଖକୁ । ଆଜି ସକାଳୁ ତ ଦି'ଥର ଆସି ଗଲେଣି ।

ସତ୍ୟବ୍ରତ କହିଲେ : ଆଉ ତା' ହେଲେ ନୂଆ ଆତ୍ମୀୟ କେହି ଆସି ନାହାନ୍ତି ।

: ନା, ଏଇ ତିନି ଚାରି ଜଣଙ୍କୁ ଛାଡ଼ିଦେଲେ ଆଉ ସମସ୍ତେ ଚାଲି ଯାଇଛନ୍ତି । କିନ୍ତୁ ଏସବୁ କାରବାରରୁ ମୁଁ ତ କିଛି ବୁଝି ପାରୁ ନାହିଁ ବାବୁ ? ପୁଲିସିବାଲା ଥରକୁ ଥର ଆସୁଛନ୍ତି । ତାଙ୍କ ମନକୁ ଯାହା ଆସିଲା ଘଣ୍ଟାଚକଟା କରି ଯାଉଛନ୍ତି । ଧମକ ଚମକ ଦେଖେଇବାକୁ ବି ଛାଡୁନାହାନ୍ତି । କିନ୍ତୁ ବାବୁଙ୍କୁ କୋଉ କାରଣରୁ କିଏ ଖୁଣ୍ କଲା ସେ କଥା କେହି ବୁଝୁ ନାହାନ୍ତି କି ତା'ର କିଛି ବ୍ୟବସ୍ଥା କରୁ ନାହାନ୍ତି ।

ସତ୍ୟବ୍ରତଙ୍କର ମନେହେଲା କିଏ ଯେପରି ଦରଜା ସେ ପାଖରେ ଠିଆ ହୋଇ କଥାବାର୍ତ୍ତା ଶୁଣୁଛି । ସେ ହଠାତ୍ ଉଠିପଡ଼ି ଦରଜା ଖୋଲିବା ପୂର୍ବରୁ ଆର ପାଖରୁ ବ୍ୟୋମକେଶ ଚଉଧୁରୀ ଦରଜା ଠେଲି ଭିତରକୁ ପଶି ଆସିଲେ ।

: ଆରେ ମିଷ୍ଟର ମହାପାତ୍ର ଯେ, ଆପଣ କେତେବେଳୁ ଆସିଲେଣି ? ମୁଁ ଆପଣଙ୍କୁ ମନେ ମନେ ଅନେକ ବେଳରୁ ଖୋଜୁଛି ।

ସତ୍ୟବ୍ରତ ସ୍ମିତ ହସି କହିଲେ : ମୁଁ ପ୍ରାୟ ଅଧଘଣ୍ଟା ହେବ ଆସିଲିଣି । ମୋ ପାଖରେ ହଠାତ୍ ଆପଣଙ୍କର ଦରକାରଟା କ'ଣ ପଡ଼ିଗଲା ?

: ଏଇ ମାମୁଙ୍କ ହତ୍ୟା ରହସ୍ୟ ସଂମ୍ବନ୍ଧରେ ଏ ପର୍ଯ୍ୟନ୍ତ କିଛି ଜାଣି ହେଲା ନାହିଁ । ଆପଣ କେତେଦୂର କ'ଣ ଆଗେଇଲେ, ସେଇଆ ଜାଣିବା ପାଇଁ ମୁଁ ଖୁବ୍ ଆଗ୍ରହୀ ।

: ହଁ, ଆପଣଙ୍କର ଆଗ୍ରହ ତ ହେବାର କଥା । ତେବେ ଆପଣ ଇଚ୍ଛା କଲେ ବି ହତ୍ୟାକାରୀକୁ ଖୋଜି ବାହାର କରିବା ପାଇଁ ମୋ ସହିତ ସହଯୋଗ କରି ପାରନ୍ତେ ।

ବ୍ୟୋମକେଶ ବାବୁ କହିଲେ : ଆପଣ ଅଯଥାରେ ମୋତେ ଲଜ୍ଜା ଦେଉଛନ୍ତି । ଆମ ଭଳି କ୍ଷୁଦ୍ର ବୁଦ୍ଧିସମ୍ପନ୍ନ ଲୋକ ପକ୍ଷରେ ଏହା କ'ଣ ସମ୍ଭବ ?

: ସମସ୍ତଙ୍କ ପକ୍ଷରେ ସବୁ ସମ୍ଭବ ବ୍ୟୋମକେଶ ବାବୁ । ମଣିଷର ବୁଦ୍ଧି କାହାରି ଅଙ୍କ ନୁହେଁ । ତା'ଛଡ଼ା ରଘୁ କହୁଥିଲା ଆପଣତ କାଲି ରାତିରେ ବହୁତ କ'ଣ ଖୋଜା ଖୋଜି କରୁଥିଲେ ।

ବ୍ୟୋମକେଶ ବାବୁ ଲଜ୍ଜାରେ ଯେପରି ଝାଉଁଳି ପଡ଼ିଲେ । କହିଲେ : ସେକଥା ପଚାରି ଆଉ ଲଜ୍ଜା ଦିଅନ୍ତୁ ନାହିଁ ମିଷ୍ଟର ମହାପାତ୍ର । ଗୋଟାଏ ଉତ୍ସାହରେ କାଲି ରାତିଭରି ମୁଁ ଲାଗି ପଡ଼ିଥିଲି । କାଳେ ଯଦି କିଛି କ୍ଲୁ ମିଳିଯାଏ । ହତ୍ୟାକାରୀ କାଳେ ଯଦି କେଉଁଠି କିଛି ଛାଡ଼ି ଯାଇଥାଏ । କିନ୍ତୁ ଖାଲି ବୃଥା ପରିଶ୍ରମ ମିଷ୍ଟର ମହାପାତ୍ର । ରାତିଯାକ ଅନିଦ୍ରା ହେବା ସାର ହେଲା ଯାହା ।

: ତଥାପି ଆପଣଙ୍କ ଉଦ୍ୟମକୁ ମୁଁ ସାଧୁବାଦ ଜଣାଉଛି । ମିଷ୍ଟର ଚଉଧୁରୀଙ୍କ ହତ୍ୟାକାରୀକୁ ଧରିବା ପାଇଁ ଆପଣଙ୍କ ମନରେ ଯେ ଆଗ୍ରହ ଅଛି, ଉତ୍ସାହ ଅଛି, ସେତିକି

ଯଥେଷ୍ଟ । ତା' ଛଡ଼ା ଆଉ ଗୋଟାଏ ପ୍ରଶ୍ନ ବ୍ୟୋମକେଶ ବାବୁ ! ସତ୍ୟବ୍ରତଙ୍କ ସ୍ୱର ଧୀରେ ନରମ ହୋଇ ଆସିଲା । ସେ ଆସ୍ତେ ଆସ୍ତେ କହିଲେ, ଏ ଘରେ ଅନ୍ୟ ଯେଉଁମାନେ ଅଛନ୍ତି, ସେମାନଙ୍କ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

ବ୍ୟୋମକେଶ ବାବୁ ଟିକିଏ ଚିନ୍ତା କରି କହିଲେ : ଏମାନେ ସମସ୍ତେ ତ ନିଜ ଲୋକ । କାହା ସମ୍ବନ୍ଧରେ ମୁଁ କ'ଣ କହିବି ମିଷ୍ଟର ମହାପାତ୍ର ! ସେମାନଙ୍କ ମଧ୍ୟରୁ କାହାରିକୁ ସନ୍ଦେହ କରିବା ମଧ ଉଚିତ ନୁହେଁ । କିନ୍ତୁ...

: ନା ନା, ଅଟକି ଗଲେ ଚଳିବ ନାହିଁ ବ୍ୟୋମବେଶ ବାବୁ । କାହାରି ପ୍ରତି ଯଦି କୌଣସି ପ୍ରକାର ସନ୍ଦେହ ଆପଣଙ୍କ ମନରେ ଉଦ୍ରେକ ହେଉଥାଏ, ତାହା ଯେତେ ସାମାନ୍ୟତମ ହେଲେ ମଧ ଆପଣ ମୋ ପାଖରେ ପ୍ରକାଶ କରିବା ଉଚିତ । ଆପଣ ମୋତେ ଦ୍ୱିଧାବୋଧ କରନ୍ତୁ ନାହିଁ ।

ବ୍ୟୋମକେଶ ବାବୁ ଟିକିଏ ଚିନ୍ତା କରି କହିଲେ : ଭୂପେନ ବାବୁଙ୍କର ଗୋଟାଏ ଟେଲିଫୋନ ବାର୍ତ୍ତା ମୋ ମନରେ ଟିକିଏ ସନ୍ଦେହ ଉଦ୍ରେକ କରିଛି । ତେବେ ଆପଣ ସେଇଟାକୁ ମନର ଗୋଟାଏ ବିକାର ବୋଲି ଧରି ପାରନ୍ତି । କିନ୍ତୁ ମୁଁ କାହିଁକି...

: ଭୂପେନ ବାବୁ କାହାକୁ ଟେଲିଫୋନ୍ କରୁଥିଲେ ? ସତ୍ୟବ୍ରତ ପଚାରିଲେ ।

: କାହାକୁ କରୁଥିଲେ ମୁଁ ଠିକ୍ କହି ପାରିବି ନାହିଁ । ତେବେ ଭୂପେନ ବାବୁଙ୍କ କଣ୍ଠସ୍ୱରରୁ ଶୁଣିଲି, ସେ ଅପର ପ୍ରାନ୍ତର ଲୋକକୁ ଉତର ଦେଉଥିଲେ, 'ଏମାନେ ସମସ୍ତେ ମିଶି ମୋତେ ଏପରି ଅସୁବିଧାରେ ପକାଇଛନ୍ତି ଯେ, ମୁଁ କିଛି ଗୋଟାଏ ସୁବିଧା କରିପାରୁ ନାହିଁ । ତେବେ ଅନୁସନ୍ଧାନ ଚଳେଇ ଯାଉଛି । ନିର୍ଦ୍ଦିଷ୍ଟ ସ୍ଥାନ ମାନଙ୍କ ମଧ୍ୟରୁ ଅଧିକରୁ ବେଶି ଅନୁସନ୍ଧାନ କାର୍ଯ୍ୟ ଶେଷ ହୋଇଛି । ହଁ, ହଁ, ଆପଣଙ୍କ ନିର୍ଦ୍ଦେଶ ମନେ ଅଛି । ଦରକାର ହେଲେ ସେଇଆ କରିବି । .... ନା, ନା, ଡର ଭୟ କ'ଣ । ମୁଁ ଠିକ୍ ଅଛି, ଆପଣ ନିଶ୍ଚିନ୍ତ ରୁହନ୍ତୁ ।'

: ତା'ପରେ ? ସତ୍ୟବ୍ରତ ପଚାରିଲେ ।

: ତା'ପରେ ସେ ଟେଲିଫୋନ୍ ରିସିଭରଟା ରଖି ଦେଇଥିଲେ । ମୁଁ ଧୀରେ ଧୀରେ ସେଠାରୁ ଅନ୍ତର୍ଦ୍ଧାନ ହୋଇ ଯାଇଥିଲି ।

: ଆଉ ତାଙ୍କର କାର୍ଯ୍ୟଧାରା କିଛି ଲକ୍ଷ୍ୟ କରିଥିଲେ ?

: ରାତିରେ ଥରେ ଦି'ଥର ମୁଁ ତାଙ୍କୁ ଖୋଜିଥିଲି, କିନ୍ତୁ ପାଇ ନଥିଲି ।

: ହୁଁ, ଆଉ ସଦାଶିବ ବାବୁ ? ତାଙ୍କ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ନା, ସେ ବିଚରା ନିରୀହ ମନେ ହେଉଛନ୍ତି । ତାଙ୍କ ସମ୍ବନ୍ଧରେ ବିଶେଷ କିଛି ମୋ ମନରେ ସନ୍ଦେହ ଜନ୍ମି ନାହିଁ ।

: ଆଉ ହେଲେନ୍ ? ସତ୍ୟବ୍ରତ ପଚାରିଲେ ।

ବ୍ୟୋମକେଶ ବାବୁ ହସି ହସି କହିଲେ : ନାରୀ ଚରିତ୍ର, ଦେବେ ନଜାଣନ୍ତି, ମୁଁ ତ ମାନବ ମାତ୍ର ।

: ତଥାପି...

ବ୍ୟୋମକେଶ ବାବୁ ଅଳ୍ପ ହସି କ'ଣ କହିବାକୁ ଯାଉଥିଲେ । କିନ୍ତୁ ଦୁଆର ମୁହଁରେ ଭୂପେନ ବାବୁଙ୍କର ଆବିର୍ଭାବ ଦେଖି ସେ ଚଞ୍ଚଳ ହୋଇ ଉଠିଲେ । କହିଲେ, ମୁଁ ଟିକିଏ ଆସୁଛି ମିଷ୍ଟର ମହାପାତ୍ର । ପରେ ଦେଖା ହେବ ।

ସତ୍ୟବ୍ରତଙ୍କର କୌଣସି ଉତ୍ତରକୁ ଅପେକ୍ଷା ନକରି ସେ ଘରୁ ବାହାରି ଚାଲିଗଲେ ।

: ଆସନ୍ତୁ, ଆସନ୍ତୁ ଭୂପେନ ବାବୁ ! ସତ୍ୟବ୍ରତ ଯେପରି ସ୍ୱାଗତ ସମ୍ଭାଷଣ ଜଣାଇଲେ ।

ଭୂପେନ ବାବୁ ଚଷମାଟାକୁ ଲୁଗା କାନିରେ ପୋଛୁ ପୋଛୁ ଆଗେଇ ଆସିଲେ । ଆଖି ତାଙ୍କର ସ୍ୱପ୍ନିଳ ମନେ ହେଉଥିଲା । ସତ୍ୟବ୍ରତ ଆଡ଼କୁ ଦୁଇ ଚାରିଥର ଭଲ ଭାବରେ ଚାହିଁ କହିଲେ, : ଆପଣ ଯାହା କୁହନ୍ତୁ ସତ୍ୟବ୍ରତ ବାବୁ, ମୁଁ କିନ୍ତୁ ମୋଟେ ବିଶ୍ୱାସ କରି ପାରୁ ନାହିଁ । ରମଣୀର ଏହି ପ୍ରକାର ମୃତ୍ୟୁ ମୋଟେ ସ୍ୱାଭାବିକ ନୁହେଁ । ହତ୍ୟାକାରୀ ଭୀଷଣ ଚାଲାଖ । ମୁଁ ବହୁତ ଚେଷ୍ଟା କରି ମଧ ଏ ପର୍ଯ୍ୟନ୍ତ ଗୋଟିଏ ହେଲେ କ୍ଲୁ ପାଇଲି ନାହିଁ ।

ଭୂପେନ ବାବୁ ଗୋଟିଏ ସୋଫା ଉପରେ ବସିଲେ ।

ସୋଫା ଟେବୁଲ ଉପରେ ହାତରେ ଧରିଥିବା ଡାଇରୀଟି ରଖିଲେ ।

ପଞ୍ଜାବି ପକେଟରୁ ନାସ ଡବାଟା ବାହାର କରି ଟିପେ ନାସ ନାକରେ ପୂରାଇ କହିଲେ : ଆପଣ ହୁଏତ ଘଟଣାଟାକୁ ଠିକ୍ ଫଲୋ କରି ପାରୁ ନାହାନ୍ତି । ମୁଁ କିନ୍ତୁ ଗତ ଦୁଇଦିନ ମଧରେ ବିଭିନ୍ନ ସୋର୍ସରୁ ଯାହା ଖବର ପାଇଛି ଏ ଯାତ୍ରାରୁ ରମଣୀର ଲେଉଟିବାର ଉପାୟ ନଥିଲା । କିନ୍ତୁ ଆଗରୁ ତା'ର ପ୍ରୋଟେକ୍‌ସନ ନେବାର ଥିଲା । ହୁଏତ ଆମେ ସମସ୍ତେ ମିଳି ଗୋଟାଏ କିଛି କରି ପାରିଥାଆନ୍ତେ । ଆପଣ ବୁଝୁ ନାହାନ୍ତି ସତ୍ୟବ୍ରତ ବାବୁ, ମୁଁ ତା'ର ନିଜ ରକ୍ତର କକା । ହୁଏତ ଅନେକ ଦୂରରେ ରହୁଥିଲି । ଚନ୍ଦନ ନଗର ବା ଖୁବ୍ ଏମିତି ଗୋଟାଏ ଦୂର କ'ଣ ? ଇଚ୍ଛା କରିଥିଲେ ସେ ତ ମୋର ସାହାଯ୍ୟ ଲୋଡ଼ି ପାରି ଥାଆନ୍ତା ! ରମଣୀଟା ସବୁଦିନ ଇମିତି ପର ବୁଦ୍ଧିରେ ପଡ଼ି ଶେଷରେ ଜୀବନଟାକୁ ନଷ୍ଟ କରିଦେଲା ।

ସତ୍ୟବ୍ରତ କହିଲେ : ଆପଣଙ୍କର ଏହି ହତ୍ୟାକାଣ୍ଡ ସମ୍ପର୍କରେ କ'ଣ ମନେ ହେଉଛି ? ଏହାର ମୂଳ କାରଣ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?

: ଦେଖନ୍ତୁ ସତ୍ୟବ୍ରତ ବାବୁ, ଆପଣ ବୟସରେ ସାନ ହେଲେ ମଧ ମୋ'ଠାରୁ ବେଶି ଅଭିଜ୍ଞ । କାରଣ ଆପଣଙ୍କର ପେଶା ହେଲା ଅପରାଧୀକୁ ଖୋଜିବା । ତେଣୁ ଘଟଣାର ବିବରଣୀରୁ ଅପରାଧର ଧାରାରୁ ଆପଣ ଅପରାଧୀର ମନୋବୃତ୍ତି ନିଶ୍ଚୟ ବୁଝି ପାରିଥିବେ । ତେଣୁ ଏ ସମ୍ବନ୍ଧରେ ମୋର ମତାମତ ଯେ ଆପଣଙ୍କର ବିଶେଷ କିଛି କାମରେ ଲାଗିବ, ସେ କଥା ମୁଁ କହୁ ନାହିଁ । ତଥାପି ଆପଣ ଜାଣି ରଖନ୍ତୁ ଯେ, ରମଣୀର ମୃତ୍ୟୁ ହୋଇ ନାହିଁ ହୀରା ଜହରତ୍ ପାଇଁ । ଏହା ପଛରେ ଅନ୍ୟ କୌଣସି କାରଣ ଅଛି ।

: ଅନ୍ୟ କାରଣ ! ସତ୍ୟବ୍ରତ ଯେପରି ସ୍ୱଗତୋକ୍ତି କଲେ ।

: ହଁ ଅନ୍ୟ କାରଣ । ଭୂପେନ ବାବୁଙ୍କ ସ୍ୱର ଆହୁରି ଦୃଢ଼ ଶୁଣାଗଲା । ଅନ୍ୟ କାରଣ ମୁଁ ଏଇଥିପାଇଁ ଅନୁମାନ କରୁଛି, ସତ କଥା କହିବାକୁ ଗଲେ ରମଣୀ ପାଖରେ ହୀରା ଜହରତ୍ କିଛି ନଥିଲା ।

: ମାନେ ? ସତ୍ୟବ୍ରତଙ୍କ କଣ୍ଠରେ ଉତ୍କଣ୍ଠା ଫୁଟି ଉଠିଲା । ସେ କହିଲେ, ରମଣୀ ରଞ୍ଜନବାବୁଙ୍କ ପାଖରେ ହୀରା ଜହରତ୍ କିଛି ନଥିଲା, ଆପଣ ତାହା ଜାଣିଲେ କିପରି ?

: ଜାଣିଛି, ଜାଣିଛି ସତ୍ୟବ୍ରତ ବାବୁ । ଭୂପେନ ଚଉଧୁରୀ ବିନା ପ୍ରମାଣରେ କିଛି କଥା କୁହେ ନାହିଁ । ସବୁ ପ୍ରମାଣ ମୋର ଏହି ଡାଇରୀ ଖାତାଟିରେ ଟିପା ହୋଇ ରହିଛି । ନେଇ ଦେଖନ୍ତୁ ।

ଭୂପେନ ବାବୁ ଡାଇରୀ ଖଣ୍ଡିକ ଟେବୁଲ ଉପରୁ ଉଠାଇ ସତ୍ୟବ୍ରତଙ୍କ ହାତକୁ ବଢ଼ାଇ ଦେଲେ ।

ଡବାରୁ ଆଉ ଟିପେ ନାସ ବାହାର କରି ନାକରେ ଭରି ବିଜୟୀ ଆଖିରେ ସତ୍ୟବ୍ରତଙ୍କ ମୁହଁକୁ ଅନାଇ ରହିଲେ ।

ସତ୍ୟବ୍ରତ ଡାଇରୀଟି ଖୋଲାଇ ଦେଖିଲେ- ପ୍ରତିଟି ପୃଷ୍ଠାରେ ଗୋଟିଏ ଗୋଟିଏ ଜୁଏଲାରୀ ଦୋକାନର ନାମ ଏବଂ ଫୋନ୍ ନମ୍ବର । ପ୍ରତିଟି ପୃଷ୍ଠା କେବଳ ନାଁ, ଠିକଣା ଆଉ ଫୋନ୍ ନମ୍ବରରେ ପୂର୍ଣ୍ଣ । ଖାଲି କଲିକତାରେ ନୁହେଁ, ଭାରତବର୍ଷର ଅନ୍ୟାନ୍ୟ ସହରର କେତେକ ଜୁଏଲାରୀ ଦୋକାନର ନାମ ଓ ଠିକଣା ମଧ୍ୟ ସେହି ଡାଇରୀ ପୃଷ୍ଠାରେ ଲିପିବଦ୍ଧ ହୋଇଛି ।

ସତ୍ୟବ୍ରତ ପୃଷ୍ଠା ଗୁଡ଼ିକ ଖୋଲେଇ ସାରି ଡାଇରୀଟି ବନ୍ଦ କରି ଭୂପେନ୍ ବାବୁଙ୍କ ହାତକୁ ବଢ଼ାଇ ଦେଲେ ।

: ବୁଝିଲେ ? ଭୂପେନ ବାବୁଙ୍କ କଣ୍ଠରେ ବିଜୟର ସ୍ୱର ଫୁଟି ଉଠିଥିଲା । ମୁଁ ବିନା ସାକ୍ଷୀ ପ୍ରମାଣରେ କିଛି କଥା କୁହେ ନାହିଁ । ଏମାନଙ୍କ ପ୍ରତ୍ୟେକଙ୍କ ପାଖକୁ ମୁଁ ଟେଲିଫୋନ୍ କରିଛି । ଦୁଇ ତିନି ଦିନ ହେବ ମୁଁ କେବଳ ଏହି କାର୍ଯ୍ୟରେ ବ୍ୟସ୍ତଥିଲି । କିନ୍ତୁ ସମସ୍ତେ ବାରଣ କରିଛନ୍ତି । ଦୀର୍ଘ କୋଡ଼ିଏ ବର୍ଷ ମଧ୍ୟରେ ରମଣୀ ରଞ୍ଜନ ଚଉଧୁରୀ ନାମକ କୌଣସି ବ୍ୟକ୍ତି ସେମାନଙ୍କ ଠାରୁ ହୀରା ଜହରତ୍ କିଛି କିଣି ନାହାନ୍ତି । ତେଣୁ ବର୍ତ୍ତମାନ ଆପଣ ବୁଝି ପାରୁଥିବେ ଯେ ରମଣୀର ହୀରା ଉପାଖ୍ୟାନ ସଂପୂର୍ଣ୍ଣ ଭିତ୍ତିହୀନ । ମୁଁ ତ ସାକ୍ଷ୍ୟ ଲକ୍ଷ୍ୟ ପ୍ରମାଣ ଆପଣଙ୍କୁ ଆଖି ଆଗରେ ଦେଖାଇଦେଲି । ତେଣୁ ବର୍ତ୍ତମାନ ଚିନ୍ତା କରିବାର କଥା, ରମଣୀର ଏହି ଅପମୃତ୍ୟୁ ପଛରେ ଆଉ କି କାରଣ ଥାଇପାରେ ?

ଏହା କହି ଭୂପେନବାବୁ ଉଠି ଠିଆ ହେଲେ ।

କହିଲେ : ଆପଣ ଚିନ୍ତା କରନ୍ତୁ ସତ୍ୟବ୍ରତ ବାବୁ । ମୁଁ ଆପଣଙ୍କୁ ନିଶ୍ଚୟ ଏକ ନୂତନ ତଥ୍ୟର ସନ୍ଧାନ ଦେଇଛି । ଆପଣଙ୍କର ବହୁ ପରିଶ୍ରମ ଲାଘବ କରିଛି । ଆପଣ ଏଥର ନୂଆ ଲାଇନ୍‌ରେ ଚିନ୍ତା କରନ୍ତୁ । ମୁଁ ପୁଣି ନୂତନ ସୂତ୍ର ପାଇଲେ ଆପଣଙ୍କୁ କହିବି । ଆପଣ ଯାହା ଭାବନ୍ତୁ ପଛେ ସତ୍ୟବାବୁ, ମୁଁ ରମଣୀର ଅପମୃତ୍ୟୁର ମୂଳ କାରଣ ବାହାର ନକରିବା ଯାଏ ଏ ଘର ଛାଡ଼ି କୁଆଡ଼େ ଯାଉ ନାହିଁ ।

ଭୂପେନ ବାବୁ ବାହାରକୁ ବାହାରି ଗଲେ ।

ସତ୍ୟବ୍ରତ ତାଙ୍କ ଯିବା ପଥକୁ ଅନାଇ ରହି ଚିନ୍ତା କରୁଥିଲେ, ଭୂପେନ ବାବୁଙ୍କର ଏହା ମୁଣ୍ଡର ବିକୃତି ନା ତାଙ୍କ ଆଗରେ ନିଜକୁ ବୋକା ସଜେଇ ରଖିବାର ଅପୂର୍ବ କୌଶଳ । ଅବଶ୍ୟ ବୟସ ହୋଇଛି ଭୂପେନ ବାବୁଙ୍କର । ତେବେ ଏପରି କିଛି ବୟସ ହୋଇ ନାହିଁ ଯେଉଁ ବୟସ ମନୁଷ୍ୟକୁ ପାର୍ଥିବ ଭୋଗଠାରୁ ତାକୁ ଦୂରେଇ ନେଇଯାଏ । ଆଚ୍ଛା !

ସତ୍ୟବ୍ରତ ଆଖି ବୁଜି ନୀରବରେ କିଛି ସମୟ କ'ଣ ଚିନ୍ତା କଲେ ।

ଆଖି ମେଲି ଚାହିଁ ଦେଖିଲେ ଦୁଆର ମୁହଁରେ ବ୍ରିଜ୍‌ଲାଲ ଠିଆ ହୋଇଛନ୍ତି ।

: ଭିତରକୁ ଆସିପାରେ ? ବ୍ରିଜ୍‌ଲାଲ ହସୁ ହସୁ ପଚାରିଲେ ।

: ନିଶ୍ଚୟ, ନିଶ୍ଚୟ । ଆପଣଙ୍କର ଘର, ଆପଣ ଭିତରକୁ ଆସିବାରେ ବାଧା କିଏ ଦେବ ! ସତ୍ୟବ୍ରତ ମଧ୍ୟ ହସି ହସି କହିଲେ ।

: ନା, କଥାଟା କିନ୍ତୁ ତାହା ନୁହେଁ ମିଷ୍ଟର ମହାପାତ୍ର । ଚଉଧୁରୀ ସାହେବ ମୋର ଅତ୍ୟନ୍ତ ଅନ୍ତରଙ୍ଗ ଥିଲେ ଏହା ସତ୍ୟ, କିନ୍ତୁ ହେଲେନ୍‌ର ଏ କେତେଦିନର ଅନୁପସ୍ଥିତି ଆମ ଘରେ, ବିଶେଷ କରି ହେଲେନ୍‌ର ମା' ପାଖରେ ଖୁବ୍ ଦୁର୍ବିସହ ହୋଇ ଉଠିଛି । ସେ ମୋତେ ବାରମ୍ବାର ତାଗିଦ୍ ଦେଇ ପଠାଉଛନ୍ତି, ହେଲେନ୍‌କୁ ସାଙ୍ଗରେ ନେଇ ଯିବା ପାଇଁ । ମୁଁ ଆସି ସେଇଆ କହୁଛି ହେଲେନ୍‌କୁ । କିନ୍ତୁ ସେ ତା ବନ୍ଧୁର ଏହି ଦୁର୍ଦ୍ଦିନରେ ତାକୁ ଏପରି ଅସହାୟ ଅବସ୍ଥାରେ ଛାଡ଼ି ଯିବା ପାଇଁ ମୋଟେ ରାଜି ନୁହେଁ । କ'ଣ କରିବି କୁହନ୍ତୁ ? ମୁଁ ମହା ସମସ୍ୟାରେ ପଡ଼ି ଯାଇଛି ।

ସତ୍ୟବ୍ରତ ବ୍ୟଥିତ ସ୍ୱରରେ କହିଲେ : ତା'ହେଲେ ଆପଣଙ୍କର ଖୁବ୍ ସମସ୍ୟା ତ ! ଆଚ୍ଛା ଆଚ୍ଛା, ମୁଁ ଆପଣଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କରିବି । ହେଲେନ୍‌କୁ ବୁଝେଇ ସୁଝେଇ ଆପଣଙ୍କ ସାଙ୍ଗରେ ବିଦା କରିଦେବି । ତା'ହେଲେ ଆପଣ ଖୁସି ହେବେ ତ ?

ବ୍ରିଜଲାଲଙ୍କ ମୁହଁରେ କୌଣସି ଆନନ୍ଦର ଦୀପ୍ତି ଫୁଟିଲା ନାହିଁ । ବରଂ କଣ୍ଠଟା ତାଙ୍କର ଆହୁରି ଟିକିଏ କରୁଣ ହୋଇ ଉଠିଲା । ସେ କହିଲେ : ନା ନା, ସେପରି କରନ୍ତୁ ନାହିଁ ମିଷ୍ଟର ମହାପାତ୍ର । ମୋ ପାଇଁ କିଏ ମନରେ କଷ୍ଟ ପାଉ ଏହା ମୁଁ ଚାହେ ନାହିଁ । ଏକେତ ଚଉଧୁରୀ ସାହେବଙ୍କ ମୃତ୍ୟୁରେ ବେଗମ ବିଚାରୀ ଆଘାତ ପାଇଛି । ତା'ପରେ ହେଲେନ୍‌କୁ ତା' ପାଖରୁ ଅନ୍ତର କରି ନେଇଗଲେ ଯେ ଆହୁରି କଷ୍ଟ ପାଇବ । ହେଲେନର ମା' ଯେତେହେଲେ ସ୍ତ୍ରୀ ଲୋକ । ସେମାନେ ନିଜ ସ୍ୱାର୍ଥ କଥା ଭାବିବା ଛଡ଼ା ଅନ୍ୟ କାହାରି କଥା ଚିନ୍ତା କରିବାକୁ ବେଳ ପାଆନ୍ତି ନାହିଁ । ମୁଁ ତାକୁ ଏଣୁ ତେଣୁ କହି ବୁଝେଇ ଦେବି । ଆପଣ ଥାଆନ୍ତୁ, ମୁଁ ଆସୁଛି । ହେଲେନକୁ ଖାଲି କହିଦେବେ, ମୁଁ ଆସିଥିଲି ।

ବ୍ରିଜ୍‌ଲାଲ ଏତକ କହି ସାରି ଘରୁ ଦ୍ରୁତ ଗତିରେ ଛୁଟି ପଳାଇଲେ ।

କିନ୍ତୁ କାହିଁକି ?

ବ୍ରିଜ୍‌ଲାଲ ହେଲେନ୍ ସହିତ ଦେଖା ନକରି ଛୁଟି ପଳାଇଗଲେ କାହିଁକି ?

ସତ୍ୟବ୍ରତ ଠିଆ ହେଲେ । ବଡ଼ ପାଟିରେ ରଘୁକୁ ଡାକିଲେ । ରଘୁ ଉପରୁ ଆସି ଠିଆ ହେଲା ସାମ୍ନାରେ ।

: ସଦାଶିବ ବାବୁ କେଉଁଠି ଅଛନ୍ତି ?

: ସେ ବର୍ତ୍ତମାନ ଛାତ ଉପରକୁ ଗଲେ । ରଘୁ କହିଲା ।

: ହୁଁ, ଆମେ ଯେ ତଳେ କଥାବାର୍ତ୍ତା ହେଉଥିଲୁ, ସେକଥା ସେ କିଛି ଜାଣନ୍ତି ?

: ହଁ, ମୋତେ ପଚାରୁଥିଲେ, ମୁଁ କହିଲି ।

: ତମେ କ'ଣ କହିଲ ?

: ମୁଁ କହିଲି ଆପଣ ସମସ୍ତଙ୍କୁ ଜେରା କରୁଛନ୍ତି ।

: ସଦାଶିବ ବାବୁ କ'ଣ କହିଲେ ?

: କିଛି କହିଲେ ନାହିଁ । ଟିକିଏ ଏପାଖ ସେପାଖ ହେଲେ । ଏ ଘର, ସେ ଘର ହୋଇ ବର୍ତ୍ତମାନ ଛାତକୁ ଯାଇଛନ୍ତି ।

ସତ୍ୟବ୍ରତ କହିଲେ : ତମେ ଏଇଠି ବସିଥାଅ ରଘୁ । ମୁଁ ଟିକିଏ ସଦାଶିବ ବାବୁଙ୍କ ସହିତ କଥାବାର୍ତ୍ତା କରି ଆସେ ।

ତା'ପରେ ଧୀରେ ଧୀରେ ଛାତ ଉପରକୁ ଉଠି ଗଲେ ।

ସଦାଶିବ ବାବୁ ଛାତ ଉପରେ ଏକ ଧ୍ୟାନରେ କାହାକୁ ଚାହିଁ ଠିଆ ହୋଇଥିଲେ । ସତ୍ୟବ୍ରତ ପଛଆଡୁ ଯାଇ କହିଲେ : କ୍ଷମା କରିବେ ସଦାଶିବ ବାବୁ, ମୁଁ ଟିକିଏ ଆପଣଙ୍କୁ ବିରକ୍ତ କରିବାକୁ ଆସିଲି ।

ସଦାଶିବ ପଛକୁ ଚାହିଁ ହଠାତ୍ ଚମକି ଉଠି କହିଲେ : ରଘୁଆ ଆପଣଙ୍କୁ କିଛି କହି ନାହିଁ ?

: କୋଉ କଥା ? ସତ୍ୟବ୍ରତଙ୍କ ସ୍ୱର ଶାନ୍ତ ଓ ଗମ୍ଭୀର ।

: କାଲି ରାତିରେ ମୁଁ ଅନେକ ଖୋଜା ଖୋଜି କରିଥିଲି । ଭାବିଥିଲି ଆପଣମାନଙ୍କୁ କିଛି ସାହାଯ୍ୟ କରି ପାରିବି । କିନ୍ତୁ ବ୍ୟର୍ଥ ହୋଇଛି । ସଦାଶିବ ବାବୁଙ୍କ କଣ୍ଠରେ ହତାଶା ଫୁଟି ଉଠିଥିଲା ।

: କ'ଣ ଆପଣ କାଲି ରାତିରେ ଖୋଜୁଥିଲେ ?

: ଛୁରୀ ।

: ଛୁରୀ ? କାହା ଛୁରୀ ?

: ହତ୍ୟାକାରୀର । ମାନେ ପିଇସାଙ୍କ ହତ୍ୟାକାରୀର ଛୁରୀଟା ମୁଁ ଖୋଜୁଥିଲି । ସେ ତ ନିଶ୍ଚୟ ଏହି ଘରଟା ଭିତରେ ଛୁରୀଟାକୁ କେଉଁଠି ଲୁଚାଇ ରଖି ଯାଇଥିବ । ଛୁରୀଟା ଯଦି ମିଳିଯାଏ ତା'ହେଲେ ଆପଣଙ୍କର ସମସ୍ୟା ଅନେକାଂଶରେ ସମାଧାନ ହୋଇ ପାରିବ । କାରଣ ଛୁରୀ ବେଣ୍ଟରୁ ଆପଣ ହତ୍ୟାକାରୀର ଫିଙ୍ଗର ପ୍ରିଣ୍ଟ୍ ପାଇଯିବେ । ତାପରେ ହତ୍ୟାକାରୀକୁ ଧରିବାର ପଥ ଅତି ସହଜ ହୋଇଯିବ । ଆପଣ ଯାହା ଭାବନ୍ତୁ ମିଷ୍ଟର ମହାପାତ୍ର ମୁଁ କିନ୍ତୁ ସେଇ ଛୁରୀଟିକୁ ଏହି କୋଠା ଭିତରୁ ନିଶ୍ଚୟ ଖୋଜି ବାହାର କରିବି ।

: ଆପଣଙ୍କୁ ଅଶେଷ ଧନ୍ୟବାଦ । ଆପଣ ଯେ ରାତି ରାତି ଅନିଦ୍ରା ହୋଇ ପିଇସାଙ୍କର ହତ୍ୟାକାରୀକୁ ଧରିବାପାଇଁ ଲାଗି ପଡ଼ିଛନ୍ତି, ବାସ୍ତବିକ୍ ଆପଣଙ୍କୁ ପ୍ରଶଂସା ନକରି ରହି ହେଉ ନାହିଁ । ବେଗମ ଚଉଧୁରୀ ଆପଣଙ୍କ ନିକଟରେ ନିଶ୍ଚୟ ଚିର ଜୀବନ କୃତଜ୍ଞ ରହିବେ ।

ସଦାଶିବ ବାବୁ କହିଲେ : ବେଗମ ପାଇଁ ମୁଁ ମୋଟେ ଭାବୁ ନାହିଁ । ସେ ସଂସାରକୁ ଆସିଛି ଯେତେବେଳେ ଦିନେ ନା ଦିନେ ତା'ର ପିତୃ ବିୟୋଗ ଘଟି ଥାଆନ୍ତା । ମୁଁ କେବଳ ଭାବୁଛି ହତ୍ୟାକାରୀର ଦୁଃସାହସ କଥା ।

ସତ୍ୟବ୍ରତ କହିଲେ : ହତ୍ୟାକାରୀମାନେ ସବୁଦିନେ ଓ ସବୁ ଯୁଗରେ ଦୁଃସାହସୀ ହୋଇ ଥାଆନ୍ତି । ତେଣୁ ଆପଣ ହତ୍ୟାକାରୀ ସମ୍ବନ୍ଧରେ ଦୃଷ୍ଟିଭଙ୍ଗୀ ବଦଳାଇଲେ ଭଲ ହୁଅନ୍ତା । ରମଣୀ ରଞ୍ଜନ ବାବୁଙ୍କ ସହିତ ଆପଣଙ୍କର କେବେ ଦେଖା ହୋଇଥିଲା ?

: ସେଇଦିନ, ଯେଉଁଦିନ ତାଙ୍କର ମୃତ୍ୟୁ ଘଟିଲା ସେଇଦିନ ମୁଁ ଆସିଥିଲି । ଅବଶ୍ୟ ସେ ମୋତେ ଡାକି ପଠାଇଥିଲେ । ସକାଳ ନଅଟା ଦଶଟା ବେଳେ ଆସିଥିଲି ।

: ତା'ପରେ ?

: ତା'ପରେ ଆଉ କ'ଣ ! ଦେଖା କଲି । ପିଇସା ମୋତେ ଘରର କୁଶଳ ସମାଚାର ପଚାରିଲେ । ପାଖକୁ ଡାକି କହିଲେ, କିଛିଦିନ ପାଇଁ ସେ ବାହାରକୁ ଯିବେ ଭାବିଛନ୍ତି । ସେତେବେଳେ ମୁଁ ଯଦି ଆସି ଏ ଘରେ ରହନ୍ତି, ତା'ହେଲେ ସେ ନିଶ୍ଚିନ୍ତରେ ବାହାରେ ରହି ପାରନ୍ତେ ।

: ଆଚ୍ଛା ! ରମଣୀ ରଞ୍ଜନ ବାବୁ ବାହାରକୁ ଯିବା କଥା ଆପଣଙ୍କୁ କହୁଥିଲେ ? କେବେ ସେ ଯାଇ ଥାଆନ୍ତେ ?

: କିଛି ଠିକ୍ କରି ନଥିଲେ । ତେବେ ସେହିପରି ଗୋଟାଏ ଇଚ୍ଛା ତାଙ୍କର ଥିଲା । ଭଗବାନ କିନ୍ତୁ ପିଇସାଙ୍କର ଇଚ୍ଛା ପୂରଣ କରି ପାରିଲେ ନାହିଁ ।

: ହୁଁ, ଆପଣ କ'ଣ ଉତ୍ତର ଦେଲେ ?

: ମୁଁ କହିଥିଲି ଚିନ୍ତା କରି ଦେଖିବି ।

: ଆପଣ ଚିନ୍ତା କରିଥିଲେ ?

: ଆଉ ଚିନ୍ତା କରିବାର ଅବକାଶ ପାଇଲି କେଉଁଠୁ ? ତା'ପର ଦିନ ସଂଧ୍ୟାବେଳେ ଶୁଣିଲି ପିଇସାଙ୍କର ଅକାଳ ମୃତ୍ୟୁ ଘଟି ଯାଇଛି ।

: ତା'ପରେ ସିଧା ଆପଣ ଏଇଠିକି ଚାଲି ଆସିଲେ ।

: ଉପାୟ ନଥିଲା ଆଜ୍ଞା । ମୁଁ ନ ଆସିଥିଲେ ପିଇସାଙ୍କର ଭିଟାମାଟି ଉଚ୍ଛନ୍ନ ହୋଇ ଯାଇଥାନ୍ତା । ବେଗମର ଭବିଷ୍ୟତ ବି ଭଲ ହୋଇ ନଥାନ୍ତା ।

: ବର୍ତ୍ତମାନ ବି ବେଗମର ଭବିଷ୍ୟତ ସମ୍ବନ୍ଧରେ ଆପଣ ଭାବୁଛନ୍ତି ?

ସଦାଶିବ ବାବୁ ମୁହୂର୍ତ୍ତେ ଅଟକି ଯାଇ, ସତ୍ୟବ୍ରତ ମୁହଁକୁ ରୋଷ କଷାୟିତ ନୟନରେ ଚାହିଁ କହିଲେ : ଆପଣଙ୍କୁ ଉତ୍ତର ଦେବାର ଭାଷା ମୋର ନାହିଁ ମିଷ୍ଟର ମହାପାତ୍ର । ଆପଣ ଯଦି ଅନ୍ୟ କେହି ହୋଇ ଥାଆନ୍ତେ.. ତାହେଲେ...

ରଘୁ ଆସି ଖବର ଦେଲା, ପୋଲିସ୍ ଇନିସ୍‌ପେକ୍ଟର ଡାକୁଛନ୍ତି ।

ସତ୍ୟବ୍ରତ ସଦାଶିବ ବାବୁଙ୍କ ଆଡୁ ମୁହଁ ଫେରାଇ ତଳକୁ ଓହ୍ଲାଇ ଆସିଲେ । ଇନିସ୍‌ପେକ୍ଟର ସତ୍ୟବ୍ରତଙ୍କ ସହିତ ହାତ ମିଳାଇ କହିଲେ : କୁହନ୍ତୁ ମିଷ୍ଟର ମହାପାତ୍ର ।

: ବରଂ ଆପଣ କୁହନ୍ତୁ- ସତ୍ୟବ୍ରତ ଓଲଟା ପ୍ରଶ୍ନ କଲେ ।

ପୋଲିସ୍ ଇନିସ୍‌ପେକ୍ଟର ଅଳ୍ପ ଅଳ୍ପ ହସି କହିଲେ : ଜାନକୀର ମା' ଏତେଦିନ ପରେ ଆଜି ମୁହଁ ଖୋଲିଲା । କିନ୍ତୁ ତା'ର ଜମାନବନ୍ଦୀ ଆଦୌ ସ୍ପଷ୍ଟ ନୁହେଁ । ସେ ଯେ କ'ଣ କହୁଛି, କାହା କଥା କହୁଛି, ପରିଷ୍କାର ଭାବରେ ବୁଝିବାର କିଛି ଉପାୟ ନାହିଁ ।

ସତ୍ୟବ୍ରତ ଆଶ୍ଚର୍ଯ୍ୟ ହେଲା ପରି କହିଲେ : ଆପଣ କ'ଣ ଜାନକୀର ମା'କୁ ସେଇଦିନୁ ନେଇ ଲକ୍ ଅପ୍‌ରେ ରଖିଥିଲେ ?

: ଆଉ ଅନ୍ୟ ଉପାୟ କିଛି ନଥିଲା ।

: ବେଶ୍, ସେ ତ ଗଲା ଜାନକୀ ମା'ର କଥା । ଆପଣଙ୍କ କଥା କିଛି କୁହନ୍ତୁ ।

: ମୋ କଥା ? ମୁଁ ସଂପୂର୍ଣ୍ଣ ଅନ୍ଧକାରରେ । ଆଶା କରୁଥିଲି ଆପଣ ଏହା ଭିତରେ କିଛି ବାଟ ଆଗେଇଥିବେ ଏବଂ ମୁଁ ଆପଣଙ୍କ ଠାରୁ ସାହାଯ୍ୟ ପାଇବି ।

: ଏ କେସ୍‌ଟା ବଡ଼ ଜଟିଳ ମିଷ୍ଟର ଗାଙ୍ଗୁଲି । ମୁଁ ଆଜି ପର୍ଯ୍ୟନ୍ତ ଯେତେ ଗୁଡ଼ିଏ ଚରିତ୍ର ସହିତ ମିଳିଛି, ସବୁ ଚରିତ୍ରଗୁଡ଼ିକ ମୋତେ ଯେପରି ପରିହାସ କରିଛନ୍ତି । ଯାହାହେଉ ତଥାପି ମୁଁ ଚେଷ୍ଟା କରୁଛି । ସବୁଠାରୁ ଅସୁବିଧା ହେଉଛି ବେଗମ ଏହି ଘର ସମ୍ବନ୍ଧରେ କିଛି କହି ପାରୁ ନାହିଁ ।

ପୋଲିସ୍ ଇନିସ୍‌ପେକ୍ଟର ଉଠି ଠିଆହେଲେ । କହିଲେ : ମୁଁ ଆଜି ଖାସ୍ ଆପଣଙ୍କ ସହିତ ଦେଖା କରିବାକୁ ଆସିଥିଲି । ଯାହାହେଉ, ସତ୍ୟ ଦିନେ ନା ଦିନେ ଆତ୍ମପ୍ରକାଶ କରିବ ।

ପୋଲିସ୍ ଇନିସ୍‌ପେକ୍ଟର ଚାଲିଗଲେ ।

ସତ୍ୟବ୍ରତ ରଘୁଙ୍କୁ ଡାକି କହିଲେ : ତମ ଦିଦି କ'ଣ କରୁଛନ୍ତି ?

: ମୁଁ ଦେଖି ନାହିଁ । ତେବେ ଅଳ୍ପ ସମୟ ପୂର୍ବରୁ ସେ ହେଲେନ୍ ସହିତ ଗଳ୍ପ କରୁଥିଲେ ।

: ହେଲେନ୍ ଘରକୁ ଯିବା କଥା କିଛି କହୁ ନଥିଲା ?

: ମୁଁ ପଚାରି ନାହିଁ ।

ସତ୍ୟବ୍ରତ ଭୀଷଣ ଅନ୍ୟମନସ୍କ ହୋଇ ପଡ଼ିଥିଲେ । ଡ୍ରଇଂ ରୁମ୍‌ରୁ ବାହାରି ଯିବା ପାଇଁ ଉଦ୍ୟମ କରୁଥିଲେ ।

ଉପରୁ ସଦାଶିବ ବାବୁ ଡାକି କହିଲେ : ଆପଣଙ୍କର ଫୋନ୍ ଆସିଛି ।

ସତ୍ୟବ୍ରତ ପାଦର ଗତି ବଦଳାଇଲେ । ଉପରକୁ ଉଠିଲା ବେଳେ ଦେଖିଲେ, ବେଗମ ଗୋଟାଏ ଆରାମ ଚେଆର ଉପରେ ଶୋଇଛି, ହେଲେନ୍ କଣ୍ଢେଇ ଗୁଡ଼ାକ ଆଲମାରୀରେ ସଜାଇ ରଖୁଛି ।

ଟେଲିଫୋନ୍ ରିସିଭର୍ ଉଠାଇ କାନରେ ଦେଲେ ।

ଅପର ପ୍ରାନ୍ତରୁ ଜର୍ଜ ଟେଲିଫୋନ୍ କରିଥିଲେ । ସେ କହିଲେ : ରେବେକା ମୁଖାର୍ଜୀ ଆସି ମୋ ପାଖରେ ପହଞ୍ଚିଛି, ବଡ଼ ଅସୁବିଧାରେ ପକାଇଛି । ସେ କହୁଛି, ମିଷ୍ଟର ହାଜରାଙ୍କ ସନ୍ଧାନ ଖୁବ୍ ଶୀଘ୍ର ସେ ପାଇଯିବ । ସେ ସମ୍ବନ୍ଧରେ ସେ ନିଃସନ୍ଦେହ । ତେଣୁ ସେହି ଉପଲକ୍ଷ୍ୟରେ ଗୋଟାଏ ବିରାଟ ପାର୍ଟି ସେ ଦେବ । ସେଥିପାଇଁ ଗୋଟିଏ ଦିନ ପାଇଁ ଇଭନିଂ କ୍ଲବକୁ ସେ ରିଜର୍ଭ କରିବାକୁ ଚାହେ ।

: ବେଶ୍ ତ ଭଲ କଥା, ଆପଣଙ୍କର ସେଥିରେ ଅସୁବିଧା କ'ଣ ଅଛି ?

: ବହୁତ । ପ୍ରଥମ ତ ଇଭନିଂ କ୍ଲବର କୌଣସି ଅଂଶ ପାର୍ଟି ବା ମ୍ୟାରେଜ୍ ଉପଲକ୍ଷେ ଆଜି ପର୍ଯ୍ୟନ୍ତ କାହାରିକୁ ଭଡ଼ା ଦିଆ ହୋଇ ନାହିଁ । ଦ୍ୱିତୀୟରେ ରେବେକାର ଏହି ପାଗଳାମିରେ ସହଯୋଗ କରିବା ମୋ ପକ୍ଷରେ ତ ସମ୍ଭବ ନୁହେଁ । ସେ କିନ୍ତୁ ଜିଦ୍ କରି ବସିଛି ।

: ସେଥିପାଇଁ ମୁଁ କ'ଣ କରିବି ?

: ଆପଣ ଟିକିଏ ବୁଝେଇ କୁହନ୍ତୁ ।

: ମୁଁ ବୁଝେଇ କହିବି ? ସତ୍ୟବ୍ରତ ମହାପାତ୍ର ହୋ ହୋ ହୋଇ ହସି ଉଠିଲେ ।

: ହଁ ଆପଣଙ୍କ କଥା ସେ ଶୁଣିବ । ସେ ଆପଣଙ୍କ କଥା ଉପରେ ବିଶ୍ୱାସ କରି ଏହି ପାର୍ଟିର ଆୟୋଜନ କରିବାକୁ ବସିଛି ।

: ମୁଁ କ'ଣ ତାକୁ ପାର୍ଟି ଦେବା ପାଇଁ ବାରଣ କରିବି ?

: ବାରଣ ନକଲେ ବି ସମୟ ଟିକିଏ ଗଡ଼େଇ ଦେବାକୁ କୁହନ୍ତୁ । ତା' ନହେଲେ ଉପାୟ ନାହିଁ ।

: କିନ୍ତୁ ଆପଣମାନେ ଗୋଟିଏ ବେଦନା ବିଧୁରା ନାରୀର ମନ କଥା ବୁଝୁ ନାହାନ୍ତି କାହିଁକି ?

: ଆମେ ଏତେଦିନ ଯାହା ପାରି ନାହୁଁ, ଆପଣ ତ ସେହି ଅସାଧ ସାଧନ କରିବାକୁ ବସିଛନ୍ତି । ଆପଣଙ୍କ ଜୟରେ ଆମେ ସମସ୍ତେ କଣ୍ଠ ମିଳାଇ ଜୟଧ୍ୱନି ଦେବୁ ।

ସତ୍ୟବ୍ରତ କହିଲେ : ମୁଁ ଆଜି ସମ୍ଭବ ହେଲେ କ୍ଲବକୁ ଯିବି । ଆପଣଙ୍କ ସହିତ କେତୋଟି ଗୋପନ ପରାମର୍ଶ ଅଛି ।

: ଆସିବେ । କିନ୍ତୁ ବର୍ତ୍ତମାନ ମୁଁ ରେବେକାକୁ କ'ଣ କହିବି ?

: ମୋରି ପରି ଆଶା ଦିଅନ୍ତୁ ।

: ମାନେ ?

ସତ୍ୟବ୍ରତ ହସି ହସି କହିଲେ : ଗଲେ ମୁଁ ଆପଣଙ୍କୁ ମାନେ ବୁଝାଇ ଦେବି । ମଣିଷର ମନସ୍ତତ୍ତ୍ୱ ବୁଝିବାକୁ ଆପଣମାନେ ମୋଟେ ଚେଷ୍ଟା କରିଲେ ନାହିଁ ।

ରିସିଭରଟା ରଖିଦେଲେ !

ବାହାରେ ସଦାଶିବ ବାବୁ ଠିଆ ହୋଇଥିଲେ ।

ସତ୍ୟବ୍ରତଙ୍କୁ ଦେଖି ହସିଲେ । କହିଲେ : ଆପଣ କ'ଣ ବର୍ତ୍ତମାନ କୁଆଡ଼େ ବାହାରିବେ ?

: କାହିଁକି ?

: ଆପଣଙ୍କ ପାଖରେ ଟିକିଏ କାମ ଥିଲା ।

: କ'ଣ କୁହନ୍ତୁ ।

ସଦାଶିବ ବାବୁ ଇଙ୍ଗିତରେ ସତ୍ୟବ୍ରତଙ୍କୁ ତାଙ୍କ ପଛେ ପଛେ ଚାଲିବାକୁ କହିଲେ ।

ଯେଉଁ ଘରେ ରମଣୀ ରଞ୍ଜନଙ୍କର ମୃତ ଦେହ ମିଳିଥିଲା, ସଦାଶିବ ବାବୁ ସେଇ ଘରେ ପଶିଯାଇ ଭିତରକୁ ଡାକିଲେ ।

ସତ୍ୟବ୍ରତ ଭିତରେ ପ୍ରବେଶ କରି ଦେଖିଲେ, ପୁରୁଣା ଡାଇନିଂ ଟେବୁଲଟାର ଉପର ପଟାଟା ସଦାଶିବ ବାବୁ ଏକା ଝିଙ୍କାରେ ଉଠାଇ ଦେଲେ ।

ତା' ଭିତରେ ଡ୍ରୟାର ପରି ଗୋଟାଏ ଗହିରିଆ ସ୍ଥାନ ଅଛି । ସେଇ ସ୍ଥାନଟି ଭିତରେ ଗୋଟାଏ ଲମ୍ୱା ଛୁରୀ ।

ସତ୍ୟବ୍ରତ ହଠାତ୍ ଛୁରୀଟାକୁ ଉଠାଇ ଆଣିବାକୁ ଯାଉଥିଲେ ।

ସଦାଶିବ ବାବୁ ସତ୍ୟବ୍ରତଙ୍କ ହାତଟା ଧରି ପକାଇ ପକେଟରୁ ଗୋଟାଏ ରୁମାଲ ବାହାର କରି ଦେଲେ । ଗର୍ବିତ ଚାହାଣିରେ ଥରେ ଚାରି ଆଡ଼କୁ ଅନାଇ କହିଲେ : ଦେଖିଲେ ମିଷ୍ଟର ମହାପାତ୍ର । ଅଳ୍ପ ସମୟ ପୂର୍ବରୁ ମୁଁ ଆପଣଙ୍କୁ କହିଥିଲି ନା ଛୁରୀଟା ନିଶ୍ଚୟ ଏଇ ଘର ଭିତରେ କେଉଁଠି ଅଛି !

ସତ୍ୟବ୍ରତ ସଦାଶିବ ବାବୁଙ୍କ ହାତରୁ ରୁମାଲଟି ନେଇ ହାତରେ ଗୁଡ଼ାଇଲେ । ଛୁରୀଟି ଉଠାଇ ଆଣିଲେ ।

କେଉଁ କାଳର କଳଙ୍କି ଧରା ଗୋଟାଏ ଛୁରୀ ।

ମନେ ହେଉଥିଲା ସେଇଟା ରୁଟିକଟା ଛୁରୀ ପରି ।

ସତ୍ୟବ୍ରତ ଭଲ ଭାବରେ ଛୁରୀଟିକୁ ପରୀକ୍ଷା କରି ଦେଖି ସାରି କହିଲେ : ଏ ଛୁରୀ ସେ ଛୁରୀ ନୁହେଁ ।

: ମାନେ ।

ସଦାଶିବ ବାବୁଙ୍କ ମୁହଁରୁ ଯେପରି ସମସ୍ତ ଉତ୍ସାହ ନିଭିଗଲା ।

: ମାନେ ଏ ଛୁରୀରେ ଚଉଧୁରୀ ସାହେବଙ୍କୁ ଖୁଣ୍ କରା ହୋଇ ନାହିଁ । ତେବେ ଏଇଟା ରଖି ଥାଆନ୍ତୁ, ପୋଲିସ୍‌କୁ ଦେଇ ଦେବେ ।

ସତ୍ୟବ୍ରତ ରୁମାଲ ସହ ଛୁରୀଟା ସଦାଶିବ ବାବୁଙ୍କ ହାତକୁ ବଢ଼ାଇ ଦେଇ ଘରୁ ବାହାରି ଆସିଲେ ।

: ବେଗମ ଚଉଧୁରୀ ସେହିପରି ଆରାମ ଚେଆର ଉପରେ ବସି ଥିଲା ।

ଦୁଇ ତିନିଟା ଖେଳଣା ସାମ୍ନା ଟେବୁଲ ଉପରେ ଥୁଆ ହୋଇଥିଲା ।

କିନ୍ତୁ ହେଲେନ୍ ?

ସତ୍ୟବ୍ରତ ପାଦେ ପାଦେ କରି ଘର ଭିତରକୁ ପଶିଗଲେ ।

ବେଗମ ଚଉଧୁରୀ ବୁଲି ଅନେଇଲା ପଛକୁ ।

: ଆସନ୍ତୁ । ବେଗମ ଅଳ୍ପ ହସିବାକୁ ଚେଷ୍ଟା କଲା ।

: ହେଲେନ୍ ? ସତ୍ୟବ୍ରତ ପଚାରିଲେ ।

: ତ' ବାପା ଆସିଛନ୍ତି, ତଳକୁ ଯାଇଛି ।

: ତା' ବାପା ଦିନରେ କେତେଥର ଆସନ୍ତି ?

: ଆସନ୍ତି ଦି'ଚାରିଥର, କିନ୍ତୁ...

ସତ୍ୟବ୍ରତଙ୍କର ହଠାତ୍ ଆଖି ପଡ଼ିଲା ଆଲୁଆଲରେ ଥୁଆ ହୋଇଥିବା ଗୋଟିଏ କଣ୍ଢେଇ ଉପରେ ।

ଆରେ, ଏଇଟା ଯେ ତାଙ୍କର ପରିଚିତ ।

ଏଇଟାକୁ ତ ସେ ଦେଖିଥିଲେ ମାର୍ଗାରେଟାର ସଂଗ୍ରହ- ଶାଳାରେ ।

ସତ୍ୟବ୍ରତ ଆଗେଇ ଗଲେ କଣ୍ଢେଇଟା ପାଖକୁ ।

ହାତରେ ଉଠାଇ ଆଣିଲେ ବାହାରକୁ ।

ହଁ, ସେହିପରି, ମାର୍ଗାରେଟାର କଣ୍ଢେଇଟା ଏହାଠାରୁ ଟିକିଏ ବଡ଼ ମନେ ହେଉଥିଲା ।

ସତ୍ୟବ୍ରତ ପୁଣି କଣ୍ଢେଇଟାକୁ ଯଥା ସ୍ଥାନରେ ରଖି ଦେଇ କହିଲେ : ହେଲେନ୍ ଆପଣଙ୍କର ପିଲାଦିନର ବନ୍ଧୁ, ନା ?

: ହଁ, କିନ୍ତୁ କାହିଁକି କୁହନ୍ତୁ ତ ?

ସତ୍ୟବ୍ରତ କ'ଣ କହିବାକୁ ଯାଉଥିଲେ । ବାହାରେ କାହାର ପାଦଶବ୍ଦ ଶୁଣି ଚାହିଁ ଦେଖିଲେ, ହେଲେନ୍ ଦ୍ରୁତ ଗତିରେ ଆଗେଇ ଆସୁଛି ।

ସତ୍ୟବ୍ରତଙ୍କୁ ଦେଖି ହଠାତ୍ ଠିଆ ହୋଇଗଲା ।

ହାତ ଯୋଡ଼ି ନମସ୍କାର କଲା ।

ସତ୍ୟବ୍ରତ ପ୍ରତି ନମସ୍କାର କରି ଘରୁ ବାହାରି ଗଲେ ।

\+ \+ \+

ଇଭିନିଂ କ୍ଲବ୍‌ରେ ପ୍ରଥମେ ଦେଖା ହେଲା ମାର୍ଗାରେଟା ସହିତ ।

ହସି ହସି ସ୍ୱାଗତ ଜଣାଇଲା ମାର୍ଗାରେଟା । କହିଲା : କ୍ୟାପ୍‌ଟେନ୍ ମିରାଜକର ଆଜି ଆସିଥିଲେ । ତାଙ୍କୁ ମୁଁ ଆପଣଙ୍କ କଥା କହିଛି । ସେ ଆପଣଙ୍କ ସହିତ ପରିଚିତ ହେବାକୁ ଖୁବ୍ ଆଗ୍ରହୀ ।

: ସତେ ? ମୋର ସୌଭାଗ୍ୟ ତା' ହେଲେ । ସତ୍ୟବ୍ରତ ହସି ହସି କହିଲେ ।

ମାର୍ଗାରେଟା ପୁଣି କହିଲା : ଆପଣ କୁଆଡ଼େ ମିସ୍ ମୁଖାର୍ଜୀଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ମିଷ୍ଟର ହାଜରାଙ୍କୁ ଖୋଜି ବାହାର କରି ଦେବେ ।

: ହଁ, ଦେଇଛି ।

: ପାରିବେ ?

: ଏଥିରେ ନ ପାରିବାର କ'ଣ ଅଛି ?

: ବର୍ଷ ବର୍ଷ ଧରି ଅନ୍ୟମାନେ ଯାହା ନପାରିଲେ ଆପଣ ତାହା ପାରିବେ ?

: ଚେଷ୍ଟା କରିବାରେ କ୍ଷତି କ'ଣ ? ଗୋଟାଏ ଅଶାନ୍ତ ପ୍ରାଣରେ ଯଦି ଶାନ୍ତି ଫେରେଇ ଆଣିବା ପାଇଁ ଟିକିଏ ଚେଷ୍ଟା କରାହୁଏ, ତା'ହେଲେ ହୁଏତ ଫଳ କିଛି ଫଳିପାରେ ।

: ଆପଣ ଯାଆନ୍ତୁ । ମିସ୍ ମୁଖାର୍ଜୀ ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି ।

: ସତେ ? ସେ ଆସି ସାରିଲେଣି ?

: ଅନେକବେଳୁ । ପ୍ରାୟ ଦୁଇ/ତିନି ଘଣ୍ଟା ହେବ ସେ ଆପଣଙ୍କ ପାଇଁ ଅପେକ୍ଷା କରି ବସିଛନ୍ତି ।

ସତ୍ୟବ୍ରତ କହିଲେ : ଏଥର ଆପଣଙ୍କ ଖବର କିଛି କୁହନ୍ତୁ । ସଂଗ୍ରହଶାଳାରେ ଆଉ କିଛି ନୂତନର ଆବିର୍ଭାବ ହେଲା ?

: ନା, ତେବେ ଦିନେ ଦୁଇଦିନ ଭିତରେ ହୁଏତ ହେବ ।

: ମୁଁ ତା'ହେଲେ ଆସୁଛି ଟିକିଏ, ରେବେକା ମୁଖାର୍ଜୀଙ୍କୁ କେଉଁଠୁ ପାଇବି ?

: ସେ ଜର୍ଜଙ୍କ ଅଫିସ୍ ଘରେ ଥିବେ । ତା' ଛଡ଼ା ଆପଣ ଯାଆନ୍ତୁ ସେ ଯେଉଁଠି ଥିଲେ ବି ଆପଣ ତାଙ୍କୁ ପାଇବେ ।

ସତ୍ୟବ୍ରତ କହିଲେ : ଧନ୍ୟବାଦ । ପୁଣି ଦେଖା ହେବ ।

ସେଠାରୁ ଉଠି ଭିତରକୁ ଚାଲିଗଲେ ।

ସତ୍ୟବ୍ରତ ଲକ୍ଷ୍ୟ କଲେ ସେ ଭିତରକୁ ପଶିବା ମାତ୍ରକେ ଲୋକମାନେ ତାଙ୍କରି ଆଡ଼କୁ ଅନାଇ ରହିଲେ ।

ଘଟଣା କ'ଣ ?

ସମସ୍ତେ ଯେପରି ଏକ ଧ୍ୟାନରେ ଚାହିଁଛନ୍ତି ସତ୍ୟବ୍ରତଙ୍କ ଆଡ଼କୁ ।

କ୍ଷିପ୍ର ଗତିରେ ଆଗେଇ ଯିବା ସମ୍ଭବ ହେଲା ନାହିଁ ।

ତଥାପି ସତ୍ୟବ୍ରତ ସମସ୍ତଙ୍କ ଚାହାଣି ଏଡ଼େଇ ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ପହଞ୍ଚିଲେ ।

ରେବେକା ମୁଖାର୍ଜୀ ଉଠି ଠିଆ ହେଲେ ଆରାମ ଚେଆର ଛାଡ଼ି ।

ସତ୍ୟବ୍ରତ ହଠାତ୍ ଚିହ୍ନି ପାରିଲେ ନାହିଁ ରେବେକା ମୁଖାର୍ଜୀଙ୍କୁ ।

ଦିନ ଦୁଇଟାରେ ଏତେ ପରିବର୍ତ୍ତନ ଘଟିଛି ଭଦ୍ରମହିଳାଙ୍କର ।

ବୟସ ଯେପରି କମି ଯାଇଛି ଦଶବର୍ଷ ।

ଚଞ୍ଚଳ ଛଳ ଛଳ ହୋଇ ଉଠିଛି ରେବେକା । ଜୀବନର ନୂତନ ସ୍ୱାଦ ପାଇବା ପାଇଁ ରେବେକା ଯେପରି ଉଦ୍‌ଗ୍ରୀବ । ବସନ୍ତର ସ୍ପର୍ଶ ପାଇଛି ରେବେକା ।

ସତ୍ୟବ୍ରତଙ୍କୁ ଦେଖିବା କ୍ଷଣି ଧାଇଁ ଆସି ଦୁଇ ହାତରେ ଜଡ଼େଇ ଧରିଲା । କହିଲା : ଆପଣ ମୋତେ ନବ ଜୀବନ ଦାନ କରିଛନ୍ତି ମିଷ୍ଟର ମହାପାତ୍ର । ମୁଁ ଆପଣଙ୍କ ପାଖରେ କୃତଜ୍ଞ । ମୋର ବହୁ ବନ୍ଧୁ ବାନ୍ଧବଙ୍କ ପାଖକୁ ଚିଠି ଲେଖି ସାରିଲିଣି । ଯେଉଁମାନେ ଦିନେ ମୋତେ ପରିହାସ କରୁଥିଲେ, ସେମାନେ ସମସ୍ତେ ଆଜି ମିଷ୍ଟର ହାଜରାଙ୍କର ସମ୍ବାଦ ପାଇ ଚୁପ୍ ହୋଇ ଯିବେ । ପ୍ରକୃତରେ ଆପଣ ଆଜି ମୋତେ ନବ ଜୀବନ ଦାନ କରିଛନ୍ତି ।

ସତ୍ୟବ୍ରତ ରେବେକା ମୁଖାର୍ଜୀର ଏପରି ଆଶା ଓ ଆଗ୍ରହ ଦେଖି ମନେ ମନେ ଚିନ୍ତିତ ହୋଇ ପଡ଼ିଲେ ।

ସେ କ'ଣ ପ୍ରକୃତରେ ମିଷ୍ଟର ହାଜରାଙ୍କୁ ଖୋଜି ଆଣି ଦେଇ ପାରିବେ ?

ଯଦି ନ ପାରନ୍ତି ତା'ହେଲେ ରେବେକା ମୁଖାର୍ଜୀ ଏହି ଆଶା ଭଙ୍ଗର ଧକ୍କା କ'ଣ ସମ୍ଭାଳି ନେଇ ପାରିବ ?

ତଥାପି ସେ କହିଲେ : ଆପଣଙ୍କୁ ଟିକିଏ ଧୈର୍ଯ୍ୟ ସହକାରେ ଅପେକ୍ଷା କରିବାକୁ ପଡ଼ିବ ମିସ୍ ମୁଖାର୍ଜୀ । କାରଣ ମିଷ୍ଟର ହାଜରା ତ ଆଉ ସ୍ୱାଭାବିକ ମଣିଷ ହୋଇ ନାହାନ୍ତି । ତେଣୁ ତାଙ୍କୁ ସହଜରେ ଖୋଜି ପାଇବା ସମ୍ଭବ ହେବ ନାହିଁ । ଯାହାହେଉ, ପୃଥିବୀର ଯେଉଁ କୋଣରେ ସେ ଥାଆନ୍ତୁ ନା କାହିଁକି ମୁଁ ନିଶ୍ଚୟ ତାଙ୍କୁ ଧରି ଆଣିବି ।

ରେବେକା ମୁଖାର୍ଜୀ ଆନନ୍ଦରେ ଆତ୍ମହରା ହୋଇ ଉଠିଲା । କହିଲା : ମୁଁ କେବଳ ସେତିକି ପ୍ରତିଶ୍ରୁତି ଚାହେଁ ମିଷ୍ଟର ମହାପାତ୍ର । ଆପଣଙ୍କ ପରି ଆଜିଯାଏ କେହି ମୋତେ ଏପରି ନିର୍ଭର ପ୍ରତିଶ୍ରୁତି ଦେଇ ନଥିଲେ । ବାସ୍ତବିକ୍ ଆପଣଙ୍କର ତୁଳନା ନାହିଁ ।

: ଆପଣ କେବଳ ମୋର ପ୍ରଶଂସାରେ ଶତ ମୁଖ ହେଲେ ଚଳିବ ନାହିଁ ମିସ୍ ମୁଖାର୍ଜୀ । ମିଷ୍ଟର ହାଜରାଙ୍କ ପାଇଁ ଆପଣଙ୍କୁ ଆହୁରି ଅନେକ କାମ କରିବାକୁ ହେବ ।

: ମୋତେ କୁହନ୍ତୁ ମିଷ୍ଟର ମହାପାତ୍ର । ମିଷ୍ଟର ହାଜରାଙ୍କ ପାଇଁ ମୁଁ ନର୍କକୁ ଯିବାକୁ ମଧ୍ୟ ପ୍ରସ୍ତୁତ ଅଛି । ସେପରି ଲୋକ ପୃଥିବୀରେ ଆଜିକାଲି ବିରଳ । ବହୁତ ଲୋକ ମୋ ଜୀବନରେ ଆସିଛନ୍ତି, ଯାଇଛନ୍ତି, କିନ୍ତୁ ମିଷ୍ଟର ହାଜରାଙ୍କୁ ମୁଁ ସେମାନଙ୍କ ମଧ୍ୟରୁ ଖୋଜି ପାଇ ନାହିଁ ।

: ଆପଣ ପାଇବେ ନାହିଁ ମିସ୍ ମୁଖାର୍ଜୀ । ମନର ମଣିଷ ପୃଥିବୀରେ ଅନେକ ନଥାନ୍ତି । ତେଣୁ ମିଷ୍ଟର ହାଜରାଙ୍କ ପରି ଅନ୍ୟ ଜଣେ ଲୋକ ପୃଥିବୀରେ ବିରଳ ।

: ମୋର ତ ଏତେ ଦିନର ଅଭିଜ୍ଞତା ସେଇଆ । ସେ ଯାହା ହେଉ, ମିଷ୍ଟର ହାଜରାଙ୍କ ଉଦ୍ଦେଶ୍ୟରେ ମୁଁ ଗୋଟିଏ ପାର୍ଟିର ଆୟୋଜନ କରୁଛି । ମୋର ସମସ୍ତ ବନ୍ଧୁ ବାନ୍ଧବମାନଙ୍କୁ ନିମନ୍ତ୍ରଣ କରିବି ସେହି ପାର୍ଟିକୁ ଏବଂ ସେଇଠି ଘୋଷଣା କରି କହିବି ଯେ, ସମସ୍ତଙ୍କର ଧାରଣା ଭ୍ରାନ୍ତ । ମିଷ୍ଟର ହାଜରା ବଞ୍ଚିଛନ୍ତି ଏବଂ ମୋ ପାଇଁ ଅପେକ୍ଷା କରିଛନ୍ତି । ସେ ଆସିବେ, ଆଜି ନହେଲେ ବି କାଲି ଆସି ପହଞ୍ଚିବେ ମୋ ପାଖରେ ।

ସତ୍ୟବ୍ରତ ଦେଖିଲେ, ରେବେକା ମୁଖାର୍ଜୀଙ୍କ ମୁହଁରେ ଆଶାର ଆଲୋକ ଫୁଟି ଉଠିଛି । ଜୀବନର ଜୟଗାନ କରିବା ପାଇଁ ସେ ଯେପରି ଉଦ୍‌ଗ୍ରୀବ ହୋଇ ଉଠିଛନ୍ତି । ଶାନ୍ତ ସ୍ୱରରେ କହିଲେ, : ଆପଣ ଟିକିଏ ଅପେକ୍ଷା କରନ୍ତୁ ମିସ୍ ମୁଖାର୍ଜୀ । କାରଣ ଦୁନିଆକୁ ଯେତେ ସରଳ ଆପଣ ମନେ କରିଛନ୍ତି, ଦୁନିଆର ଲୋକେ ସେତେ ସାଧୁ ନୁହନ୍ତି । ଦୁଷ୍ଟ ଲୋକ ଅନେକ ଅଛନ୍ତି । ଶତ୍ରୁ ବି ଆପଣଙ୍କର ଅନେକ ବାହାରି ପଡ଼ିବେ । ଧୀରେ ଧୀରେ ଗୋପନରେ ଆମକୁ ସମସ୍ତ କାମ ହାସଲ କରିବାକୁ ପଡ଼ିବ । ତେଣୁ ଆପଣ ଅପେକ୍ଷା କରନ୍ତୁ । ଆମେ ଟିକିଏ ଆଗେଇ ପାରିଲେ ତା'ପରେ ଆନନ୍ଦ କରିବା ।

ସତ୍ୟବ୍ରତ ଲକ୍ଷ୍ୟ କଲେ ରେବେକାର ହସିଲା ମୁହଁରେ ହଠାତ୍ ଯେପରି ଦୁଃଖର ଛାୟା ଘୋଟି ଆସିଲା ।

ସେତିକିବେଳେ ମିଷ୍ଟର ଜର୍ଜ ପ୍ରବେଶ କଲେ ସେଠାରେ ।

ରେବେକା ଆଡ଼େ ଚାହିଁ କହିଲେ : କେବେକୁ ଦିନ ଧାର୍ଯ୍ୟ କଲେ ମିସ୍ ମୁଖାର୍ଜୀ ?

: ନା, ଆପାତତଃ ଆମକୁ ଅପେକ୍ଷା କରିବାକୁ ହେବ । ପରେ ମୁଁ ଆପଣଙ୍କୁ ନିର୍ଦ୍ଦିଷ୍ଟ ତାରିଖ ଜଣାଇବି ।

ମିଷ୍ଟର ଜର୍ଜ ଯେପରି ଶାନ୍ତିର ନିଃଶ୍ୱାସ ପକାଇଲେ ।

ସତ୍ୟବ୍ରତଙ୍କ ମୁହଁକୁ କୃତଜ୍ଞ ଦୃଷ୍ଟିରେ ଚାହିଁ କହିଲେ : ମିସ୍ ମୁଖାର୍ଜୀ ଆପଣଙ୍କ ପାଖରେ ଚିର କୃତଜ୍ଞ ରହିବେ ମିଷ୍ଟର ମହାପାତ୍ର । କାରଣ ଆପଣ ତାଙ୍କ ଜୀବନରେ ଯେଉଁ ଅଭାବ ପୂରଣ କରିବାକୁ ଯାଉଛନ୍ତି, ତାହା ସାଧାରଣ ମଣିଷ ପକ୍ଷରେ ସମ୍ଭବ ନୁହେଁ ।

କିନ୍ତୁ ରେବେକା ମୁଖାର୍ଜୀଙ୍କ ମନରୁ ସମସ୍ତ ଆନନ୍ଦ ଯେପରି ଧୀରେ ଲିଭି ଆସୁଥିଲା । ପୁଣି ସେ ଆରାମ ଚେଆର ଉପରେ ବସି ଧୀରେ ଧୀରେ ଆଖି ବନ୍ଦ କରି ଦେଲେ ।

ସତ୍ୟବ୍ରତ ଦେଖିଲେ ଆପାତତଃ କିଛି ସମୟ ରେବେକା ମୁଖାର୍ଜୀ ଆତ୍ମ ଚିନ୍ତାରେ ଲିପ୍ତ ରହିବେ ।

ସତ୍ୟବ୍ରତ ଜର୍ଜଙ୍କ ସହିତ ଘରୁ ବାହାରି ଗଲେ ।

ରାଘବନଙ୍କ ସମ୍ବନ୍ଧରେ ସବିଶେଷ ଜାଣିବା ତାଙ୍କର ବିଶେଷ ପ୍ରୟୋଜନ ହୋଇ ପଡ଼ିଥିଲା ।

ବିଶେଷ ଭାବରେ ଚଉଧୁରୀ ସାହେବଙ୍କ ମୃତ୍ୟୁ ଦିନ ରାତିରେ ମିଷ୍ଟର ରାଘବନଙ୍କ ଗତିବିଧି କ'ଣ ଥିଲା ସେ ଜାଣିବାକୁ ଆଗ୍ରହାନ୍ୱିତ ହୋଇ ଉଠିଥିଲେ ।

ଦୁହେଁ ଯାଇ ଗୋଟିଏ ନିରୋଳା ଜାଗାରେ ବସିଲେ ।

ସତ୍ୟବ୍ରତ କହିଲେ : ଆପଣଙ୍କୁ ମୁଁ ଆଜି ପୁଣି ଟିକିଏ ବିରକ୍ତ କରିବାକୁ ଆସିଛି । କେତେ ଗୁଡ଼ିଏ ଅତି ଗୁରୁତ୍ୱପୂର୍ଣ୍ଣ ଘଟଣାର ସମାଧାନ ମୋତେ ଶୀଘ୍ର କରିବାକୁ ହେବ । ସେଥିପାଇଁ ଆପଣଙ୍କ ସହଯୋଗ ମୋର ଏକାନ୍ତ ପ୍ରୟୋଜନ ।

ମିଷ୍ଟର ଜର୍ଜ କହିଲେ : ଆପଣ ଆଜି ମୋତେ ଯେଉଁ ବିପଦରୁ ରକ୍ଷା କଲେ, ତାହା ତୁଳନାରେ ଆପଣଙ୍କୁ ମୋର ସହଯୋଗ ଅତ୍ୟନ୍ତ ନଗଣ୍ୟ ହେବ । ଆପଣଙ୍କୁ ସହଯୋଗ କରି ପାରିଲେ ମୁଁ ଗର୍ବ ଅନୁଭବ କରିବି ।

ସତ୍ୟବ୍ରତ ଟିକିଏ ଚିନ୍ତା କରି କହିଲେ : ଆପଣ ଚାଲି ଯାଆନ୍ତୁ ସେଇଦିନ ରାତିକୁ, ଯେଉଁଦିନ ରାତିରେ ଚଉଧୁରୀ ସାହେବଙ୍କୁ ଖୁଣ୍ କରା ହୋଇଥିଲା । ସେଇଦିନ ରାତି ଦଶଟା ଠାରୁ ରାତି ଦୁଇଟା ଯାଏ ଆପଣଙ୍କର ସମସ୍ତ କାର୍ଯ୍ୟକଳାପର କଥା ମୋ ଆଗରେ ବିବୃତ କରିବାକୁ ହେବ ।

ମିଷ୍ଟର ଜର୍ଜଙ୍କ ମୁହଁ ମୁହୂର୍ତ୍ତକ ପାଇଁ କିପରି ଅସ୍ୱାଭାବିକ ହୋଇ ଉଠିଲା । ସେ ଶାନ୍ତ ସ୍ୱରରେ କହିଲେ : ଆପଣ ତା'ହେଲେ ମୋତେ ସନ୍ଦେହ କରୁଛନ୍ତି ?

ସତ୍ୟବ୍ରତ କହିଲେ : ସତ କଥା କହିବାକୁ ଗଲେ ବର୍ତ୍ତମାନ ମୁଁ ଚଉଧୁରୀ ସାହେବଙ୍କର ପରିଚିତ ସମସ୍ତ ଲୋକଙ୍କୁ ସନ୍ଦେହ କରିବା ଅତି ସ୍ୱାଭାବିକ । ଅନ୍ତତଃ ମୋର ପେଷା ଦୃଷ୍ଟିରୁ । ତା'ବୋଲି ଆପଣଙ୍କର କ୍ଷୁଣ୍ଣ ହେବାର କିଛି ନାହିଁ । ଆପଣଙ୍କର ସେହି ରାତ୍ରିର ବର୍ଣ୍ଣନା ମଧ୍ୟରୁ ମୁଁ ଆପଣଙ୍କର ସାଙ୍ଗ ସାଥୀ କେତେକଙ୍କୁ ପାଇବି, ଯେଉଁମାନେ ଚଉଧୁରୀ ସାହେବଙ୍କ ସହିତ ସଂପୃକ୍ତ । ତେଣୁ ବୁଝି ପାରୁଥିବେ ମୋର ଅସଲ ଉଦ୍ଦେଶ୍ୟଟା କ'ଣ ।

ମିଷ୍ଟର ଜର୍ଜ ବୋଧହୁଏ ଘଟଣାଟାକୁ ଆଉ ବେଶି ଘଣ୍ଟା ଚକଟା କରିବାକୁ ଚାହୁଁ ନଥିଲେ । ତେଣୁ ସେ ଧୀରେ ଧୀରେ ଆରମ୍ଭ କଲେ : ସେଇଦିନ ରାତି ଦଶଟା ଠାରୁ ରାତି

ବାରଟାଯାଏ ଆମେ ଅନେକ ବନ୍ଧୁ ଏଇ କ୍ଲବ୍‌ରେ ଥିଲୁ । ସେଦିନ କ୍ଲବ୍ ସମ୍ବନ୍ଧରେ ଗୋଟାଏ ଜରୁରୀ ମିଟିଂ ଥିଲା । ଅବଶ୍ୟ ଯେଉଁମାନେ ଥିଲେ, ସମସ୍ତେ ଏକ୍‌ଜିକ୍ୟୁଟିଭ୍ କମିଟିର ମେମ୍ବର ।

ଆଲୋଚନାରେ ବିଶେଷ କୌଣସି ବୈଚିତ୍ର୍ୟ ନଥିଲା । ଇଭିନିଂ କ୍ଲବ୍‌ର ପରିଚାଳନା ବୋର୍ଡ଼ରେ ସାମାନ୍ୟ ଅଦଳ ବଦଳର ପ୍ରୟୋଜନ ଆବଶ୍ୟକ ହୋଇଥିଲା ।

ସତ୍ୟବ୍ରତ ପଚାରିଲେ : ଆପଣଙ୍କର ଏହି କ୍ଲବ୍‌ର ପରିଚାଳନା କମିଟିରେ କେତେଜଣ ଅଛନ୍ତି ?

: ସତର ଜଣ ।

: ଚଉଧୁରୀ ସାହେବ ସେମାନଙ୍କ ମଧ୍ୟରୁ ଜଣେ କି ?

: ଗତ ବର୍ଷ ଯାଏ ସେ ଥିଲେ, ଏ ବର୍ଷ ନାହାନ୍ତି । ଚଉଧୁରୀ ସାହେବ ନିଜ ଇଚ୍ଛାରେ ବାହାରି ଯାଇଛନ୍ତି ।

: ମିଷ୍ଟର ରାଘବନ ? ସତ୍ୟବ୍ରତ ପଚାରିଲେ ।

: ହଁ ସେ ଅଛନ୍ତି ।

: ସେଦିନ ସେ ମିଟିଂରେ ଥିଲେ ?

: ହଁ, ଶେଷ ପର୍ଯ୍ୟନ୍ତ ସେ ଥିଲେ । ଆମେ ସାଙ୍ଗ ହୋଇ ବାହାରିଲୁ । ମୁଁ ତାଙ୍କ ଗାଡ଼ିରେ କିଛି ଦୂର ଯାଇଥିଲି ।

: ହୁଁ, ଆଚ୍ଛା, ଆପଣ ଯେତେବେଳେ ତାଙ୍କ ଗାଡ଼ିରୁ ଓହ୍ଲାଇ ଗଲେ, ସେତେବେଳକୁ ଘଡ଼ିରେ କେତେଟା ବାଜିଥିଲା ?

: ସାଢ଼େ ବାରଟା ହେବ ନିଶ୍ଚୟ । କାରଣ ଆମେ ଏହି କ୍ଲବ୍‌ରୁ ବାରଟା ପରେ ବାହାରିଥିଲୁ ।

: ହୁଁ, ଆଚ୍ଛା ଆପଣଙ୍କର ଏହି ଏକ୍‌ଜିକ୍ୟୁଟିଭ୍ କମିଟିର ସମସ୍ତ ସଦସ୍ୟ କ'ଣ ସେଦିନ ଉପସ୍ଥିତ ଥିଲେ ?

: ନା, ମାତ୍ର ତିନିଜଣଙ୍କ ଛଡ଼ା ଆଉ ସମସ୍ତେ ଉପସ୍ଥିତ ଥିଲେ ।

: ଯେଉଁ ତିନିଜଣ ଅନୁପସ୍ଥିତ ଥିଲେ, ସେମାନଙ୍କର ନାମ ମନେ ଅଛି ?

ମିଷ୍ଟର ଜର୍ଜ ଟିକିଏ ଚିନ୍ତାକରି କହିଲେ : ଯେତେଟା ମନେ ପଡୁଛି ମିଷ୍ଟର ଡୋଭର, ବ୍ରିଜଲାଲଜୀ ଆଉ ସେନ୍‌ଗୁପ୍ତା । ଅବଶ୍ୟ ସେଦିନର ପ୍ରୋସିଡ଼ିଂ ଖାତାଟା ଦେଖିଲେ ଆପଣ ଏହି ନାଁ ସମ୍ବନ୍ଧରେ ନିଶ୍ଚିନ୍ତ ହୋଇ ପାରିବେ ।

: ତା'ହେଲେ ଆପଣଙ୍କର ଠିକ୍ ମନେ ଅଛି ମିଷ୍ଟର ରାଘବନଙ୍କ ସହିତ ରାତି ସାଢ଼େବାରଟାରେ ଏକା ଗାଡ଼ିରେ ବସି ଯାଇଥିଲେ ଏବଂ ସେଇଦିନ ରାତିରେ ଚଉଧୁରୀ ସାହେବଙ୍କୁ ଖୁଣ୍ କରା ହୋଇଥିଲା ।

: ଇଏସ୍ ମିଷ୍ଟର ମହାପାତ୍ର, ମୋର ସଂପୂର୍ଣ୍ଣ ମନେ ଅଛି ।

: ଆଚ୍ଛା, ଏଇ ଏକଜିକ୍ୟୁଟିଭ୍ କମିଟିର ଯେଉଁମାନେ ମେମ୍ବର ସେମାନଙ୍କ ସହିତ ଚଉଧୁରୀ ସାହେବଙ୍କର କିପରି ସମ୍ବନ୍ଧ ଥିଲା ?

: ସମ୍ବନ୍ଧ ତ ଚଉଧୁରୀ ସାହେବଙ୍କ ସହିତ ସମସ୍ତଙ୍କର ଅନ୍ତରଙ୍ଗର ଥିଲା । ତା'ଛଡ଼ା ସେ ଟିକିଏ ବୟୋଜ୍ୟେଷ୍ଠ ଥିବାରୁ ଅନେକେ ତାଙ୍କୁ ଭକ୍ତି ବି କରୁଥିଲେ । ଆଉ କେତେଜଣ ତାଙ୍କର ପ୍ରାୟ ସମବୟସୀ ବି ଥିଲେ । ସେ ସବୁ ପରେ ବି ଚଉଧୁରୀ ସାହେବଙ୍କ ସହିତ କାହାରି କୌଣସି ମନୋମାଳିନ୍ୟ କେବେ ହୋଇ ନଥିଲା ।

: ହୁଁ, ତା'ହେଲେ ମିଷ୍ଟର ତୋଭର, ବ୍ରିଜଲାଲଜୀ ଏବଂ ସେନ୍‌ଗୁପ୍ତା । ଆପଣଙ୍କର ଯେତେଦୂର ମନେ ପଡୁଛି ଏହି ତିନିଜଣ ସେଦିନ ମିଟିଂରେ ଅନୁପସ୍ଥିତ ଥିଲେ ।

: ହଁ ।

: ଆଚ୍ଛା, ଏମାନଙ୍କ ସହିତ ଚଉଧୁରୀ ସାହେବଙ୍କର ସମ୍ବନ୍ଧ କିପରି ଥିଲା ?

: ସାଧାରଣ । ତେବେ ବ୍ରିଜଲାଲଜୀ ଟିକିଏ ଅଧିକ ମିଳାମିଶା କରୁଥିଲେ ଚଉଧୁରୀ ସାହେବଙ୍କ ସହିତ ।

: ଆଉ ଗୋଟିଏ ପ୍ରଶ୍ନ । ରେବେକା ମୁଖାର୍ଜୀଙ୍କ ସହିତ ଚଉଧୁରୀ ସାହେବଙ୍କ ସମ୍ବନ୍ଧ କିପରି ଥିଲା ?

ଜର୍ଜ ମୁହୂର୍ତ୍ତେ ଚାହିଁଲେ ସତ୍ୟବ୍ରତ ମୁହଁକୁ । ହସିଲେ ଟିକିଏ, ଦୁର୍ବଳତା ଥିବାପରି ମନେ ହେଉଥିଲା ।

: ଯଥା ?

: ଏଇ ଧରନ୍ତୁ ଚଉଧୁରୀ ସାହେବ ମିସ୍ ମୁଖାର୍ଜୀକୁ ପାଖରେ ବସାନ୍ତି । କିଛି କାମ ନଥିଲେ ଅନେକ ରାତିଯାଏ ବସି କଥାବାର୍ତ୍ତା ହୁଅନ୍ତି । କେବେ କେବେ ଗାଡ଼ିରେ ନେଇ ଚଉଧୁରୀ ସାହେବ ରେବେକାକୁ ଘରେ ଛାଡ଼ି ଆସନ୍ତି, ଏହିପରି ।

: ହୁଁ ସେଦିନ ରାତିରେ, ମିସ୍ ମୁଖାର୍ଜୀଙ୍କ ସମ୍ବନ୍ଧରେ ଆପଣ କିଛି କହି ପାରିବେ ?

ଜର୍ଜ କିଛି ସମୟ ଚିନ୍ତାକରି କହିଲେ : ସେଦିନ କିନ୍ତୁ ମିସ୍ ମୁଖାର୍ଜୀ ଆସିଥିଲେ ଆମ କ୍ଲବକୁ । ମୋର ଯେତେଦୂର ମନେ ପଡୁଛି ସନ୍ଧ୍ୟାବେଳେ ମୁଁ ତାଙ୍କୁ ଦେଖିଥିଲି । ତା'ପରେ ଆଉ ଲକ୍ଷ୍ୟ କରି ନାହିଁ ।

: ମିସ୍ ମୁଖାର୍ଜୀଙ୍କର ଚଉଧୁରୀ ସାହେବଙ୍କ ପ୍ରତି ବ୍ୟବହାର କିପରି ଥିଲା ?

: ଭଲ, ସମସ୍ତଙ୍କ ପରି । ତେବେ ଚଉଧୁରୀ ସାହେବଙ୍କର ରେବେକା ପ୍ରତି ଟିକିଏ ଅଧିକ ଆନ୍ତରିକତା ଥିବାରୁ ରେବେକାର ଟିକିଏ ଅଧିକ ଆକର୍ଷଣ ରହିବା ସ୍ୱାଭାବିକ । ଆଉ ସେପରି କିଛି ମୁଁ ଲକ୍ଷ୍ୟ କରିନାହିଁ ।

: ମିସ୍ ମୁଖାର୍ଜୀଙ୍କର ଚଉଧୁରୀ ସାହେବଙ୍କ ଘରକୁ ଯାତାୟାତ ଥିଲା ?

: ଥିବ ନିଶ୍ଚୟ ? ତେବେ ମୁଁ ପ୍ରତ୍ୟକ୍ଷଦର୍ଶୀ ନୁହେଁ ।

: ହୁଁ । ତା'ହେଲେ ଆଉ କିଛି ବାଟ ନାହିଁ ମିଷ୍ଟର ଜର୍ଜ । ମୁଁ ଦେଖୁଛି ମୋତେ ଅବାଟରେ ହିଁ ଆଗେଇବାକୁ ହେବ ।

: ମାନେ ? ଜର୍ଜଙ୍କ ମୁହଁରେ ପ୍ରଶ୍ନବାଚୀ ।

: ଚଉଧୁରୀ ସାହେବଙ୍କ ମୃତ ଗୃହରୁ ମିଷ୍ଟର ରାଘବନଙ୍କର ହାତ ଘଡ଼ି ମୁଁ ଉଦ୍ଧାର କରିଛି ।

: ଆଶ୍ଚର୍ଯ୍ୟ !!

: ହଁ, ସବୁଗୁଡ଼ା ମୋତେ ଆଶ୍ଚର୍ଯ୍ୟ ମନେ ହେଉଛି ମିଷ୍ଟର ଜର୍ଜ । ମୁଁ କିନ୍ତୁ ଏହି ପଥରେ ଆଗେଇବାକୁ ପ୍ରସ୍ତୁତ ନୁହେଁ । ମିଷ୍ଟର ରାଘବନ ଆପଣଙ୍କ ସହିତ ସେଦିନ ରାତି ସାଢ଼େବାରଟା ଯାଏ ଥିଲେ । ମୋର ମନେ ହେଉଛି ଚଉଧୁରୀ ସାହେବଙ୍କ ହତ୍ୟାକାଣ୍ଡ ସଂଘଟିତ ହୋଇଛି ରାତି ବାରଟା ଭିତରେ, କିନ୍ତୁ ସାଢ଼େବାରଟା ପରେ ମିଷ୍ଟର ରାଘବନଙ୍କ ଗତିବିଧି ସଂପର୍କରେ ଆପଣଙ୍କୁ କିଛି ଜଣା ନାହିଁ । ତେଣୁ ସାଢ଼େବାରଟା ପରେ ଦୁଇଟା

ଭିତରେ ବି ଏହି ହତ୍ୟାକାଣ୍ଡ ସଂଘଟିତ ହୋଇ ପାରିଥାଏ ଏବଂ ମିଷ୍ଟର ରାଘବନ ଏହାର ନାୟକ ହୋଇ ପାରି ଥାଆନ୍ତି ।

: କିନ୍ତୁ ମିଷ୍ଟର ରାଘବନଙ୍କର ଲାଭ ?

ସତ୍ୟବ୍ରତ ହସିଲେ । କହିଲେ : ମଣିଷ ମନର ଗୋପନ ଇଚ୍ଛା ସମ୍ବନ୍ଧରେ କୌଣସି ଯୁକ୍ତିଯୁକ୍ତ କାରଣ ଅନେକ ସମୟରେ ଖୋଜି ବାହାର କରି ହୁଏ ନାହିଁ । ତେଣୁ କାହା ମନର ମୋଟିଭ୍ କେତେବେଳେ ଯେ କ'ଣ ହୁଏ ଆମେ ଚିନ୍ତା କରିପାରିବା ସମ୍ଭବ ନୁହେଁ ।

: ଆପଣ ମିଷ୍ଟର ରାଘବନଙ୍କୁ ଏ ସମ୍ବନ୍ଧରେ କିଛି ପଚାରି ଥିଲେ ?

: ହଁ ।

: ସେ କ'ଣ କହିଲେ ?

: କହିଲେ ମୋ ଘଡ଼ିଟା ଚୋରି ହୋଇ ଯାଇଛି ।

: ଆପଣ ସେ ଘଡ଼ି ଉଦ୍ଧାର କରିଥିଲେ, ସେ କଥା ଜଣାଇ ଥିଲେ ?

: ହଁ ଏବଂ କେଉଁଠୁ ଉଦ୍ଧାର କରିଛି ତା' ମଧ୍ୟ ଜଣାଇ ଦେଇଛି ।

: ତା'ପରେ ସେ କ'ଣ କହିଲେ ?

କିଛି କହି ପାରିଲେ ନାହିଁ । ଆଶ୍ଚର୍ଯ୍ୟ ହେଲେ, ମୁହଁ ଶେତା ପଡ଼ିଗଲା ।

: ମୁଁ କିନ୍ତୁ ବିଶ୍ୱାସ କରି ପାରୁ ନାହିଁ ମିଷ୍ଟର ମହାପାତ୍ର । ରାଘବନଙ୍କ ସମ୍ବନ୍ଧରେ ମୋର ଖୁବ୍ ଭଲ ଧାରଣା ଏବଂ ତାଙ୍କ ସହିତ ମୋର ପରିଚିତ ଅନ୍ତତଃ ଦଶ ବର୍ଷରୁ ଅଧିକ ହେବ । ସେ ଯେ ଏପରି ଏକ ଅଘଟଣ ଘଟାଇବେ, ମୁଁ ମୋଟେ ବିଶ୍ୱାସ କରି ପାରୁ ନାହିଁ । ଜର୍ଜ କହିଲେ ।

: ବିଶ୍ୱାସ ମୁଁ ବି କରି ପାରୁ ନାହିଁ । କିନ୍ତୁ ସାକ୍ଷୀ ପାଉଛି, ପ୍ରମାଣ ପାଉଛି । ତେଣୁ ମୋତେ ବାଧ ହୋଇ କାର୍ଯ୍ୟାନୁଷ୍ଠାନ କରିବାକୁ ପଡ଼ିବ ।

ଜର୍ଜ ଚୁପ୍ ହୋଇଗଲେ । ବୋଧହୁଏ ଉତ୍ତର ଦେବାର ଭାଷା କିଛି ଖୋଜି ପାଉ ନଥିଲେ ।

ସତ୍ୟବ୍ରତ କହିଲେ : ଆପାତତଃ ମୁଁ ଉଠୁଛି । ତେବେ ମିଷ୍ଟର ରାଘବନଙ୍କୁ ଏ ସମ୍ବନ୍ଧରେ ଆପଣ ବିଶେଷ କିଛି କହିବେ ନାହିଁ । ମୁଁ ମଧ ଏତେ ଶୀଘ୍ର ତାଙ୍କ ବିରୁଦ୍ଧରେ କିଛି କରୁ ନାହିଁ । ଦେଖାଯାଉ କ'ଣ ହେଉଛି ।

ସତ୍ୟବ୍ରତଙ୍କ ସଙ୍ଗେ ସଙ୍ଗେ ଜର୍ଜ ଉଠି ଠିଆହେଲେ । କହିଲେ, : ଦେଖନ୍ତୁ । ଆପଣ ଯାହା ଉଚିତ ମନେ କରିବେ, ସେଇଆ କରିବେ ।

ସତ୍ୟବ୍ରତ ଆଗେଇ ଗଲେ ।

ହଲ୍ ଭିତରେ ଯେଉଁ କେତେଜଣ ଥିଲେ ସେମାନେ ଚୁପ୍‌ଚାପ୍ ଚାହିଁ ରହିଥିଲେ ।

ଜର୍ଜ ସତ୍ୟବ୍ରତଙ୍କୁ ଶିଡ଼ି ମୁଣ୍ଡଯାଏ ଆଗେଇ ଦେଇ ଆସିଲେ ।

\+ + +

ବେଗମ ଚଉଧୁରୀ ସହିତ ସେମାନେ ସମସ୍ତେ ଏକାଠି ବସିଥିଲେ । ଭୂପେନ ବାବୁ, ସଦାଶିବ ବାବୁ, ବ୍ୟୋମକେଶ ବାବୁ, ବେଗମ ଆଉ ହେଲେନ୍, ବର୍ତ୍ତମାନ ଏହି ପରିବାରର ଏହି ପାଞ୍ଚଜଣ ସଦସ୍ୟ । ଆଉ ଜଣେ ହେଉଛି ରଘୁ । ସେ ମଧ ଦରଜା ପାଖରେ ତଳେ ବସି ଏମାନଙ୍କ ଆଲୋଚନାରେ ଭାଗ ନେଉଥିଲା ।

ଆଲୋଚନା ହେଉଥିଲା, ରମଣୀ ରଞ୍ଜନଙ୍କର ସମ୍ପତ୍ତି ବାଡ଼ିର ରକ୍ଷଣାବେକ୍ଷଣ ପାଇଁ କ'ଣ କରାଯାଇପାରେ ।

ବ୍ୟୋମକେଶ ବାବୁ କହିଲେ : ଗୋଟିଏ ଟ୍ରଷ୍ଟି ମାଧ୍ୟମରେ ପରିଚାଳନା କଲେ ଭଲ ହୁଅନ୍ତା ।

ସଦାଶିବ ବାବୁ କହିଲେ : ଏ ସମ୍ବନ୍ଧରେ ସେ ଆହୁରି ଚିନ୍ତା ନକରି ବର୍ତ୍ତମାନ ମତବ୍ୟକ୍ତ କରି ପାରିବେ ନାହିଁ ।

ଭୂପେନ ବାବୁ କହିଲେ : ନା ନା, ସେ ସବୁର କିଛି ପ୍ରୟୋଜନ ନାହିଁ । ବେଗମ ତ ଆଉ ନାବାଳିକା ନୁହେଁ । ସେ ତା' ବାପାର ସମ୍ପତ୍ତିର ଦାୟିତ୍ୱ ନେଲା ଭଳି ହୋଇଛି । ତା'ଛଡ଼ା ସୁବିଧା ଅସୁବିଧା, ଭଲ ମନ୍ଦ ଏସବୁ ଦେଖାଚାହାଁ କରିବା ପାଇଁ ମୁଁ ତ ଅଛି । ତେଣୁ ଚିନ୍ତାର କିଛି କାରଣ ନାହିଁ ।

ସେତିକିବେଳେ ସତ୍ୟବ୍ରତ ମହାପାତ୍ର ସେଠାରେ ପହଞ୍ଚିଲେ ।

ସମସ୍ୱରରେ ସମସ୍ତେ ସ୍ୱାଗତ ଜଣାଇଲେ : ଆସନ୍ତୁ, ଆସନ୍ତୁ । ଆଜି ଆମର ଗୋଟାଏ ଘରୋଇ ଆଲୋଚନା ସଭା ବସିଛି । ଆମେ ଶେଷ ନିଷ୍ପତ୍ତି କିଛି କରି ପାରୁ ନାହୁଁ ।

ସତ୍ୟବ୍ରତ ସମସ୍ତଙ୍କ ମୁହଁକୁ ଥରେ ଚାହିଁଗଲେ । ସମସ୍ତେ ଗମ୍ଭୀର ଭାବରେ କ'ଣ ଯେପରି ଚିନ୍ତା କରୁଛନ୍ତି । ବେଗମ ସେମିତି ଆରାମ ଚେଆରଟି ଉପରେ ଆଉଜି ବସିଛି । ଆଉ ହେଲେନ୍ କଣ୍ଢେଇଗୁଡ଼ାକ ଧରି ଏପାଖ ସେପାଖ କରୁଛି ।

ସତ୍ୟବ୍ରତ ଖଣ୍ଡିଏ ଚେଆର ଅଧିକାର କରି ବସୁ ବସୁ କହିଲେ : ଆପଣଙ୍କ ଘରୋଇ ସମସ୍ୟାର ସମାଧାନ ଆପଣମାନେ କରିବେ । ସେଥିରେ ମୋର ହସ୍ତକ୍ଷେପ ମୋଟେ ଉଚିତ ହେବ ନାହିଁ ।

ଭୂପେନ ବାବୁଙ୍କ ଗମ୍ଭୀର ସ୍ୱର ଶୁଣାଗଲା : ଆପଣ ଠିକ୍ କହିଛନ୍ତି ମିଷ୍ଟର ମହାପାତ୍ର । କର୍ତ୍ତବ୍ୟ ପରାୟଣ ବ୍ୟକ୍ତିମାନେ ନିଜର କର୍ତ୍ତବ୍ୟ ଛଡ଼ା ଅନ୍ୟ କୌଣସି ବିଷୟ ଉପରେ ବିଶେଷ ମୁଣ୍ଡ ପୂରେଇବା ଉଚିତ ନୁହେଁ । ତେଣୁ ଆପଣଙ୍କ କର୍ତ୍ତବ୍ୟ ଯାହା ତାହାଠାରୁ ଅଧିକ ଅଗ୍ରସର ହେବେ ନାହିଁ, ସେ କଥା ମଧ୍ୟ ମୁଁ ଜାଣିଥିଲି ।

ସାମାନ୍ୟ ନୀରବତା । ହେଲେନ୍ କିନ୍ତୁ ଗୋଟାଏ ଜାପାନୀ ଖେଳଣା ଧରି ସେଥିରେ ଚାବି ମୋଡ଼ିବାକୁ ଲାଗିଥିଲା ।

ଏକ ସମୟରେ ଫ୍ଲୋର୍ ଉପରେ ସେ ଖେଳଣାଟିକୁ ଛାଡ଼ିଦେଲା । ସଙ୍ଗେ ସଙ୍ଗେ ଖେଳଣାଟା ଫ୍ଲୋର୍ ଉପରେ ଦଉଡ଼ିବାକୁ ଲାଗିଲା ଏବଂ ଝରକାର ଫାଙ୍କ ଦେଇ ଖେଳଣାଟା ତଳକୁ ଡେଇଁ ପଡ଼ିବା ମୁହୂର୍ତ୍ତରେ ସତ୍ୟବ୍ରତ ଛୁଟିଗଲେ ଖେଳଣାଟାକୁ ଧରି ପକାଇବା ପାଇଁ । କିନ୍ତୁ ଜାପାନୀ ବାଳିକାଟି ଠିକ୍ ତା' ପୂର୍ବ ମୁହୂର୍ତ୍ତରେ ତଳକୁ ଡେଇଁ ପଡ଼ିଥିଲା । ସେଇ ମୁହୂର୍ତ୍ତରେ ସତ୍ୟବ୍ରତ ତଳକୁ ଚାହିଁ ଦେଖିଲେ, ଖେଳଣାଟା ଠିକ୍ ଝରକା ତଳେ ରାସ୍ତା ଉପରେ ଠିଆ ହୋଇଥିବା ଗୋଟିଏ ହୁଡ୍ ଖୋଲା ଗାଡ଼ି ଭିତରେ ଯାଇ ପଡ଼ିଲା ଏବଂ ଗାଡ଼ିଟି ସଙ୍ଗେ ସଙ୍ଗେ ଷ୍ଟାର୍ଟ ଦେଇ ଚାଲିଗଲା ।

ସତ୍ୟବ୍ରତ ବ୍ୟଗ୍ର ହୋଇ ଉଠିଲେ । ଚଞ୍ଚଳ ହୋଇ ପଡ଼ିଲେ । ପଛକୁ ଚାହିଁ ଦେଖିଲେ, ହେଲେନ୍ ମଧ୍ୟ କରୁଣ ନେତ୍ରରେ ଝରକା ପାଖରେ ଠିଆ ହୋଇ ତଳକୁ ଚାହିଁଛି ।

ଘର ଭିତରେ ସେପରି କୌଣସି ଚାଞ୍ଚଲ୍ୟ ନାହିଁ । ସମସ୍ତେ ଧୀର ସ୍ଥିର ହୋଇ ବସି ଗମ୍ଭୀର ଭାବରେ ଚିନ୍ତା କରୁଛନ୍ତି । ଏହା ଭିତରେ ଯେ ଗୋଟାଏ ଘଟଣା ଘଟି ଯାଇଛି ଏବଂ ଜାପାନୀ ଖେଳଣାଟା ସମସ୍ତଙ୍କ ଆଗରେ ଘର ଛାଡ଼ି ଚାଲି ଯାଇଛି, ସେମାନେ ତାହା ଦେଖି ମଧ୍ୟ ଦେଖି ନାହାନ୍ତି ।

ସତ୍ୟବ୍ରତ କେବଳ ଜଳିଲା ଆଖିରେ ହେଲେନ୍ ମୁହଁକୁ ଚାହିଁଲେ ।

ହେଲେନ୍ ଫେରି ଯାଇଥିଲା ନିଜ ଜାଗାକୁ । ସେ ପୁଣି ଗୋଟାଏ ଖେଳଣା ବାହାର କରି ତଳେ ଥୋଇଲା ।

ସତ୍ୟବ୍ରତ ଆଉ ନିଜ ସିଟ୍‌ରେ ନବସି ବାହାରି ଯାଉ ଯାଉ କହିଲେ : ଆପଣମାନେ ନିଜ ନିଜ ଭିତରେ ସବୁ କଥା ଠିକ୍‌ଠାକ୍ କରନ୍ତୁ । ଶେଷରେ ମୁଁ ଶୁଣିବି । ଯଦି କିଛି ମତାମତ ଦେବାର ଥାଏ ଦେବି । ଆଶା କରୁଛି ଆପଣମାନେ ସମସ୍ତେ ବେଗମ ଚଉଧୁରୀଙ୍କର ହିତାକାଂକ୍ଷୀ । ତେଣୁ ଯାହା କରିବେ, ସବୁ ମୂଳରେ ବେଗମ ଚଉଧୁରୀଙ୍କର ମଙ୍ଗଳ କାମନା ଥିବ, ଏହା ନିଶ୍ଚିତ କଥା ।

ସତ୍ୟବ୍ରତ ଘରୁ ବାହାରି ଗଲେ ।

ସଙ୍ଗେ ସଙ୍ଗେ ସେ ତାଙ୍କର ଡାଇରୀ ବହିଟା ବାହାର କରି ଗାଡ଼ି ନମ୍ବରଟା ନୋଟ୍ କଲେ ।

ଯେଉଁ ହୁଡ୍ ଖୋଲା ଗାଡ଼ି ଖଣ୍ଡିକ ଉପରକୁ ଜାପାନୀ ଖେଳଣାଟା ଡେଇଁ ପଡ଼ିଥିଲା, ସତ୍ୟବ୍ରତ ଉପରୁ ଥାଇ ସେହି ଗାଡ଼ି ନମ୍ବରଟା ଦେଖି ପାରିଥିଲେ ।

ମୁହୂର୍ତ୍ତକ ପରେ ସେ ଯାଇ ପହଞ୍ଚିଲେ ରମଣୀ ରଞ୍ଜନଙ୍କ ଫୋନ୍ ପାଖରେ । ସଙ୍ଗେ ସଙ୍ଗେ ସଂଯୋଗ କଲେ ପୋଲିସ୍ ଇନିସ୍‌ପେକ୍ଟର ଗାଙ୍ଗୁଲିଙ୍କ ସହିତ ।

ମିଷ୍ଟର ଗାଙ୍ଗୁଲି ଉପସ୍ଥିତ ଥିଲେ ।

ସେ ସତ୍ୟବ୍ରତଙ୍କ କଥା ମନଯୋଗ ସହକାରେ ଶୁଣି ଉତ୍ତର ଦେଲେ : ମୁଁ ଏଇ ପନ୍ଦର ମିନିଟ୍ ଭିତରେ ଏହି ନମ୍ବରର ଗାଡ଼ିର ଓନରର ନାଁ, ଠିକଣା ଆପଣଙ୍କୁ ଜଣାଉଛି । ଆପଣ ନିଶ୍ଚିତ ରୁହନ୍ତୁ ।

ସତ୍ୟବ୍ରତ ଟେଲିଫୋନ୍ ରିସିଭରଟା ଯଥା ସ୍ଥାନରେ ରଖି ଦେଇ, ସେଇଠି ବସି ରହିଲେ ନୀରବରେ ।

ତେବେ ହେଲେନ୍ କ'ଣ ଇଚ୍ଛା କରି ଏହା କରିଛି ?

ନା, ତା' ଅଜ୍ଞାତସାରରେ ସେଇ ଜାପାନୀ ଖେଳଣାଟା ଚାଲି ଯାଇଛି ତା' ଅକ୍ତିଆରର ବାହାରକୁ ?

ତା'ହେଲେ ସେଇ ହୁଡ୍ ଖୋଲା ଗାଡ଼ିଟା ? ସେଇଟା ବା ହଠାତ୍ ସେଠାରେ ଆସି ପହଞ୍ଚିଲା କୁଆଡୁ ?

ମନେ ହେଉଛି ସବୁ ଗୁଡ଼ିକ ଯେପରି ପୂର୍ବ ପରିକଳ୍ପିତ ।

କିନ୍ତୁ ଘରେ ଏତେ ପଦାର୍ଥ ଥାଉ ଥାଉ ସେଇ ଜାପାନୀ ଖେଳଣାଟା ପ୍ରତି ସେମାନେ ଆକୃଷ୍ଟ ହେଲେ କାହିଁକି ?

ତା'ହେଲେ କ'ଣ ....

ସତ୍ୟବ୍ରତ ହଠାତ୍ ଉଠି ଠିଆ ହୋଇ ପଡ଼ିଲେ ।

ତା'ହେଲେ କ'ଣ ରମଣୀ ରଞ୍ଜନ ବାବୁଙ୍କର ସେହି ମୂଲ୍ୟବାନ ହୀରା ଜହରତ୍ ସମସ୍ତ....

ବାହାରେ କାହାର ପାଦ ଶବ୍ଦ ଶୁଣାଗଲା ।

: କିଏ ? ସତ୍ୟବ୍ରତ ଚିତ୍କାର କରି ଉଠିଲେ ।

: ମୁଁ । ହସି ହସି ଆଗେଇ ଆସିଲେ ସଦାଶିବ ବାବୁ । କହିଲେ, ସେସବୁ କିଛି ହେବ ନାହିଁ ଆଜ୍ଞା । ସମସ୍ତେ ନିଜ ନିଜର ସ୍ୱାର୍ଥ ରକ୍ଷା କରିବା ପାଇଁ ଲାଗି ପଡ଼ିଛନ୍ତି । ମୁଁ ଏସବୁ ମଧ୍ୟରେ ନାହିଁ । ଖୋଲା ହୃଦୟରେ କେହି ବେଗମର ଭବିଷ୍ୟତ ସମ୍ବନ୍ଧରେ ଚିନ୍ତା କରୁ ନାହାନ୍ତି । ତେଣୁ ସେମାନଙ୍କ ମେଳିରେ ରହି କିଛି ଲାଭ ନାହିଁ ।

ସତ୍ୟବ୍ରତ କହିଲେ : ସେମାନଙ୍କର ତା'ହେଲେ ସ୍ୱାର୍ଥ କ'ଣ ? ଆପଣମାନେ ସମସ୍ତେ ବେଗମର ଆତ୍ମୀୟ । ସମସ୍ତେ ତା'ର ମଙ୍ଗଳ କାମନା କରିବାର କଥା । କିନ୍ତୁ ସ୍ୱାର୍ଥର ପ୍ରଶ୍ନ ପୁଣି ଉଠୁଛି କାହିଁକି ?

ସଦାଶିବ ବାବୁ କହିଲେ : ଆପଣ ବୁଝି ପାରୁ ନାହାନ୍ତି ନା ଆଜ୍ଞା । ସମସ୍ତଙ୍କର ଆଖି ଯାଇ ପିଇସାଙ୍କର ପୋତାମାଲ ଉପରେ । ସତରେ ପୋତାମାଲ କିଛି ପିଇସା ରଖିଛନ୍ତି କି ନାହିଁ ଭଗବାନ ଜାଣନ୍ତି, କିନ୍ତୁ ସେଇ ଆଶାରେ...

: ହଁ ହଁ, ସେଇ ଆଶାରେ କାହାରି ଆଖିରେ ନିଦ ନାହିଁ । କିଏ ଘଣ୍ଟା ଘଣ୍ଟା ଧରି ଫୋନ୍ କରୁଛି ତ, ଆଉ କିଏ ଶାରୀର ପଞ୍ଜୁରି ନେଇ ଖେଳୁଛି, ଆଉ କିଏ ହତ୍ୟାକାରୀର ଛୁରୀ ଖୋଜୁଛି ତ ଆଉ କିଏ...

ହଠାତ୍ ଟେଲିଫୋନ୍‌ଟା ବାଜି ଉଠିବାରୁ ସତ୍ୟବ୍ରତ ରିସିଭର୍ ଉଠାଇଲେ ।

: ହ୍ୟାଲୋ ? ହଁ ହଁ । .... ଟିକିଏ ଧରନ୍ତୁ ।

ସତ୍ୟବ୍ରତ ଡାଇରୀଟା ବାହାର କରି ତହିଁରେ କ'ଣ ଲେଖିଲେ । କହିଲେ : ସନ୍ଧ୍ୟାବେଳକୁ ମୁଁ ଆପଣଙ୍କ ପାଖକୁ ଯିବି, ଥିବେ ତ ? ହସିଲେ ଟିକିଏ, ତା'ପରେ ରିସିଭରଟା ରଖିଦେଇ ଉଠି ଠିଆ ହୋଇ ପଡ଼ିଲେ ।

ସଦାଶିବବାବୁ କହିଲେ : ଆପଣ ମୋତେ ଭୁଲ ବୁଝନ୍ତୁ ନାହିଁ ଆଜ୍ଞା । ଅନ୍ୟମାନଙ୍କ ପରି ମୋ ମନ ଭିତରେ ପିଇସାଙ୍କ ଗୁପ୍ତ ଧନ ଆତ୍ମସାତ କରିବାର ଇଚ୍ଛା ମୋଟେ ନାହିଁ । ମୁଁ ଚାହେ ବେଗମର କଲ୍ୟାଣ ମନ ପ୍ରାଣରେ ।

ସତ୍ୟବ୍ରତ ହସି ହସି କହିଲେ : ମୁଁ ତ ଆପଣଙ୍କୁ ଅଭିଯୁକ୍ତ କରୁ ନାହିଁ । କେବେ ମୁଁ ଆଘଣଙ୍କ ଦୋଷ ଦେଇଛି ?

: ନା, ତେବେ ଏଇକ୍ଷିଣା କହିଲେ ଯେ ମୁଁ ହତ୍ୟାକାରୀର ଛୁରୀ ଖୋଜି ବୁଲୁଛି । ରାତିରେ ନିଦ ନାହିଁ ।

: ଆରେ ନା, ନା, ସତ୍ୟବ୍ରତ ସଦାଶିବ ବାବୁଙ୍କ ପିଠି ଥାପୁଡ଼େଇ କହିଲେ, ମୁଁ ଇମିତି କଥାରେ କଥାରେ କହିଦେଲି ବୋଲି ଆପଣ ସେଇଆକୁ ଧରି ବସିଛନ୍ତି ? ଯାଆନ୍ତୁ ସେମାନେ ବେଗମ ବିରୁଦ୍ଧରେ କ'ଣ ଚକ୍ରାନ୍ତ କରୁଛନ୍ତି ଲକ୍ଷ୍ୟ ରଖନ୍ତୁ । ମୁଁ ଆସିଲେ ମୋତେ ସବୁ କହିବେ । ମୋର ହୋଇ ଆପଣ ଏମାନଙ୍କ କାର୍ଯ୍ୟକଳାପ ପ୍ରତି ଟିକିଏ ଦୃଷ୍ଟି ରଖି ଥାଆନ୍ତୁ ।

ସଦାଶିବ ବାବୁ ହଠାତ୍ ଯେପରି କୃତ୍ୟ କୃତ୍ୟ ହୋଇ ଉଠିଲେ । କହିଲେ : ସବୁବେଳେ

ମୋର ତୀକ୍ଷ୍ଣ ଦୃଷ୍ଟି ଏମାନଙ୍କ ଉପରେ ରହିଛି ଆଜ୍ଞା । ଟିକିଏ ସନ୍ଦେହ ଜନକ ପରିସ୍ଥିତି ଦେଖା ଦେଲେ ସଙ୍ଗେ ସଙ୍ଗେ ମୁଁ ଆପଣଙ୍କୁ ଖବର ଦେବି ।

\+ + +

ବି.ଏନ୍. ତରଫଦାର ।

ନେମ୍ ପ୍ଲେଟଟା ଆଡ଼େ କିଛି ସମୟ ଅନାଇ ରହି ସତ୍ୟବ୍ରତ କଲିଂବେଲ୍ ସୁଇଚ୍‌ରେ ଆଙ୍ଗୁଳି ଟିପିଲେ ।

କୋଠାଟା ତିନିତାଲା । ସୁନ୍ଦର ।

କିଛି ସମୟ ପରେ ଜଣେ ଚାକର ଶ୍ରେଣୀୟ ଲୋକ ଆସି ଦରଜା ଖୋଲି ଦେଲା ।

ସାଙ୍ଗରେ ନେଇଗଲା ଦି'ତାଲାକୁ ।

: ମୋ ନାଁ ବି.ଏନ୍. ତରଫଦାର । ଭଦ୍ରଲୋକ ସେହିପରି ଲେଖା ଟେବୁଲ ଉପରେ ମୁହଁ ମୋଡ଼ି କହିଲେ ।

: ମୋ ନାଁ ସତ୍ୟବ୍ରତ ମହାପାତ୍ର । ସତ୍ୟବ୍ରତ ଆଗେଇ ଯାଇ ସାମନା ଟେବୁଲ ଉପରେ ବସିଲେ ।

: ଆପଣଙ୍କର କେତେ କୁଇଣ୍ଟାଲ ଦରକାର ଏଇ ଫର୍ମଟା ପୂରଣ କରି କିଛି ଆଡ୍‌ଭାନ୍‌ସ ଦେଇ ରଖି ଯାଆନ୍ତୁ, ଆଗାମୀ କାଲି ମାଲ ଡେଲିଭରି ହୋଇଯିବ । ତରଫଦାର ପ୍ୟାଡ଼ରୁ ଖଣ୍ଡିଏ ଅର୍ଡ଼ର ଫର୍ମ ଛିଣ୍ଡାଇ ସତ୍ୟବ୍ରତ ଆଡ଼କୁ ବଢ଼ାଇ ଦେଲେ ।

ସତ୍ୟବ୍ରତ ଫର୍ମଟି ହାତରେ ଧରି କହିଲେ : ଧନ୍ୟବାଦ । ମୁଁ ଥାନାରୁ ଆସିଛି ଗୋଟିଏ ଜରୁରୀ କାମରେ ।

:ଥାନାରୁ ଆସିଛନ୍ତି, ତରଫଦାର ଏଥର ମୁଣ୍ଡ ଉଠାଇ ଚାହିଁଲେ । କହିଲେ, ଆମେ ତ ସେପରି କିଛି ଚୋରା କାରବାର କରୁ ନାହୁଁ । ତେଣୁ ଥାନାରୁ ଆମ ପାଖକୁ କେହି ଆସିବାର କଥା ନୁହେଁ ।

: ମୁଁ ଚୋରା କାରବାର ତଦନ୍ତରେ ଆସି ନାହିଁ ମିଷ୍ଟର ତରଫଦାର, ମୁଁ ଆସିଛି ଆଉ ଗୋଟାଏ ଖବର ଜାଣିବାକୁ । ଏଇ ନମ୍ବରର ଗୋଟାଏ ହୁଡ୍ ଖୋଲା ଗାଡ଼ି ଆପଣଙ୍କର ଅଛି କି ? ସତ୍ୟବ୍ରତ ଗାଡ଼ି ନମ୍ବର ଲେଖା କାଗଜଟି ତରଫଦାରଙ୍କୁ ଦେଖାଇଲେ ।

: ହଁ ହଁ, ଆପଣ ଠିକ୍ ନମ୍ବର ଆଣିଛନ୍ତି ଏବଂ ଠିକ୍ ଜାଗାକୁ ଆସିଛନ୍ତି । ଗାଡ଼ିଟା କୋଉ ସାହେବଙ୍କର ଦରକାର ? କେତେବେଳେ ଦରକାର ?

ସତ୍ୟବ୍ରତ ତରଫଦାରଙ୍କ କଥାର ଅନ୍ତର୍ନିହିତ ଉଦ୍ଦେଶ୍ୟ ବୁଝି ପାରି କହିଲେ : ଗାଡ଼ିଟା ସମ୍ବନ୍ଧରେ ଗୋଟାଏ ଇନ୍‌କ୍ୱାରୀ ଅଛି । ଗାଡ଼ିଟା ବର୍ତ୍ତମାନ ମୁଁ ଦେଖି ପାରିବି ?

: ଆରେ ବାବୁ ଖୋଲାଖୋଲି କ'ଣ କୁହନ୍ତୁନା । ଇମିତି ସମୟ ନଷ୍ଟ କରିବାକୁ ମୋତେ ଭଲ ଲାଗେ ନାହିଁ ।

ସତ୍ୟବ୍ରତ ଲକ୍ଷ୍ୟ କଲେ, ଲୋକଟା ଯେତେ ବ୍ୟସ୍ତ ନୁହେଁ, ତା'ଠାରୁ ବ୍ୟସ୍ତତାର ଛଳନା କରୁଛି ବେଶି । ଆଚ୍ଛା କହିଲେ, ଆପଣଙ୍କର ସେଇ ହୁଡ୍ ଖୋଲା ଗାଡ଼ିଟା ଆଜି ସକାଳ ଆଠଟାରୁ ଏପର୍ଯ୍ୟନ୍ତ କୁଆଡ଼େ ଯାଇଥିଲା, କ'ଣ କରୁଥିଲା, ସେ ସମ୍ବନ୍ଧରେ ଗୋଟାଏ ରିପୋର୍ଟ ଆବଶ୍ୟକ ।

: କାହିଁକି ?

: ଦରକାର ଅଛି । ଆପଣ ଆଉ ଅଯଥା ସମୟ ନଷ୍ଟ ନକରି ମୋର ବ୍ୟବସ୍ଥା କରି ଦିଅନ୍ତୁ ।

: କିନ୍ତୁ ସା'ବ୍ ଗାଡ଼ିକୁ ଗ୍ୟାରେଜ୍ ଭିତରେ ଭର୍ତ୍ତି କରି ଗାଡ଼ିର ଡ୍ରାଇଭର ଯେ କିଛି ସମୟ ପୂର୍ବରୁ ଚାଲିଗଲା । ସେ ନ ଆସିବାଯାଏ...

: ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଅପେକ୍ଷା କରୁଛି । ସତ୍ୟବ୍ରତ କହିଲେ ।

ତରଫଦାର ଆଉ କ'ଣ କହିବାକୁ ଯାଉଥିଲେ, କିନ୍ତୁ ଫୋନ୍‌ଟା ବାଜି ଉଠିବାରୁ ସେ ରିସିଭରଟା କାନରେ ଦେଲେ : ହ୍ୟାଲୋ, ହ୍ୟାଲୋ, ହଁ ମୁଁ ତରଫଦାର କହୁଛି । ଆପଣ ? ଓଃ ବ୍ରିଜ୍‌ଲାଲଜୀ, ହଁ ହଁ, କୁହନ୍ତୁ । ତା'ପରେ ? ଆଚ୍ଛା, ନା ନା ଅସୁବିଧା ଅଛି । ପରେ ମୁଁ ଫୋନ୍ କରିବି । ତରଫଦାର ରିସିଭରଟା ଥୋଇ ଦେଲେ ।

ସତ୍ୟବ୍ରତ କହିଲେ : ମିଷ୍ଟର ତରଫଦାର, ଡ୍ରାଇଭର ଆସିବା ପୂର୍ବରୁ ମୁଁ ଟିକିଏ ସେଇ ଗାଡ଼ିଟାକୁ ଦେଖିବାକୁ ଚାହେଁ । ଆଶା କରୁଛି ଆପଣଙ୍କର ଏଥିପାଇଁ କିଛି ଆପତ୍ତି ନଥିବ ।

: ନା, ନା, ଆପଣ ଯାଆନ୍ତୁ, ମୁଁ ଲୋକ ଦେଉଛି । ଏ କୈଳାସ୍ ! ତରଫଦାର ଚିତ୍କାର କରି କୈଳାସକୁ ଡାକିଲେ ।

କୈଳାସ ଆସିଲା ।

ସତ୍ୟବ୍ରତଙ୍କୁ ସାଙ୍ଗରେ ଧରି ଓହ୍ଲାଇ ଗଲା ତଳକୁ । ଗ୍ୟାରେଜ୍ ଉଦ୍ଦେଶ୍ୟରେ ।

କିନ୍ତୁ ଗ୍ୟାରେଜ୍ ଯେ ଫାଙ୍କା ?

କୈଳାସ କହିଲା : ଡ୍ରାଇଭର ବୋଧହୁଏ ଗାଡ଼ିଟା ଧରି ଖାଇବାକୁ ଚାଲି ଯାଇଛି ।

: ଆଉ ତରଫଦାର କହିଲେ ଯେ ଗାଡ଼ି ଗ୍ୟାରେଜ୍‌ରେ ଅଛି, ସତ୍ୟବ୍ରତ ପଚାରିଲେ ।

: ସେ କିପରି ଜାଣିବେ ? ନିଜେ ତ ଆସି ଦେଖୁ ନାହାନ୍ତି । ଡ୍ରାଇଭର ଯାହା କହିଲା ବା ଆମେ ଯାହା କହିଲୁ ସେଇଆ ସେ ବୁଝିବେ ।

: ତା'ହେଲେ ଡ୍ରାଇଭର ଆସିବ କେତେବେଳକୁ ?

: ଏଇ ଅଧଘଣ୍ଟା ଭିତରେ ଆସିଯିବ । ଆପଣ ଯାଆନ୍ତୁ ଅଫିସ୍‌ରେ ବସିଥିବେ, ମୁଁ ଆପଣଙ୍କୁ ଖବର ଦେବି ।

କୈଳାସ ଚାଲି ଯାଉଥିଲା ।

ସତ୍ୟବ୍ରତ ପାଖକୁ ଡାକି କହିଲେ : ତୁମେ ବ୍ରିଜଲାଲଜୀଙ୍କୁ ଚିହ୍ନିଚ ?

: ବ୍ରିଜଲାଲଜୀଙ୍କୁ ମୁଁ ଚିହ୍ନିନାହିଁ ନା ଆଜ୍ଞା । ସେ ମାଲିକଙ୍କର ବହୁତ ପୁରାନା ଦୋସ୍ତ ।

: ତାଙ୍କ ଘର ଠିକଣା ଜାଣିଛ ?

: ଅଲବତ୍ । ଆପଣଙ୍କର ଜରୁରତ୍ ଥିଲେ ମୁଁ ଆପଣଙ୍କୁ ବତେଇ ଦେବି ।

ସତ୍ୟବ୍ରତ ପକେଟରୁ ନୋଟ୍ ବହି ବାହାର କରି ଠିକଣା ଟିପିଲେ ।

କୈଳାସକୁ କହିଲେ : ମିଷ୍ଟର ତରଫଦାରଙ୍କୁ କହିଦେବ, ମୁଁ ପରେ ଆସି ଦେଖା କରିବି । ଗୋଟାଏ ଜରୁରୀ କାମରେ ଯାଉଛି ।

ସତ୍ୟବ୍ରତ ବାହାରିଗଲେ ବ୍ରିଜଲାଲଜୀଙ୍କ ଉଦ୍ଦେଶ୍ୟରେ ।

କିନ୍ତୁ ବ୍ରିଜଲାଲଙ୍କ ଘରେ ପ୍ରବେଶ କରି ସେ ଆହୁରି ଅବାକ୍ ହୋଇଗଲେ । ତାଙ୍କ ଡ୍ରଇଂରୁମ୍‌ରେ ରେବେକା ମୁଖାର୍ଜୀ ବସିଛି ।

ସତ୍ୟବ୍ରତଙ୍କର ପାଦ ଦୁଇଟା ପଛକୁ ଫେରି ଆସିଲା ।

ସେଇ ମୁହୂର୍ତ୍ତରେ ଡ୍ରଇଂ ରୁମରେ ଆବିର୍ଭାବ ହେଲା ବ୍ରିଜଲାଲଙ୍କର । ସେ ହାତଠାରି ରେବେକା ମୁଖାର୍ଜୀକୁ ଡାକି ନେଇଗଲେ ଘର ଭିତରକୁ ।

ସେମାନେ ଚାଲିଯିବା ପରେ ଡ୍ରଇଂ ରୁମ୍‌ରେ ପ୍ରବେଶ କଲେ ସତ୍ୟବ୍ରତ ମହାପାତ୍ର ।

ସମସ୍ୟା ବହୁଳ ପରିସ୍ଥିତି । ସତ୍ୟବ୍ରତ ଘଟଣାଟାକୁ ଠିକ୍-ସଜାଡ଼ି ନେଇ ପାରୁ ନଥିଲେ ।

ସେଇ ମୁହୂର୍ତ୍ତରେ ସତ୍ୟବ୍ରତଙ୍କ ଚିନ୍ତାରେ ବ୍ୟାଘାତ ସୃଷ୍ଟି କଲେ ବ୍ରିଜଲାଲଜୀ ନିଜେ ।

ସତ୍ୟବ୍ରତଙ୍କର ଆକସ୍ମିକ ଆବିର୍ଭାବରେ ତାଙ୍କର ସର୍ବାଙ୍ଗ ଯେପରି ଶୀତେଇ ଉଠିଲା ।

ସତ୍ୟବ୍ରତ କରମର୍ଦ୍ଦନ କରିବା ପାଇଁ ହାତ ବଢ଼ାଇ ଦେଲେ । ସେ ଅନୁଭବ କଲେ ବ୍ରିଜଲାଲଙ୍କର ହାତ ଥରୁଛି ।

ଆସ୍ତେ ଆସ୍ତେ କହିଲେ : ହଠାତ୍ ଚାଲି ଆସିଲି ।

: ଭଲ କଲେ । ପରିଚୟ ତ ଆଗରୁ ହୋଇଛି । ଆପଣ ମୋ ଘରକୁ ଆସି ବରଂ ପରିସ୍ଥିତିଟାକୁ ଆହୁରି ସୁଦୃଢ଼ କଲେ । ବସନ୍ତୁ ମୁଁ ଆପଣଙ୍କ ପାଇଁ ଚା’ କରିବାକୁ କହି ଆସୁଛି ।

ସତ୍ୟବ୍ରତ ବାଧା ଦେଲେ ନାହିଁ ।

ବ୍ରିଜଲାଲଜୀ ଉଠିଗଲେ ପୁଣି ଘର ଭିତରକୁ ।

ସତ୍ୟବ୍ରତ ଡ୍ରଇଂ ରୁମ୍‌ର ପ୍ରତିଟି ଆସବାବ ଉପରେ ତୀକ୍ଷ୍ଣ ଦୃଷ୍ଟି ବୁଲେଇ ଚାଲିଥିଲେ ।

ସବୁ ମାମୁଲି ପଦାର୍ଥ । ଟେବୁଲ୍, ଚେଆର, ସୋଫା ଆଉ ବୁକ୍ ସେଲ୍‌ଫରେ କେତେ ଖଣ୍ଡ ବହି । ଏଣୁ ତେଣୁ ଛବି ଦି’ଖଣ୍ଡ, ମାଟିର ମୂର୍ତ୍ତି କେତୁଟା । ଏହାଛଡ଼ା ଅଧିକ କିଛି ଆଉ ଦୃଷ୍ଟି ଆକର୍ଷଣ କଲା ଭଳି ନଥିଲା ।

କିନ୍ତୁ ରେବେକା ମୁଖାର୍ଜୀ ! ସେ ପୁଣି ଏଠାରେ କାହିଁକି ?

ବ୍ରିଜଲାଲଜୀ ପୁଣି ଫେରି ଆସିଲେ । କହିଲେ : ମୋର ପରମ ସୌଭାଗ୍ୟ ଆପଣ ଆସି ଆମ ଘରେ ପାଦଧୂଳି ପକାଇଲେ ।

ସତ୍ୟବ୍ରତ କହିଲେ : ସେ କଥା ନୁହେଁ ବ୍ରିଜଲାଲଜୀ, ବରଂ ଭାଗ୍ୟବାନ ମୁଁ ଯେ, ଏଠାକୁ ଆସି ଆପଣମାନଙ୍କ ପରି ମହତ୍ ଜନମାନଙ୍କ ସହିତ ପରିଚିତ ହେଲି । ସୁଖ ଦୁଃଖ ବିନିମୟ କରିବାର ସୌଭାଗ୍ୟ ଅର୍ଜନ କଲି ।

ହଠାତ୍ ସେଇ ସମୟରେ ରେବେକା ମୁଖାର୍ଜୀ ଆସି ଉପସ୍ଥିତ ହେଲା । ସତ୍ୟବ୍ରତଙ୍କ ଆଡ଼େ ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁ କହିଲା, : ଆପଣ ଏଠାରେ ମିଷ୍ଟର ମହାପାତ୍ର ?

: ଆସିଛି, ବ୍ରିଜଲାଜଜୀ ମୋର ପରିଚିତ ତ । ଇମିତି ଥରେ ବୁଲି ଆସିଲି । ଆଉ ଆପଣ...

: ବ୍ରିଜଲାଲଜୀ ମୋର ଅତି ପୁରୁଣା ହିତାକାଂକ୍ଷୀ । ପ୍ରଥମେ ବାହାର ଦୁନିଆ ସହିତ ସେହି ମୋତେ ପରିଚିତ କରାଇଲେ । ସେହି ମୋତେ ନେଇ ଇଭିନିଂ କ୍ଲବ୍‌ରେ ମେମ୍ବର କରାଇ ଦେଇଥିଲେ । ତାଙ୍କରି ଦୟାରୁ ଆଜି ଆପଣଙ୍କ ସହିତ ପରିଚୟ ହେବାର ସୌଭାଗ୍ୟ ବି ମୁଁ ଅର୍ଜନ କଲି । ରେବେକା ମୁଖାର୍ଜୀ ଅତି ସରଳ ଭାବରେ ତାଙ୍କ ମନର ଅଭିବ୍ୟକ୍ତି ବ୍ୟକ୍ତ କରୁଥିଲା ।

ବ୍ରିଜଲାଲଜୀ କହିଲେ : ରେବା ସହିତ ଆପଣଙ୍କର ଯେ ପରିଚୟ ଅଛି, ମୁଁ ଜାଣି ନଥିଲି । ବିଚାରୀ ଖୁବ୍ ଦୁଃଖୀ ।

ସତ୍ୟବ୍ରତ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

ରେବେକା ମୁଖାର୍ଜୀ କହିଲା : ଆପଣଙ୍କ କଥା ଅନୁସାରେ ମୁଁ ଅପେକ୍ଷା କରୁଛି । ସପ୍ତାଏ ଖଣ୍ଡେ ପରେ ମୋତେ କିନ୍ତୁ ନିର୍ଭର ପ୍ରତିଶ୍ରୁତି ଦେବାକୁ ହେବ । ମୁଁ ମୋର ବନ୍ଧୁ ବାନ୍ଧବମାନଙ୍କ ପାଖକୁ ଚିଠି ପଠାଇ ଦେଇଛି । ଖୁବ୍ ଶୀଘ୍ର ଗୋଟାଏ ପାର୍ଟିର ଆୟୋଜନ ନକଲେ, କାହାରି ଆଗରେ ମୁହଁ ଦେଖାଇ ହେବ ନାହିଁ ।

: ନା ନା, ସେ ବିଷୟରେ ଆପଣ ନିଶ୍ଚିନ୍ତ ରୁହନ୍ତୁ ମିସ୍ ମୁଖାର୍ଜୀ । ମୁଁ କଥା ଦେଇଛି ଯେତେବେଳେ ଗୋଟାଏ କିଛି ବ୍ୟବସ୍ଥା ନିଶ୍ଚୟ କରିବି ।

ଚାକର କଫି ଓ ଜଳଖିଆ ଧରି ଆସି ସେଠାରେ ପହଞ୍ଚିଲା ।

ବ୍ରିଜଲାଲଜୀ ଚେଆର ଟେବୁଲ ଗୁଡ଼ିକ ଏପାଖ ସେପାଖ ଟଣା ଓଟରା କରି ଦେଇ ଟ୍ରେ'ଟା ଚାକର ହାତରୁ ନେଇ ଟେବୁଲ ଉପରେ ରଖିଲେ ।

ସତ୍ୟବ୍ରତ କହିଲେ : କେବଳ କଫି । କଫି ଛଡ଼ା ଆଉ କିଛି ପେଟରେ ଧରିଲା ଭଳି ଅବସ୍ଥା ନାହିଁ ।

କଫିପିଆ ଶେଷ କରି ସତ୍ୟବ୍ରତ ଉଠିଲେ । କହିଲେ : ମୋର ଗୋଟାଏ ଜରୁରୀ କାମ ଅଛି, ପୁଣି କେବେ ଆସି ଆପଣମାନଙ୍କୁ ବିରକ୍ତ କରିବି ।

ରେବେକା ମୁଖାର୍ଜୀ ମଧ୍ୟ ଉଠି ଠିଆ ହେଲା । କହିଲା : ମୁଁ ଆପଣଙ୍କ ସହିତ ଗଲେ କିଛି ଅସୁବିଧା ହେବ କି ?

: ନା, ନା, ଅସୁବିଧା କ'ଣ । ଆପଣ ଆସନ୍ତୁ । ମୁଁ ଆପଣଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇ ଦେବି । ସତ୍ୟବ୍ରତ କହିଲେ ।

ବ୍ରିଜଲାଲଜୀ କିନ୍ତୁ କ୍ଷୀଣ କଣ୍ଠରେ ଆପତ୍ତି କଲେ : ନା ରେବା, ମହାପାତ୍ରଜୀ କାମର ଲୋକ । ତାଙ୍କୁ ଯାଇ ବିରକ୍ତ କରିବା ତମର ଉଚିତ ହେବ ନାହିଁ । ବରଂ ଆସ ମୁଁ ତମକୁ ଛାଡ଼ି ଦେଇ ଆସିବି ।

ରେବେକା କହିଲା : ମିଷ୍ଟର ମହାପାତ୍ରଙ୍କ ସହିତ ମୋର କେତେକ ଜରୁରୀ ପରାମର୍ଶ ଅଛି । ମୁଁ ତାଙ୍କୁ ମୋଟେ ବିରକ୍ତ କରିବି ନାହିଁ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ।

ସତ୍ୟବ୍ରତ କହିଲେ : ମୋର ବିଶେଷ କାମ ନାହିଁ, ତେଣୁ ଆପଣ ଚିନ୍ତା କରନ୍ତୁ ନାହିଁ । ମିସ୍ ମୁଖାର୍ଜୀଙ୍କୁ ମୁଁ ଠିକ୍ ଜାଗାରେ ପହଞ୍ଚାଇ ଦେଇ ପାରିବି ।

ସେମାନେ ଚାଲିଗଲେ ।

ବ୍ରିଜଲାଲଜୀ ଶୂନ୍ୟ ଦୃଷ୍ଟିରେ ସେମାନଙ୍କ ପଥକୁ ଚାହିଁ ରହିଲେ ।

ସତ୍ୟବ୍ରତ ଟ୍ୟାକ୍ସିରେ ଉଠି କହିଲେ : ମିସ୍ ମୁଖାର୍ଜୀ, ବାଟରେ ମୋର ଟିକିଏ କାମ ଅଛି । ଆପଣଙ୍କର ଯଦି କିଛି ଅସୁବିଧା ନଥାଏ ତା'ହେଲେ ମୁଁ ସେଇ କାମଟା ଶେଷ କରି ଯାଆନ୍ତି ।

ରେବେକା ମୁଖାର୍ଜୀ ସମ୍ମତି ଜଣାଇଲା । କହିଲା : ମୋର କିଛି ଆପତ୍ତି ନାହିଁ । ମୋତେ ଯଦି ଆପଣ ସାଙ୍ଗରେ ଧରି ବାରବର୍ଷ ବୁଲାନ୍ତି, ତଥାପି କେହି ଆପତ୍ତି କରିବେ ନାହିଁ । କିନ୍ତୁ ମୋ କଥାଟା ଆପଣଙ୍କୁ ମନେ ରଖିବାକୁ ହେବ ।

: ମନେ ଅଛି, ମୋର ଆପଣଙ୍କ କଥା ମନେ ଅଛି ମିସ୍ ମୁଖାର୍ଜୀ । ଆଚ୍ଛା, ଆପଣ ଯଦି କିଛି ମନେ ନ କରିବେ ଗୋଟାଏ କଥା ମୁଁ ଆପଣଙ୍କୁ ପଚାରିବି ।

ରେବେକା ମୁଖାର୍ଜୀ ହସିଲା । କହିଲା : ପଚାରନ୍ତୁ ।

: ଆପଣ ରମଣୀ ରଞ୍ଜନ ଚଉଧୁରୀଙ୍କୁ ଚିହ୍ନନ୍ତି ?

: ହଁ, କିନ୍ତୁ ସେ ତ ମୃତ । ତାଙ୍କ କଥା ପୁଣି କାହିଁକି ?

: ଇମିତି ପଚାରୁଥିଲି । ସେ ଜୀବିତ ଥିବାବେଳେ ଆପଣଙ୍କ ସହିତ ତାଙ୍କର କିପରି ସମ୍ବନ୍ଧ ଥିଲା ?

: ଖୁବ୍ ଭଲ । ମୋତେ ସେ ପ୍ରଚୁର ସ୍ନେହ କରୁଥିଲେ ।

: ଆଉ ଆପଣ ? ସତ୍ୟବ୍ରତ ପଚାରିଲେ ।

: ମୁଁ ? ରେବେକା ହସିଲା । କହିଲା, ମୁଁ ବି ତାଙ୍କୁ ଭକ୍ତି କରୁଥିଲି ।

: ଆପଣ ତାଙ୍କ ଘରକୁ କେବେ ଯାଇଛନ୍ତି ?

: ଅନେକଥର । କିନ୍ତୁ ସେ କଥା ଆଉ କାହିଁକି ମିଷ୍ଟର ମହାପାତ୍ର । କୌଣସି ମୃତ ବ୍ୟକ୍ତିଙ୍କ ସମ୍ପର୍କରେ ଆଲୋଚନା କରିବା ପାଇଁ ମୋତେ ମୋଟେ ଭଲ ଲାଗେ ନାହିଁ ।

: କିନ୍ତୁ ଗୋଟାଏ କଥା କ'ଣ ଜାଣନ୍ତି ମିସ୍ ମୁଖାର୍ଜୀ, ମିଷ୍ଟର ଚଉଧୁରୀ, ମାନେ ମୃତ ଚଉଧୁରୀଙ୍କ କଥା ମୁଁ କହୁଛି । ସେ ବଞ୍ଚିକରି ଥିଲେ ଆପଣଙ୍କ ସମସ୍ୟାରେ ମୋତେ ବହୁତ ସାହାଯ୍ୟ କରି ପାରି ଥାଆନ୍ତେ ।

: କିପରି ?

: ତାଙ୍କ ସହିତ ମିଷ୍ଟର ହାଜରାଙ୍କର ଯୋଗାଯୋଗ ଥିଲା ।

: ନା ନା ମିଷ୍ଟର ମହାପାତ୍ର ! ଭୁଲ୍, ଏ ଧାରଣା ଆପଣଙ୍କର ସଂପୂର୍ଣ୍ଣ ଭୁଲ୍ । ଆପଣଙ୍କୁ ବ୍ରିଜଲାଲଜୀ ବୋଧହୁଏ ଏହି ପରାମର୍ଶ ଦେଇଛନ୍ତି ?

ସତ୍ୟବ୍ରତ ଲକ୍ଷ୍ୟ କଲେ ରେବେକା ହଠାତ୍ ଯେପରି କ୍ଷିପ୍ତ ହୋଇ ଉଠିଛି । ସେ କହିଲେ : ପରାମର୍ଶଟା ବ୍ରିଜଲାଲଙ୍କର ହେଲେ ମଧ ସମ୍ବାଦଟା ଅନେକାଂଶରେ ସତ୍ୟ ।

: ଆପଣ ତା'ହେଲେ ଭୁଲ୍ ପଥରେ ପରିଚାଳିତ ହୋଇଛନ୍ତି ମିଷ୍ଟର ମହାପାତ୍ର । ବ୍ରିଜଲାଲ ମୋତେ ବି ସେହି କଥା କହିଥିଲେ । ମୋତେ ବି ଆଶ୍ୱାସନା ଦେଇଥିଲେ । ଚଉଧୁରୀ ସାହେବଙ୍କ ସହିତ ମିଷ୍ଟର ହାଜରାଙ୍କର ଯୋଗାଯୋଗ ଅଛି ଏବଂ ଚଉଧୁରୀ ସାହେବଙ୍କୁ ଧରି ପାରିଲେ ମୁଁ ମିଷ୍ଟର ହାଜରାଙ୍କ ପାଖରେ ପହଞ୍ଚି ପାରିବି । ସେ କଥା ବ୍ରିଜଲାଲଜୀ ପ୍ରତିଦିନ ମୋ କାନ ପାଖରେ କହୁଥିଲେ । ପ୍ରତିଦିନ ସେ ମୋତେ ସାନ୍ତ୍ୱନା ଦେଇ ଚଉଧୁରୀ ସାହେବଙ୍କୁ ବିନୀତ ନିବେଦନ କରିବାକୁ କହିଥିଲେ ।

: ତା'ପରେ... ?

ହଠାତ୍ ରେବେକା ମୁଖାର୍ଜୀଙ୍କ ମୁଖ ଅଶ୍ରୁ ପ୍ଲାବିତ ହୋଇ ଉଠିଥିଲା । କେଜାଣି କାହିଁକି ସେ ନୀରବରେ କାନ୍ଦିବାକୁ ଆରମ୍ଭ କରି ଦେଇଥିଲେ ।

ସତ୍ୟବ୍ରତ ଆଉ କିଛି ପଚାରିଲେ ନାହିଁ ।

ଟ୍ୟାକ୍ସି ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା ।

ସତ୍ୟବ୍ରତ ଓହ୍ଲାଇ ଯାଇ ରେବେକା ମୁଖାର୍ଜୀଙ୍କୁ ଅପେକ୍ଷା କରିବାକୁ କହିଗଲେ ।

ମିଷ୍ଟର ତରଫଦାରଙ୍କ ଅଫିସ୍‌ରେ ସତ୍ୟବ୍ରତ ପହଞ୍ଚିବା ମାତ୍ରକେ କୈଳାସ ଛୁଟି ଆସି କହିଲା : ଗ୍ୟାରେଜରେ ଗାଡ଼ି ସହ ଡ୍ରାଇଭର ଆପଣଙ୍କୁ ଅପେକ୍ଷା କରୁଛି ।

ସତ୍ୟବ୍ରତ ମିଷ୍ଟର ତରଫଦାରଙ୍କୁ ଚାହିଁ କହିଲେ : ଗାଡ଼ିଟା ଅଧଘଣ୍ଟା ପାଇଁ ମୁଁ ସାଙ୍ଗରେ ନେଇଯିବି, ନିର୍ଦ୍ଦିଷ୍ଟ କେତେଟା ସ୍ଥାନକୁ ସେଇ ଗାଡ଼ିଟାରେ ମୋର ଯିବାର କଥା । ଆପଣଙ୍କର କିଛି ଆପତ୍ତି ଅଛି ?

ମିଷ୍ଟର ତରଫଦାର ମୁଣ୍ଡ ହଲାଇ ବାରଣ କଲେ । କହିଲେ, : ଆପଣ ଇଚ୍ଛା କଲେ ଗାଡ଼ିଟା ଦୁଇ ଚାରିଦିନ ରଖି ପାରନ୍ତି । ମୋର କିଛି ଆପତ୍ତି ନାହିଁ ।

ସତ୍ୟବ୍ରତ କୈଳାସ ସାଙ୍ଗରେ ତଳକୁ ଓହ୍ଲାଇ ଆସିଲେ ।

ଡ୍ରାଇଭର ସତ୍ୟବ୍ରତଙ୍କୁ ଦେଖି ସଲାମ୍ କଲା ।

ସତ୍ୟବ୍ରତ ଗାଡ଼ିଟା ଆଡ଼େ ଚାହିଁ ଦେଖିଲେ, ହଁ ସେଇ ଚକୋଲେଟ ରଙ୍ଗର ହୁଡ୍‌ଖୋଲା ଗାଡ଼ିଟା । ସେତେବେଳେ କେବଳ ଆଗ ସିଟ୍‌ରେ ଡ୍ରାଇଭର ଛଡ଼ା ଅନ୍ୟ କେହି ନଥିଲେ ।

ସତ୍ୟବ୍ରତ ଧୀରେ ଧୀରେ ଆଗେଇ ଯାଇ ଗାଡ଼ିର ଦରଜା ଖୋଲି ଡ୍ରାଇଭର ପାଖ ସିଟ୍‌ରେ ବସିଲେ । ଡ୍ରାଇଭରକୁ ପାଖକୁ ଡାକି କହିଲେ : ଏ ଗାଡ଼ିର ଡିଉଟି ତମେ ସବୁବେଳେ କରିଥାଅ ?

: ଆଜ୍ଞା ।

: ଏ ଗାଡ଼ି କ'ଣ ଅନ୍ୟ କେହି ଡ୍ରାଇଭ୍ କରନ୍ତି ?

: ବେଳେ ବେଳେ, ମୁଁ ଯେତେବେଳେ ନଥାଏ ।

: ହୁଁ, ଆଜି କେତେବେଳୁ ତମେ ଡିଉଟିରେ ଜଏନ୍ କରିଛ ?

: ସକାଳ ଆଠଟାରୁ ।

: ଡିଉଟିରେ ଜଏନ୍ କରିବା ପରଠାରୁ, ଗାଡ଼ି ଗ୍ୟାରେଜରୁ ବାହାର କରି ଏତେବେଳଯାଏ କୁଆଡ଼େ କୁଆଡ଼େ କି କାମରେ ଘୂରିଛ, ସେଗୁଡ଼ିକର ହିସାବ ଦିଅ ।

ଡ୍ରାଇଭର ସତ୍ୟବ୍ରତଙ୍କ ମୁହଁ ଆଡ଼କୁ ଟିକିଏ ଅନାଇ ଶାନ୍ତ ସ୍ୱରରେ କହିଲା : ଗ୍ୟାରେଜରୁ ଗାଡ଼ି ବାହାର କରି ବହୁତ ବେଳଯାଏ ଚୁପ୍ ଚାପ୍ ଅପେକ୍ଷା କରିବାକୁ ପଡ଼ିଥିଲା । ତା'ପରେ ମାଲିକ ମୋତେ ହୁକୁମ ଦେଲେ ତାଙ୍କର ଜଣେ ଲୋକକୁ ନେଇ ବାଲିଗଞ୍ଜରେ ଛାଡ଼ି ଆସିବା ପାଇଁ । ବାସ୍ ସେତିକି ଡିଉଟି । ତା'ପରେ ମୁଁ ଫେରି ଆସି କିଛି ସମୟ ଅପେକ୍ଷା କରି ଗାଡ଼ି ନେଇ ଖାଇବାକୁ ଚାଲି ଯାଇଥିଲି, ଫେରି ଆସି ଶୁଣିଲି ଆପଣ ମୋତେ ଖୋଜୁଛନ୍ତି ।

ସତ୍ୟବ୍ରତ ଗମ୍ଭୀର କଣ୍ଠରେ କହିଲେ : ଯଦି ତୁମ କଥା ସତ୍ୟ ହୋଇଥାଏ, ତା'ହେଲେ ତୁମେ ଫେରିଲାବେଳେ ବାଲିଗଞ୍ଜ ସାର୍କୁଲାର ରୋଡ଼ ବାଟେ ଫେରିଥିଲ ?

: ଆଜ୍ଞା ।

: ସାର୍କୁଲାର ରୋଡ଼ କ୍ରସିଂରେ ଯେଉଁ କୋଠାଟା ସେଇ କୋଠା ଉପରୁ ଗୋଟାଏ ଜାପାନୀ ଖେଳଣା ତମ ଗାଡ଼ି ଉପରକୁ ଖସି ପଡ଼ିଥିଲା, ଦେଖିଛ ?

: ଜାପାନୀ ଖେଳଣା ? ଡ୍ରାଇଭର କଣ୍ଠରେ ବିସ୍ମୟ ଫୁଟାଇ ଗାଡ଼ିର ପଛ ସିଟ୍‌କୁ ଚାହିଁଲା । ତା'ପରେ ସିଟ୍ ପାଖକୁ ଆଗେଇ ଯାଇ ଆଶ୍ଚର୍ଯ୍ୟ ଆଖିରେ ଭିତରକୁ ଚାହିଁ କହିଲା : ଆପଣ ଠିକ୍ କହିଛନ୍ତି ସାର୍ । ଏଇ ଖେଳଣା କଥା ଆପଣ କହୁଛନ୍ତି ?

ଡ୍ରାଇଭର ସିଟ୍ ଭିତରୁ ଗୋଟାଏ ଖେଳଣା ଟାଣି ବାହାର କରି ସତ୍ୟବ୍ରତଙ୍କୁ ଦେଖାଇଲା ।

ସତ୍ୟବ୍ରତ ଗାଡ଼ିରୁ ଓହ୍ଲାଇ ପଡ଼ି ଡ୍ରାଇଭର ହାତରୁ ଖେଳଣାଟା ଟାଣି ନେଇ କହିଲେ : ତମେ ଆଗରୁ ଦେଖି ନଥିଲ ?

: ନା, ମୁଁ ତ ମୋଟେ ଲକ୍ଷ୍ୟ କରି ନାହିଁ । ତା'ଛଡ଼ା ଗାଡ଼ିର ପଛ ସିଟ୍‌ରେ ଆଉ କେହି ବସି ନାହାନ୍ତି । ତେଣୁ...

ସତ୍ୟବ୍ରତଙ୍କ ଗମ୍ଭୀର ମୁହଁ ଆଡ଼େ ଚାହିଁ ଡ୍ରାଇଭର ନୀରବ ହୋଇଗଲା ।

ସତ୍ୟବ୍ରତ ଅତ୍ୟନ୍ତ ଧ୍ୟାନ ସହକାରେ ଖେଳଣାଟିକୁ ଦେଖୁଥିଲେ । ତା'ହେଲେ ତାଙ୍କର ସମସ୍ତ ଶ୍ରମ, ସମସ୍ତ ସ୍ପେକୁଲେସନ ଏଇଠି ଆସି ବ୍ୟର୍ଥ ହୋଇଗଲା !

ସତ୍ୟବ୍ରତ ଖେଳଣାଟିକୁ ହାତରେ ଧରି ପୁଣି ଗାଡ଼ିର ସିଟ୍ ଉପରେ ଯାଇ ବସିଲେ । ଡ୍ରାଇଭରକୁ କହିଲେ, ଗାଡ଼ିଟା ଷ୍ଟାର୍ଟ କରିବା ପାଇଁ ।

ଡ୍ରାଇଭର ଗାଡ଼ି ଚଳେଇ ମେନ୍ ରୋଡ଼ ଉପରକୁ ନେଇଗଲା ।

ସତ୍ୟବ୍ରତ ଗାଡ଼ି ଅଟକେଇବାକୁ କହିଲେ ।

ଟ୍ୟାକ୍‌ସିରେ ରେବେକା ମୁଖାର୍ଜୀ ତନ୍ଦ୍ରାଛନ୍ନ ହୋଇ ପଡ଼ିଥିଲା ।

ସତ୍ୟବ୍ରତ ଡାକି ଆଣି ଏହି ଗାଡ଼ିରେ ବସାଇଲେ ଏବଂ ନିଜେ ରେବେକା ମୁଖାର୍ଜୀ ପାଖରେ ପଛ ସିଟରେ ବସି ଡ୍ରାଇଭରକୁ ଗାଡ଼ି ଚଳେଇବାକୁ କହିଲେ ।

ରେବେକା ମୁଖାର୍ଜୀ ଧୀରେ ଧୀରେ ତନ୍ଦ୍ରାମୁକ୍ତ ହୋଇ ପ୍ରଥମେ ସତ୍ୟବ୍ରତ ହାତରୁ ଖେଳଣାଟା ଟାଣିନେଲା । ଆଶ୍ଚର୍ଯ୍ୟ କଣ୍ଠରେ ପଚାରିଲା : ଏଇଟା କେଉଁଠୁ ପାଇଲେ ?

ସତ୍ୟବ୍ରତ ଉତ୍ସାହିତ ହୋଇ ପଚାରିଲେ : ଆପଣ ଏଇଟାକୁ ଚିହ୍ନନ୍ତି ?

ଖେଳଣାଟା ଏପାଖ ସେପାଖ କରି ଦେଖି ସାରିବା ପରେ ରେବେକା ମୁଖାର୍ଜୀର ଉତ୍ସାହ ଯେପରି କମିଗଲା ।

ଖେଳଣାଟା ସେ ସତ୍ୟବ୍ରତ ହାତକୁ ଫେରାଇ ଦେଇ କହିଲେ : ଇଏ ସିଏ ନୁହେଁ ।

: ମାନେ ? ସତ୍ୟବ୍ରତ କଣ୍ଠରେ ବିସ୍ମୟ ଫୁଟାଇ ପଚାରିଲେ ।

ରେବେକା ଅଳ୍ପ ହସି କହିଲା : ଚଉଧୁରୀ ସାହେବଙ୍କର ଏହିପରି ଗୋଟିଏ ପ୍ରିୟ ଖେଳଣା ଥିଲା । ସେ ଏକା ବସିଥିବା ସମୟରେ ସେଇ ଖେଳଣାଟିକୁ ଧରି ଖେଳନ୍ତି । ମୁଁ ଅନେକ ଥର ଦେଖିଛି ।

: ତାହେଲେ ଏଇଟା ଚଉଧୁରୀ ସାହେବଙ୍କ ଖେଳଣା ନୁହେଁ ?

: ନା, ଏଇଟା ତା'ପରି ଏତେ ସୁନ୍ଦର ନୁହେଁ, ବିଶେଷ କରି ତା' ଆଖି ଯୋଡ଼ିକ ଭାରି ସୁନ୍ଦର ଥିଲା, ଉଜ୍ଜ୍ୱଳ ଥିଲା । ଦେଖିଲେ ଜୀବନ୍ତ ବାଳିକା ପରି ମନେ ହେଉଥିଲା ।

: ଆପଣ ସେଇ ଖେଳଣାଟାକୁ ଦେଖିଲେ ଚିହ୍ନି ପାରିବେ ?

ହଠାତ୍ ରେବେକା ମୁଖାର୍ଜୀ ଚିତ୍କାର କରି ଉଠିଲା : ଏ ଡ୍ରାଇଭର, ଗାଡ଼ି ରୋକୋ, ଗାଡ଼ି ରୋକୋ, ଏ ଯେ ସେଇ ଗାଡ଼ି, ନା ନା ନା, ମୋତେ ରକ୍ଷାକର । ସତ୍ୟବ୍ରତ ବାଧା ଦେଉ ଦେଉ ରେବେକା ଅତର୍କିତ ଭାବରେ ଗାଡ଼ି ଉପରୁ ତଳକୁ ଡେଇଁ ପଡ଼ିଲା ।

ଆଶ୍ଚର୍ଯ୍ୟ !

ସତ୍ୟବ୍ରତ ଅବାକ୍ ହୋଇ ଗାଡ଼ିରୁ ଓହ୍ଲାଇ ପଡ଼ିଲେ ।

ଛୁଟିଗଲେ ରେବେକା ମୁଖାର୍ଜୀ ପାଖକୁ ।

ଡ୍ରାଇଭର ମଧ୍ୟ ଧାଇଁଗଲା ସେଠାକୁ ।

କଥା କ'ଣ ! ହଠାତ୍ ରେବେକାର ହେଲା କ'ଣ ? ସେ ବା ଏପରି ଚିତ୍କାର କରି ଉଠିଲା କାହିଁକି ? 'ଏ ଯେ ସେଇ ଗାଡ଼ି', ମାନେ ?

ସତ୍ୟବ୍ରତ ନଇଁପଡ଼ି ଦେଖିଲେ, ରେବେକାର ମୁଣ୍ଡରେ ଆଘାତ ଲାଗିଛି । ରେବେକା

ଚେତା ହରାଇଛି ।

ରାସ୍ତାରେ ଭିଡ଼ ଜମିଗଲା ।

ସତ୍ୟବ୍ରତ ସହ ଦୁଇ ଚାରିଜଣ ପଥଚାରୀ ଧରା ଧରି କରି ରେବେକାକୁ ପୁଣି ଗାଡ଼ିରେ ଉଠାଇଲେ ।

ଏଥର ଗାଡ଼ି ଚାଲିଲା ହସ୍‌ପିଟାଲ ଅଭିମୁଖରେ ।

ସତ୍ୟବ୍ରତ ମୁଣ୍ଡରେ ଭାବନାର ଚକା ଘୂରିଲା ପ୍ରବଳ ବେଗରେ ।

ହଠାତ୍ ଏପରି ଏକ ଅଘଟଣ ଘଟିଲା କାହିଁକି ? ରେବେକା ମୁଖାର୍ଜୀ କ'ଣ ଏଇ ଗାଡ଼ିରେ ବସି, ଅନ୍ୟ କେଉଁଠାକୁ ବା କେଉଁଠି କିଛି ଦୁଷ୍କର୍ମର ସଙ୍ଗୀ ହେବାକୁ, କାହାରି ସହିତ...

ସତ୍ୟବ୍ରତଙ୍କ ଭାବନା ଥମି ଯାଇଥିଲା ।

ଜାପାନୀ ଖେଳଣାଟା ଗାଡ଼ିର ଗତି ସହିତ ତାଳ ମିଳେଇ ଆଖି ମିଟି ମିଟି କରୁଥିଲା ।

ରେବେକା ମୁଣ୍ଡରୁ ରକ୍ତ ଝରୁଥିଲା ।

ସତ୍ୟବ୍ରତ ଏହିସବୁ ଦୁଷ୍କର୍ମର ନାୟକ ପରି ସିଟ୍ ଉପରେ ବସିରହି ଯେପରି ଆଉ ଏକ ଦୁର୍ଘଟଣାର ପ୍ରତୀକ୍ଷା କରୁଥିଲେ ।

କିନ୍ତୁ ଦୁର୍ଘଟଣା ଆଉ କିଛି ଘଟି ନଥିଲା ।

ସତ୍ୟବ୍ରତ ରେବେକାକୁ ହସ୍‌ପିଟାଲରେ ଭର୍ତ୍ତି କରି, ସେଇ ହୁଡ୍ ଖୋଲା ଚକୋଲେଟ ରଙ୍ଗର ଗାଡ଼ିଟାକୁ ନେଇ ବାଲିଗଞ୍ଜ ଥାନାକୁ ଯାଇଥିଲେ ।

ଇନିସ୍‌ପେକ୍ଟର ମିଷ୍ଟର ଗାଙ୍ଗୁଲିଙ୍କ ମାର୍ଫତରେ ଗାଡ଼ିଟି ଜିମା ରଖି ଯେତେବେଳେ ସେ ଆଶ୍ରୟସ୍ଥଳୀକୁ ଫେରିଥିଲେ, ସେତେବେଳେ ଦିନ ଶେଷ ହୋଇ ଆସୁଥିଲା ।

କିନ୍ତୁ ରାତ୍ରିର ଆଗମନୀ ଜଣାଇ କଲିକତାର ପଥ ଘାଟରେ ଧୀରେ ଧୀରେ ଅଶେଷ ଆଲୋକ ଫୁଟି ଉଠିଲା ପରି ସତ୍ୟବ୍ରତଙ୍କ ମନ ଭିତରେ ଅଶେଷ ଦୁର୍ଭାବନାର ଝଡ଼ ଉଠି ଆସୁଥିଲା ।

\+ + +

'ଇଏ ସିଏ ନୁହେଁ' ।

ସତ୍ୟବ୍ରତ ହୁଡ୍‌ଖୋଲା ଚକୋଲେଟ ରଙ୍ଗର ଗାଡ଼ିଟା ମଧ୍ୟରୁ ଉଦ୍ଧାର କରିଥିବା ଜାପାନୀ ଖେଳଣାଟା ଆଡ଼େ ଚାହିଁ ସ୍ୱଗତୋକ୍ତି କଲେ ।

ରେବେକା ମୁଖାର୍ଜୀ କହିଲା - ଇଏ ସିଏ ନୁହେଁ । ମାନେ ଚଉଧୁରୀ ସାହେବଙ୍କ ଅତିପ୍ରିୟ ଜାପାନୀ ଖେଳଣାଟି ଇଏ ନୁହଁ ।

କିନ୍ତୁ ଜାପାନୀ ବାଳିକାଟି ତ ହେଲେନ୍‌କୁ ଫାଙ୍କି ଦେଇ, ଚଉଧୁରୀ ସାହେବଙ୍କ ଝରକା ବାଟେ ହୁଡ୍‌ଖୋଲା ଚକୋଲେଟ ରଙ୍ଗର ଗାଡ଼ି ଉପରକୁ ଡେଇଁ ପଡ଼ିଥିଲା । ନିଜ ଆଖିରେ ସତ୍ୟବ୍ରତ ମହାପାତ୍ର ଦେଖିଲେ ।

କିନ୍ତୁ ରେବେକା ଆଖିରେ 'ଇଏ ସିଏ ନୁହେଁ' ।

ତା'ହେଲେ ?

ଗାଡ଼ି ଅଦୃଶ୍ୟ ହେବାର ପାଞ୍ଚଘଣ୍ଟା ପରେ ଗାଡ଼ି ଭିତରୁ ସତ୍ୟବ୍ରତ ଖେଳଣାଟି ଆବିଷ୍କାର କରିଛନ୍ତି ।

ଗାଡ଼ିଟା ଅବଶ୍ୟ ବି : ଏନ୍ : ତରଫଦାରଙ୍କର ।

ଆଉ ଖେଳଣାଟିକୁ ସମସ୍ତଙ୍କ ଆଗରେ ଅତି ସହଜ ଭାବରେ ଅଦୃଶ୍ୟ କରେଇବାର ଓସ୍ତାଦ, ହେଲେନ ।

ହେଲେନ ବ୍ରିଜ୍‌ଲାଲଙ୍କର କନ୍ୟା ।

ଆଉ ବି : ଏନ୍ : ତାଲୁକଦାର ବ୍ରିଜଲାଲଙ୍କର ପରମ ଆତ୍ମୀୟ ।

ଯୋଗସୂତ୍ରଟା ଯେପରି ଅତି ଘନିଷ୍ଠ ।

ତଥାପି...

କେଉଁଠି ଯେପରି କ'ଣ ଟିକିଏ ଗୋଳମାଳିଆ ରହି ଯାଉଛି । ତେଣେ ସଦାଶିବ ବାବୁ, ଭୂପେନ ବାବୁ, ବ୍ୟୋମକେଶ ବାବୁ ଆଉ ରାଘବନ । କିଏ କାହିଁକି କି ଉଦ୍ଦେଶ୍ୟରେ...

ଏଣେ ପୁଣି ବ୍ରିଜ୍‌ଲାଲ, ତରଫଦାର ସର୍ବୋପରି ରେବେକା ।

ପରିଶେଷରେ ରେବେକାର ଆଚରଣ ଆଉ ଭୟଙ୍କର ଗୋଟାଏ କିଛି ଘଟଣାର ପରିପ୍ରେକ୍ଷୀରେ ରେବେକାର ମଟରରୁ ଲମ୍ଫ ପ୍ରଦାନ, ସବୁ ଯେମିତି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଅଥଚ...

ଦୁଆରେ କିଏ ନକ୍ କରିବାର ଶବ୍ଦ ହେଲା ।

ସତ୍ୟବ୍ରତ ଦ୍ରୁତ ହସ୍ତରେ ଜାପାନୀ ଖେଳଣାଟିକୁ ଟେବୁଲ ଉପରୁ ଉଠାଇ ନେଇ ଗୋଟିଏ ଉହାଡ଼ିଆ ଜାଗାରେ ରଖିଦେଇ, ଉଠିଯାଇ ଦରଜା ଖୋଲିଦେଲେ ।

: ଆରେ ଆରେ ଆପଣ, ଆସନ୍ତୁ ଆସନ୍ତୁ । ମୁଁ କିନ୍ତୁ ଆପଣଙ୍କୁ ମୋଟେ ଆଶା କରି ପାରି ନଥିଲି ।

: ଦେଖିଲେ, ଆପଣ ରହସ୍ୟ ସନ୍ଧାନୀ ହେଲେ ମଧ୍ୟ ମୁଁ ଆପଣଙ୍କୁ କିପରି ଆଶ୍ଚର୍ଯ୍ୟ କରିଦେଲି ।

: ବସନ୍ତୁ, ବସନ୍ତୁ । ତା'ପରେ କୁହନ୍ତୁ ମିସ୍ ମାର୍ଗାରେଟା । କ୍ୟାପ୍ଟେନ୍ ମିରାଜକରଙ୍କର ସନ୍ଧାନ କରିବାର ଦାୟିତ୍ୱ ମୋତେ ଦେବାକୁ ଆସି ନାହାନ୍ତି ତ ?

ମାର୍ଗାରେଟା ହସୁ ହସୁ ଚେଆର ଉପରେ ବସିଲା । କହିଲା, : ମିରାଜକର କିନ୍ତୁ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି ।

: ଉଦ୍ଦେଶ୍ୟ ?

: ସେଇ ଅନୁସନ୍ଧାନ ।

: କାହାର ? ସତ୍ୟବ୍ରତଙ୍କର ଉତ୍ସାହ ଯେପରି ଦ୍ୱିଗୁଣିତ ହୋଇ ଉଠିଲା ।

ମାର୍ଗାରେଟା ସେହିପରି ଶାନ୍ତ ସ୍ୱରରେ କହିଲା : ଆମ ଜାପାନୀ ବାଳିକାଟିର ।

: ହୁର୍‌ରେ, ସତ୍ୟବ୍ରତ ଉଠି ପଡ଼ି ନାଚିଗଲେ । କହିଲେ, ଆପଣ ମୋତେ ସେଦିନ ଯେଉଁ ୱାକିଂ ଡଲ୍‌ଟା ଦେଖେଇ ଥିଲେ, ସେଇଟା ଚୋରି ହୋଇ ଯାଇଛି ?

: ହଁ ।

: କୋଉଦିନ ?

: ଆଜି, ମାନେ ମୁଁ ସକାଳ ସାତଟାରେ ଡିଉଟିକୁ ଚାଲିଯିବା ପରେ । ଚାରିଟାରେ ଫେରି ଆସି ଦେଖିଲି ଆମର ସଂଗ୍ରହଶାଳାଟିରେ ଯେପରି ଝଡ଼ ପିଟି ଯାଇଛି । ଆଶ୍ଚର୍ଯ୍ୟ ହୋଇ ଦେଖିଲି ଝରକାର ଗୋଟିଏ ଦରଜା ଭଙ୍ଗା ହୋଇଛି । ସଙ୍ଗେ ସଙ୍ଗେ ମୁଁ ମିରାଜକରଙ୍କୁ ଫୋନ୍ କଲି । ସେ ଆସିଲେ । ଅନୁସନ୍ଧାନ କରି ଜାଣିଲୁ ଆମର ସେହି ଜାପାନୀ ବାଳିକାଟି ଛଡ଼ା ଆଉ ସବୁ ଠିକ୍ ଅଛି ।

: ପୋଲିସ୍‌ରେ ଖବର ଦେଇଛନ୍ତି ?

ମାର୍ଗାରେଟା ହସିଲା । କହିଲା : ମୁଁ କହୁଥିଲି କିନ୍ତୁ ମିରାଜକର ମନା କଲେ । ଗୋଟାଏ ଖେଳଣା ଚୋରି ଉପରେ ସେମାନେ ଆଦୌ ଗୁରୁତ୍ୱ ଦେବେ ନାହିଁ ।

: ହୁଁ, ତା'ପରେ ଆପଣ ଛୁଟି ଆସିଲେ ମୋ ପାଖକୁ ।

ମାର୍ଗାରେଟା କହିଲା : ମିରାଜକରଙ୍କର ଅନୁମତି ନେଇ ମୁଁ ଆସିଛି । କହିବାକୁ ଗଲେ ସେ ମୋତେ ଆସିବା ପାଇଁ ଉତ୍ସାହିତ କରିଛନ୍ତି ।

: ବେଶ୍ ଭଲ କରିଛନ୍ତି । ଚା' ନା କଫି ? ସତ୍ୟବ୍ରତ କଲିଂ ବେଲ୍ ଟିପିଲେ ।

ବୟ ଆସି ଅର୍ଡ଼ର ନେଇଗଲା ।

ସତ୍ୟବ୍ରତ ନୀରବରେ କିଛି ସମୟ ଚିନ୍ତା କରି କହିଲେ, : ବ୍ରିଜଲାଲଙ୍କ ସହିତ ଆପଣଙ୍କର ସମ୍ପର୍କ କିପରି ?

: ମାମୁଲି । ମାର୍ଗାରେଟା ଉତ୍ତର ଦେଲା ।

: ଆପଣଙ୍କ ଘରକୁ ସେ କେବେ ଯିବା ଆସିବା କରନ୍ତି ?

: ବେଳେ ବେଳେ । ସେ ଯେତେବେଳେ ଯାଆନ୍ତି, କେବଳ ଆମର ସେହି ସଂଗ୍ରହ ଶାଳାଟି ଦେଖିବାକୁ ଯାଆନ୍ତି । ସଂଗ୍ରହ ଶାଳାଟି ଉପରେ ତାଙ୍କର ଆସକ୍ତି ଅତ୍ୟଧିକ ।

: ହୁଁ । ଆଉ ? କ୍ୟାପ୍‌ଟେନ୍ ମିରାଜକରଙ୍କର ବନ୍ଧୁମାନେ କେହି ଆସନ୍ତି ଆପଣଙ୍କ ଘରକୁ ?

: ବହୁତ ଆସନ୍ତି । ସେଇଟା ତ ସ୍ୱାଭାବିକ ।

: ସେମାନଙ୍କ ମଧ୍ୟରୁ ଆପଣଙ୍କର ସଂଗ୍ରହଶାଳା ପ୍ରତି କାହାରି ଆସକ୍ତି ଥିବାର ଲକ୍ଷ୍ୟ କରିଛନ୍ତି ?

: ସମସ୍ତେ ସଂଗ୍ରହଶାଳା ପାଇଁ ପ୍ରଶଂସା କରନ୍ତି । କିନ୍ତୁ କାହାରି ଆସକ୍ତି ଥିଲା ପରି ତ ମନେ ହୁଏ ନାହିଁ ।

: ତା'ହେଲେ ହଠାତ୍ ଆପଣଙ୍କର ସେହି ଜାପାନୀ ବାଳିକାଟି ପ୍ରତି କାହାର ଏତେ ଲୋଭ ଜନ୍ମିଲା କାହିଁକି ?

: ସେଇ କଥା ତ ମୁଁ ବି ଭାବୁଚି ମିଷ୍ଟର ମହାପାତ୍ର ।

: ଏଣିକି ଆପଣ ଆଉ ନ ଭାବିଲେ ଚଳିବ ।

: ମାନେ ?

: ଭାବିବାର ଦାୟିତ୍ୱ ଆପଣ ମୋତେ ଦେଇଗଲେ । ତେଣୁ ଆପଣ କଫି ପିଇ ନିଶ୍ଚିନ୍ତରେ ଘରକୁ ଫେରି ଯାଆନ୍ତୁ, ଦୁଇଦିନ ପରେ ମୁଁ ଆପଣଙ୍କର ଜାପାନୀ କନ୍ୟାଟିକୁ ଶତ୍ରୁମାନଙ୍କ କବଳରୁ ଉଦ୍ଧାର କରି, ଆପଣଙ୍କର ନିରାପଦ ଆଶ୍ରୟରେ ଛାଡ଼ି ଦେଇ ଆସିବି ।

ମାର୍ଗାରେଟା ମୁହଁରେ ବିସ୍ମୟ ଫୁଟି ଉଠିଲା । କହିଲା : ଆପଣ ମୋତେ ପରିହାସ କରୁ ନାହାନ୍ତି ତ ?

: ଆରେ ନା ନା । ଆପଣ କ୍ୟାପ୍‌ଟେନ୍ ମିରାଜକରଙ୍କୁ ନିଶ୍ଚିନ୍ତ ଆଶ୍ୱାସ ଦେଇ ପାରନ୍ତି । କହିବେ ତାଙ୍କ ମାନସ କନ୍ୟାକୁ ମୁଁ ନିଶ୍ଚୟ ଉଦ୍ଧାର କରି ଆଣି ତାଙ୍କୁ ସମର୍ପଣ କରି ଆସିବି ।

ମାର୍ଗାରେଟା ଶାନ୍ତ ସ୍ୱରରେ କହିଲା : ଜାଣନ୍ତି, କ୍ୟାପ୍‌ଟେନ୍ ମିରାଜକର କିନ୍ତୁ ସେଇ ଡଲ୍‌ଟିକୁ ଅତି ଭଲ ପାଉଥିଲେ ।

: ମୁଁ ଜାଣେ, ଜାଣେ ବୋଲି ତ ମୋର ଏତେ ଆଗ୍ରହ ।

: ତା'ହେଲେ ଆପଣଙ୍କ ଋଣ ମୁଁ ଜୀବନରେ ଶୁଝି ପାରିବି ନାହିଁ ।

: ଏ ଆପଣ କ'ଣ କହୁଛନ୍ତି ମିସ୍ ମାର୍ଗାରେଟା । ମୋତେ ଆପଣ ଏହାଦ୍ୱାରା ଅଧିକ ଲଜ୍ଜା ଦେଉଛନ୍ତି ।

ତା'ପରେ କଫି ପର୍ବ ଆରମ୍ଭ ହୋଇଗଲା ।

କଫି ପାନ ପରେ ମାର୍ଗାରେଟା ଚାଲିଗଲା ।

ସତ୍ୟବ୍ରତ ଦରଜାଟା ଭିତରୁ ବନ୍ଦ କରି ଦେଇ ଜାପାନୀ ଖେଳଣାଟା ଆଣି ଟେବୁଲ ଉପରେ ରଖିଲେ ।

ଏଥର ସେ ବୁଝି ପାରିଛନ୍ତି ଏହି ଜାପାନୀ ଖେଳଣାର ରହସ୍ୟ ।

କିନ୍ତୁ ଅସଲ ଖେଳଣାଟା ରହିଲା କେଉଁଠି ?

ନିଶ୍ଚୟ ଏହା ମିଷ୍ଟର ତରଫଦାର ବା ବ୍ରିଜଲାଲଙ୍କର କାରସାଦି ।

ଦେଖାଯାଉ, ମୋତେ ବି ସେମାନଙ୍କ ସହିତ ଲୁଚକାଳି ଖେଳି ଆସେ ।

ସତ୍ୟବ୍ରତ ଯେପରି ଦୃଢ ପ୍ରତିଜ୍ଞ ହୋଇ ଦରଜା ଖୋଲିଲେ ।

ମ୍ୟାନେଜରଙ୍କ ରୁମ୍‌କୁ ଯାଇ ଫୋନ୍ ଉଠାଇଲେ । ସଂଯୋଗ କଲେ ବାଲିଗଞ୍ଜ ଥାନା ସହିତ ।

ମିଷ୍ଟର ଗାଙ୍ଗୁଲିଙ୍କୁ ଅନୁରୋଧ କରି କହିଲେ : ଚଉଧୁରୀ ସାହେବଙ୍କ ହତ୍ୟା ଅପରାଧରେ ଆପଣ ମିଷ୍ଟର ରାଘବନଙ୍କୁ ଆରେଷ୍ଟ କରନ୍ତୁ । କାରଣ ଚଉଧୁରୀ ସାହେବଙ୍କ ହତ୍ୟା ସ୍ଥଳୀରୁ ରାଘବନଙ୍କର ହାତବନ୍ଧା ଘଡ଼ି ମିଳିଛି ଯେତେବେଳେ, ନିଶ୍ଚୟ ମିଷ୍ଟର ରାଘବନ ଏହି ହତ୍ୟାକାଣ୍ଡ ସହିତ ସଂପୃକ୍ତ । ତେଣୁ ତାଙ୍କ ଠାରୁ ବହୁ ତଥ୍ୟ ମିଳିବାର ସମ୍ଭାବନା ଅଛି ।

ମିଷ୍ଟର ଗାଙ୍ଗୁଲି ଅପର ପ୍ରାନ୍ତରୁ କହିଲେ : ସେଇ କଥା ତ ମୁଁ ଆପଣଙ୍କୁ ଅନେକ ଦିନରୁ କହୁଥିଲି । ମାତ୍ର ଆପଣ ମୋତେ ବାରମ୍ବାର ବାଧା ଦେଇଥିଲେ । କହିଥିଲେ, ସମୟ ଆସିଲେ ମୁଁ ଆରେଷ୍ଟ୍ କରିବାକୁ କହିବି ।

ସତ୍ୟବ୍ରତ କହିଲେ : ବର୍ତ୍ତମାନ ସମୟ ଆସିଛି ମିଷ୍ଟର ଗାଙ୍ଗୁଲି, ଆଉ ଡେରି କରିବା ଆବଶ୍ୟକ ନାହିଁ ।

: ଆଉ କାହାକୁ ଏ ସମ୍ପର୍କରେ ଆରେଷ୍ଟ୍ କରିବାକୁ ହେବ ? ଚଉଧୁରୀ ସାହେବଙ୍କ ଘରେ ଯେଉଁମାନେ ମଣିମୁକ୍ତା ଆଶାରେ ବେଗମରଂ ଚାରି ପାଖରେ ବେଢ଼ି ରହିଛନ୍ତି, ସେମାନଙ୍କ ମଧ୍ୟରୁ କାହାକୁ...

: ନା ନା ମିଷ୍ଟର ଗାଙ୍ଗୁଲି । ବର୍ତ୍ତମାନ ଆଉ କାହାରି ସମୟ ହୋଇ ନାହିଁ । ମୁଁ ବଳେ କହିବି ।

: ଧନ୍ୟବାଦ ।

ସତ୍ୟବ୍ରତ ରିସିଭରଟା ରଖି ଦେଇ ହୋଟେଲରୁ ବାହାରି ପଡ଼ିଲେ ।

ଏଥର ନିର୍ଦ୍ଦିଷ୍ଟ ସ୍ଥାନକୁ ଯାଇ ନୂତନ ଘଟଣା କିଛି ଘଟିଲା କି ନାହିଁ ଦେଖିବାକୁ ହେବ ।

ସତ୍ୟବ୍ରତ ବାଲିଗଞ୍ଜ ସାର୍କୁଲାର ରୋଡ଼ରେ ପହଞ୍ଚିଲା ବେଳକୁ ରାତି ଆଠଟା ବାଜି ଯାଇଥିଲା ।

ତଳେ ସଦର ଫାଟକ ଖୋଲା ଥିଲା ।

ସତ୍ୟବ୍ରତ ଡ୍ରଇଂରୁମ୍‌ରେ ଯାଇ ଦେଖିଲେ ଫାଙ୍କା ।

ଧୀରେ ଧୀରେ ଉପରକୁ ଉଠିଲେ ।

ପ୍ରଥମ ଘରଟାରେ ବେଗମ ଚଉଧୁରୀ ଏକା ଆରାମ ଚେଆର ଉପରେ ବସି ଚିନ୍ତାମଗ୍ନ ହୋଇ ପଡ଼ିଛି ।

ସତ୍ୟବ୍ରତଙ୍କର ପ୍ରଥମ ପ୍ରଶ୍ନ : ହେଲେନ୍ କାହିଁ ?

ବେଗମ ଚଉଧୁରୀ ଆଖି ଖୋଲି ଥରେ ଚାହିଁ ଦେଇ ନିରୁତ୍ତାପ କଣ୍ଠରେ ଉତ୍ତର ଦେଲା : ସେ ଚାଲି ଯାଇଛି ।

: କାହିଁକି ଚାଲିଗଲା ?

: ସମସ୍ତେ କ'ଣ ଆଉ ମୋର ଦୁଃସମୟର ସାଥୀ ହୋଇ ବସି ରହିବେ ?

: ହେଲେନ୍‌କୁ ଆପଣ ଅଟକେଇ ନଥିଲେ ?

: କହିଥିଲି ଆଉ କିଛି ଦିନ ରହିବା ପାଇଁ, କିନ୍ତୁ ସେ ଶୁଣିଲା ନାହିଁ । ତା' ମା' କୁଆଡ଼େ ଏହା ଭିତରେ ଅସୁସ୍ଥ ହୋଇ ପଡ଼ିଛନ୍ତି । ତେଣୁ ତା'ର ଆଉ ଏଠାରେ ଅପେକ୍ଷା କରି ରହିବା ସମ୍ଭବ ନୁହେଁ ବୋଲି ସେ କହିଲା ।

: ବେଶ୍, ଆଉ ଅନ୍ୟମାନେ ?

: ସମସ୍ତେ ସେ ଘରେ ବସି ମିଟିଂ କରୁଛନ୍ତି । ମୋର ରକ୍ଷଣାବେକ୍ଷଣ ପାଇଁ ସେମାନେ ବଡ଼ ଚିନ୍ତିତ ହୋଇ ପଡ଼ିଛନ୍ତି ।

: ହୁଁ, ଆଚ୍ଛା ଆପଣ ବିଶ୍ରାମ କରନ୍ତୁ । ସେମାନଙ୍କୁ ମୁଁ ଦେଖୁଛି ।

ସତ୍ୟବ୍ରତ ଘରେ ପହଞ୍ଚି ସଙ୍ଗେ ସଙ୍ଗେ ପଚାରିଲେ : ଆପଣମାନେ ଏ ପର୍ଯ୍ୟନ୍ତ କୌଣସି ଶେଷ ସିଦ୍ଧାନ୍ତ ଗ୍ରହଣ କରି ପାରିଲେ ନାହିଁ ?

ସଦାଶିବ ବାବୁ ଉଠି ଠିଆ ହୋଇ ପଡ଼ି କ'ଣ କହିବାକୁ ଯାଉଥିଲେ ।

ସତ୍ୟବ୍ରତ ବାଧା ଦେଇ କହିଲେ : ଆପଣମାନେ ଜାଣିଲେ ଖୁସି ହେବେ ଯେ ଚଉଧୁରୀ ସାହେବଙ୍କର ହତ୍ୟାକାରୀ ରୂପେ ସନ୍ଦେହ କରି ପୋଲିସ୍ ଜଣକୁ ଆରେଷ୍ଟ୍ କରିଛି ।

: ଆରେଷ୍ଟ୍ କରିଛି ? ସମସ୍ତଙ୍କ କଣ୍ଠସ୍ୱର ମିଳିତ ଭାବରେ ଶୁଣାଗଲା ।

: ହଁ ଆରେଷ୍ଟ କରିଛି ଏବଂ ସେହି ବ୍ୟକ୍ତିଙ୍କ ନାମ ମିଷ୍ଟର ରାଘବନ । ଭଦ୍ରଲୋକ ଇଭିନିଂ କ୍ଲବ୍‌ର ଜଣେ ସଦସ୍ୟ ଏବଂ ଚଉଧୁରୀ ସାହେବଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ ।

ଭୂପେନ ବାବୁ ଚେଆର ଉପରୁ ଉଠି ପଡ଼ି କହିଲେ, ମୁଁ ଜାଣେ ଅପରାଧୀ ଦିନେ ନା ଦିନେ ଧରା ପଡ଼ିବ । ସତ୍ୟ କେବେ ଗୋପନ ରୁହେ ନାହିଁ ।

ସତ୍ୟବ୍ରତ ପୁଣି କହିଲେ : ଆପଣମାନେ ଶୁଣିଲେ ସୁଖୀ ହେବେ ଯେ, ଆଜି ରାତିରେ ମାନେ ଆଉ ଦୁଇ ଘଣ୍ଟା ପରେ ମୁଁ କଲିକତା ଛାଡ଼ି ଚାଲିଯାଉଛି ।

ସତ୍ୟବ୍ରତ ଭାବିଥିଲେ ତାଙ୍କ ଚାଲିଯିବା ସମ୍ବାଦ ଶୁଣି କେହି ହୁଏତ ଆଶ୍ଚର୍ଯ୍ୟ ହୋଇ ହଠାତ୍ ଚାଲି ନଯିବା ପାଇଁ ଅନୁରୋଧ ଜଣାଇବେ । କିନ୍ତୁ କାହାରି ମୁହଁରୁ କଥା ବାହାରିଲା ନାହିଁ ।

କିଛି ସମୟର ନୀରବତା ପରେ ବ୍ୟୋମକେଶ ବାବୁ କହିଲେ, : ହଁ, ଯେ ଯାହାର କାମ ସରିଗଲେ ଧୀରେ ଧୀରେ ନିଜ ନିଜ ପଥରେ ଚାଲିଯିବା କଥା । ଆପଣ ଆଜି ଯିବେ, ମୁଁ କାଲି ଯିବି । ସଦାଶିବ ବାବୁ ପହରିଦିନ ଯିବେ । ଜଣକ ପରେ ଜଣେ ଆମେ ଆସିଥିଲେ, ପୁଣି ଚାଲିଯିବା ।

ଭୂପେନ ବାବୁ ଗମ୍ଭୀର କଣ୍ଠରେ କହିଲେ : କିଏ କେବେ ଯିବ ନଯିବ ସେ କଥା ମୁଁ ଭାବୁ ନାହିଁ, କିନ୍ତୁ ବେଗମର ଗୋଟାଏ ସ୍ଥାୟୀ ବ୍ୟବସ୍ଥା ନ କରିବାଯାଏ ମୁଁ ଏଠାରୁ କୁଆଡ଼େ

କଦମେ ଘୁଞ୍ଚିବି ନାହିଁ ।

ସତ୍ୟବ୍ରତ କହିଲେ : ଉଚିତ କଥା । ଆପଣ ଥାଆନ୍ତୁ ଭୂପେନ ବାବୁ । ବେଗମର ଯେପରି ଅନିଷ୍ଟ କିଛି ନହୁଏ ଦେଖିବେ ।

ସତ୍ୟବ୍ରତ ଆଉ ମୁହୂର୍ତ୍ତେ ଅପେକ୍ଷା ନକରି ସେ ଘରୁ ବାହାରି ଚାଲିଗଲେ । ବେଗମ ଚଉଧୁରୀ ସହିତ ଦେଖା ପର୍ଯ୍ୟନ୍ତ କଲେ ନାହିଁ ।

ସିଧା ତଳକୁ ଓହ୍ଲେଇ ଯାଇ ଗୋଟାଏ ଟ୍ୟାକ୍ସି ଧରିଲେ ରାସ୍ତାରୁ ।

ହସ୍‌ପିଟାଲ ।

ଏହାପରେ ରେବେକା ମୁଖାର୍ଜୀର ରିପୋର୍ଟ ତାଙ୍କର ଏକାନ୍ତ ଆବଶ୍ୟକ । ହୁଏତ ଏହା ଭିତରେ ଚେତା ଫେରି ଆସିଥିବ ରେବେକାର ।

ଚେତା ଫେରି ଆସିଥିଲା ସତ, କିନ୍ତୁ ଭାଷା ଫେରି ଆସି ନଥିଲା ମୁହଁରେ । ଚାହାଣିରେ ଭୟର ଭାବ ଫୁଟି ଉଠିଥିଲା । ରହି ରହି ରେବେକା ମୁଖାର୍ଜୀ ଯେପରି ଶିହରି ଉଠୁଥିଲା ।

ବେଡ୍‌ରେ ଗୋଟାଏ ବେଲ୍‌ଟ ସାହାଯ୍ୟରେ ବନ୍ଧା ହୋଇଥିଲା ରେବେକା ମୁଖାର୍ଜୀ ।

ସତ୍ୟବ୍ରତ ଦେଖି ଅବାକ୍ ହୋଇଥିଲେ ।

ହଠାତ୍ ତେବେ କ'ଣ ରେବେକାର ମୁଣ୍ଡଟା ପୂରାପୂରି ବିଗିଡ଼ି ଗଲା ଏହି ଆଘାତ ଲାଗି !

ଡାକ୍ତର କହିଲେ : ମିସ୍ ମୁଖାର୍ଜୀଙ୍କର ଶାରୀରିକ ଆଘାତ ଅପେକ୍ଷା ମାନସିକ ଆଘାତଟା ବେଶି ଲାଗିଲା ପରି ମନେ ହେଉଛି । ଶାରୀରିକ ଦିଗରୁ ଯେତେଟା ଉନ୍ନତି ହୋଇଛି, ମିସ୍ ମୁଖାର୍ଜୀ ଏହା ଭିତରେ ପ୍ରକୃତିସ୍ଥ ହୋଇ ଉଠିବାର କଥା । କିନ୍ତୁ...

ସତ୍ୟବ୍ରତ ମହାପାତ୍ରଙ୍କୁ ସାମନାରେ ଦେଖି ରେବେକା ମୁଖାର୍ଜୀ ଯେପରି ସଚେତନ ହୋଇ ଉଠିଲା । ହାତଠାରି ଡାକିଲା ପାଖକୁ ।

ସତ୍ୟବ୍ରତ ଯାଇ ବସିଲେ ରେବେକା ମୁଖାର୍ଜୀର ବେଡ୍ ଉପରେ । ପଚାରିଲେ : ଟିକିଏ ସୁସ୍ଥ ଅନୁଭବ କରୁଛନ୍ତି ?

: ହଁ, ହଁ, ମୋର କିଛି ହୋଇ ନାହିଁ । ଆପଣ ମିଷ୍ଟର ହାଜରାଙ୍କର ସନ୍ଧାନ ପାଇଲେ ?

ରେବେକା ମୁଖାର୍ଜୀର ଆଖି ଓ ମୁହଁରେ ଅଶେଷ ଆଗ୍ରହ ।

ସତ୍ୟବ୍ରତ କହିଲେ : ଏଇ ଦିନେ ଦୁଇଦିନ ଭିତରେ ମିଷ୍ଟର ହାଜରାଙ୍କର ଖବର ଆସିଯିବ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ସୁସ୍ଥ ହୋଇ ଉଠିଲା ବେଳକୁ ଶୁଭ ଖବର ପାଇବେ ।

ରେବେକା ମୁଖାର୍ଜୀ ସତ୍ୟବ୍ରତର ହାତଟାକୁ ଦୁଇ ହାତରେ ଜାବୁଡ଼ି ଧରି ଯେପରି ନିଶ୍ଚିନ୍ତରେ ଆଖି ବୁଜିଲା । ଦେହ ମୁହଁରେ ଏକ ପ୍ରଶାନ୍ତିର ଢେଉ ଖେଳି ଯାଇଥିଲା ।

ଅଳ୍ପ ସମୟର ନୀରବତା ପରେ ସତ୍ୟବ୍ରତ ଶାନ୍ତ କଣ୍ଠରେ ଡାକିଲେ : ମିସ୍ ମୁଖାର୍ଜୀ !

ରେବେକା ସେଇଭଳି ଶାନ୍ତ, ନୀରବ ।

ସତ୍ୟବ୍ରତ ପୁଣି ଡାକିଲେ ।

ତଥାପି ଉତ୍ତର ମିଳିଲା ନାହିଁ ।

ଡାକ୍ତର କହିଲେ : ତାଙ୍କୁ ଟିକିଏ ବିଶ୍ରାମ କରିବାକୁ ଦିଅନ୍ତୁ । ପୁଣି ନିଦ ଭାଙ୍ଗିଲେ ଆପଣ ଆଳାପ କରିବେ ।

ସତ୍ୟବ୍ରତ ଧୀରେ ରେବେକାର ହାତ ମୁଠାରୁ ନିଜ ହାତଟିକୁ ମୁକ୍ତ କରି ଆଣିବାକୁ ଚେଷ୍ଟା କରୁଥିଲେ, କିନ୍ତୁ ରେବେକା ହାତ ମୁଠାର ବନ୍ଧନ ଶକ୍ତ ହେଉଥିଲା ।

ସତ୍ୟବ୍ରତ ଆଉ ଚେଷ୍ଟା କଲେ ନାହିଁ । ଚୁପ୍ ଚାପ୍ ବସି ରହିଲେ ।

ସେଇ ମୁହୂର୍ତ୍ତରେ ଘର ଭିତରେ ପ୍ରବେଶ କଲେ ପୋଲିସ୍ ଇନିସ୍‌ପେକ୍ଟର ମିଷ୍ଟର ଗାଙ୍ଗୁଲି ।

ସତ୍ୟବ୍ରତ ତାଙ୍କୁ ଇଙ୍ଗିତରେ ପାଖକୁ ଡାକି କହିଲେ : ଟେପ୍ ରେକର୍ଡ଼ର ଆଣିଛନ୍ତି ?

ମିଷ୍ଟର ଗାଙ୍ଗୁଲି ସମ୍ମତି ଜଣାଇଲେ ।

ସତ୍ୟବ୍ରତ କହିଲେ : ଟେପ୍‌ରେକଡରଟା ଫିଟ୍ କରିଦେଇ ଆପଣ ବାହାରକୁ ଚାଲି ଯାଆନ୍ତୁ । ମୋର ମନେ ହେଉଛି ଏଥର ମିସ୍ ମୁଖାର୍ଜୀ ଧୀରେ ଧୀରେ ତାଙ୍କ ଦୁଷ୍କୃତିର ସବୁ କଥା କହିବେ । ହୁଏତ ତାହା ମିଷ୍ଟର ଚଉଧୁରୀଙ୍କ ହତ୍ୟା ସପକ୍ଷରେ ନ ହୋଇ ପାରେ । ତଥାପି....

ରେବେକା ମୁଖାର୍ଜୀ କଡ଼ ଲେଉଟାଇଲା ।

ସତ୍ୟବ୍ରତ ନୀରବ ହୋଇଗଲେ ।

ମିଷ୍ଟର ଗାଙ୍ଗୁଲି ଟେପ୍ ରେକର୍ଡ଼ରଟି ଆଣି ରେବେକା ମୁଖାର୍ଜୀର ବେଡ଼୍ ଉପରେ ଫିଟ୍ କରିଦେଇ ବାହାରି ଗଲେ ।

ସତ୍ୟବ୍ରତଙ୍କୁ ଆହୁରି ଅନେକ ସମୟ ଅପେକ୍ଷା କରିବାକୁ ପଡ଼ିଲା ।

ତା'ପରେ ସତ୍ୟବ୍ରତ ଜୋର୍ କରି ହାତଟାକୁ ରେବେକା ମୁଖାର୍ଜୀର ବନ୍ଧନ ମୁକ୍ତ କରିବାକୁ ଯାଇ ବାଧା ପାଇଲେ । ରେବେକା ଆକୁଳ କଣ୍ଠରେ କହିଲା : ନା ନା, ଆପଣ ଯାଆନ୍ତୁ ନାହିଁ । ମୋତେ ଡର ମାଡୁଛି ।

: କିନ୍ତୁ ମୁଁ ଯେ ଆଉ ଅପେକ୍ଷା କରି ପାରିବି ନାହିଁ ।

: କାହିଁକି ?

: ଆପଣ ଯେ ମୋ କଥା ଶୁଣୁ ନାହାନ୍ତି ।

: ମୁଁ ଏଥର ଶୁଣିବି । ଆପଣଙ୍କ କଥା ଶୁଣିବି । ଆପଣ ମୋର ପରମଆତ୍ମୀୟ । ଆପଣଙ୍କ କଥା ନଶୁଣି ଆଉ କାହା କଥା ଶୁଣିବି ?

: ମିଷ୍ଟର ହାଜରା କିନ୍ତୁ ଆପଣଙ୍କ ଆଚରଣରେ ଭୀଷଣ ଅସନ୍ତୁଷ୍ଟ ହୋଇଛନ୍ତି । ସେଇଥିପାଇଁ ସେ ଅଭିମାନ କରି ଦୂର ବିଦେଶରେ ବସି ରହିଛନ୍ତି ।

ରେବେକା ମୁଖାର୍ଜୀ ହଠାତ୍ ଯେପରି ଚମକି ଉଠିଲା । କହିଲା : କିଏ ତାଙ୍କୁ ମୋ ଆଚରଣର ସମ୍ବାଦ ଦେଲା ।

: ସେଇମାନେ, ଯେଉଁମାନେ ସେଦିନ ରାତିରେ ଆପଣଙ୍କୁ ସେଇ ହୁଡ୍‌ଖୋଲା ଚକୋଲେଟ୍ ରଙ୍ଗର ଗାଡ଼ିରେ ବସାଇ ନେଇ ଯାଇଥିଲେ ଦୁଷ୍କର୍ମ ସାଧନ କରିବା ପାଇଁ । ସେଇମାନେ ଖବର ଦେଇଛନ୍ତି ମିଷ୍ଟର ହାଜରାଙ୍କୁ ।

: ବ୍ରିଜ୍‌ଲାଲଜୀ ! ରେବେକା ମୁଖାର୍ଜୀ ଚିତ୍କାର କରି ଉଠିଲା । ତୁମେ ସଇତାନ । ତୁମେ ମୋର ସର୍ବନାଶ କାମନା କର । ସେଇଥିପାଇଁ ତୁମେ ମୋତେ ପ୍ରବର୍ତ୍ତାଇ ଚଉଧୁରୀ ସାହେବଙ୍କୁ ଖୁଣ୍ କରାଇଛି । ମୁଁ ତୁମକୁ ଖୁଣ୍ କରି ମୋର ତୃଷା ମେଣ୍ଟେଇବି । ହା-ହା, ହା-ହା-ହା ।

ରେବେକା ମୁଖାର୍ଜୀ ହଠାତ୍ ଉନ୍ମାଦିନୀଙ୍କ ପରି ହସି ଉଠି ପୁଣି ସଂଜ୍ଞା ହରାଇଲା ।

ଡାକ୍ତର ଓ ନର୍ସ ଛୁଟି ଆସିଲେ ଘର ଭିତରକୁ ।

ସତ୍ୟବ୍ରତ ଅପରାଧୀଟି ପରି ଓହ୍ଲାଇ ଆସିଲେ ରେବେକା ମୁଖାର୍ଜୀ ବେଡ୍ ଉପରୁ ।

ଡାକ୍ତର ଦୁଃଖ ପ୍ରକାଶ କଲେ ।

କହିଲେ : ରୋଗୀର ଏପରି ଷ୍ଟେଜ୍‌ରେ ତାଙ୍କୁ ଉତ୍ତେଜିତ କରିବା ମୋଟେ ଉଚିତ ହୋଇ ନାହିଁ ।

ସତ୍ୟବ୍ରତଙ୍କର କିନ୍ତୁ ଉଦ୍ଦେଶ୍ୟ ସାଧନ ଶେଷ ହୋଇଥିଲା ।

ତାଙ୍କ ଆଖି ଆଗରେ ସେତେବେଳେ ଭାସି ଉଠିଥିଲା, ସେଇ ଚକୋଲେଟ ରଙ୍ଗର ହୁଡ୍ ଖୋଲା ଗାଡ଼ିଟା । ସେଇଥିରେ ବସିଛନ୍ତି ବ୍ରିଜ୍‌ଲାଲ ଆଉ ରେବେକା । ବ୍ରିଜ୍‌ଲାଲ ବାଟଯାକ ଉତ୍ତେଜିତ କରିଛନ୍ତି ଅର୍ଦ୍ଧପାଗଳୀ ରେବେକା ମୁଖାର୍ଜୀଙ୍କୁ । ହୁଏତ ତା' କାନେ କାନେ ମନ୍ତ୍ର ଫୁଙ୍କି କହିଛନ୍ତି, ଚଉଧୁରୀ ସାହେବ ହେଉଛନ୍ତି ନାଟର ଗୋବର୍ଦ୍ଧନ । ସେଇ, ସେଇ ଲୁଚାଇ ରଖିଛନ୍ତି ମିଷ୍ଟର ହାଜରାଙ୍କୁ । ତୁମେ ଯାଅ ରେବେକା । ଧର ଚଉଧୁରୀ ସାହେବଙ୍କୁ । ଆଉ ଏଇ ଛୁରୀଟା ନିଅ ସାଙ୍ଗରେ । ଧମକ ଦେଇ କୁହ ଯେ, ମିଷ୍ଟର ହାଜରାଙ୍କୁ ମୋତେ ଆଣି ନଦେଲେ ମୁଁ ତୁମକୁ ଖୁଣ୍ କରିବି ।

ତା'ପରେ ଅର୍ଦ୍ଧ ଉନ୍ମାଦିନୀ ରେବେକା ଉନ୍ମାଦିନୀ ହୋଇ ଉଠିଛି । ଚଉଧୁରୀ ସାହେବଙ୍କ ଛାତିରେ ଭୁସି ଦେଇଛି ସେହି ଶାଣିତ ଛୁରୀକାଟିକୁ ।

ଏହାଦ୍ୱାରା ବ୍ରିଜ୍‌ଲାଲଙ୍କର ଲାଭ ?

ସେହି ଜାପାନୀ ଖେଳଣା ।

ସତ୍ୟବ୍ରତ ଯେପରି ହିପ୍‌ନୋଟାଇଜ୍ ହୋଇ ପଡ଼ିଥିଲେ । ଟେପ୍ ରେକର୍ଡରଟା ମିଷ୍ଟର ଗାଙ୍ଗୁଲିଙ୍କ ହାତକୁ ବଢ଼ାଇ ଦେଇ ଛୁଟି ଯାଇଥିଲେ ରାସ୍ତା ଉପରକୁ ।

\+ \+ \+

ବ୍ରିଜ୍‌ଲାଲଜୀ ।

ସତ୍ୟବ୍ରତ ଚିତ୍କାର କରି ଡାକିଥିଲେ । ରାତି ସେତେବେଳକୁ ସାଢ଼େ ଦଶଟା ବାଜି ଯାଇଥିଲା ।

: ବ୍ରିଜ୍‌ଲାଲଜୀ ! ପୁଣି ଚିତ୍କାର କରି ଉଠିଥିଲେ ସତ୍ୟବ୍ରତ ମହାପାତ୍ର ।

ବ୍ରିଜ୍‌ଲାଲଙ୍କ ସଦର ଦରଜାଟି ଧୀରେ ଖୋଲିଗଲା । କାବଟ ଫାଙ୍କରୁ ଦୁଇଟି ଭୟାଳୁ ଆଖି ଯେପରି କାହାର ଅନୁସନ୍ଧାନ କରୁଥିଲା ।

ସତ୍ୟବ୍ରତ ଜୋର୍‌ରେ ଦରଜା ଠେଲି ଦେଲେ ।

ସେପାଖରେ ସ୍ୱୟଂ ବ୍ରିଜ୍‌ଲାଲଜୀ ।

ସତ୍ୟବ୍ରତ ଦୁଃସାହସୀ ବୀର ପରି ଭିତରକୁ ପଶିଯାଇ ଗୋଟିଏ ଚେୟାର ଉପରେ ବସି ପଡ଼ିଲେ । ଇଂଗିତରେ ବ୍ରିଜଲାଲଙ୍କୁ ପାଖରେ ବସିବାକୁ କହିଲେ ।

: ମୁଁ ଏତେ ରାତିରେ କାହିଁକି ଏଠାକୁ ଆସିଛି ଜାଣନ୍ତି ବ୍ରିଜ୍‌ଲାଲଜୀ ?

: ନା ।

: ଚଉଧୁରୀ ସାହେବଙ୍କ ହତ୍ୟାକାରୀର ସନ୍ଧାନରେ ।

: ଅପରାଧୀ ତ ଧରା ପଡ଼ିଛି ମହାପାତ୍ରଜୀ । ମୁଁ ଶୁଣିଲି ମିଷ୍ଟର ରାଘବନ ଚଉଧୁରୀ ସାହେବଙ୍କ ହତ୍ୟା ଅପରାଧରେ ଆରେଷ୍ଟ୍ ହୋଇଛନ୍ତି ।

: ଆପଣ ଠିକ୍ ଶୁଣିଛନ୍ତି । କିନ୍ତୁ ତାଙ୍କ ଛଡ଼ା ମଧ୍ୟ ଆହୁରି କେତେକ ଲୋକ ଏହି ଘଟଣା ସହିତ ସଂପୃକ୍ତ ଏବଂ ସେ ଖବର ଆପଣ ଜାଣନ୍ତି ।

: ମୁଁ ? ବ୍ରିଜ୍‌ଲାଲଜୀ ଚିତ୍କାର କରି ଚେଆରରୁ ଡେଇଁ ପଡ଼ିଲେ । କହିଲେ, ଏ ଆପଣ

କ'ଣ କହୁଛନ୍ତି ମହାପାତ୍ରଜୀ ? ଚଉଧୁରୀ ସାହେବ ଥିଲେ ମୋର ପରମ ଆତ୍ମୀୟ । ତାଙ୍କ ସହିତ ମୋର ଶତ୍ରୁତା କୌଣସି କାରଣରୁ ସମ୍ଭବ ନୁହେଁ ।

: କିନ୍ତୁ ବ୍ରିଜ୍‌ଲାଲଜୀ, ମୁଁ ନିରୁପାୟ । ରେବେକା ସବୁକଥା କହି ଦେଇଛି ।

: ରେବେକା, ରେବା । ନା ନା, ସେ ଗୋଟାଏ ଉନ୍ମାଦିନୀ । ସେ ଯାହା କହିଲେ ବି ତା' କଥାରେ ସତ୍ୟତା ନାହିଁ । ତା'ଛଡ଼ା...

ବ୍ରିଜ୍‌ଲାଲଜୀ ଯେପରି ବିବ୍ରତ ହୋଇ ଉଠିଥିଲେ ।

ସତ୍ୟବ୍ରତ ସେହିପରି ଶାନ୍ତ ସ୍ୱରରେ କହିଲେ : ରେବେକା କଥା ବାଦ୍ ଦେଲେ ବି ଆପଣ ଗୋଟିଏ ରାତିର କଥା ମନେ ପକାନ୍ତୁ ବ୍ରିଜ୍‌ଲାଲଜୀ । ଯେଉଁଦିନ ରାତିରେ ଆପଣ ତରଫଦାରଙ୍କର ହୁଡ୍ ଖୋଲା ସେଇ ଚକୋଲେଟ୍ ରଙ୍ଗର ଗାଡ଼ିଟିରେ ରେବେକାକୁ ବସାଇ ଚଉଧୁରୀ ସାହେବଙ୍କ ଘରକୁ ନେଇ ଯାଇଥିଲେ ଆଉ ରେବେକା ହାତରେ ଧରାଇ ଦେଇଥିଲେ ଖଣ୍ଡିଏ ଶାଣିତ ଛୁରୀକା । ତା'ପରେ ଆପଣ ଓ ଆପଣଙ୍କ ସହକର୍ମୀ ରଘୁଆ ଆଉ ଜାନକୀର ମା'କୁ କାବୁ କରି ସେମାନଙ୍କର ହସ୍ତପଦ ବନ୍ଧନ କରି ତଳ ଘର ଭିତରେ ବନ୍ଦ କରିଦେଇଥିଲେ । ଅବଶ୍ୟ ସେତେବେଳେ ଜାନକୀର ମା' ଆପଣଙ୍କୁ ଚିହ୍ନି ପାରିଥିଲା ଏବଂ ଆପଣ ତାକୁ ଏପରି ଧମକ ଦେଇଥିଲେ ଯେ ସେ ଯଦି ମୁହଁ ଖୋଲେ ଆପଣ ତାକୁ ଖୁଣ୍ କରିବେ । ସେଇ ଭୟରେ ଜାନ୍‌କୀର ମା'ର ମୁହଁ ଯେ ବନ୍ଦ ହୋଇଛି, ସେ ମୁହଁ ଆଜିଯାଏ ଆଉ ଖୋଲି ନାହିଁ ।

ବ୍ରିଜ୍‌ଲାଲ ଉତ୍ତ୍ୟକ୍ତ ହୋଇ ଉଠିଲେ । ଚିତ୍କାର କରି କହିଲେ, : ଆପଣ ଏଇ ମୁହୂର୍ତ୍ତରେ ବାହାରି ଯାଆନ୍ତୁ ମୋ ଘରୁ । ମୋ ଉପରେ ମିଥ୍ୟା ଅଭିଯୋଗ ଲଗାଇ ଆପଣଙ୍କ ଉଦ୍ଦେଶ୍ୟ ସାଧନ କରିବାକୁ ଆସିଛନ୍ତି କିମ୍ବା ବ୍ଲାକ୍‌ମେଲିଂ କରି ମୋ ଠାରୁ ପଇସା ଆଦାୟ କରିବାକୁ ବସିଛନ୍ତି । ଆପଣ ବାହାରି ଯାଆନ୍ତୁ । ଚଉଧୁରୀ ସାହେବଙ୍କ ହତ୍ୟାକାରୀ ଆରେଷ୍ଟ୍ ହୋଇଛି । ପୋଲିସ୍ ପ୍ରମାଣ ପାଇଛି । ରାଘବନର ହାତବନ୍ଧା ଘଡ଼ି ଚଉଧୁରୀ ସାହେବଙ୍କ ମୃତ ସ୍ଥାନରୁ ପୋଲିସ୍ ଉଦ୍ଧାର କରିଛି । ଏହାଠାରୁ ଜ୍ୱଳନ୍ତ ପ୍ରମାଣ କ'ଣ ଥାଇପାରେ ? ତା'ଛଡ଼ା ଚଉଧୁରୀ ସାହେବଙ୍କୁ ହତ୍ୟା କରି ମୁଁ ବା କି ଲାଭ ପାଇବି ?

ସତ୍ୟବ୍ରତ ସେହିପରି ଶାନ୍ତ କଣ୍ଠରେ କହିଲେ : ଆପଣ ଉତ୍ତ୍ୟକ୍ତ ହୁଅନ୍ତୁ ନାହିଁ ବ୍ରିଜ୍‌ଲାଲଜୀ । ମିଷ୍ଟର ରାଘବନଙ୍କୁ ଅଭିଯୁକ୍ତ କରିବା ପାଇଁ ତାଙ୍କ ହାତ ଘଡ଼ିଟି ଚୋରି କରି ଆପଣ ସେଠାରେ ରଖି ଆସିଥିଲେ । ଆଉ ଚଉଧୁରୀ ସାହେବଙ୍କୁ ହତ୍ୟା କରିବା ମୂଳରେ ଆପଣଙ୍କର ଉଦ୍ଦେଶ୍ୟ ଥିଲା ସେଇ ଜାପାନୀ ଖେଳଣାଟିକୁ ହସ୍ତଗତ କରିବା ଏବଂ ବହୁ ସାଧ ସାଧନା ପରେ ଆପଣ ତାହା ପାରିଛନ୍ତି ।

: ଚୁପ୍ କରନ୍ତୁ ମହାପାତ୍ରଜୀ । ଆପଣଙ୍କ ସ୍ପର୍ଦ୍ଧା ବଢ଼ି ଯାଉଛି । ମୁଁ ଏଇକ୍ଷିଣା ପୋଲିସ୍ ଡାକି ଆପଣଙ୍କୁ...

ବ୍ରିଜ୍‌ଲାଲଙ୍କ କଥା ଶେଷ ହେଲା ନାହିଁ । ଦରଜା ଠେଲି ଘର ଭିତରେ ପ୍ରବେଶ କଲେ ପୋଲିସ୍ ଇନିସ୍‌ପେକ୍ଟର ମିଷ୍ଟର ଗାଙ୍ଗୁଲି ।

ହସି ହସି କହିଲେ : ମୁଁ ଆସିଛି ବ୍ରିଜ୍‌ଲାଲଜୀ । ମୋତେ କ'ଣ କରିବାକୁ ହେବ ଅନୁମତି ଦିଅନ୍ତୁ ।

ଆଖି ଆଗରେ ପୋଲିସ୍ ଇନିସ୍‌ପେକ୍ଟରଙ୍କୁ ଦେଖି ବ୍ରିଜ୍‌ଲାଲଙ୍କ ଆଖି ଯୋଡ଼ାକ କପାଳକୁ ଉଠିଗଲା । ସେ ଥତମତ ହୋଇ କହିଲେ : ମହାପାତ୍ରଜୀ ମୋ ଉପରେ ଅତ୍ୟାଚାର

ଆରମ୍ଭ କରି ଦେଇଛନ୍ତି । ସେ ମୋତେ ବ୍ଲାକ୍‌ମେଲିଂ କରିବା ପାଇଁ ଏଠାକୁ ଛୁଟି ଆସିଛନ୍ତି ।

ମିଷ୍ଟର ଗାଙ୍ଗୁଲି ଅଳ୍ପ ହସି ଡାକିଲେ : ହାବିଲଦାର ।

ଜଣେ ହାବିଲଦାର ହାତରେ ଟେପ୍‌ରେକର୍ଡ଼ରଟି ଧରି ଭିତରେ ପ୍ରବେଶ କଲା ।

ମିଷ୍ଟର ଗାଙ୍ଗୁଲି କହିଲେ : ସେଇଟା ବଜେଇ ବ୍ରିଜ୍‌ଲାଲଜୀଙ୍କୁ ଟିକିଏ ଶୁଣାଇ ଦିଅ ।

ହାବିଲଦାର ଟେପ୍‌ରେକର୍ଡ଼ରଟି ଲଗାଇ ଦେଲା ।

: ନା ନା ଆପଣ ଯାଆନ୍ତୁ ନାହିଁ । ମୋତେ ଡର ମାଡ଼ୁଛି ।

: କିନ୍ତୁ ମୁଁ ଯେ ଆଉ ଅପେକ୍ଷା କରି ପାରୁନାହିଁ ।

: କାହିଁକି ?

: ଆପଣ ଯେ ମୋ କଥା ଶୁଣୁ ନାହାନ୍ତି ।

: ମୁଁ ଏଥର ଶୁଣିବି । ଆପଣଙ୍କ କଥା ଶୁଣିବି । ଆପଣ ମୋର ପରମ ଆତ୍ମୀୟ । ଆପଣଙ୍କ କଥା ନଶୁଣି ଆଉ କାହା କଥା ଶୁଣିବି ?

: ମିଷ୍ଟର ହାଜରା କିନ୍ତୁ ଆପଣଙ୍କ ଆଚରଣରେ ଭୀଷଣ ଅସନ୍ତୁଷ୍ଟ ହୋଇଛନ୍ତି । ସେଇଥିପାଇଁ ସେ ଅଭିମାନ କରି ଦୂର ବିଦେଶରେ ବସି ରହିଛନ୍ତି ।

: କିଏ ତାଙ୍କୁ ମୋ ଆଚରଣର ସମ୍ବାଦ ଦେଲା ?

: ସେଇମାନେ, ଯେଉଁମାନେ ଆପଣଙ୍କୁ ସେଦିନ ରାତିରେ ସେଇ ହୁଡ୍ ଖୋଲା ଚକୋଲେଟ୍ ରଙ୍ଗର ଗାଡ଼ିରେ ବସାଇ ନେଇ ଯାଇଥିଲେ ଦୁଷ୍କର୍ମ ସାଧନ କରିବା ପାଇଁ । ସେଇମାନେ ଖବର ଦେଇଛନ୍ତି ମିଷ୍ଟର ହାଜରାଙ୍କୁ ।

: ବ୍ରିଜ୍‌ଲାଲଜୀ ! ତୁମେ ସଇତାନ ! ତୁମେ ମୋର ସର୍ବନାଶ କାମନା କର । ସେଇଥିପାଇଁ ତୁମେ ମୋତେ ପ୍ରବର୍ତ୍ତାଇ ଚଉଧୁରୀ ସାହେବଙ୍କୁ ଖୁଣ୍ କରାଇଛ । ମୁଁ ତୁମକୁ ଖୁଣ୍ କରି ମୋର ତୃଷା ମେଣ୍ଟେଇବି । ହା ହା- ହା- ହା- ହା-

: ଷ୍ଟପ୍ । ମିଷ୍ଟର ଗାଙ୍ଗୁଲି ଟେପ୍‌ରେକର୍ଡ଼ର ବନ୍ଦ କରିବା ପାଇଁ କହିଲେ ।

ବ୍ରିଜ୍‌ଲାଲଙ୍କ ମୁହଁ ଶେତା ପଡ଼ି ଯାଇଥିଲା ।

ପେଟ ଭିତରେ ତାଙ୍କର କମ୍ପନ ସୃଷ୍ଟି ହୋଇ ଯାଇଥିଲା ।

ମିଷ୍ଟର ଗାଙ୍ଗୁଲି ବିଦ୍ରୂପ କଣ୍ଠରେ କହିଲେ : ଶୁଣିଲେ ବ୍ରିଜ୍‌ଲାଲଜୀ ! ରେବେକା ମୁଖାର୍ଜୀର କଣ୍ଠ ସ୍ୱର ନିଶ୍ଚୟ ବାରି ପାରିଥିବେ ?

: ନା ନା, ଷଡ଼ଯନ୍ତ୍ର, ମୋ ବିରୁଦ୍ଧରେ ଏହା ଏକ ଭୀଷଣ ଷଡ଼ଯନ୍ତ୍ର । ଆପଣମାନେ ସମସ୍ତେ ମେଳିହୋଇ ମୋ ବିରୁଦ୍ଧରେ ଲାଗି ପଡ଼ିଛନ୍ତି । ମୁଁ ଆପଣମାନଙ୍କ ବିରୁଦ୍ଧରେ ପୋଲିସ୍ ମନ୍ତ୍ରୀଙ୍କ ନିକଟରେ ଅଭିଯୋଗ କରିବି । ଆପଣମାନେ...

ହଠାତ୍ ବ୍ରିଜଲାଲଜୀଙ୍କ ମୁଖ ବନ୍ଦ ହୋଇଗଲା । ସେ ଦେଖିଲେ ତରଫଦାର ଦରଜା ଖୋଲି ଭିତରକୁ ପଶି ଆସୁଛନ୍ତି । ହାତରେ ସେଇ ଜାପାନୀ ଖେଳଣାଟା । ମୁହଁରେ ଉତ୍ୟକ୍ତ ଭାବ ।

କିନ୍ତୁ ତରଫଦାର ଘର ଭିତରେ ପୋଲିସ୍ ଇନିସ୍‌ପେକ୍ଟରଙ୍କୁ ଦେଖି ନୀରବ ରହିଗଲେ । ପାଟି କଥା ତାଙ୍କର ପାଟିରେ ଅଟକିଗଲା । ସେ ଆଗକୁ କି ପଛକୁ ପାଦ ପକାଇ ପାରିଲେ ନାହିଁ ।

ସତ୍ୟବ୍ରତ ମହାପାତ୍ର ସ୍ମିତ ହସି କହିଲେ : ଆସନ୍ତୁ ମିଷ୍ଟର ତରଫଦାର । ଆପଣ ନ ଆସିଥିଲେ ଅମେ ବର୍ତ୍ତମାନ ଆପଣଙ୍କ ପାଖକୁ ଯାଇ ଥାଆନ୍ତୁ, ବସନ୍ତୁ ।

: ମୋ ପାଖକୁ, ମୋ ପାଖକୁ କାହିଁକି ଯାଇ ଥାଆନ୍ତେ ? ତରଫଦାରଙ୍କ କଣ୍ଠରେ ଯେପରି ଜଡ଼ତା ଫୁଟି ଉଠୁଥିଲା ।

: ପାଞ୍ଚ କୁଇଣ୍ଟାଲ ମାଲ୍ ଅର୍ଡ଼ର ଦେବା ପାଇଁ ।

: ମାନେ ?

: ପ୍ରଥମ ଦେଖାରେ ଆପଣ ମୋତେ ଅର୍ଡ଼ର ଫର୍ମ ଦେଇଥିଲେ ମାଲ ବୁକ୍ କରିବା ପାଇଁ । କିନ୍ତୁ ଏତେ ଶୀଘ୍ର ଯେ ମାଲ୍ ବୁକ୍ କରିବା ପାଇଁ ଆପଣଙ୍କ ପାଖକୁ ଯିବାକୁ ହେବ ଆଶା କରି ନଥିଲି ।.ତା'ପରେ ଆପଣ ରେଡ଼ି ହୋଇ ଆସିଛନ୍ତି ତ ?

ମିଷ୍ଟର ତରଫଦାର କେବଳ ପ୍ରଶ୍ନବାଚୀ ନୟନରେ ଅନାଇଥିଲେ ।

ସତ୍ୟବ୍ରତ ଉଠି ଯାଇ ତରଫଦାରଙ୍କ ହାତରୁ ଖେଳଣାଟା ଟାଣି ନେଇ କହିଲେ : ଏଇ ମାଲଟା ପାଇଁ ମୋର ମହା ଦୁଶ୍ଚିନ୍ତା ଥିଲା ମିଷ୍ଟର ତରଫଦାର । ବ୍ରିଜ୍‌ଲାଲଜୀଙ୍କର କିଛି ଦୋଷ ନାହିଁ । ସେ ଖାଣ୍ଟି ମାଲ୍ ଆପଣଙ୍କୁ ସରବରାହ କରିଛନ୍ତି, କିନ୍ତୁ ଆପଣ ପକ୍‌କା ଜହୁରୀ ନୁହନ୍ତି । ଫଳରେ....

ତରଫଦାର ଏଥର କଣ୍ଠରେ ଟିକିଏ ଦୃଢ଼ତା ଫୁଟାଇବାକୁ ଚେଷ୍ଟା କରି କହିଲେ : ଆପଣ କାହାକୁ କ'ଣ କହୁଛନ୍ତି ଟିକିଏ ଚିନ୍ତା କରି କୁହନ୍ତୁ ।

ସତ୍ୟବ୍ରତ ଖେଳଣାର ଧଡ଼ପଟଟା ଓଲଟାଇ କହିଲେ : ଆପଣ ହୀରା ଜହରତ୍ ଉଦ୍ଦେଶ୍ୟରେ ଖେଳଣାଟିର ପିଠିପାଖ ଚିରି ଭିତରେ କିଛି ନପାଇ ନିରାଶ ହୋଇଛନ୍ତି । ଏଥିପାଇଁ ଆପଣଙ୍କର ବହୁ ଅର୍ଥବ୍ୟୟ ବ୍ୟର୍ଥ ହୋଇଛି ଭାବି ଆପଣ ବ୍ରିଜ୍‌ଲାଲଙ୍କ ନିକଟକୁ ଛୁଟି ଆସିଛନ୍ତି ପ୍ରତିଶୋଧ ନେବାପାଇଁ । କିନ୍ତୁ ବ୍ରିଜଲାଲଜୀ ନିମକସଚ୍ଚା ଲୋକ । ସେ ଆପଣଙ୍କୁ ଖାଣ୍ଟି ହୀରାର ସନ୍ଧାନ ଦେଇଛନ୍ତି, ଦେଖିବେ ?

ସତ୍ୟବ୍ରତ ସମସ୍ତଙ୍କ ଆଗରେ ଜାପାନୀ ଖେଳଣାଟିର ଆଖି ଦୁଇଟି ତାଡ଼ି ବାହାର କରି ଆଣିଲେ । ଆଖି ଦୁଇଟା ପ୍ଲାଷ୍ଟିକ୍ କଭରରେ ଆବୃତ୍ତ ଥାଇ ରଙ୍ଗ ହୋଇଥିଲା । ସତ୍ୟବ୍ରତ ପ୍ଲାଷ୍ଟିକ୍ କଭର ଚିରି ଦେବା ମାତ୍ରକେ ଛୋଟ ଛୋଟ ଆକୃତିର ହୀରା ଦୁଇଖଣ୍ଡ ଫ୍ଲୋର ଉପରେ ଗଳି ପଡ଼ିଲା ।

ମିଷ୍ଟର ତରଫଦାର ତାଙ୍କର ଅଜ୍ଞାତ ସାରରେ ଉଠି ଯାଉଥିଲେ ହୁଏତ ହୀରା ଦୁଇ ଖଣ୍ଡ ଗୋଟେଇ ଆଣିବା ପାଇଁ ।

ପୋଲିସ୍ ଇନିସ୍‌ପେକ୍ଟର ମିଷ୍ଟର ଗାଙ୍ଗୁଲି ତରଫଦାରଙ୍କ ହାତ ଧରି ପୁଣି ଚେଆର ଉପରେ ବସାଇ ଦେଲେ ।

ସତ୍ୟବ୍ରତ କହିଲେ : ଏହାପରେ ଆପଣଙ୍କର ଆଉ କିଛି କହିବାର ଅଛି ବ୍ରିଜ୍‌ଲାଲଜୀ ?

ବ୍ରିଜଲାଲଙ୍କର ବାକ୍‌ଶକ୍ତି ହଜି ଯାଇଥିଲା ।

ହାବିଲ୍‌ଦାର ମିଷ୍ଟର ଗାଙ୍ଗୁଲିଙ୍କ ଇଙ୍ଗିତରେ ହାତ କଡ଼ିଟା ଧରି ଆଗେଇ ଯାଉଥିଲା ।

ବ୍ରିଜ୍‌ଲାଲଜୀ ସୁଶୀଳ ବାଳକଟି ପରି ହାତ ଦୁଇଟି ବଢ଼ାଇ ଦେଲେ ।

: ଆଉ ମିଷ୍ଟର ତରଫଦାର ? ଆପଣଙ୍କର କିଛି ବକ୍ତବ୍ୟ ଅଛି ?

ମିଷ୍ଟର ତରଫଦାର କ୍ଷିପ୍ତ ହୋଇ ଉଠିଥିଲେ । ଚିତ୍କାର କରି କହିଲେ : ଚାଲନ୍ତୁ, ମୋର ଯାହା ବକ୍ତବ୍ୟ ମୁଁ କୋର୍ଟରେ କହିବି ।

ସତ୍ୟବ୍ରତ କହିଲେ : ତାହାହିଁ ଉତ୍ତମ ପନ୍ଥା ।



ଜୁଲାଇର ଏକ ବର୍ଷଣକ୍ଲାନ୍ତ ସକାଳ । ଜେଲଖାନା ଘଣ୍ଟାରେ ଆଠଟା ବାଜିଲା । ଧୀରେ ଧୀରେ ଖୋଲିଗଲା ବିଶାଳ ଲୁହା ଫାଟକଟା । ମୁଁ ବାହାରି ଆସିଲି ।

ମୁକ୍ତ ଆକାଶ । ଝିରିଝିରି ବର୍ଷା ଝରୁଛି । ପୂର୍ବାକାଶରେ ଇନ୍ଦ୍ରଧନୁର ରଙ୍ଗ । ଆଃ... ଦୀର୍ଘ ସାଢ଼େ ତିନିବର୍ଷ ପରେ ମୁଁ ଯେପରି ମୁକ୍ତ ବାୟୁ ସେବନ କଲି । ଆକାଶକୁ ଚାହିଁଲି । ପୂର୍ବ, ପଶ୍ଚିମ ଚାରିଆଡ଼େ ଆଖି ବୁଲାଇ ନେଇ ମୁଁ ଏକ ସ୍ୱସ୍ତିର ନିଶ୍ୱାସ ପକାଇଲି । ମୁଁ ସ୍ୱାଧୀନ, ମୁଁ ମୁକ୍ତ- ମୋତେ ଫେରିଯିବାକୁ ହେବ ଘରକୁ । ଛୋଟ ଏକ ଦୋତାଲା କୋଠାରେ ମୋର ସୁନ୍ଦର ସଂସାରଟିଏ । ରୀତା ଆଉ ମୁଁ, ମୁଁ ଆଉ ରୀତା । ଆଃ... ସେ ସୁଖର ଦିନ କଥା ଭାବି ସର୍ବାଙ୍ଗରେ ମୋର ଶିହରଣ ଖେଳିଗଲା । ମୁଁ ମନେ ମନେ ଖୋଜୁଥିଲି ଗୋଟିଏ ଟ୍ୟାକ୍ସି ।

କିନ୍ତୁ... ସୁନ୍ଦର ଫିଆଟ୍ ଗାଡ଼ି ଖଣ୍ଡେ ଆସି ମୋ ସାମ୍ନାରେ ଠିଆ ହେଲା । ମୁଁ ଯେପରି କାହାର କଣ୍ଠସ୍ୱର ଶୁଣି ପାରିଲି : ରଜତ !

ମୁଁ ଚାହିଁ ଦେଖିଲି ବରେନ୍ । ଦରଜା ଖୋଲି ମୋତେ ଡାକୁଛି : ଭିତରକୁ ଚାଲିଆସ ରଜତ । ବର୍ଷାରେ ଠିଆ ହୋଇ ଭିଜିଲେ ହୁଏତ ଅସୁସ୍ଥ ହୋଇ ପଡ଼ିବ ।

ଆଶ୍ଚର୍ଯ୍ୟ ହେଲି ସେଠାରେ ବରେନ୍‌କୁ ଦେଖି । ମନ ଭିତରେ କିଛି ସ୍ଥିର କରିବା ଆଗରୁ ମୁଁ ତା' ଗାଡ଼ିରେ ଉଠି ପଡ଼ିଲି । କାରଣ ବର୍ଷାଟା କିନ୍ତୁ ଧୀରେ ଧୀରେ ଜୋର୍‌ରେ ପଡ଼ିବାକୁ ଆରମ୍ଭ କରିଦେଇଥିଲା ।

ମୋ ହାତ ଦୁଇଟା ଚାପି ଧରି ବରେନ୍ ଯେପରି ଅପୂର୍ବ ଆନନ୍ଦରେ ଶିହରୀ ଉଠିଲା । ମୋତେ ପଚାରିଲା : ବାହାରକୁ ବାହାରି କେମିତି ଲାଗୁଛି ?

: ଭଲ । କିନ୍ତୁ ତମେ ଏଠି ? ମୁଁ ମୋଟେ ଆଶା କରି ନ ଥିଲି । ପୋଲିସ୍‌ର ବଡ଼ ସାହେବ ପଠାଇଛନ୍ତି ବୋଧେ ? ହସି ହସି ପଚାରିଲି ।

: ନା, ସରକାରୀ କାମରେ ନୁହେଁ । ନିଜେ ମୁଁ ଆସିଛି ।

: ଶୁଣି ଖୁସି ହେଲି । ସେ ଯାହା ହେଉ, ଗାଡ଼ିଟା ତ ଦେଖୁଛି ଚକ୍‌ଚକ୍ କରୁଛି, ନୂଆ କିଣିଛ ବୋଧେ ।

: ହଁ ।

: ବେଶ୍ ବେଶ୍ । ଶୁଣି ଖୁସି ହେଲି । ବର୍ତ୍ତମାନ ତମ ପୋଲିସ୍ ଡିପାର୍ଟମେଣ୍ଟର ଟୁ ପାଇସ୍ ଭଲ ହେଉଥିବ ।

ବରେନ୍‌ର ମୁହଁ ଶକ୍ତ ହୋଇ ଉଠିଲା । ତଥାପି ସେ ସଂଯତ ସ୍ୱରରେ କହିଲା : ରଜତ, ଏହି କଥାଟା ତୁମ ଛଡ଼ା ଅନ୍ୟ କେହି କହିଥିଲେ...

: ମୋ ଉପରେ ବା ତୁମର ଏତେ ଦୟା କାହିଁକି ଭାଇ ! ପୋଲିସ୍‌ର ଦୟା ଦାକ୍ଷିଣ୍ୟ ମୁଁ ଏଇ ସାଢ଼େ ତିନି ବର୍ଷ ଭିତରେ ଢେର ପାଇଛି ।

: ଛାଡ଼ ସେସବୁ । ଗୋଟାଏ ସୁଖବର ଶୁଣାଏ ତୁମକୁ । ଗତ ଦୁଇବର୍ଷ ହେବ ମୁଁ ବଡ଼ ସାହେବଙ୍କର ସ୍ପେଶାଲ ଅଫିସର । ଦରମାପତ୍ର ବଢ଼ିଛି ଦି'ପଇସା । ସେଇଥିପାଇଁ...

: ଆରେ ମତେ କ୍ଷମା କର ଭାଇ । ମୁଁ ଜାଣି ନଥିଲି । କ'ଣ କହିବାକୁ ଯାଇ କ'ଣ କହି ପକାଇଲି ।

: ତମେ ହୁଏତ ଜାଣିନ ରଜତ । ଏହା ଭିତରେ ଆମ ପୋଲିସ୍ ଡିପାର୍ଟମେଣ୍ଟର ଏକ ଅଭୂତପୂର୍ବ ଅଦଳ ବଦଳ ହୋଇଯାଇଛି । ଆଗର ବଡ଼ ସାହେବ ତାଙ୍କର ଦଳବଳ ସହ ଅନ୍ୟତ୍ର ଚାଲି ଯାଇଛନ୍ତି । ବର୍ତ୍ତମାନର ବଡ଼ ସାହେବ ଖୁବ୍ ଅମାୟିକ ଲୋକ ।

ମୋର କିଛି କହିବାର ନଥିଲା । ବାହାରକୁ ଚାହିଁ ପରିଚିତ ସହର ରୂପ ଦେଖୁଥିଲି ।

: ହୁଁ, ରଜତ ! ଏଇନେ କ'ଣ କରିବ ଭାବିଚ ? ବରେନ୍ ପ୍ରସଙ୍ଗ ବଦଳାଇଲା ।

: ମୁଁ ଏଯାଏ କିଛି ଭାବିନି ଭାଇ । ତେବେ ଗୋଟାଏ କିଛି ନିଶ୍ଚୟ କରିବାକୁ ହେବ । ମୁଁ ଜାଣେ ଖବର କାଗଜ ଅଫିସ୍‌ର ମୋର ପୂର୍ବ ଚାକିରିଟା ଚାଲିଯାଇଛି ।

: ତା'ହେଲେ ତ ସମସ୍ୟା ରଜତ । ବର୍ତ୍ତମାନ ତମକୁ ଖୁବ୍ କଷ୍ଟ ହେବ ।

: କଷ୍ଟ ନ କରି କ'ଣ କରିବି କୁହ । ପୋଲିସ୍-ଖୁନ୍ ଅପରାଧ । କେତେ ବଡ଼ ଅପରାଧ କହିଲ ? ଜେଲ ଖଟିଲେ ବି ଶାସ୍ତିର ଶେଷ ହେବ ନାହିଁ ।

: ପୋଲିସ୍ ତରଫରୁ ତମର କିଛି ଅସୁବିଧା ହେବ ନାହିଁ । କିନ୍ତୁ ସାଂବାଦିକତା ଆଉ ତମ ଭାଗ୍ୟରେ ଜୁଟିବା ମୁସ୍କିଲ । କାରଣ ରାଜନାରାୟଣ ସଂବାଦ-ପତ୍ର ସଂସ୍ଥାର ପ୍ରଧାନ । ତୁମେ ଯେତେବେଳେ ତାଙ୍କର ବିରାଗ ଭାଜନ ହୋଇଛ, ଆଉ ସାମ୍ବାଦିକତା ତମ ଭାଗ୍ୟରେ ନାହିଁ ।

: ସେ ଯା'ହେବ ଦେଖାଯିବ, ମୋ କଥା ମୋତେ ଚିନ୍ତା କରିବାକୁ ଦିଅ ।

: ତମେ ତ ତମ କଥା ନିଶ୍ଚୟ ଭାବିବ । ତଥାପି ଯଦି କିଛି ସାହାଯ୍ୟ ଫାହାଯ୍ୟ ଦରକାର ହୁଏ...

: ନା ନା, ମୁଁ କାହାଠାରୁ କିଛି ସାହାଯ୍ୟ ଚାହେ ନାହିଁ ।

: କିନ୍ତୁ ରୀତା... ତା' କଥା ଭାବି...

: ଆରେ ରୀତା ମୋର ସ୍ତ୍ରୀ । ସ୍ତ୍ରୀ ପ୍ରତି ସ୍ୱାମୀର ଯାହା କର୍ତ୍ତବ୍ୟ ତାହା ମୁଁ ନିଶ୍ଚୟ କରିବି ।

ନୀରବତା ଭିତରେ ଗାଡ଼ି ଆଗେଇ ଚାଲିଥିଲା । ମୋଡ଼ରେ ଗାଡ଼ିର ଗତି ବଦଳାଇ ବରେନ୍ କହିଲା : ମୁଁ ପୋଲିସ୍ ଚାକିରି କରେ ବୋଲି ମୋତେ ଅନ୍ୟ କିଛି ଭାବ ନାହିଁ । ଆମର ଗତ କୋଡ଼ିଏ ବର୍ଷର ବନ୍ଧୁତ୍ୱଟା ଏବେ ବି ଅକ୍ଷତ ରହିଛି । ସେ ଯାହା ହେଉ, ଆମ ବଡ଼ ସାହେବଙ୍କ ସଙ୍ଗରେ ତମ ବିଷୟରେ ମୁଁ କଥା କହିଥିଲି । ସେ ମୋତେ ଅଭୟ ଦେଇ କହିଛନ୍ତି, ତମ ପାଇଁ ଗୋଟାଏ ଚାକିରି ବ୍ୟବସ୍ଥା କରିଦେବେ ।

: ପୋଲିସ୍ ଚାକିରି ! ଅସମ୍ଭବ । ମୁଁ ଏଯାଏ ପାଗଳ ହୋଇନି ବରେନ୍ ।

: ମୁଣ୍ଡ ଗରମ କରନି ରଜତ । ରୀତା କଥା ଥରେ ଭାବ । ଜାଣିଛ ଏଇ ସାଢ଼େ ତିନିବର୍ଷ ଭିତରେ ରୀତାର କେତେ କଷ୍ଟ ହୋଇଛି ।

: କଷ୍ଟ କ'ଣ ମୋର ହୋଇନି ବରେନ୍ ! ଢେର କଷ୍ଟ ପାଇଛି । ଏହି ସାଢ଼େ ତିନିଟା ବର୍ଷ ମୋର ଯେ କି ଯନ୍ତ୍ରଣା ଭିତରେ କଟିଛି, ତମେ ବିଶ୍ୱାସ କରିପାରିବ ନାହିଁ । ସେଇ ଯନ୍ତ୍ରଣାର ଦିନଗୁଡ଼ାକ ଭିତରେ ବେଳେବେଳେ ମୁଁ ଭାବୁଥିଲି, ମୁଁ ଯଦି ବଡ଼ ସାହେବଙ୍କ କଥା ଶୁଣିଥାଆନ୍ତି ଏବଂ ସେ ମୋତେ ଦେଇଥିବା ପଚାଶ ହଜାର ଟଙ୍କା ଘୁସ୍ ନେଇ ମୁଁ ମୁହଁ ବନ୍ଦ କରି ରହିଯାଇଥାଆନ୍ତି, ତା'ହେଲେ ମୁଁ ବା ରୀତା କେହି କଷ୍ଟ ପାଇ ନଥାନ୍ତୁ । କ'ଣ ଲାଭ ମିଳିଲା ନୀତିବାଗୀଶ ହୋଇ ? ତେଣୁ ମୁଁ ଠିକ୍ କରିଛି ନ୍ୟାୟ, ନୀତି ଏସବୁ ନେଇ ଆଉ ଚିନ୍ତା କରିବି ନାହିଁ ।

: ଛି ରଜତ । ଏସବୁ କଥା ତମ ମୁହଁରେ ଶୋଭା ପାଏ ନାହିଁ । ଆଚ୍ଛା, ତମ ଛାତିରେ ହାତ ଦେଇ କୁହତ, ଘୁଷ୍ ଟଙ୍କା ନେଇ ମୁହଁ ନ ଖୋଲି ତମେ ଶାନ୍ତିରେ ରହିପାରି ଥାଆନ୍ତ ? ସ୍ୱସ୍ତିର ନିଃଶ୍ୱାସ ପକାଇ ପାରିଥାଆନ୍ତ ?

: ଜାଣେନି, ହୁଏତ ପାରି ନଥାନ୍ତି । ତେବେ ଏଇ ନରକ କୁଣ୍ଡରୁ ହୁଏତ ତ୍ରାହି ପାଇଥାଆନ୍ତି । ଓଃ... ସାଢ଼େ ତିନି ବର୍ଷ । ଗୋଟାଏ ଲୁହାର ଗାରଦ ଭିତରେ ଦୀର୍ଘ ଏତେଗୁଡ଼ାଏ ଦିନ ! ସେଠାରେ ସଙ୍ଗୀ କିଏ ନା, ଜଣେ ନାବାଳିକା ଧର୍ଷଣକାରୀ ଏବଂ ଆଉ ଦି'ଜଣ ଚୋର, ଭାବିପାରୁଚ ମୋ ଅବସ୍ଥା । ଅଥଚ ବାହାରେ ଥିଲେ ମୁଁ କେତେ ଭଲ ଥାଆନ୍ତି, ହୁଏତ ଏହି ସାଢ଼େ ତିନିବର୍ଷ ଭିତରେ ତମ ଗାଡ଼ି ପରି ମୁଁ ମଧ୍ୟ ଗୋଟାଏ ସୁନ୍ଦର ଗାଡ଼ି କିଣିପାରି ଥାଆନ୍ତି ।

: ଏସବୁ ତମେ କ'ଣ କହୁଛ ରଜତ । ରୀତା ଶୁଣିଲେ କ'ଣ ଭାବିବ !

: ରୀତା କଥା ତମେ ଏତେ କାହିଁକି ଭାବୁଛ ବନ୍ଧୁ । ସେ କ'ଣ ଭାବିବ ନ ଭାବିବ ସେ କଥା ମୁଁ ବୁଝିବି ।

ଗାଡ଼ି ଆଗେଇ ଚାଲିଥିଲା । ସହରର ପଥ ଅତିକ୍ରମ କରି ଆମେ ଚାଲିଥିଲୁ ଲେକ୍ ଟାଉନ୍ ଆଡ଼େ । ନୂଆ ବସତି ଗଢ଼ି ଉଠୁଛି ଏଠି । ସୁନ୍ଦର ସୁନ୍ଦର ଘର । ସୌଖୀନ ହୋଟେଲ । ଦିନେ ଏଇସବୁ ଅଞ୍ଚଳରେ ମୋର ଆଡ୍‌ଡା ଥିଲା, ମୋ ସାମ୍ବାଦିକ ଜୀବନରେ ସଂବାଦ ସଂଗ୍ରହ ପାଇଁ ମୁଁ ଛୁଟି ଆସୁଥିଲି ଏଇ ଅଞ୍ଚଳକୁ ।

ଏଠାକାର ସବୁଠାରୁ ନାମୀ ସଂବାଦପତ୍ର ପ୍ରଭାତୀ । ମୁଁ ତା'ର ସାମ୍ବାଦିକ । ଏହି ସହରରେ ସର୍ବତ୍ର ମୋର ଅବାଧ ବିଚରଣ । ଖବର ସଂଗ୍ରହ କରି ବୁଲେ ମୁଁ । ଏପରି ସବୁ ସମ୍ବାଦ ମୁଁ ପରିବେଷଣ କରେ ଯାହା ପଢ଼ିବା ପାଇଁ ଲୋକମାନେ ଅପେକ୍ଷା କରି ବସନ୍ତି । ସହରର ଅନ୍ୟାନ୍ୟ ଛୋଟ ଛୋଟ କାଗଜମାନଙ୍କରେ ମଧ୍ୟ ବେଳେବେଳେ ମୁଁ ଲେଖେ ।

ଉପାର୍ଜନ ମନ୍ଦ ହୁଏ ନାହିଁ । ବାହା ହେଇଛି ଖୁବ୍ ଜାକଜମକ କରି । ଛୋଟ କୋଠାଟିଏ ବି କିଣିଛି । ପୁରୁଣା ଗାଡ଼ିଟିଏ ମଧ୍ୟ ଅଛି । ବେଶ୍ ଚଳି ଯାଉଥିଲା । ସୁଖର ଜୀବନ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ହଠାତ୍ ଦିନେ ଆସିଲା ସେଇ କାଳରାତ୍ରି...

ଏଭିନିଉ ହୋଟେଲର ବାର୍‌ରେ ଗୋଟାଏ ହୁଇସ୍କି ଗ୍ଲାସ୍ ନେଇ ମୁଁ ବସିଥିଲି । ହାତରେ ସିଗାରେଟ୍ ପୋଡୁଥିଲା । ମୁଁ ଖୁବ୍ ଅନ୍ୟମନସ୍କ ହୋଇ ଭାବୁଥିଲି ସେ ଦିନର ସଂବାଦ ପରିବେଷଣ ସମ୍ବନ୍ଧରେ ।

ହଠାତ୍ ଗୋଟାଏ ଶବ୍ଦ ଆସି ବାଜିଲା ମୋ କାନରେ । ମୋଠାରୁ ସାମାନ୍ୟ ଦୂରରେ, ଗୋଟିଏ ଉହାଡ଼ିଆ ଜାଗାରେ, ଦୁଇଜଣ ଲୋକ ବସି ମଦ୍ୟପାନ କରୁଛନ୍ତି । ସେମାନେ କଥାବାର୍ତ୍ତା ହେଉଥିଲେ ଧୀରେ ଧୀରେ, ତା'ପରେ ଆଉ ଟିକିଏ ଜୋର୍‌ରେ । ବୋଧହୁଏ ସେମାନେ ଉନ୍ମତ୍ତ ହୋଇ ଉଠିଥିଲେ । କିନ୍ତୁ ଏ ଯେ ମୋର ସେଇ ଆକାଂକ୍ଷିତ ସମ୍ବାଦ । ମୁଁ କାନ ଠିଆ କରି ଶୁଣିଲି । ଯେଉଁ ସଂବାଦ ସଂଗ୍ରହର ସୂତ୍ର ମୁଁ ଖୋଜି ବୁଲୁଥିଲି ଦୀର୍ଘ କେତେଦିନ ଧରି ଆଜି ହଠାତ୍ ଏତେ ସହଜରେ ତାହା ମିଳିବ, ମୋଟେ ଆଶା କରିପାରି ନଥିଲି ।

ସେମାନେ କଥା ହେଉଥିଲେ ଏକ ବ୍ୟାଙ୍କ ଡକେଇତି ସମ୍ବନ୍ଧରେ । ସାମାନ୍ୟ ସୂଚନା ମୁଁ ପାଇଥିଲି ଅଳ୍ପଦିନ ଆଗରୁ ଏକ ବଡ଼ ଧରଣର ବ୍ୟାଙ୍କ ଡକେଇତିର ପ୍ରସ୍ତୁତି ଚାଲିଛି ଏଇ ସହରରେ । କେତେଜଣ ଆନ୍ତର୍ଜାତିକ ଡକାୟତ ଅଛନ୍ତି ଏହି ଚକ୍ରାନ୍ତ ପଛରେ । ମୁଁ କିନ୍ତୁ ସମ୍ବାଦଟାକୁ ଭିତ୍ତିହୀନ ମନେ କରୁଥିଲି । ବର୍ତ୍ତମାନ ନିଶ୍ଚିନ୍ତ ହେଲି ଯେ, ତାହା ଘଟିବାକୁ ଯାଉଛି । ସେମାନେ ପୋଲିସର ବଡ଼ ସାହେବଙ୍କୁ ହାତ କରିଛନ୍ତି ଏବଂ...

ନା, ଆଉ ସ୍ଥିର ହୋଇ ବସି ରହିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ଉଠି ପଡ଼ିଲି । ଲାଗି ଗଲି କାର୍ଯ୍ୟରେ । ଏହାର ସତ୍ୟତା ସମ୍ବନ୍ଧରେ ପ୍ରମାଣ ସଂଗ୍ରହ କରିବାକୁ ହେବ । ଏତେବଡ଼ ଗୋଟାଏ ଘଟଣାକୁ ପ୍ରମାଣ କରି ବିଚ୍ ବଜାରରେ ହାଣ୍ଡି ଭାଂଗିବାକୁ ହେଲେ ଅନେକ ସାଧସାଧନାର ଆବଶ୍ୟକ ।

ଧୀରେ ଧୀରେ ସଫଳତା ଦିଗରେ ଆଗେଇଲି । ସାକ୍ଷୀ ପ୍ରମାଣ କିଛି ସଂଗ୍ରହ କଲି । ଠିକ୍ କଲି ଖବରଟା କାଗଜରେ ଛାପିବା ଆଗରୁ ପ୍ରଭାତୀର ମାଲିକ, ମୋର ଅନ୍ନଦାତା ମିଃ ରାଜନାରାୟଣଙ୍କ ସହିତ ଏ ବିଷୟରେ ଥରେ ଆଲୋଚନା କରିନେବା ଭଲ ।

ରାଜନାରାୟଣ ସବୁ ଶୁଣିଲେ । ଖାଲି ଛୋଟ ହୁଁଟିଏ ମାରି ମୁଣ୍ଡ ହଲାଇଲେ । କିଛି ସମୟ ଚିନ୍ତା କରି କହିଲେ : ସେହି ସବୁ ସାକ୍ଷୀପ୍ରମାଣ ସେ ନିଜେ ଥରେ ପରୀକ୍ଷା କରିବେ ।

ମୁଁ ଅବାକ୍ ହେଲି । ରାଜନାରାୟଣ ମୋତେ ଯାହା କହିଲେ ତାଙ୍କ କହିବା ଭଙ୍ଗୀରେ କିପରି ଏକ ନିରାଶକ୍ତ ଭାବ ଫୁଟି ଉଠିଥିଲା । ମୁଁ ନିର୍ବୋଧ ଯଦି ଘୁଣାକ୍ଷରେ ଜାଣିପାରିଥାନ୍ତି ଯେ ମିଃ ରାଜନାରାୟଣଙ୍କୁ ଡକାୟତମାନେ ଦଳରେ ଭିଡ଼େଇ ନେଇଛନ୍ତି, ତା'ହେଲେ ହୁଏତ...

ରାଜନାରାୟଣ କହିଲେ : କାଗଜପତ୍ର ଆଣି ମୋତେ ସବୁ ଦେଖାଅ । ଏତେ ବଡ଼ ଗୋଟାଏ ଘଟଣା ଟିକିନିଖି ନ ଦେଖି ଛାପିବାକୁ ଦେବା ଉଚିତ ହେବ ନାହିଁ ।

କାଗଜପତ୍ର ସବୁ ଘରେ ଥିଲା । ଧାଇଁଲି ଗାଡ଼ି ନେଇ । ମଝି ବାଟରେ ପୋଲିସ୍ ଗାଡ଼ି ମୋର ପଥରୋଧ କରି ଠିଆ ହେଲା । ଘଟଣା କ'ଣ ? ଶୁଣିଲି ପୋଲିସ୍‌ର ବଡ଼ ସାହେବ ମୋତେ ତାଙ୍କ ସହିତ ଦେଖା କରିବାକୁ ଡାକିଛନ୍ତି ।

ଥାନାକୁ ଗଲି । ବଡ଼ ସାହେବ ତାଙ୍କ ନିର୍ଜନ ଅଫିସ୍ ଭିତରକୁ ଡାକିଲେ । କିଛି ଭୂମିକା ନ କରି ଡ୍ରୟାରରୁ ପାଞ୍ଚ ବିଡ଼ା ନୋଟ୍ ବାହାର କରି ଟେବୁଲ୍ ଉପରେ ଥୋଇଲେ । କହିଲେ : ଏଇ ପଚାଶ ହଜାର ଟଙ୍କା ବଦଳରେ ବ୍ୟାଙ୍କ ଡକେଇତିର ସମସ୍ତ କାଗଜପତ୍ର ତମଠାରୁ କିଣି ନେବାକୁ ଚାହେ ।

ପଚାଶ ହଜାର ଟଙ୍କା ଘୁଷ୍ । ନା ନା, ଅସମ୍ଭବ । ମୋ ପରି ଜଣେ ଖ୍ୟାତି ସମ୍ପନ୍ନ ସାମ୍ବାଦିକର ମୁହଁ ଘୁଷ୍ ଦେଇ ବନ୍ଦ କରିବା ସମ୍ଭବ ନୁହେଁ । ତା'ଛଡ଼ା ମୋ ଜୀବନରେ ଏଇ ମାତ୍ର ଗୋଟାଏ ସୁଯୋଗ । ଏଇ ସୁଯୋଗଟା କାମରେ ଲଗାଇ ପାରିଲେ ମୁଁ ହୋଇପାରିବି ଜଣେ ପ୍ରଥମ ଶ୍ରେଣୀର ସାମ୍ବାଦିକ ।

ଉଠି ପଡ଼ିଲି । ଟଙ୍କା ବଣ୍ଡଲଗୁଡ଼ାକ ବାଁ ହାତରେ ଆଡ଼େଇ ଦେଇ ଘରୁ ବାହାରି ଆସିଲି ।

ବ୍ୟାଙ୍କ ଡକାୟତି ସମ୍ବନ୍ଧୀୟ ତଥ୍ୟ ସଂବଳିତ ଯାବତୀୟ କାଗଜ ପତ୍ର ନେଇ ଥୋଇଦେଲି ରାଜନାରାୟଣଙ୍କ ଟେବୁଲ ଉପରେ ଏବଂ ପୋଲିସ୍ ବଡ଼ସାହେବଙ୍କ ଘୁଷ୍ ଯାଚିବା ଖବରଟା ମଧ୍ୟ ଶୁଣାଇ ଦେଲି । ରାଜନାରାୟଣ ସବୁ ଶୁଣି କିଛି ସମୟ ସ୍ଥିର ଦୃଷ୍ଟିରେ ଅନାଇ ରହିଲେ ମୋ ମୁହଁକୁ । ଧୀରେ ଧୀରେ କହିଲେ, ରାତି ସାଢ଼େ ଦଶଟା ସମୟରେ ମୁଁ ଯେପରି ତାଙ୍କ ଘରକୁ ଯାଏ । ଏ ବିଷୟରେ ସବିଶେଷ ଆଲୋଚନା ସେ କରିବେ ମୋ ସହିତ ।

ସବୁ କଥା ଶୁଣି ରୀଟା ମୁହଁରେ ବି ଭୟର ଚିହ୍ନ ଫୁଟି ଉଠିଲା । ଏହିସବୁ ତଥ୍ୟ ସଂଗ୍ରହ ସମୟରେ ସେ ଥିଲା ମୋର ସଂଗୀ । ମୁଁ ଯେ ନିଁଆଁ ସହିତ ଖେଳିବାକୁ ଯାଉଛି ସେ କଥା ରୀଟା ଜାଣି ବି କେବଳ ମୋର ଭବିଷ୍ୟତ ଉଜ୍ଜ୍ୱଳ ଆଶାରେ ନୀରବ ରହିଥିଲା ।

ରାତି ପ୍ରାୟ ଦଶଟା ବେଳେ ମୁଁ ରୀଟାକୁ ସାଂଗରେ ଧରି ବାହାରିଲି । ରାଜନାରାୟଣଙ୍କ ଘରଟା ସହରଠାରୁ ଟିକିଏ ଦୂରରେ । ଶୀତ ରାତି, ରାସ୍ତା ଫାଙ୍କା । ଆଉ ଦଶ ପନ୍ଦର ମିନିଟ୍ ପରେ ଆମେ ଯାଇ ପହଞ୍ଚିଯିବୁ ।

ଆମେ ଚାଲିଛୁ । ହଠାତ୍ ପଛଆଡୁ ଖଣ୍ଡେ ପୋଲିସ୍ ଗାଡ଼ି ତୀର ବେଗରେ ଛୁଟି ଆସି ବାଁ ପାଖରେ ଘସି ହୋଇ ଯାଉ ଯାଉ ଆମ ଗାଡ଼ିକୁ ଏକ ଧକ୍କା ମାରିଲା ।

ମୁଁ ବ୍ରେକ୍ ଚାପିଲି । ବେଳଟା ଭଲ ଯେ ଧକ୍କାଟା ସେତେ ଜୋର୍‌ଦାର୍ ନଥିଲା ।

ପୋଲିସ୍ ଗାଡ଼ିଟା ସେତେବେଳକୁ ଠିଆ ହୋଇ ଯାଇଥିଲା । ଗାଡ଼ିର ଡ୍ରାଇଭର ଭୀଷଣ ଭାବରେ ଜଖମ ହୋଇ ପଡ଼ିଥିଲା । ଷ୍ଟିଅରିଂ ହୁଇଲ୍ ବାଙ୍କିଯାଇ ତା' ପେଟରେ ପଶି ଯାଇଥିଲା । ତା' ସାଥୀ ଜଣକର ଆଘାତ ସାମାନ୍ୟ । ସେ ଗାଡ଼ିରୁ ଓହ୍ଲାଇ ଆସି ସଂଗେ ସଂଗେ ମୋ ହାତରେ ହାତକଡ଼ି ପିନ୍ଧାଇ ଦେଇଥିଲା । ମୋର ଅପରାଧ ମୁଁ କୁଆଡ଼େ ପୋଲିସ୍‌ର ବିଧିବିଧାନ ଲଙ୍ଘନ କରି ଅସତର୍କ ଭାବରେ ଗାଡ଼ି ଚଳାଉଥିଲି ।

ଘଟଣାର ଆକସ୍ମିକତାରେ ମୁଁ ମୂକ ପାଲଟି ଯାଇଥିଲି । କିଛି ଭାବି ଠିକ୍ କରିଲା ପୂର୍ବରୁ ଆଉ ଗୋଟିଏ ପୋଲିସ୍ ଜିପ୍ ଆସି ମୋ ପାଖରେ ଠିଆ ହେଲା । ସେଥିରେ ଥିଲେ ଜଣେ ପୋଲିସ୍ ଅଫିସର । ସେ ଜିପ୍‌ରୁ ଓହ୍ଲେଇ ପଡ଼ିଲେ ।

କାହାରିକୁ କିଛି କହିବାକୁ ହେଲା ନାହିଁ । ଆଗରୁ ଯେପରି ସେ ସବୁ ଘଟଣା ଜାଣିଥିଲେ । ମୋତେ ଜିପ୍‌ରେ ଉଠାଇ ଥାନାକୁ ନେଇଗଲେ । ଆହତ ଡ୍ରାଇଭରକୁ ସଂଗେ ସଂଗେ ହସ୍‌ପିଟାଲ ପଠାଇ ଦିଆହେଲା ।

ମଝି ବାଟରେ ଜିପ୍ ଠିଆ ହେଲା । ମୋତେ ଓହ୍ଲେଇବାକୁ କୁହା ହେଲା । ମୁଁ ଓହ୍ଲେଇବା ମାତ୍ରକେ ବନ୍ଧୁକ ବେଣ୍ଟରେ ଶକ୍ତ ଆଘାତ ପାଇଲି ମୁଣ୍ଡରେ ।

ମୋର ହୋସ୍ ଯେତେବେଳେ ହେଲା, ସେତେବେଳକୁ ମୁଁ ଜେଲ୍‌ରେ । ଶୁଣିଲି ଆହତ ଡ୍ରାଇଭରଟି ହସ୍‌ପିଟାଲରେ ମରିଯାଇଛି । ପୋଲିସ୍-ଖୁଣ୍ ଅପରାଧରେ ମୋର ଜେଲ୍ ହେଲା ସାଢ଼େ ତିନି ବର୍ଷ । ଅବଶ୍ୟ କେସ୍ ଚାଲିଥିଲା । ମୋ ପକ୍ଷର ଓକିଲ ମୋର ମୁକ୍ତି ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । କିନ୍ତୁ ଲାଭ କିଛି ହେଲା ନାହିଁ । ରାଜନାରାୟଣଙ୍କୁ ସାକ୍ଷୀ ମାନିଥିଲୁ । କିନ୍ତୁ ସେ କିଛି ଜାଣନ୍ତି ନାହିଁ ବୋଲି ଅସ୍ୱୀକାର କରିଥିଲେ ।

ତେବେ ଲାଭ ଭିତରେ ଏତିକି ହେଲା ଯେ, ବ୍ୟାଙ୍କ ଡକେଇତି ରକ୍ଷା ପାଇଗଲା । ପୋଲିସ୍‌ର ବଡ଼ ସାହେବ ପଦତ୍ୟାଗ କଲେ । କିନ୍ତୁ ଶାସ୍ତି ମୋତେ ଭୋଗିବାକୁ ହେଲା ।

ଆଜି ମୁଁ ମୁକ୍ତ । ଚାକିରି ମୋର ଯାଇଛି । ଭବିଷ୍ୟତରେ ସାମ୍ବାଦିକ ଚାକିରି ପାଇବାର କ୍ଷୀଣତମ ଆଶା ବି ମୋର ନାହିଁ । ନୂତନ କିଛି ପେଶା ମୋତେ କରିବାକୁ ହେବ । ସଞ୍ଚିତ ଅର୍ଥ ମୋର କିଛି ନାହିଁ । ଯେତେବେଳେ ଯାହା ପାଇଛି ସବୁ ଦୁଇ ହାତରେ ଉଡ଼େଇ ଦେଇଛି । ରୀତା ପାଇଁ ବି କିଛି ରଖିଯାଇ ପାରି ନଥିଲି । ରୀତା କ'ଣ କରୁଛି, କେମିତି ଅଛି ?

ବରେନ୍ ଆଡ଼କୁ ଚାହିଁଲି । ସେ ଏକ ଧ୍ୟାନରେ ଗାଡ଼ି ଚଳାଉଛି । ପଚାରିଲି : ରୀତା ଭଲ ଅଛି ତ ?

: ଭଲ ଆଉ କ'ଣ । ଅଛି ଏକ ରକମ । ତମେ ଜେଲ୍ ଯିବା ପରେ ତାକୁ ଚାକିରି କରିବାକୁ ପଡ଼ିଛି ।

ଗାଡ଼ି ଠିଆ ହେଲା ଘର ସାମ୍‌ନାରେ । ବରେନ୍ ମୋ ହାତ ଚାପିଧରି କହିଲା : ଯାଅ, ଭିତରକୁ ଯାଅ । ରୀତା ଅପେକ୍ଷା କରି ବସିଛି ।

ଦରଜା ଠେଲି ଭିତରକୁ ପଶିଲି । ଦେଖିଲି ସେପାଖରେ ରୀତା ଠିଆ ହୋଇଛି । ମୁହଁରେ ତା'ର ଅନାବିଳ ହସ ଫୁଟି ଉଠିଲା । ମୁଁ ଲକ୍ଷ୍ୟ କଲି, ତା' ଆଖି କୋଣରେ ଚକ୍ ଚକ୍ କରୁଛି ମୁକ୍ତା ବିନ୍ଦୁ ପରି ଦୁଇଟୋପା ଅଶ୍ରୁ ।

\+ + +

ନା, ଆଉ ଭଲ ଲାଗୁ ନାହିଁ । ବିଛଣାରେ ଶୋଇ ଶୋଇ ଖାଲି ଦିନଗୁଡ଼ାକ କଟି ଯାଉଛି । ଏହାପରେ ମୋର କର୍ତ୍ତବ୍ୟ କ'ଣ ? ଏଇ ଏକମାତ୍ର ଚିନ୍ତା ମୁଁ ଗତ ସାତଦିନ ହେବ କରି ଚାଲିଛି । କ'ଣ କରିବି, କୁଆଡ଼େ ଯିବି, ଜୀବନଟା କେବଳ ସ୍ୱପ୍ନ ନୁହେଁ । ରୀତା ମୋ ପାଖରେ ଶୋଇଛି, ନିଶ୍ଚିନ୍ତରେ । କିନ୍ତୁ ମୁଁ ? ଖାଲି ଚିନ୍ତା ଆଉ ଚିନ୍ତା । ଖାଲି ଚିନ୍ତାରେ ତ ପେଟ ପୂରିବ ନାହିଁ, କିଛି ଗୋଟାଏ ଧନ୍ଦା କରିବାକୁ ହେବ ।

ସାମ୍ବାଦିକତା... ଅସମ୍ଭବ । ଖବର କାଗଜରେ ଚାକିରି ଆଉ ଜୀବନରେ ପାଇବି ନାହିଁ । କାରଣ ସଂବାଦପତ୍ର ରାଜ୍ୟରେ ରାଜନାରାୟଣ ମୋତେ ଆଉ ପ୍ରବେଶ କରାଇ ଦେବେ ନାହିଁ । ଏ କେତେଦିନ ମୁଁ ଛୋଟବଡ଼ କେତେଗୁଡ଼ିଏ ସଂବାଦପତ୍ର ପ୍ରତିଷ୍ଠାନରେ

ଘୂରି ଘୂରି ମୋର ସେଇ ଅଭିଜ୍ଞତା ହୋଇଛି । ସୁତରାଂ ମୋତେ ଅନ୍ୟ ପଥ ଧରିବାକୁ ହେବ । ଅନ୍ୟ ପେଶା କରିବାକୁ ହେବ ।

ରୀଟା ନିଦ ଘୋରରେ ମୋ ଉପରେ ଗୋଟାଏ ହାତ ପକାଇଲା । ମୁଁ ଚାହିଁଲି ତା' ମୁହଁକୁ । ଶାନ୍ତ, କୋମଳ । ଯେମିତି ନିଷ୍ପାପ ଶିଶୁଟିଏ ।

ମୁଁ ଜେଲ୍ ଯିବାର ଦୁଇବର୍ଷ ତିନିମାସ ଆଗରୁ ତା' ସହିତ ମୋର ବିବାହ ହୋଇଥିଲା । ସେତେବେଳକୁ ରୀଟାର ବୟସ ବାଇଶ, ମୋର ସତେଇଶ ।

ବିଚାରୀ, ଏଇ କେତେଟା ବର୍ଷ ସେ ଯେ କି ଦୁଃଖରେ କଟାଇଛି । ଦୁଃଖ ଛଡ଼ା ସୁଖ ସେ ପାଇବ କେଉଁଠୁ ? ମୁଁ ଜେଲ୍ ଯିବା ଆଗରୁ ବ୍ୟାଙ୍କରେ ଥିଲା ମାତ୍ର ତିନି ହଜାର ଟଙ୍କା । ଓକିଲ ଫି, ମାମଲାର ଅନ୍ୟାନ୍ୟ ଖର୍ଚ୍ଚ ଦେଉ ଦେଉ ଟଙ୍କା ପ୍ରାୟ ଶେଷ ହୋଇ ଯାଇଥିବ । ଯାହା ଅବଶିଷ୍ଟ ଥିବ ସେଥିରେ ଟାଣିଟୁଣି ସେ ହୁଏତ ବର୍ଷେ ଚଳିଥିବ । ତା'ପରେ ବାଧ ହୋଇ ତାକୁ ଚାକିରି କରିବାକୁ ପଡ଼ିଛି ।

କିନ୍ତୁ ଏଥର ରୀଟାର ଆୟ ଉପରେ ମୋତେ ନିର୍ଭର କରିବାକୁ ପଡ଼ିବ । ରୀଟାର ମାସିକ ଆୟ ଅଢ଼େଇଶ ତିନିଶ ଟଙ୍କାରେ ଦୁଇଜଣଙ୍କର ବା ଚଳିବ କିପରି ? ତା'ଛଡ଼ା ଗୋଟିଏ ପ୍ୟାକେଟ୍ ସିଗାରେଟ୍ ପାଇଁ ରୀଟାଠାରୁ ହାତ ପାତି କେଇଟା ଟଙ୍କା ମାଗିବି କିପରି ?

ଏଇ ସବୁ କଥା ଚିନ୍ତା କରି ଗତକାଲି ଗୋଟାଏ ବିଜ୍ଞାପନ ପଢ଼ି ଯାଇଥିଲି ଗୋଟାଏ ଦୁଇମାସିଆ ଚାକିରି ପାଇଁ । କିନ୍ତୁ ହେଲା ନାହିଁ । ଅଫିସ୍‌ର ମାଲିକ ମୋତେ ଦେଖି ଅବାକ୍ ହୋଇଗଲେ । ମୋତେ ସେ ଚିହ୍ନିପାରିଲେ । ମୁଁ ଯେ ଜଣେ ଜେଲ୍ ଫେରନ୍ତା ଅପରାଧୀ ! ମୁଁ ଯେତେ ଚେଷ୍ଟା କଲି ମୋର ଅବସ୍ଥାଟା ବୁଝେଇବା ପାଇଁ, ସେ ବୁଝିଲେ ନାହିଁ । ସ୍ପଷ୍ଟ ଭାଷାରେ ମନା କରିଦେଲେ, ନା ନା, ଏ କାମ ଆପଣଙ୍କ ପାଇଁ ନୁହେଁ ।

: କ'ଣ ଏତେ ଭାବୁଛ ତୁମେ ? ରୀଟାର ଡାକରେ ମୋର ଚିନ୍ତା ଭାଂଗିଗଲା ।

: ମୁଁ, ନା ରୀଟା । ଏମିତି ଶୋଇଥିଲି ।

: ତମେ ମୋ ପାଖରେ ଲୁଚାଅନି କିଛି । ତା'ଛଡ଼ା ଏଣୁତେଣୁ ଗୁଡ଼ାଏ ଚିନ୍ତା କରି କ'ଣ ହେବ କୁହ ? ମୁଁ ଯାହା ପାଉଛି ସେଥିରେ ଆମର ମୋଟାମୋଟି ଚଳିଯିବ । ଦୁଇଟା ତ ପେଟ । ତା'ଛଡ଼ା ତୁମକୁ ଦିନେ ନା ଦିନେ ଗୋଟାଏ କାମ ଯୁଟିଯିବ ।

ମୁଁ ହସି ହସି କହିଲି : ଆଉ ଯେତେଦିନ କାମ ନ ମିଳିଛି ସେତେଦିନ ଯାଏ ତମ କାନ୍ଧରେ ବସିଥିବି । ନା କ'ଣ କହୁଚ ?

ରୀଟା ମୁହଁ କଳା ପଡ଼ିଗଲା । ସେ ବ୍ୟଥିତ ସ୍ୱରରେ କହିଲା : ଏସବୁ କ'ଣ କହୁଛ । ତମେ ଆଉ ମୁଁ କ'ଣ ଅଲଗା ଅଲଗା । ତମର ସୁଖ ଦୁଃଖରେ ମୁଁ ସମଭାଗୀ ହେବାର କ'ଣ ଅଧିକାରୀ ନୁହେଁ ? ରୀଟା କାନ୍ଦି ଉଠିଲା ।

ମୁଁ ତାକୁ କୋଳକୁ ଟାଣିନେଲି । ପିଠି ଥାପୁଡ଼େଇଲି । ତା' ପଣତ କାନିରେ ମୁହଁ ଲୁଚେଇ କହିଲି : ତୁମେ ବୁଝିବନି ରୀଟା । ସାଢ଼େ ତିନି ବର୍ଷର ଜେଲ୍‌ଖାନାର କଏଦୀ ମୁଁ । ସମସ୍ତ ବୋଧଶକ୍ତି ମୋର ଶୁଖି ପଥର ହୋଇଯାଇଛି । ମୁଁ ଆଉ ନାହିଁ ରୀଟା... ମୁଁ ଆଉ...

ନା କିଛି ଆଉ ଭଲ ଲାଗୁ ନାହିଁ । ମନ ହେଉଛି ଘରଦ୍ୱାର ବିକ୍ରି କରିଦେଇ ରୀଟାକୁ ନେଇ ଅନ୍ୟ କେଉଁଠାକୁ ଚାଲିଯିବା ପାଇଁ । ଅଜଣା ଜାଗାରେ ହୁଏତ ନୂତନ ଭାବରେ

ଜୀବନଯାପନ କରିହେବ । କିନ୍ତୁ ନା, ସେ ହେବ ମୋର ଚରମ ପରାଜୟ । ଯେପରି ହେଉ ଏଇଠି ଏଇ ଘରେ ରହି, ଏଇ ସହରରେ ମୋତେ ଠିଆ ହେବାକୁ ହେବ ।

କିନ୍ତୁ କିପରି ? ଦିନ ପରେ ଦିନ ବିତିବାକୁ ଲାଗିଲା । ସକାଳୁ ବାହାରି ଚାକିରି ଅନ୍ୱେଷଣରେ ବୁଲି ବୁଲି ପୁଣି ଫେରୁଥିଲି ନିରାଶ ହୋଇ । ଏହି ବ୍ୟର୍ଥତା ଭିତରେ ମୋର ବଦଭ୍ୟାସଗୁଡ଼ାକ ବଢ଼ି ଚାଲିଥିଲା । ସଂଧ୍ୟା ହେଲେ ଘଣ୍ଟା ପରେ ଘଣ୍ଟା ବସି ବାର୍‌ରେ କଟାଇ ଦେଉଥିଲି, ପେଗ୍ ପରେ ପେଗ୍ ନିଃଶେଷ କରି ଚାଲିଥିଲି । ଏପରି ପର୍ଯ୍ୟାୟରେ ଆସି ଦିନେ ଦିନେ ପହଞ୍ଚୁଥିଲି ଯେ, ବୟ ଆଉ ମୋତେ ପାନୀୟ ଦେଉ ନଥିଲା । ସେ ବୁଝିପାରୁଥିଲା ପରବର୍ତ୍ତୀ ପେଗ୍‌ର ମୂଲ୍ୟ ଦେବା ପାଇଁ ମୋ ପାଖରେ କପର୍ଦ୍ଦକ ନାହିଁ ।

ଏହିପରି ଚାଲିଥିଲା । ଦିନକୁ ଦିନ ମୋ ସ୍ୱଭାବ ନଷ୍ଟ ହୋଇ ଯାଉଥିବାର ମୁଁ ଲକ୍ଷ୍ୟ କରୁଥିଲି । ଏବେ ଘରକୁ ଫେରି ରୀଟାକୁ ମିଛକଥା କହୁଥିଲି । କେଉଁଦିନ କହୁଥିଲି, ଜାଣ ରୀଟା ଆଜି ଗୋଟାଏ ତେଲ କମ୍ପାନୀରେ ଇଣ୍ଟରଭିଉ ଦେଇଥିଲି । ସେମାନଙ୍କର ବିଜ୍ଞାପନ ବିଭାଗରେ ଜଣେ ଅଫିସର ଆବଶ୍ୟକ । ମୋର ମନେ ହେଉଛି ଚାକିରିଟା ସେଠି ହୋଇଯିବ । ଯଦି ହୋଇଯାଏ ନା... ବହୁତ ଦରମା । ଦୁଃଖର ଦିନ ଆମର ଶେଷ ହେଲା ବୋଲି ଜାଣ । ଏହିପରି ପ୍ରତିଦିନ ଘରକୁ ଫେରି ଗୋଟାଏ ଗୋଟାଏ କଳ୍ପିତ କାହାଣୀ ଶୁଣାଉଥିଲି ରୀଟାକୁ ।

ରୀଟା କ'ଣ ଭାବୁଥିଲା କେଜାଣି, ମୋର କୌଣସି କଥାର ପ୍ରତିବାଦ କରୁ ନଥିଲା । ସେ ହସି ହସି ମୋ କଥା ଶୁଣୁଥିଲା । ତା' କର୍ତ୍ତବ୍ୟରେ ଏତେ ଟିକିଏ ବି ତ୍ରୁଟି କରୁ ନଥିଲା ।

ମୁଁ କିନ୍ତୁ ଦିନକୁ ଦିନ ଯେମିତି ଅଧଃପତନ ଆଡ଼କୁ ଆଗେଇ ଚାଲିଥିଲି ।

ତା'ପରେ ହଠାତ୍ ଦିନେ...

ସହରତଳିର ମୋର ସେହି ପରିଚିତ ପାନ-ଶାଳାରେ ମୁଁ ବସିଥିଲି । ସନ୍ଧ୍ୟା ନଇଁ ଆସୁଥିଲା । ସେତେବେଳକୁ ମୁଁ ସାତ ଆଠ ପେଗ୍ ଶେଷ କରି ସାରିଥିଲି । ପୁଣି ମୋ ଗ୍ଲାସ୍ ଭର୍ତ୍ତି କରିଦେଇଥିଲା ବୟଟା ।

ମୋ ଟେବୁଲର ଅଳ୍ପ ଦୂରରେ ଗୋଟାଏ ଫୋନ୍ ଘର । ସେଇଟା ପବ୍ଲିକ୍ ଫୋନ୍ । ପାନଶାଳାରେ ଗୋଟିଏ କାଚଘର ଭିତରେ ରଖା ହୋଇଛି । ଯାହାର ଯେତେବେଳେ ଦରକାର ହୁଏ, ଫୋନ୍ କରାଯାଏ ।

ମୋ ଗ୍ଲାସ୍‌ଟା ମୁହଁ ପାଖକୁ ଉଠାଇ ଧୀରେ ଧୀରେ ଚୁମ୍ବନ ଦେଉଛି । ଆଖିଟା ରହିଛି ସେହି ଫୋନ୍ ଘର ଉପରେ ।

ଠିକ୍ ସେଇ ମୁହୂର୍ତ୍ତରେ ଦରଜା ଠେଲି ଘର ଭିତରକୁ ପଶିଲା ଗୋଟିଏ ସୁନ୍ଦରୀ ।

ମୁଁ ବିଶ୍ୱାସ କରିପାରିଲି ନାହିଁ । ଥରେ ଆଖି ବନ୍ଦ କରି ପୁଣିଥରେ ଖୋଲି ଚାହିଁଲି ତା' ଆଡ଼େ । ହଁ, ପ୍ରକୃତରେ ସୁନ୍ଦରୀ ସେ । ଆଖିରେ ଗୋଟାଏ ଗଗ୍ଲାସ୍ । ହାତରେ ଗୋଟାଏ ଲାଲ ହାତବ୍ୟାଗ୍ । ମୋ ଟେବୁଲ ପାଖ ଦେଇ ସେ ଆଗେଇ ଗଲା ସିଧା ଫୋନ୍ ଘର ଭିତରକୁ ।

ମୁଁ ଅବାକ୍, ସ୍ତମ୍ଭିତ । ଆଖିରେ ମୋର ଫେନିଳ ଉଚ୍ଛ୍ୱାସର ନିଶା, ହାତରେ ସୁରାପାତ୍ର... କିଏ ତୁମେ ସୁନ୍ଦରୀ, କିଏ ଆସିଲ ତୁମେ ଦିବସାନ୍ତେ ପରୀ ରାଇଜରୁ ।

ହାତର ବ୍ୟାଗ୍‌ଟି ଥୋଇ ଫୋନ୍‌ର ଡାଏଲ ଘୂରାଇଲା । କଥା ହେଲା କାହା ସାଙ୍ଗରେ, ମାତ୍ର କେଇପଦ କଥା । ପୁଣି ରିସିଭର ରଖିଦେଇ କାଚ ଘରର ଦରଜା ଖୋଲି ବାହାରି

ଆସିଲା । କୁଆଡ଼େ ତା'ର ଦୃଷ୍ଟି ବୁଲିଲା ନାହିଁ । ତପସ୍ୱିନୀ ପରି ସିଧା ସେ ବାହାରିଗଲା ପାନଶାଳା ଭିତରୁ ।

ମୁଁ ବୁଲି ଅନାଇଥିଲି ସେ ଚାଲିଯିବା ଯାଏ । କିଏ ହୋଇପାରେ ଏହି ସୁନ୍ଦରୀ : ଦେହରେ ଦାମୀ ପୋଷାକ, ମୁହଁରେ ସମ୍ଭ୍ରାନ୍ତର ଛାପ, ତା'ପରେ ହାତର ସେଇ ହାତ ବ୍ୟାଗ୍‌ଟାର ମୂଲ୍ୟ...

ଏଁ ! ହାତ ବ୍ୟାଗ୍‌ଟା ତ ଗଲାବେଳକୁ ତା' ହାତରେ ନଥିଲା । ଝାଏଁ କରି ମୁଣ୍ଡଟା ମୋର ଝିମେଇ ଉଠିଲା । ନା ନା, ହାତ ବ୍ୟାଗ୍‌ଟା ତା' ହାତରେ ତ ଦେଖିଲି ନାହିଁ ।

ମୁଁ ତଡ଼ିତ୍ ବେଗରେ ଉଠି ଠିଆ ହେଲି । ଚାରିଆଡ଼େ ଥରେ ସତର୍କ ଦୃଷ୍ଟି ବୁଲେଇ ନେଇ ଧୀରେ ଧୀରେ ଆଗେଇଲି ଫୋନ୍ ଘରଟା ଭିତରକୁ ।

ଦରଜା ଠେଲି ଭିତରେ ପଶି ଥମ୍‌କି ଠିଆ ହୋଇ ପଡ଼ିଲି ।

ଫୋନ୍ ଷ୍ଟାଣ୍ଡ ତଳକୁ ପଡ଼ିରହିଛି ହାତ ବ୍ୟାଗ୍‌ଟା ।

ଦେହଟା ମୋର ଥରି ଉଠିଲା । ନିଜକୁ ଯଥା ସମ୍ଭବ ସଂଯତ କରି ଫୋନ୍ ଘର ଭିତରେ ଦରଜା ବନ୍ଦ କରି ଠିଆ ହେଲି । ଦେହରୁ ଝାଳ ବୋହି ପଡ଼ିଲା ।

ବର୍ତ୍ତମାନ କ'ଣ କରିବି ? ଏଣେତେଣେ ଚାହିଁଲି ଚାରିଆଡ଼କୁ । ନା କେହି ମୋ ଆଡ଼କୁ ଅନେଇ ନାହାନ୍ତି । ତା'ହେଲେ ବର୍ତ୍ତମାନ ମୋର କରଣୀୟ ହେଉଛି ବ୍ୟାଗ୍‌ଟି ଉଠାଇ ଦେଖିବାକୁ ହେବ ଭିତରେ କ'ଣ ଅଛି । ହୁଏତ ତହିଁରେ ମହିଳାଟିର ପରିଚୟ ଲିପି ଥିବ, ଆହୁରି ହୁଏତ...

ନା, ବଡ଼ ଡେରି ହୋଇଯାଉଛି । ସୁଯୋଗ ଜୀବନରେ ଖୁବ୍ କମ୍ ଆସେ । ଅବହେଳାରେ ତାକୁ ଆଡ଼େଇ ଦେବା ଉଚିତ ନୁହେଁ । ହୁଏତ ଏଇ ବ୍ୟାଗ୍‌ଟି ମୋ ଭାଗ୍ୟ ପରିବର୍ତ୍ତନ କରିଦେଇ ପାରିବ । ଭଦ୍ର ମହିଳାଟିର ଠିକଣାରେ ମୁଁ ଯାଇ ପହଞ୍ଚି ବ୍ୟାଗ୍‌ଟି ଫେରାଇ ଦେବି । ସେ ମୋତେ ଆଦର ଅଭ୍ୟର୍ଥନା କରିବ । କୃତଜ୍ଞତା ଜଣେଇବ ଏବଂ...

ନା, ଆଉ ଡେରି କରିବା ଉଚିତ ନୁହେଁ । ଆଉ ଥରେ ଆଗକୁ ପଛକୁ ଚାହିଁଲି । ନଇଁପଡ଼ି ବାଁ ହାତରେ ବ୍ୟାଗ୍‌ଟି ଉଠାଇ ନେଲି । ଡାହାଣ ହାତରେ ଟେଲିଫୋନ୍ ରିସିଭରଟା ଉଠାଇ ଫୋନ୍ କରିବାର ଭଙ୍ଗୀ କରି, ଟେଲିଫୋନ୍ ଷ୍ଟାଣ୍ଡଟା ଉପରେ ବ୍ୟାଗ୍‌ଟା ରଖି ବାଁ ହାତରେ ଧୀରେ ଧୀରେ ଖୋଲିଲି ।

ଗୋଟିଏ ସୁନାର ସିଗାରେଟ୍ କେସ୍, ଲାଇଟର, ଯୋଡ଼ାଏ ଦାମୀ ହେୟାର କ୍ଲିପ୍, ଗୋଟାଏ ଡ୍ରାଇଭିଂ ଲାଇସେନ୍‌ସ ଏବଂ ଶହେଟଙ୍କିଆ ଗୋଟାଏ ନୋଟ୍ ବିଡ଼ା । ସେଥିରୁ ଅଳ୍ପ କେତୁଟା ଖର୍ଚ୍ଚ ହୋଇଛି । ଯାହା ଅଛି ଆଠ ନଅ ହଜାରରୁ କମ୍ ହେବ ନାହିଁ ।

ମୋର ମନେହେଲା, ମୁଁ ଯେପରି ଗୋଟିପଣ ଭିଜି ଯାଇଛି । ଉତ୍ତେଜନାରେ ମୋର ଦେହ ହାତ କମ୍ପିବାରେ ଲାଗିଛି ।

ଏହାପରେ ମୁଁ କ'ଣ କରିବି ?

ସିଗାରେଟ୍ କେସ୍, ଲାଇଟର, ହେୟାର କ୍ଲିପ୍, ନା ଏଗୁଡ଼ା ନେଲେ ପୋଲିସ୍ ଆଖିରେ ଧରା ପଡ଼ିଯାଇପାରେ । ତା'ଠୁ ବରଂ ଟଙ୍କା ବଣ୍ଡିଲ୍‌ଟି ଉଠେଇ ନେଲେ ଭଲ ।

ଆଠ ନଅ ହଜାର ଟଙ୍କା । ବର୍ତ୍ତମାନ ମୋର ବେକାର ଜୀବନ ପାଇଁ ଏହା କମ୍ ନୁହେଁ । ଏତିକିରେ ରାଜାର ହାଲ୍‌ରେ ମୁଁ ପାଞ୍ଚ ଛଅ ମାସ ଚଳିଯାଇ ପାରିବି ।

କିନ୍ତୁ ଚୋରି...

ଧେତ୍ ! ଯାକୁ କ'ଣ ଚୋରି କୁହାଯାଏ । ଯେଉଁ ମହିଳା ହଜାର ହଜାର ଟଙ୍କାର ଜିନିଷ ଏହିପରି ଅବହେଳାରେ ଫିଙ୍ଗି ଦେଇ ଚାଲିଯାଇପାରେ, ତା'ର ଏଇ ଟଙ୍କା କେଇଟା ପାଇଁ ନିଶ୍ଚୟ ମୁଣ୍ଡ ବଥେଇବ ନାହିଁ ।

ମନ କିନ୍ତୁ ମୋତେ ଚେତାବନୀ ଶୁଣାଇଲା । ସାବଧାନ ! ମାଲ ସମେତ ଯଦି ପୋଲିସ୍ ହାତରେ ପଡ଼, ତା'ହେଲେ ନିଶ୍ଚିତ ଶ୍ରୀଘର ବାସ । ଏଥର ଶାସ୍ତି ଆହୁରି ଭୟଙ୍କର । ତେଣୁ ହେ ରଜତ କୁମାର ! ତମେ ଆଉ ସେ ଝଞ୍ଝଟ ଭିତରେ ପଶ ନାହିଁ । ବ୍ୟାଗ୍‌ଟି ଯଥା ସ୍ଥାନରେ ରଖିଦେଇ ସୁବୋଧ ବାଳକଟି ପରି ନିଜ ଘରକୁ ଫେରିଯାଅ ।

ହସ ମାଡ଼ିଲା । ଏଇକ୍ଷିଣା ଆଉ ଉପଦେଶ ପାଳନ କରିବା ବେଳ ନୁହେଁ । ସାଢ଼େ ତିନିବର୍ଷ ପୂର୍ବେ ଏସବୁ କଥା ମୁଁ ଭାବୁଥିଲି । ତା'ର ଫଳ ହାତେ ହାତେ ପାଇଛି । ତେଣୁ ଆଉ ସୁଯୋଗ ହରେଇବାକୁ ପ୍ରସ୍ତୁତ ନୁହେଁ ରଜତ କୁମାର । ଟଙ୍କା ମୋର ଦରକାର । ଟଙ୍କା ନେବି, ପକେଟରେ ଭରିବି, ବ୍ୟାଗ୍‌ଟି ବନ୍ଦ କରି ଯଥା ସ୍ଥାନରେ ରଖିବି । ତା'ପରେ ଧୀରେ ଧୀରେ ବାହାରି ଚାଲିଯିବି ଏଇ ଶୁଣ୍ଡିଖାନାରୁ । ଦେଖିବି କିଏ ମୋର କ'ଣ କରିପାରିବ ? ତା'ଛଡ଼ା ଏଠିକି ତ ଶହ ଶହ ଲୋକ ଆସୁଛନ୍ତି, ଅନେକ ଫୋନ୍ କରୁଛନ୍ତି । ମୁଁ ଯେ ହାତ ବ୍ୟାଗ୍‌ରୁ ଟଙ୍କା ନେଇ ଫେରାର ହୋଇଛି ତା'ର ପ୍ରମାଣ କିଏ ଦେବ ?

ନା ଆଉ ସମୟ ନଷ୍ଟ କରି ଲାଭ ନାହିଁ । କମ୍ପିତ ହସ୍ତରେ ନୋଟ୍ ବିଡ଼ାଟା ବ୍ୟାଗ୍‌ରୁ ବାହାର କରି ପକେଟରେ ଭରିଲି । ବ୍ୟାଗ୍‌ଟା ସେହିପରି ବାଁ ହାତରେ ବନ୍ଦ କରି, ରିସିଭରଟା ରଖିବାକୁ ଯାଉଚି ମୋ ସର୍ବାଙ୍ଗରେ ଏକ ତଡ଼ିତ୍ ପ୍ରବାହ ଖେଳିଗଲା । କାଚ ଘରର ଦରଜା ଠେଲି ସ୍ମିତ ହସି ଭିତରକୁ ପଶିଆସୁଛି ନେଇ ନାରୀଟି ।

ମୁଁ ବୁଲି ଅନାଇଲି ।

କେତେବେଳୁ ସେ ଆସିଲାଣି ? ମୋର କାର୍ଯ୍ୟକଳାପ ସବୁ.....

ମୋ ପାଟିରୁ କଥା ବାହାରିଲା ନାହିଁ । ଗୋଡ଼ ଦୁଇଟା ସତେକି କିଏ ପୋତି ଦେଇଛି ମାଟି ଭିତରେ । ମୁଁ ମୂକ, ବିମୂଢ଼, ସତେ ଯେମିତି ମୃତ୍ୟୁ ଆସିଛି ମୋତେ ଅଭ୍ୟର୍ଥନା ଜଣାଇବା ପାଇଁ ।

କିନ୍ତୁ ସେ ସେଇଠି ସେମିତି ଠିଆ ହୋଇଥିଲା । ମୁହଁରେ ତା'ର ସେଇ ସ୍ମିତ ହସ ଲାଖି ରହିଥିଲା । ଆଖି ଦୁଇଟି ତା'ର ସ୍ଥିର, ସେ ଅଚଞ୍ଚଳ । ମୋ ସାମ୍ନାରେ ତା'ର ବ୍ୟାଗ୍ । ପକେଟରେ ଟଙ୍କା ବଣ୍ଡିଲ୍ । ଏଥର ଜେଲ୍ ଗଲେ କେତେବର୍ଷ ରହିବାକୁ ହେବ ?

ସେ ଆଡ଼ ଆଖିରେ ମୋତେ ଚାହିଁ କହିଲା : ବ୍ୟାଗ୍‌ଟା ବୋଧେ ଏଇଠି ଛାଡ଼ି ଦେଇ ଯାଇଛି...

: ହଁ ହଁ, ଏ ବ୍ୟାଗ୍‌ଟା ଆପଣଙ୍କର ? ଭାବୁଥିଲି ମ୍ୟାନେଜରଙ୍କ ପାଖରେ ଜମା ଦେଇ ଯିବା ପାଇଁ । ହେଇ ଆପଣଙ୍କର ବ୍ୟାଗ୍‌ଟା ନିଅନ୍ତୁ ।

ହୁଏତ ଏହାପରେ ମୋର ଆଉ ସେଠାରେ ଠିଆ ହୋଇ ରହିବା ଉଚିତ ନଥିଲା । ମୁଁ ଭଦ୍ରଲୋକଙ୍କ ପରି ଦ୍ରୁତ ପାଦରେ ଆଗେଇ ଯାଇ ଜନଗହଳିରେ ମିଶିଯାଇ ପାରିଥାଆନ୍ତି, ଅଥବା ଅନ୍ଧକାର ଭିତରକୁ ନୋଟ୍ ବିଡ଼ାଟା ଫୋପାଡ଼ି ଦେଇ ନିର୍ଦ୍ଦୋଷୀ ସାଜି ପାରିଥାଆନ୍ତି । କିନ୍ତୁ ତା' କରିପାରିଲି କେଉଁଠି ? କଥାରେ ନାହିଁ, ବିପଦ କାଳେ ବିପରୀତ ବୁଦ୍ଧି !

ଏହାପରେ ମୁଁ ଥକ୍କା ମରା ପାଦରେ ଗଣି ଗଣି ମାତ୍ର ଦୁଇପାଦ ଆଗେଇଛି, ବେହେରା ଆସି ମୋ ସାମ୍‌ନାରେ ଠିଆ ହେଲା । ମୋ ଆଡ଼କୁ ଆଡ଼ ଆଖିରେ ଚାହିଁ କହିଲା : କିଛି ଗୋଳମାଳ ହୋଇଛି ନା କ'ଣ ?

ମୁଁ ଉତ୍ତର ଦେବା ଆଗରୁ ମହିଳାଟି କହିଲା : ନା ନା, ଗୋଳମାଳ କିଛି ହୋଇ ନାହିଁ । ବ୍ୟାଗ୍‌ଟା ଟେଲିଫୋନ୍ ଘରେ ଛାଡ଼ି ଯାଇଥିଲି । ଏ ଭଦ୍ରଲୋକ ମ୍ୟାନେଜରଙ୍କ ପାଖରେ ଜମା ଦେବାକୁ ଯାଉଥିଲେ ।

ସେ ମୋତେ ଅବାକ୍ କରିଦେଲା । ମୁଁ ତା' ମୁହଁରୁ ଏପରି ଉତ୍ତର ଆଶା କରି ନଥିଲି ।

ବେହେରାଟା ମୋ ଆଡ଼କୁ କିପରି ଏକ ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁ କହିଲା : ବ୍ୟାଗ୍‌ଟା ଭଲ କରି ଦେଖିନିଅନ୍ତୁ ମ୍ୟାଡ଼ାମ୍ । କିଛି ଦରକାରୀ ଜିନିଷପତ୍ର....

: ନା ନା, ସବୁ ଠିକ୍ ଅଛି । ତା'ଛଡ଼ା ଭଦ୍ରଲୋକ...

: ନା, ତଥାପି ଥରେ ଦେଖିନିଅନ୍ତୁ ।

ବେହେରାଟା ଉପରେ ମୋର ମନ ଚିଡ଼ି ଉଠିଥିଲା । ମନ ହେଉଥିଲା ସୁଯୋଗ ପାଇଲେ ତା' ତଣ୍ଟି ଚିପିଧରି ପଚାରନ୍ତି, ପର ପାଇଁ ତୋର ଏତେ ଦରଦ କାହିଁକି ?

ସେ ବ୍ୟାଗ୍ ଖୋଲି ଦେଖିଲା । ଜିନିଷପତ୍ର ଖେଳେଇଲା ।

ସେତେବେଳେ ଛାତି ଭିତରେ ମୋର କିଏ ଯେପରି ହାତୁଡ଼ିରେ ପିଟୁଥିଲା । ମୁଁ ଡିଆଁମାରି ଛୁଟି ପଳେଇବି ? କିନ୍ତୁ ଉପାୟ ନାହିଁ । ବେହେରାଟା ଯେମିତି ମୋର ପଥ ଓଗାଳି ଠିଆ ହୋଇଛି ।

: ନା, ସବୁ ଠିକ୍ ଅଛି । ସେ ମୋ ଆଡ଼କୁ ଚାହିଁ ସ୍ମିତ ହସି କହିଲା, ଅନେକ ଧନ୍ୟବାଦ । ଆପଣ ନଥିଲେ ବ୍ୟାଗ୍‌ଟା ମୋର ହୁଏତ ନିଶ୍ଚୟ ହସ୍ତାନ୍ତର ହୋଇଯାଇଥାଆନ୍ତା । ଏମିତି ଭୁଲାମନ ମୋର ନା...

ମୁହଁରେ କିପରି ଏକ ଅସହାୟ ଭଙ୍ଗୀ ଫୁଟାଇ ବେହେରାଟା ଚାଲିଗଲା । ମୋର ବିସ୍ମୟ-ବିହ୍ୱଳ ମୁହଁ ଆଡ଼େ ଚାହିଁ ଆଉଥରେ ହସିଲା : ଯଦି କିଛି ମନେ ନ କରନ୍ତି, ତା'ହେଲେ ଟିକିଏ ଡ୍ରିଙ୍କର ଅର୍ଡ଼ର ଦିଏ । ଏମତି ଗୋଟାଏ ଘଟଣା ଘଟିଗଲା, ଆପଣ ନଥିଲେ ବ୍ୟାଗ୍‌ଟା ନିଶ୍ଚୟ ମୋର ଗାଏବ୍ ହୋଇଯାଇଥାଆନ୍ତା । ଆପଣ କିଛି ମନେକରିବେ ନାହିଁ ରଜତବାବୁ ! ଆସନ୍ତୁ ଦୁହେଁ ଏକା ସଙ୍ଗରେ ବସି....

ଆଶ୍ଚର୍ଯ୍ୟ ହେଲି ତା' ମୁହଁରୁ ମୋ ନାଁ ଶୁଣି । ଅବଶ୍ୟ ଜାଣିବାରେ ବୈଚିତ୍ର୍ୟ କିଛି ନାହିଁ । ଜେଲ୍‌ରୁ ବାହାରିବା ପରେ ପ୍ରଭାତୀ ସଂବାଦପତ୍ର ମୋର ଗୋଟାଏ ବିରାଟ ଛବି ଛାପି, ମୋ ସମ୍ବନ୍ଧରେ ଯାବତୀୟ ତଥ୍ୟ ପ୍ରକାଶ କରିଥିଲା । ଅବଶ୍ୟ ଏଇଟା ପ୍ରଭାତୀର ମାଲିକ ରାଜନାରାୟଣଙ୍କର ଚାଲାକି । ସେ ମୋ ଉପରେ ପ୍ରତିଶୋଧ ନେଇଛନ୍ତି ।

ସ୍ମିତ ହସି ଚାହିଁଲି ତା'ଆଡ଼େ । କହିଲି : ଏ ସବୁର କିଛି ଆବଶ୍ୟକ ନଥିଲା ।

ସେତେବେଳକୁ ସେ ବେହେରାକୁ ଡାକିସାରି ହୁଇସ୍କିର ଅର୍ଡ଼ର ଦେଇ ସାରିଥିଲା । ମୁଁ ବାଧ ହୋଇ ଗୋଟାଏ ଚେଆର୍ ଟାଣି ବସିଲି । ଭୀଷଣ ଅନ୍ୟମନସ୍କ ହୋଇ ପଡ଼ିଥିଲି ।

ବ୍ୟାଗ୍ ଖୋଲି, ଭିତରୁ ସୁନା-ସିଗାରେଟ୍ କେସ୍‌ଟି ବାହାର କରି ମୋ ସାମ୍‌ନାରେ ଖୋଲି ଧରିଲା : ସିଗାରେଟ୍ ।

ମୋର ଧ୍ୟାନ ଭଂଗ ହେଲା । ହାତ ବଢ଼େଇ ସିଗାରେଟ୍ ନେଲି । ଲାଇଟରରୁ ଜଳେଇ ସେ ଅଗ୍ନିସଂଯୋଗ କରାଇ ଦେଲା, ନିଜେ ବି ଲଗେଇଲା ଗୋଟାଏ ।

ବେହେରା ପାନୀୟ ଦେଇଗଲା । ଗ୍ଲାସ୍ ଉଠାଇ ନେଇ ଦୁଇ ଢୋକ ପିଇ ମୋ ଆଡ଼େ ଚାହିଁ କହିଲା : ତା'ପରେ ଖବର କ'ଣ ରଜତବାବୁ ? ଜେଲ୍‌ରୁ ବାହାରି କେମିତି ଅଛନ୍ତି ?

: ଭଲ । ଗ୍ଲାସ୍‌ଟା ମୁହଁରୁ କାଢ଼ି ଅନ୍ୟଆଡ଼େ ଚାହିଁଲି ।

: ଖବର କାଗଜ ଚାକିରିଟା ତା'ହେଲେ ଛାଡ଼ିବାକୁ ହେଲା ?

: ହଁ ।

ଆଷ୍ଟ୍ରେରେ ସିଗାରେଟ୍ ଛାଇ ଝାଡୁଝାଡୁ ସେ କହିଲା : କେତେଦିନ ହେବ ମୁଁ ଲକ୍ଷ୍ୟ କରୁଥିଲି, ଆପଣ ପ୍ରାୟ ଦୈନିକ ଏଠାକୁ ଆସୁଛନ୍ତି । ଏଆଡ଼େ ଆମର ଗୋଟାଏ ଆଡ୍‌ଡ଼ା ଅଛି । ମଝିରେ ମଝିରେ ଆସିବାକୁ ହୋଇଥାଏ ।

: ବୁଝିଲି ।

: ଏପର୍ଯ୍ୟନ୍ତ ଚାକିରି ବାକିରି କିଛି ଯୋଗାଡ଼ କରିପାରି ନାହାନ୍ତି ?

: ନା ।

: ଆଚ୍ଛା ଧରନ୍ତୁ, କେହି ଯଦି ଆପଣଙ୍କୁ କୌଣସି କାମର ସଂଧାନ ଦିଏ, କରିବେ ?

ଆଗ୍ରହୀ ଦୃଷ୍ଟିରେ ଚାହିଁଲି ତା'ଆଡ଼େ : ଆପଣଙ୍କ ସନ୍ଧାନରେ ଚାକିରି ବାକିରି କିଛି ଅଛି ନା କ'ଣ ?

: ଅଛି ଯେ.... ଆପଣ କ'ଣ ସେପରି କାମ କରିବା ପାଇଁ ରାଜି ହେବେ ?

: କାହିଁକି ହେବିନି ? କାମଟା ତେବେ କ'ଣ...

: ନା, ସେମିତି କିଛି ନୁହେଁ, ସାଧାରଣ । ପଇସା ପତ୍ର କିନ୍ତୁ ମୋଟା । ତେବେ ଟିକିଏ ଝୁଙ୍କି ନେବାକୁ ହେବ । ଗୋପନୀୟତା ରକ୍ଷା କରିବାକୁ ହେବ । ବୁଝି ପାରୁଛନ୍ତି ?

: ହଁ, ବୁଝିବାକୁ ଚେଷ୍ଟା କରୁଛି । ଆପଣଙ୍କ କଥା ଶୁଣି ମନେହେଉଛି, କାମଟା ଟିକିଏ ବେଆଇନ୍ ଧରଣର । ସେଇଆ ତ ?

: ନା ନା, ବେଆଇନ୍ କାହିଁକି ହେବ । ଆପଣ ମୋ କଥା ବୁଝିପାରି ନାହାନ୍ତି ।

: ବେଆଇନ୍ ଯଦି ନ ହୁଏ, ତେବେ ଝୁଙ୍କିର ପ୍ରଶ୍ନ ଆସିଲା କୁଆଡୁ ? ନା ନା, ମୁଁ ସେସବୁ ଗଣ୍ଡଗୋଳିଆ ଭିତରେ ଆଉ ପଶିବାକୁ ଚାହେ ନାହିଁ । ଶିକ୍ଷା ମୋର ଯଥେଷ୍ଟ ହୋଇଛି ।

: ହୁଁ । ସେ ଗମ୍ଭୀର ହୋଇ ମୁଣ୍ଡ ହଲାଇଲା । ଆରେ ଆପଣଙ୍କର ଗ୍ଲାସ୍ ଯେ ଏଯାଏ ଅଧା ହେଲା ନାହିଁ, ଖାଆନ୍ତୁ ।

ଗ୍ଲାସ୍‌ଟା ଉଠେଇ ଢୋକେ ପିଇଲି । ଅନ୍ୟମନସ୍କ ଭାବରେ ପଚାରିଲି : କାମଟା କ'ଣ ଟିକିଏ ଖୋଲି କୁହନ୍ତୁ ତ !

କହିବି, ସବୁ କହିବି । ଅବଶିଷ୍ଟ ପାନୀୟତକ ଏକାଥରେ ପିଇଦେଇ ଗ୍ଲାସ୍‌ଟା ଟେବୁଲ୍ ଉପରେ ଥୋଇ ସିଗାରେଟ୍ ଲଗେଇଲା । କହିଲା, ଆଜି ନୁହେଁ, ଆଜି ମୋର ସମୟ ନାହିଁ । ତା'ଛଡ଼ା ସେସବୁ କଥା କହିଲା ଭଳି ଜାଗା ଏଇଟା ନୁହେଁ । ଯେଉଁଠି ଗୋପନୀୟତାର ପ୍ରଶ୍ନ ରହିଛି, ସେଠି ଘଟଣାଟାକୁ ମୂଳରୁ ଗୋପନ ରଖିବା ଭଲ । ବରଂ କେଉଁଠି ଏକ ନିରୋଳା ଜାଗାରେ ବସି... ଆଚ୍ଛା ରଜତ ବାବୁ ! ଆପଣଙ୍କ ଘରେ ଫୋନ୍ ନିଶ୍ଚୟ ଅଛି ?

: ଅଛି ।

: ବେଶ୍ । ତା'ହେଲେ କାଲି ମୁଁ ଆପଣଙ୍କ ସହିତ ଯୋଗାଯୋଗ କରିବି । କାଲି ଆପଣ ଘରେ ରହୁଛନ୍ତି ତ ?

: ରହିବି ।

: ଆଜି ତା'ହେଲେ ଆସୁଛି । ବେହେରା... ବିଲ୍‌ଟା ଆଣିଲୁ । ବ୍ୟାଗ୍ ଖୋଲି ମୋ ମୁହଁକୁ ସେ ଚାହିଁଲା । ହସି ହସି କହିଲା, ମୋର ଯେମିତି ଭୁଲାମନଟା ନା ବିଲ୍‌କୁଲ୍ ଭୁଲି ଯାଇଥିଲି ।

: ମୁଁ କିନ୍ତୁ ଭୁଲିନି । ତା' ଆଖିରେ ଆଖି ମିଳେଇ ହସିଲି । ପକେଟ୍‌ରୁ ନୋଟ୍ ବଣ୍ଡିଲ୍‌ଟା ବାହାର କରି ତା' ଆଡ଼େ ବଢ଼ାଇ ଦେଲି ।

: ଧନ୍ୟବାଦ । ବେହେରା ହାତକୁ ବିଲ୍ ପଇସା ବଢ଼େଇ ଦେଇ ବ୍ୟାଗ୍ ବନ୍ଦ କରି ଉଠି ଠିଆ ହେଲା ।

: ତା'ହେଲେ ଏଇ କଥା ରହିଲା ।

: କାଲି ଆପଣ ମୋତେ ଫୋନ୍ କରୁଛନ୍ତି ?

: ହଁ, ଆସୁଛି । ସେ ହାତ ହଲାଇ ସାବଲୀଳ ଭଙ୍ଗୀରେ ଦରଜା ଠେଲି ବାହାରକୁ ବାହାରିଗଲା ।

ମୁଁ ବାହାରକୁ ଯାଇ ଦେଖିଲି ସେ ଗୋଟାଏ ରୋଲ୍‌ସ ରଏସ୍ ଗାଡ଼ିରେ ଉଠି ବସିଛି । ମୁଁ ଅବାକ୍ ହୋଇ ଚାହିଁଲି ସେଇଆଡ଼େ । ଗାଡ଼ି ଛାଡ଼ିଦେଇଥିଲା । ନମ୍ବର ପ୍ଲେଟ୍‌ଟା ମୁଁ କେବଳ ପଢୁଥିଲି ବାରମ୍ବାର ।

ଗାଡ଼ି ମୋ ଆଖି ଆଗରୁ ଅଦୃଶ୍ୟ ହୋଇଗଲା । ମୁଁ ଆନମନା ହୋଇ ପଛକୁ ଫେରୁଥିଲି । ରୋଲ୍‌ସ ରଏସ୍‌ରେ ଆରୋହଣକାରୀ କିଏ ଏହି ମହିଳା ? କେଉଁଠୁ ତା' ପରିଚୟ ମିଳିବ ?

ମନେପଡ଼ିଲା ରାସ୍ତା ମୋଡ଼ରେ ଗୋଟାଏ ପେଟ୍ରୋଲ ପମ୍ପ ଅଛି । ତା'ର ମାଲିକ ସହିତ ମୋର ଜଣାଶୁଣା । ସାମ୍ବାଦିକ ଜୀବନରେ ଅନେକଥର ମୋତେ ଆସିବାକୁ ହୋଇଥିଲା ତାଙ୍କ ପାଖକୁ । ଅତି ପରିଚିତ । ସେଇ ନିଶ୍ଚୟ ମୋତେ ଖବର ଦେଇ ପାରିବେ ।

ଚେଆର୍‌ରେ ବସି ଭଦ୍ରଲୋକ କ'ଣ ଗୋଟାଏ ବହି ପଢୁଥିଲେ । ମୁଁ ହଠାତ୍ ଦୁଆର ଠେଲି ଭିତରକୁ ପଶିବାର ଦେଖି ସେ ଅବାକ୍ ହୋଇ ପଚାରିଲେ : ଆରେ ରଜତବାବୁ ଯେ ! ଆପଣ ହଠାତ୍...

ଆଗେଇ ଯାଇ କରମର୍ଦ୍ଦନ କଲି । କହିଲି : ଭଲ ଅଛି । ଏଇତ ମାତ୍ର ସାତ ଆଠଦିନ ହେବ ଜେଲ୍‌ରୁ ଛାଡ଼ ପାଇଲି ।

: ତା'ପରେ, ଜେଲ୍‌ରୁ ବାହାରି କେମିତି ଲାଗୁଛି ?

: ମନ୍ଦ କ'ଣ । ମୋର ମନେହେଉଛି ଭିତର ବାହାର ସବୁ ସମାନ । ମଣିଷ ଅବସ୍ଥାର ଦାସ, ଯେଉଁଠି ରହିଲେ ବି ସେ ଅବସ୍ଥା ସହିତ ନିଜକୁ ମିଶାଇ ନେଇପାରିବ । ଏଥର ଆପଣଙ୍କ ଖବର କ'ଣ କୁହନ୍ତୁ ?

: ଆମର ପୁଣି ଖବର । ଯାହା ଆପଣ ଭିତରକୁ ଯିବା ଆଗରୁ ଦେଖିଯାଇଥିଲେ, ବାହାରକୁ ବାହାରି ଠିକ୍ ସେଇଆ ଦେଖିଲେ ।

ଏହିପରି ଏଣୁତେଣୁ ଦି'ଚାରି କଥା ପରେ ମୁଁ ପଚାରିଲି : ଆଚ୍ଛା, ମୁଁ ଆଜି ଏଇ ଅଳ୍ପ ସମୟ ଆଗରୁ ଗୋଟାଏ ଧୂସର ରଙ୍ଗର ରୋଲ୍‌ସ ରଏସ୍ ଗାଡ଼ି ଦେଖିଲି । ଗାଡ଼ିର ଆରୋହୀ ଜଣେ ମହିଳା । ଗାଡ଼ିଟା କାହାର କହିପାରିବେ ?

: ନିଶ୍ଚୟ ନିଶ୍ଚୟ । ସେ ଗାଡ଼ିଟି ଏଇ ଅଧଘଣ୍ଟା ପୂର୍ବରୁ ଏଠାରୁ ପେଟ୍ରୋଲ୍ ନେଇ ଯାଇଛି । ତା'ଛଡ଼ା ଏ ସହରରେ ରୋଲ୍‌ସ ରଏସ୍ ଗାଡ଼ିର ସଂଖ୍ୟା ମୋ ଆଙ୍ଗୁଳି ଗଣ୍ଠିରେ । ହଠାତ୍ ଆପଣଙ୍କର ସେଇ ଗାଡ଼ି ଉପରେ ଦୃଷ୍ଟି ପଡ଼ିଲା କାହିଁ ? ଦୃଷ୍ଟିଟା ଗାଡ଼ି ଉପରେ ନା ଗାଡ଼ିର ଆରୋହିଣୀ ଉପରେ ? ତାଙ୍କ ସ୍ୱରରେ ରସିକତା ଫୁଟି ଉଠିଥିଲା ।

: ନା ନା, ସେମିତି କିଛି ନୁହେଁ । ତେବେ ଗାଡ଼ିଟା ଖୁବ୍ ସୁନ୍ଦର ତ, ଆଖିରେ ପଡ଼ିଗଲା ।

: କିନ୍ତୁ ବନ୍ଧୁ, ସେ ଗାଡ଼ି ଆଉ ଗାଡ଼ିର ଆରୋହିଣୀ ସମ୍ବନ୍ଧରେ ଖୁବ୍ ସାବଧାନ । ସେ ଗାଡ଼ି ହେଉଛି ଏ ସହରର ମଲ୍‌ଟିମିଲିଅନ୍‌ର ରାଜେନ୍ଦ୍ର ପ୍ରସାଦଙ୍କର । ଆଉ ସୁନ୍ଦରୀ ଆରୋହିଣୀ ହେଉଛନ୍ତି ତାଙ୍କର ସ୍ତ୍ରୀ, ସବିତା ପ୍ରସାଦ ।

: କାହା ନାଁ କହିଲେ ? ରାଜେନ୍ଦ୍ର ପ୍ରସାଦ । ଯିଏ ଦସ୍ତା ଆଉ ତମ୍ବାର ବିରାଟ ବ୍ୟବସାୟୀ ? କିନ୍ତୁ ସେ ତ ସିଙ୍ଗାପୁରରେ ରହୁଥିଲେ ।

: ଏବେ କିନ୍ତୁ ଦୁଇବର୍ଷ ହେଲା ସେ ଏଠାରେ ସ୍ଥାୟୀ ବାସିନ୍ଦା ହୋଇ ରହିଛନ୍ତି । ଗଙ୍ଗା କୂଳରେ ବିରାଟ କୋଠା କିଣିଛନ୍ତି । ନିଜର ସୁଇମିଂପୁଲ୍, ଲଞ୍ଚଘାଟ, ସେ ବିରାଟ ବ୍ୟାପାର । କିନ୍ତୁ ହେଲେ କ'ଣ ହେବ, ବିଚରା ଅସୁସ୍ଥ । ଏପରି ଅସୁସ୍ଥ ଯେ, ସେ ଆଉ କେବେ ଭଲ ହେବେ ନାହିଁ ।

: ମାନେ ?

: କ୍ୟାନ୍‌ସର । ଫୁସ୍‌ଫୁସ୍‌ରେ କ୍ୟାନ୍‌ସର । ଯେତେ ସୁନ୍ଦର କୋଠା କିଣନ୍ତୁ, ଟଙ୍କା ରୋଜଗାର କରନ୍ତୁ, କିଛି ଲାଭ ନାହିଁ । ସ୍ୱୟଂ ଭଗବାନ ବି ତାଙ୍କୁ ବଂଚେଇ ପାରିବେ ନାହିଁ ।

: ହୁଁ, କିନ୍ତୁ ଘଟଣାଟା ମୋତେ କିପରି ଗୋଳମାଳିଆ ମନେହେଉଛି । ରାଜେନ୍ଦ୍ର ପ୍ରସାଦ ନିଶ୍ଚୟ ଷାଠିଏ ପଞ୍ଚଷଠିରେ ପାଦ ଦେବେଣି । ତା'ପରେ ମୃତ୍ୟୁପଥର ଯାତ୍ରୀ । ମୁଁ ବୁଝିପାରୁ ନାହିଁ ସୁନ୍ଦରୀ ସବିତା ଦେବୀ ତାଙ୍କ ବେକରେ କିପରି ବରଣମାଳା ପିନ୍ଧେଇଲେ । ସବିତାର ବୟସ ଇମିତି କେତେ ହେବ ? ଖୁବ୍ ବେଶି ହେଲେ ଅଠେଇଶ କି ତିରିଶ୍ ।

: ସେଥିରେ କ'ଣ ଅଛି ? ଏସବୁ ଟଙ୍କାର ଖେଳ ବନ୍ଧୁ । ଟଙ୍କା ଥିଲେ ଶହେ ବର୍ଷର ବୁଢ଼ା ବେକରେ ବି ମାଳା ଦେବା ପାଇଁ କୋଡ଼ିଏ ବର୍ଷର କନ୍ୟା ଆଗେଇ ଯିବ । ତା'ଛଡ଼ା ସବିତାକୁ ସେ ନୂଆ ବାହା ହୋଇଛନ୍ତି । ସବିତା ଥିଲା ବମ୍ବେର ଏକ ପ୍ରଖ୍ୟାତ ଅଭିନେତ୍ରୀ ।

: ଆଉ ତାଙ୍କର ପ୍ରଥମ ସ୍ତ୍ରୀ ?

: ସେ ଦୁଇ ତିନିବର୍ଷ ହେବ ଏ ପୁରରୁ ବିଦାୟ ନେଇଛନ୍ତି ।

: ହୁଁ, ଆଉ ବୁଢ଼ାର ସନ୍ତାନ ସନ୍ତତି ?

: ଅଛି । ପ୍ରଥମ ସ୍ତ୍ରୀର ସନ୍ତାନ । ସୁନ୍ଦରୀ କନ୍ୟା । ବୟସ ଉଣେଇଶ କୋଡ଼ିଏ ହେବ । ଦେଖିବାକୁ ସାକ୍ଷାତ ପରୀଟିଏ ।

: ହୁଁ, ଆଚ୍ଛା ବନ୍ଧୁ, ବିଦାୟ । ଆସି ଆପଣଙ୍କର ଗୁଡ଼ାଏ ସମୟ ନଷ୍ଟ କଲି ।

: ସେ ତ ଯାହା କରିବାର କଲେ, କିନ୍ତୁ ହଠାତ୍ ରାଜେନ୍ଦ୍ର ପ୍ରସାଦଙ୍କ ପରିବାର ଉପରେ ଆଖି କାହିଁକି ? ଘଟଣା କ'ଣ ?

: ନା ବଂଧୁ ନା । ଇମିତି । ସୁନ୍ଦର ଗାଡ଼ି, ସୁନ୍ଦରୀ ତରୁଣୀ ଦେଖିଲେ କାହାର କୌତୂହଳ ବଢ଼ି ନ ଯିବ ? ଆଚ୍ଛା ନମସ୍କାର ।

ରାସ୍ତାକୁ ଓହ୍ଲେଇ ପଡ଼ିଲି ।

ଆଶ୍ଚର୍ଯ୍ୟ ଘଟଣା । ପୃଥିବୀ ବିଖ୍ୟାତ ବ୍ୟବସାୟୀର ସ୍ତ୍ରୀ ସ୍ୱୟଂ ଆସିଛି ମୋତେ ଚାକିରିର ସଂଧାନ ଦେବା ପାଇଁ । କାଲି ସେ ମୋତେ ଫୋନ୍ କରିବ । ମୋତେ କ'ଣ ଗୋଟାଏ ଝୁଙ୍କି ନେବାକୁ ହେବ । ହେଉ, ଯଦି ରୋଜଗାରର ପଥ ସେପରି ଉଜ୍ଜ୍ୱଳ ଦେଖାଯାଏ, ତା'ହେଲେ ଗୋଟାଏ କାହିଁକି, ଅଜସ୍ର ଝୁଙ୍କି ନେବାରେ ଆପତ୍ତି ନାହିଁ ।

ସମଗ୍ର ଶରୀରଟା ମୋର ପୁଲକିତ ହୋଇ ଉଠିଲା । ଆଶାର ଏକ ଆଲୋକ ଶିଖା ଆଖି ଆଗରେ ଜଳି ଉଠିଲା । ପାଦ ଯୋଡ଼ାକ ଚଞ୍ଚଳ ହୋଇ ଉଠିଲା । ମୁଁ କ୍ଷିପ୍ର ପାଦରେ ଆଗେଇ ଚାଲିଲି ।

\+ + +

ପରଦିନ ଖୁବ୍ ସକାଳୁ ସକାଳୁ ନିଦଟା ଭାଂଗିଗଲା । ରୀଟା ବି ଉଠି ପଡ଼ିଲା । ସେ ରନ୍ଧାବଢ଼ା ଶେଷ କରି ଖାଇପିଇ ବାହାରିଗଲା ତା' କାମରେ । ମୁଁ ବସିରହିଲି ଘରେ । ଗୋଟାଏ ଆଶାରେ, ଗୋଟାଏ ପ୍ରତୀକ୍ଷାରେ ।

ସମୟ ଯେପରି ଆଉ କଟିବାକୁ ଚାହେ ନାହିଁ । ତଥାପି ଘଣ୍ଟାକଣ୍ଟା ବଢ଼ି ଚାଲିଥିଲା । କିନ୍ତୁ ଫୋନ୍ କାହିଁ ?

କାନ୍ଥ ଘଡ଼ିରେ ଏଗାରଟାର ଶେଷ ଘଣ୍ଟା ବାଜିବା ସଂଗେ ସଂଗେ ଟେଲିଫୋନ୍‌ଟା ବାଜି ଉଠିଲା । ମୋର ଉତ୍କଣ୍ଠାର ଶେଷ ହେଲା ଯେମିତି । ମୁଁ ଦ୍ରୁତ ଗତିରେ ଛୁଟି ଯାଇ ରିସିଭର ଉଠାଇଲି : ହ୍ୟାଲୋ ?

: କିଏ ରଜତବାବୁ ?

ସେଇ ତୀକ୍ଷ୍ଣ ସ୍ପଷ୍ଟ ସ୍ୱର । ଗଳାର ସେଇ ସହଜ ଭଙ୍ଗୀ । ସବିତା ପ୍ରସାଦ ହିଁ ଫୋନ୍ କରିଛି ।

: ହଁ, ମୁଁ ରଜତ । କୁହନ୍ତୁ । ଗଳାର ସ୍ୱର ଯଥାସମ୍ଭବ ସଂଯତ କରି କହିଲି ।

: କାଲି ଆମର ଦେଖା ହୋଇଥିଲା ।

: ମନେଅଛି ସବିତା ଦେବୀ ।

କେଇ ସେକେଣ୍ଡ ପାଇଁ ଫୋନ୍‌ଟା ନୀରବ ହୋଇଗଲା । ବୋଧହୁଏ ମୋ ମୁହଁରୁ ସେ ତା' ନାଁଟା ଶୁଣିବ, ଆଶା କରି ନଥିଲା ।

ଗୋଟାଏ ଦୀର୍ଘଶ୍ୱାସର ଶବ୍ଦ ମୁଁ ଶୁଣିପାରିଲି । ତା'ପରେ ସେ କହିଲା : ଡାଇମଣ୍ଡ ହାର୍‌ବର୍‌ରେ ସମୁଦ୍ର କୂଳରେ ଯେଉଁ 'ସୈକତାବାସ' ଅଛି ଜାଣିଥିବେ ନିଶ୍ଚୟ ।

: ଜାଣିଚି ।

: ସେଇଥିରୁ ଗୋଟାଏ କେବିନ୍ ଆପଣଙ୍କୁ ଭଡ଼ା ନେବାକୁ ହେବ । ବାଁ ପାଖର ଶେଷ କେବିନ୍‌ଟା । ଆଜି ରାତି ନ'ଟା ବେଳେ ଆପଣଙ୍କ ସହିତ ସେଇଠି ଦେଖା ହେବ ।

: ଠିକ୍ ଅଛି ।

: ତା'ହେଲେ ସେଇଠି ଦେଖା ହେବ । ବାଁ ପାଖର ଶେଷ କେବିନ୍ । ମନେରହିଲା ? ରିସିଭର୍‌ଟା ସେ ର଼ଖିଦେଲା ।

ମୁଁ ବି ରିସିଭରଟା ରଖିଦେଇ ଗୋଟାଏ ସିଗାରେଟ୍ ଲଗେଇଲି । ଅଦ୍ଭୁତ । ଘଟଣାଟା ନିଶ୍ଚୟ ରୋମାଞ୍ଚକର । କ'ଣ ଚାହେ ସବିତା ପ୍ରସାଦ । ହୁଏତ କିଛି ଗୋଟାଏ ଅସୁବିଧାରେ ପଡ଼ି ସେ ମୋର ସାହାଯ୍ୟ ଲୋଡ଼ୁଚି । କିନ୍ତୁ ଝୁଙ୍କିଟା କ'ଣ ? ହୁଏତ...

କିନ୍ତୁ ନା । ଚିନ୍ତା କରି ବସିଲେ ଏହି 'ହୁଏତ' ଗୋଟିକ ପରେ ଗୋଟିଏ ଆସି ମୋତେ ବିବ୍ରତ କରି ପକାଇବ । ତେଣୁ ଚିନ୍ତା ଭାବନା ଏଇଠି ଇତି ହେଉ । ଯାହାର ହେବ, ଯାହା ଘଟିବ ସେଇ ରାତି ନ'ଟାରେ । ଆପାତତଃ ଧୀର ମନ ସ୍ଥିର ଚିତ୍ତରେ କାମ କରିଯିବା ଭଲ ।

ଘଡ଼ିରେ ଏଗାରଟା ବାଜି ଦଶ ହୋଇଛି । ବର୍ତ୍ତମାନ ଯାଇ କେବିନ୍‌ଟା ଭଡ଼ା କରି ଆସିବା ଉଚିତ ।

କିନ୍ତୁ ଘଟଣାଟା କିପରି ରହସ୍ୟମୟ ମନେହେଉଥିଲା ମୋତେ । ତଥାପି ମୋ ଆଖି ଆଗରେ ଆଶାର ଯେଉଁ ଆଲୋକ ଶିଖାଟି ଜଳି ଉଠିଥିଲା, ସେଇ ମୋତେ ବାଟ କଢ଼େଇ ନେଉଥିଲା ଆଗକୁ ଆଗକୁ ।

ମୁଁ ଉଠି ଆଗେଇ ଯାଉଥିଲି । ପୁଣି ମନେପଡ଼ିଲା ସୈକତାବାସର ମ୍ୟାନେଜର ମୋର ପରିଚିତ । ଅବଶ୍ୟ ଏଇ ସାଢ଼େ ତିନିବର୍ଷ ପରେ ସୈକତାବାସରେ ମୋର ସେହି ପରିଚିତ ବଂଧୁ ଜଣକ ଯେ ମ୍ୟାନେଜର୍ ହୋଇ ରହିଥିବେ ତା'ର ନିଶ୍ଚୟତା କ'ଣ ଅଛି ?

ତଥାପି ଥରେ ଫୋନ୍ କରି ଦେଖିଲେ କ୍ଷତି କ'ଣ । ଫେରିଆସି ଟେଲିଫୋନ୍ ଡିରେକ୍‌ଟରୀରୁ ନମ୍ବରଟା ବାହାର କରି ଡାଏଲ କଲି ।

ଅପର ପାର୍ଶ୍ୱରୁ କଣ୍ଠସ୍ୱର ଶୁଣାଗଲା : ଶର୍ମା ସ୍ପିକିଂ ।

: କିଏ ଶର୍ମା ? ଶର୍ମାଜୀ ! ଆନନ୍ଦରେ ମୋର ସମସ୍ତ ଶରୀର ନାଚି ଉଠିଲା । ମୁଁ ଗଦ୍‌ଗଦ୍ କଣ୍ଠରେ କହିଲି : ମୁଁ ରଜତ କହୁଛି । ରଜତ, ମାନେ 'ପ୍ରଭାତୀ'ର ସାମ୍ବାଦିକ ।

ଶର୍ମା ଖୁସି ହେଲା କି ନାହିଁ ମୁଁ ଜାଣିପାରିଲି ନାହିଁ । କିନ୍ତୁ ସେ ଶାନ୍ତ ସ୍ୱରରେ କହିଲା : ଆପଣଙ୍କ ଜେଲ୍‌ରୁ ମୁକ୍ତି ହେବା ସମ୍ବାଦ ସାତ ଆଠଦିନ ପୂର୍ବେ ସାମ୍ବାଦପତ୍ରରେ ପଢ଼ିଥିଲି । ଆଉ ସବୁ ଖବର କ'ଣ ? ଆମଆଡ଼େ ଥରେ ଆସନ୍ତୁ ।

: ଯିବି ନିଶ୍ଚୟ ଶର୍ମାଜୀ । ଆଜି ଯିବି । ଆପଣଙ୍କୁ କିନ୍ତୁ ମୋ ପାଇଁ ଗୋଟିଏ କାମ କରିବାକୁ ହେବ ।

: କୁହନ୍ତୁ, ପାରିଲେ ନିଶ୍ଚୟ କରିବି ।

: ସୈକତାବାସରେ ଆଜି ରାତିକ ପାଇଁ ମୋର ଗୋଟିଏ କେବିନ୍ ଆବଶ୍ୟକ । ଖାଲି ଅଛି ତ ଶର୍ମାଜୀ ?

: ହଁ ଅଛି, କିନ୍ତୁ ହଠାତ୍ ଆପଣଙ୍କର ସୈକତାବାସରେ କେବିନ୍ ଆବଶ୍ୟକ ପଡ଼ିଲା କାହିଁକି ?

: କହିବି ଶର୍ମାଜୀ, ପରେ ସବୁକଥା କହିବି । ସବୁଠୁ ଭଲ ହେବ, ଆପଣ ଯଦି ସୈକତାବାସର ସେଇ ଶେଷ କେବିନ୍‌ଟା, ଯେଉଁଟା ସମୁଦ୍ର ଆଡ଼କୁ ମୁହଁ କରି ରହିଛି, ସେଇଟା ମୋ ପାଇଁ ରିଜର୍ଭ କରିଦିଅନ୍ତି ।

: ହେଉ ସେଇଟା ରଖିଦେବି । କିନ୍ତୁ ଆପଣ ଆସିବେ କେତେବେଳେ ? ମୁଁ କିନ୍ତୁ ଆଜି ଚାରିଟା ବେଳକୁ ଚାଲିଯାଉଛି ।

: ତା'ହେଲେ ତ ଅସୁବିଧା । ମୁଁ ପହଞ୍ଚୁ ପହଞ୍ଚୁ ପ୍ରାୟ ରାତି ହୋଇଯିବ ।

: ଠିକ୍ ଅଛି । ବେହେରା ପାଖରେ ମୁଁ ଚାବି ରଖି ଯାଇଥିବି । ଆପଣ ମାଗି ନେବେ । କିନ୍ତୁ ଆପଣଙ୍କ ସହିତ ଦେଖା ହେବ କେତେବେଳେ ?

: ସେଇକଥା ତ ମୁଁ ଭାବୁଛି । ପରଦିନ ଆପଣ ଫେରିବେ କେତେବେଳେ ?

: ମୋର କାଲି ଛୁଟି । ଯା'ହେଉ ଦିନେ ଦି'ଦିନ ପରେ ଆପଣ ଆପଏଣ୍ଟ୍‌ମେଣ୍ଟ୍ କରି ଆସନ୍ତୁ । ଆଉ ସବୁ ଖବର ଭଲ ତ ?

: ହଁ, ସେମିତି ସେମିତି । ଚଳି ଯାଉଛି । ଦେଖାହେଲେ ସବୁ କହିବି । ଧନ୍ୟବାଦ ଶର୍ମାଜୀ ।

ଟେଲିଫୋନ୍ ରିସିଭରଟା ଥୋଇ ଦେଲି । ମୋର ମନେହେଉଥିଲା ଏଇ ଅଳ୍ପ ସମୟ କଥାବାର୍ତ୍ତା ଭିତରେ ମୁଁ ଯେପରି ଅଣନିଃଶ୍ୱାସୀ ହୋଇ ଯାଇଥିଲି । ମୋ କପାଳରେ ଝାଳ ଜମି ଯାଇଥିଲା ।

ଚେଆର୍ ଉପରେ କିଛି ସମୟ ଆଖି ବୁଜି ବସି ରହିଲି । କେବିନ୍ ତ ଠିକ୍ ହୋଇଗଲା । ଏହାପରେ ? ଏହାପରେ ଆଉ ଗୋଟାଏ ସମସ୍ୟା ହେଉଛି ରୀଟା । ତାକୁ ମିଛ କଥା କହି ମୋତେ ବାହାରିବାକୁ ହେବ । କେତେ ରାତିରେ ଫେରିବି କିଏ ଜାଣେ ? ହୁଏତ ଆଜି ରାତିରେ ଫେରି ନ ପାରେ । ରୀଟା ନିଶ୍ଚୟ ପ୍ରଶ୍ନ କରିବ । ତା' ପାଇଁ ସନ୍ତୋଷଜନକ ଉତ୍ତର ମୋତେ ଖୋଜି ରଖିବାକୁ ହେବ ।

ଧେତ୍ ! ଏଇ ଗୋଟାଏ ସମସ୍ୟା !! ଫୁଃ... ରୀଟା ଭଳି ଗୋଟାଏ ଝିଅକୁ ବୋକା ବନେଇବା ପାଇଁ ଟିକିଏ ବି ସମୟ ଲାଗିବ ନାହିଁ ।

ଠିକ୍ ରାତି ନ'ଟା ବେଳକୁ ମୁଁ ଯାଇ ପହଞ୍ଚି ଯାଇଥିଲି ଡାଇମଣ୍ଡ ହାର୍‌ବର୍‌ରେ ।

ମିଷ୍ଟର ଶର୍ମା ସୈକତାବାସରେ ନିର୍ଦ୍ଦିଷ୍ଟ କ୍ୟାବିନ୍‌ଟି ମୋ ପାଇଁ ରିଜର୍ଭ ରଖିଥିଲେ । ଚାବି ନେଇ ମୁଁ ଆଗେଇଗଲି ସେଇ କେବିନ୍ ଆଡ଼େ ।

ଦରଜା ଖୋଲି ଲାଇଟ୍ ଜଳାଇ ଦେଲା ବେହେରା । ପ୍ରଥମେ ଡ୍ରଇଂ ରୁମ୍, ବାଁ ପାଖକୁ ଶୋଇବା ଘର । ଛୋଟ ଗୋଟିଏ ବାଥ୍‌ରୁମ୍ ଏବଂ ବାଥ୍‌ରୁମ୍‌କୁ ଲାଗି ରୋଷେଇ ଘର । ଏୟାର୍‌କୁଲର୍ ବ୍ୟବସ୍ଥା ମଧ୍ୟ ଅଛି । ଟେଲିଭିଜନ ସେଟ୍‌ଟିଏ ରହିଛି । ରେଡ଼ିଓ, ଟେଲିଫୋନ୍, ସବୁ ବ୍ୟବସ୍ଥା ରହିଛି ଘରଟି ଭିତରେ । ବୋଧହୁଏ ସୈକତାବାସରେ ଏହି କେବିନ୍‌ଟି ଭି.ଆଇ.ପି.ମାନଙ୍କ ପାଇଁ ଉଦ୍ଦିଷ୍ଟ । ଘରର ସବୁଆଡ଼େ ବୁଲି ତନ୍ନ ତନ୍ନ କରି ଆସବାବପତ୍ର ଦେଖି ମୋତେ ଖୁବ୍ ଖୁସି ଲାଗିଲା । ବେହେରାକୁ କହିଲି ଡ୍ରଇଂ ରୁମ୍‌ର ଝରକା ଖୋଲି ଦେବା ପାଇଁ । ମୁଁ ଯାଇ ବାରଣ୍ଡାରେ ବସିଲି ଗୋଟିଏ ଚେଆର୍ ପକାଇ ।

ପିଚୁ ପରି କଳା ଅନ୍ଧକାର ଚାରିଆଡ଼େ ଆସ୍ତାନ ଜମେଇଚି । ମୋ କେବିନ୍ ପାଖରୁ ଗୋଟାଏ ଢାଲୁପଥ ଓହ୍ଲେଇ ଯାଇଚି ସମୁଦ୍ର ଆଡ଼େ । ଢେଉ ଉଠୁଛି ସମୁଦ୍ରରୁ । ଛଳଛଳ ଶବ୍ଦ କରି ତରଙ୍ଗମାଳା ଧକ୍‌କା ଖାଇ ଫେରିଯାଉଛି ।

ସମୟ ଗଡ଼ି ଚାଲିଛି । କିନ୍ତୁ ସବିତା କାହିଁ ? ନିର୍ଦ୍ଦିଷ୍ଟ ସମୟର ପ୍ରାୟ ଅଧଘଣ୍ଟା ଅତିବାହିତ ହୋଇଗଲାଣି । ତେବେ କ'ଣ ସବିତା ମୋତେ...

: ଗୁଡ୍ ଇଭିନିଂ ରଜତ !

ମୁଁ ଚମକି ଉଠିଲି । ଅବାକ୍ ହୋଇ ଚାହିଁଲି ତା' ଆଡ଼େ । ଆଶ୍ଚର୍ଯ୍ୟ, କେତେବେଳେ ସେ ଆସି ଠିଆ ହୋଇଛି ମୋ ପଛଆଡ଼େ ।

ଅନ୍ଧକାରରେ ମୁହଁଟି ତା'ର ସଂପୂର୍ଣ୍ଣ ଦେଖିପାରୁ ନଥିଲେ ବି ମୃଦୁ ହସର ଛଟା ଲାଗିଥିଲା ସେଠି । ଆଗେଇ ଆସି ମୋ ସାମ୍ନା ଚେଆର ଉପରେ ବସୁ ବସୁ କହିଲା : ଆଉ ଖବର କ'ଣ ରଜତବାବୁ ?

: ଭଲ । ଆପଣ କହିଥିଲେ, ମୁଁ ଆସିଛି ଏବଂ ଆପଣଙ୍କ କଥା ଶୁଣିବା ପାଇଁ ଅପେକ୍ଷା କରି ବସିଛି ।

ସବିତା ସଜାଡ଼ି ହୋଇ ବସିଲା । ସେଇ ଆଲୋକ ଅନ୍ଧାର ଭିତରେ ସବିତା ମୁହଁରେ କିପରି ଏକ ରହସ୍ୟମୟ ହସ ଫୁଟି ଉଠିଲା । ସେ କହିଲା : ଆପଣଙ୍କ ସମ୍ବନ୍ଧରେ ମୁଁ ଅନେକ କଥା ଜାଣେ ରଜତବାବୁ । ପଚାଶ ହଜାର ଟଙ୍କାର ଘୁସ୍ ଯିଏ ଅବଜ୍ଞାର ସହିତ ଗୋଡ଼ରେ ଠେଲି ଦେଇପାରେ, ତା'ର ଆଉ କିଛି ଥାଉ ନଥାଉ ଦର୍ପ ଅଛି, ବିକ୍ରମ ଅଛି । ସତକଥା କହିବାକୁ ଗଲେ ମୋର ଜଣେ ତେଜିଆନ୍ ଲୋକ ଆବଶ୍ୟକ ।

ମୁଁ ସ୍ତବ୍ଧ ହୋଇ ଶୁଣୁଥିଲି ।

ସିଗାରେଟ୍ ଲଗାଇଲା ସେ । ସ୍ଥାନଟା ଧୂମାୟିତ କରି ସ୍ଥିର ଦୃଷ୍ଟିରେ ଚାହିଁଲା ମୋ ମୁହଁକୁ : ଆଚ୍ଛା ରଜତବାବୁ ! ଝୁଙ୍କିନେବା ପାଇଁ ଆପଣ ଓସ୍ତାଦ୍ ଲୋକ, ନା ?

: ଓସ୍ତାଦ୍, ମୁଁ ?

: ହଁ, ମୋ ବ୍ୟାଗରୁ ଆପଣ ନୋଟ୍‌ର ବଣ୍ଡିଲ୍‌ଟି ବେମାଲୁମ୍ ଗାଏବ୍ କରି ଦେଇଥିଲେ । ଧରା ପଡ଼ିଥିଲେ ଅତି କମ୍‌ରେ ପାଞ୍ଚବର୍ଷ ହାଜତବାସ ହୋଇଥାଆନ୍ତା ।

: ସେତେବେଳେ ମୁଁ ପ୍ରକୃତିସ୍ଥ ନଥିଲି । ମଦ ଖାଇ...

: ଆଉଥରେ ରିସ୍କ ନେବାକୁ ରାଜି ଅଛନ୍ତି ତ ?

: ରାଜି ମାନେ... କଣ୍ଠସ୍ୱରଟା ମୋର ଥରି ଉଠିଲା । ଏଣେତେଣେ ଚାହିଁ ଇତସ୍ତତଃ କଲି । ରୁମାଲ୍‌ରେ ମୁହଁ ପୋଛିଲି । କହିଲି, ଯଦି ଟଙ୍କା ପଇସା ମୋଟା ଅଙ୍କରେ ମିଳେ, କେବେ ମୋର ଆପତ୍ତି ନାହିଁ । ଅସଲ କଥା ହେଉଛି, ଏଇକ୍ଷଣି ଟଙ୍କାର ମୋର ଖୁବ୍ ଦରକାର ।

: ବେଶ୍‌ତ । ଟଙ୍କା ଆପଣଙ୍କର ଦରକାର, କାମ ମୋର ଦରକାର । ବର୍ତ୍ତମାନ ମୁଁ ଯେଉଁ ଦାୟିତ୍ୱଟି ଆପଣଙ୍କୁ ଦେବି, ଆପଣ ଯଦି ତୁଲେଇ ପାରନ୍ତି, ତେବେ ମୁଁ ଆପଣଙ୍କୁ ଏକଲକ୍ଷ ଟଙ୍କା ଦେଇପାରେ ।

: କେତେ ? ଏ-କ-ଲ-କ୍ଷ ? ନିଜ କାନକୁ ମୁଁ ବିଶ୍ୱାସ କରିପାରିଲି ନାହିଁ ।

: ହଁ, ଏକଲକ୍ଷ । ଟଙ୍କା ତୁଳନାରେ କାମଟା ଅତି ନଗଣ୍ୟ ।

ଟଙ୍କାର ଅଙ୍କଟା ଶୁଣି ମୋ ସର୍ବାଙ୍ଗରେ କିପରି ଏକ କମ୍ପନ ଖେଳି ଯାଇଛି । ନିଜକୁ ମୁଁ ପ୍ରକୃତିସ୍ଥ କରିପାରୁ ନାହିଁ । ବହୁ କଷ୍ଟରେ ନିଜକୁ ସଂଯତ କରି ପଚାରିଲି : କାମଟା କ'ଣ ?

: ଆଗେ କୁହନ୍ତୁ ଏଇ ପରିମାଣ ଟଙ୍କା ବଦଳରେ ଆପଣ ଦାୟିତ୍ୱ ନେବାକୁ ରାଜି ଅଛନ୍ତି ତ ?

: ହଁ ରାଜି ।

ଓଃ ଏତେଗୁଡ଼ାଏ ଟଙ୍କା । ପାଇବା ମାତ୍ରେ ରୀଟାକୁ ନେଇ ଏ ସହର ଛାଡ଼ି ଅନ୍ୟତ୍ର ଚାଲିଯିବି । ଏଠି ଆଉ ମୁହୂର୍ତ୍ତେ ବି ନୁହେଁ । ନୂତନ ପରିବେଶରେ, ନୂଆ କରି ଜୀବନ-ଯାପନ କରିବାକୁ ଚେଷ୍ଟା କରିବି ।

ଜଳନ୍ତା ସିଗାରେଟ୍‌ଟା ବାହାରକୁ ଫୋପାଡ଼ି ଦେଇ ରୁମାଲରେ ମୁହଁ ପୋଛିଲା ସବିତା । ତା'ପରେ ମୋ ମୁହଁକୁ ମୁହୂର୍ତ୍ତେ ନୀରବରେ ଚାହିଁ ରହି କହିଲା : ପ୍ରଥମେ ଆପଣ ଜାଣି ରଖନ୍ତୁ, ସ୍ୱାମୀଙ୍କ ପ୍ରଦତ୍ତ ମାସିକ ଭତ୍ତା ଛଡ଼ା, ମୋର ନିଜସ୍ୱ ବୋଇଲେ ଆଉ ପଇସାଟିଏ ବି ଅଧିକା ନାହିଁ । ସ୍ୱାମୀଙ୍କର ଧାରଣା, ମୋତେ ଏବଂ ତାଙ୍କର ଝିଅକୁ ସେ ଯେଉଁ ଭତ୍ତା ଦିଅନ୍ତି, ତହିଁରେ ଆମର ଚଳିଯାଏ । ଅବଶ୍ୟ ଟଙ୍କାର ଅଙ୍କଟା ନିହାତି କମ୍ ନୁହେଁ । ହିସାବ କରି ଚଳିଲେ ବି ଆମର ସ୍ୱଚ୍ଛନ୍ଦରେ କୁଳେଇ ଯାଆନ୍ତା । କିନ୍ତୁ ସତକଥା କହିବାକୁ ଗଲେ, ତାଙ୍କ ଝିଅ ବା ମୁଁ ଆମେ କେହି ଏତିକି ଟଙ୍କାରେ ମାସଟିଏ ଚଳେଇ ନେବାରେ ଅଭ୍ୟସ୍ତ ନୋହୁଁ । ସୁତରାଂ ଟଙ୍କାର ଅଭାବ ଆମର ମେଣ୍ଟେ ନାହିଁ ।

: ବାଃ, ଆପଣ ତ ବଡ଼ ଅଦ୍ଭୁତ କଥା କହୁଛନ୍ତି । ଆପଣଙ୍କର ନିଜ ଖର୍ଚ୍ଚ ପାଇଁ ଟଙ୍କା ଅଣ୍ଟୁ ନାହିଁ, ଅଥଚ ଆପଣ ମୋତେ ଲକ୍ଷେଟଙ୍କା ଦେବେ କେଉଁଠୁ ଆଣି ?

: ମୁଁ ଦେବି କାହିଁକି ? ଆପଣଙ୍କ ଟଙ୍କା ଆପଣ ଯୋଗାଡ଼ କରିବେ । ମୁଁ କେବଳ ଆପଣଙ୍କୁ ବାଟ ବତେଇ ଦେବି ।

: ବାଟ... ?

: ହଁ ବାଟ । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବାକୁ ସବୁବେଳେ ଗୋଟାଏ ସହଜ ଓ ସୁଗମ ପଥ ଥାଏ । ସେଇଟା ନିଜକୁ ଆବିଷ୍କାର କରିବାକୁ ହୋଇଥାଏ । ସେ ଯାହାହେଉ, ମୁଁ ଏବଂ ସୁଲେଖା, ମୋର ସାବତ ଝିଅ, ଏଇ ପନ୍ଦର ଦିନ ଭିତରେ ଆମର ପାଞ୍ଚଲକ୍ଷ ଟଙ୍କା ଦରକାର । ମୋର ଏକାନ୍ତ ଆଶା ଏଇ ଟଙ୍କା ସଂଗ୍ରହ କରିବାରେ ଆପଣ ଆମକୁ ସାହାଯ୍ୟ କରିବେ । ବିନିମୟରେ ଆପଣ ପାଇବେ ଏକ ଲକ୍ଷ ଟଙ୍କା ।

ମୁଁ ସବିତାର କଥା ଶୁଣି ଅବାକ୍ ହୋଇଯାଇଥିଲି । ସେ କିନ୍ତୁ ସ୍ଥିର ହୋଇ ବସିଥିଲା ମୋ ସାମ୍ନାରେ । ମୁହଁରେ ଅବିଚଳ ଗାମ୍ଭୀର୍ଯ୍ୟ ।

: କିନ୍ତୁ... କିନ୍ତୁ... ମୋତେ ଆପଣଙ୍କର ସ୍ୱାମୀ ଏତେଗୁଡ଼ାଏ ଟଙ୍କା ଦେବେ ବା କାହିଁକି ? ମୁଁ ଇତସ୍ତତଃ ହୋଇ କହିଲି ।

: ଦେବେ । ସେ ଦେବାକୁ ବାଧ୍ୟ ହେବେ । ତେବେ ଗୋଟାଏ କଥା ଆପଣ ଶୁଣି ରଖନ୍ତୁ । ମୋ ସ୍ୱାମୀଙ୍କର ପ୍ରଚୁର ପଇସା । ଏଇ ପାଞ୍ଚ ଛଅ ଲକ୍ଷ ଟଙ୍କା ତାଙ୍କ ପାଖରେ କିଛି ନୁହେଁ । ତାଙ୍କୁ ସିଧାସଳଖ ମାଗିଲେ ସେ ହୁଏତ ବିନ୍ଦୁମାତ୍ର ଇତସ୍ତତଃ କରିବେ ନାହିଁ । କିନ୍ତୁ ମୁସ୍କିଲ୍‌ଟା କ'ଣ ଜାଣନ୍ତି ?

ସାମାନ୍ୟ ନୀରବତା ପରେ ସବିତା ଗୋଟାଏ ସିଗାରେଟ୍ ଲଗେଇଲା । ସ୍ଥାନଟା ଆଉଥରେ ଧୂମାୟିତ କରି କହିଲା : ଟଙ୍କା ଦେଲା ଆଗରୁ ସେ ହଜାରେ କୈଫିୟତ ତଲବ କରିବେ । ସୁଲେଖା ବା ମୁଁ ଆମେ କେହି ତାଙ୍କର ଏହି କୈଫିୟତର ଉତ୍ତର ଦେବାକୁ ପ୍ରସ୍ତୁତ

ନୋହୁଁ । ଅଥଚ ଆପଣ ଟିକିଏ ସାହାଯ୍ୟ କଲେ ଟଙ୍କାକୁ ଟଙ୍କା ମିଳିବ, ଆମକୁ କୌଣସି କୈଫିୟତ ଦେବାକୁ ହେବ ନାହିଁ ।

ଆଶ୍ଚର୍ଯ୍ୟ କଥା ତ । ସବିତାର କଥାଗୁଡ଼ିକ ଯେପରି ଖୁବ୍ ଜଟିଳ । କ'ଣ ସେ ମୋତେ କରାଇବାକୁ ଚାହେ ? ଘଟଣାଟା ଭଲ କରି ମନଯୋଗ ସହକାରେ ବୁଝିବାକୁ ହେବ । ମୁଁ ପଚାରିଲି : ଆଚ୍ଛା କୁହନ୍ତୁ ତ ଆପଣଙ୍କର ହଠାତ୍ ଏତେଗୁଡ଼ାଏ ଟଙ୍କାର ଦରକାର ପଡ଼ିଲା କାହିଁକି ?

: ବାଃ, ଆପଣ ତ ବେଶ୍ ପ୍ରଶ୍ନ କରୁଛନ୍ତି । କୋଟିପତିର ସ୍ତ୍ରୀ-ପିଲାମାନଙ୍କର କ'ଣ ଟଙ୍କାର କିଛି ଦରକାର ନାହିଁ ? ମୋର ନାମ, ଧାମ, ପରିଚୟ ସବୁତ ଆଗରୁ ଜାଣି ବସିଛନ୍ତି । କିପରି ଜାଣିଲେ ଆପଣ ? ହସି ହସି ପଚାରିଲା ସେ ।

: ସେଇଟା ବଡ଼ କଥା ନୁହେଁ ସବିତା ଦେବୀ । ଯିଏ ଏପରି ଏକ ବିଦେଶୀ ଦାମିକା ଗାଡ଼ିରେ ଚଢ଼େ... ଛାଡ଼ନ୍ତୁ ସେ କଥା । ମୋତେ ଆପଣ ଖୋଲି କୁହନ୍ତୁ ତ ଏତେ ଗୁଡ଼ାଏ ଟଙ୍କା ହଠାତ୍ ଆପଣଙ୍କର କ'ଣ ଦରକାର ପଡ଼ିଲା । କୌଣସି ବ୍ଲାକ୍‌ମେଲର୍ ହାବୁଡ଼ରେ ପଡ଼ିନାହାନ୍ତି ତ ?

: ଶୁଣନ୍ତୁ ରଜତବାବୁ ! ଟଙ୍କା ଆମର କାହିଁକି ଦରକାର, ସେ ସବୁ ଆମର ବ୍ୟକ୍ତିଗତ କଥା । ସେ କଥାରେ ଆପଣ ମୁଣ୍ଡ ପୂରେଇବା ଆଦୌ ଉଚିତ ନୁହେଁ । ତେବେ ଟଙ୍କା ଆମର ଦରକାର ଏବଂ ଟଙ୍କା ପାଇବା ପାଇଁ ଆପଣଙ୍କୁ ମଧ୍ୟ ଦରକାର । ସେଥିପାଇଁ ଆପଣ ଯଥେଷ୍ଟ ପାରିଶ୍ରମିକ ପାଇବେ । ଏଇ ହେଲା ସାର କଥା । ଏହାପରେ ଆପଣ ଆଉ କୌଣସି ପ୍ରଶ୍ନ ନ କରିବା ହିଁ ଭଲ ।

: ତା' ସତ ଯେ ! ଆପଣ କିନ୍ତୁ କ୍ଷଣକ ଆଗରୁ କହିଲେ ମୋତେ ଲକ୍ଷେ ଟଙ୍କା ଦେବାକୁ ଆପଣଙ୍କ ପାଖରେ ଟଙ୍କା ନାହିଁ ।

: ନାହିଁ ଠିକ୍ । କିନ୍ତୁ ଆପଣଙ୍କ ସାହାଯ୍ୟ ପାଇଲେ ହେବ ।

: ସେସବୁ ଆଜେବାଜେ କଥା ଛାଡ଼ନ୍ତୁ । ବର୍ତ୍ତମାନ କାମର କଥା କୁହନ୍ତୁ ।

: କାମଟା ଅତି ସହଜ । ମୋର ସାବତ ଝିଅ ସୁଲେଖା ଗୁଣ୍ଡାମାନଙ୍କ ହାତରେ ପଡ଼ି ଅପହୃତା ହେବ । ଗୁଣ୍ଡାମାନେ ପାଞ୍ଚ ଲକ୍ଷ ଟଙ୍କା ଦାବି କରିବେ । ଆପଣଙ୍କୁ ଲକ୍ଷେ ଟଙ୍କା ଦେଇ ବାକି ଚାରି ଲକ୍ଷ ଟଙ୍କାକୁ ସୁଲେଖା ଆଉ ମୁଁ ସମାନ ଭାବରେ ବାଣ୍ଟିନେବୁ ।

: ସେଇ ଗୁଣ୍ଡାମାନେ କିଏ ?

: ଗୁଣ୍ଡାମାନେ କେହି ନୁହନ୍ତି । ଅସଲ କଥା ହେଲା ସୁଲେଖା କିଛିଦିନ ପାଇଁ ଅନ୍ୟ କେଉଁଠି ଆତ୍ମଗୋପନ କରି ରହିବ । ଆପଣ ଭୟ ଦେଖାଇ ମୋ ସ୍ୱାମୀଙ୍କଠାରୁ ଟଙ୍କା ଆଦାୟ କରିବେ । ସାହାଯ୍ୟ ବୋଇଲେ ଏତିକି । ଟେଲିଫୋନ୍ କରି ମୋ ସ୍ୱାମୀଙ୍କୁ ଧମକାଇବେ । ଟଙ୍କା ଦାବି କରିବେ । ତା'ପରେ ସମୟ ସୁଯୋଗ ଅନୁସାରେ ଟଙ୍କାଟା ହାତ ପଇଠ କରିବେ । ଆପଣଙ୍କ ଭାଗଟା ରଖି ଆମକୁ ବାକି ଟଙ୍କାତକ ଦେଇଦେବେ । ଉପାୟ ସହଜ ଓ ଟଙ୍କା ଆଦାୟ କରିବାର ପଥଟା ବି ସରଳ ।

ମୁଁ ଅବାକ୍, ହତଭମ୍ବ । କାମଟା ଯେତେ ସହଜ ବୋଲି ଭାବୁଛି ସବିତା, ତାହା ଆଦୌ ନୁହେଁ । ତା'ଛଡ଼ା ନାରୀ ହରଣର ଅପରାଧ, ଶାସ୍ତି କଠୋର । ଏହିପରି ଗୋଟାଏ ଭାବନା କୋଟିପତିର ସ୍ତ୍ରୀ ସବିତା ମୁଣ୍ଡରେ ପଶିଲା କିପରି !!

+ + +

ଆକାଶରେ ଚାନ୍ଦ ଉଠିଛି ।

ମୋ ସାମ୍ନାରେ ବସି ରହିଛି ସବିତା । ସେ ଯେପରି ଏକ ପାଷାଣ ମୂର୍ତ୍ତି ।

ମୁଁ ନିଶ୍ଚଳ । କ'ଣ ଉତ୍ତର ଦେବି କିଛି ଚିନ୍ତା କରିପାରୁ ନାହିଁ ।

ଧୀରେ ଧୀରେ ସବିତା ପୁଣି କହିଲା : ଏହାଛଡ଼ା ଅନ୍ୟ କୌଣସି ବାଟ ନାହିଁ ରଜତବାବୁ । ସ୍ୱାମୀଙ୍କୁ ରାଜି କରେଇବାକୁ ହେଲେ ଏତକ ଦାୟିତ୍ୱ ଅନ୍ତତଃ ନେବାକୁ ହେବ ।

: ଦାୟିତ୍ୱଟାକୁ ତୁଚ୍ଛ ମନେକରନ୍ତୁ ନାହିଁ ସବିତା ଦେବୀ । ନାରୀ ହରଣକାରୀର ଶାସ୍ତି ଭୟଙ୍କର ।

: ଆପଣ ମୂଳରୁ ଭୁଲ୍ କରୁଛନ୍ତି ରଜତବାବୁ । ସୁଲେଖା କିନ୍ତୁ ପ୍ରକୃତରେ ତ ଅପହରଣ ହେଉ ନାହିଁ । ତଥାପି ଘଟଣାଟା ଯଦି କିଛି ଗୋଳମାଳିଆ ହୁଏ, ତେବେ ସ୍ୱାମୀଙ୍କୁ ସବୁକଥା ଖୋଲି କହିଦେବି । ଆଉ ତ କିଛି ସମସ୍ୟା ରହିବ ନାହିଁ ।

ମୁଁ ଟିକିଏ ଚିନ୍ତା କଲି । କେବଳ ଅପରାଧ ଦିଗଟା ବାଦ୍ ଦେଲେ କାମଟା ସେପରି କିଛି ଗୁରୁତର ନୁହେଁ । ଗୋଟାଏ ନିର୍ଭୁଲ୍ ପ୍ଲାନ୍ କରି ସବୁ ଯଦି ଠିକ୍‌ଠିକ୍ କରାଯାଇପାରେ, ତେବେ ଲକ୍ଷେ ଟଙ୍କା ନିଶ୍ଚିତ ଭାବରେ ହାତକୁ ଆସିଯିବ ।

: ହୁଁ, ଆପଣ ନିଶ୍ଚିତ ଭାବେ ବିଶ୍ୱାସ କରନ୍ତି ଯେ, ଆପଣଙ୍କ ସ୍ୱାମୀ ଆପଣଙ୍କ ମୁହଁରୁ ସତ୍ୟକଥା ଶୁଣିବା ମାତ୍ରକେ ସବୁକଥା ଭୁଲିଯିବେ ? ଏପରିକି ମୁଁ ଯେ ଫୋନ୍ କରି ତାଙ୍କୁ ଟଙ୍କା ଦାବି କରିଛି ସେକଥା ବି ?

ସବିତା ମୁହଁରେ ବିରକ୍ତିର ଭାବ ଫୁଟି ଉଠିଲା । ସେ କହିଲା : ଆପଣ କେବଳ ବାଜେ କଥା ନେଇ ଚିନ୍ତା କରୁଛନ୍ତି ରଜତବାବୁ । ଏହାଦ୍ୱାରା କାମର କଥା କିନ୍ତୁ କିଛି ହେଉ ନାହିଁ ।

: ଆପଣ ଏହାକୁ ବାଜେ କଥା କହିପାରନ୍ତି ସବିତା ଦେବୀ । ଏହା କିନ୍ତୁ ଏକ ମସ୍ତବଡ଼ ସମସ୍ୟା । କୋଟିପତି ରାଜେନ୍ଦ୍ର ପ୍ରସାଦଙ୍କର କନ୍ୟା ଅପହୃତା ହେବେ, ଖବର କାଗଜବାଲାମାନଙ୍କ କଥା ଚିନ୍ତା କରି ପାରୁଛନ୍ତି ? ମୁଁ ତ ପୁଣି ଦିନେ ସାମ୍ବାଦିକ ଥିଲି । ସଂବାଦଟା ନିଶ୍ଚୟ ପ୍ରଥମ ପୃଷ୍ଠାରେ ଛପା ହେବା ଭଳି । ତା'ପରେ ମୋର ଅବସ୍ଥା କ'ଣ ହେବ ଚିନ୍ତା କରିପାରୁଛନ୍ତି ?

: ନା ନା ରଜତବାବୁ । ଆପଣ ସାମ୍ବାଦିକ ଥିଲେ, ସେଇଥିପାଇଁ କଳ୍ପନା ଶକ୍ତି ଆପଣଙ୍କର ଅତ୍ୟଧିକ ହୋଇଯାଇଛି । ଘଟଣାଟା ଯାହା ନୁହେଁ ବା ଯାହା କେବେ ଘଟିବା ସମ୍ଭବ ନୁହେଁ, ଆପଣ ମନେ ମନେ ତାକୁ ଘଟାଇ ବସୁଛନ୍ତି । ମୁଁ ପୁଣି ଥରେ କହୁଛି ଶୁଣନ୍ତୁ । ସୁଲେଖା ହଠାତ୍ ଦିନେ ଅନ୍ତର୍ଦ୍ଧାନ ହେବ । ଆପଣ ମୋ ସ୍ୱାମୀଙ୍କୁ ଫୋନ୍ କରି ଜଣାଇବେ ଯେ, ସୁଲେଖା ଆପଣଙ୍କ ପାଖରେ ଅଛି । ପାଞ୍ଚଲକ୍ଷ ଟଙ୍କା ବିନିମୟରେ ଆପଣ ତାକୁ ଫେରେଇ ଦେଇପାରନ୍ତି । ମୋର ସ୍ୱାମୀ ବିନ୍ଦୁମାତ୍ର ପ୍ରତିବାଦ ନ କରି ସୁବୋଧ ବାଳକଟି ପରି ଆପଣଙ୍କୁ ଟଙ୍କା ଦେବାକୁ ରାଜି ହୋଇଯିବେ । ଟଙ୍କା ସଂଗ୍ରହ କରି ସାରିଲେ ସୁଲେଖା ଫେରିଆସିବ । ଏତିକି ଘଟଣା, ଏଥିରେ ସମସ୍ୟା ଆସିଲା କେଉଁଠୁ ?

: ଆପାତଦୃଷ୍ଟିରେ କୋଉଠି ନ ଥାଇପାରେ, କିନ୍ତୁ ପରେ...

: ରଜତବାବୁ ! ସବିତାର ସ୍ୱର କଠିନ ଶୁଣାଗଲା । ପରେ କ'ଣ ହେବ ନହେବ ସେ ଘଟଣା ପରେ ଭାବିବା ଭଲ । ବର୍ତ୍ତମାନ ଆପଣ ମୋତେ କୁହନ୍ତୁ କାମଟା ଆପଣଙ୍କ ଦ୍ୱାରା ହେବ କି ନାହିଁ ? ଲକ୍ଷେ ଟଙ୍କା ବିନିମୟରେ ଆପଣ ଯଦି ଏଇ ସାମାନ୍ୟ ଦାୟିତ୍ୱ ଟିକକ ନେବାକୁ ରାଜି ନଥାନ୍ତି, ମୋତେ ସ୍ପଷ୍ଟ ମନା କରି ଦିଅନ୍ତୁ । ମୁଁ ଅନ୍ୟ ଲୋକର ସନ୍ଧାନରେ ବାହାରିବି ।

ମୁଁ ହସିଲି । କହିଲି : ତା'ତ ନିଶ୍ଚୟ । ଆପଣଙ୍କ ଚିନ୍ତା ଆପଣ କରିବେ । ମୋତେ କିନ୍ତୁ ଆପଣଙ୍କ ଏହି ପ୍ରସ୍ତାବଟା ସୁବିଧା ବୋଲି ମନେ ହେଉ ନାହିଁ । ଅନେକ ଖାଲ ଢିପ, ଅନେକ ଗୋଳମାଳ ମନେ ହେଉଛି । ଧରନ୍ତୁ ମୋ ଫୋନ୍ ପାଇ ଆପଣଙ୍କ ସ୍ୱାମୀ ଯଦି ପୋଲିସ୍‌କୁ ଖବର ଦେଲେ, ସେତେବେଳେ କ'ଣ ହେବ ? ସେ ନିଶ୍ଚୟ ଏଇ ଘଟଣାର ସୂତ୍ର ଖୋଜି ବାହାର କରିବା ପାଇଁ ଆଗେଇ ଆସିବେ ଏବଂ ...

: ଓଃ ! ଆପଣ ବଡ଼ ଭାବ-ପ୍ରବଣ ରଜତବାବୁ । ଆପଣ ମୋ ସ୍ୱାମୀଙ୍କ କଥା ଜାଣି ନାହାନ୍ତି । ସେ ମୋଟେ ପୋଲିସ୍‌ରେ ଖବର ଦେବେ ନାହିଁ । ତା'ଛଡ଼ା ମୁଁ ତ ସ୍ୱାମୀଙ୍କ ପାଖେ ପାଖେ ରହୁଛି, ତାଙ୍କୁ ମୁଁ ସମ୍ଭାଳି ପାରିବି ନାହିଁ ?

ହଠାତ୍ ମୋ ଚିନ୍ତାଧାରାଟା ବାଧା ପାଇଲା । ସତେତ ! ସବିତା ତ ତା' ସ୍ୱାମୀଙ୍କ ପାଖେ ପାଖେ ରହିବ । ହୁଏତ କୋଟିପତି ରାଜେନ୍ଦ୍ର ପ୍ରସାଦ ନିଜ ଝିଅର ମୁକ୍ତିପଣ କଥା ପୋଲିସ୍‌ରେ ଜଣାଇ ଗୋଟାଏ ସମସ୍ୟା ସୃଷ୍ଟି କରିବାକୁ ଆଗେଇ ନପାରନ୍ତି । ତା'ଛଡ଼ା ଦାୟିତ୍ୱ ଟିକେ ନନେଲେ, ଲକ୍ଷେ ଟଙ୍କା ... ଅଙ୍କଟା ଛୋଟିଆ ନୁହେଁ...

: ଆଚ୍ଛା, ଆପଣଙ୍କ ଝିଅ, ମାନେ ସୁଲେଖା କଥା ମୁଁ କହୁଛି । ତା'ର ଏଥିରେ କିଛି ଆପତ୍ତି ନାହିଁ ତ ?

: ନା, ମୋ ପରି ତା'ର ବି ଟଙ୍କା ଦରକାର ।

: ବୁଝିଲି । କିନ୍ତୁ ସବିତା ଦେବୀ, ପୋଲିସ କଥାଟା ମୁଁ ଆଉ ଥରେ ଆପଣଙ୍କୁ ଚେତେଇ ଦେଉଚି । ବିପଦ ଆସିଲେ ଏକା ମୋ ଉପରେ ଆସିବ ନାହିଁ, ଆପଣ ବି ମୋ ସଙ୍ଗରେ ଛନ୍ଦି ହୋଇ ପଡ଼ିବେ ।

ସବିତା ମୁହଁରେ ବିରକ୍ତି ଫୁଟାଇ ଚେଆରରୁ ଉଠି ପଡ଼ିଲା । ସମୁଦ୍ର ଆଡ଼େ ବ୍ୟର୍ଥ ଦୃଷ୍ଟିରେ ଚାହିଁ କହିଲା : ଆପଣଙ୍କ ସହିତ ଅଯଥାରେ ଗୁଡ଼ାଏ ସମୟ ନଷ୍ଟ କଲି । ବର୍ତ୍ତମାନ ବୁଝୁଛି ଏ କାମ ଆପଣଙ୍କ ଦ୍ୱାରା ହୋଇ ପାରିବ ନାହିଁ । ମୁଁ ଦୁଃଖିତ ରଜତ ବାବୁ ।

ସବିତା ଚାଲି ଯାଉଥିଲା । ମୁଁ ଉଠିଯାଇ କହିଲି : ଆପଣ ଭୁଲ କରୁଛନ୍ତି ସବିତା ଦେବୀ । କାମଟା ଯେ ମୁଁ ପାରିବି ନାହିଁ ସେ କଥା ତ ଆପଣଙ୍କୁ କହି ନାହିଁ । ମୁଁ ଖାଲି ଆପଣଙ୍କୁ ସାବଧାନ ହେବାକୁ କହୁଥିଲି । ଜେଲରେ ପଶି ଘଣା ଟାଣିବାକୁ କାହାକୁ ଭଲ ଲାଗେ ?

ସବିତା ସେହିପରି କଠିନ ସ୍ୱରରେ ଉତ୍ତର ଦେଲା : ମୁଁ ବାରମ୍ବାର ଆପଣଙ୍କୁ କହି ଆସୁଛି ଯେ, ପୋଲିସ୍, ଜେଲ ଏସବୁ ଏହି ଘଟଣା ଭିତରକୁ ଆସୁ ନାହିଁ । ଆପଣ ମୋତେ ପରିଷ୍କାର କହି ଦିଅନ୍ତୁ ଆପଣ ମୋ ପ୍ରସ୍ତାବରେ ରାଜି କି ନା ?

: କିନ୍ତୁ ସବିତା ଦେବୀ, ମୋତେ ଟିକିଏ ଚିନ୍ତା କରିବାକୁ ଦିଅନ୍ତୁ । ଆଚ୍ଛା, ଘଟଣାଟା ମୋତେ ଆଉ ଥରେ କହିଲେ ?

: ଘଟଣାଟା ଆଉ କ'ଣ ? ସୁଲେଖା ଅନ୍ତର୍ଦ୍ଧାନ ହେବ । ଆପଣ ମୋ ସ୍ୱାମୀଙ୍କୁ ଫୋନ୍ କରି ଟଙ୍କା କଥା କହିବେ । ତାଙ୍କୁ ବୁଝାଇବେ, ବିଶ୍ୱାସ କରାଇବେ ଯେ, ସେ ଟଙ୍କା ନଦେଲେ ଝିଅକୁ ଆଉ ଫେରି ପାଇବେ ନାହିଁ ।

: ସେ କ'ଣ ବିଶ୍ୱାସ କରିବେ ?

: ବିଶ୍ୱାସ କରିବେ ମାନେ ? ଝିଅକୁ ଦଣ୍ଡେ ନ ଦେଖିଲେ ସେ ବାଉଳା ହୋଇ ଯାଆନ୍ତି । ଝିଅ ବିପଦରେ ପଡ଼ିଛି ଜାଣିଲେ ସେ ଅସ୍ଥିର ହୋଇ ପଡ଼ିବେ ।

: ବୁଝିଲି । ତା'ପରେ କ'ଣ କରିବାକୁ ହେବ ?

: ତା'ପରେ ତାଙ୍କୁ କହିବେ କେଉଁଠି କିପରି ଭାବରେ ସେ ଯାଇ ଆପଣଙ୍କୁ ଟଙ୍କା ଦେବେ । ଟଙ୍କା ପାଇ ସାରିଲେ ଆପଣଙ୍କ ଅଂଶ ଆପଣ ରଖି ବାକି ଟଙ୍କାତକ ମୋତେ ଦେଇଦେବେ ।

: ଖାଲି ଆପଣଙ୍କୁ ? ସୁଲେଖାକୁ ଦେବି ନାହିଁ ?

ପ୍ରଶ୍ନଟା ଆକସ୍ମିକ । ଟିକିଏ ଯେପରି ବିବ୍ରତ ହୋଇ ପଡ଼ିଲା ସେ । ଇତସ୍ତତଃ କରି କହିଲା : ହଁ, ତା' ଭାଗ ତାକୁ ବି ଦେବେ ।

ଏହାପରେ କିଛି ସମୟ ନୀରବତା ଭିତରେ କଟିଗଲା । ଏତେ ଗୁଡ଼ାଏ ଟଙ୍କାର ଲୋଭ ମୁଁ ସମ୍ବରଣ କରି ପାରୁ ନଥିଲି । ଲକ୍ଷେ ଟଙ୍କା ଜଣକର ଭାଗ୍ୟ ପରିବର୍ତ୍ତନ ପାଇଁ ଯଥେଷ୍ଟ ।

ହଠାତ୍ ମୋ ଭାବନାରେ ବାଧା ପଡ଼ିଲା ।

: ତା'ହେଲେ ? କାମଟା ଆପଣ ତୁଲାଉଛନ୍ତି ?

: ହୁଁ, ତୁଲେଇ ପାରିବି ବୋଲି ଭାବୁଛି । ତେବେ ମୋତେ ଟିକିଏ ଚିନ୍ତା କରିବାକୁ ଦିଅନ୍ତୁ । ଏତେ ବଡ଼ ଗୋଟାଏ ଘଟଣାରେ ଲିପ୍ତ ହେବା ଆଗରୁ ମୋତେ ଟିକିଏ ସବୁ ଦିଗରୁ ଭାବିଚିନ୍ତି ଦେଖିବାକୁ ହେବ । ଆଜି ରାତିଟା ମୋତେ ସମୟ ଦିଅନ୍ତୁ । କାଲି ଦିନ ଏଗାରଟା ବେଳକୁ ଯଦି ଆପଣ ଟିକିଏ ଫୋନ୍ କରନ୍ତେ...

: ପୁଣି କାଲି କାହିଁକି ? ଶୁଭସ୍ୟ ଶୀଘ୍ରମ୍ ।

: ନା ସବିତା ଦେବୀ, ମୁଁ ମାତ୍ର ଦଶ ବାର ଘଣ୍ଟା ସମୟ ଚାହୁଁଛି ।

: ହୁଁ, କ'ଣ ଟିକିଏ ଚିନ୍ତା କଲା ସବିତା । ତା'ପରେ ବ୍ୟାଗରୁ ଶହେ ଟଙ୍କାର ଦଶଖଣ୍ଡ ନୋଟ୍ ବାହାର କରି ମୋ ହାତକୁ ବଢ଼ାଇ ଦେଇ କହିଲା, ଏତକ ରଖି ଥାଆନ୍ତୁ । କେବିନ୍‌ର ଭଡ଼ା ଫଡ଼ା ଏବଂ ଆନୁସଙ୍ଗିକ ଅନ୍ୟାନ୍ୟ ଖର୍ଚ୍ଚ ପତ୍ର... ଚାଲିଲି । କାଲି ଠିକ୍ ଏଗାରଟା ବେଳେ ଫୋନ୍ କରିବି ।

ସବିତା ମୋତେ ଆଉ କହିବାକୁ ଅବସର ଦେଲା ନାହିଁ । ଯେମିତି ଧୀରେ ଧୀରେ, ସନ୍ତର୍ପଣରେ ଆସିଥିଲା, ସେମିତି ଅନ୍ଧକାର ଭିତରେ ସେ ମିଳେଇଗଲା । ତା'ର ଝାପ୍‌ସା ଛାୟାମୂର୍ତ୍ତିଟା ଅଦୃଶ୍ୟ ହେବାଯାଏ ମୁଁ ତା' ଆଡ଼କୁ ମନ୍ତ୍ର ମୁଗ୍ଧ ପରି ଅନାଇ ରହିଥିଲି ।

ହୁଁ, ତା'ପରେ ?

ବାହାରୁ ଫେରି ଆସି ବହୁତ ବେଳଯାଏ ବସି ରହିଲି କେବିନ୍ ଭିତରେ, ଗୋଟାଏ କିଛି ସିଦ୍ଧାନ୍ତ ନେବାକୁ ହେବ ।

କାମଟା ଯେତିକି ସହଜ ମନେ ହେଉଛି, ବାସ୍ତବ କ୍ଷେତ୍ରରେ ଆଦୌ ସେତିକି ସହଜ ନୁହେଁ । ତେବେ ପାରିଶ୍ରମିକର ପରିମାଣଟା ଲୋଭନୀୟ । ଜୀବନର ଘଡ଼ିସନ୍ଧି ମୁହୂର୍ତ୍ତରେ ଝୁଙ୍କି ନେବାକୁ ହୁଏ । ନ ହେଲେ ସାଫଲ୍ୟ ଆସେ ନାହିଁ ।

ପୁଣି ଚୁପ୍ ଚାପ୍ ବସି ରହିଲି ଅନେକ ବେଳଯାଏ । ଠିକ୍ ଅଛି । ଦାୟିତ୍ୱ ମୁଁ ନେବି । ଝୁଙ୍କି ମୁଁ ଏକା କାହିଁକି ନେବି ? ଯଦି ନେବାକୁ ହୁଏ ତା'ହେଲେ ସବିତା ଓ ସୁଲେଖା ଉଭୟଙ୍କୁ ମୁଁ ସହଗାମିନୀ କରିବି ।

ଠିକ୍ ଅଛି । ସେଇ ଅନୁସାରେ ପ୍ଲାନ୍‌ଟା ଠିକ୍ କରିବାକୁ ହେବ ।

କାଲି ଦିନ ଏଗାରଟା ପୂର୍ବରୁ ସବିତାକୁ ଉତ୍ତର ଦେବା ପାଇଁ ପ୍ରସ୍ତୁତ ହୋଇ ରହିବାକୁ ହେବ ।

ଠିକ୍ ଏଗାରଟା ବେଳେ ମୋ ଘର ଟେଲିଫୋନ୍‌ଟା ବାଜି ଉଠିଲା ।

: ହ୍ୟାଲୋ ।

: କୁହନ୍ତୁ ରଜତବାବୁ ! ଆପଣ ପ୍ରସ୍ତୁତ ତ ?

: ତେବେ ଗୋଟାଏ ସର୍ତ୍ତରେ । ମୁଁ ଆପଣ ଏବଂ ସୁଲେଖା ସହିତ ଦି'ଚାରି କଥା ଆଲୋଚନା କରିବାକୁ ଚାହେ । ଆଜି ରାତି ନ'ଟାବେଳେ । ଆପଣ ଦୁହେଁ ସୈକତାବାସକୁ ଆସନ୍ତୁ । ଏହାପରେ ରିସିଭରଟା ମୁଁ ତଳେ ରଖିଦେଲି । ଯେପରି ସେ ମୋ ପାଖକୁ ଫୋନ୍ କଲେ ବି ମୋଠାରୁ କୌଣସି ଉତ୍ତର ମିଳିବ ନାହିଁ ।

ତା'ପରେ ଲାଗିଗଲି ପ୍ଲାନ୍ ଅନୁସାରେ କାମରେ ।

ଭାଗ୍ୟଭଲ ରୀତା ଘରେ ନାହିଁ । ସେ ଥିଲେ ନାନା ପ୍ରଶ୍ନ ପଚାରି ଥାଆନ୍ତା । ତାରଗୁଡ଼ାକ କ'ଣ କରିବ, ଟେପ୍ ରେକର୍ଡ଼ଟା କାହିଁକି ବାହାର କରୁଛ, ଏଇ ଯନ୍ତ୍ରପାତିଗୁଡ଼ା କ'ଣ ହେବ ? ଇତ୍ୟାଦି ଇତ୍ୟାଦି ନାନା ପ୍ରଶ୍ନ ।

ହୁଁ, ମୋର ଏ ଗୁଡ଼ା ସବୁ ଦରକାର । କାଲି ରାତିଭରି ଭାବି ଭାବି ଶେଷରେ ଏହିପରି ଏକ ସିଦ୍ଧାନ୍ତ ନେବାକୁ ହେଲା । ଏସବୁ ମୋ ନିଜର ନିରାପତ୍ତା ପାଇଁ । ସେମାନେ ଟଙ୍କା ନେଇ ଖସି ଚାଲିଯିବେ, ହୁଏତ ଶେଷରେ ବିପଦରେ ପଡ଼ିବାକୁ ହେବ ମୋତେ । ନା, ନା, ଶିକ୍ଷା ମୋର ଯଥେଷ୍ଟ ହୋଇଛି । ତେଣୁ ବିପଦରେ ପଡ଼ିବାକୁ ହେଲେ ସମସ୍ତେ ଏକା ସାଙ୍ଗରେ ହାଜତାବାସ କରିବୁ ।

ଏଇ ଟେପ୍‌ରେକର୍ଡ଼ରଟାଇ ମୋତେ ବଞ୍ଚାଇ ଦେବ । ଏହାକୁ ସୈକତାବାସରେ ଏପରି ଭାବରେ ସେଟ୍ କରିବାକୁ ହେବ ଯେ, ସବିତା, ମୁଁ ଏବଂ ସୁଲେଖା ଯାହା କଥାବାର୍ତ୍ତା ହେବୁ ସବୁ ଏଇ ଟେପ୍‌ରେ ରେକର୍ଡ଼ ହୋଇ ରହିବ ।

ହାଃ ହାଃ ହାଃ ! ସବିତା ! ମୋ ସହିତ ଲୁଚକାଳି ଖେଳ ଏତେ ସହଜ ନୁହେଁ । ଏଇ ଟେପ୍‌ରେକର୍ଡ଼ରଟାହିଁ ତୁମକୁ ବି ମୋ ସହିତ ନରକକୁ ଟାଣିନେବ ।

ଠିକ୍ ସଂଧ୍ୟା ଛଟାବେଳେ ପ୍ରୟୋଜନୀୟ ସମସ୍ତ ଯନ୍ତ୍ରପାତି ଧରି ବାହାରି ପଡ଼ିଲି ।

ସୈକତାବାସରେ ପହଞ୍ଚିବାକୁ ପ୍ରାୟ ଏକଘଣ୍ଟା ସମୟ ଲାଗିବ । ତା'ପରେ ନିର୍ଦ୍ଦିଷ୍ଟ କେବିନ୍‌ରେ ସୁବିଧା ଦେଖି ସତର୍କତାର ସହ ଟେପ୍‌ରେକର୍ଡ଼ରଟି ସେଟ୍ କରିବାକୁ ହେବ ।

ତା'ପରେ ମାଇକ୍ରୋଫୋନ୍ ସମସ୍ୟା । ଏପରି ଏକ ଗୁପ୍ତ ସ୍ଥାନରେ ମାଇକ୍ରୋଫୋନ୍‌ଟି ରଖିବାକୁ ହେବ, ଯେପରି ସେମାନେ କେହି ବୁଝିପାରିବେ ନାହିଁ, ଅଥଚ ସବୁ କଥା ମାଇକ୍ରୋଫୋନ୍‌ରେ ସ୍ପଷ୍ଟ ଭାବରେ ପ୍ରବେଶ କରିବ ।

ଠିକ୍ ପ୍ଲାନ୍ ଅନୁସାରେ କାମ । ସବୁକାମ ଶେଷ ହେଲା ପ୍ରାୟ ରାତି ଆଠଟା ବେଳେ । ଲାଇଟ୍ ସୁଇଚ୍ ସହିତ ଟେପ୍‌ରେକର୍ଡ଼ରର ସୁଇଚ୍ ଜଏଣ୍ଟ୍ କଲି । ଘରର ଲାଇଟ୍ ଜଳାଇବା ମାତ୍ରକେ, ଟେପ୍‌ରେକର୍ଡ଼ର ଚାଲୁ ହୋଇଯିବ । ନିଜେ ଥରେ ପରୀକ୍ଷା କରି ଦେଖିଲି । ଲାଇଟ୍ ଜଳେଇ, କଥା କହି । ସବୁ ଠିକ୍ ଅଛି । ବିଜୟ ଦର୍ପରେ ମନଟା ପୂରି ଉଠିଲା । ମୋ ଫାନ୍ଦରେ ଏଥର ସବିତା ପାଦ ଦେବାକୁ ବାଧ୍ୟ ।

ଏହାପରର ସମୟ ଆଉ କାଟିବାକୁ ଚାହେ ନାହିଁ । ଏପାଖ ସେପାଖ ହୋଇ, ବାହାରେ ବୁଲି, ନିର୍ଜନ ଅନ୍ଧକାର ଭିତରେ ନାନା ପ୍ରଶ୍ନର ଚିନ୍ତା ଭାବନା ମନକୁ ଆନ୍ଦୋଳିତ କରୁଥିଲା । ଏକ ସମୟରେ ନଅଟା ବାଜିଲା । ଏଥର ସବିତା ଓ ସୁଲେଖା ଦୁହେଁ ଆସିବେ । ତା'ପରେ...

ଗୋଟାଏ ବେତ ଚେଆର ଟାଣି ବାରଣ୍ଡାରେ ବସିଲି । ହାତ ଘଡ଼ି ଟିକ୍ ଟିକ୍ ହୋଇ ଚାଲୁଥିଲା । ଚାରିଆଡ଼େ ନୀରବ ନିସ୍ତବ୍ଧ । ମୋ ମନ ଭିତରେ କିପରି ଏକ ଚାପା ଉତ୍ତେଜନା ।

କିନ୍ତୁ ସବିତା କାହିଁ ? ଆଜିବି କ'ଣ ସେ...

ହଠାତ୍ ଗୋଟାଏ ଛାୟାମୂର୍ତ୍ତି ଆଗେଇ ଆସିବାର ଦେଖିଲି ।

ହଁ, ସବିତା । ସେ ମୋ ସାମ୍ନାରେ ଗୋଟାଏ ଚେଆର ଟାଣି ବସିବାକୁ ଯାଉଥିଲା । ମୁଁ ଠିଆ ହୋଇ ପଡ଼ିଲି : ନା ସବିତା ଦେବୀ । ଭିତରକୁ ଆସନ୍ତୁ । ବାହାରେ ବସି ଏ ସବୁ ଗୁପ୍ତ କଥା ହୁଏ ନାହିଁ ।

ମୁଁ ଆଗେଇ ଯାଇ ଘରେ ଆଲୁଅ ଜଳେଇଲି । ପଚାରିଲି, ସୁଲେଖା କାହିଁ ?

: ଆସୁଛି ।

ଭିତରକୁ ଯାଇ ସବିତା ସୋଫା ଉପରେ ବସିଲା । ସିଗାରେଟ୍ କେସ୍ ବାହାର କରି ସିଗାରେଟ୍ ଲଗେଇଲା : ତା' ପରେ ! ଆପଣ କିଛି କହିବେ ?

: କହିବି ମାନେ ? ଡାକିଛି ତ କହିବା ପାଇଁ । ଖାଲି ଆପଣ ନୁହନ୍ତି । ଆପଣଙ୍କ ସାମ୍ନାରେ ସୁଲେଖା ସହିତ କେଇପଦ କଥାବାର୍ତ୍ତା ହେବା ଉଚିତ । ସେ କେବଳ କହିବ, ସେ ଯାହା କରିବାକୁ ଯାଉଛି, ସବୁ ସଜ୍ଞାନରେ କରୁଛି ।

: ଆଶ୍ଚର୍ଯ୍ୟ । ଆପଣ ଦେଖୁଛି ବଡ଼ ଅଦ୍ଭୁତ ଲୋକ । ସୁଲେଖା ପିଲା ନୁହେଁ । ଯାହା କରାହେବ, ତାକୁ ନ ଜଣାଇ କିଛି ହେବ ନାହିଁ । ତଥାପି...

: ହଁ, ଆପଣଙ୍କ ସ୍ୱାମୀ ଯେ ପୋଲିସ୍‌ରେ ଖବର ଦେବେ ନାହିଁ, ସେ ବିଷୟରେ ଆପଣ ନିଶ୍ଚିତ ?

: ଧେତ୍‌ତେରି । ଆପଣ ବଡ଼ ମୁଷ୍କିଲ ଲୋକ । ସେ ସବୁ କଥା ତ ଆଗରୁ ହୋଇ ଯାଇଛି । ସେଇ ଗୋଟାଏ କଥାକୁ ବାରମ୍ବାର ଦୋହରେଇବାର କିଛି ମାନେ ହୁଏ ?

ଯା'ହେଉ, ଗୋଟାଏ ସ୍ୱୀକାରୋକ୍ତି ମିଳିଲା । ଏହାପରେ ଏକ ଦୁଇ ତିନ୍ କରି...

ଦରଜାରେ କିଏ ନକ୍ କରିବାର ଶବ୍ଦ ହେଲା । ସୁଲେଖା ବୋଧେ । ହଁ ସୁଲେଖା ଦରଜା ଠେଲି ଭିତରକୁ ପଶିଲା । ମୋ ମୁହଁକୁ କିଛି ସମୟ ନିର୍ନିମେଷ ନୟନରେ ଅନାଇ

ରହିଲା । ମୁଁ ବି ଚାହିଁଥିଲି ସୁଲେଖା ଆଡ଼େ । ସୁଲେଖା ଖୁବ୍ ସୁନ୍ଦରୀ ନୁହେଁ, କିନ୍ତୁ ସୁଲେଖା ଏ ଯୁଗର କଳୁଷିତ ଯୌବନର ପ୍ରତିଛବି ।

ସୁଲେଖା ହୋ' ହୋ' ହୋଇ ହସି ଉଠିଲା । କହିଲା : ଓଃ, ଆପଣ ବୋଧହୁଏ ସେଇ ଆଲିବାବା ? କିନ୍ତୁ ମହାଶୟ, ଆପଣଙ୍କର ସେଇ ଚାଲିଶ୍ ଚୋରଙ୍କୁ ଦେଖୁ ନାହିଁ ତ ?

ସୁଲେଖା ଯେପରି ଯୌବନ ଗର୍ବରେ ଗରବିଣୀ ।

ସବିତା ଧମକ୍ ଦେଲାପରି କହିଲା : ସୁଲେଖା, ଏଇଟା ପରିହାସର ବେଳ ନୁହେଁ । ସାମ୍ନାରେ ବସ୍ । କେତେକ ଜରୁରୀ କଥା ଅଛି ।

ସୁଲେଖା ବସିଲା । ମୁଁ ଯାଇ ଦରଜା ବନ୍ଦ କରି ଦେଇ ଆସିଲି । ତେଣେ ଟେପ୍ ଚାଲିଛି । ଟେପ୍‌ର ଆୟୁ ମାତ୍ର ଚାଲିଶ୍ ମିନିଟ୍ । ଯାରି ଭିତରେ ପ୍ରୟୋଜନୀୟ ତଥ୍ୟ ସବୁ ରେକର୍ଡ଼ କରି ରଖିବାକୁ ହେବ ।

ମୁଁ ସୁଲେଖା ସାମ୍ନାରେ ସୋଫା ଉପରେ ବସିଲି । ଗୋଟାଏ ସିଗାରେଟ୍ ଲଗେଇଲି ।

ସୁଲେଖା ମୋ ମୁହଁ ଉପରେ ଏକ ସତର୍କ ଦୃଷ୍ଟି ବୁଲେଇ ନେଇ ଅଳ୍ପ ହସି କହିଲା : କୁହନ୍ତୁ, ଆପଣ କ'ଣ କହୁଛନ୍ତି ?

: ନା ନା, କହିବେ ଆପଣ, ମୁଁ ଶୁଣିବି । ମୋର ମାତ୍ର କେତୋଟି ପ୍ରଶ୍ନ ।

: ପଚାରନ୍ତୁ ।

: ପ୍ରଥମେ କୁହନ୍ତୁ ଏଇ ଅପହରଣ ବିଷୟଟା ଆପଣ ଜାଣନ୍ତି କି ନାହିଁ ?

: ଜାଣେ, ମୁଁ ଏବଂ ସବିତା ଆମେ ଦୁଇଜଣ ଜାଣୁ ।

: କାମଟା କେବେଠାରୁ ଆରମ୍ଭ କରିବାକୁ ଚାହାନ୍ତି ? ମୁଁ ଚାହିଁଲି ସବିତା ମୁହଁକୁ ।

: ଯେତେ ଶୀଘ୍ର ହେବ ଭଲ । ସମ୍ଭବ ହେଲେ କାଲି ବା ପହରିଦିନ...

: ହଁ । ମିସ୍ ସୁଲେଖା ଅପହୃତ ହେବେ... କୋଉଠି ସେ ଯାଇ ରହିବେ ଆପଣ କହୁଥିଲେ ?

: ଭୁବନେଶ୍ୱରରେ । ସେଠାରେ ପାହାଡ଼ ପାଦ ଦେଶରେ ଏକ ନିର୍ଜ୍ଜନ ହୋଟେଲ ଅଛି ।

: ବେଶ୍ । ଆଚ୍ଛା ସବିତା ଦେବୀ, ଆପଣଙ୍କ କଥା ଅନୁସାରେ ସୁଲେଖାଙ୍କର ଏଇ ଅପହରଣ ଖବରଟା ଜାଣିବେ ମାତ୍ର ତିନିଜଣ- ଆପଣ, ମୁଁ ଏବଂ ଦରକାର ହେଲେ ଆପଣଙ୍କ ସ୍ୱାମୀ । ଏଇଆ ତ ?

: ହଁ ।

: ଆଚ୍ଛା ସୁଲେଖା ଦେବୀ, ଆପଣ ଯେ ହଠାତ୍ ଅନ୍ତର୍ଦ୍ଧାନ ହୋଇଯିବେ, ଆପଣଙ୍କ ବନ୍ଧୁ ବାନ୍ଧବ, ପରିଚିତ ଲୋକ - କେହି ଆଶ୍ଚର୍ଯ୍ୟ ହେବେ ନାହିଁ ?

: ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଏପରି ଅନ୍ତର୍ଦ୍ଧାନ ତ ମୁଁ ପ୍ରାୟ ହୋଇଥାଏ ।

: ହୁଁ ।

ସାମାନ୍ୟ ନୀରବତା ପରେ ମୁଁ ଚାହିଁଲି ସବିତା ଆଡ଼େ ।

କହିଲି : ଶୁଣନ୍ତୁ ସବିତା ଦେବୀ । ମୁଁ ଯଦି ଆପଣଙ୍କ ସ୍ୱାମୀ ହୋଇ ଥାଆନ୍ତି, ତା'ହେଲେ ଫୋନ୍ ପାଇ ସଙ୍ଗେ ସଙ୍ଗେ ଏତେ ଗୁଡ଼ାଏ ଟଙ୍କା ହାତଛଡ଼ା କରି ନଥାନ୍ତି । ଦି'ଚାରିଦିନ

ଅପେକ୍ଷା କରି ଥାଆନ୍ତି, ଦେଖି ଥାଆନ୍ତି । ଫୋନ୍‌ଟା ଟଙ୍କା ଆଦାୟର ଯେ ଗୋଟାଏ ଛଳନା ହୋଇପାରେ ସେ କଥା ମଧ୍ୟ ଚିନ୍ତା କରି ଥାଆନ୍ତି ।

: ଦେଖନ୍ତୁ ରଜତ ବାବୁ ! ବର୍ତ୍ତମାନ ଦାୟିତ୍ୱଟା ଆପଣଙ୍କର । ମୂଳରୁ ଶେଷଯାଏ ଆପଣ ଘଟଣାଟାକୁ ଠିକ୍ ଭାବରେ ସଜେଇ, ଏସବୁ ଅଘଟଣ ଯେପରି ନଘଟେ ସେ ଆଡ଼େ ଦୃଷ୍ଟି ଦେଇ କାମ କରିବେ ।

: ତା' ସତ ଯେ, କିନ୍ତୁ ଏପରି ତ ହୋଇପାରେ ସେ ହୁଏତ ସବୁ ଶେଷରେ ପୋଲିସ୍‌କୁ ଖବର ଦେଇଦେଲେ ସେଉଠୁ ?

: ଆପଣ ଖାଲି ଅଯଥାରେ ବାଜେ କଥାରେ ମୁଣ୍ଡ ଖେଳଉଛନ୍ତି । ମୁଁ ତ କହିଛି, ସ୍ୱାମୀଙ୍କୁ ସମ୍ଭାଳିବାର ଦାୟିତ୍ୱ ମୋର ।

: ଜାଣେ । ତଥାପି ଆପଣଙ୍କୁ ମୁଁ ଭରସା କରି ପାରୁ ନାହିଁ । ଧରନ୍ତୁ ମଝିବାଟରେ ଯଦି କିଛି ଗୋଳମାଳିଆ ପରିସ୍ଥିତି ସୃଷ୍ଟି ହୁଏ, ତା'ହେଲେ କ'ଣ ଆପଣମାନେ ଆଗକୁ ବଢ଼ିବାକୁ ସାହସ କରି ପାରିବେ ?

: ଅଲବତ୍ । ସୁଲେଖା ଟେବୁଲ ବାଡ଼େଇ କହିଲା, ଟଙ୍କା ଆମର ଦରକାର ।

ସୁଲେଖାର କଣ୍ଠସ୍ୱରରେ ଦୃଢ଼ତା, ମୁଖର ରେଖା କଠିନ । ମୁଁ ଟିକେ ଅବାକ୍ ହେଲି, ଆଶ୍ଚର୍ଯ୍ୟ ହେଲି ।

: ହଁ, ଟଙ୍କା ଆମର ଦରକାର । ସବିତା କହିଲା, ପୁଲିସ... ନା, ପୁଲିସ ଏହା ଭିତରେ ନାକ ଗଳେଇବାକୁ ଆସିବ ନାହିଁ । ମୁଁ କହୁଛି, ଆପଣ ନିଶ୍ଚିନ୍ତ ରହି ପାରନ୍ତି ।

: ଧରି ନିଅନ୍ତୁ ମୁଁ ନିଶ୍ଚିନ୍ତ ରହିଲି । ଆପଣଙ୍କ ସ୍ୱାମୀ ଟଙ୍କା ଦେଲେ । ସୁଲେଖା ନିର୍ବିଘ୍ନରେ ଘରକୁ ଫେରି ଆସିଲା । ତା'ପରେ ? ନିରାପଦରେ ସୁଲେଖା ଘରକୁ ଫେରି ଆସିବା ପରେ ବି ସେ ଏ ସମ୍ବନ୍ଧରେ ପୋଲିସ୍ ସହିତ ସଂଯୋଗ ସ୍ଥାପନ କରିବେ ନାହିଁ ?

: ଓହୋ... ମୁଁ ପୁଣିଥରେ କହୁଛି ରଜତବାବୁ, ସ୍ୱାମୀଙ୍କ ସମ୍ବନ୍ଧରେ ଯାହାକିଛି କରିବାର ମୁଁ କରିବି । ତାଙ୍କୁ ସମ୍ଭାଳିବାର ଦାୟିତ୍ୱ ମୋର, ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି ?

: ହେଲା, ଆପଣଙ୍କଠାରୁ ଯଦି ନିର୍ଭରଯୋଗ୍ୟ ଭରସା ପାଏ...

: ହଁ, ମୁଁ ଭରସା ଦେଉଛି । ସ୍ୱାମୀ ମୋର ଅସୁସ୍ଥ । ମୋତେ ସେ ଭଲ ପାଆନ୍ତି । ତେଣୁ...

: ହେଉ, ସେ ଦିଗରୁ ମୁଁ ନିଶ୍ଚିନ୍ତ ହେଲି । ଏଥର ତା'ହେଲେ କାମର କଥା ହେଉ । ଆଜି ହେଲା ମଙ୍ଗଳବାର । ଏଇ ଶନିବାର ମଧ୍ୟରେ ଆମର ପ୍ରାଥମିକ ପ୍ରସ୍ତୁତି ପର୍ବ ଶେଷ କରିବାକୁ ପଡ଼ିବ । ସୁଲେଖା ଦେବୀ, ଆଗାମୀ ଶନିବାର ଦିନ ଆପଣଙ୍କୁ ଆପଣଙ୍କର ଜଣେ ବାନ୍ଧବୀଙ୍କ ସହିତ ସିନେମା ଦେଖିବାର ପ୍ରୋଗ୍ରାମ କରିବାକୁ ହେବ ।

: କରିବି । ତା'ପରେ ?

: ଯିବା ଆଗରୁ ଆଉ କାହାକୁ କୁହନ୍ତୁ ନ କୁହନ୍ତୁ ମଧ୍ୟାହ୍ନଭୋଜନ ସମୟରେ ବାବାଙ୍କୁ କଥାଟା ଜଣେଇ ରଖିବେ । ଆପଣ କିନ୍ତୁ ନିର୍ଦ୍ଦିଷ୍ଟ ସମୟରେ ବାହାରି ସିନେମା ହଲକୁ ଯିବେ ନାହିଁ । ସିଧା ବାହାରି ଆସିବେ ଗଙ୍ଗାକୂଳକୁ, ଆଉଟ୍‌ରାମ ଘାଟକୁ । ସେଇଠି ଗାଡ଼ି ପ୍ରସ୍ତୁତ ଥିବ । ମୁଁ ବି ଗାଡ଼ିରେ ଥିବି । ସେଇ ଗାଡ଼ିରେ ଆପଣ ହେବେ ଅନ୍ତର୍ଦ୍ଧାନ । ମୁଁ ଆପଣଙ୍କୁ

ଯଥାସ୍ଥାନରେ ଛାଡ଼ି ଫେରି ଆସି ପବ୍ଲିକ୍ ଫୋନ୍‌ରୁ ଗୋଟାଏ ଫୋନ୍ କରିବି । ହଁ, ଗୋଟାଏ ଭଲ କଥା ମନେ ପଡ଼ିଲା । ଫୋନ୍‌ରେ ଆପଣଙ୍କ ସ୍ୱାମୀ ମିଳିବେ ତ ?

: ପ୍ରଥମେ ଫୋନ୍ ଧରିବେ ତାଙ୍କର ସେକ୍ରେଟାରୀ । ଆପଣ କହିବେ ସୁଲେଖା ସମ୍ବନ୍ଧରେ ଆପଣ ସ୍ୱାମୀଙ୍କ ସହିତ କଥା ହେବାକୁ ଚାହାନ୍ତି । ତାଙ୍କ ସହିତ ସେ ଯୋଗାଯୋଗ କରାଇ ଦେବେ । ମୁଁ ତ ସେଠି ଥିବି, ଟେଲିଫୋନ୍‌ଟା ଯେପରି ସେ ଧରନ୍ତି ମୁଁ ତା'ର ବ୍ୟବସ୍ଥା କରାଇ ଦେବି ।

: ସବୁ ହେବ ଯେ, କିନ୍ତୁ... ନା, ଶୁଣନ୍ତୁ, ସୁଲେଖାର ସେଇ ବାନ୍ଧବୀଟି ଜରିଆରେ ଆଗରୁ ଥରେ ଫୋନ୍ କରେଇବାକୁ ହେବ । ଏଇଟା ଆପଣଙ୍କର ଦାୟିତ୍ୱ ସୁଲେଖା ଦେବୀ । ଆପଣ ବାନ୍ଧବୀଟିକୁ କହି ରଖିବେ, ସେ ଯଦି ଆପଣଙ୍କୁ ନଅଟା ଭିତରେ ସିନେମା ହଲ୍‌ରେ ନଦେଖନ୍ତି, ତା'ହେଲେ ସେ ଯେପରି ଆପଣଙ୍କ ଘରକୁ ଫୋନ୍ କରି ଖବର ନିଅନ୍ତି । ପାରିବେ ତ ?

: ଖୁବ୍ ପାରିବି । ତା'ପରେ ?

: ତା'ପରେ ଆଉ କ'ଣ । ମୋ ଟେଲିଫୋନ୍ ଆପଣଙ୍କ ଘରେ ପହଞ୍ଚିଲାବେଳକୁ ଆପଣ ଅନେକ ବାଟ ଆଗେଇ ଯାଇଥିବେ ।

: ବୁଝିଲି ।

: ଏଣେ ଫୋନ୍‌ରେ ମୁଁ ଆପଣଙ୍କ ବାବାଙ୍କୁ କହିବି ସେ ଯେପରି ଦୁଇଦିନ ମଧ୍ୟରେ ଟଙ୍କାଟା ଯୋଗାଡ଼ କରି ରଖନ୍ତି । ଦୁଇଦିନ ପରେ ଫୋନ୍‌ରେ ପୁଣି ଅନ୍ୟ ନିର୍ଦ୍ଦେଶ ପାଇବେ । ଆଉ ସବିତା ଦେବୀ, ଆପଣଙ୍କ କାମ ହେବ ସ୍ୱାମୀଙ୍କୁ ସମ୍ଭାଳି ରଖିବା । ସେ ଯେପରି କୌଣସି ପ୍ରକାର ଗଣ୍ଡଗୋଳ ସୃଷ୍ଟି କରିବାକୁ ଚେଷ୍ଟା ନକରନ୍ତି । ଗଣ୍ଡଗୋଳ ବୋଇଲେ ପୋଲିସକୁ ଖବର ଦେବା ବା ଟଙ୍କାରେ କୌଣସି ପ୍ରକାର ମାର୍କା ଦେଇ ରଖିବା ଇତ୍ୟାଦି ଇତ୍ୟାଦି । ଏଗୁଡ଼ା କିନ୍ତୁ ଯେପରି ଆଦୌ ନ ହୁଏ । ବୁଝିଲେ ?

: ହଁ ବୁଝିଲି । ସେ ଦାୟିତ୍ୱ ମୋର । ସେ କଥା ମୁଁ ବୁଝିବି ।

: ଦ୍ୱିତୀୟଥର ଫୋନ୍ କରିବି ମୁଁ ଦୁଇଦିନ ପରେ । ହଁ ଆଉ ଗୋଟାଏ କଥା । ଆପଣଙ୍କ ସ୍ୱାମୀ ଟଙ୍କା ଦେବାକୁ ନିଜେ ଆସି ପାରିବେ ତ ? ତାଙ୍କ ଦେହର ଅବସ୍ଥା ଯାହା...

: ନା ନା, ସେ ନିଶ୍ଚୟ ଯିବେ । ଦେହ ଯେତେ ଖରାପ ଥିଲେ ବି ସେ ନିଜେ ଯିବେ । ଘରର ଏଇସବୁ ଗୁମର କଥା ପଦାରେ ପକେଇବା ପାଇଁ ଅନ୍ୟ କାହାର ସାହାଯ୍ୟ ସେ ନେବେ ନାହିଁ ।

: ତା'ହେଲେ ତ ଆମର ଚିନ୍ତା କରିବାର କିଛି ନାହିଁ । ମୁଁ ତାଙ୍କୁ କହିବି ରାତି ଦୁଇଟା ବେଳକୁ ଟଙ୍କା ନେଇ ବାହାରିବାକୁ । ଯେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ଟଙ୍କା ଦେବା କଥା, ସେ ସେଇଠାକୁ ଯିବେ ଗୋଟାଏ ଆଟାଚିରେ ଟଙ୍କା ଭର୍ତ୍ତି କରି । ସେଠାରେ ତିନିଥର ଆଲୋକ ଜଳି ଲିଭିବାର ଦେଖିଲେ, ଆଟାଚିଟା ସେଇଠି ରଖି ଦେଇ ଚାଲିଯିବେ । ଅନ୍ୟ କେଉଁ ଆଡ଼କୁ ଚାହିଁବେ ନାହିଁ । ଏହି ସମୟ ଭିତରେ ସୁଲେଖା ଭୁବନେଶ୍ୱରରୁ ଫେରି ସୈକତାବାସରେ ମୋତେ ଅପେକ୍ଷା କରିବ । ମୁଁ ମୋ ଅଂଶତକ ନେଇ ବାକି ଟଙ୍କା ସୁଲେଖା ହାତରେ ଧରାଇଦେବି । ତା'ପରଠୁ ଟଙ୍କାର ଦାୟିତ୍ୱ ଆପଣମାନଙ୍କର ।

ଚିତ୍କାର କରି ଉଠିଲା ସବିତା : ନା ନା, ସେ କଥା ହେଇ ପାରିବ ନାହିଁ । ସୁଲେଖାକୁ ନୁହେଁ, ଟଙ୍କା ଆପଣ ମୋ ହାତରେ ଦେବେ । ହଁ, ମୋତେ ।

ସୁଲେଖା ଉଠି ଠିଆ ହୋଇ ପଡ଼ିଲା : କାହିଁକି ? ମୋତେ ଦେଲେ ତମର ଆପତ୍ତି କାହିଁକି ?

: ତତେ ମୁଁ ବିଶ୍ୱାସ କରେନି । ନା ନା, ଆପଣ ତାକୁ ଟଙ୍କା ଦେବେ ନାହିଁ ।

: ଓଃ, ନିଜେ ତ ଗୋଟାଏ ସାଧୁ ପୁରୁଷ । ସୁଲେଖା ତୀକ୍ଷ୍ଣ ସ୍ୱରରେ କହିଲା, ତମେ ଭାବିଛ ମୁଁ କ'ଣ ତମକୁ ବିଶ୍ୱାସ କରେ ? ଟଙ୍କାଟା ତମ ହାତରେ ପଡ଼ିଲେ...

ମୁଁ ହାତ ଉଠେଇ ଚୁପ୍ କରେଇଲି : ଚୁହ ଚୁହ । ବର୍ତ୍ତମାନ ଏଇଟା କଳିଗୋଳର ବେଳ ନୁହେଁ । ମୁଁ ବରଂ ଗୋଟାଏ ସହଜ ଉପାୟ ସ୍ଥିର କରିଦେବି । ଚିଠିରେ ଲେଖିଦେବି, ଟଙ୍କାଟା ନିର୍ଦ୍ଦିଷ୍ଟ ସ୍ଥାନରେ ରଖି ଦେଇ ସେ ଯେପରି ଘରକୁ ଫେରି ଯାଆନ୍ତି । ଘରେ ଯାଇ ଝିଅକୁ ପାଇବେ । ସେ ଘରକୁ ଫେରିଗଲେ ସୈକତାବାସରେ ଆପଣ ଦୁହେଁ ନିଜ ନିଜର ଟଙ୍କା ବାଣ୍ଟି ନେଇ ଫେରିଯିବେ ।

: କିନ୍ତୁ ବାବା ଯଦି ଘରେ ପହଞ୍ଚି ମୋତେ ଦେଖିବାକୁ ନ ପାଇ ପୋଲିସ୍‌କୁ ଫୋନ୍ କରି ଦିଅନ୍ତି ?

: ହଁ, ଠିକ୍ କହିଛି ସୁଲେଖା । ସେତେବେଳେ ସ୍ୱାମୀଙ୍କ ପକ୍ଷରେ ପୋଲିସ୍‌କୁ ଫୋନ୍ କରିବା କିଛି ଅସ୍ୱାଭାବିକ ନୁହେଁ ।

ମୁଁ କହିଲି : ସେଥିପାଇଁ ଆଗରୁ ଉପାୟ ସ୍ଥିର କରି ରଖିବାକୁ ହେବ । ସେ ସୁଲେଖାର ହାତ ଲେଖା ଚିଠି ଖଣ୍ଡେ ପାଇବେ ତାଙ୍କ ଗାଡ଼ିରୁ । ସେଥିରେ ଲେଖାଥିବ, ବାବା, ତମେ ବ୍ୟସ୍ତ ହେବ ନାହିଁ । ମୁଁ ଦୁଇଘଣ୍ଟା ମଧ୍ୟରେ ଘରେ ପହଞ୍ଚୁଛି ।

: ହଁ, ବରଂ ସେଇଆ ଭଲ । ଆମେ ଦି'ଜଣ ଥିବୁ ସୈକତାବାସରେ । ଆପଣ ଯେ ଯାହାର ଟଙ୍କା ବୁଝାଇ ଦେବେ । ସବିତା କହିଲା ।

: ସବୁ ତ ହେଲା, କିନ୍ତୁ ଅସଲ କଥାଟା କିପରି ହେବ । ଆମେ ପୋଲିସ୍‌କୁ କିପରି ଏଡ଼େଇ ଯିବା ସେଇକଥା ଭଲ ଭାବରେ ଚିନ୍ତା କରି କାର୍ଯ୍ୟର ଗୋଟାଏ ଖସଡ଼ା ତିଆରି କରି ଆମକୁ ଆଗେଇବାକୁ ହେବ ।

: ପୁଣି ସେଇ ପୋଲିସ୍ । ମୁଁ ଆପଣଙ୍କୁ ହଜାରେ ଥର କହିଲିଣି ନା, ପୋଲିସ୍ ଆମ ପାଖକୁ ଆସିବେ ନାହିଁ । ସବିତା କଣ୍ଠରେ ବିରକ୍ତି ଫୁଟି ଉଠିଥିଲା ।

: ନା, ମୁଁ କହୁଛି ପୋଲିସ୍‌କୁ ବାଦ୍ ଦେଲେ ଚଳିବ ନାହିଁ । ପୋଲିସକୁ ଆଖି ଆଗରେ ରଖି ଆମକୁ ପ୍ଲାନ୍ କରିବାକୁ ହେବ । ସୁଲେଖା ଦେବୀ, ଆପଣ କାଲି ଆଉ ଥରେ ଏଠାକୁ ଆସନ୍ତୁ । ମୁଁ ପ୍ଲାନ୍‌ଟା ଆପଣଙ୍କୁ ବୁଝାଇ ଦେବି ଏବଂ ଗପ୍ପଟା ଆପଣଙ୍କୁ ଶୁଣାଇ ଦେବି ।

: ଠିକ୍ ଅଛି । ମୁଁ କାଲି ଆସିବି । ସୁଲେଖା ଉଠି ଠିଆ ହେଲା ।

ସବିତା କ'ଣ କହିବାକୁ ଯାଉଥିଲା । ମୁଁ ବାଧା ଦେଇ କହିଲି : ନା ନା, ମୁଁ ଆଉ କିଛି ଶୁଣିବାକୁ ଚାହେ ନାହିଁ । ମୋ ଦ୍ୱାରା ଯଦି ଆପଣ କାମ କରେଇବାକୁ ଚାହାନ୍ତି, ତେବେ ମୋ କଥା ମାନି ଚଳିବାକୁ ହେବ । ନହେଲେ...

ମୁଁ ଚୁପ୍ ରହିଲି ।

ସବିତା ନୀରବରେ ମୋ ଆଡ଼େ ଗୋଟାଏ ଉଦ୍ଭଟ ଚାହାଣିରେ ଚାହିଁ ଘରୁ ବାହାରିଗଲା । ସେମାନେ ଦୁହେଁ ଅନ୍ଧକାର ଭିତରେ ମିଳେଇ ଗଲେ । ମୁଁ ଫେରି ଆସି ସୁଇଚ୍ ଟିକି ଟେପ୍‌ରେକର୍ଡ଼ର୍‌ଟା ବନ୍ଦ କରିଦେଲି ।

\+ \+ \+

ପରଦିନ ରାତି ଠିକ୍ ନ'ଟାରେ ସୁଲେଖା ଆସିଲା । ସୈକତାବାସରେ ମୁଁ ତାକୁ ଅପେକ୍ଷା କରି ବସିଥିଲି । ସୁଲେଖାର ବେଶ ପୋଷାକ ଦେଖି ମନେ ହେଲା ସେ ଯେପରି ଏକ ଅଭିସାରିକା । ଅଭିସାରରେ ବାହାରିଛି । ଦରଜା ଠେଲି ଭିତରକୁ ପଶି କହିଲା : ବାନ୍ଦା ହାଜିର୍ ହଜୁର୍ । ଆଦେଶ କରନ୍ତୁ ।

ଆମେ ଦୁଇଜଣ ଏକା ସଙ୍ଗରେ ହସି ଉଠିଲୁ ।

ତା' ହାତରୁ ଛୋଟ ସୁଟ୍‌କେଶଟି ଆଣିବାକୁ ଯାଇ ତା' ହାତର ଆଙ୍ଗୁଳି ମୋ ଆଙ୍ଗୁଳିରେ ଲାଗିଲା । ଟିକିଏ ଇତସ୍ତତଃ କରି କହିଲି : ଆପଣ ଏକା ଯେ, ମା' ଆସିଲେ ନାହିଁ ?

: ମା'ଙ୍କର ତ ଆସିବାର ନଥିଲା । ସୁଲେଖା ଉତ୍ତର ଦେଲା ।

ଦରଜା ବନ୍ଦକରି କେବିନ୍‌ରେ ବତି ଜଳେଇଲି । ସଙ୍ଗେ ସଙ୍ଗେ ମୋ ଟେପ୍‌ରେକର୍ଡ଼ରଟି ଚାଲୁ ହୋଇଗଲା ।

ସମଗ୍ର ମଧ୍ୟାହ୍ନଟା ବସି ବସି ମୁଁ ପ୍ଲାନ୍ କରିଥିଲି । ସୁଲେଖା କିପରି ଅନ୍ତର୍ଦ୍ଧାନ ହେବ, କିଏ ତା' ସାଙ୍ଗରେ ଯିବ, କେଉଁଠି ଯାଇ ସେ କିପରି ରହିବ ଇତ୍ୟାଦି ଇତ୍ୟାଦି ସବୁ କଥା ମୁଁ ସୁଲେଖାକୁ ଗୋଟି ଗୋଟି କରି ଶୁଣାଇଲି । ଠିକ୍ ମୋ ପ୍ଲାନ୍ ଅନୁସାରେ କାମ କରିବାକୁ ହେବ । ମୋ ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ହେବ । ତା' ନହେଲେ ମୁଁ ଏ ଧନ୍ଦାରେ ନାହିଁ । ସଫା ସଫା ସବୁକଥା ସୁଲେଖାକୁ ଶୁଣାଇ ଦେଲି ।

ସୁଲେଖା ମୋ ସାମ୍ନା ସୋଫା ଉପରେ ଗୋଡ଼ ଉପରେ ଗୋଡ଼ ପକାଇ ବସି ମନଧ୍ୟାନ ଦେଇ ଶୁଣୁଥିଲା । ତା' ମିନିସ୍କାର୍ଟର କିଛି ଅଂଶ ଘୁଞ୍ଚିଯାଇ ଉରୁର ଅନେକାଂଶ ଅନାବୃତ ହୋଇ ପଡ଼ିଥିଲା । ସେଠାରୁ ଦୃଷ୍ଟି ଫେରାଇ ଆଣୁ ଆଣୁ ମୁଁ ସୁଲେଖା ଆଖିରେ ଧରା ପଡ଼ିଗଲି ।

ହସିଲା ସେ । କହିଲା : ସବୁ ମୁଁ ଶୁଣିଲି । ଆପଣଙ୍କ ପ୍ଲାନ୍ ଅନୁଯାୟୀ ସବୁ କଥା ଅକ୍ଷରେ ଅକ୍ଷରେ ପାଳନ କରିବି । କିନ୍ତୁ ଏହାପରେ ? ଆଉ କିଛି ନିର୍ଦ୍ଦେଶ ଅଛି ?

: ନା ନିର୍ଦ୍ଦେଶ କିଛି ନାହିଁ । କିନ୍ତୁ ଏଇସବୁ କାଗଜ ପତ୍ର ନିଅ, ଆଉଥରେ ଭଲ କରି ପଢ଼ିବ । ମୁଁ ଟିକି ନିଖି ହଜାର ପ୍ରକାର ବିବରଣୀରେ ପୂର୍ଣ୍ଣ କାଗଜ ଖଣ୍ଡିକ ହାତରେ ଦସ୍ତାନାପିନ୍ଧି ତା' ହାତକୁ ବଢ଼ାଇ ଦେଲି । କହିଲି, ପୁଣି ଆପଣଙ୍କୁ କାଲି ରାତିରେ ଆଉଥରେ ଆସିବାକୁ ହେବ ଏଠାକୁ । ଲେଖାଟି ପଢ଼ି କ'ଣ ମୁଖସ୍ଥ କଲେ ନ କଲେ ମୁଁ ଏଇଠି ଥରେ ପରୀକ୍ଷା କରିବି ।

ସୁଲେଖା କାଗଜ ଖଣ୍ଡିକ ମୋଠାରୁ ନେଇ ତା'ହାତ ବ୍ୟାଗ୍‌ରେ ଭରିଲା ।

: ହଁ, ଆଉ ଗୋଟିଏ କଥା ସୁଲେଖା ଦେବୀ । ଅଜ୍ଞାତବାସ କାଳରେ ଆପଣ ଯେଉଁ ପୋଷାକ ପିନ୍ଧି ପଟାଇବେ, ସେଇ ପୋଷାକଟା ଥରେ ପିନ୍ଧନ୍ତୁତ ମୁଁ ଦେଖେ । ତଦ୍ୱାରା ଆପଣଙ୍କ ଚେହେରାର କିପରି ପରିବର୍ତ୍ତନ ହେଉଛି, ସେଇଟା ଅନ୍ତତଃ ମୋର ଥରେ ଦେଖିବା ଦରକାର । ପରଚୁଳାଟା ବି ପିନ୍ଧନ୍ତୁ ।

ସୁଲେଖା ଆଟାଚି ଖୋଲି ପୋଷାକ ଏବଂ ପରଚୁଳା ବାହାର କଲା । ଶସ୍ତା ପୋଷାକ । ହାଲ୍‌କା ନୀଳରଙ୍ଗ ଉପରେ ସାଦା ଗାରକଟା ।

: ପାଖ ଘରକୁ ଯାଇ ପିନ୍ଧି ଆସନ୍ତୁ । ମୁଁ କହିଲି ।

ସୁଲେଖା ମୁହଁରେ ବିରକ୍ତି ଫୁଟି ଉଠିଲା । ଆର ଘରକୁ ଉଠି ଯାଉ ଯାଉ କହିଲା : ଏଇଟା କର, ସେଇଟା କର, କାହିଁକି ଏତେ ହୁକୁମ୍ । ମୁଁ କ'ଣ କାହା ଚାକର ?

ମୋତେ ହସ ମାଡ଼ିଲା । ସୁଲେଖାକୁ କିଛି ଉତ୍ତର ଦେବା ପୂର୍ବରୁ ସେ ଅନ୍ତର୍ଦ୍ଧାନ ହୋଇ ଯାଇଥିଲା ।

ମୁଁ ସୋଫା ଉପରେ ବସି ସିଗାରେଟ୍ ଫୁଙ୍କିବାରେ ଲାଗିଲି । ଦୁଇଟା ସିଗାରେଟ୍ ଶେଷ ହେବା ବେଳକୁ ସୁଲେଖା ଦରଜା ଖୋଲି ବାହାରକୁ ବାହାରିଲା । ନୂଆ ପୋଷାକରେ ନିଜକୁ ଆବୃତ କରି ଠିଆହେଲା ଆସି ମୋ ସାମ୍ନାରେ ।

ମୁଁ ଚାହିଁଲି । ବାଃ..... ଚମତ୍କାର । ସୁଲେଖା ଏ ପୋଷାକରେ ସଂପୂର୍ଣ୍ଣ ବଦଳି ଯାଇଛି । କେହି ତାକୁ ଚିହ୍ନିପାରିବେ ନାହିଁ । କହିଲି : ଚମତ୍କାର ମାନୁଛି ।

ସୁଲେଖା କିନ୍ତୁ ମୁହଁରେ ବିରକ୍ତି ଫୁଟାଇ କହିଲା : ଧେତ୍ । ପିଠିର ଚେନ୍‌ଟା ବଡ଼ ବାଜେ । ଏତେ ତଳେ ଲଗା ହୋଇଛି ଯେ ହାତ ପାଉନି । ହେଇ ଦେଖୁ ନାହାନ୍ତି । ସୁଲେଖା ମୋ ଆଡ଼େ ଖୋଲା ପିଠିଟା ବୁଲେଇ କହିଲା, ଟିକିଏ ଟାଣି ଦିଅନ୍ତୁ ନା ।

ମୁଁ ଉଠି ଠିଆ ହେଲି । ତା'ର ମସୃଣ ସଫେଦ ଖୋଲା ପିଠିଟା ଆଡ଼େ ମୁହୂର୍ତ୍ତେ ଚାହିଁଲି । ଅତି ସଂଯତ ଭାବରେ ଚେନ୍‌ଟା ଟାଣିବାକୁ ଯାଇ ଆଙ୍ଗୁଳିଟା ତା' ପିଠିରେ ଲାଗିଗଲା ।

ବୁଲି ଚାହିଁଲା ସୁଲେଖା । ମାୟାବିନୀ ଆଖିରେ ମୋ ଆଡ଼େ ଚାହିଁ ହସିଲା । ତା'ଚାହାଣି ଏଡ଼େଇ ଅନ୍ୟ ଆଡ଼କୁ ଚାହିଁଲି ମୁଁ ।

କିନ୍ତୁ ସେହି ମୁହୂର୍ତ୍ତରେ ସୁଲେଖା ବୁଲିପଡ଼ି ମୋ ଗଳାରେ ଦୁଇହାତ ଛନ୍ଦିଦେଲା ।

ମୁଁ ତାକୁ ଦୂରକୁ ଠେଲିଦେଇ ଆଲିଙ୍ଗନ ମୁକ୍ତ ହେଲି । କହିଲି : ସୁଲେଖା ଦେବୀ, କାର୍ଯ୍ୟ ସୂତ୍ରରେ ଆପଣଙ୍କ ସହିତ ମୋର ପରିଚୟ । ଏଗୁଡ଼ା କିନ୍ତୁ ଅକାର୍ଯ୍ୟ ।

: ଓଃ, ସୁଲେଖା ହସିଲା । କହିଲା, ମୋତେ ତା'ହେଲେ ଆପଣଙ୍କୁ ଭଲ ଲାଗିନି ?

: କାର୍ଯ୍ୟ ସହିତ ଭଲ ଲାଗିବା ନଲାଗିବାର କୌଣସି ସଂପର୍କ ନାହିଁ ସୁଲେଖା ଦେବୀ । ସେ ସବୁ ଭୁଲିଯାଅ ।

: ବେଶ୍, ଏଥର କୁହନ୍ତୁ ପରୀକ୍ଷାରେ ମୁଁ ପାସ୍ ନା ଫେଲ ?

: ପାସ୍ । କେବଳ ଆଖିରେ ଗୋଟାଏ ଗଗ୍ଲସର ଦରକାର । ଏଥର ଯାଅ ପୋଷାକଟା ବଦଳେଇ ଆସ ।

ସୁଲେଖା ପୁଣି ପୋଷାକ ବଦଳେଇବା ପାଇଁ ପୂର୍ବ ଘରକୁ ଚାଲିଗଲା ।

ମୁଁ ପୁଣି ଗୋଟାଏ ସିଗାରେଟ୍ ଲଗେଇଲି । ମନ ଭିତରେ ଚରମ ଉତ୍ତେଜନା ଦେଖା ଦେଇଥିଲା ।

: ରଜତବାବୁ ! ସୁଲେଖା ଭିତରୁ ଡାକିଲା । ଚେନ୍‌ଟା ଖୋଲି ପାରୁ ନାହିଁ । ଟିକିଏ ଖୋଲି ଦେଇ ଯିବେ ?

ସିଗାରେଟ୍‌ଟା ଆଷ୍ଟ୍ରେରେ ଗୁଞ୍ଜିଦେଲି । ବସି ରହିଲି ନୀରବରେ ।

: ରଜତବାବୁ....

ନା, ଅସମ୍ଭବ । ଏ ଡାକ ଅଗ୍ରାହ୍ୟ କରିବା ଭଳି ପୁରୁଷ ଏବେ ବୋଧହୁଏ ପୃଥିବୀରେ ଜନ୍ମ ହୋଇନି ।

କେବିନ୍‌ର ଦରଜା ଭିତରୁ ବନ୍ଦ କରି ଘରର ଆଲୋକ ଲିଭେଇ ଧୀରେ ଧୀରେ ଆଗେଇ ଗଲି ସୁଲେଖା ଥିବା ଘର ଆଡ଼କୁ...

ସେଦିନ ଘରକୁ ଫେରୁ ଫେରୁ ଅନେକ ରାତି ହୋଇ ଯାଇଥିଲା । ତଥାପି ରୀତା ବସିଥିଲା ମୋ ପ୍ରତୀକ୍ଷାରେ । ମୋତେ କବାଟ ଖୋଲି ଦେଲା ହସ ହସ ମୁହଁରେ ।

ଦୁହେଁ ଖାଇ ବସିଲୁ ।

ଖାଇବା ଟେବୁଲ୍‌ରେ ରୀତା କେତେ ଯେ କ'ଣ କହୁଥିଲା, ମୁଁ ସବୁ ଶୁଣି ବି କିଛି ଶୁଣିପାରୁ ନଥିଲି । ମୁଁ କେବଳ ଚିନ୍ତା କରୁଥିଲି ସୁଲେଖା କଥା । ମଝିରେ ମାତ୍ର ଆଉ ଗୋଟିଏ ଦିନ । ତା'ପରେ ମୋତେ ବାସ୍ତବ ଭାବରେ କାମକୁ ଓହ୍ଲେଇ ପଡ଼ିବାକୁ ହେବ ।

ରୀତା ଏକଥା ସେକଥା ପରେ କହିଲା : ଆଜି ବରେନ୍ ବାବୁ ଆସିଥିଲେ । ସେ ତମପାଇଁ ଅପେକ୍ଷା କରି ବସି ବସି ଏଇ ଅଧଘଣ୍ଟା ପୂର୍ବରୁ ଚାଲିଗଲେ ।

ବରେନ୍ ନାଁ ଶୁଣି ମୁଁ ଯେପରି ଚମକି ଉଠିଲି । କହିଲି, : ବରେନ୍ ? ବରେନ୍ ଆସିଥିଲା ? କାହିଁକି, ମୋ ପାଖରେ ତା'ର କ'ଣ ଏତେ କାମ ?

ରୀତା ଟିକିଏ ହସିଲା, କହିଲା : ସେ ତମକୁ କହିବାକୁ ଆସିଥିଲା ସେଇ ପୋଲିସ୍ ଚାକିରିଟା ନେବା ପାଇଁ । ତା' ବସ୍‌କୁ ସେ ବୁଝେଇ ସୁଝେଇ ରାଜି କରେଇଚି ।

: ପୋଲିସ୍ ଚାକିରି ? ମୁଁ ଚିତ୍କାର କରି କ'ଣ ଗୋଟାଏ କହିବାକୁ ଯାଉଥିଲି । କିନ୍ତୁ ହଠାତ୍ ରୀତାର ବିବର୍ଣ୍ଣ ମୁହଁ ଆଡ଼େ ଚାହିଁ ନୀରବ ହୋଇଗଲି । ଟିକିଏ ହସିବାକୁ ଚେଷ୍ଟା କରି ଧୀର ଭାବରେ କହିଲି, ଦେଖୁଚି ଶେଷରେ ମୋତେ ସେଇ ଚାକିରିଟା ନେବାକୁ ହେବ ।

: ସତ କହୁଚ ତମେ ! ସେ ଚାକିରିଟା ତମେ କରିବ ?

ରୀତା ମୁହଁର ଆଗ୍ରହ ମୁଁ ଭାଙ୍ଗି ପାରିଲି ନାହିଁ । ହସି ହସି କହିଲି, ତା'ଛଡ଼ା ତ ମୁଁ ଅନ୍ୟ କିଛି ବାଟ ଦେଖୁନାହିଁ ରୀତା ।

ଖିଆପିଆ ଶେଷରେ ରୀତା ସେଦିନ ମୋ ପାଖରେ ନିଶ୍ଚିନ୍ତରେ ଆଖି ବୁଜି ଶୋଇ ପଡ଼ିଥିଲା । ଅନେକ ଦିନ ପରେ ଆଜି ତାକୁ ଏତେ ନିଶ୍ଚିନ୍ତରେ ଶୋଇଥିବାର ଦେଖି ମୁଁ ବି ଟିକିଏ ସ୍ୱସ୍ତି ଅନୁଭବ କଲି ।

କିନ୍ତୁ ମୋ ଆଖିରେ ନିଦ କାହିଁ ? ଯେଉଁ ଦାୟିତ୍ୱ ମୁଁ ବହନ କରିଛି ଏବଂ ଦିନକ ପରେ ଯେଉଁ ଖଣ୍ଡାଧାରରେ ମୋତେ ବାଟ ଚାଲିବାକୁ ହେବ, ଟିକିଏ ଅସାବଧାନ ହେଲେ ହିଁ ଆଉ ଦୁନିଆରେ ମୁଣ୍ଡ ଟେକି ଚାଲି ପାରିବି ନାହିଁ ।

ସବିତା ଆଉ ସୁଲେଖା । ମଲ୍‌ଟିମିଲିଅନ୍‌ର ରାଜେନ୍ଦ୍ର ପ୍ରସାଦଙ୍କର ସ୍ତ୍ରୀ ଏବଂ କନ୍ୟା । କେହି କାହାକୁ ଊଣା ନୁହନ୍ତି । ଦୁହିଁଙ୍କର ଟଙ୍କା ଦରକାର ଏବଂ ସେ ଟଙ୍କା ସେମାନଙ୍କୁ ଆଦାୟ କରିଦେବି ମୁଁ । ଆଉ ମୋ ଭାଗ ? ଟଙ୍କାର ଅଙ୍କ କିଛି କମ୍ ନୁହେଁ । ଏତେ ଟଙ୍କା ଏକ ସମୟରେ ଉପାର୍ଜନ କରିବାକୁ ହେଲେ ରିସ୍‌କ ନେବାକୁ ହେବ । ହଁ ହଁ ରିସ୍‌କ । ନୋ ରିସ୍‌କ ନୋ ଗେନ୍ ।

ଅବଶେଷରେ ମୋତେ ରିସ୍‌କ ନେବାକୁ ହିଁ ହେଲା । ବହୁ ସାଧ ସାଧନା ପରେ ପୋଲିସ୍ ଆଖି ଏଡ଼େଇ, ଅନ୍ୟ କାହାରି ସଂଦେହର ଦୃଷ୍ଟି ଏଡ଼େଇ, ସୁଲେଖାକୁ ମୁଁ ପଠାଇ

ଦେଲି ଏଇ ନିରାପଦ ସ୍ଥାନକୁ । ଏଠାରୁ ଶହ ଶହ ମାଇଲ୍ ଦୂରକୁ, ଯେଉଁଠି ସହଜରେ କେହି ତା'ର ସନ୍ଧାନ ପାଇ ପାରିବେ ନାହିଁ ।

ମୁଁ ଫେରି ଆସିଲି ସହରକୁ । ଅଶେଷ କ୍ଳାନ୍ତି ଓ ଦୁର୍ଭାବନା ମୋ ମନଟାକୁ ଭାରାକ୍ରାନ୍ତ କରି ପକାଇଲା । ଆଖିରେ ନିଦ ଭରି ଆସୁଥିଲା । ଠିକ୍ ଭାବରେ ଗାଡ଼ି ଚଳେଇ ନେବା ବି ମୋ ପକ୍ଷରେ ଆଉ ସମ୍ଭବ ହେଉ ନଥିଲା । ଶେଷରେ ବାଧ ହୋଇ ମୁଁ ଗାଡ଼ି ଅଟକେଇଲି । ବର୍ତ୍ତମାନ ଘରକୁ ଫେରିବାର କଥା ନୁହେଁ । କାମ କିନ୍ତୁ ଆହୁରି ଅନେକ ବାକି । ଘଡ଼ିରେ କେଇଟା ବାଜିଚି ? ମାତ୍ର ଆଠଟା । ସୁଲେଖା ଏହା ଭିତରେ ଶହେ ମାଇଲ୍ ଆଗେଇ ଯାଇ ସାରିଥିବ । ସେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଯିବ ଆଉ କିଛିକ୍ଷଣ ପରେ । କିନ୍ତୁ ମୁଁ ? ମୋତେ ଯେ ଆଜି ରାଜେନ୍ଦ୍ର ପ୍ରସାଦଙ୍କୁ ଫୋନ୍ କରି ଘଟଣାଟା ଜଣାଇବାକୁ ହେବ ଏବଂ ଟଙ୍କା କଥାଟା ମଧ୍ୟ କହି ଦେବାକୁ ପଡ଼ିବ ।

ଗାଡ଼ି ମୁଁ ଅଟକେଇଲି ଗୋଟାଏ ବାର୍ ପାଖରେ । କିଛି ସମୟ ବିଶ୍ରାମ ଦରକାର ଏବଂ ଦେହଟାକୁ ତାଜା କରିବା ପାଇଁ ଶକ୍ତିଶାଳୀ ପାନୀୟର ମଧ୍ୟ ପ୍ରୟୋଜନ ।

ବାର୍‌ର ଗୋଟିଏ କୋଣକୁ ବସି ଅନ୍ଧକାରରେ ବିଶ୍ରାମ କଲି । ପାନୀୟ ଶେଷ କଲି । ଆଖି ଆଗରେ ଭାସି ଉଠୁଥିଲା ସୁଲେଖାର ମୁହଁ । ପାଖ ଦିଆଲ ଘଡ଼ିଟା ବାଜି ଉଠିଲା । ଆରେ, ଏଗାରଟା ବାଜିଗଲା ଯେ !

ମୁଁ ଉଠିଲି । ଆଉ ହେଳା କଲେ ଚଳିବ ନାହିଁ । ଫୋନ୍‌ଟା ତା'ହେଲେ କେଉଁଠୁ କରିବି ? ପବ୍‌ଲିକ୍ ବୁଥ୍‌ରୁ । ସେଥିପାଇଁ ହାଓଡ଼ା କିମ୍ବା ସିଆଲ୍‌ଦା ଷ୍ଟେସନ୍ ହିଁ ନିରାପଦ ।

ଗାଡ଼ି ଠିଆହେଲା ଯାଇ ସିଆଲ୍‌ଦା ଷ୍ଟେସନରେ । ମୁଁ ପବ୍ଲିକ ଟେଲିଫୋନ୍ ବୁଥ୍ ଭିତରେ ପଶି ଦରଜାଟା ବନ୍ଦ କରିଦେଲି । ଡାଏଲ୍ କଲି ରାଜେନ୍ଦ୍ର ପ୍ରସାଦଙ୍କ ନମ୍ବର ।

ସେପାଖରୁ ଫୋନ୍ ଧରିଲା ଜଣେ, ପଚାରିଲା : କାହାକୁ ଦରକାର ?

: ମିଷ୍ଟର ରାଜେନ୍ଦ୍ର ପ୍ରସାଦ । ଟିକେ ଫୋନ୍‌ଟା ତାଙ୍କୁ ଦେବେ । ତାଙ୍କ ଝିଅ ସମ୍ବନ୍ଧରେ ମୋର କେତେଟା କଥା କହିବାର ଅଛି ।

: ଆପଣଙ୍କ ନାଁ ?

: ନାଁ ଜାଣି ଲାଭ ନାହିଁ । ଯାହା କହୁଛି କରନ୍ତୁ ।

ଘରେ ଟେବୁଲ୍ ଉପରେ ରିସିଭର ରଖିବାର ଶବ୍ଦ । ଦୀର୍ଘ ନୀରବତା । ଟେଲିଫୋନ୍ ବୁଥ୍ ବନ୍ଦ ଘର ଭିତରେ ଠିଆହୋଇ ମୁଁ ଗୋଟିପଣ ଝାଳେଇ ଯାଇଥିଲି । ଦେହସାରା ଏକପ୍ରକାର କମ୍ପନ ସୃଷ୍ଟି ହୋଇଥିଲା । ମୁଁ ଚିନ୍ତା କରି ପାରୁ ନଥିଲି କଥାଟା କିପରି ଆରମ୍ଭ କରିବି । ହଠାତ୍ ଭାରି ଗଳାର ଏକ ଶବ୍ଦ ଶୁଣିଲି : ହଁ କୁହନ୍ତୁ ।

ହଠାତ୍ ମୁଁ କିଛି କହି ପାରିଲି ନାହିଁ । ମୁହୂର୍ତ୍ତକ ପରେ ଗଳାର ସ୍ୱର ଯଥା ସମ୍ଭବ କର୍କଶ କରି କହିଲି : ହଁ ଶୁଣନ୍ତୁ । ଆପଣଙ୍କ ଝିଅ ସୁଲେଖା ବର୍ତ୍ତମାନ ଆମ କବଳରେ । ତା' ଜୀବନର ମୂଲ୍ୟ ଆମ ହିସାବରେ ମାତ୍ର ପାଞ୍ଚ ଲକ୍ଷ ଟଙ୍କା । ଯଦି ଝିଅକୁ ଭଲ ପାଆନ୍ତି, ଫେରି ପାଇବାକୁ ଇଚ୍ଛା ଥାଏ, ତେବେ ଦୟାକରି ଆଜିଠାରୁ ଟଙ୍କା ଯୋଗାଡ଼ରେ ଲାଗି ଯାଆନ୍ତୁ । ଦଶ ଟଙ୍କାର ନୋଟ୍ ପାଞ୍ଚ ଲକ୍ଷ ଟଙ୍କାର ଦରକାର । ଡେରି କରିବେ ନାହିଁ । ହଁ ଆଉ ଗୋଟାଏ କଥା । ଏ ଖବର ଯେପରି ପୋଲିସ କାନକୁ ନଯାଏ, ତା' ହେଲେ ଝିଅକୁ ଆଉ ଜୀବିତାବସ୍ଥାରେ ଫେରି ପାଇବେ ନାହିଁ । ବୁଝିଲେ ?

: ବୁଝିଛି । ଟଙ୍କା ମୁଁ ଦେବାକୁ ରାଜି ଅଛି । କିନ୍ତୁ କିପରି, କେଉଁଠି ଟଙ୍କା ଦେବି, ସେକଥା ତ କହିଲେ ନାହିଁ ।

: କହିବି, ସବୁ କହିବି । କିନ୍ତୁ ଆଜି ନୁହେଁ, ସୋମବାର । ଟଙ୍କା ଯୋଗାଡ଼ କରିବାକୁ ଆପଣଙ୍କର କେତେ ଦିନ ସମୟ ଲାଗିବ ?

: ଦିନ ନୁହେଁ, ଘଣ୍ଟା । କାଲି ସକାଳେ ଚାହିଁଲେ ଟଙ୍କା ଦେଇ ପାରିବି ।

: କାଲି ତ ରବିବାର ।

: ମୁଁ ଜାଣେ । କିଛି ଅସୁବିଧା ହେବ ନାହିଁ ।

: ବେଶ୍, ସୋମବାର ମୁଁ ଫୋନ୍ କରି ସବୁ କଥା ଜଣେଇ ଦେବି । କିନ୍ତୁ ଖବରଦାର, ଘଟଣାଟା ଯେପରି ଆପଣଙ୍କ ଛଡ଼ା ଅନ୍ୟ କେହି ନଜାଣେ । ତା'ହେଲେ ଆପଣଙ୍କର ସର୍ବନାଶ ହୋଇଯିବ । ଏହା ପରେ ରିସିଭରଟା ରଖିଦେଲି ।

ବାପ୍‌ରେ ବାପ୍ । ମୁଁ ଗୋଟିପଣ ଝାଳରେ ଗାଧୋଇ ପଡ଼ିଥିଲି । ସର୍ବାଙ୍ଗ ମୋର ଥରୁଥିଲା । ଦରଜା ଖୋଲି ବାହାରକୁ ଆସି ମନେ ହେଲା, ମୁଁ ଯେପରି ହାଣ ମୁହଁରୁ ଫେରି ଆସିଲି ।

\+ + +

ସେଦିନ ସକାଳୁ ରୀଟା ମୋତେ ଡାକି ଉଠାଇଲା । ଅନେକ ରାତିରେ ଶୋଇଥିବାରୁ ଆଖିରୁ ନିଦ ଛାଡୁ ନଥିଲା । ରୀଟା କହିଲା : ତମର ଫୋନ୍ । ବରେନ୍ ବାବୁ ଡାକୁଛନ୍ତି ।

: କହିଦିଅ ପରେ । ମୁଁ ଭୀଷଣ କ୍ଳାନ୍ତ ।

: ନା ନା ଜରୁରୀ ଫୋନ୍ ।

: ଧେତ୍ ଜରୁରୀ । ମୁଁ ଉଠି ଯାଇ ରିସିଭରଟା କାନରେ ଦେଲି । ହ୍ୟାଲୋ, ରଜତ କହୁଚି । ମୋ ସାଙ୍ଗରେ କ'ଣ ଏତେ ଜରୁରୀ କଥା ?

: ଆରେ ଭାଇ ମସ୍ତବଡ଼ ଗୋଟାଏ ଶୁଭ ଖବର । ଦେଢ଼ ହଜାର ଟଙ୍କା ଦରମାର ଚାକିରିଟା ତମର ଠିକ୍ ହେଇ ଯାଇଛି । ଖାଲି ଚାକିରି ହେଇ ଯାଉନି ଭାଇ, ତମକୁ ଭଲ ଲାଗିଲା ଭଳି ଗୋଟାଏ ମସ୍ତବଡ଼ କାମ ତମ ପାଇଁ ରଖା ହୋଇଛି । ଏଇ ମୁହୂର୍ତ୍ତରେ ତମେ ହେଡ଼କ୍ୱାର୍ଟରକୁ ଚାଲି ଆସ । ମୁହୂର୍ତ୍ତେ ବି ଡେରି କର ନାହିଁ ।

: ଏଇ ମୁହୂର୍ତ୍ତରେ ମାନେ ? ଆଜି ପରା ରବିବାର ।

: ଆରେ କାମର ପୁଣି ରବି ସୋମବାର କ'ଣ ? ବଡ଼ ସାହେବଙ୍କୁ ଟିକିଏ ଆଗରୁ ଫୋନ୍ କରିଥିଲି । ତୁମକୁ ଖବର ପଠାଇବାକୁ ସେଇ ନିଜେ କହିଲେ । ତମେ ଆସୁ ଆସୁ ସେ ବି ଆସିଯିବେ । ତା'ପରେ ତିନିଜଣ ବସି ସେଇ ଜରୁରୀ କାମ ସମ୍ବନ୍ଧରେ ପ୍ରାଥମିକ ଆଲୋଚନା ସୁରୁ କରିବା ।

: ଆଶ୍ଚର୍ଯ୍ୟ । କ'ଣ ଏମିତି କାମ ଯେ ଖାଲି ଜରୁରୀ ଜରୁରୀ ହେଉଛ । ତେବେ ମୋତେ ଅନ୍ତତଃ ଟିକିଏ ଇଙ୍ଗିତ ନଦେଲେ ମୁଁ ବୁଝିବି କିପିରି ?

: ଆରେ ଖବରଟା ସାଂଘାତିକ । କୋଟିପତି ରାଜେନ୍ଦ୍ର ପ୍ରସାଦଙ୍କର ଝିଅ ଗୁଣ୍ଡାମାନଙ୍କ କବଳରେ ପଡ଼ିଛି । ଏଇଟା କ'ଣ ଗୋଟାଏ ଜରୁରୀ ଖବର ନୁହେଁ ରଜତ ! ବଡ଼ ସାହେବଙ୍କର ଇଛା, ଏ କେସ୍‌ଟା ତୁମରି ହାତରେ ଛାଡ଼ିଦେବେ । ଖବର ସଂଗ୍ରହଠାରୁ ଆରମ୍ଭ କରି ରିପୋର୍ଟ

ତିଆରି ପର୍ଯ୍ୟନ୍ତ ସବୁ ତମେ କରିବ । ତମଛଡ଼ା ଅନ୍ୟ କେହି ଏ କାମ ପାରିବେ ନାହିଁ ବୋଲି ବଡ଼ ସାହେବଙ୍କର ଧାରଣା । ତେଣୁ କାଳ ବିଳମ୍ବ ନକରି ଶୀଘ୍ର ହେଡ଼କ୍ୱାର୍ଟରକୁ ଚାଲି ଆସ ।

ବରେନ୍ କଥା ଶୁଣି ମୁଣ୍ଡଟା ମୋର ହଠାତ୍ ଝିମ୍ ଝିମ୍ ହୋଇ ଉଠିଲା । ହାତ ଗୋଡ଼ ଥରିବାକୁ ଲାଗିଲା । ଗଳା ଶୁଖିଗଲା । ତଥାପି ମୁଁ ଶକ୍ତ ହାତରେ ରିସିଭରଟା ଧରି ରଖିଥିଲି । ଥରିଲା କଣ୍ଠରେ କହିଲି : କିନ୍ତୁ ବରେନ୍, ମୁଁ ତମକୁ ବାରଣ କରିଥିଲି ନା ପୋଲିସ୍ ଚାକିରି...

: ନା ରଜତ, ତମର ଓଜର ଆପତ୍ତି କିଛି ମୁଁ ଶୁଣିବି ନାହିଁ । ତୁମେ ବୁଝି ପାରୁନା, ସୌଭାଗ୍ୟଲକ୍ଷ୍ମୀ ତମ ହାତ ମୁଠାରେ । ତା'ଛଡ଼ା କାମଟା ତମର ଉପଯୋଗୀ । ତମ ରିପୋର୍ଟ କାଗଜରେ ପ୍ରକାଶିତ ହେଲେ ଧୀରେ ଧୀରେ ତମର ହୃତ ଗୌରବ ଫେରି ପାଇବ । ପୁଣି ସମସ୍ତଙ୍କର ମୁହଁରେ ତମ ନାଁ ଶୁଣାଯିବ । ଏ ସୁଯୋଗ ତମେ ଛାଡ଼ ନାହିଁ । ରଜତ, ପ୍ଲିଜ୍ ।

ମୋ କପାଳଟା ସେତେବେଳକୁ ଝାଳେଇ ଉଠିଥିଲା । ମନେ ହେଉଥିଲା କ୍ରମଶଃ ମୁଁ ବରଫ ପାଲଟି ଯାଉଛି । ଆଡ଼ ଆଖିରେ ରୀତା ଆଡ଼କୁ ଚାହିଁଲି । କବାଟରେ ଭରା ଦେଇ ଠିଆ ହୋଇ ସେ ମୋ ଆଡ଼କୁ ଚାହିଁଚି । ଆଖିରେ ତା'ର ଉଦ୍‌ବେଗ । ଏପରି ଅବସ୍ଥାରେ ମୁଁ କ'ଣ ଯେ ଉତ୍ତର ଦେବି ବରେନ୍‌କୁ...

ଏହା ଭିତରେ ବାରଟା ଘଣ୍ଟା ବି କଟି ନାହିଁ । ଏତେ ଶୀଘ୍ର ପୋଲିସ୍ ଜାଣି ପାରିଲା ଘଟଣାଟା । ଅବଶ୍ୟ ଚାକିରିଟା କଲେ ହୁଏତ ଅସୁବିଧା ଠାରୁ ସୁବିଧା ମୋର ବେଶି ହେବ । ପୋଲିସ୍ ତରଫରୁ ଏ ସଂକ୍ରାନ୍ତରେ କ'ଣ କାର୍ଯ୍ୟାନୁଷ୍ଠାନ ହେଉଛି ନ ହେଉଛି ସବୁ ମୁଁ ଜାଣି ପାରିବି । ଅନେକ ଦୂର ମୁଁ ଆଗେଇ ଯାଇଛି । ଏହାପରେ ଫେରିବାର ଆଉ ଉପାୟ ନାହିଁ, ଫେରିବା ମଧ୍ୟ ସମ୍ଭବ ନୁହେଁ ।

: କ'ଣ ବନ୍ଧୁ । ଚୁପ୍ ରହିଗଲ ଯେ ! ବରେନ୍ ବୋଧହୁଏ ନୀରବତା ସହ୍ୟ କରି ପାରୁ ନଥିଲେ ।

ମୁଁ ଧୀରେ, ମନକୁ ଦୃଢ଼ କରି କହିଲି : ଯାଉଛି ବନ୍ଧୁ, ଟିକେ ମୁହଁ ହାତ ଧୋଇ ସଙ୍ଗେ ସଙ୍ଗେ ଯାଉଛି ।

: ବଞ୍ଚେଇଲ ଭାଇ । ମୋତେ ଯା ଦୁଶ୍ଚିନ୍ତାରେ ପକାଇ ଦେଇଥିଲ ନା ! ଶୀଘ୍ର ଚାଲି ଆସ । ମୁଁ ତମ ପାଇଁ ଅପେକ୍ଷା କରୁଛି ।

ଫୋନ୍‌ଟା ରଖୁ ରଖୁ ରୀତା ମୋ ପାଖକୁ ଆଗେଇ ଆସିଲା : କ'ଣ ଏତେ ଜରୁରୀ ଖବର ?

: କ'ଣ କେଜାଣି । ଫୋନ୍‌ରେ ଖୋଲାଖୋଲି କିଛି କହିଲା ନାହିଁ । ମତେ ଏଇକ୍ଷିଣା ବଡ଼ ସାହେବଙ୍କ ଅଫିସ୍‌କୁ ଯିବାକୁ ଡାକୁଛି । ଚାକିରିଟା ଭାବୁଛି ନେଇନେବି । ଦରମା ପନ୍ଦରଶହ ଟଙ୍କା । ଏ ସୁଯୋଗ ଛାଡ଼ିବା ଉଚିତ ନୁହେଁ ।

: ସତ କହୁଛ ! ରୀତା ମୁହଁରେ ହସ ଫୁଟି ଉଠିଲା । ସେ ଦୁଇ ହାତରେ ମୋତେ ଜାବୁଡ଼ି ଧରିଲା । ଆଖିରୁ ତା'ର ଝରି ପଡ଼ିଲା ଆନନ୍ଦାଶ୍ରୁ ।

ଥରିଲା ପାଦରେ ଗୋଡ଼ ଚିପି ଚିପି ମୁଁ ଯାଇ ପହଞ୍ଚିଲି ହେଡ଼କ୍ୱାର୍ଟର୍‌ରେ । ବରେନ୍ ମୋତେ ଦେଖି କୁଣ୍ଢେଇ ପକେଇଲା । କହିଲା : ଯା'ହେଉ, ସୁବୁଦ୍ଧି ହୋଇଚି ଏତେ ଦିନକେ । ବଡ଼ ସାହେବ ବର୍ତ୍ତମାନ ଡକେଇ ପଠେଇବେ ।

ମୁଁ ଖୁବ୍ ସାବଧାନରେ ବରେନ୍ ସାମ୍‌ନାରେ ଚେଆର୍‌ରେ ବସିଲି । ଭିତରଟା ମୋର ଗୋଟିପଣ ଥରୁଥିଲା । ମୁହଁରେ ସେହି ଭୟାଳୁ ଭାବର ପ୍ରତିଫଳନ କାଳେ ଧରା ପଡ଼ିବକି ଭାବି ମୁଁ ଗୋଟାଏ ସିଗାରେଟ୍ ଲଗେଇଲି । ଧୂମାୟିତ ପରିବେଶ ଭିତରେ ମୁହଁଟାକୁ ଲୁଚେଇବାକୁ ଚେଷ୍ଟା କରୁଥିଲି । କିନ୍ତୁ ନୀରବରେ ତ ବସି ରହିବା ଉଚିତ ନୁହେଁ । ଗଳାକୁ ଯଥା ସମ୍ଭବ ସ୍ୱାଭାବିକ କରିବାକୁ ଚେଷ୍ଟା କରି କହିଲି : ଆଚ୍ଛା, ତମେ ଫୋନ୍‌ରେ ମୋତେ ଯାହା କଥା କହୁଥିଲ, ମାନେ କୋଟିପତି ରାଜେନ୍ଦ୍ର ପ୍ରସାଦଙ୍କ ଝିଅ । କ'ଣ ହୋଇଛି ତା'ର ?

ବରେନ୍ ଉତ୍ତରରେ କ'ଣ କହିବାକୁ ଯାଉଥିଲା, କିନ୍ତୁ ପର୍ଦ୍ଦାଠେଲି ଗୋଟିଏ ଝିଅ ଆସି କହିଲା : ମିଃ ତ୍ରିବେଦୀ ଆପଣଙ୍କୁ ଡାକୁଛନ୍ତି ।

ବରେନ୍ ଉଠି ଠିଆ ହେଲା । କହିଲା : ଚାଲ, ସବୁ କଥା ସେଇଠି ଜାଣି ପାରିବ ।

ଆମେ ଆଗେଇଲୁ । ଯାଉ ଯାଉ ବରେନ୍ ମୋତେ କହିଲା, : ଖୁବ୍ ସାବଧାନ । ବଡ଼ ସାହେବ୍‌ଙ୍କ ଆଗରେ ଏଣୁ ତେଣୁ ଯେପରି ନ କୁହ । ଭାରି ଭଲ ଲୋକ ସେ । ତମ ସମ୍ବନ୍ଧରେ ତାଙ୍କର ଖୁବ୍ ଉଚ୍ଚ ଧାରଣା । ତମ ସମ୍ବନ୍ଧରେ ଟିକି ନିଖି କରି ମୋଠାରୁ ଅନେକ କଥା ସେ ଜାଣି ନେଉଛନ୍ତି । ସେ ତୁମର ସତ୍ ସାହସର ଖୁବ୍ ପ୍ରଶଂସା କରୁଥିଲେ । ତେଣୁ ବଂଧୁ, ଟିକିଏ ବୁଝି ବିଚାରି...

ଦରଜା ଖୋଲି ଆମେ ତ୍ରିବେଦୀଙ୍କ ଘରେ ପଶିଲୁ ।

ଶକ୍ତ-ସମର୍ଥ ଚେହେରା । ମୁଣ୍ଡର ବାଳ ଅଧେ ପାଚିଲା । ବୟସ ଅଣଚାଶ ପଚାଶ ହେବ । ଫାଇଲ୍ ଉପରୁ ମୁଣ୍ଡ ଉଠେଇ ଆମ ଆଡ଼କୁ ଚାହିଁଲେ । ତାଙ୍କ ଦୃଷ୍ଟି ମୋ ପାଦଠାରୁ ମୁହଁଯାଏ ବୁଲିଗଲା ।

ବରେନ୍ ପରିଚୟ କରାଇ ଦେଲା : ରଜତ ମିଶ୍ର ସାର୍ । ଆଜିଠାରୁ ସେ ଆମ ଲୋକ ।

ମିଷ୍ଟର ତ୍ରିବେଦୀ ହସିଲେ : ଆପଣଙ୍କ ପ୍ରଶଂସାରେ ଆପଣଙ୍କ ବନ୍ଧୁଟି ଯେ ଶତମୁଖ ମିଷ୍ଟର ମିଶ୍ର । ଆଜି ପର୍ଯ୍ୟନ୍ତ କେବଳ ଶୁଣିଥିଲି । ଆଜି କିନ୍ତୁ ରକ୍ତ ମାଂସର ଶରୀରଟି ଦେଖିବାର ସୁଯୋଗ ପାଇଲି ।

କରମର୍ଦ୍ଦନ ପର୍ବ ଶେଷ ହେଲା ।

ଆମେ ସମସ୍ତେ ବସିଲୁ ।

ମିଷ୍ଟର ତ୍ରିବେଦୀ ବରେନ୍ ଆଡ଼େ ଚାହିଁ କହିଲେ : ଏଥର ଆରମ୍ଭ କର । ଫୋନ୍‌ରେ ତମେ ଯେଉଁ ସମ୍ବାଦ ଦେଲ, ସେଥିରୁ ସ୍ପଷ୍ଟ କିଛି ଧାରଣା ହେଲା ନାହିଁ । ଏଥର ଟିକି ନିଖି ଘଟଣାଟା କୁହ ତ ? ତମ ବଂଧୁ ବି ଶୁଣିବେ ମୁଁ ବି ଶୁଣିବି ।

ବରେନ୍ ଟିକିଏ ସଜାଡ଼ି ହୋଇ ବସିଲା । କହିଲା : ମାନେ, ମୁଁ ଅନ୍ତତଃ ଯେତେଟା ବୁଝିଛି, ଘଟଣାଟା ଟିକିଏ ଗୋଲମାଲିଆ ମନେ ହେଉଛି ସାର୍ । ମୋର ଯାହା ଧାରଣା ବୋଧହୁଏ ରାଜେନ୍ଦ୍ର ପ୍ରସାଦଙ୍କ ଝିଅଟି ଗୁଣ୍ଡାମାନଙ୍କ କବଳରେ ପଡ଼ିଛି । ପରିଷ୍କାର ବୁଝାଯାଉଛି କେସ୍‌ଟା ବ୍ଲାକ୍‌ମେଲିଂ । ଗୁଣ୍ଡାମାନେ ରାଜେନ୍ଦ୍ର ପ୍ରସାଦଙ୍କଠାରୁ କିଛି ଟଙ୍କା ଆଦାୟ କରିବାକୁ ଚାହାନ୍ତି । ଆଜି ବଡ଼ି ସକାଳୁ ମୁଁ ଦୁଇ ଦୁଇଟା ଫୋନ୍ ପାଇଲି ସାର୍ । ଗୋଟିଏ ଫୋନ୍ ପାଇଲି କାନାଡ଼ା ବ୍ୟାଙ୍କର ମ୍ୟାନେଜରଙ୍କ ଠାରୁ ।

ବରେନ୍ ଟିକିଏ ଅଟକିଯାଇ ମୋ ଆଡ଼କୁ ଚାହିଁ କହିଲା : ତମକୁ ଟିକିଏ ସୂତ୍ରଟା ଧରେଇ ନଦେଲେ ତମେ ବୁଝି ପାରିବ ନାହିଁ । ଏହି ସହରର ସବୁ ଛୋଟ ବଡ଼ ବ୍ୟାଙ୍କମାନଙ୍କ ସହିତ ଆମର ଗୋପନ ବନ୍ଦୋବସ୍ତ ଅଛି । ଯଦି କୌଣସି ଗ୍ରାହକ ହଠାତ୍ ମୋଟା ଅଙ୍କର ଟଙ୍କା ଉଠାଇବାକୁ ଚାହେ ଏବଂ ଏହା ପରିମାଣର ଟଙ୍କା ବ୍ୟାଙ୍କ ଆଖିରେ ଅସ୍ୱାଭାବିକ ମନେ ହୁଏ, ତେବେ ସେମାନେ ତତ୍‌କ୍ଷଣାତ୍ ଆମକୁ ଖବର ଦେବେ । ଏହିପରି ଖବର ଉପରେ ଭିତ୍ତିକରି ଆମେ ସହରରେ ବହୁ ବ୍ଲାକ୍‌ମେଲର୍‌ମାନଙ୍କୁ ଧରିବାକୁ ସକ୍ଷମ ହୋଇ ପାରୁଛୁ ।

ମୁଁ ରୁମାଲ ବାହାରକରି କପାଳରୁ ଝାଳ ପୋଛିଲି । ଦେହହାତ ମୋର ବରଫ ପାଲଟି ଯିବାପରି ମନେ ହେଉଥିଲା । ବରେନ୍ ମୁହଁରୁ ଏଇ ମୁହୂର୍ତ୍ତରେ ଯାହା ଶୁଣିଲି, ଏପରି ଯେ ପୋଲିସ୍ ପକ୍ଷରୁ ଗୋଟାଏ ବ୍ୟବସ୍ଥା ଥାଇପାରେ, ସେ କଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ।

: ଭଟ୍ଟଶାସ୍ତ୍ରୀ କହିଲେ, ପୁଣି ଆରମ୍ଭ କଲା ବରେନ୍ । ଆଜି ସକାଳେ ରାଜେନ୍ଦ୍ର ପ୍ରସାଦ ତାଙ୍କୁ ଫୋନ୍ କରି କହିଲେ, ତାଙ୍କର ଆଜି ପାଞ୍ଚଲକ୍ଷ ଟଙ୍କା ବିଶେଷ ଦରକାର । ଟଙ୍କାଗୁଡ଼ିକ ଦଶଟଙ୍କା ନୋଟ୍‌ରେ ହେବା ଆବଶ୍ୟକ । ଆଜି ରବିବାର ଥିବାରୁ ଭଟ୍ଟଶାସ୍ତ୍ରୀ ରାଜେନ୍ଦ୍ର ପ୍ରସାଦଙ୍କୁ ଦିନଟାଏ ଅପେକ୍ଷା କରିବାକୁ କହିଥିଲେ । କିନ୍ତୁ ସେ ଶୁଣିଲେନି । ଯେପରି ହେଉ ଟଙ୍କା ତାଙ୍କର ଲୋଡ଼ା । ବିଚରା ଭଟ୍ଟଶାସ୍ତ୍ରୀ ବାଧ୍ୟ ହେଲେ ହଁ ଭରିବା ପାଇଁ । କାରଣ ରାଜେନ୍ଦ୍ର ପ୍ରସାଦଙ୍କ ପରି ଗ୍ରାହକ ତାଙ୍କ ହାତଛଡ଼ା ହୋଇଗଲେ ବ୍ୟାଙ୍କ୍ ଅଚଳ ହୋଇଯିବ ।

ଡିଆସିଲି ଜାଳି ସିଗାରେଟ୍ ଲଗେଇଲେ ତ୍ରିବେଦୀ । କହିଲେ, : ହୁଏତ କୌଣସି ବ୍ୟବସାୟ ପାଇଁ ହଠାତ୍ ତାଙ୍କର ଟଙ୍କା ଆବଶ୍ୟକ ପଡ଼ିଛି । ସେଥିପାଇଁ ସେ ତାଗଦା ଦେଇଛନ୍ତି ।

: ଅସମ୍ଭବ । ତା'ହେଲେ ସେ ଏତେ ବ୍ୟସ୍ତ ହୁଅନ୍ତେ କାହିଁକି ? ତା'ଛଡ଼ା ଏତେ ଦଶଟଙ୍କା ନୋଟ୍‌ର ବା କ'ଣ ଦରକାର । ଭାବିଥିଲି ରାଜେନ୍ଦ୍ର ପ୍ରସାଦଙ୍କୁ ଏ ସମ୍ବନ୍ଧରେ ପଚାରିବି । ପୁଣି ଚିନ୍ତା କରି ଦେଖିଲି କିଛି ଲାଭ ନାହିଁ । ହୁଏତ ଗୁଣ୍ଡାମାନେ ତାଙ୍କୁ ଧମକ ଦେଇ କହିଥିବେ... ଏକଥା ଯେପରି ପୋଲିସ୍ କାନକୁ ନଯାଏ । ଯାଇଛି ତ ଝିଅକୁ ଜୀବିତାବସ୍ଥାରେ ଫେରି ପାଇବ ନାହିଁ । ଏ କ୍ଷେତ୍ରରେ ଆମେ ଆଗୁଆ ହୋଇ କିଛି କରିବା ସମ୍ଭବ ନୁହେଁ । ଯଦି ରାଜେନ୍ଦ୍ର ପ୍ରସାଦଙ୍କ ଝିଅ ଗୁଣ୍ଡାମାନଙ୍କ ହାତରେ ନିହତ ହୁଏ, ତା'ହେଲେ ଦୋଷ ହେବ ଆମର ।

ମୁଁ ଆଉ ଚୁପ୍ ହୋଇ ବସି ରହିବା ଉଚିତ ନୁହେଁ । ଅନ୍ତତଃ ଆଲୋଚନାରେ ସାମାନ୍ୟ ଭାଗ ନ ନେଲେ ଅସୁନ୍ଦର ହେବ । କହିଲି, : କିନ୍ତୁ ବରେନ୍, ଏ ତ ସବୁ ତୁମର ଅନୁମାନ । ରାଜେନ୍ଦ୍ର ପ୍ରସାଦଙ୍କ ଝିଅ ଯେ ନିରୁଦ୍ଦେଶ ହେଇଚି, ତା'ର କିଛି ପ୍ରମାଣ ତମେ ପାଇଚ ?

: ନିଶ୍ଚୟ । ତା' ନହେଲେ ମୋର ଏତେ ମୁଣ୍ଡ ବଥାଉଚି କାହିଁକି ? ବ୍ରିଜଲାଲ ରାଜେନ୍ଦ୍ର ପ୍ରସାଦଙ୍କର ଡ୍ରାଇଭର । ସେ ଆଗ ଆମ ଏଠାରେ କାମ କରୁଥିଲା । ରାଜେନ୍ଦ୍ର ପ୍ରସାଦ ଯେତେବେଳେ ଏ ସହରରେ ଆସି ବସବାସ କଲେ, ଜଣେ ବିଶ୍ୱାସୀ ଲୋକ ପାଇଁ ଆମକୁ ଆବେଦନ କଲେ । ବ୍ରିଜଲାଲ ଅନେକ ଦିନରୁ ଆମ ଏଠାରୁ କାମ ଛାଡ଼ିବ ଛାଡ଼ିବ ହେଉଥିଲା । ମୁଁ ବ୍ରିଜଲାଲକୁ ପଠାଇଲି । ରାଜେନ୍ଦ୍ର ପ୍ରସାଦ ଦେଖି ଚାହିଁ ପସନ୍ଦ କଲେ । ସେଇଦିନ ଠାରୁ

ବ୍ରିଜଲାଲ ସେଠାରେ କାମ କରୁଚି । ଆଜି ସକାଳେ ବ୍ୟାଙ୍କ୍ ମ୍ୟାନେଜର ଭଟ୍ଟଶାସ୍ତ୍ରୀଙ୍କ ଠାରୁ ଫୋନ୍ ପାଇବା ପରେ ବ୍ରିଜଲାଲକୁ ଫୋନ୍ କରିଥିଲି । ସେ କହିଲା, ରାଜେନ୍ଦ୍ର ପ୍ରସାଦଙ୍କ ଝିଅ କାଲିଠାରୁ ସିନେମା ଦେଖିବାକୁ ଯାଇ ଏଯାଏ ଫେରି ନାହିଁ । ସୁଲେଖା ନିଜର ଗାଡ଼ି ସହିତ କୁଆଡ଼େ ଅଦୃଶ୍ୟ ହୋଇଛି ।

: ହୁଁ । ରାଜେନ୍ଦ୍ର ପ୍ରସାଦ ଆମକୁ ତା'ହେଲେ ଏତେବେଳଯାଏ କିଛି ଜଣାଇ ନାହାନ୍ତି ? ମିଃ ତ୍ରିବେଦୀ ଗମ୍ଭୀର କଣ୍ଠରେ ପ୍ରଶ୍ନ କଲେ ।

: ନା, ତେବେ ଜଣେ ପୋଲିସ୍‌କୁ ସାଦା ପୋଷାକରେ କାନାଡ଼ା ବ୍ୟାଙ୍କ ସାମ୍‌ନାରେ ପହରା ଦେବାକୁ ପଠାଇ ଦେଇଛି । ରାଜେନ୍ଦ୍ର ପ୍ରସାଦ ବ୍ୟାଙ୍କରୁ ଆସିବା ମାତ୍ରକେ ସେ ମୋତେ ଖବର ଦେବ ।

: ଆଚ୍ଛା ଝିଅଟି....ମାନେ ମୁଁ କ'ଣ କହୁଥିଲି କି ଝିଅଟି ତା' ପ୍ରେମିକ ସହିତ ବାପାର ଅଜାଣତରେ କୁଆଡ଼େ ଚାଲିଯାଇ ବାହାଘାହା ହୋଇ ପଡ଼ି ନାହିଁ ତ ?

: ତା' ଯଦି ହୋଇ ଥାଆନ୍ତା, ତେବେ ରାଜେନ୍ଦ୍ର ପ୍ରସାଦଙ୍କର ପାଞ୍ଚ ଲକ୍ଷ ଟଙ୍କାର ଦରକାର କ'ଣ ଥିଲା ?

: ହୁଁ, ତା'ହେଲେ କେସ୍‌ଟା ଦେଖୁଛି ପ୍ରକୃତରେ ଗୋଳମାଳିଆ । କୋଟିପତିର ଝିଅ.... କଥାଟା ଫୁଟ୍‌କି ମାରି ଉଡ଼େଇ ଦେଇ ହେବ ନାହିଁ । କାଗଜବାଲାମାନେ ତ ଆମର ତ୍ରୁଟି ବିଚ୍ୟୁତି ଧରିବା ପାଇଁ ଅନେଇ ବସିଛନ୍ତି । ଖାଲି ଖବରଟା କୌଣସି ସୂତ୍ରରୁ ପାଇଗଲେ ତ ଆଉ ତାଙ୍କୁ ସମ୍ଭାଳେ କିଏ ?

ତ୍ରିବେଦୀ ଉଠିଲେ, କପାଳରେ ତାଙ୍କର ଚିନ୍ତାର ରେଖା ଫୁଟି ଉଠିଥିଲା । ଝରକା ପାଖରେ ଠିଆ ହୋଇ ବାହାରକୁ ଚାହିଁଲେ । ତା'ପରେ ମୁହଁ ବୁଲାଇ କହିଲେ : ରଜତ.... ତମ ନାଁ ଧରି ଡାକୁଛି କିଛି ମନେ କରିବ ନାହିଁ । ତମର କାମ ହେବ ଏଇ ଖବର କାଗଜବାଲାଙ୍କୁ ଅଟକେଇବା । ଖବର ସେମାନେ ଛାପନ୍ତୁ କିଛି ଆପତ୍ତି ନାହିଁ । କିନ୍ତୁ ପ୍ରକୃତ ଘଟଣା ଆଡ଼କୁ ନ ଯାଇ ସବୁବେଳେ ଆମରି ମୁଣ୍ଡ ଉପରେ ଦୋଷ ନଦି, ଯା ତା' ଭାଷାରେ ଆମକୁ ନିନ୍ଦିତ କରିବାଟା ମୁଁ ମୋଟେ ସହ୍ୟ କରିପାରେ ନାହିଁ । ତେଣୁ ଏଇ ଘଟଣାର ମୂଳ ତୁମକୁ ଆବିଷ୍କାର କରିବାକୁ ହେବ । ରାଜେନ୍ଦ୍ର ପ୍ରସାଦଙ୍କର ପାଞ୍ଚ ଲକ୍ଷ ଟଙ୍କା ମୂଳରେ ଯେଉଁ ଗୋପନ ସତ୍ୟ ଲୁଚି ରହିଛି, ତାକୁ ଉଦ୍‌ଘାଟନ କରିବାର ଦାୟିତ୍ୱ ବରେନ୍‌ର ଯେତିକି, ତମର ବି ସେତିକି । ଆମ ତରଫରୁ ସବୁ ରକମ ସାହାଯ୍ୟ ତୁମେ ପାଇବ ।

ମୁଁ ନୀରବରେ ମୁଣ୍ଡ ହଲେଇ ସମ୍ମତି ଜଣେଇଲି ।

ତ୍ରିବେଦୀ ଝରକା ପାଖରୁ ଫେରି ଆସି ଚେଆର୍‌ରେ ବସୁ ବସୁ କହିଲେ : ହଁ, ଆଉ ଗୋଟାଏ କଥା ମନେ ରଖିବ । ଏ ସମ୍ବନ୍ଧରେ ଗୋପନରେ ଅନୁସନ୍ଧାନ କରିବା ଛଡ଼ା ପ୍ରକାଶ୍ୟରେ କିଛି କରିବାକୁ ଯିବ ନାହିଁ । ଯେତେବେଳଯାଏ ରାଜେନ୍ଦ୍ର ପ୍ରସାଦ ଆମକୁ ଖବରଟା ନ ଦେଇଛନ୍ତି ସେତେବେଳଯାଏ ଆମେ ଯାହା କରିବା ସବୁ ଗୋପନରେ କରିବା । ଅବଶ୍ୟ ଏ ସମ୍ବନ୍ଧରେ ମୁଁ କମିସନର ସାହେବଙ୍କ ସହିତ ଆଲୋଚନା କରିବି । ବରେନ୍, ତୁମେ ଘଟଣାଟା ଗୋଏନ୍ଦା ବିଭାଗକୁ ଜଣାଇ ରଖ ।

: ଜଣେଇ ଦେବି ସାର୍ ।

: ତା'ହେଲେ ଆଜିର ଆଲୋଚନା ଏଇ ପର୍ଯ୍ୟନ୍ତ ହେଲା । ରଜତ ବର୍ତ୍ତମାନ ତୁମର କରିବାର କିଛି ନାହିଁ । ତୁମେ ଘରକୁ ଫେରିଯାଇ ପାର । ଦୁଇ ତିନିଘଣ୍ଟା ପରେ ପରେ

ବରେନ୍ ସହିତ ଯୋଗାଯୋଗ କର । ଯଦି ତମେ କରିବା ଭଳି କିଛି କାମ ପଡ଼େ, ତେବେ ବରେନ୍ ତୁମକୁ କହିବ ।

ଚେଆର ଠେଲି ଉଠିଲି । ଟିକିଏ ଇତସ୍ତତଃ କରି କହିଲି : ଆଚ୍ଛା ସାର୍, ଗୋଟାଏ କାମ କଲେ କେମିତି ହୁଅନ୍ତା । ଆମେ ଯଦି ଏତିକିବେଳୁ ରାଜେନ୍ଦ୍ର ପ୍ରସାଦଙ୍କ ଉପରେ ନଜର ରଖନ୍ତେ, ତା'ହେଲେ କେଉଁଠି କାହାକୁ ଟଙ୍କା ଦେବାକୁ ଯାଉଛନ୍ତି....

: ନା ନା ରଜତ । ସେପରି କିଛି କରିବାକୁ ଯିବା ଠିକ୍ ହେବ ନାହିଁ । ଯଦି ସେ ଆମକୁ ଖବର ଦେଇ ଥାଆନ୍ତେ, ତା'ହେଲେ ଆମେ କାର୍ଯ୍ୟ କ୍ଷେତ୍ରରେ ଆଗେଇ ଯାଇପାରି ଥାଆନ୍ତେ । ଧର ଆମେ ତାଙ୍କୁ ଅନୁସରଣ କଲେ, ଗୁଣ୍ଡାଦଳ ଆମକୁ ଦେଖି ପାରିଲେ, ତା'ହେଲେ ତମେ ଭାବିଛ ଗୁଣ୍ଡାଦଳ ଝିଅଟିକୁ ଜୀବନ୍ତ ଅବସ୍ଥାରେ ଫେରାଇ ଦେବେ ? ମୋଟେ ନୁହେଁ । ଏପରି ଅବସ୍ଥାରେ ଆମେ ଦୋଷରେ ଭାଗୀ ହେବା । ନା ଏତେ ବଡ଼ ଝୁଙ୍କି ଆମେ ନେବା ନାହିଁ । ରାଜେନ୍ଦ୍ର ପ୍ରସାଦଙ୍କ ଠାରୁ ସାହାଯ୍ୟର ଆବେଦନ ଆସୁ, ତା'ପରେ ଭାବିଚିନ୍ତି ଆମେ ଗୋଟାଏ କିଛି କରିବା ।

ମୁଁ ଗୋଟାଏ ସ୍ୱସ୍ତିର ନିଶ୍ୱାସ ପକାଇ ଚେଆରରୁ ଉଠିଲି । ମନେ ମନେ ନିଶ୍ଚିନ୍ତ ହେଲି ଟିକିଏ । ଯଦି ସବିତା ସତ କହିଥାଏ, ତା'ହେଲେ ରାଜେନ୍ଦ୍ର ପ୍ରସାଦ ଭୁଲ୍‌ରେ ବି ଥାନାକୁ ଜଣାଇବେ ନାହିଁ । ମୋ ଟଙ୍କା ସଂଗ୍ରହ ପଥଟା ବି ସୁଗମ ହୋଇଯିବ ।

: ତା' ହେଲେ ଆସୁଛି ସାର୍ ।

ବରେନ୍ ଠାରୁ ବିଦାୟ ନେଇ ଧୀରେ ଧୀରେ ବାହାରିଲି । ଘଡ଼ିରେ ସାଢ଼େ ନଅଟା ବାଜୁଚି । ଏଗାରଟାବେଳେ ସବିତାର ସୈକତାବାସକୁ ଆସିବାର ଥିଲା । ତା' ସହିତ ଏହି ପରିବର୍ତ୍ତିତ ଅବସ୍ଥା ସମ୍ବନ୍ଧରେ ଆଲୋଚନା କରିବା ଖୁବ୍ ପ୍ରୟୋଜନ । ନୂଆ କରି ସବୁ କଥା ଆଉ ଥରେ ଚିନ୍ତା କରିବାକୁ ହେବ ।

ଶିଡ଼ିରେ ମୁଁ କ୍ଷିପ୍ର ପାଦରେ ତଳକୁ ଓହ୍ଲାଇବାରେ ଲାଗିଲି !

\+ + +

ମୁଁ ସୈକତାବାସରେ ପହଞ୍ଚିବା କ୍ଷଣି ବର୍ଷା ଆରମ୍ଭ ହୋଇଗଲା ।

କେବିନ୍‌ର ଦରଜା ବନ୍ଦ କରି ଫୋନ୍ ଉଠାଇଲି, ସିଧା ସଲଖ ହୋଟେଲ୍‌କୁ, ଯେଉଁଠି ସୁଲେଖା ଅଛି । କିଛି ସମୟ ପରେ ସୁଲେଖା ଫୋନ୍ ଧରିଲା : ହ୍ୟାଲୋ ?

: ମୁଁ ରଜତ କହୁଚି । ଶୁଣନ୍ତୁ । ଆଶା କରୁଛି ସେଠାରେ ଆପଣଙ୍କର କିଛି ଅସୁବିଧା ହୋଇନାହିଁ । ଏ ଆଡ଼େ କିନ୍ତୁ ଟିକିଏ ଗୋଳମାଳିଆ ଆରମ୍ଭ ହୋଇ ଯାଇଚି । କ'ଣ ଗୋଳମାଳ, କେମିତି ହେଲା, କାହିଁକି ହେଲା, ଏସବୁ କିନ୍ତୁ ଫୋନ୍‌ରେ ଆପଣ କିଛି ଜାଣିବାକୁ ଆଶା କରନ୍ତୁ ନାହିଁ । ସେ ଯାହାହେଉ କାଲି ଆପଣଙ୍କୁ ଫେରି ଆସିବାକୁ ହେବ । ସେତିକିବେଳେ ସବୁ କଥା ଜାଣି ପାରିବେ ।

: ମୋର ସେ ଗାଡ଼ିଟା ?

: ସେଇଟା ସେମିତି ପରିତ୍ୟକ୍ତ ଅବସ୍ଥାରେ ପଡ଼ି ରହିଛି । କିନ୍ତୁ ଅସଲ କଥା ହେଉଛି

ଏ ସମ୍ବନ୍ଧରେ ଯେଉଁମାନେ ଏତେ ଶୀଘ୍ର କିଛି ଜାଣିବାର ସୁଯୋଗ ନଥିଲା, ସେମାନେ କିନ୍ତୁ ଜାଣି ପାରିଛନ୍ତି । ଫଳରେ ଖୋଜା ଖୋଜି ଆରମ୍ଭ ହୋଇ ଯାଇଛି ।

: ତା'ହେଲେ ?

: ବ୍ୟସ୍ତ ହୁଅନି । ଥରେ ଯେତେବେଳେ ବିଦ୍ ରାସ୍ତାକୁ ଓହ୍ଲେଇଛି, ତା'ର ଶେଷ ନଦେଖି ସହଜରେ ପଛକୁ ଲେଉଟିବି ନାହିଁ । ସେପରି କିଛି ଆଶଙ୍କାଜନକ ପରିସ୍ଥିତି ଉପୁଜିଲେ ପୁଣି ଫୋନ୍ କରିବି ।

: କିନ୍ତୁ ତେଣେ କ'ଣ ହେଉଛି ନ ହେଉଛି ମୋର ଜାଣିବାର ଖୁବ୍ ଆଗ୍ରହ । ଟିକେ କୁହନ୍ତୁନା, ପ୍ଲିଜ୍ !

: ନା ନା, ଫୋନ୍‌ରେ ସେ ସବୁ କଥା ହେବା ନିରାପଦ ନୁହେଁ । କାଲି ତ ଆସୁଚ, ସେତିକିବେଳେ ସବୁକଥା ଶୁଣି ପାରିବ । ରହିଲି ସୁଲେଖା । ମୋ ଅଜାଣତରେ ମୁଁ 'ଆପଣ'ରୁ 'ତମେ'କୁ ଓହ୍ଲେଇ ଆସିଥିଲି ।

ରିସିଭରଟା ରଖିଦେଇ, ଗୋଟାଏ ଚେଆର୍ ଟାଣି ନେଇ ଝରକା ପାଖରେ ବସିଲି । ବାହାରେ ବର୍ଷା, ମୋ ଭିତରେ ଅନ୍ଧକାର ।

ଗୋଟାଏ ସିଗାରେଟ୍ ଲଗାଇଲି ।

ତଥାପି ମୋ ଭାଗ୍ୟ ଭଲ କହିବାକୁ ହେବ । ରାଜେନ୍ଦ୍ର ପ୍ରସାଦଙ୍କ ତରଫରୁ ଏ ପର୍ଯ୍ୟନ୍ତ ପୋଲିସ୍ ଦପ୍ତରକୁ ସୁଲେଖା ଅପହରଣର ସଂବାଦଟା ପଠା ହୋଇ ନାହିଁ । ଅବଶ୍ୟ ତଦ୍ୱାରା ଯେ ବିପଦର ସମ୍ଭାବନା ନାହିଁ, ସେ କଥା ନୁହେଁ । ଯା ପରେ ସୁଲେଖାର ସେଇ ଦରଜା ଭଙ୍ଗା ଗାଡ଼ି ଖଣ୍ଡିକ ଯଦି ପୋଲିସ୍ ଆବିଷ୍କାର କରେ, ଆଉ ତା' ସହିତ ସେଦିନ ସୁଲେଖାଙ୍କ ବିଦାୟ କରିବାକୁ ଯାଇ ଯେଉଁ ଛୋଟ ଦୁର୍ଘଟଣାଟିଏ ଘଟିଥିଲା, ଅବଶ୍ୟ ଜଣକ ଗାଡ଼ି ସହିତ ହଠାତ୍ ଅନ୍ଧକାରରେ ଧକ୍କା ଲାଗିଥିଲା ଆମ ଗାଡ଼ିଟାର । ସେଇ ସୂତ୍ର ଧରି ପୋଲିସ୍ ଯଦି...

ଚିନ୍ତାରେ ବାଧା ପଡ଼ିଲା । ଦରଜାରେ କିଏ ନକ୍ କରୁଛି । କିଏ ? ଓଃ ସବିତା ନିଶ୍ଚୟ । ତା'ର ଆସିବାର କଥା ଥିଲା ।

ହଁ, ସବିତା । ଦେହଟାକୁ ଗୋଟାଏ ବର୍ଷାତିରେ ଆବୃତ କରି, ମୁଣ୍ଡ ଉପରେ ଗୋଟାଏ ଛତା ଧରି ଦରଜା ପାଖରେ ଠିଆ ହୋଇଛି ସବିତା ।

ଭିତରକୁ ଆସିଲା । ଛତାଟା ଗୋଟାଏ କୋଣକୁ ରଖିଦେଇ ବର୍ଷାତିଟା ଖୋଲୁ ଖୋଲୁ ହସି ହସି କହିଲା : ରାଜେନ୍ଦ୍ର ପ୍ରସାଦ ବ୍ୟାଙ୍କକୁ ଟଙ୍କା ଆଣିବାକୁ ଯାଇଛନ୍ତି । ମୋତେ ବି ସାଂଗରେ ଡାକୁଥିଲେ । ମୁଁ ଗଲି ନାହିଁ । ସୁଲେଖା ପାଇଁ ମନ୍ଦିରରେ ମାନସିକ କରିବାକୁ ଯାଉଛି କହି ପଳାଇ ଆସିଛି ।

ମନ ଭିତରଟା ମୋର ବିଷାକ୍ତ ହୋଇ ଉଠିଲା । ସବିତାକୁ କ'ଣ କହିବି କିଛି ଭାବି ଠିକଣା କରିବା ଆଗରୁ, ସବିତା ସୋଫା ଉପରେ ବସି ଗୋଡ଼ ଉପରେ ଗୋଡ଼ ରଖି ଆଖି ନଚେଇ କହିଲା, : ଟଙ୍କାଟା ଆପଣ କେବେ ହାତ ପଇଠ କରୁଛନ୍ତି ?

ଟଙ୍କା ? ଏତେ ଦୁଃଖରେ ବି ମୁଁ ହସି ପକାଇଲି । ଟଙ୍କା ମୋତେ ହାତକୁ ଆସିବକି ନାହିଁ ତା'ର କିଛି ଠିକ୍ ଠିକଣା ଅଛି ?

: ମାନେ ?

: ବର୍ତ୍ତମାନ ଏଇ ମାମଲାଟା ବଡ଼ ଜଟିଳ ହୋଇ ପଡ଼ିଛି ସବିତା ଦେବୀ । ମିଷ୍ଟର ରାଜେନ୍ଦ୍ର ସାହେବଙ୍କର ବ୍ୟାଙ୍କ୍ ମ୍ୟାନେଜର ଏବଂ ଆପଣଙ୍କ ଡ୍ରାଇଭର ବ୍ରିଜ୍‌ଲାଲ ଇତ୍ୟବସରରେ ପୋଲିସ୍‌କୁ ଅନେକ କଥା ଜଣେଇ ଦେଇଛନ୍ତି । ଫଳରେ ପୋଲିସ୍ ସଂଦେହ କରବାକୁ ଆରମ୍ଭ କରିଛି ଯେ ସୁଲେଖା ହୁଏତ ଗୁଣ୍ଡାମାନଙ୍କ ଦ୍ୱାରା ଅପହୃତା ହୋଇଛି ।

ହଠାତ୍ ସବିତା ଅସ୍ୱାଭାବିକ ଭାବରେ ଚିତ୍କାର କରି ଉଠିଲା । : ମିଛ, ସବୁ ମିଛ । ଆପଣ ପୋଲିସ୍ ଭୟରେ ବିବ୍ରତ ହୋଇ ମୋତେ ଡାହା ମିଛ କଥା କହୁଛନ୍ତି । କଳ୍ପିତ କାହାଣୀ ଶୁଣାଉଛନ୍ତି । ଆପଣ ଧପ୍‌ପାବାଜ, ଆପଣ...

: ଶାନ୍ତ ହୁଅ ଦେବୀ, ହାତ ଉଠେଇ ତାକୁ ବିରତ କରାଇଲି । ଅଳ୍ପ ହସି କହିଲି, ଆପଣଙ୍କୁ କଳ୍ପିତ କାହାଣୀ ଶୁଣେଇବାର ବେଳ ଏ ନୁହେଁ ସବିତା ଦେବୀ । ବର୍ତ୍ତମାନ ଆମର ପରମ ସଙ୍କଟ ମୁହୂର୍ତ୍ତ । ମୋ କଥା ଯଦି ବିଶ୍ୱାସ ନହେଉଛି, ତା'ହେଲେ କାନାଡ଼ା ବ୍ୟାଙ୍କ୍ ମ୍ୟାନେଜରଙ୍କ ଠାରୁ ଆପଣ ଖବରଟା ବୁଝନ୍ତୁ । ବ୍ୟାଙ୍କ୍ ସହିତ ପୋଲିସ୍‌ର ଯେ ଗୋପନ ଯୋଗାଯୋଗ ରହିଛି, ସେ କଥା ହୁଏତ ଆପଣ ଜାଣି ନାହାନ୍ତି । ହଠାତ୍ କେହି ଅସ୍ତବ୍ୟସ୍ତ ହୋଇ ମୋଟା ଅଙ୍କର ଟଙ୍କା ଦଶ ପାଞ୍ଚଟା ନୋଟ ମାଧ୍ୟମରେ ବ୍ୟାଙ୍କ୍‌ରୁ ଉଠାଇଲେ, ବ୍ୟାଙ୍କ୍‌ର ମେନେଜର ଗୋପନରେ ପୋଲିସ୍‌କୁ ଖବର ଦିଅନ୍ତି । ଆପଣଙ୍କ ସ୍ୱାମୀଙ୍କ କ୍ଷେତ୍ରରେ ତାହାହିଁ ଘଟିଛି ।

: ବୁଝିଲି । କିନ୍ତୁ ଏ ଖବର ଯଦି ଗୋପନ ହୁଏ, ଆପଣ ଜାଣିଲେ କିପରି ?

: ହଁ, ଏଥର ବାଟକୁ ଆସନ୍ତୁ ସବିତା ଦେବୀ । ଧୀର ସ୍ଥିର ଚିତ୍ତରେ ସବୁ କଥା ଶୁଣନ୍ତୁ ।

ଏହାପରେ ମୁଁ ପୋଲିସ୍‌ରେ ଚାକିରି ପାଇବାଠୁ ଆରମ୍ଭ କରି ବର୍ତ୍ତମାନ ଯାଏ ଘଟିବା ସମସ୍ତ ଘଟଣା ସବିତା ଦେବୀଙ୍କ ପାଖରେ ଗୋଟି ଗୋଟି କରି ବର୍ଣ୍ଣନା କରିଗଲି ।

ଦେଖିଲି ଧୀରେ ଧୀରେ ସବିତାର ମୁହଁ ଫିକା ପଡ଼ି ଆସୁଛି । କ'ଣ କହିବାକୁ ଯାଇ ପାଟିରୁ କଥା ବାହାରୁ ନାହିଁ । ବିସ୍ଫାରିତ ନୟନରେ ମୋ ଆଡ଼କୁ ଚାହିଁ କମ୍ପିତ କଣ୍ଠରେ ସବିତା କହିଲା : ତା'ହେଲେ.... ତା'ହେଲେ କ'ଣ ଟଙ୍କା ମିଳିବ ନାହିଁ ? ... ଟଙ୍କା ଯେ ମୋର ଏକାନ୍ତ ପ୍ରୟୋଜନ ।

: ମୁଁ ଜାଣିଥିଲି ସବିତା ଦେବୀ । ଯେପରି ଭାବରେ ହେଉ ପୋଲିସ୍ କାନକୁ କଥାଟା ଯିବହିଁ । କିନ୍ତୁ ଆପଣ ମା' ଝିଅ ଦୁହେଁ ମୋ କଥାରେ କାନ ଦେଲେ ନାହିଁ ।

: ସେ ତ ଯା' ହେବାର ହୋଇ ଯାଇଚି । ବର୍ତ୍ତମାନ କ'ଣ କରାଯିବ ସେଇ କଥା କୁହନ୍ତୁ ।

: ମୁଁ ଏକା ଆଉ କ'ଣ କରିବି । ଯାହା କରିବା କଥା ଆମ ତିନିଜଣଙ୍କୁ ମିଳିମିଶି କରିବାକୁ ହେବ । ତେବେ ଆପଣ ଏପରି ଅଧୈର୍ଯ୍ୟ ହେଲେ ଚଳିବ ନାହିଁ । ବର୍ତ୍ତମାନ ଏ କାର୍ଯ୍ୟରେ ମୁଖ୍ୟ ଭୂମିକା ଆପଣଙ୍କୁ ବହନ କରିବାକୁ ପଡ଼ିବ । କାରଣ ସୁଲେଖାକୁ ଯେତେବେଳେ ମୁଁ ବାହାରକୁ ପଠାଇ ଦେବାକୁ ଯାଇଥିଲି, ସେତେବେଳେ ଗୋଟିଏ ଗାଡ଼ି ସହିତ ସୁଲେଖା ଗାଡ଼ି ଧକ୍‌କା ଲାଗି ଆମ ଗାଡ଼ିର ଦରଜା ଚେପା ହୋଇ ଯାଇଥିଲା । ଫଳରେ ଅନ୍ୟ ଗାଡ଼ିର ମାଲିକ ସହିତ କଥା କଟାକଟି ହୋଇ ଯାଇଥିଲା । ବର୍ତ୍ତମାନ ପୋଲିସ୍ ସୁଲେଖାର ସେହି ପରିତ୍ୟକ୍ତ ଗାଡ଼ି ନିଶ୍ଚୟ ଆବିଷ୍କାର କରିବ । ସେହି ଗାଡ଼ିର ସୂତ୍ର ଧରି

ଆମଯାଏ ଆଗେଇ ଆସିବା କିଛି ବିଚିତ୍ର ନୁହେଁ । ତେଣୁ ବର୍ତ୍ତମାନର ଏହି ପରିସ୍ଥିତିରେ ଆପଣଙ୍କୁ ମୁଖ୍ୟ ଭୂମିକା ଗ୍ରହଣ କରିବାକୁ ହିଁ ହେବ । ନହେଲେ ଆମ କାହାରି ନିସ୍ତାର ନାହିଁ ।

: ମୋତେ ମୁଖ୍ୟ ଭୂମିକା ଗ୍ରହଣ କରିବାକୁ ହେବ ମାନେ ? ସବିତା ସ୍ୱରରେ ଆତଙ୍କ ଫୁଟି ଉଠିଲା ।

: ମୁଖ୍ୟ ଭୂମିକାର ମାନେ ଆଉ କିଛି ନୁହେଁ । ଆପଣ ଆପଣଙ୍କ ସ୍ୱାମୀଙ୍କୁ ସମ୍ଭାଳିବେ । ସେ ଯେପରି ସୁଲେଖା ଅନ୍ତର୍ଦ୍ଧାନ ସମ୍ବନ୍ଧରେ ମୁହଁ ନ ଖୋଲନ୍ତି । ସେ ଯଦି ନୀରବ ରୁହନ୍ତି, ତେବେ ଆମ କାହାରି କିଛି ଅସୁବିଧା ହେବ ନାହିଁ । ଏପରି କି ଟଙ୍କାତକ ଅତି ସହଜରେ ହାତକୁ ଚାଲି ଆସିବ ।

କିଛି ସମୟ ନୀରବତା ପରେ ସବିତା ମୁହଁ ଖୋଲିଲା : ମୋ ସ୍ୱାମୀଙ୍କ ସମ୍ବନ୍ଧରେ ଆପଣ ନିଶ୍ଚିନ୍ତ ହୋଇ ପାରନ୍ତି ରଜତବାବୁ । ଆପଣଙ୍କ ଠାରୁ ଫୋନ୍ ପାଇବା ପରେ ସ୍ୱାମୀ ମୋ ସହିତ ଆଲୋଚନା କରିଥିଲେ । କୌଣସି ଅବସ୍ଥାରେ ବି ସେ ପୋଲିସ୍ ଆଗରେ ମୁହଁ ଖୋଲିବେ ନାହିଁ ।

: ତା'ହେଲେ ତ ଆମର କଟେବାର । ଆଉ ଚିନ୍ତାର କ'ଣ ଅଛି ? ମୁଁ ଜଳନ୍ତା ସିଗାରେଟ୍‌ଟା ଛାଇଦାନିରେ ଗୁଞ୍ଜିଦେଇ ଉଠି ଠିଆହେଲି । କହିଲି, ରୁହନ୍ତୁ । ଘଟଣାଟା କେତେଦୂର ଆଗେଇଲା ମୁଁ ପୋଲିସ ଅଫିସରଙ୍କୁ ଫୋନ୍ କରି ଜାଣି ନେଉଚି ।

ରିସିଭର୍ ବରେନ୍ ନିଜେ ଉଠେଇଲା ।

: ଖବର କ'ଣ ? ନୂତନ ସୂତ୍ର କିଛି...

: ନା, ନୂଆ ଖବର କିଛି ନାହିଁ ବନ୍ଧୁ । ସୁଲେଖାର ଗାଡ଼ିଟା ଏ ପର୍ଯ୍ୟନ୍ତ ମିଳି ନାହିଁ । ତେବେ ରାଜେନ୍ଦ୍ର ପ୍ରସାଦ ବ୍ୟାଙ୍କରୁ ଟଙ୍କା ଉଠାଇ ଆଣିଛନ୍ତି । ତମେ ବରଂ ତିନିଟା ବେଳକୁ ଥରେ ଫୋନ୍ କର ।

: ଆଚ୍ଛା ରିସିଭରଟା ରଖିଦେଲି । ଗାଡ଼ିଟାକୁ ଏପର୍ଯ୍ୟନ୍ତ ସେମାନେ ଖୋଜି ପାଇ ନାହାନ୍ତି । ଏହି ଅବସରରେ ଯାହା କରିବାର କଥା ଆମକୁ କରି ନେବାକୁ ହେବ । ଆପଣ ଗୋଟାଏ କାମ କରନ୍ତୁ ସବିତା ଦେବୀ । ଏହି ଚିଠିଟା ସୁଲେଖାଠାରୁ ମୁଁ ଲେଖେଇ ରଖିଛି । ଏଥିରେ ସୁଲେଖା ସବୁକଥା ଲେଖିଛି, କେଉଁଠି ଓ କିପରି ଭାବରେ ଆପଣଙ୍କ ସ୍ୱାମୀ ଟଙ୍କା ଦେଇ ଆସିବେ । ଆପଣଙ୍କ ଘରେ ଲେଟର୍ ବକ୍‌ସ ଥିବ ନିଶ୍ଚୟ । ସେଇଥିରେ ପକାଇଦେବେ । ଉଁ ହୁଁ, ଖୋଲା ହାତରେ ନୁହେଁ, ହାତରେ ରୁମାଲ ଗୁଡ଼େଇ ଚିଠିଟା ଧରନ୍ତୁ । ମୁଁ ଚିଠି ଖଣ୍ଡିକ ସବିତା ହାତକୁ ବଢ଼ାଇ ଦେଲି ।

ଖାମ୍ ଖଣ୍ଡିକ ଅତି ସନ୍ତର୍ପଣରେ ନେଇ ସବିତା ବ୍ୟାଗ୍‌ରେ ରଖିଲା । ମୋ ଆଡ଼େ ହସିଲା ଆଖିରେ ଚାହିଁ ପଚାରିଲା : ତା'ହେଲେ ସତରେ ଆପଣ କାମଟା ନିଶ୍ଚୟ କରୁଛନ୍ତି ।

: କରୁଛି ମାନେ ? ଦେଉଳର ମୁଣ୍ଡି ମାରି ଆଣିଲି ଜାଣନ୍ତୁ । ଏତେଗୁଡ଼ାଏ ଟଙ୍କା । ତା'ଛଡ଼ା ବର୍ତ୍ତମାନ ତ ଆଉ ଭୟର କିଛି କାରଣ ନାହିଁ । ପୋଲିସ୍‌ରେ ଚାକିରି ପାଇଛି । କେସ୍‌ଟା ପୁଣି ମୋ ହାତରେ । ତେଣୁ କୋଉଠି କ'ଣ ହେଉଛି ନ ହେଉଛି, ସର୍ବ ପ୍ରଥମେ ମୋ ଗୋଚରକୁ ଆସିବ । ଯଦି ସେପରି କିଛି ବିପଦର ସମ୍ଭାବନା ଦେଖେ, ତା'ହେଲେ ପ୍ରଥମେ ମୁଁ ଆପଣଙ୍କୁ ଜଣାଇବି । ହଁ, ଏଥର ପ୍ରୋଗ୍ରାମଟା ଶୁଣନ୍ତୁ । ସୁଲେଖାକୁ ଆଜି

ରାତିରେ ମୁଁ ଫୋନ୍ କରି କହିବି, ସେ ଯେପରି କାଲି ରାତି ଏଗାରଟା ଭିତରେ ଏଠାକୁ ଚାଲି ଆସେ । ସୈକତାବାସରେ ଆସି ରାତି ବାରଟା ଗୋଟାଏ ସୁଦ୍ଧା ପହଞ୍ଚିଲେ ଚଳିବ । ଏଇ କେବିନ୍‌ରେ ସେ ଅପେକ୍ଷା କରିବ । ଆପଣଙ୍କ ସ୍ୱାମୀ ଡାଇମଣ୍ଡ ହାର୍‌ବର୍ ରୋଡ଼ରେ ଆଗୋଉ ଆଗୋଉ ଗୋଟାଏ ଜାଗାରେ ଏକ ତୀବ୍ର ଟର୍ଚ୍ଚ ଆଲୋକ ତିନିଥର ଦେଖିବାକୁ ପାଇବେ । ସୁଲେଖା ସହିତ ତାଙ୍କର ସେଇଠି ଦେଖା ହେବାର କଥା । କିନ୍ତୁ ବାସ୍ତବରେ ତାହା ହେବ ନାହିଁ । ଟଙ୍କା ଧରି ରାତି ତିନିଟା ଭିତରେ ମୁଁ ଏଠାକୁ ଫେରି ଆସିବି । ସେହି ସମୟ ଭିତରେ ଆପଣ ବି ଆସି ଯାଇଥିବେ । ଟଙ୍କାର ଭାଗ-ବାଣ୍ଟ ଯେପରି ଯାହା ହେବାର ଏଇଠି ହୋଇଯିବ । ନିଜ ନିଜ ଭାଗ ନେଇ ଆପଣମାନେ ଚାଲିଯିବେ । ଆପଣଙ୍କ ସ୍ୱାମୀ ଘରେ ଯାଇ ଦେଖିବେ, ସୁଲେଖା ଘରେ ପହଞ୍ଚି ସାରିଛି । ପଚାରିଲେ ସୁଲେଖା କହିବ, ଗୁଣ୍ଡାଦଳ ତାକୁ ଘର ସାମ୍‌ନାରେ ଓହ୍ଲେଇଦେଇ ଚାଲି ଯାଇଛନ୍ତି । ବାସ୍ କାମ ଫତେ ।

ସବିତା ମନଯୋଗ ସହକାରେ ମୋ କଥା ଶୁଣୁଥିଲା । ସ୍ୱପ୍ନରୁ ଉଠିଲା ପରି କହିଲା : ବେଶ୍, ଏଇକଥା ରହିଲା । ମୁଁ କାଲି ରାତିରେ ତିନିଟା ବାଜିବାକୁ ପନ୍ଦର ମିନିଟ୍ ବାକି ଥିବ ଆସି ପହଞ୍ଚି ଯିବି ।

: ହଁ, କିନ୍ତୁ ଆପଣ ବ୍ରିଜ୍‌ଲାଲ ଉପରେ ଟିକିଏ ଆଖି ରଖିଥିବେ । ଲୋକଟା ପୋଲିସ୍‌ର ଗୁପ୍ତଚର । ଏତେ ରାତିରେ ବାହାରକୁ ବାହାରିବାକୁ ଯାଇ ଯେପରି ତା' ଆଖିରେ ଧରାପଡ଼ି ନ ଯାଆନ୍ତି ।

: ନା ନା, ସେ ଭୁଲ୍ ମୁଁ କରିବି ନାହିଁ । ମୁଁ ଆସୁଚି ତେବେ । ସବିତା ଉଠି ଠିଆହେଲା ।

ମୁଁ ବି ଉଠିଲି । କହିଲି : ମୋତେ କିଛି ଟଙ୍କା ଦେଇ ଯାଆନ୍ତୁ । କେବିନ୍ ଭଡ଼ା ଇତ୍ୟାଦି ପାଇଁ ଆଜି ଅନ୍ତତଃ ପାଞ୍ଚଶହ ଟଙ୍କା ହେଲେ ଚଳିଯିବ ।

ସବିତା ମୋତେ ଟଙ୍କା ଦେଲା । ଦରଜା ଖୋଲି ବାହାରକୁ ବାହାରି କହିଲା : ତା'ହେଲେ ଏଇକଥା ରହିଲା... ମୁଁ ଆସୁଚି ।

ମୁଁ ବର୍ଷାତିଟା ସବିତା ହାତକୁ ବଢ଼ାଇ ଦେଇ କହିଲି : ଆପଣ କିନ୍ତୁ ମନେ ରଖିବେ, ବ୍ରିଜ୍‌ଲାଲ ପୋଲିସ୍‌ର ଚର । ଖୁବ୍ ସାବଧାନ ।

ବର୍ଷାତିଟା ପିନ୍ଧୁ ପିନ୍ଧୁ ସବିତା କିପରି ଏକ ବେଖାପ୍ ଚାହାଣିରେ ମୋ ମୁହଁକୁ ଅନାଇଲା ।

ମୁଁ ଟିକିଏ ଅବାକ୍ ହେଲି, ଅସ୍ୱସ୍ତି ବି ଅନୁଭବ କଲି ।

ସବିତା ଛତା ଖୋଲି ପାହାଚର ତଳକୁ ଓହ୍ଲେଇଲାବେଳେ ଆଉଥରେ ବେକ ଭାଙ୍ଗି ମୋ ଆଡ଼େ ଚାହିଁଲା । ତା'ପରେ କ୍ଷିପ୍ର ପାଦରେ ଆଗେଇ ଗଲା ଦୂରକୁ ।

ତା'ଚାହାଣିଟା ମୋତେ କାହିଁକି ଭଲ ଲାଗିଲା ନାହିଁ । ମୁଁ ତା'ଯିବା ପଥକୁ ଅନେକ ବେଳଯାଏ ଅନାଇ ରହିଲି । ଏପରିକି ସେ ମୋ ଆଖି ଆଗରୁ ଅଦୃଶ୍ୟ ହେବାଯାଏ ।

ଘରର ଦରଜା ବନ୍ଦକରି ଫୋନ୍ ଉଠାଇଲି ।

ବରେନ୍ ନିଜେ ଫୋନ୍ ଧରିଲା । ମୋ କଣ୍ଠସ୍ୱର ଶୁଣି ଉଲ୍ଲସିତ ହୋଇ କହିଲା : ଗୋଟାଏ ଜବ୍‌ବର ଖବର ଅଛି ରଜତ । ସୁଲେଖାର ପରିତ୍ୟକ୍ତ ଗାଡ଼ିଟା ମିଳିଛି । ବଡ଼ସାହେବ ତମକୁ ଖୋଜୁଥିଲେ । ତମର ଆଉ ଅଫିସକୁ ଆସିବା ଦରକାର ନାହିଁ । ସିଧା ଚାଲିଯାଅ ଜଶୋର ରୋଡ଼କୁ । ସେଇଠି ସୁଲେଖାର ଗାଡ଼ିଟା ପଡ଼ି ରହିଛି । ଆମେ ସମସ୍ତେ ବାହାରି ଯାଉଚୁ । ତମର ସେଠାରେ ଖୁବ୍ ପ୍ରୟୋଜନ ।

ବରେନ୍ ମୋତେ କିଛି କହିବାର ସୁଯୋଗ ନଦେଇ ଫୋନ୍‌ଟା ରଖିଦେଲା ।

ମୋର ଏଣେ କଥା କହିବାର ଶକ୍ତି ଲୋପ ପାଇଥିଲା । ଗୋଡ଼ ଥରୁଥିଲା । ତଣ୍ଟି ଅଠା ଅଠା ହୋଇ ଯାଉଥିଲା ।

ଅନେକ ସମୟ ପରେ ଶକ୍ତି ସଂଚୟ କରି ଘରୁ ବାହାରିଲି ।

ପରିଣତି ଯାହା ହେଉ ପଛେ ମୋତେ ଜଶୋର ରୋଡ଼କୁ ଯିବାକୁ ହିଁ ହେବ ।

ମୁଁ ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ଦେଖିଲି, ହଁ, ସୁଲେଖାର ସେଇ ଶଙ୍ଖ ଶୁଭ୍ର ରଙ୍ଗର ଗାଡ଼ିଟା । ଗାଡ଼ିକୁ ଘେରି ଚାରିପାଖଯାକ ଅନେକ ଭିଡ଼ । ମୁଁ ମୋ ଗାଡ଼ିରୁ ଓହ୍ଲେଇବା ମାତ୍ରକେ ବରେନ୍ ମୋ ପାଖକୁ ଛୁଟି ଆସିଲା । କହିଲା : ଜାଣ ରଜତ, ଏଥର କିନ୍ତୁ ରାଜେନ୍ଦ୍ର ପ୍ରସାଦଙ୍କୁ ମୁଁ ସହଜରେ ଛାଡ଼ିବି ନାହିଁ । ଏଇ ଭଙ୍ଗାରୁଜା ପରିତ୍ୟକ୍ତ ଗାଡ଼ି । ଦେଖାଯାଉ ଏଇ ଗାଡ଼ି ରାଜେନ୍ଦ୍ର ପ୍ରସାଦଙ୍କ ମୁହଁ ଖୋଲିପାରେ କି ନାହିଁ ।

: ଗାଡ଼ିଟା ସୁଲେଖାର ତ ? ମୁଁ ପଚାରିଲି ।

: ସନ୍ଦେହ ହେଉଛି ? ହସି ହସି ବରେନ୍ କହିଲା, କିନ୍ତୁ ନମ୍ବର ଲାଇସେନ୍‌ସ ସବୁ ମିଶି ଯାଉଛି ବନ୍ଧୁ । ମୁଁ କିନ୍ତୁ ଏ ଗାଡ଼ି ସମ୍ବନ୍ଧରେ ନିଃସନ୍ଦେହ । ଏଇ ସୁଯୋଗରେ ଚାଲ ଥରେ ରାଜେନ୍ଦ୍ର ପ୍ରସାଦଙ୍କ ସହିତ ଦେଖା କରି ଆସିବା । ଏପରି ଗୋଟାଏ ସୁଯୋଗ ହରେଇବା ଉଚିତ ନୁହେଁ ।

ମୁଁ କିନ୍ତୁ ମନେ ମନେ ପ୍ରମାଦ ଗଣିଲି । ଏତିକିବେଳେ ସବିତାକୁ କେଉଁଠୁ ଫୋନ୍ କରି ସମ୍ବାଦଟା ଜଣେଇ ରଖିଲେ ହୁଅନ୍ତା । କିନ୍ତୁ ସୁଯୋଗ କାହିଁ ?

ବାଧ ହୋଇ ମୋତେ ବରେନ୍ ସାଙ୍ଗରେ ଯିବାକୁ ହେଲା । ରାଜେନ୍ଦ୍ର ପ୍ରସାଦଙ୍କର ପାଚେରି ଘେରା ଦୁର୍ଗସମ ଘର ସାମନାରେ ଓହ୍ଲେଇ, ବରେନ୍ ପଚାରିଲା : ସୁଲେଖା ଦେବୀ ଅଛନ୍ତି ?

: ନା, ବାହାରକୁ ଯାଇଛନ୍ତି ।

: ଫେରିବେ କେତେବେଳେ ?

: ଜାଣିନି ।

: ତା'ହେଲେ ଆମକୁ ମିଷ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ସହିତ ଦେଖା କରିବାକୁ ହେବ ।

: ସେ ଆପଏଣ୍ଟ୍‌ମେଣ୍ଟ୍ ଛଡ଼ା ଦେଖା କରନ୍ତି ନାହିଁ ।

: ଯାଇ କୁହ ପୋଲିସ୍ ହେଡ଼କ୍ୱାର୍ଟରରୁ ଅଫିସର ଆସିଛନ୍ତି ।

: କହୁଛି ସାର୍ । ସାହେବଙ୍କୁ ଖବରଟା ଦେଉଛି । ସଙ୍ଗେ ସଙ୍ଗେ ଲୋକଟି ପାଖରେ ଥିବା ଫୋନ୍‌ର ଡାଏଲ ଘୂରାଇଲା, ଅପର ପ୍ରାନ୍ତରୁ କ'ଣ ନିର୍ଦ୍ଦେଶ ଆସଲା କେଜାଣି ଲୁହା ଦରଜାଟା ଖୋଲି ଆମକୁ ପ୍ରବେଶ ପଥ ଦେଖାଇ ଦେଲା ।

ଆମେ ଅଙ୍କାବଙ୍କା ପଥରେ ଆଗେଇଲାବେଳେ ଟଙ୍କାର ଜୌଲୁସ୍ ଲକ୍ଷ୍ୟ କରୁଥିଲୁ । ଲନ୍, ବଗିଚା, ଦେଶୀ ବିଦେଶୀ ନାନା ରକମର ଫୁଲଗଛ, ଫୁଆରା ସବୁ ମିଳେଇ ଇନ୍ଦ୍ରଭୁବନ । ପ୍ରତି ଇଞ୍ଚ୍ ଜାଗାରେ ଯେପରି ଟଙ୍କା ବୁଣା ହୋଇଛି ।

ସଦର ଦରଜାରେ ଦରବାନ୍ ସଲାମ ଠୁକିଲା ।

: ଆସନ୍ତୁ ସାର୍, ମୁଁ ସାହେବଙ୍କ ପାଖକୁ ନେଇ ଯାଉଚି ।

ଆମେ ଆଗେଇଲୁ । ମୋ ମନ ଭିତରେ କିନ୍ତୁ ଦ୍ୱନ୍ଦ୍ୱ ଆରମ୍ଭ ହୋଇ ଯାଇଥିଲା, ହୁଏତ ଶେଷ ରକ୍ଷା ହେବ ନାହିଁ । ରାଜେନ୍ଦ୍ର ପ୍ରସାଦ ଯଦି ମୁହଁ ଖୋଲନ୍ତି...

ବେତ ଚେଆର୍‌ରେ ଦେହ ଭାର ନଦି କୁଆରିଆ ଗଙ୍ଗା ବକ୍ଷକୁ ଚାହିଁ ଭାବନା ସମୁଦ୍ରରେ ଯେପରି ବୁଡ଼ି ଯାଇଛି ସବିତା । ହାତରେ ଖଣ୍ଡିଏ ସଚିତ୍ର ପତ୍ରିକା । ସାମ୍ନା ଚେଆର୍‌ରେ ବସି ରହିଛନ୍ତି ଜଣେ ବୃଦ୍ଧ । ସେଇ ବୋଧହୁଏ ରାଜେନ୍ଦ୍ର ପ୍ରସାଦ । ସେ ମଧ୍ୟ କିପରି ଚିନ୍ତାମଗ୍ନ । ଆମ ପ୍ରବେଶ ସମ୍ବନ୍ଧରେ ସେମାନେ କେହି ସଚେତନ ନୁହନ୍ତି ।

ବରେନ୍ ଇତସ୍ତତଃ କରି କହିଲା : ମିଷ୍ଟର ପ୍ରସାଦ...

: ହଁ, ମୁଁ । ଆପଣମାନେ ହେଡ୍‌କ୍ୱାର୍ଟରରୁ ଆସିଛନ୍ତି । ବସନ୍ତୁ । କ'ଣ କୁହନ୍ତୁ ତ ? କାହିଁକି ଆସିଛନ୍ତି ଆପଣମାନେ ? ରାଜେନ୍ଦ୍ର ପ୍ରସାଦଙ୍କ ଗଳା ଅବିଚଳିତ । ଆଖି ସ୍ଥିର । ସବୁ ଯେପରି ସ୍ୱାଭାବିକ ।

: ଆମକୁ ସୁଲେଖା ଦେବୀଙ୍କୁ ଖୋଜି ଖୋଜି ଏଠାକୁ ଆସିବାକୁ ହେଲା । ଶୁଣିଲୁ ସେ ଘରେ ନାହାନ୍ତି ।

: ନା, ସେ ଘରେ ନାହିଁ । କିନ୍ତୁ ହଠାତ୍ ସୁଲେଖା ସହିତ ଆପଣଙ୍କର କ'ଣ ଦରକାର ପଡ଼ିଲା ?

: ଦରକାର ଟିକିଏ ଥିଲା । କାଲି ରାତିରେ ଜଣେ ବୃଦ୍ଧାଙ୍କୁ ଗୋଟାଏ ଗାଡ଼ି ଧକ୍କା ମାରି ଦ୍ରୁତ ପଳେଇ ଯାଇଥିଲା । ସେଇ ଗାଡ଼ିକୁ ଖୋଜୁ ଖୋଜୁ ଆଜି ପରିତ୍ୟକ୍ତ ଅବସ୍ଥାରେ ଜଶୋର ରୋଡ୍‌ଠାରେ ଆମେ ଗୋଟାଏ ଗାଡ଼ି ଆବିଷ୍କାର କରିଚୁ । ସେ ଗାଡ଼ିର ଗୋଟିଏ ଦରଜା ଭଙ୍ଗା । ଖବର ନେଇ ଜାଣି ପାରିଲୁ ଯେ ସେ ଗାଡ଼ିର ମାଲିକ ହେଉଛନ୍ତି ସୁଲେଖା ଦେବୀ । ତେଣୁ ତାଙ୍କ ସହିତ ଦେଖା କରି ଗାଡ଼ି ସମ୍ବନ୍ଧରେ ସବିଶେଷ ବିବରଣୀ ଜାଣିବା ପାଇଁ ଆମେ ବାଧ୍ୟ ହେଲୁ ।

କେତୋଟି ମୁହୂର୍ତ୍ତ ନୀରବତା ।

ମୋର ନାଡ଼ିର ସ୍ପନ୍ଦନ ବଢ଼ି ଯାଇଥିଲା । ରାଜେନ୍ଦ୍ର ପ୍ରସାଦଙ୍କ ଉତ୍ତର ଉପରେ ମୋର ଭବିଷ୍ୟତ ନିର୍ଭର କରୁଛି । ରୁମାଲରେ କପାଳରୁ ଝାଳ ପୋଛିଲି ।

: ନା, ଅସମ୍ଭବ । ସୁଲେଖା କାହାକୁ ଧକ୍କା ମାରିଥିଲେ ସେ ଭୀରୁ ପରି ପଳାଇ ଯାଇ ନଥାନ୍ତା । ଆପଣମାନେ ଭୁଲ୍ କରିଛନ୍ତି । ସୁଲେଖା ତା' ବନ୍ଧୁ ଘରକୁ ବୁଲି ଯାଇଥିଲା । କୁଆଡ଼େ ଯାଇଛି, କ'ଣ କରୁଛି ମୋତେ କିଛି ଜଣା ନାହିଁ । ଜାଣିବା ବି ଉଚିତ ନୁହେଁ । ସୁଲେଖା ବଡ଼ ହୋଇଛି, ତା'ଛଡ଼ା ଆଜିକାଲିର ପିଲାମାନଙ୍କ କଥା ତ ଆପଣମାନେ ଜାଣନ୍ତି ।

: କେବେ ସେ ଫେରିବେ ? ବରେନ୍ ପଚାରିଲା ।

: ଜାଣେନି । ହୁଏତ ଦିନେ ଦି'ଦିନ ଭିତରେ ଫେରି ଆସିବ ।

: କିନ୍ତୁ ଗାଡ଼ିର ଦରଜାଟା...

: ମୁଁ କ'ଣ କରିବି ! ସୁଲେଖା ତା' ଗାଡ଼ି ନେଇ କ'ଣ କରିଛି ନ କରିଛି ମୋତେ କ'ଣ ଜଣେଇଛି । ତା'ଛଡ଼ା କାହାର ବ୍ୟକ୍ତିଗତ ସମସ୍ୟା ନେଇ ଅନ୍ୟ ଜଣେ ମୁଣ୍ଡ ଖେଳେଇବା ମୁଁ ମୋଟେ ପସନ୍ଦ କରେ ନାହିଁ । ରାଜେନ୍ଦ୍ର ପ୍ରସାଦଙ୍କ ମୁହଁରେ ଅସନ୍ତୋଷର ଭାବ ଫୁଟି ଉଠିଥିଲା । ସେ ଟେବୁଲ ଉପରୁ ଖବର କାଗଜ ଖଣ୍ଡେ ଉଠାଉ ଉଠାଉ କହିଲେ, ସୁଲେଖା ଫେରିଲେ ମୁଁ ଆପଣମାନଙ୍କୁ ଖବର ଦେବି ।

ବରେନ୍ଦ୍ରର ଆଉ କିଛି ପ୍ରଶ୍ନ କରିବାର ବାଟ ନଥିଲା । ବାଧ ହୋଇ ଆମେ ଫେରି ଆସିଲୁ । ବରେନ୍ କଣ୍ଠରେ ବିରକ୍ତି ଫୁଟାଇ କହିଲା : ଦେଖିଲ, ବୁଢ଼ା ସବୁ ଜାଣିଶୁଣି ବି କିମିତି ନିର୍ବିବାଦରେ ସବୁ ହଜମ କରିଗଲା ।

ମୁଁ କିଛି ଉତ୍ତର ଦେଲି ନାହିଁ । ଆମେ ଫେରି ଆସିଲୁ । ଘରକୁ ଫେରୁ ଫେରୁ ରାତି ହୋଇଗଲା । ରୀଟା ମୋ ପଥ ଚାହିଁ ବସିଥିଲା । ମୋତେ ଦେଖି ଯେପରି ଆନନ୍ଦରେ ଭାଙ୍ଗି ପଡ଼ିଲା । ପିଲାଙ୍କ ପରି ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଲା ।

ସେଦିନ ଖାଇବା ଟେବୁଲ୍‌ରେ ରୀଟା ଆଗରେ ମୁଁ ଘଟଣାଟା କହିଲି । ରାଜେନ୍ଦ୍ର ପ୍ରସାଦଙ୍କ ଝିଅ ଗୁଣ୍ଡାମାନଙ୍କଦ୍ୱାରା ଅପହୃତ ହୋଇଛି । ସେଇଆକୁ ଖୋଜି ବାହାର କରିବା ପାଇଁ ଆମର ଏତେ ବ୍ୟସ୍ତତା । ଏ ସମ୍ବନ୍ଧରେ ବରେନ୍ କ'ଣ ଭାବୁଛି, ମୁଁ କ'ଣ କରୁଛି ଇତ୍ୟାଦି ଇତ୍ୟାଦି ସବୁ କଥା ବର୍ଣ୍ଣନା କରି ରୀଟାକୁ ଶୁଣେଇଲି ।

ଖାଇସାରି ଘରୁ ବାହାରିଲି । ରୀଟାକୁ କହିଲି, ହେଡ଼କ୍ୱାର୍ଟରକୁ ଯିବାକୁ ହେବ । ଏ କେଇଦିନ ସମୟ ଅସମୟ କିଛି ଠିକ୍ ରହିବ ନାହିଁ । ତେଣୁ ରୀଟା ଚିନ୍ତା ନକରିବା ହିଁ ଭଲ ।

ମନଟା ଟିକିଏ ହାଲ୍‌କା ଲାଗୁଥିଲା । ଗାଡ଼ି ନେଇ ବାହାରି ପଡ଼ିଲି । ଏହାପରେ ମୋର ପ୍ରଥମ କର୍ତ୍ତବ୍ୟ ହେଉଛି ସୁଲେଖାକୁ ଫୋନ୍ କରି କାଲିର ପ୍ରୋଗ୍ରାମଟା ଜଣେଇ ଦେବା ।

+ + +

ସୁଲେଖା ଫୋନ୍ ଧରିଲା ।

ମୁଁ କହିଲି : ମୁଁ ରଜତ କହୁଛି । ଶୁଣ, କାଲି ରାତି ଏଗାରଟା ପ୍ଲେନ୍‌ରେ ତମେ ଚାଲି ଆସିବ । ଏରୋଡ୍ରମ୍‌ରୁ ଏଆର୍ ଲାଇନ୍‌ସ ବସ୍‌ରେ ସିଧା ଚାଲିଆସିବ ସିଟି ଅଫିସ୍ ଯାଏ । ମୁଁ ସେଇଠି ଅପେକ୍ଷା କରିଥିବି । ତୁମକୁ ନେଇ ସୈକତାବାସ ଚାଲିଯିବି । ତୁମେ ସେଠି କେବିନ୍‌ରେ ରହିବ । ମୁଁ କାମରେ ବାହାରିଯିବି । ତା'ପରେ କାମ ଶେଷ କରି ଫେରି ଆସିବି କେବିନ୍‌କୁ । ତାପରେ ସେ ଯାହାର ଭାଗ ନେଇ ଫେରିଯିବା ନିଜ ନିଜ ଘରକୁ ।

: ବୁଝିଲି ଯେ, କାମଟା କ'ଣ ଏତେ ସହଜରେ ଘଣ୍ଟା କଣ୍ଟା ପରି...

: ହେବ, ହେବ ସୁଲେଖା । ତୁମେ ବ୍ୟସ୍ତ ହୁଅନି । ତୁମକୁ ଯାହା କହିଲି ସେଇଆ କର । ଅଧିକ କଥା ଆଉ ଫୋନ୍‌ରେ କହିବା ଉଚିତ ନୁହେଁ । ମନେରଖ, କାଲି ରାତି ଏଗାରଟାରେ ତମର ପ୍ଲେନ୍ । ପ୍ଲେନ୍‌ରୁ ଓହ୍ଲେଇ ଏଆରପୋର୍ଟରୁ ଏଆରଲାଇନ୍‌ସ ଗାଡ଼ିରେ ବସିବ ସିଟି ଅଫିସକୁ । ମୁଁ ସେଠି ତମ ପାଇଁ ଅପେକ୍ଷା କରିଥିବି । ବାସ୍ ଫୋନ୍‌ଟା ଥୋଇଦେଲି ।

ଏଥର ମୁଁ ନିଶ୍ଚିତ । ସବୁ କାମଦାମ ଶେଷ । ମଝିରେ ଆଉ ମାତ୍ର ଚବିଶଟି ଘଣ୍ଟା । ମନେହେଉଛି କାମଟା ସୁରୁଖୁରୁରେ ହୋଇଯିବ । ତା'ପରେ... ତା'ପରେ... ଲକ୍ଷେ ଟଙ୍କା ଆସିଯିବ ମୋ ହାତମୁଠାକୁ । ମନଇଚ୍ଛା ରୀଟାକୁ ନେଇ ଆଗେ ଘୂରି ଆସିବି ଥୋଡ଼ାଏ । ବିଚାରୀ ମୋ ପାଇଁ ଅନେକ କଷ୍ଟ ପାଇଲାଣି, ଦୁଃଖ ବି ଭୋଗିଲାଣି ।

ଫେରିଆସିଲି ଘରକୁ ।

ରୀଟା ମୋତେ ଏତେ ଶୀଘ୍ର ଫରି ଆସିବାର ଦେଖି ଆଶ୍ଚର୍ଯ୍ୟ ହେଲା । କହିଲି : କାମ ଆଉ ବିଶେଷ କିଛି ନଥିଲା । ତେବେ କାଲି ରାତିରେ ଫେରୁ ଫେରୁ ଅନେକ ଡେରି

ହୋଇଯିବ । ତମେ ମୋଟେ ବ୍ୟସ୍ତ ହେବ ନାହିଁ । ଖାଇପିଇ ଶୋଇ ଯାଇଥିବ । ମୁଁ ଆସି ଡାକି ଉଠାଇବି ।

ମୁଁ ଘର ଭିତରେ ପଶିଲି । ରୀତା କିନ୍ତୁ ନୀରବରେ ଦରଜା ବନ୍ଦ କରିଦେଲା । ଫେରି ଆସିଲା ମୋ ପଛେ ପଛେ ।

\+ \+ \+

ଦିନଟା ବ୍ୟସ୍ତତା ଭିତରେ କଟିଗଲା । ଏଣେତେଣେ ଦି ଚାରିଟା ପଚରା ଉଚରା । ସୁଲେଖାର ସେଇ ଗାଡ଼ିର ସୂତ୍ରଧରି ଆଉ କେଇଟା ଜାଗା ବରେନ୍ ସହିତ ମୁଁ ବୁଲିଲି । ସୁଲେଖାକୁ ଅନ୍ୟମାନେ କିଏ କେଉଁଠି ଦେଖିଥିବା କଥା ବି ଜମାନବନ୍ଦୀ ନିଆହେଲା । ତା'ପରେ ଆମେ ଫେରିଆସିଲୁ ହେଡ଼କ୍ୱାର୍ଟରକୁ । ବରେନ୍ ସହିତ ବସି ଆଲୋଚନା କଲି ଅନେକ ବେଳ ଯାଏ । ତା'ପରେ ଅଫିସ୍ ଛାଡ଼ିଲି । ଅଫିସ୍ ଛାଡ଼ିବା ପୂର୍ବରୁ ରୀତାକୁ ଫୋନ୍ କରି ଜଣାଇଦେଲି, ମନେଅଛି ତ ରୀତା, ଆଜି ଫେରୁ ଫେରୁ ଅନେକ ରାତି ହୋଇଯିବ । ଚିନ୍ତା କରିବ ନାହିଁ ।

ସିଗାରେଟ୍ ଲଗେଇଲି ଗୋଟାଏ । ଏଥର ମୋର ଅଭିଯାନ ଆରମ୍ଭ । ଚରମ ସଫଳତାର ଦୁଆରେ ପହଞ୍ଚି ମୁଁ କିପରି ଅଦ୍ଭୁତ ଏକ ରୋମାଞ୍ଚ ଅନୁଭବ କରୁଥିଲି ।

ଠିକ୍ ରାତି ସାଢ଼େ ବାରଟାରେ ଯାଇ ପହଞ୍ଚିଲି ଏଆର୍‌ଲାଇନ୍‌ସ ଅଫିସରେ । ଭିଡ଼ ବେଶି ନାହିଁ । ମାତ୍ର ଚାରି ପାଞ୍ଚଖଣ୍ଡ ଗାଡ଼ି ଥୁଆ ହୋଇଛି ବାହାରେ । ମୁଁ ମୋ ଗାଡ଼ିଟା ଗୋଟାଏ ସୁବିଧା ଜାଗାରେ ରଖି ଅଫିସ୍ ଭିତରକୁ ଗଲି । ନା, ଏଆର୍‌ପୋର୍ଟରୁ ବସ୍ ଆସି ନାହିଁ । ପଞ୍ଚିବାକୁ ହୁଏତ ପନ୍ଦର କୋଡ଼ିଏ ମିନିଟ୍ ଡେରି ହୋଇପାରେ ।

ତା'ହେଲେ ?

ସାମ୍‌ନା ଫୋନ୍ ବୁଥ୍‌ଟା ମୋର ଦୃଷ୍ଟି ଆକର୍ଷଣ କଲା । ଏହା ଭିତରେ କାମ କେତେଟା ସାରିନେବା ହିଁ ଭଲ । ସୁଲେଖା ଚିଠିରେ ରାଜେନ୍ଦ୍ର ପ୍ରସାଦଙ୍କୁ କୁହା ହୋଇଥିଲା, ସୋମବାର ରାତି ସାଢ଼େ ବାରଟା ପରେ ଫୋନ୍‌ରେ ସେ ସର୍ବଶେଷ ନିର୍ଦ୍ଦେଶ ପାଇବେ । ଆହୁରି ମଧ୍ୟ କୁହା ହୋଇଥିଲା, ସେତେବେଳେ ସେ ଯେପରି ଫୋନ୍ ପାଖରେ ଥାଆନ୍ତି ।

ମୁଁ ଫୋନ୍ ବୁଥ୍ ଭିତରେ ପଶି କାଚ ଦରଜା ବନ୍ଦ କଲି । ଡାଏଲ କଲି ରାଜେନ୍ଦ୍ର ପ୍ରସାଦଙ୍କ ନମ୍ବର । ନା ନା, ଚିଠିର କଥା ସେ ଅମାନ୍ୟ କରି ନାହାନ୍ତି । ନିଜେ ସେ ଫୋନ୍ ଉଠାଇଲେ : ହ୍ୟାଲୋ ?

: ଟଙ୍କା ଯୋଗାଡ଼ କରିଛନ୍ତି ? କିଛି ଭଣିତା ନ କରି ଯଥାସମ୍ଭବ କର୍କଶ ସ୍ୱରରେ ପ୍ରଶ୍ନ କଲି ।

: ହଁ ।

: ଭଲକଥା । ଏଥର ତା'ହେଲେ ପରବର୍ତ୍ତୀ କାର୍ଯ୍ୟକ୍ରମ ଶୁଣି ନିଅନ୍ତୁ । ଠିକ୍ ଦୁଇଟା ସମୟରେ ଆପଣ ଘରୁ ବାହାରିବେ । ସାଙ୍ଗରେ ଡ୍ରାଇଭର ନେବେ ନାହିଁ । ଆପଣଙ୍କ ରୋଲ୍‌ସ ରଏସ୍ ଆପଣ ନିଜେ ଚଳେଇବେ । ମନେରଖିବେ, ଆପଣ ଘରୁ ବାହାରିବା ସଂଗେ ସଂଗେ ଆମ ଲୋକ ଆପଣଙ୍କ ଉପରେ ନଜର ରଖିବେ । ଆପଣ ଡାଇମଣ୍ଡ ହାର୍‌ବର୍ ରୋଡ଼ରେ

ଯାଉ ଯାଉ ହଠାତ୍ ରାସ୍ତାର କୌଣସି ଗୋଟାଏ ଜାଗାରେ ଟର୍ଚ୍ଚ ଆଲୋକର ସଂକେତ ତିନିଥର ପାଇବେ । ସଂଗେ ସଂଗେ ଟଙ୍କା ଥଳିଟା ବାହାରକୁ ଫିଙ୍ଗିଦେବେ । ଗାଡ଼ି ଠିଆ କରିବେ ନାହିଁ । ନିଜ ବାଟରେ ଚାଲିଯିବେ । ଟଙ୍କା ଯଦି ଠିକ୍ ଥାଏ ଏବଂ କଥାର ଯଦି ଖିଲାପ୍ ନ ହୁଏ ତା'ହେଲେ ଆପଣଙ୍କ ଝିଅ ଅକ୍ଷତ ଶରୀରରେ ଘରକୁ ଫେରିଯିବ । ଘରେ ଝିଅ ସହିତ ଆପଣଙ୍କର ଦେଖା ହେବ । ଯାହା କହିଲି ସବୁ ମନ ଦେଇ ଶୁଣିଲେ ତ ?

: ହଁ, ଶୁଣିଲି । ତା'ପରେ ?

: ତା'ପରେ ଆଉ କ'ଣ ? ମୋର କହିବା କଥା କୌଣସି ଗଣ୍ଡଗୋଳ ଭିତରକୁ ଯିବେ ନାହିଁ । ଗଲେ ଆପଣଙ୍କର କ୍ଷତି ହେବ ।

କାମ ଠିକ୍ ବାଟରେ ଆଗେଇ ଚାଲିଛି । ସବିତାର ବି ସ୍ୱାମୀଙ୍କ ଉପରେ ଆଧିପତ୍ୟ ପ୍ରଚଣ୍ଡ । ତେବେ ପୋଲିସ୍ ଛାଡ଼ିବ ନାହିଁ । ସୁଲେଖା ଘରକୁ ଫେରିଲେ, ତା'ର ସେହି ଭଙ୍ଗା ଗାଡ଼ି ବ୍ୟାପାରରେ ତାକୁ ଜେରା ନ କରି ଛାଡ଼ିବ ନାହିଁ । ଆଗରୁ ସୁଲେଖାକୁ ଟିକିଏ ସାବଧାନ କରେଇ ଦେଲେ, ସେ ଠିକ୍ ଠିକ୍ ଜବାବ ଦେଇପାରିବ ।

ଏଆର୍‌ପୋର୍ଟରୁ ଗାଡ଼ି ଆସି ପହଞ୍ଚିଗଲା । ମୋଟ କୋଡ଼ିଏ ପଚିଶ ଜଣ ଯାତ୍ରୀ ଥିଲେ । ସୁଲେଖା ହସି ହସି ଓହ୍ଲେଇ ଆସିଲା ଗାଡ଼ିରୁ । ପିନ୍ଧିଥିଲା ସେଇ ହାଲ୍‌କା ନୀଳ ରଙ୍ଗର ସାଦା ଗାରକଟା ପୋଷାକ । ଆଖିରେ ଗଗ୍ଲାସ୍ ।

ମୋ ପଛେ ପଛେ ଆମ ଗାଡ଼ି ପାଖକୁ ଆଗେଇଲା ।

ଗାଡ଼ିରେ ବସି ସୁଲେଖା ମୁହଁ ଖୋଲିଲା : ଆଉ, ଖବର କ'ଣ ?

: ଭଲ । ଏଯାଏ ସବୁ ଠିକ୍ ଠିକ୍ ଚାଲିଛି ।

: କାଲି ଯେ ଆପଣ ମୋତେ ପୋଲିସ୍ କଥା ଫୋନ୍‌ରେ କହିଲେ ?

: ହଁ ସୁଲେଖା । ଅସୁବିଧା ହୋଇଛି ତମର ସେଇ ଭଙ୍ଗା ଗାଡ଼ିଟା ପାଇଁ, ପୋଲିସ୍ ସେଇଟାକୁ ପାଇ ନାନା କଳ୍ପନା ଜଳ୍ପନାରେ ବ୍ୟସ୍ତ । ତମକୁ ଯେତେବେଳେ ପୋଲିସ୍ ଜେରା କରିବ, ତମେ କହିବ ଶନିବାର ଗାଡ଼ିଟା ଗ୍ୟାରେଜରୁ ବାହାର କଲାବେଳେ ଧକ୍କା ଲାଗି ଚେପା ହୋଇ ଯାଇଥିଲା । ସେଇ ଅବସ୍ଥାରେ ଗାଡ଼ି ନେଇ ତମେ ବାହାରି ଯାଇଥିଲ ।

: ଆଚ୍ଛା ଆଚ୍ଛା, ସେତେବେଳେ ଦେଖାଯିବ । ବର୍ତ୍ତମାନ ମୋର ଆଉ ଭୂମିକା କ'ଣ ?

: ନା ଆଉ କିଛି ନାହିଁ । ତମେ ଯାଇ ସୈକତାବାସ କେବିନ୍‌ରେ ଆରାମରେ ମୁହଁ ହାତ ଧୋଇ ଶୋଇ ପଡ଼ିବ । ଆଉ ମୁଁ ଟଙ୍କା ଥଳି ଧରି ଆସି ତମ ଭାଗ ତମକୁ ବୁଝେଇ ଦେଇ ନିଶ୍ଚିତ ହେବି ।

\+ \+ \+

ସୁଲେଖାକୁ ସୈକତାବାସରେ ଛାଡ଼ି ଦେଇ ମୁଁ ଫେରି ଆସିଲି କର୍ମସ୍ଥଳୀକୁ । ଡାଇମଣ୍ଡ ହାରବ୍‌ର ରୋଡ଼ରେ ଗୋଟାଏ ନିର୍ଜନ ଜଙ୍ଗଲିଆ ଜାଗା ଆଗରୁ ଠିକ୍ କରିଥିଲି । ଛୋଟ ପାହାଡ଼ ପରି ଉଚ୍ଚା ଜାଗାଟାଏ । ରାସ୍ତା ପାଖରୁ ଅଳ୍ପ ଦୂରରେ ।

ଗାଡ଼ି ବ୍ୟାକ୍ କରି ସେଇ ଜଙ୍ଗଲିଆ ଜାଗାଟାରେ ରଖିଦେଲି । ଇଞ୍ଜିନ ବନ୍ଦ କଲି, ଆଲୁଅ ନିଭେଇଲି । ପାଞ୍ଚସେଲ୍‌ର ଟର୍ଚ୍ଚଟା ଧରି ବାହାରି ଆସିଲି ବାହାରକୁ । ତା'ପରେ ଏକ ନିରାପଦ ସ୍ଥାନରେ ଆଣ୍ଠୁମାଡ଼ି ବସି ଗୋଟାଏ ସିଗାରେଟ୍ ଲଗେଇଲି ।

ବର୍ତ୍ତମାନ ମୋ ଘଡ଼ିରେ ଦୁଇଟା ଦଶ । ରାଜେନ୍ଦ୍ର ପ୍ରସାଦ ଯଦି ଠିକ୍ ସମୟରେ ବାହାରି ଥାଆନ୍ତି, ତେବେ ଏଠାରେ ପହଞ୍ଚିବାକୁ ଆହୁରି ଦଶ ମିନିଟ୍ ସମୟ ଲାଗିବ । ଠିକ୍ ସେ ଆସିବେ ତ ?

ଯଦି ଶେଷ ମୁହୂର୍ତ୍ତରେ ମତ ପରିବର୍ତ୍ତନ କରିଥାଆନ୍ତି । ଯଦି ବ୍ରିଜଲାଲକୁ ସାଂଗରେ ଧରି ଆସନ୍ତି, ଅଥବା ପୋଲିସ୍‌ରେ ଖବର ଦିଅନ୍ତି ?

ନା ନା, ଏତେ ସାହସ ତାଙ୍କର ହୁଏତ ହେବ ନାହିଁ । ତା'ଛଡ଼ା ସବିତା ତ ସେଠି ଅଛି । ସବିତା ନିଶ୍ଚୟ ତାଙ୍କୁ ବାହାର କରି ଦେଇ ନିଜେ ବାହାରିବ । ନହେଲେ...

ମୋ ଭାବନା ସ୍ଥିର ହୋଇଗଲା । ଦୂରରୁ ଗାଡ଼ିର ହେଡ୍‌ଲାଇଟ୍ ଆଗେଇ ଆସୁଥିବାର ଦେଖାଗଲା । ହୁଏତ ରାଜେନ୍ଦ୍ର ପ୍ରସାଦ ଆସୁଛନ୍ତି ।

ସିଗାରେଟ୍‌ଟା ନିଭେଇ ମୁଁ ସଜ ହୋଇ ବସିଲି । ହାତର ଟର୍ଚ୍ଚଟା ଥରି ଉଠିଲା । ଛାତି ଭିତରେ କିପରି ଦ୍ରୁତ ସ୍ପନ୍ଦନ ଅନୁଭବ କଲି ।

ହଁ, ରାଜେନ୍ଦ୍ର ପ୍ରସାଦଙ୍କ ଗାଡ଼ି ଏଇଟା । ମାତ୍ର ପଚିଶ ଗଜ ଦୂରରେ । ସଂଗେ ସଂଗେ ଟର୍ଚ୍ଚର ସୁଇଚ୍ ଟିପିଲି, ବନ୍ଦ କଲି, ଟିପିଲି, ବନ୍ଦ କଲି, ଟିପିଲି ଏବଂ...

ହଠାତ୍ ଧପ୍ କରି ଗୋଟାଏ ଶବ୍ଦ ହେଲା । ଗାଡ଼ିଟା ଚାଲିଗଲା ସିଧା ରାସ୍ତାରେ । ଗାଡ଼ିର ଗତି କମିଲା ନାହିଁ ଟିକିଏ ହେଲେ ।

ସାବାସ୍ ରାଜେନ୍ଦ୍ର ପ୍ରସାଦ !

ନିର୍ଦ୍ଦେଶ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି ।

ଗାଡ଼ି ପଛର ଲାଲ ଆଲୋକଟା ଶେଷ ପର୍ଯ୍ୟନ୍ତ ଅଦୃଶ୍ୟ ହୋଇଗଲା ।

ମୋ ସାମ୍ନାର ପାଞ୍ଚ ଛଅ ହାତ ଦୂରରେ ପଡ଼ିରହିଚି ଆଟାଚିଟା । ଦୃଷ୍ଟି ମୋର ଅଟକି ରହିଚି ସେଇଠି । କିନ୍ତୁ ଉଠି କରି ଆଟାଚିଟା ଗୋଟେଇ ଆଣିବାର ବଳ ମୋ ଦେହ ମନରେ ନାହିଁ । ସମଗ୍ର ଦେହଟା ଯେପରି ଅବଶ ହୋଇ ପଡ଼ିଚି । ତେବେ କ'ଣ... ତେବେ କ'ଣ...

ଏକ ସମୟରେ ସମଗ୍ର ସାହସ ଠୁଳ କରି ହଠାତ୍ ଡେଇଁ ପଡ଼ିଲି ଆଟାଚି କେସ୍‌ଟା ଉପରକୁ । ବେଶ୍ ବଡ଼ ଆଟାଚିକେସ୍‌ଟା । ଗୋଟାଏ ଛୋଟ ସୁଟ୍‌କେସ୍ ସଂଗେ ସମାନ ହେବ । ଉଠାଇ ଦେଖିଲି । ବେଶ୍ ଓଜନ । ପାଞ୍ଚ ଲକ୍ଷ ଟଙ୍କା ଏଇକ୍ଷିଣା ମୋ ହାତମୁଠାରେ । ନା, ଏଠାରେ ଆଉ ସମୟ ନଷ୍ଟ କରିବା ଉଚିତ ନୁହେଁ । ଆଟାଚିଟା ଉଠାଇ ନେଇ ଗାଡ଼ିରେ ରଖିଲି । ଉର୍ଦ୍ଧ୍ୱଶ୍ୱାସରେ ଛୁଟାଇ ଦେଲି ମୋ ଗାଡ଼ିଟାକୁ ।

ସୈକତାବାସରେ ମୋ କେବିନ୍ ସାମ୍ନାରେ ଗାଡ଼ି ରଖି ଓହ୍ଲାଇଲି । ପଛ ସିଟ୍‌ରୁ ଆଟାଚିଟା ଉଠାଇବାକୁ ଯାଇ ଆଶ୍ଚର୍ଯ୍ୟ ହୋଇ ଚାହିଁଲି ଚାରିଆଡ଼କୁ । କିନ୍ତୁ... କିନ୍ତୁ... ଏପରି ତ ହେବାର କଥା ନୁହେଁ । ସବିତାର ଗାଡ଼ି କାହିଁ ? ଏହି ସମୟ ଭିତରେ ତା'ର ତ ଏଠାରେ ପହଞ୍ଚି ଯିବାର କଥା । ତା'ହେଲେ...

ହୁଏତ ସେ ଘରୁ ବାହାରିଲାବେଳେ ବ୍ରିଜଲାଲ ହାବୁଡ଼ରେ ପଡ଼ିଯାଇଛି, ଅଥବା... ଧେତ୍, ସବିତାର ଯା' ହେବାର ହେଉ, ମୋର ସେଥିରେ କ'ଣ ଅଛି । ସେ କେତେବେଳେ ଆସିବ, ମୁଁ ତା' ପାଇଁ ଟଙ୍କା ଧରି ବାଟ ଚାହିଁ ବସିଥିବି ? ନା, ମୋଟେ ସମ୍ଭବ ନୁହେଁ, ମୋ ଅଂଶତକ ମୁଁ ନେଇ ବାକି ଟଙ୍କା ତକ ସୁଲେଖା ହାତରେ ଧରେଇ ଦେଇ, ମୁଁ ଚମ୍ପଟ ଦେବି ।

କିନ୍ତୁ କେବିନ୍‌ଟା ଅନ୍ଧକାର କାହିଁକି ? ସୁଲେଖା କ'ଣ ଆଲୁଅ ଜାଳି ନାହିଁ ?

ଦରଜା ଠେଲି ଭିତରକୁ ପଶିଲି ।

ବୈଠକଖାନାରେ ତ ସୁଲେଖା ନାହିଁ । ତେବେ ଗଲା କୁଆଡ଼େ ?

ଧୀରେ ଧୀରେ ସୁଲେଖାର ନାଁ ଧରି ଡାକିଲି ।

ତଥାପି ସ୍ୱର ଶବ୍ଦ କିଛି ଶୁଣିଲି ନାହିଁ । ଆଶ୍ଚର୍ଯ୍ୟ, ସୁଲେଖାର କ'ଣ ହେଲା ? ତେବେ ଙ୍କ'ଣ ଶୋଇ ପଡ଼ିଲା ନିଶ୍ଚିନ୍ତରେ । ବୋଧହୁଏ ଶୋଇ ପଡ଼ିଛି ।

ଆଲୁଅ ଜଳେଇଲି ।

ଆଟାଚିଟା ଟେବୁଲ ଉପରେ ରଖି ଶୋଇବା ଘର ଦୁଆରେ ନକ୍ କଲି । ତଥାପି ସୁଲେଖା ଉତ୍ତର ଦେଲା ନାହିଁ ।

ନା, ଆଉ ଅପେକ୍ଷା କରିବାକୁ ସମୟ ନାହିଁ । ଦରଜା ଠେଲି ଦେଲି । ଆଉଜା ହୋଇଥିଲା, ଖୋଲିଗଲା । ଆଲୁଅ ଜଳେଇଲି । ହଁ, ମୋ ଅନୁମାନ ଠିକ୍ । ସୁଲେଖା ଦିଆଲ ଆଡ଼କୁ ମୁହଁ କରି ଆରାମରେ ଶୋଇଛି । ନିଶ୍ଚିନ୍ତ ହେଲି ।

: ସୁଲେଖା, ଏ ସୁଲେଖା ! ଏଥର ଉଠିପଡ଼ । ଟଙ୍କା ଆଣିଛି । କି ନିଦରେ ବାବା । ଉଠୁଚି ନା ରଙ୍ଗ ହେଉଚି ? ସୁଲେଖା ଦେହରେ ହାତ ମାରି ହଲେଇ ଦେବାକୁ ଯାଇ ଚମକି ପଡ଼ିଲି । ହାତଟା ମୋର କମ୍ପି ଉଠିଲା ।

ସୁଲେଖାର ଦେହଟା ଏତେ ଥଣ୍ଡା ଲାଗୁଛି କାହିଁକି ?

ନଇଁ ପଡ଼ିଲି ତା' ମୁହଁ ପାଖରେ ।

ସର୍ବନାଶ ।

ଜିଭଟା ବାହାରି ପଡ଼ିଛି ବାହାରକୁ । ଫେଣ ଜମି ଯାଇଛି ମୁହଁରେ । ନାଇଲନ୍‌ର ଗୋଟାଏ ମୋଜା ଦଉଡ଼ି ପରି ବନ୍ଧା ହୋଇ ଭିଡ଼ା ହୋଇଛି ସୁଲେଖା ଗଳାରେ । ସୁଲେଖା ମରିଯାଇଛି !

କ'ଣ ହେଲା ? ମୋ ଛାତିର ସ୍ପନ୍ଦନ ତ ଆଉ ଶୁଣାଯାଉନି । ଗୋଡ଼ ଦି'ଟା ବରଡ଼ା ପତ୍ର ପରି ଥରୁଛି । ଗଳା ଶୁଖି ଯାଉଛି, ଶରୀର ଅବଶ.... ମୁଁ କ'ଣ ଚେଇଁ ରହିଚି ନା ସ୍ୱପ୍ନ ଦେଖୁଚି ?

ନା, ସ୍ୱପ୍ନ ନୁହେଁ ବାସ୍ତବ । ସୁଲେଖା ମରିଚି । ସୁଲେଖା ଖୁଣ୍ ହୋଇଛି ।

କିନ୍ତୁ... ମୋର ସମସ୍ତ ଚିନ୍ତା ଭାବନା ନଷ୍ଟ ହୋଇ ଯାଇଥିଲା । ମୁଁ ପଙ୍ଗୁ ହୋଇ ଯାଇଥିଲି । ଘରଟା ମୋ ଆଖି ସାମ୍‌ନାରେ ବାତ୍ୟାଚକ୍ର ପରି ଘୂରିବାକୁ ଲାଗିଲା । ମୁଁ ଠିଆ ହୋଇପାରୁ ନଥିଲି । ମୁଁ ପଡ଼ିଯିବି ହୁଏତ । ହଁ, ପଡ଼ି ଯାଉ ଯାଉ ଆଲମିରାଟା ଧରି ପକାଇ କୌଣସି ପ୍ରକାର ଠିଆ ହୋଇ ରହିଲି । ମନେପଡ଼ିଲା, ଆଲମିରାରେ ଗୋଟାଏ ଅଧା ସ୍କଚ୍ ବୋତଲ ରହିଛି । ସଂଗେ ସଂଗେ ଟାଣି ଆଣି ଠିପି ଖୋଲି, ଗଳାରେ ବୋତଲଟା ଓଲଟେଇ ଦେଲି ।

ଆଃ... ଛାତି ଭିତରଟା ଏତେବେଳକେ ଯେପରି ଟିକିଏ ହାଲ୍‌କା ଲାଗିଲା । ନିଦରୁ ଉଠିଲା ପରି ମନେହେଲା । ଧୀରେ ଧୀରେ ମୋର ଚେତନା ଯେପରି ଫେରି ଆସିଲା । ଆଖି ଆଗରେ ଭାସି ଉଠିଲା ସୁଲେଖାର ମୃତ ଦେହଟା । ସାମ୍‌ନାରେ ଶୋଇଛି । ଏହାପରେ

ମୋତେ କଠୋର ବାସ୍ତବର ସମ୍ମୁଖୀନ ହେବାକୁ ପଡ଼ିବ । କିନ୍ତୁ ଏଇ ମୁହୂର୍ତ୍ତରେ କ'ଣ ମୋର କର୍ତ୍ତବ୍ୟ । ଅନ୍ତତଃ ସର୍ବପ୍ରଥମେ ସବିତାକୁ ସମ୍ବାଦଟା ଦେବାକୁ ହେବ । କିପରି ? ଫୋନ୍, ବର୍ତ୍ତମାନ ଫୋନ୍ ହିଁ ଏକମାତ୍ର ଦ୍ରୁତ ମାଧ୍ୟମ ।

ଡାଏଲ୍ ଘୂରେଇଲି । ଖାନ୍‌ସମା ଫୋନ୍ ଧରିଲା । ସବିତାକୁ ଟିକିଏ ଡାକି ଦେବାକୁ କହିଲି । ଜରୁରୀ ଦରକାର ।

: କ୍ଷମା କରିବେ ସାର୍ । ମିସେସ୍ ପ୍ରସାଦ ବର୍ତ୍ତମାନ ଶୋଇଛନ୍ତି । ସେ ଭୀଷଣ ଅସୁସ୍ଥ । ଡାକ୍ତର ତାଙ୍କୁ ନିଦ ଔଷଧ ଦେଇ ଶୁଆଇ ପକାଇଛନ୍ତି । ମୁଁ ଦୁଃଖିତ । ମୋତେ କ୍ଷମା କରିବେ । ଏତିକି କହି ଖାନ୍‌ସାମା ଅପର ପ୍ରାନ୍ତରୁ ରିସିଭରଟା ରଖିଦେଲା ।

ମହା ସମସ୍ୟା ତ ! ସତରେ କ'ଣ ସବିତା ଅସୁସ୍ଥ ହୋଇପଡ଼ିଲା, ନା ସମସ୍ତଙ୍କ ଆଖିରେ ଧୂଳି ଫିଙ୍ଗି ରାତ୍ରି ଅଭିଯାନରେ ବାହାରିବା ପାଇଁ ସେପରି ଛଳନା କଲା । ତା'ହେଲେ ତା'ର ଉପସ୍ଥିତି ବି ଏଠାରେ ଉଚିତ ଥିଲା । ଘଟଣାର ସ୍ରୋତ ଯେପରି ଭିନ୍ନମୁଖୀ ମନେହେଉଥିଲା । ମୋ କାର୍ଯ୍ୟର ଧାରା ସହିତ ମୁଁ ସାମ୍ୟ ଖୋଜି ପାଉ ନଥିଲି । କୋଉଠି ଯେପରି ଟିକିଏ ବ୍ୟତିକ୍ରମ ଘଟି ଯାଇଛି । ସେଇଥିପାଇଁ ମୋ ହିସାବ ମିଳୁ ନାହିଁ ।

କିନ୍ତୁ ଏଇ ମୁହୂର୍ତ୍ତରେ ଅଙ୍କ କଷି ହିସାବ ମିଳେଇବାକୁ ଗଲେ ସବୁ ଭୁଲ୍ ହୋଇଯିବ । ତେଣେ ରାଜେନ୍ଦ୍ର ପ୍ରସାଦ ଘରେ ପହଞ୍ଚି ସୁଲେଖାକୁ ନ ପାଇ ହୁଏତ ପୋଲିସରେ ସମ୍ବାଦ ଦେବେ । ପୋଲିସ୍ ଯଦି ତତ୍ପର ହୁଏ ଆଉ ମୋର ରକ୍ଷା ନାହିଁ ! ସେତେବେଳେ ବ୍ୟାଙ୍କ ଲକରରେ ରକ୍ଷିତ ସେଇ ଟେପ୍ ମୋତେ ଆଉ ବଂଚେଇ ପାରିବ ନାହିଁ । କାରଣ ନାରୀ ଅପହରଣ ସହିତ ଖୁନ୍‌ର ଆଦୌ ସଂପର୍କ ନାହିଁ । ତେଣୁ ଖୁନ୍ ଅପରାଧରୁ କେହି ମୋତେ ବଂଚେଇ ପାରିବେ ନାହିଁ । ଭାଗ୍ୟର ବିଡ଼ମ୍ବନା ଛଡ଼ା ଏହାକୁ ଆଉ କ'ଣ କୁହାଯାଇପାରେ । ଦୁନିଆରେ ଏତେ ଜାଗା ଥାଉ ଥାଉ ସୁଲେଖା ଖୁନ୍ ହେଲା ମୋରି ଭଡ଼ାନିଆ କେବିନ୍‌ରେ !!

କିନ୍ତୁ ଆଉ ସେକେଣ୍ଡଟିଏ ବି ନଷ୍ଟ କରିବା ଉଚିତ ନୁହେଁ । ମୋତେ ବଂଚିବାର ପଥ ଆବିଷ୍କାର କରିବାକୁ ହେବ । ଏଇ କେବିନ୍ ଭିତରେ ସୁଲେଖାକୁ ଏଇ ଅବସ୍ଥାରେ ଛାଡ଼ି ପଳେଇ ଯାଇ ହେବ ନାହିଁ । କାରଣ ଯେତେବେଳେ ସୁଲେଖାର ମୃତ ଦେହ ଏଠାରୁ ପୋଲିସ୍ ଆବିଷ୍କାର କରିବ, ତା' ସହିତ ଆବିଷ୍କୃତ ହେବି ମୁଁ । କେବିନ୍ ମୁଁ ଭଡ଼ା ନେଇଛି । ମୋ ନାଁ ସୈକତାବାସ ରେଜିଷ୍ଟରରେ ଲେଖା ରହିଛି । ଜଳ, ସ୍ଥଳ, ଆକାଶ, ମୁଁ ଯେଉଁଠି ଥାଏ, ପୋଲିସ୍ ମୋତେ ଆବିଷ୍କାର କରିବ ହିଁ । ତେଣୁ ସୁଲେଖାକୁ ଏଠାରୁ ନେଇ କୌଣସି ଏକ ନିର୍ଜନ ସ୍ଥାନରେ ଫିଙ୍ଗିଦେଇ ଆସିବାକୁ ହେବ । ବଣ ଜଙ୍ଗଲ, ଖାଲ ଢିପ, ସ୍ଥାନ ଅନେକ ଅଛି ଏ ଅଞ୍ଚଳରେ । ଆଉ ଠିଆ ହୋଇ ଖାଲି ଚିନ୍ତା କଲେ ଚଳିବ ନାହିଁ ।

ମନରେ ଅସୀମ ବଳ ସଞ୍ଚୟ କରି, ସୁଲେଖାର ମୃତ ଦେହଟାକୁ ଉଠେଇ ନେଇ ଗାଡ଼ି ପଛର ଲଗେଜ୍ କେରିଅର୍‌ରେ ଭରିଲି । ଲଗେଜ୍ କେରିଅର୍ ବନ୍ଦ କରି ଫେରି ଆସିଲି ପୁଣି କେବିନ୍ ଭିତରକୁ । ବିଛଣା ଚାଦରଟା ଭଲ ଭାବରେ ବିଛେଇ ଦେଲି । ସୁଲେଖାର ସୁଟ୍‌କେଶ୍ ଓ ଲୁଗାପଟା ସବୁ ଗୋଟେଇ ନେଇ ବାହାରି ଆସିଲି ବେଡ୍‌ରୁମ୍‌ରୁ । ସବୁଆଡ଼େ ଥରେ ସତର୍କ ଦୃଷ୍ଟି ବୁଲେଇ ନେଲି, କେଉଁଠି କିଛି କ୍ଲୁ ପଡ଼ି ରହିଲା ନାହିଁ ତ ! ହଠାତ୍ ମୋ ଆଖି ଅଟକିଗଲା ଆଟାଚି କେସ୍‌ଟା ଉପରେ । ଆରେ ! କୁବେର ଭଣ୍ଡାରକୁ ଯେ ଏଠାରେ ଛାଡ଼ି ଯାଉଚି । ଆଟାଚିଟା ଉଠେଇବାକୁ ଯାଇ ଅମକି ଛିଡ଼ା ହୋଇଗଲି । ନିଃସନ୍ଦେହରେ

ଏହା ମୋ ପାଇଁ କୁବେର ଭଣ୍ଡାର । କିନ୍ତୁ ଏ ଟଙ୍କା ଯେ କଳଙ୍କର, ଖୁଣ୍‌ର । ବିବେକ ଦଂଶନ କଲା । ନା, ଏ ଟଙ୍କା ମୁଁ ଛୁଇଁବି ନାହିଁ । ନ ଛୁଇଁଲେ ବି ଆଟାଚି କେସ୍‌ଟା ତ ଏଠାରେ ଛାଡ଼ି ଯାଇ ହେବ ନାହିଁ, ବରଂ ସୁଲେଖା ସହିତ ଟଙ୍କାତକ ଫିଙ୍ଗି ଦେବି ସେହି ଅତଳ ଗହ୍ୱରରେ । ଆଟାଚି କେସ୍‌ଟା ଉଠେଇ ନେଇ ସୁଲେଖା ପାଖରେ ରଖିଦେଇ ଲଗେଜ୍ କେରିଅର୍‌ରେ ତାଲା ବନ୍ଦ କଲି । ଆଉ ଥରେ ପଛକୁ ଫେରି କେବିନ୍ ଦୁଆରର ତାଲା ବନ୍ଦ କଲି । ଫେରି ଆସିଲି ଗାଡ଼ି ପାଖକୁ । ଚାରିଆଡ଼େ ନିବିଡ଼ ଅନ୍ଧକାର । ଗାଡ଼ିର ଦରଜା ଖୋଲି ଭିତରେ ପଶିଲି । ଏଥର ଷ୍ଟାର୍ଟ । ଧୀରେ ଧୀରେ ଆଗେଇ ଗଲି ବଡ଼ରାସ୍ତା ଉପରକୁ ।

ଏଥର ଗାଡ଼ିର ସ୍ପିଡ୍ ଟିକିଏ ବଢ଼େଇ ଦେଲି । ରାତି ପାହିବାକୁ ଆହୁରି ଦୁଇ ଅଢ଼େଇ ଘଣ୍ଟା ବାକି ଅଛି । ଯାରି ଭିତରେ ସବୁ କାମ ଶେଷ କରି ମୋତେ ଫେରିଯିବାକୁ ହେବ ଘରକୁ । ଗ୍ୟାରେଜ୍‌ରେ ଗାଡ଼ି ରଖି ମୁଁ ଯାଇ ରୀତା କୋଳରେ...

ଗୋଟାଏ ଦୋଛକି ସିଗ୍‌ନାଲ ପୋଷ୍ଟ ପାଖରେ ଗାଡ଼ିର ଗିଅର ବଦଳେଇଲି ।

ହଠାତ୍ ଏ କ'ଣ ହେଲା ? ଗାଡ଼ିଟା କମ୍ପି କମ୍ପି ଏପରି ସ୍ଥିର ହୋଇଗଲା କାହିଁକି ? ଯଦିଓ ସିଗ୍‌ନାଲ ପୋଷ୍ଟରେ କଣ୍ଟ୍ରୋଲ-ଲ୍ୟାମ୍ପ ନିଷ୍ପ୍ରଭ ତଥାପି ଗୋଟାଏ ଟ୍ରାଫିକ୍ ପୋଲିସ୍ ଠିଆ ହୋଇଛି ସେଠି । ମହା ସମସ୍ୟା ତ । ଗାଡ଼ିଟା ଏଇଠି ଆସି ଇମିତି ନିଜ ଇଚ୍ଛାରେ ଠିଆ ହୋଇ ପଡ଼ିବ ଏହା ମୁଁ ଭାବି ପାରି ନଥିଲି । ଯେତେଥର ଚେଷ୍ଟା କଲି ଗାଡ଼ି ଆଉ ଷ୍ଟାର୍ଟ ନେଲା ନାହିଁ । ଦେଖିଲି ପରୀକ୍ଷା କରି, ସର୍ବନାଶ । ଗିଅର ଶେଷ ଦାନ୍ତଟା କଟି ଯାଇଛି । ଗାଡ଼ି ଆଉ ଇଞ୍ଚେ ବି ଟଳିବ ନାହିଁ ।

ସିଗ୍‌ନାଲ ପୋଷ୍ଟ ଛାଡ଼ି ଦେଖିଲି ପୋଲିସ୍‌ଟା ମୋରି ଆଡ଼କୁ ଧୀରେ ଧୀରେ ଆଗେଇ ଆସୁଛି । ମୋର ସମସ୍ତ ଚିନ୍ତା-ଭାବନା ସ୍ଥିର ହୋଇଗଲା । ମୁଁ ଗାଡ଼ିରେ ଷ୍ଟାର୍ଟ ଦେଇ ଶେଷ ଥର ପାଇଁ ଗିଅର ବଦଳେଇଲି । ଦେହର ସମସ୍ତ ଶକ୍ତି ଠୁଳ କରି ଆକ୍‌ସିଲେଟର ଉପରେ ଚାପ ଦେଲି । କିନ୍ତୁ ନା, ଶେଷ ରକ୍ଷା ବୋଧେ ହୋଇପାରିଲା ନାହିଁ ।

ଟ୍ରାଫିକ୍ ପୋଲିସ୍‌ଟା ଆସି ପହଞ୍ଚି ଯାଇଥିଲା । ସେ କର୍କଶ ସ୍ୱରରେ କହିଲା : କ'ଣ ରାସ୍ତା ବନ୍ଦ କରି ସାରା ରାତିଟା ଏଇଠି କଟେଇ ଦେବେ ନା କ'ଣ ? ମୋ ସାଙ୍ଗରେ କଥା କହୁଥିବା ବେଳେ ଗାଡ଼ି ଭିତରେ ତା'ର ତୀକ୍ଷ୍ଣ ଦୃଷ୍ଟି ଘୂରି ବୁଲୁଥିଲା ।

ନା ମାନେ... ପାଟି ମୋର ଖନି ବାଜି ଯାଉଥିଲା । ଯଥା ସମ୍ଭବ ନିଜକୁ ସଂଯତ କରି କହିଲି, ଗିଅର୍‌ଟାର ବୋଧହୁଏ ବାରଟା ବାଜିଗଲା ।

: ତା' ବୋଲି ଆପଣ ମଝି ରାସ୍ତାଟାରେ ଇମିତି ଠିଆ ହୋଇ ରହିଥିବେ ?

: ନା ନା, ମୋଟେ ନୁହେଁ । ଆଚ୍ଛା ଗ୍ୟାରେଜ୍ ଫ୍ୟାରେଜ୍ ପାଖ ଆଖରେ କେଉଁଠି ଅଛି କି ?

: ସେ କଥା ପରେ ଦେଖାଯିବ । ଆପଣ ଆଗ ମଝି ରାସ୍ତାରୁ ଗାଡ଼ି ହଟେଇଲେ ।

: ହଟେଇବାର ଯେ କିଛି ଉପାୟ ନାହିଁ । କିଛି ଯଦି ମନେ ନ କରନ୍ତି ବରଂ ମୋ ସହିତ ଟିକିଏ ହାତ ଲଗାନ୍ତୁ, ଗାଡ଼ିଟା ଠେଲି ରାସ୍ତାକଡ଼କୁ...

ମୋ କଥା ସେ କାନକୁ ନେଲା କି ନାହିଁ କେଜାଣି, ମୋତେ କହିଲା : ଗାଡ଼ିର କାଗଜପତ୍ର, ଆପଣଙ୍କ ଲାଇସେନ୍‌ସ ବାହାର କରନ୍ତୁ ତ ।

ଲାଇସେନ୍‌ସ ବାହାର କରିବାକୁ ଯାଇ ପ୍ରେସ୍ କାର୍ଡ଼ ଖଣ୍ଡିକ ମଧ୍ୟ ମୋ ପକେଟ୍‌ରୁ ବାହାରି ଆସିଲା । ଟ୍ରାଫିକ୍ ପୋଲିସ୍ ଲାଇସେନ୍‌ସଟା ଦେଖିସାରି ପ୍ରେସ୍ କାର୍ଡ଼ଟା ଏପାଖ ସେପାଖ ବୁଲେଇ ଦେଖି କହିଲା : ଏଇଟା କ'ଣ ?

: ପ୍ରେସ୍‌କାର୍ଡ଼ । ହେଡ୍‌କ୍ୱାର୍ଟରରେ ମୁଁ ପ୍ରେସ୍ ଅଫିସର ।

: ସେ କଥା ତ ମୋତେ ଆଗରୁ କହିବେ । ଟ୍ରାଫିକ୍ କନେଷ୍ଟବଲ୍‌ଟି ମୋତେ ସଲାମ୍ ବଜେଇ ସଂଗେ ସଂଗେ ଗାଡ଼ି ଠେଲିବାକୁ ଆରମ୍ଭ କରିଦେଲା । ରାସ୍ତା କଡ଼ରେ ଗାଡ଼ି ଠିଆ କରି କହିଲି : ଆଖପାଖରେ ଏଠି କୋଉଠି ଗ୍ୟାରେଜ୍ ଅଛି ?

: ଅଛି ସାର୍ । ଏଇ ଅଳ୍ପ ଦୂରରେ । ଚାଲନ୍ତୁ ସାର୍, ମୁଁ ଦେଖେଇ ଦେଉଛି ।

ଗ୍ୟାରେଜ୍‌ର ମାଲିକ ଶୋଇଥିଲା । କନେଷ୍ଟବଲ୍‌ଟି ତାକୁ ଡାକି ଉଠାଇଲା । ପ୍ରଥମେ ସେ ରାତିରେ କ୍ରେନ୍ ନେଇ ଆସିବାକୁ ରାଜି ହେଉ ନଥିଲା । କିନ୍ତୁ ପୋଲିସ୍ କନେଷ୍ଟବଲ୍‌ଟି ଠାରୁ ମୁଁ ହେଡ଼୍‌କ୍ୱାର୍ଟସ୍‌ର ଲୋକ ଜାଣିପାରି ଅସ୍ତବ୍ୟସ୍ତ ହୋଇଉଠିଲା । ଗ୍ୟାରେଜକୁ ବ୍ରେକ୍‌ଭ୍ୟାନ୍ ବାହାର କରି ଛୁଟିଲା ଆମ ସାଙ୍ଗରେ ।

କିନ୍ତୁ ଗାଡ଼ିକୁ ତ ବ୍ରେକ୍‌ଭ୍ୟାନ୍ ଟାଣିନେଇ ଆମ ଗ୍ୟାରେଜ୍‌ରେ ଭରିଦେଇ ଆସିବ । ତା'ପରେ ? ସୁଲେଖାର ମୃତ ଦେହଟା ଯିବ କୁଆଡ଼େ ? ଦିନବେଳେ ତ ଟଣା ଓଟରା କରିହେବ ନାହିଁ । ଏକମାତ୍ର ରାତି । ରାତିରେ ଯଦି ରୀଟା ମୋ କାର୍ଯ୍ୟକଳାପ ଲକ୍ଷ୍ୟ କରେ, ତା'ହେଲେ ?

ସେତେବେଳ କଥା ସେତେବେଳେ ଦେଖାଯିବ । ବର୍ତ୍ତମାନ ତ ଆଗ ଗାଡ଼ିଟା ନିରାପଦରେ ଯାଇ ମୋ ଗ୍ୟାରେଜ୍‌ରେ ରହୁ !

ଆମ ଘରେ ପହଞ୍ଚିବାକୁ ପ୍ରାୟ ଏକଘଣ୍ଟା ସମୟ ଲାଗିଲା । ବ୍ରେକ୍‌ଭ୍ୟାନ୍‌ରୁ ଗାଡ଼ି ଫିଟେଇ, ଦୁହେଁ ଠେଲି ଗ୍ୟାରେଜ୍ ଭିତରେ ଭର୍ତ୍ତି କଲୁ । ପକେଟ୍‌ରେ ଯାହା ଟଙ୍କା ଥିଲା, ସବୁ ବାହାର କରି ଗଣିଲି, ମାତ୍ର କୋଡ଼ିଏ ଟଙ୍କା ଅବଶିଷ୍ଟ ଅଛି । ସେତିକି ଯଥେଷ୍ଟ ନ ହେଲେ ବି ସବୁତକ ବ୍ରେକ୍‌ଭ୍ୟାନର ଡ୍ରାଇଭର ହାତକୁ ବଢ଼ାଇ ଦେଇ ମୁଁ ଗ୍ୟାରେଜର ଦରଜା ବନ୍ଦ କରି ତାଲା ପକାଇଲି । ହଁ, ଆପାତତଃ ମୁଁ ନିଶ୍ଚିନ୍ତ । ଏହାପରେ ଯାହା କରିବାକୁ ହେବ ପରେ ଚିନ୍ତା କଲେ ଚଳିବ ।

ମୁଁ ଟିକିଏ ସ୍ୱସ୍ତିର ନିଶ୍ୱାସ ପକାଇ ଆକାଶ ଆଡ଼େ ଚାହିଁଲି ।

ନିର୍ମଳ ଆକାଶ । ତାରା ସବୁ ମୁହଁ ଲୁଚା ଦେଉଛନ୍ତି । ରାତି ଶେଷ ହୋଇ ଆସୁଛି ।

ଧୀର ପାଦରେ ଆଗେଇ ଯାଇ ସଦର ଦରଜାରେ ନକ୍ କଲି । ଅଳ୍ପ ସମୟ ପରେ ଦରଜା ଖୋଲିଗଲା । ରୀଟା ! କ୍ଳାନ୍ତ ଆଖିରେ ମୋ ଆଡ଼କୁ ଚାହିଁ ଠିଆ ହୋଇଛି । ଚାହାଣିରେ ତା'ର ଅଶେଷ ଅଭିଯୋଗ ।

: କିଛି ଉପାୟ ନଥିଲା ରୀଟା । କାମଟା ବଡ଼ ଦାୟିତ୍ୱପୂର୍ଣ୍ଣ । ଶତ ଚେଷ୍ଟା କରି ବି ଫେରିପାରିଲି ନାହିଁ ।

ରୀଟା ଟିକିଏ ମ୍ଳାନ ହସିଲା । କିଛି ନ କହି ଚାଲିଗଲା ସେ ବାଥ୍‌ରୁମ୍‌କୁ ।

ମୁଁ ଭିତରକୁ ପଶିଲି । ଡ୍ରଇଂରୁମ୍‌ର ଛୋଟ ଟେବୁଲ୍‌ଟି ଉପରେ ରୀଟାର ଚାବି ଲେଛାଟା ପଡ଼ିଥିଲା । ମୁଁ ଧୀରେ ଅତି ସନ୍ତର୍ପଣରେ ଗ୍ୟାରେଜ୍ ଓ ଗାଡ଼ିର ଡୁପ୍ଲିକେଟ୍ ଚାବି ଦୁଇଟିଯାକ ଖୋଲି ନେଇ ପକେଟରେ ଭରିଲି । ନା ଆଉ କୌଣସି ଝୁଙ୍କିଫୁଙ୍କି ନେବା ଆଦୌ ଉଚିତ

ନୁହେଁ । ଗ୍ୟାରେଜ୍ ଖୋଲି ରୀଟା ମୋ ଅପକୀର୍ତ୍ତିର ପ୍ରମାଣ ପାଉ, ଏହା ମୋର କାମ୍ୟ ନୁହେଁ ।

ମୁଁ ଲୁଗାପଟା ବଦଳେଇଲି । ରୀଟା ବାଥ୍‌ରୁମ୍‌ରୁ ଫେରି ଆସିଲା । ସଂଗେ ସଂଗେ ମୁଁ ପଶିଲି ବାଥ୍‌ରୁମ୍ ଭିତରେ । ଦରଜା ବନ୍ଦ କରି କଳ ଖୋଲିଦେଲି । ସାୱାରରୁ ପାଣି ଝରିଲା ଅବିରାମ ଗତିରେ । ଆଃ... କି ଆରାମ । ଯେପରି ନିଦାଘର ପ୍ରଚଣ୍ଡ ଜ୍ୱାଳା ଯନ୍ତ୍ରଣାରୁ ମୁଁ ନିସ୍ତାର ପାଇଲି ।

ପର ମୁହୂର୍ତ୍ତରେ ରୀଟା ଦରଜାରେ କରାଘାତ କଲା । ଚିତ୍କାର କରି କହିଲା : ଶୀଘ୍ର ବାହାର । ବରେନ୍ ବାବୁ ଫୋନ୍ କରିଛନ୍ତି । ଖୁବ୍ ଜରୁରୀ ।

ହସି ଉଠିଲି ମନେମନେ । ନିସ୍ତାର ? ନା, ନିସ୍ତାର ମୋର ଆଉ ନାହିଁ । ମୁଁ କଳ ବନ୍ଦ କରି, ତଉଲିଆରେ ଦେହ ପୋଛି, କୌଣସି ପ୍ରକାର ଲଜ୍ଜା ନିବାରଣ କରି ଛୁଟି ଆସି ଫୋନ୍ ଧରିଲି : ବରେନ୍ ! ମୁଁ ରଜତ କହୁଛି ।

: ଆରେ ରଜତ, ଆମ ଅନୁମାନ ଅକ୍ଷରେ ଅକ୍ଷରେ ମିଶି ଯାଇଛି । ଏଇ ଅଳ୍ପ ସମୟ ପୂର୍ବରୁ ରାଜେନ୍ଦ୍ରପ୍ରସାଦ ଥାନାକୁ ଫୋନ୍ କରିଥିଲେ । ଏଥର ସେ ସ୍ପଷ୍ଟ ଭାଷାରେ କହିଲେ, ତାଙ୍କ ଝିଅ ଗୁଣ୍ଡାଦଳ ହାତରେ ପଡ଼ିଛି । ତୁମେ ଶୀଘ୍ର ଚାଲିଆସ ରଜତ । ଏଇ ସଂଗେ ସଂଗେ ଆମକୁ ବାହାରିବାକୁ ପଡ଼ିବ ।

ହଠାତ୍ କ'ଣ ହେଲା ମୁଁ ବୁଝିପାରିଲି ନାହିଁ । ରିସିଭରଟା ମୋ ହାତରୁ ଖସି ପଡୁଥିଲା । ମୁଁ ବୋଧହୁଏ ଟଳି ପଡୁଥିଲି । ରୀଟା ଛୁଟିଆସି ମୋତେ ଚେଆର୍ ଉପରେ ବସାଇ ଦେଇ ପଚାରିଲା : କ'ଣ ହେଲା ତମର ?

ସତେ କ'ଣ ହେଲା ମୋର ? ହାତ ବୁଲାଇ ଦେଖିଲି କପାଳରେ ଝାଳ ଜମି ଯାଇଚି । ରିସିଭରଟା କ୍ରେଡେଲ ଉପରେ ରଖିଦେଇ ସ୍ମିତ ହସି କହିଲି : ନା କିଛି ହୋଇନି । ହଠାତ୍ କାହିଁକି ମୁଣ୍ଡଟା ବୁଲେଇ ଦେଲା । ତା'ଛଡ଼ା ଘରେ ପହଞ୍ଚୁ ନ ପହଞ୍ଚୁଣୁ ପୁଣି ବଡ଼ ସାହେବଙ୍କର ଡାକରା ପଡ଼ିଲାଣି । ସତରେ କୁଆଡ଼େ ରାଜେନ୍ଦ୍ରପ୍ରସାଦଙ୍କର ଲବଣୀ ପିତୁଳା ଗୁଣ୍ଡାମାନଙ୍କ ଦ୍ୱାରା ଅପହୃତ ହୋଇଛି । ମୋତେ ଏହି ମୁହୂର୍ତ୍ତରେ ବାହାରି ଯିବାକୁ ହେବ ।

ମୁଁ ଉଠିଯାଇ ପୋଷାକ ପିନ୍ଧିଲି ।

ରୀଟା କହିଲା : କ'ଣ ଟିକିଏ ଖାଇଦେଇ ଯାଅ । ମୁଁ ସଂଗେ ସଂଗେ କରି ଦେଉଛି ।

: ନା ରୀଟା, ଡେରି ହୋଇଯିବ । ବଡ଼ ସାହେବ ବିରକ୍ତ ହେବେ । କେସ୍‌ଟା କୋଟିପତି ସ୍ୱୟଂ ରାଜେନ୍ଦ୍ର ପ୍ରସାଦଙ୍କର । ତେଣୁ...

: ଅନ୍ତତଃ କପେ କଫି...

: ନା ଥାଉ, ବରଂ...

ମୁଁ ରୀଟା ପାଖକୁ ଆଗେଇ ଯାଇ ଆଲିଙ୍ଗନ କଲି । ଚୁମ୍ବନ ଦେଲି । ତା'ପରେ ବାହାରିଗଲି ବାହାରକୁ ।

\+ + +

ହେଡ଼କ୍ୱାର୍ଟର ଅପରେସନ ରୁମ୍‌ରେ ପହଞ୍ଚି ଦେଖିଲି, ଟେବୁଲ ଉପରେ ଗୋଟାଏ ମ୍ୟାପ୍‌କୁ ଘେରି ଦେଖୁଛନ୍ତି- ବରେନ୍, ଗୋଏନ୍ଦା ଦପ୍ତରର ଅଫିସର ମାଥୁର ଓ କ୍ୟାପ୍‌ଟେନ୍

ଭଟ୍ଟାଚାରୀ । ମୋତେ ଦେଖି ବରେନ୍ ଉଲ୍ଲସିତ ହୋଇ କହିଲା : ଆସିଛ ରଜତ । ମୋ ଅନୁମାନ ଅକ୍ଷରେ ଅକ୍ଷରେ ମିଳିଯାଇଛି । ରାଜେନ୍ଦ୍ର ପ୍ରସାଦ ପାଞ୍ଚଲକ୍ଷ ଟଙ୍କା ଦେଇ ମଧ ଝିଅକୁ ଫେରି ପାଇ ନାହାନ୍ତି । ଶେଷରେ ବାଧ ହୋଇ ଆମର ଶରଣାପନ୍ନ ହୋଇଛନ୍ତି ।

ମୁଁ ନୀରବ ରହିଲି ।

ବରେନ୍ କହି ଚାଲିଲା : ଗୁଣ୍ଡାମାନେ କହିଥିଲେ, ପାଞ୍ଚ ଲକ୍ଷ ଟଙ୍କା ଦେଇ ସାରିଲେ ସୁଲେଖାକୁ ସେମାନେ ଫେରାଇ ଦେବେ । ପାଞ୍ଚ ଲକ୍ଷ ଟଙ୍କା ସେ ଦେଲେ, କିନ୍ତୁ ସୁଲେଖା କାହିଁ ? ଅନେଇ ଅନେଇ ରାତି ପାହିଲା । ସୁଲେଖା ଆଉ ଫେରିଲା ନାହିଁ । କ୍ୟାପ୍‌ଟେନ୍ ଭଟ୍ଟାଚାରୀ ଆଡ଼କୁ ଚାହିଁ କହିଲା, ଆପଣ ଗୋଟାଏ କଥା କରନ୍ତୁ । ସୁଲେଖାର ସେଇ ଭଙ୍ଗା ଗାଡ଼ିଟାର ଛବି ତୋଳି କେତେଖଣ୍ଡ ପ୍ରିଣ୍ଟ୍ କରନ୍ତୁ । ସହରର ଛୋଟବଡ଼ ସବୁ କାଗଜରେ ଛାପିବାକୁ ହେବ । ଦେଖିବା କେହି ଯଦି କିଛି ଖବର ଦେଇପାରେ ।

କ୍ୟାପ୍‌ଟେନ୍ ଭଟ୍ଟାଚାରୀ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

: ତା'ହେଲେ ଏ ଆଡ଼ଟା କିଛି ସମୟ ପାଇଁ ଆପଣ ସମାଳନ୍ତୁ । ମୁଁ ବରଂ ମିଷ୍ଟର ମାଥୁର ଆଉ ରଜତକୁ ସାଙ୍ଗରେ ନେଇ ରାଜେନ୍ଦ୍ର ପ୍ରସାଦଙ୍କୁ ଦେଖା କରି ଆସେ ।

ରାଜେନ୍ଦ୍ର ପ୍ରସାଦ ଆମକୁ ଦେଖିବା ମାତ୍ରକେ କ୍ଳାନ୍ତ ଆଖି ଖୋଲି ଆମ ଆଡ଼କୁ ଚାହିଁଲେ । ସଜାଡ଼ି ହୋଇ ବସି କହିଲେ : ଆପଣମାନେ ମୋତେ କ'ଣ ସୁଲେଖାର ମୃତ୍ୟୁ ସଂବାଦ ଶୁଣାଇବାକୁ ଆସିଲେ ?

: ମିଃ ପ୍ରସାଦ ! ଆପଣ ଏପରି ନିରାଶ ହୋଇ ପଡୁଛନ୍ତି କାହିଁକି ? ମୋର ବିଶ୍ୱାସ ଆପଣଙ୍କ ଝିଅ ସୁସ୍ଥ ଶରୀରରେ ହିଁ ବଂଚିରହିଛି ଏବଂ ଏଇ ଦୁଇ ଚାରିଦିନ ଭିତରେ ଆମେ ତାକୁ ଆଣି ଆପଣଙ୍କ ଆଗରେ ହାଜିର୍ କରିବୁ । କିନ୍ତୁ ଗୋଟାଏ ନିବେଦନ, ଆପଣ ଆମକୁ ସହଯୋଗ କରିବାକୁ ପଡ଼ିବ । ନହେଲେ କାଲି ସକାଳ ପରି ଆପଣ ଯଦି ଆମକୁ ତଡ଼ି ଦିଅନ୍ତି, ତା'ହେଲେ... କଥା ଅସମାପ୍ତ ରଖି ହସିଲା ବରେନ୍ ।

: ନା ନା, ଗତକାଲିର ସମସ୍ୟା ଥିଲା ସଂପୂର୍ଣ୍ଣ ଭିନ୍ନ । ଲୋକଟା ଟେଲିଫୋନ୍‌ରେ ମୋତେ ଏପରି ଭାବରେ କହିଲା : ଆଚ୍ଛା ଆପଣ କହୁନ୍ତୁ ତ, ବାବା ହୋଇ ମୁଁ କେଉଁ ସାହସରେ ପୋଲିସ୍ ଡାକି ଥାଆନ୍ତି ।

: ନା ସମ୍ଭବ ନୁହେଁ । ଆପଣଙ୍କ ସ୍ଥାନରେ ମୁଁ ହୋଇଥିଲେ ବି ପୋଲିସ୍ ଡାକିପାରି ନଥାନ୍ତି, ବରେନ୍ କହିଲା । ସେ ଯା' ହେଉ, ଆପଣ ସୁଲେଖାକୁ ଶେଷ ଥର ପାଇଁ କେବେ ଦେଖିଥିଲେ ?

: ଶନିବାର, ରାତି ନଅଟା ଖଣ୍ଡେ ହେବ । ବାନ୍ଧବୀ ସହିତ ସିନେମା ଦେଖି ଯିବ ବୋଲି ବାହାରିଗଲା । କିନ୍ତୁ ଶୁଣିଲି ସୁଲେଖା ସିନେମା ଯାଇ ନାହିଁ । ସେଥିପାଇଁ ମୋର ଦୁଶ୍ଚିନ୍ତାର କିଛି କାରଣ ନଥିଲା । କାରଣ ସୁଲେଖାର ସ୍ୱଭାବଟା ଥିଲା ସେହିପରି । ପ୍ରତି ମିନିଟ୍ ମିନିଟ୍‌ରେ ସେ ମତ ବଦଳାଇ ପାରେ । ଭାବିଲି, ସିନେମା ଦେଖିବାକୁ ବାହାରି ହୁଏତ ଅନ୍ୟ କୁଆଡ଼େ ଚାଲିଯାଇଛି । ସେଥିପାଇଁ ମୋ ମନରେ ଦୁଶ୍ଚିନ୍ତା କିଛି ନଥିଲା । କିନ୍ତୁ ଆଉ କିଛି ସମୟ ପରେ ଗୋଟାଏ ଫୋନ୍ ପାଇଲି । ଫୋନ୍ ଯିଏ କରିଥିଲା, ସେ ନିଜକୁ ଗୁଣ୍ଡା ଦଳର ଜଣେ ବୋଲି ପରିଚୟ ଦେଇ କହିଲା, ସୁଲେଖା କୁଆଡ଼େ ସେମାନଙ୍କ ହାତରେ ବନ୍ଦୀ । ତାକୁ ଯଦି ଜୀବିତ ଅବସ୍ଥାରେ ଫେରି ପାଇବାକୁ ଚାହେ, ତା'ହେଲେ ମୋତେ

ପାଞ୍ଚଲକ୍ଷ ଟଙ୍କା ଦେବାକୁ ହେବ । ପୋଲିସ୍‌ରେ ଖବର ଦେଲେ ଚଳିବ ନାହିଁ । ସୋମବାର ଭିତରେ ଟଙ୍କା ଯୋଗାଡ଼ କରିବାକୁ ହେବ । ଟଙ୍କା କେଉଁଠି କିପରି ଭାବରେ ପହଞ୍ଚାଇବାକୁ ହେବ, ସୋମବାର ଫୋନ୍‌ରେ ସେ ମୋତେ ଜଣାଇବ । ଏତିକି କହି ସେ ଫୋନ୍ ଛାଡ଼ିଦେଲା । ସୋମବାର ସକାଳେ ସୁଲେଖାର ହାତଲେଖା ଖଣ୍ଡେ ଚିଠି ମୁଁ ପାଇଲି । ଏଇ ନିଅନ୍ତୁ ସେ ଚିଠି । ରାଜେନ୍ଦ୍ର ପ୍ରସାଦ ଚାରିଭାଙ୍ଗ କରା ଖଣ୍ଡିଏ କାଗଜ ବରେନ୍ ହାତକୁ ବଢ଼ାଇ ଦେଲେ ।

ଚିଠିଟା ମୋ ନଜର ଏଡ଼ାଇଲା ନାହିଁ । ଏଇ ଚିଠି ମୋରି ନିର୍ଦ୍ଦେଶ ଅନୁସାରେ ସୁଲେଖା ଲେଖିଥିଲା ।

ବରେନ୍ ଚିଠିଟି ମୂଳରୁ ଶେଷ ଯାଏ ପଢ଼ିଲା । ପଢ଼ିସାରି କହିଲା : ଏ ହସ୍ତାକ୍ଷର ସୁଲେଖାର ତ ?

: ହଁ ।

: ସୋମବାର ସେ ଲୋକଟା ଆପଣଙ୍କୁ ଫୋନ୍ କରିଥିଲା ?

ରାଜେନ୍ଦ୍ର ପ୍ରସାଦ ବରେନ୍ ଆଗରେ ମୁଁ ଫୋନ୍‌ରେ ଯାହା ତାଙ୍କୁ ନିର୍ଦ୍ଦେଶ ଦେଇଥିଲି, ବିସ୍ତାରିତ ଭାବରେ ସବୁକଥା କହିଲେ ।

: ତା'ପରେ ? ବରେନ୍ ପଚାରିଲା ।

: ତା'ପରେ କାଲି ରାତିରେ ଠିକ୍ ସମୟରେ ନିର୍ଦ୍ଦିଷ୍ଟ ସ୍ଥାନକୁ ଟଙ୍କା ନେଇ ଗଲି ଏବଂ ସାଙ୍କେତିକ ଆଲୋକ ଦେଖିବା ମାତ୍ରକେ ଟଙ୍କାତକ ଫିଙ୍ଗି ଦେଇ ଘରକୁ ଫେରି ଆସିଲି । କିନ୍ତୁ ତା'ପରେ ବହୁ ସମୟ ଅତିବାହିତ ହୋଇଯିବା ପରେ ଯେତେବେଳେ ସୁଲେଖା ଆସିଲା ନାହିଁ, ବାଧ ହୋଇ ଆପଣଙ୍କୁ ଖବର ଦେଲି ।

: ଆଚ୍ଛା, ଯେଉଁ ଲୋକଟା ଆଲୋକ ସଙ୍କେତ ଦେଖାଇଥିଲା ତାକୁ ଆପଣ ଦେଖିପାରିଥିଲେ ?

: ନା, ଗଛଲତା ଉହାଡ଼ରେ ସେ ବୋଧହୁଏ ଲୁଚି ରହିଥିଲା । ମୁଁ ତାକୁ ଦେଖିପାରିଲି ନାହିଁ ।

ଜାଗାଟା ଥରେ ପରୀକ୍ଷା କରି ଦେଖିବାକୁ ହେବ, ନିର୍ଦ୍ଦିଷ୍ଟ ସ୍ଥାନଟା ଦେଖାଇ ଦେବାକୁ ଆପଣ ଯଦି ଟିକେ କଷ୍ଟ କରି ଆମ ସାଂଗରେ ଯାଆନ୍ତେ...

: ଦୁଃଖିତ । ଆପଣଙ୍କ ସାଂଗରେ ଯାଇପାରିଥିଲେ ଖୁସି ହୋଇଥାଆନ୍ତି । କିନ୍ତୁ ମୋ ଦେହଟା ଖୁବ୍ ଖରାପ । ତା'ଛଡ଼ା କାଲି ରାତିଠାରୁ ମୋ ମନର ଅବସ୍ଥା ଯାହା... ଆପଣ ବରଂ ଗୋଟାଏ କାମ କରନ୍ତୁ । ମୁଁ ସେଇ ଜାଗାର ଗୋଟାଏ ନକ୍ସା ଆଙ୍କି ରଖିଛି । ସେଇଟା ଦେଖି ଆପଣ ସ୍ଥାନଟା ଚିହ୍ନିପାରିବେ । ରାଜେନ୍ଦ୍ର ପ୍ରସାଦ ଖଣ୍ଡେ କାଗଜ ବରେନ୍ ହାତକୁ ବଢ଼ାଇ ଦେଲେ ।

ବରେନ୍ କାଗଜ ଉପରେ ଥରେ ଆଖି ବୁଲାଇ ନେଇ ମାଥୁର ହାତକୁ ବଢ଼ାଇ ଦେଇ କହିଲା : ମିଃ ମାଥୁର, ଆପଣ ରଜତକୁ ସାଂଗରେ ଧରି ସଟକ୍ରେ ଚାଲିଯାଆନ୍ତୁ । ନକ୍ସା ଦେଖି ସ୍ଥାନଟା ଖୋଜି ବାହାର କରିବାକୁ ବୋଧହୁଏ ଅସୁବିଧା ହେବ ନାହିଁ ।

ସୁବୋଧ ଶିଶୁଟି ପରି ମାଥୁର ପଛେ ପଛେ ମୁଁ ଯାଇ ଗାଡ଼ିରେ ଉଠିଲି । ନକ୍ସାରେ ଅଙ୍କିତ ନିର୍ଦ୍ଦିଷ୍ଟ ସ୍ଥାନରେ ଯାଇ ଗାଡ଼ି ଠିଆ ହେଲା ।

ମୋର ସେଇ ପରିଚିତ ସ୍ଥାନ । ଯେଉଁଠି କାଲି ରାତିରେ ମୁଁ ପ୍ରତୀକ୍ଷା କରି ବସି ରହିଥିଲି । ମାଥୁର ପରି ବିଚକ୍ଷଣ ପୋଲିସ୍ ଅଫିସରକୁ ନକ୍ସା ଦେଖି ସ୍ପଟ୍ ବାହାର କରିବାକୁ ବେଶି ସମୟ ଲାଗିଲା ନାହିଁ । ମୋର ଭୂମିକା ସେଠି କେବଳ ନୀରବ ଦର୍ଶକର ।

ତଦନ୍ତ ଆରମ୍ଭ କରିଦେଲା ମାଥୁର । ନିପୁଣ ଦକ୍ଷତାର ସହିତ ପ୍ରତିଟି ଇଞ୍ଚ ପରଖୁ ପରଖୁ ମାଥୁର କହିଲା : ବୁଝିଲେ ରଜତ ବାବୁ, ଲୋକଟା ଯେ ଏଇ ଗଛ ଆଢୁଆଳରେ ଲୁଚିଥିଲା ସେ ବିଷୟରେ ମୁଁ ନିଃସନ୍ଦେହ । ହେଇ ଦେଖନ୍ତୁ ତା' ଜୋତାଚିହ୍ନ । କାଲିର ଝିପିଝିପି ବର୍ଷା ପରେ ସେ ନିଶ୍ଚୟ ଏଠାକୁ ଆସିଚି । ଭିଜା ମାଟି ବ୍ୟତୀତ ଜୋତାର ଏତେ ସ୍ପଷ୍ଟ ଚିହ୍ନ ଉଠି ନଥାନ୍ତା । ଏଥିରୁ ଛାଞ୍ଚ ଉଠେଇବା ପାଇଁ ମୋତେ ଅସୁବିଧା ହେବ ନାହିଁ । ହେଇ ଦେଖନ୍ତୁ ଦେଖନ୍ତୁ, ଗୋଟାଏ ପୋଡ଼ା ସିଗାରେଟ୍ । ଭାଜିର । ଏଇଠି ବସି ବସି ଲୋକଟା ସିଗାରେଟ୍ ପୋଡ଼ିଛି । କିନ୍ତୁ... ଉଠି ଠିଆ ହେଲା ସେ । ଚାରିଆଡ଼େ ତା'ର ଶ୍ୟେନଦୃଷ୍ଟି ବୁଲାଇଲା । ବାଃ... ଏ ତ ମନେହେଉଛି ଗାଡ଼ି ଚକାର ଦାଗ । ଦେଖିଲେଣି, ହଁ, ହଁ, ଏଇଠି- ଏଇ ଆଢୁଆଳରେ ସେ ଗାଡ଼ି ରଖିଥିଲା । ନା, ଆପଣଙ୍କର ମୁଁ ଆଉ ସମୟ ନଷ୍ଟ କରିବି ନାହିଁ । ଆପଣ ଗାଡ଼ି ନେଇ ହେଡ୍‌କ୍ୱାଟର୍ସକୁ ଚାଲିଯାଆନ୍ତୁ । ସେଠୁ ଯଥା ସମ୍ଭବ ଶୀଘ୍ର ଦି'ଜଣ ଫୋରେନ୍‌ସିକ ଅଫିସର ପଠାଇ ଦେଇ ଆପଣ ଘରକୁ ଚାଲିଯିବେ ।

ମୁଁ ଆଉ ଡେରି କଲି ନାହିଁ । ଇମିତି ଗୋଟାଏ ସୁଯୋଗ ଖୋଜୁଥିଲି ମନେମନେ । ସଂଗେ ସଂଗେ ଯାଇ ଗାଡ଼ିରେ ଉଠିଲି । ଗାଡ଼ି ଛାଡ଼ିଲା ।

ଘଟଣାର ଆକସ୍ମିକତାରେ ମୁଁ ମୂକ ପାଲଟି ଯାଇଥିଲି । ବରେନ୍‌ର ପ୍ରତିଟି ଆବିଷ୍କାର ମୋ ଆଖିରେ ବିସ୍ମୟ ସୃଷ୍ଟି କରୁଥିଲା । ମୋର ମନେହେଉଥିଲା, ଧୀରେ ଧୀରେ ଯେପରି ମୋତେ ରାହୁ ଗ୍ରାସ କରିବାକୁ ଆରମ୍ଭ କରିଛି ।

ଗାଡ଼ିରୁ ଓହ୍ଲେଇବାକୁ ପଡ଼ିଲା ନାହିଁ । ସାମ୍ନାରେ ବରେନ୍‌କୁ ଦେଖିଲି । ସେ ଡେଇଁପଡ଼ି ଉପରକୁ ଉଠିଲା । ହାତର ଆଟାଚିଟା କୋଳ ଉପରେ ଥୋଇଲା ।

ଆଟାଚି - ଏଇ କଳା ଆଟାଚିଟା ତ...

ମୁହୂର୍ତ୍ତକ ଭିତରେ ଯେପରି ଭୂମିକମ୍ପ ହୋଇଗଲା ମୋ ସାମ୍ନାରେ । ଭୟ ଓ ଆତଙ୍କରେ ମୋ ଆଖି ବନ୍ଦ ହୋଇଗଲା ।

ହଁ ହଁ, ଏଇ ସେଇ ଆଟାଚି । ଯେଉଁଟା କାଲି ମୋତେ ରାଜେନ୍ଦ୍ର ପ୍ରସାଦ ନୋଟ୍ ଭର୍ତ୍ତି କରିଦେଇଥିଲେ । ଏ ଆଟାଚିଟା ବରେନ୍ ହାତକୁ ଆସିଲା କିପରି ? ତା'ହେଲେ ବରେନ୍ କ'ଣ...

: ବୁଝିଲ ରଜତ ! ବରେନ କହିଲା । ଏଇ ଆଟାଚିଟାର ବି ଗୋଟାଏ ଛବି କାଗଜରେ ଛାପିବାକୁ ହେବ । ଆଟାଚି କିଣିବା ବେଳେ ରାଜେନ୍ଦ୍ର ପ୍ରସାଦ ଏକାପରି ଏକା ରଙ୍ଗର ଦୁଇ ତିନିଟା ଆଟାଚି କିଣିଥିଲେ । ବୋଧହୁଏ ଆଗରୁ ସେ ବିପଦର ଆଶଙ୍କା ମନେ ମନେ କରିଥିଲେ । କାଗଜରେ ଆମେ ଯଦି ସୁଲେଖାର ଗୋଟାଏ ଛବି ଆଉ ଆଟାଚିର ଗୋଟାଏ ଛବି ଛାପି ଦିଅନ୍ତେ, ତାହେଲେ କାଳେ କିଏ କେଉଁଠି ଏହିପରି ଆଟାଚି କାହା ହାତରେ ଦେଖିଥିବ, ଆମକୁ ଖବର ଦେବ । ଆଉ ସୁଲେଖାକୁ ତ ନିଶ୍ଚୟ କିଏ କେଉଁଠି ଦେଖିଥିବ । ଯଦି ଖବର କେଉଁଠୁ କିଛି ମିଳେ ଆମ ତଦନ୍ତ ପାଇଁ ସୁବିଧା ହେବ । ନା କ'ଣ କହୁଛ ?

: ନିଶ୍ଚୟ ନିଶ୍ଚୟ । କେସ୍‌ଟା ଯେତେବେଳେ ଆମ ହାତକୁ ଆସିଲାଣି, ଆମର ଆଉ ଅବହେଳା କରିବା ଉଚିତ ନୁହେଁ । ମୁଁ ବାହାରକୁ ଚାହିଁ ବରେନ୍ କଥାର ଉତ୍ତର ଦେଲି ।

: ଆରେ ହଁ, ଅସଲ କଥାଟା ତ କହିଲିନି । ମାଥୁର ସେଠି ଯାଇ କିଛି ପାଇଲା ?

: ହଁ, ସେଠୁ ତ ଅନେକ କିଛିର ସନ୍ଧାନ ପାଇଛି । ବରେନ୍‌କୁ ମୁଁ ମାଥୁର ସହିତ ମୋର ଅବସ୍ଥାନ କାଳର ସମସ୍ତ ଘଟଣା ବର୍ଣ୍ଣନା କରି କହିଗଲି ।

ବରେନ୍ କେବଳ ନୀରବରେ ସବୁ ଶୁଣିଗଲା । କୌଣସି ପ୍ରଶ୍ନ କଲା ନାହିଁ କି ପାଟି ଫିଟେଇଲା ନାହିଁ ।

ମିଷ୍ଟର ତ୍ରିବେଦୀ ତାଙ୍କ ରୁମ୍‌ରେ ବେସି ଗଭୀର ମନଯୋଗ ସହକାରେ ସୁଲେଖା ନିରୁଦ୍ଦେଶର ଫାଇଲ୍‌ଟି ପଢୁଥିଲେ, ଆମର ପାଦ ଶବ୍ଦ ଶୁଣି ମୁଣ୍ଡ ଟେକି ଚାହିଁଲେ ।

ଆମେ ସାମ୍‌ନାରେ ବସିଲୁ । କିଛି ଭୂମିକା ନ ଦେଇ ବରେନ୍ ରାଜେନ୍ଦ୍ର ପ୍ରସାଦଙ୍କ ସହିତ ସାକ୍ଷାତ୍‌କାରର କାହାଣୀଟି ମୂଳରୁ ଶେଷ ଯାଏ ଶୁଣାଇଲା । ସୁଲେଖା ଓ ଆଟାଚି କେସ୍‌ର ଛବି କାଗଜରେ ଛାପିବା ପାଇଁ ପ୍ରସ୍ତାବ ଦେଲା ।

ମିଷ୍ଟର ତ୍ରିବେଦୀ ମୋ ଆଡ଼କୁ ଚାହିଁ କହିଲେ : ଖବର କାଗଜରେ ଯଦି ଛାପିବା ଏବଂ ସାମ୍ବାଦିକମାନଙ୍କୁ ସମ୍ବାଦ ସରବରାହ କରିବା ଏସବୁ ଦାୟିତ୍ୱ ତୁମର । ଖୁବ୍ ସାବଧାନରେ ସମ୍ବାଦ ପ୍ରସ୍ତୁତ କର, ଯେପରି ଅତିରଞ୍ଜିତ ନ ହୁଏ । ଯାଅ କାମ ଆରମ୍ଭ କରିଦିଅ ।

ସେତେବେଳକୁ ବିଭିନ୍ନ ଭାବରେ ଉଠାଯାଇ ସୁଲେଖା ଗାଡ଼ିର ଛବି ଗୁଡ଼ିଏ ପ୍ରସ୍ତୁତ ହୋଇସାରିଥିଲା । ଛବି କେତେଖଣ୍ଡ ଧରି ମୁଁ ମୋ ଅଫିସ୍ ଆଡ଼କୁ ଆଗେଇ ଗଲି ।

ଅଫିସ୍‌ରେ ପହଞ୍ଚି ରିପୋର୍ଟ ଲେଖୁଛି, ଫୋନ୍‌ଟା ବାଜି ଉଠିଲା । ଗୋଟିଏ ଖବର କାଗଜର ପ୍ରତିନିଧି ଫୋନ୍ କରିଥିଲେ । ଗୋଟିକ ପରେ ଗୋଟିଏ । ସହରର ଛୋଟ ବଡ଼ ପ୍ରାୟ ସବୁ କାଗଜର ପ୍ରତିନିଧି ସୁଲେଖା ସମ୍ବନ୍ଧରେ ରିପୋର୍ଟ ଚାହାନ୍ତି । ଫୋନ୍ ପରେ ଫୋନ୍ । ମୁଁ ଆଉ ଯାଏ କୁଆଡ଼େ । ସମସ୍ତଙ୍କୁ କହିଲି ଦଶଟା ପରେ ଆସିବା ପାଇଁ । ମୁଁ ଦ୍ରୁତ ରିପୋର୍ଟ ପ୍ରସ୍ତୁତ କରିବାରେ ଲାଗିଲି । ଯେତେବେଳେ ମୋର ଲେଖା ସରିଲା, ଦରଜା ଖୋଲି ବାହାରକୁ ବାହାରି ଦେଖିଲି, ସାମ୍ବାଦିକମାନଙ୍କ ଭିଡ଼ରେ ହଲ୍ ଘରଟା ପୂରିଯାଇଛି ।

ମୋ ରିପୋର୍ଟ ପ୍ରସ୍ତୁତ ସରିଥିଲା । ସମଗ୍ର ଦେହ ମନରେ କ୍ଳାନ୍ତି ଭରି ଯାଇଥିଲା । ରିପୋର୍ଟଟା ବଡ଼ ସାହେବଙ୍କ ହାତରେ ଧରାଇ ଦେଇ ମୁଁ କବାଟ କିଳି ଘରେ ପଶିଲି । ଏଥର ଟିକିଏ ବିଶ୍ରାମର ଆବଶ୍ୟକ । ଇଜି ଚେଆରଟା ଉପରେ କ୍ଳାନ୍ତ ଦେହଟାକୁ ନଦି ଦେଇ ଆଖି ବୁଜିଲି ।

ପୁଣି ଫୋନ୍‌ଟା ବାଜି ଉଠିଲା । ହାତ ବଢ଼େଇ ରିସିଭରଟା ଉଠାଇ ନେଲି : ହ୍ୟାଲୋ ?

ରୀଟାର କଣ୍ଠସ୍ୱର ଶୁଣିଲି : ଗାଡ଼ି ଚାବିଟା ଅନେକ ବେଳୁ ଖୋଜୁଛି, ଗଲା କୁଆଡ଼େ ? ତମେ ନେଇଛ କି ?

: ଗାଡ଼ି...

ହଠାତ୍ ମୋ ସମଗ୍ର ଶରୀରରେ ବିଦ୍ୟୁତ୍ ପ୍ରବାହ ଖେଳିଗଲା । କାମର ଭିଡ଼ ଭିତରେ ମୁଁ ସେକଥା ଏକଦମ୍ ଭୁଲି ଯାଇଥିଲି ।

: ଗାଡ଼ି କଥା ଆଉ ମୁହଁରେ ଧରନା ରୀଟା । ମୁଁ ବି ଆସିଲା ବେଳେ ତୁମକୁ କହିବାକୁ

ଭୁଲିଗଲି । କାଲି ରାତିରେ ଗାଡ଼ି ମୋତେ ଯାହା ହଇରାଣ କରିଛି ନା, ଏକଦମ୍ ଅଚଳ । ଶେଷରେ କ୍ରେନ୍ ଆଣି ଗାଡ଼ିକୁ ଟାଣି ଟାଣି ଗ୍ୟାରେଜ୍‌ରେ ଭରିଚି । ସେଇଥିପାଇଁ ଚାବିଟା ମୁଁ ଘେନି ଆସିଥିଲି ।

: ଇସ୍ ! ମୁଁ ତା'ହେଲେ ଏଇକ୍ଷିଣା କରେ କ'ଣ ? ଗାଡ଼ି ନେଇ ମୋତେ ଟିକିଏ କାମରେ ବାହାରିବାକୁ ଥିଲା । ସମସ୍ୟାରେ ପଡ଼ିଗଲି ତ !

: କିନ୍ତୁ କିଛି ଉପାୟ ନାହିଁ ରୀଟା । ଗାଡ଼ିର ଗିଅର ବକ୍‌ସଟା ଭାଂଗି ଚୂର୍‌ମାର୍ ହୋଇ ଯାଇଛି । ଗ୍ୟାରେଜ୍‌ରେ ନ ଦେଲେ ଚଳିବ ନାହିଁ । ଅନେକ ଟଙ୍କାର କାରବାର । ଏତେ ଟଙ୍କା ବର୍ତ୍ତମାନ କାହିଁ ? ତମେ ବରଂ ଟ୍ୟାକ୍‌ସିରେ ଆଜିକ ଚାଲିଯାଅ । ଗାଡ଼ି ଯେମିତି ଅଛି ଥାଉ । ମୁଁ ଫେରିଲେ ଭାବିଚିନ୍ତି ଯାହା କରିବା । ରହିଲି । ରୀଟାକୁ ଆଉ କିଛି କହିବାର ସୁଯୋଗ ନ ଦେଇ ରିସିଭରଟା ରଖିଦେଲି ।

ମହା ସମସ୍ୟା । ଘରେ, ବାହାରେ ସବୁଆଡ଼େ ଯେପରି ଯୋଡ଼ାଏ କଳା ହାତ ମୋ ଗଳା ଚିପି ଧରିବା ପାଇଁ ଧୀରେ ଧୀରେ ଆଗେଇ ଆସୁଛି । ମୋର ବୋଧେ ଆଉ ନିସ୍ତାର ନାହିଁ ।

କିନ୍ତୁ ହଠାତ୍ ଏପରି ଏକ ଦୁର୍ଘଟଣା ଘଟିଲା କିପରି ? ସୁଲେଖାକୁ ଗଳା ଚିପି ମାରିଲା କିଏ ? ସୁଲେଖାର ମୃତ୍ୟୁରେ ସବୁଠାରୁ କିଏ ବେଶି ଲାଭବାନ୍ ହେବ ? ଆଖି ବୁଜି ମୁଁ ଚିନ୍ତା କରିବାକୁ ଲାଗିଲି ।

କିଏ... ? କିଏ... ?? କିଏ ତେବେ ସୁଲେଖାର ହତ୍ୟାକାରୀ ???

ହଠାତ୍ ସବିତାର ମୁହଁଟା ମୋ ଆଖି ଆଗରେ ଭାସି ଉଠିଲା ।

କିନ୍ତୁ ସୁଲେଖାର ମୃତ୍ୟୁରେ ସବିତାର ଲାଭ କ'ଣ ? ସୁଲେଖା ମରିଲେ... ହଁ ହଁ... ଠିକ୍ ଠିକ୍ । ସୁଲେଖା ଯଦି ମରେ ତା'ହେଲେ ରାଜେନ୍ଦ୍ର ପ୍ରସାଦଙ୍କ ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ ହେବ ସବିତା । ତା' ସହିତ ଭାଗ ବସେଇବାକୁ ଆଉ କେହି ରହିବ ନାହିଁ । ତା'ହେଲେ ଚକ୍ରାନ୍ତର ନାୟିକା କ'ଣ ସ୍ୱୟଂ....

ମୋ ଭାବନାରେ ବାଧା ସୃଷ୍ଟି କରି ଟେଲିଫୋନ୍‌ଟା ବାଜି ଉଠିଲା ।

: ହ୍ୟାଲୋ ?

: ଏଇ ମୁହୂର୍ତ୍ତରେ ତମେ ଚାଲିଆସ ରଜତ । ଖୁବ୍ ଦରକାର । ସ୍ୱୟଂ ମିଷ୍ଟର ତ୍ରିବେଦୀ ଡାକୁଛନ୍ତି ।

ସଂଗେ ସଂଗେ ମୁଁ ଘରୁ ବାହାରିଗଲି ବଡ଼ ସାହେବଙ୍କ ରୁମ୍‌କୁ ।

ସର୍ବଶେଷ ପରିସ୍ଥିତି ଜଣେଇ ନୂଆ ଏକ ପ୍ରେସ୍ ବିଜ୍ଞପ୍ତି ଲେଖିବାକୁ ଡାକିଥିଲେ ତ୍ରିବେଦୀ । ଲେଖିଲି ।

ସୁଲେଖାର ଅନୁସନ୍ଧାନ ପାଇଁ ଆକାଶ ମାର୍ଗରେ ସେନାବାହିନୀର ହେଲିକେପ୍‌ଟରଠାରୁ ଆରମ୍ଭ କରି ସହରର ରାସ୍ତାଘାଟରେ ପୋଲିସର ଅତନ୍ଦ୍ର ପହରା- ସବୁ କଥା ଗୋଟି ଗୋଟି କରି ଲେଖିଲି । ସୁଲେଖାର ଜୀବନ ଶଙ୍କା ସମ୍ବନ୍ଧରେ ପୋଲିସ୍‌ର ଆଶଙ୍କା କଥା ମଧ୍ୟ ଲେଖିଲି ।

ଲେଖା ଶେଷ କରି ଉଠିଲା ବେଳକୁ କବାଟ ଠେଲି ଘରେ ପଶିଲା ବରେନ୍ । ମୁହଁରେ ତା'ର ଉଲ୍ଲାସର ଛବି ।

: ବୁଝିଲେ ସାର୍, ବରେନ୍ ରୁମାଲ୍‌ରେ କପାଳରୁ ଝାଳ ପୋଛୁ ପୋଛୁ କହିଲା, ଏଥର ଟିକେ ଆଶାର ଆଲୋକ ଦିଶିଲା ପରି ମନେହେଉଚି । ମିଷ୍ଟର ମାଥୁରଙ୍କ ଅନୁସନ୍ଧାନ ରିପୋର୍ଟରୁ ସେହି ଆତତାୟୀ ସମ୍ବନ୍ଧରେ ମୋଟାମୋଟି ଗୋଟାଏ ଧାରଣା ମିଳିଛି । ଲୋକଟା ଲମ୍ବା, ଶରୀରର ଗଠନ ତା'ର ମଜବୁତ୍, ସେ ଭାଜିର ସିଗାରେଟ୍ ଟାଣେ, ଯେଉଁ ଗାଡ଼ିରେ ଚଢ଼ି ସେ ଟଙ୍କା ନେବାକୁ ଆସିଥିଲା, ସେ ଗାଡ଼ିର ତେଲ ଟାଙ୍କିଟା ଫୁଟା ଏବଂ ସର୍ବୋପରି ସେହି ଲୋକଟାର ଓଜନ ପଞ୍ଚାଅଣି କେଜି ।

: ତମେ ଏତେ ଡିଟେଲ୍‌ସ ଜାଣିଲ କେଉଁଠୁ ? ଏପରିକି ଓଜନଟା ପର୍ଯ୍ୟନ୍ତ ? ବଡ଼ ସାହେବ ପଚାରିଲେ ।

: ସବୁ ମିଷ୍ଟର ମାଥୁରଙ୍କ ଆବିଷ୍କାର । ଆତତାୟୀର ଜୋତା ଛାପ ଦେଖି ସେଥିରୁ ଛାଞ୍ଚ ଉଠେଇ କ'ଣ ସବୁ ଗବେଷଣା କରି ମିଷ୍ଟର ମାଥୁର ମୋତେ ଜଣେଇଛନ୍ତି ।

: ବାଃ, ଚମତ୍କାର । ଯେପରି ଭାବରେ ତମେମାନେ ଅଗ୍ରସର ହେଉଛ, ମନେହେଉଛି ବାଜିମାତ୍ କରିବାକୁ ଆଉ ବେଶି ଦିନ ଲାଗିବ ନାହିଁ । ମିଷ୍ଟର ତ୍ରିବେଦୀ ଉତ୍‌ଫୁଲ୍ଲ ହୋଇ କହିଲେ ।

ସେତିକିବେଳେ ଦରଜା ଠେଲି ପଶିଲେ କ୍ୟାପ୍‌ଟେନ୍ ଭଟ୍ଟାଚାରୀ ।

: ଶୁଣିଲେଣି ସାର୍ । ମିଷ୍ଟର ସ୍ୱାମୀନାଥନ ଆଉ ତାଙ୍କର ସ୍ତ୍ରୀ ଆସିଥିଲେ ଡାଇରୀ କରିବାକୁ । ଶନିବାର ରାତିରେ ଜଶୋର ରୋଡ଼ରେ ତାଙ୍କର ଗାଡ଼ି ଆକ୍‌ସିଡେଣ୍ଟ ହୋଇ ମଡ଼ଗାର୍ଡ଼ ଭାଂଗି ଚୂର୍‌ମାର୍ ହୋଇଯାଇଛି ।

: ତ ହେଇଚି କ'ଣ ? ରୋଜ୍ କେତେ ଗାଡ଼ିର ମଡଗାର୍ଡ଼ ଭାଂଗୁଚି । ଏ ସମ୍ବାଦଟାରେ ନୂତନତ୍ୱ କ'ଣ ଅଛି ?

: ଅଛି ସାର୍, ନହେଲେ ମୁଁ ଏପରି ଛୁଟି ଆସି ନଥାନ୍ତି । ମିଷ୍ଟର ସ୍ୱାମୀନାଥନଙ୍କର ଗାଡ଼ିଟା ଆକ୍‌ସିଡେଣ୍ଟ ହୋଇଥିଲା ସୁଲେଖାର ସେହି ପରିତ୍ୟକ୍ତ ଗାଡ଼ି ସହିତ ।

: ସତେ ନା କ'ଣ ? ପ୍ରାୟ ଏକା ସଂଗରେ ମିଷ୍ଟର ତ୍ରିବେଦୀ ଓ ବରେନ୍ ଚିତ୍କାର କରି ଉଠିଲେ ।

: ଅସଲ ରହସ୍ୟଟା ତ ସେଇଠି ସାର୍ । ଗାଡ଼ିର ନମ୍ବର ଫମ୍ବର ସବୁ ସେ ରଖିଥିଲେ । ମୁଁ ମିଳେଇ ଦେଖିଛି । ସୁଲେଖା ଗାଡ଼ିର ନମ୍ବର ସହିତ ମିଳିଯାଉଛି । ସନ୍ଦେହର କିଛି କାରଣ ନାହିଁ । ସ୍ୱାମୀନାଥନ ସ୍ୱୀକାର କରୁଛନ୍ତି ଯେ ଆକ୍‌ସିଡେଣ୍ଟ ପାଇଁ ଅନେକାଂଶରେ ସେ ଦାୟୀ କିନ୍ତୁ ସେ ଗାଡ଼ିର ଚାଳକଟି ଯଦି...

: ଚାଳକ କ'ଣ ହେ, ଚାଳିକା କୁହ ।

: ନା ସାର୍ ଚାଳିକା ନୁହେଁ, ସେଦିନ ସୁଲେଖାର ଗାଡ଼ି ଚଳାଉଥିଲା ଜଣେ ଚାଳକ ।

: ମାନେ ? ମିଷ୍ଟର ତ୍ରିବେଦୀଙ୍କ କଣ୍ଠସ୍ୱରରେ ଉତ୍ତେଜନା ଫୁଟି ଉଠିଥିଲା ।

: ହଁ ସାର୍, ସୁଲେଖାର ଗାଡ଼ି ଜଣେ ଯୁବକ ଚଳାଉଥିଲା । ଆକ୍‌ସିଡେଣ୍ଟ ହେବା ପରେ ସେ ଆଉ ଠିଆ ହୋଇନି । ଦ୍ରୁତ ଗତିରେ ଗାଡ଼ିଟା କିଛି ବାଟ ଆଗେଇ ନେଇ, ଗାଡ଼ି ଛାଡ଼ି ପଳେଇ ଯାଇଛି ।

ଚେଆର୍ ଛାଡ଼ି ଧୀରେ ଧୀରେ ଉଠିଯାଇ ମୁଁ ଝରକା ପାଖରେ ଠିଆ ହୋଇ ତଳକୁ ଚାହିଁଲି । ମୁଣ୍ଡ ଭିତରଟା ମୋର ଝିମ୍ ଝିମ୍ ହୋଇ ଉଠିଥିଲା । ମୁଁ ବୁଝିପାରୁଥିଲି ମୋ

ମୁହଁର ରଙ୍ଗ ପାଉଁଶିଆ ହୋଇଯାଇଛି । ସମସ୍ତଙ୍କ ସାମ୍ନାରୁ ମୁହଁ ଲୁଚେଇବା ପାଇଁ ତଳକୁ ଚାହିଁଲି । ଏହାଛଡ଼ା ଅନ୍ୟ ପଥ ମୋର ନଥିଲା ।

: କିନ୍ତୁ ଗୋଟାଏ କଥା ମୁଁ ଚିନ୍ତା କରିପାରୁ ନାହିଁ । ଆକ୍ସିଡେଣ୍ଟ ହେଲା ଶନିବାର ରାତିରେ । ଆଜି ମଙ୍ଗଳବାର । ଏତେ ଦିନ ଯାଏ ଭଦ୍ରଲୋକ କ'ଣ କରୁଥିଲେ ? ଆଜି ବା ହଠାତ୍ ଧାଇଁ ଆସିଲେ କାହିଁକି ଡାଇରୀ କରିବାକୁ ? ମିଷ୍ଟର ତ୍ରିବେଦୀ କହିଲେ ।

: ସେ କଥା ଆଉ ପଚାରନ୍ତୁ ନାହିଁ ସାର୍ । ହସି ହସି ଉତ୍ତର ଦେଲେ ଭଟ୍ଟାଚାରୀ । ଏଇ ସ୍ୱାମୀନାଥନ ବ୍ୟକ୍ତିଟି ଏକ ଅଦ୍ଭୁତ ପ୍ରକୃତିର ଲୋକ । ସ୍ତ୍ରୀ କଥାରେ ଉଠ୍‌ବସ୍ ହୁଅନ୍ତି । ସ୍ତ୍ରୀ ତାଙ୍କୁ ବୁଝାଇ ଦେଲେ ଯେ ଏ ସମ୍ବନ୍ଧରେ ଥାନାକୁ ଡାଇରୀ କରିବାକୁ ଗଲେ, ଓଲଟି ବିପଦରେ ପଡ଼ିବ । ସେଇଥିପାଇଁ ଭଦ୍ରଲୋକ ଚୁପ୍‌ଚାପ୍ ରହିଯାଇଥିଲେ । କିନ୍ତୁ ଆଜି ସେ ସୁଲେଖାର ନିରୁଦ୍ଦେଶ ସମ୍ବନ୍ଧରେ ଖବର କାଗଜରୁ ସବୁ କଥା ପଢ଼ିସାରିବା ପରେ ଆଉ ଚୁପ୍ ହୋଇ ବସିପାରିଲେ ନାହିଁ ।

: ତମେ ତାଙ୍କୁ ଡାକିଆଣ ଭିତରକୁ, ତାଙ୍କ ସହିତ ଟିକିଏ କଥା ହେବା ଦରକାର, ବରେନ୍ କହିଲା ।

: ମୁଁ ଭଦ୍ରଲୋକଙ୍କୁ ବସେଇ ଆସିଛି । ଯାଉଛି ଡାକି ଆଣିବି । କ୍ୟାପ୍‌ଟେନ୍ ଭଟ୍ଟାଚାରୀ ବାହାରିଗଲେ ।

ନା, ମୋର ଆଉ ଏଠି ଠିଆହୋଇ ରହିବା ଉଚିତ ହେବ ନାହିଁ । କିଏ ଜାଣେ ଲୋକଟା ହୁଏତ ଘରେ ପ୍ରବେଶ କରିବା କ୍ଷଣି ମୋ ଆଡ଼କୁ ଆଙ୍ଗୁଳି ଦେଖାଇ ଚିତ୍‌କାର କରି ଉଠିବ ଏଇତ, ଏଇଠି ତ ସେଇ ଲୋକ । ଏଇଆକୁ ତ ସେଦିନ ମୁଁ ସୁଲେଖା ଗାଡ଼ିରେ ଦେଖିଚି ।

ମୁଁ ଆଗେଇ ଆସି କହିଲି : ବରେନ୍, ମୋ ଟେବୁଲ୍‌ରେ ଅନେକ କାମ ଜମି ଯାଇଚି, ମୁଁ ବରଂ...

: ଆରେ ପାଗଳା ନା କ'ଣ । ସ୍ୱାମୀନାଥନ୍‌ଙ୍କ ଜମାନବନ୍ଦୀ ଶୁଣିବା ଛଡ଼ା ତମର ଏଇକ୍ଷିଣା କାମ କ'ଣ । ତମେ ହେଲ ପ୍ରେସ୍ ଅଫିସର । ଆମ କଥାବାର୍ତ୍ତା ମୂଳରୁ ଶେଷଯାଏ ନ ଶୁଣିଲେ ରିପୋର୍ଟ ଲେଖିବ କିମିତି ! ବସିପଡ଼ । ସେ ସବୁ କାମ କଥା ପରେ ଚିନ୍ତା କଲେ ଚଳିବ ।

ମୁଁ ବସିବା ପାଇଁ ବାଧ୍ୟ ହେଲି । ଚେଆର ଟାଣିନେଇ ଝରକା ପାଖରେ ଯାଇ ବସିଲି ।

ମିଃ ତ୍ରିବେଦୀ କହିଲେ : ଗୋଟାଏ କାମ କର ବରେନ୍, ତମେ ମିଲିଟାରୀ ସଂସ୍ଥାକୁ ଖବର ଦେଇଦିଅ । ଘର ଘର ବୁଲି ଡେଲଟାଙ୍କି ଫୁଟା ଥିବା ଗାଡ଼ିର ଅନୁସନ୍ଧାନ କରିବେ ଏବଂ ସହରତଳିର ଝାଡ଼ଜଙ୍ଗଲ ଆଡ଼େ ଦୃଷ୍ଟି ରଖିବେ । ଆଚ୍ଛା ମୁଁ ଖବରଟା ଦେଇ ଦେଉଛି । ମିଷ୍ଟର ତ୍ରିବେଦୀ ନିଜେ ଫୋନ୍ ଉଠାଇଲେ ।

ଏଥର ମୋର ତଣ୍ଟି ଶୁଖିଗଲା । ମନେହେଲା ମୃତ୍ୟୁର କଳା ହାତଟା ଯେପରି ମୋ ଗଳାଟାକୁ ଚିପି ଧରିଚି ।

କ୍ୟାପ୍‌ଟେନ୍ ଭଟ୍ଟାଚାରୀ ମିଷ୍ଟର ଓ ମିସେସ୍ ସ୍ୱାମୀନାଥନ୍‌ଙ୍କୁ ସଂଗରେ ଧରି ଘରେ ପ୍ରବେଶ କଲେ ।

ମିଷ୍ଟର ସ୍ୱାମୀନାଥନ ବାଙ୍ଗର ଲୋକଟିଏ । ମୁଣ୍ଡର ବାଳ ଉପୁଡ଼ି ସଫା ହୋଇଯାଇଚି । ଚେହେରାଟି ଗଣେଶ ପରି । କିନ୍ତୁ ସ୍ତ୍ରୀଟି ଠିକ୍ ତାଙ୍କ ଓଲଟା । ଘରେ ପଶିବା ମାତ୍ରକେ ସେ ବକ୍ ବକ୍ ଆରମ୍ଭ କରିଦେଇଥିଲେ : ମୁଁ କାନେକାନେ ତୁମକୁ ପଢ଼ାଉଚି, ପୋଲିସ-ଗୋଳ ଭିତରେ ତମେ ପଶ ନାହିଁ । ମୋ କଥା ତ ଶୁଣିଲ ନାହିଁ । ଏଥର ଠେଲା ସମ୍ଭାଳ । ଦୁଇଘଣ୍ଟା ହେବ ଆସି ଥାନାରେ ବସିଛ, ପୁଣି ଏଠି କେଇଘଣ୍ଟା କଟିବ କିଏ ଜାଣେ ? ତେଣେ ଦୋକାନରେ ଚାକର ବାକରମାନେ ହରିଲୁଟ୍ କରୁଥାଆନ୍ତୁ ।

: ଆପଣଙ୍କର କି ଦୋକାନ ମିଷ୍ଟର ସ୍ୱାମୀନାଥନ୍ ? ବଡ଼ ସାହେବ ପଚାରିଲେ ।

: ଔଷଧ ଦୋକାନ ସାର୍ ।

: ଆଚ୍ଛା ମିଷ୍ଟର ସ୍ୱାମୀନାଥନ୍ ! ସେଦିନ ରାତିରେ, ଯେଉଁଦିନ ଆପଣଙ୍କ ଗାଡ଼ି ସହିତ ସେ ଗାଡ଼ିର ଧକ୍କା ଲାଗିଲା, ସେଇ ଗାଡ଼ିର ଚାଳକକୁ ଆପଣ ନିଶ୍ଚୟ ଦେଖିଥିବେ । ତା'ର ଚେହେରା ଆପଣଙ୍କର ମନେଥିବ । ତା'ଛଡ଼ା ତା' ସହିତ ଆପଣ ନିଶ୍ଚୟ କଥାବାର୍ତ୍ତା ହୋଇଥିବେ ।

: ହଁ ସାର୍ ।

: ଆଚ୍ଛା କହିଲେ, ସେ ଦେଖିବାକୁ କିପରି ?

: ମାନେ... ଆଉ ସେ କିଛି କହିପାରିଲେ ନାହିଁ । ନଣ୍ଡାମୁଣ୍ଡରେ ହାତ ବୁଲେଇ ଅସହାୟ ଆଖିରେ ସ୍ତ୍ରୀ ଆଡ଼କୁ ଚାହିଁଲେ । ମାନେ... ମୁଁ ଠିକ୍... ମାନେ ଅନ୍ଧାରୁଆ ଜାଗାଟା ତ, ମୁଁ ଲୋକଟାକୁ ଭଲ ଭାବରେ ଦେଖିପାରି ନଥିଲି । ତେବେ ମୋଟାମୋଟି ମୋର ଅନୁମାନ ଲୋକଟା ଖୁବ୍ ଲମ୍ବା ଆଉ ହୃଷ୍ଟପୁଷ୍ଟ ।

: ଉଁ ହୁଁ । ମିସେସ୍ ସ୍ୱାମୀନାଥନ୍ ମୁଣ୍ଡ ହଲାଇ ମନା କଲେ । ଲୋକଟା ଯେ ଲମ୍ବା, ମଜବୁତ୍ ଚେହେରା ସବୁ ଠିକ୍ କିନ୍ତୁ ତମେ ଯେ କହୁଚ ଲୋକଟା ଖୁବ୍ ଲମ୍ବା, ମୁଁ ତା'ର ପ୍ରତିବାଦ କରୁଚି । ଲମ୍ବା ଖୁବ୍ ହେଲେ ସେ ୟାଙ୍କରି ପରି ହେବ । ସେ ମିଷ୍ଟର ତ୍ରିବେଦୀଙ୍କ ଆଡ଼େ ଆଙ୍ଗୁଳି ବଢ଼ାଇ କହିଲେ ।

ମିଷ୍ଟର ତ୍ରିବେଦୀ ସ୍ଥିର ହେଲେ ମୁହୂର୍ତ୍ତେ । ବାକ୍ସରୁ ଗୋଟାଏ ଚୁରୁଟ୍ ବାହାର କରି ଅଗ୍ନିସଂଯୋଗ କଲେ : ମିସେସ୍ ସ୍ୱାମୀନାଥନ୍ ! ଆମେ ଆପଣଙ୍କ ସ୍ୱାମୀଙ୍କ ସହିତ କଥା ହେଉଛୁ, ଆପଣଙ୍କ ସହିତ ନୁହେଁ, ମନେରଖିବେ ।

: ଆରେ ବାଃ । ମୋ ସ୍ୱାମୀ ଗୋଟାଏ ଭୁଲ୍ କଥା କହିବେ, ମୁଁ ଜାଣିଶୁଣି ତାହା ସମର୍ଥନ କରିବି ?

ସ୍ୱାମୀନାଥନ୍‌ଙ୍କ ଆଡ଼େ ଚାହିଁ ମିଷ୍ଟର ତ୍ରିବେଦୀ କହିଲେ : ଆପଣ କହୁଛନ୍ତି ଲୋକଟା ଖୁବ୍ ଲମ୍ବା । ଆଚ୍ଛା କହିଲେ, ଏ ଘରେ ଆମେ ଯେତେଜଣ ଅଛୁ, ଲୋକଟା କାହା ପରି ଲମ୍ବା ?

: ମାନେ, ହୁଏତ ଠିକ୍ ଠିକ୍ ଅନୁମାନ କରିବା ସମ୍ଭବ ହେବ ନାହିଁ, ଲୋକଟା ସିଟ୍‌ରେ ବସିଥିଲା... ତା'ଛଡ଼ା ଅନ୍ଧକାର, ତଥାପି ଯେତେଦୂର ସମ୍ଭବ...

ଘରେ ଆମେ ଉପସ୍ଥିତ ଥିବା ଚାରିଜଣଙ୍କ ଆଡ଼କୁ ଚାହିଁ ଚାହିଁ ମୋରି ଉପରେ ତା'ର ଦୃଷ୍ଟି ଅଟକି ଗଲା ।

ମିଷ୍ଟର ତ୍ରିବେଦୀ ବରେନ୍ ଆଡ଼େ ଆଙ୍ଗୁଳି ଦେଖାଇ କହିଲେ ଲୋକଟା କ'ଣ ୟାଙ୍କରି ପରି ଲମ୍ବା ?

ସ୍ୱାମୀନାଥନ୍ ବରେନ୍ ଆଡ଼େ ଚାହିଁଲେ କିଛି ସମୟ । କହିଲେ, ହୋଇପାରେ, ତେବେ ମୋର ଯାହା ମନେହେଉଛି, ସେ ୟାଙ୍କଠାରୁ ଆଉ ଟିକିଏ ଲମ୍ବା ।

ମିସେସ୍ ସ୍ୱାମୀନାଥନ୍ ତ୍ରିବେଦୀଙ୍କ ଆଡ଼େ ଆଙ୍ଗୁଳି ଦେଖାଇ ଚିତ୍କାର କରି କହିଲେ : ଲୋକଟା ୟାଙ୍କଠାରୁ ଇଞ୍ଚେ ବି ଲମ୍ବା ହେବ ନାହିଁ ।

: ନା ନା, ତମେ ଭୁଲ୍ କହୁଛ, ପ୍ରତିବାଦ କଲେ ସ୍ୱାମୀନାଥନ୍ । ଲୋକଟା ବରଂ... ସ୍ୱାମୀନାଥନ୍‌ଙ୍କର ଚକ୍ଷୁ ପୁଣି ମୋରି ଉପରେ ସ୍ଥିର ରହିଲା ।

ମିଷ୍ଟର ତ୍ରିବେଦୀ ତାଙ୍କ ଦୃଷ୍ଟି ସହିତ ଦୃଷ୍ଟି ମିଳାଇ ମୋତେ କହିଲେ : ତମେ ଟିକେ ସିଧା ହୋଇ, ନା ନା ଠିଆ ହେବାକୁ ହେବ ନାହିଁ । ହଁ ଠିକ୍ ଅଛି । ଦେଖନ୍ତୁ ତ ମିଷ୍ଟର ସ୍ୱାମୀନାଥନ୍, ଲୋକଟା କ'ଣ ୟାଙ୍କରି ପରି ଲମ୍ବା ?

ଅନ୍ୟମନସ୍କ ପରି ମୁଣ୍ଡ ହଲାଇଲେ ସ୍ୱାମୀନାଥନ୍ : ହଁ ମୋର ଯେତେଟା ମନେପଡୁଛି, ସେ ଦେଖିବାକୁ ଅନେକଟା ୟାଙ୍କରି ପରି ।

ମୁଁ କାଠ ପାଲଟି ଯାଇଥିଲି । ମୋର ଶୁଖିଲା ଜିଭଟାକୁ ଓଠରେ ବୁଲେଇ ଅସହାୟଙ୍କ ପରି ଛାତର କଡ଼ିକାଠ ଗଣିବାକୁ ଚେଷ୍ଟା କଲି ।

: ହୁଁ ବୁଝିଲି । ଏଥର କହିଲେ, ଶନିବାର ରାତିରେ ଆକ୍‌ସିଡେଣ୍ଟଟା କିପରି ହେଲା ?

: ହୋଇଗଲା ସାର୍ । ଗାଡ଼ିଟା ମୁଁ ପଛକୁ ଚଲାଉଚି ହଠାତ୍ ଧକ୍କା ଲାଗିଲା । ସତ କହିବାକୁ ଗଲେ, ଦୋଷଟା ଅନେକାଂଶରେ ମୋର ଥିଲା ସାର୍ । ମୁଁ ଯଦି ଆଲୁଅ ଫାଲୁଅ ନ ନିଭେଇ...

: ନା, ତମର କିଛି ଦୋଷ ନାହିଁ । ଦୋଷ ସଂପୂର୍ଣ୍ଣ ତା'ର । ତମେ ଆଲୁଅ ନିଭାଅ ଯାହା କର, ପାର୍କିଂ ପ୍ଲେସ୍ ଆଡ଼େ ଧୀରେ ଧୀରେ ପଛଉଥିଲ, ସେ ବଦମାସ୍ କୁଆଡୁ ଧାଇଁ ଆସି ମାରିଲା ଧକ୍‌କା । ଧକ୍‌କା ମାରି ଦୋଷ କରି ଟିକିଏ ବିନୟ ଭାବ ପ୍ରକାଶ ନ କରି ଓଲଟି ଗାଳିମନ୍ଦ ଦେଇ, ନିମିଷକ ଭିତରେ ଅନ୍ତର୍ଦ୍ଧାନ...

: ଓଃ । ଆପଣ ଟିକିଏ ଚୁପ୍ କରନ୍ତୁ ଭଲା । ଭଦ୍ରମହିଳାଙ୍କ ଆଡ଼େ ହାତ ଦେଖାଇ ମିଷ୍ଟର ତ୍ରିବେଦୀ କହିଲେ : ଆଚ୍ଛା ମିଷ୍ଟର ସ୍ୱାମୀନାଥନ, ସେଇ ଲୋକଟାର ବୟସ କେତେ ହୋଇପାରେ କହିଲେ ?

: ବୟସ ? ଆନୁମାନିକ, ମାନେ ଗଳାର ସ୍ୱର ଶୁଣି ଯାହା ମନେହେଲା, ଏଇ ଧରନ୍ତୁ ତିରିଶ । ତେବେ ବର୍ଷେ ଦି'ବର୍ଷ ଏପାଖ ସେପାଖ ହୋଇପାରେ ।

: ବୁଝିଲି । ଆଚ୍ଛା, ଲୋକଟା କି ପ୍ରକାର ପୋଷାକ ପିନ୍ଧିଥିଲା ଆପଣ ଲକ୍ଷ୍ୟ କରିଥିଲେ କି ?

: ପୋଷାକ । ମାନେ ଅନ୍ଧକାରରେ ଠିକ୍ ଯଦିଓ ଦେଖିପାରି ନଥିଲି, ତଥାପି ଯାହା ମନେପଡୁଚି ଲୋକଟା ବାଦାମୀ ରଙ୍ଗର ଗୋଟାଏ ବ୍ଲେଜର୍ ପିନ୍ଧିଥିଲା ।

: ମୁଣ୍ଡରେ ଟୋପି ଫୋପି କିଛି ଥିଲା ?

: ନା ।

: ଲୋକଟା କଳା ନା ଗୋରା ?

: ଏତେଟା ଲକ୍ଷ୍ୟ କରି ନାହିଁ ସାର୍ । ଅନ୍ଧକାର ସେ ସବୁର ପ୍ରଧାନ ଅନ୍ତରାୟ ହୋଇ ଠିଆ ହୋଇଥିଲା ।

: ହୁଁ, ଆଚ୍ଛା ଆଜି ଆପଣ ଆସନ୍ତୁ ସ୍ୱାମୀନାଥନ୍ । ଆପଣ ଆଜି ଆମର ଅଶେଷ ଉପକାର କଲେ । ଦରକାର ହେଲେ ପୁଣି ଟିକିଏ ଆପଣଙ୍କୁ କଷ୍ଟ ଦେବୁ ।

: ନିଶ୍ଚୟ, ନିଶ୍ଚୟ ।

ସ୍ୱାମୀନାଥନ୍ ଘରୁ ବାହାରି ଗଲାବେଳେ ତାଙ୍କ ଦୃଷ୍ଟିଟା ମୋରି ଉପରେ ନିବଦ୍ଧ ଥିଲା । କବାଟ ପାଖକୁ ଯାଇ ଫେରିଆସି ମୋରି ଆଡ଼କୁ ଥରେ ଚାହିଁଲେ । କେହି କିଛି ପ୍ରଶ୍ନ କରିବା ଆଗରୁ ସ୍ୱାମୀନାଥନ୍ ଏକ ପ୍ରକାର ଦ୍ରୁତ ଗତିରେ ଘରୁ ବାହାରି ଚାଲିଗଲେ । ଆମେ ସମସ୍ତେ ତାଙ୍କର ଯିବା ପଥକୁ ଚକିତ ଦୃଷ୍ଟିରେ ଚାହିଁଥିଲୁ ।

ମିଷ୍ଟର ତ୍ରିବେଦୀ କହିଲେ : ଗାଡ଼ିଟା ଯେତେବେଳେ ଜଶୋର ରୋଡ଼ରେ ଆକ୍‌ସିଡେଣ୍ଟ୍ ହୋଇଥିଲା, ମୋର ମନେହେଉଛି ସେମାନେ ଏଆରପୋର୍ଟ ଆଡ଼େ ଯାଉଥିଲେ, ହୁଏତ ପ୍ଲେନ୍‌ରେ ଚଢ଼ି ଚାଲିଯାଇଛନ୍ତି । ଶନିବାର ରାତି ଆଠଟା ପରଠାରୁ ମଧ୍ୟରାତ୍ରି ପର୍ଯ୍ୟନ୍ତ ଯେତେଗୁଡ଼ିଏ ପ୍ଲେନ୍ ଛାଡ଼ିଛି, ସବୁଗୁଡ଼ିକର ପାସେଞ୍ଜର ଲିଷ୍ଟ ମୋର ଦରକାର ।

ବରେନ୍ ଉଠି ଠିଆ ହେଲା । କହିଲା : ମୁଁ ଅଣେଇ ଦେବି । ଆଚ୍ଛା ସାର୍, ଆପଣ ଗୋଟାଏ କଥା ଲକ୍ଷ୍ୟ କଲେ ? ଏଇ ସ୍ୱାମୀନାଥନ୍ ଲୋକଟାକୁ ଯେତେଟା ବୋକା ବୋକା ମନେହେଉଛି, ସେ କିନ୍ତୁ ସେତେଟା ବୋକା ନୁହେଁ । ପେଟରେ ତା'ର ଅସଂଖ୍ୟ ବୁଦ୍ଧି ।

: କିମିତି ?

: ଚିନ୍ତା କରି ଦେଖନ୍ତୁ, ଗାଡ଼ିର ସେଇ ଲୋକଟାର କିପରି ନିର୍ଭୁଲ ବର୍ଣ୍ଣନା ସେ ଦେଇଗଲା । ଅନ୍ଧକାର ଭିତରେ କେଇ ମିନିଟ୍‌ର ଦେଖା, ତଥାପି ସେଇ ଅଳ୍ପ ସମୟ ଭିତରେ ଲୋକଟାର ବ୍ଲେଜାର ଏବଂ ବ୍ଲେଜାରର ରଙ୍ଗ ପର୍ଯ୍ୟନ୍ତ ତା' ଆଖିରୁ ବାଦ୍ ଯାଇନି । ଲୋକଟା ଲମ୍ବାରେ ଯେ ପ୍ରାୟ ଛ'ଫୁଟ୍, କିମ୍ବା ବଳିଷ୍ଠ ଚେହେରା ଇତ୍ୟାଦି ଇତ୍ୟାଦି ସବୁ ବର୍ଣ୍ଣନା କରିପାରିଲା । ମିଷ୍ଟର ମାଥୁରଙ୍କ ଆବିଷ୍କାର ସହିତ ମିଷ୍ଟର ସ୍ୱାମୀନାଥନ୍‌ଙ୍କର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ପ୍ରାୟ ହୁବହୁ ମିଳିଯାଉଛି । ତା'ହେଲେ ସେହି ଅଜ୍ଞାତ ବ୍ୟକ୍ତିଟି ସମ୍ବନ୍ଧରେ ଏପର୍ଯ୍ୟନ୍ତ ଆମେ ଯାହା ଜାଣିଲେ- ସେ ଲମ୍ବାରେ ଛ'ଫୁଟ, ଶକ୍ତ ବଳିଷ୍ଠ ଗଠନ, ପଞ୍ଚାଅଶି କେଜି ଓଜନ... ଆଚ୍ଛା ରଜତ, ତମର ଓଜନ କେତେ ହେବ ? ମୋ ଆଡ଼କୁ ଚାହିଁ ବରେନ୍ ପ୍ରଶ୍ନ କଲା ।

: ମୋ ଓଜନ ? କେତେ ଆଉ ହେବ ? ପଚସ୍ତରି ଅଶି କେଜି ହୋଇପାରେ, କିନ୍ତୁ ମୋ ଓଜନ ଜାଣି ତମର ଲାଭ ? ସଂଯତ ସ୍ୱରରେ ପଚାରିଲି ।

: ଲାଭ.... ହଁ ଲାଭ ଅଛି । ବରେନ୍ ତଳକୁ ମୁଣ୍ଡ ପୋତି କ'ଣ ଚିନ୍ତା କଲା । ଧୀରେ ଧୀରେ କହିଲା, ଜାଣ ରଜତ ! ଅନେକ ବେଳୁ ମୋ ମୁଣ୍ଡରେ ଗୋଟାଏ ଚିନ୍ତା ଖେଳି ବୁଲୁଛି । ମିଷ୍ଟର ସ୍ୱାମୀନାଥନ୍ ତମକୁ ଦେଖାଇ ଯେତେବେଳେ କହିଲେ, ସେ ଲୋକଟା ଦେଖିବାକୁ ଅନେକାଂଶରେ ତୁମରି ପରି, ସେତିକିବେଳୁ ପ୍ଲାନ୍‌ଟା ମୋ ମୁଣ୍ଡରେ ପଶିଛି । ଭାବୁଛି, ତମ ମୁହଁଟା ବାଦ୍ ଦେଇ ତମର ଗୋଟାଏ ଛବି କାଗଜରେ ଛାପିଦେବି । ସଂଗେ ସଂଗେ ଜନସାଧାରଣଙ୍କୁ ନିବେଦନ କରିବି ଶନିବାର ରାତି ଆଠଟା ପରେ ଏହିପରି ଲୋକକୁ କିଏ ଯଦି କୌଣସି ସ୍ଥାନରେ ଦେଖିଥାଅ, ତା'ହେଲେ ଅବିଳମ୍ବେ ଆମ ସହିତ ଯୋଗାଯୋଗ

କର । ଏ ସମ୍ବନ୍ଧରେ ଆପଣଙ୍କର ମତ କ'ଣ ସାର୍ ? ବରେନ୍ ବଡ଼ ସାହେବଙ୍କ ଉପରେ ଦୃଷ୍ଟି ନିବଦ୍ଧ କରି ନୀରବ ହେଲା ।

: ଚମତ୍କାର ପରିକଳ୍ପନା ବରେନ୍ । ତମର ଚିନ୍ତାଧାରାକୁ ମୁଁ ପ୍ରଶଂସା ନ କରି ରହିପାରୁ ନାହିଁ । ଏପରି ଏକ ମୂଲ୍ୟବାନ ଅଥଚ ସହଜ ଉପାୟ... ନା ନା ଆଉ ଡେରି କରି ଲାଭ ନାହିଁ । ଏହା ସହିତ କିନ୍ତୁ ଆଉ ଗୋଟାଏ ଜିନିଷ ଯୋଡ଼ିବାକୁ ହେବ । ରଜତକୁ ଆମେ ଗୋଟାଏ ବାଦାମୀ ରଙ୍ଗର ବ୍ଲେଜାର ପିନ୍ଧାଇ ଫଟୋ ଉଠାଇବା । ତା'ହେଲେ ଷୋଳକଳା ପୂର୍ଣ୍ଣ ହୋଇଯିବ । ରୁହ, ମୁଁ ସଂଗେ ସଂଗେ ବ୍ୟବସ୍ଥା କରୁଛି ।

ମିଷ୍ଟର ତ୍ରିବେଦୀ ଫୋନ୍ ଉଠାଇଲେ । ରଜତ ମାପର ଗୋଟାଏ ବାଦାମୀ ରଙ୍ଗର ବ୍ଲେଜାର କିଣି ଆଣିବାକୁ ଏବଂ ଫଟୋଗ୍ରାଫରକୁ ପଠାଇ ଦେବା ପାଇଁ ପି.ଏ.କୁ ନିର୍ଦ୍ଦେଶ ଦେଲେ । ରିସିଭର ରଖି ଦେଇ ମିଷ୍ଟର ତ୍ରିବେଦୀ ମୋ ଆଡ଼କୁ ଚାହିଁ କହିଲେ : ତମେ ନିଶ୍ଚୟ ଆମର ଏଇ ପରିକଳ୍ପନାରେ ସହଯୋଗ କରିବ ।

ମୁଁ ମୁଣ୍ଡ ହଲାଇ ସମ୍ମତି ଜଣାଇବା ଛଡ଼ା ମୋର ଅନ୍ୟ ବାଟ ନଥିଲା ।

ମିଷ୍ଟର ତ୍ରିବେଦୀ ଆଷ୍ଟ୍ରେ ଉପରୁ ସିଗାରେଟ୍‌ଟା ଉଠାଇ ଆଣି ତହିଁରେ ଅଗ୍ନି ସଂଯୋଗ କଲେ : ତମେ ବରଂ କ୍ୟାପ୍‌ଟେନ୍ ଭଟ୍ଟାଚାରୀଙ୍କୁ ନେଇ ଏଆର୍‌ପୋର୍ଟ ଚାଲିଯାଅ । ରାତି ଆଠଟା ଠାରୁ ବାରଟା ପର୍ଯ୍ୟନ୍ତ ଯେଉଁସବୁ ପ୍ଲେନ୍ ଛାଡ଼ିଛି, ସବୁଗୁଡ଼ିକର ଯାତ୍ରୀ ତାଲିକା ମୋର ଆବଶ୍ୟକ । ପୁଣି ମୋ ଆଡ଼କୁ ଚାହିଁ କହିଲେ : ତୁମେ ରଜତ ଏଇକ୍ଷିଣା ଯାଇ ଗୋଟାଏ ରିପୋର୍ଟ ତିଆରି କର । ମାଲମସଲା ତ ଏଇଠୁ ସବୁ ମିଳିଗଲା । ତମର ଆଉ ଚିନ୍ତା କ'ଣ ? ତମର ପରିଚିତ ପୁରୁଣା ରିପୋର୍ଟର ବନ୍ଧୁମାନେ କିଛି ସମୟ ପରେ ଆସି ଖବର ପାଇଁ ଭିଡ଼ କରିବେ । ସେମାନଙ୍କୁ ତ ପୁଣି କିଛି ଦେବାକୁ ହେବ ।

\+ + +

ମୁଁ ମୋ ରୁମ୍‌କୁ ଫେରି ଆସିଲି ।

ଦୁଶ୍ଚିନ୍ତାରେ ମୁଣ୍ଡଟା ମୋର ଘୂରୁଥିଲା । ବରେନ୍ ମୁଣ୍ଡରେ କିପରି ଯେ ପ୍ଲାନ୍‌ଟା ପଶିଲା... ଫଟୋ ଛପା ହେବ ମୋରି । ହଜାର ହଜାର ଲୋକ ସେ ଛବି ଦେଖିବେ । ମୋତେ ସେଦିନ କିଏ କେଉଁଠି ଦେଖିଥିବ ଭଗବାନ ଜାଣନ୍ତି । ଏଆରପୋର୍ଟରେ ତ ନିଶ୍ଚୟ କେହି ଦେଖିଥିବ । ସମସ୍ତେ ତ ଆଉ ଆଖିବୁଜି ଚାଲୁ ନଥିବେ । ସେଦିନ ସୁଲେଖାକୁ ନେଇ ମୁଁ ରନ୍‌ଓୟେରେ ପହୁଞ୍ଚାଇ ଦେଇ ଆସିଥିଲି । ମୋ ସହିତ ଗୋଟିଏ ସୁନ୍ଦରୀ ତରୁଣୀ । ନିଶ୍ଚୟ କାହାରି ଦୃଷ୍ଟି ଆକର୍ଷଣ କରିଥିବ । ହୁଏତ...

ଥାଉ, ସେ ଚିନ୍ତା ପରେ କଲେ ଚଳିବ । ବର୍ତ୍ତମାନ ମୁଣ୍ଡ ଉପରେ ଯାହା ପଥର ବୋଝ ହୋଇ ନଦା ହୋଇଛି, ସେଇଟା ହେଉଛି ସୁଲେଖାର ମୃତଦେହ । ଗାଡ଼ିର ଲଗେଜ୍ କ୍ୟାରିଅର୍ ଭିତରେ ମୋ ଗ୍ୟାରେଜ୍‌ରେ ପଚୁଚି । ଚବିଶ ଘଣ୍ଟା ପୂରୁ ନ ପୂରୁଣୁ ତ ଗନ୍ଧ ଚହଟି ଉଠିବ । ସେତେବେଳେ ଆଉ ତ୍ରାହି ନାହିଁ ।

ଆଚ୍ଛା ଆଜି ରାତିକ ପାଇଁ ଯଦି ହରବନସିଂ ଗ୍ୟାରେଜ୍‌ରୁ ଗୋଟାଏ ଗାଡ଼ି ଭଡ଼ା ନିଆଯାଏ... କିନ୍ତୁ ସେ କ'ଣ ଧାରରେ ଦେବ । ତା' ଖାତାରେ ବାକି ଅନେକ । ତଥାପି

ବୁଝେଇ ସୁଝେଇ ଗୋଡ଼ ହାତ ଧରି ଯଦି ରାଜି କରେଇ ପାରେ ! ବର୍ତ୍ତମାନ ସଂଭ୍ରମକୁ ଜଗିଲେ ଚଳିବ ନାହିଁ । କାର୍ଯ୍ୟ ଉଦ୍ଧାର ହେଉଛି ଏକମାତ୍ର ପନ୍ଥା ।

ଧରାଯାଉ ଗାଡ଼ି ମିଳିଗଲା । ତା'ପରେ ? ତା'ପରେ ଆଉ କ'ଣ ! ଗାଡ଼ି ନେଇ ସିଧା ଗ୍ୟାରେଜ୍ ପାଖରେ ଲଗେଇବି, ଗ୍ୟାରେଜ୍ ଖୋଲିବି, ମୋ ଗାଡ଼ିର ଲଗେଜ୍ କ୍ୟାରିଅର୍‌ରେ ତାଲା ଖୋଲି...

ସେତିକିବେଳେ ଯଦି ରୀଟା ବାହାରି ଆସେ ? ନା, ହେଲା ନାହିଁ । ରୀଟା ଶୋଇବାଯାଏ ମୋତେ ଅପେକ୍ଷା କରିବାକୁ ପଡ଼ିବ । ରୀଟା ଶୋଇ ସାରିଲେ ଧୀରେ ଧୀରେ ଗୋଡ଼ ଚିପି ଚିପି...

ହଠାତ୍ ଫୋନ୍‌ଟା ବାଜିଉଠିଲା ।

ଧେତ୍, ବିରକ୍ତ ହୋଇ ରିସିଭର ଉଠାଇଲି । 'ଡେଲି ନିଉଜ'ର ବାର୍ତ୍ତା ସଂପାଦକ ଫୋନ୍ କରିଛନ୍ତି । ଘଟଣାର ସର୍ବଶେଷ ପରିସ୍ଥିତି ସେ ଜାଣିବାକୁ ଚାହାନ୍ତି । ଦେଲି ।

କିନ୍ତୁ ନା, ତଥାପି ନିସ୍ତାର ନାହିଁ । ଫୋନ୍ ଖାଲି ଫୋନ୍ । ପ୍ରତି ମିନିଟ୍ ମିନିଟ୍‌ରେ ଫୋନ୍ ବାଜିଲା । ସବୁ ଖବରକାଗଜବାଲା ମାନେ ଯେମିତି ଅପେକ୍ଷା କରି ବସିଥିଲେ । ଖବର ଚାହି ଖବର, ଆହୁରି ଖବର ଏବଂ ସର୍ବଶେଷ ପରିସ୍ଥିତିର ତଟକା ଖବର ।

ଫୋନ୍‌ବାର୍ତ୍ତା ଶେଷ ହୋଇଥିଲା କି ନାହିଁ ଜାଣେ ନାହିଁ । ମଝିରେ କବାଟ ଖୋଲି ଭିତରେ ପଶିଲା ବରେନ୍ ।

ବରେନ୍ ଆଡ଼େ ମୁଁ ଚାହିଁଦେବା ମାତ୍ରକେ ମୋ ସମଗ୍ର ଶରୀରରେ କମ୍ପନ ଆରମ୍ଭ ହୋଇଗଲା । ମାତ୍ର ଗୋଟାଏ ମୁହୂର୍ତ୍ତ । କିନ୍ତୁ ସେଇ ମୁହୂର୍ତ୍ତଟା ମୋ ଆଖି ସାମ୍‌ନାରେ ଯେପରି ପ୍ରଳୟଙ୍କରୀ ଭୂମିକମ୍ପ ହୋଇଗଲା । ବରେନ୍ ହାତରେ ସେଇଟା... ମୋ ଆଖି ଆପଣା ଛାଏଁ ବନ୍ଦ ହୋଇଗଲା ।

ହଁ, ମୁଁ ଠିକ୍ ଦେଖିଛି । ବରେନ୍ ହାଙ୍ଗରରେ ଝୁଲେଇ ଯେଉଁଟା ଧରିଚି, ସେଇଟା ବାଦାମୀ ରଙ୍ଗର ଗୋଟାଏ ବ୍ଲେଜାର । ଠିକ୍ ମୋରି ବ୍ଲେଜାର୍ ପରି ଏବଂ ଯେଉଁ ବ୍ଲେଜାରଟା ପିନ୍ଧି ମୁଁ ଶନିବାର ସୁଲେଖାକୁ ସାଂଗରେ ନେଇ ଏଆର୍‌ପୋର୍ଟ ଯାଏ...

: ଘଟଣା କ'ଣ ରଜତ । ଅସମୟରେ ଆଖି ବନ୍ଦ କରି ରୀଟାକୁ ଧ୍ୟାନ କରି ବସିଲୁ ନା କ'ଣ ? ନେଏ ନେଏ । ଏଇଟା ପିନ୍ଧିପକା । ମୁଁ ତେଣେ ଫଟୋଗ୍ରାଫରକୁ ବସାଇ ଆସିଚି । ଡେରି କଲେ ଆଜି ଆଉ ଖବରକାଗଜରେ ଛାପି ହେବ ନାହିଁ ।

ବାଧ ହୋଇ ଆଖି ଖୋଲିଲି । କିନ୍ତୁ ବ୍ଲେଜାର ଆଡ଼େ ଅନେଇବାକୁ ମୋର ସାହସ ହେଉ ନଥିଲା । ଉଠି ଠିଆ ହେଲି । ବରେନ୍ ମୋତେ କୋଟ୍ ପିନ୍ଧେଇ ଦେଲା । ଫଟୋଗ୍ରାଫର ଫଟୋ ଉଠାଇଲା । ଅଧଘଣ୍ଟା ପରେ ଛବି ପ୍ରସ୍ତୁତ । ଛବି ପଛ ଆଡ଼େ ନିଜ ଚେହେରାର ବିବରଣୀ ନିଜେ ମୁଁ ଲେଖିଲି । ତା'ପରେ ଛବି ଓ ବିବରଣୀ ଧରି ପଶିଲି ଯାଇ ବଡ଼ସାହେବଙ୍କ ଘରେ ।

ଛବି ଦେଖି ଓ ବିବରଣୀ ପଢ଼ି ମିଷ୍ଟର ତ୍ରିବେଦୀ ଖୁସି ହେଲେ । ନେଗେଟିଭ୍‌ରୁ ଛବି ପ୍ରିଣ୍ଟ ହେବାବେଳେ ମୁହଁଟି ଢାଙ୍କି ଦିଆ ହୋଇଛି । ହେଲେ ବି ଛବିର ମଣିଷଟି ଯେ ସ୍ୱୟଂ ମୁଁ ଏକଥା ଯିଏ ପାରି ସିଏ ଆଖିବୁଜି କହିଦେବ ।

ମୁଁ ବାହାରି ଆସୁଥିଲି । ବରେନ୍ ଏଆର୍‌ପୋର୍ଟରୁ ଯାତ୍ରୀ ତାଲିକା ନେଇ ଘରେ ପଶୁଥିଲା । କହିଲି : ମୁଁ ଆସୁଚି ଭାଇ ।

: ହଁ, ତମେ ଯାଅ । ରାତି ହେଲାଣି । ରୀଟା ହୁଏତ ତେଣେ ଭାବୁଥିବ । ଦରକାର ହେଲେ ବରଂ ମୁଁ ତମକୁ ଫୋନ୍ କରି ଡାକିବି ।

କିନ୍ତୁ ମୁଁ ଯିବି କୁଆଡ଼େ ?

ଧୀରେ ଧୀରେ ଶିଡ଼ିର ପାହାଚ ଗଣି ଗଣି ତଳକୁ ଓହ୍ଲେଇଲି । ବର୍ତ୍ତମାନ ମୋର ଏକମାତ୍ର ସାହା ଭରସା ହରବନ୍ ସିଂ । ତା' ଗ୍ୟାରେଜ୍‌ରୁ ଗୋଟାଏ ଗାଡ଼ି ଭଡ଼ା ନେଇ ମୋତେ କାର୍ଯ୍ୟ ଶେଷ କରିବାକୁ ହେବ । କିନ୍ତୁ ପୋଲିସ୍ ବାହିନୀ ଓ ସେନାବାହିନୀ ଯେ ସମଗ୍ର ସହର ଓ ସହରତଳି ଅଞ୍ଚଳରେ ତଲାସୀ ଆରମ୍ଭ କରିଦେଇଛନ୍ତି । ସେମାନେ ଯଦି ଆମ ଗ୍ୟାରେଜ୍ ଖୋଲି...

ତେଣିକି ଆଉ ଚିନ୍ତା କରିପାରିଲି ନାହିଁ ।

ହରବନ୍ ସିଂ ଚେଆର୍‌ଟା କିନ୍ତୁ ଖାଲି ପଡ଼ିଥିଲା । ତା' ସହକାରୀ ରାମସେବକ୍ ଆଢୁଆଳରେ ଗୋଟାଏ ଚେଆର୍ ଉପରେ ବସି କ'ଣ ଗୋଟାଏ ବହି ଦେଖୁଥିଲା ।

ମୁଁ ଆଗେଇ ଗଲି ତା' ପାଖକୁ : ଖବର କ'ଣ ରାମସେବକ୍ ?

ରାମସେବକ୍ ଚମକି ଉଠିଲା ପରି ମୋ ଆଡ଼େ ଚାହିଁ ହସିଦେଲା । କହିଲା : ଆଉ କୁହନ୍ତୁ ନାହିଁ ରଜତବାବୁ । ଏ ଦି' ତିନି ସପ୍ତାହ ହେବ ବଜାର ବଡ଼ ମାନ୍ଦା ଯାଉଛି । ଘୋଡ଼ା ଗୁଡ଼ାକ ମୋତେ ବିଟ୍ରେ କରୁଛନ୍ତି । ଯେଉଁମାନେ ସିଓର ଉଇନ୍ ହେବା କଥା ସେମାନେ ପଛରେ ପଡ଼ିଯାଉଛନ୍ତି । ଦୁର୍ଭାଗ୍ୟ ଆଜ୍ଞା । ଦୁଃସମୟ ଆସିଲେ ଇମିତି ହୁଏ । ତା'ପରେ ଆପଣ ହଠାତ୍...

: ହଁ, ମୁଁ ଗୋଟାଏ ବିଶେଷ ଅସୁବିଧାରେ ପଡ଼ିଛି । ମୋ ଗାଡ଼ିଟାର ଦଫାରଫା ହୋଇଯାଇଛି । ଆଜି ରାତିକ ପାଇଁ ମୋର ଗୋଟାଏ ଗାଡ଼ି ଦରକାର ଯେ !

: ଦରକାର ଯେତେବେଳେ ନିଶ୍ଚୟ ନେବେ । କିଏ ଆପଣଙ୍କୁ ମନା କରୁଛି ?

: ତା'ହେଲେ ଭଲ ଦେଖି ଗୋଟାଏ ଗାଡ଼ିରେ ତେଲଫେଲ ଭର । ନ'ଟା ଭିତରେ ମୋତେ ବାହାରିବାକୁ ପଡ଼ିବ ।

: ଠିକ୍ ଅଛି । ରାମସେବକ୍ ଗୋଟାଏ ଛିଣ୍ଡା କାଗଜରେ ହିସାବ ଯୋଡ଼ିଲା । ପେଟ୍ରୋଲ ଇତ୍ୟାଦି ମିଶେଇ ଷାଠିଏ ସତୁରି ଟଙ୍କା ହେଉଛି । ଆପଣ ବରଂ ଶହେଟଙ୍କା ଜମା କରିଦେଇ ଯାଆନ୍ତୁ ।

ସଂଗେ ସଂଗେ ପକେଟ୍‌ରେ ହାତ ଭରି ପୁଣି ଫେରେଇ ଆଣିଲି । : ଖୁବ୍ ଦୁଃଖିତ ରାମସେବକ୍, ଟଙ୍କାଟା ଆଜି ବ୍ୟାଙ୍କରୁ ଉଠାଇବାକୁ ଭୁଲିଯାଇଛି । ତମେ କିଛି ଚିନ୍ତା କର ନାହିଁ । କାଲି ସକାଳେ ଗାଡ଼ି ଫେରେଇବା ବେଳେ ଟଙ୍କାଟା...

: କାଲି ସକାଳେ... କିନ୍ତୁ ସର୍ଦ୍ଦାରଜୀ ଆଜିକାଲି ମୋତେ ଧାର ବାକି ଦେଉ ନାହାନ୍ତି । ମୁଁ ଦେଲେ...

: ଆରେ ଏଠି ପୁଣି ଧାର ବାକିର ପ୍ରଶ୍ନ ଆସିଲା କୁଆଡୁ ? ମୁଁ ସର୍ଦ୍ଦାରଜୀଙ୍କର ଦଶ ବର୍ଷର ପୁରୁଣା ଖରିଦାର । ତମେ ମତେ...

: ନା ନା, ମୁଁ ଅବିଶ୍ୱାସ କରୁ ନାହିଁ । ସର୍ଦ୍ଦାରଜୀ ଥିଲେ ମୋର କିଛି କହିବାର ନଥିଲା । ଯା'ହେଉ ମୁଁ ମୋ ଦାୟିତ୍ୱରେ ଦେଉଛି । ଆପଣ ଏଠି ବସି ଫର୍ମ ଫିଲ୍‌ଅପ୍ କରି ଦିଅନ୍ତୁ । ମୁଁ ଗାଡ଼ିଟା ପରୀକ୍ଷା କରି ଦେଖି ଦେଉଛି । କିନ୍ତୁ କାଲି ସକାଳେ ଯେପରି ମୋତେ...

: ଆରେ ନା ନା । ମୁଁ ତମକୁ ମୋଟେ ଅସୁବିଧାରେ ପକାଇବି ନାହିଁ । କଥା ଦେଉଚି, ମୋତେ ବିଶ୍ୱାସ କର ।

ରାମସେବକ୍ ଚାଲିଗଲା । ମୁଁ ଫର୍ମ ଫିଲ୍ଅପ୍ କରିବାରେ ମନ ଦେଲି । ଶେଷରେ ଦସ୍ତଖତଟା କରି ଉଠୁଚି, ହରବନ୍ସ୍ ସିଂ ଜୋତା ମଚ୍ ମଚ୍ କରି ଭିତରକୁ ପଶିଲା ।

ଇସ୍ ଦୁର୍ଭାଗ୍ୟ କହନ୍ତି ଏଇଆକୁ । ମୁଁ ଯଦି ଆଉ ଦଶ ମିନିଟ୍ ପୂର୍ବରୁ ଆସି ପାରି ଥାନ୍ତି, ଗାଡ଼ି ନେଇ ଚମ୍ପଟ ଦେବାରେ ମୋଟେ ଅସୁବିଧା ହୋଇ ନଥାନ୍ତା । କିନ୍ତୁ ହରବନ୍ସ୍ ସିଂ....

: ଆରେ ରଜତବାବୁ ଯେ ! ବାଟ ଭୁଲି ଏଣେ ଚାଲି ଆସିଲେ ନା କ'ଣ ? ହରବନ୍ସ୍ ସିଂ ମୋ ସାମ୍ନା ଚେଆରରେ ବସୁ ବସୁ କହିଲା ।

: ନା ନା ହରବନ୍ସ୍ । ଏବେ ସମୟ ଖୁବ୍ କମ୍ ମିଳୁଛି । ଆସିବାକୁ ଇଚ୍ଛା ଥିଲେ ବି ଆସି ପାରୁ ନାହିଁ । ମୋ ସ୍ୱରଟା ମୋ କାନକୁ କିପରି ଅସ୍ୱାଭାବିକ ଶୁଣା ଯାଉଥିଲା ।

: ତା'ହେଲେ ? ହରବନ୍ସ୍ ସିଂ ଟେବୁଲ ଉପରୁ ଫର୍ମଟା ଉଠାଇ ନେଇ ମୋ ମୁହଁକୁ ଚାହିଁଲା ।

: ହଁ, ଆଜି ରାତିକ ପାଇଁ ନେଉଛି । କାଲି ସକାଳୁ ଫେରେଇ ଦେଇ ଯିବି ।

: ଟଙ୍କା ପଇସା ରାମସେବକକୁ ବୁଝାଇ ଦେଇଛନ୍ତି ?

: କାଲି ସକାଳେ ଗାଡ଼ି ଫେରେଇଲା ବେଳେ ଦେଇଯିବି ।

: କାଲି ସକାଳେ ? ନା ନା, ବାକି ଫାକି କାରବାର ମୁଁ ବନ୍ଦ୍ କରି ଦେଇଛି । କାଲି ଖାତା ଖେଳେଇ ଦେଖୁଥିଲି ଆପଣଙ୍କ ଉପରେ ଅଢ଼େଇଶ ଟଙ୍କା ବାକି । ମାଫ୍ କରିବେ ।

: କେତେ ? ଅଢ଼େଇଶ । ଆଚ୍ଛା ଠିକ୍ ଅଛି, କାଲି ସକାଳେ ମୁଁ ସବୁ ଦେଇଯିବି ।

: ତା' ହେଲେ କାଲି ସକାଳେ ଗାଡ଼ି ନେଇଯିବେ ।

: ତମେ ମତେ ଅବିଶ୍ୱାସ କରୁଚ ହରବନ୍ସ୍ । ମୁଁ ତମ ବାପାଙ୍କ ଅମଳର ଖରିଦାର । ଗାଡ଼ି ମୋର ଆଜି ଦରକାର, କାଲି ନେଇ କ'ଣ କରିବି ?

: ଟ୍ରାମ୍, ବାସ୍, ଟ୍ୟାକ୍ସି ସହରରେ ଅନେକ ଯାନବାହାନ ଅଛି, ଆପଣ ଅତି ସହଜରେ କାମ ଶେଷ କରି ପାରିବେ ।

: ତମେ ବୁଝୁନ ହରବନ୍ସ୍ । କାମଟା ସେତେ ଜରୁରୀ ହୋଇ ନଥିଲେ ମୁଁ ଆଦୌ ଗାଡ଼ିଭଡ଼ା ପାଇଁ ତମ ପାଖକୁ ଛୁଟି ଆସି ନଥାନ୍ତି । ତାଛଡ଼ା ତମେ ବୋଧହୁଏ ଜାଣିନାହଁ ମୁଁ ଏହା ଭିତରେ ଚାକିରି ପାଇଛି । ପୋଲିସ୍ ହେଡ଼କ୍ୱାର୍ଟରରେ ମୁଁ ସ୍ୱୟଂ ବଡ଼ ସାହେବଙ୍କର ପ୍ରେସ୍ ଅଫିସର ।

: ତା'ହେଲେ ଆପଣଙ୍କର ଚିନ୍ତା କ'ଣ ? ପୋଲିସ୍ ଲୋକ ଆପଣ । ପୋଲିସ୍‌ର ଜିପ୍ ଫିପ୍ ଗୋଟାଏ ଯୋଗାଡ଼ କରି ନିଅନ୍ତୁ । ମୋତେ ଅନୁରୋଧ ଉପରୋଧ କରି, ଏଣୁ ତେଣୁ ଦି'ଚାରି କଥା ଶୁଣି ଲାଭ ନାହିଁ । ସଫା କଥା ଟଙ୍କା ନଦେଲେ ମୁଁ ଗାଡ଼ି ଦେଇ ପାରିବି ନାହିଁ ।

ଟଙ୍କା...

ହଠାତ୍ ମୋର ମନେ ପଡ଼ିଗଲା, ମୋରି ଗ୍ୟାରେଜ୍‌ରେ ମୋରି ଗାଡ଼ିର ଲଗେଜ କ୍ୟାରିଅର୍ ଭିତରେ ପଡ଼ି ରହିଚି ପାଞ୍ଚଲକ୍ଷ ଟଙ୍କା, ଅଥଚ ମୁଁ ଆସି ଏଠାରେ ହରବନ୍ସ୍ ସିଂ

ପାଖରେ କୃପା ଭିକ୍ଷା କରି ଅପମାନିତ ହେଉଛି । ମୁଁ ଇଚ୍ଛା କଲେ ଏଇ ମୁହୂର୍ତ୍ତରେ ହରବନସିଂର ଗ୍ୟାରେଜ୍‌ଟା ବି କିଣି ନେଇ ପାରିବି ।

ନା, ଏଠାରେ ଆଉ ଠିଆହୋଇ ସମୟ ନଷ୍ଟ କରିବା ଦରକାର ନାହିଁ । ସମୟ ଆସିଲେ ହରବନସିଂ ସହିତ ପରେ ବୁଝାବୁଝି ହେବ ।

ଏଥର ଘରକୁ ଫେରିବାକୁ ହେବ । ଘର ଏଠାରୁ ବେଶି ବାଟ ନୁହେଁ । ଆଗର ସେଇ ମୋଡ଼ଟା ପାରିହେଲେ ଆମ ଘରଟା ଦିଶୁଚି ।

ଆଗେଇଲି । ପାଦର ଗତି କ୍ଷିପ୍ର ହୋଇ ଉଠିଥିଲା । ଯାହା ହେଉ, କିଛି ଗୋଟାଏ ବ୍ୟବସ୍ଥା କରିବାକୁ ହେବ । ସୁଲେଖାର ମୃତ ଦେହଟାକୁ ଯେପରି ହେଉ ଆଜି ରାତି ଭିତରେ ସ୍ଥାନାନ୍ତର କରିବାକୁ ହେବ । ପ୍ରଥମେ ଯାଇ ରୀଟାକୁ ବୁଝେଇ ସୁଝେଇ ସିନେମା ଥିଏଟର ଯୁଆଡ଼େ ହେଉ ପଠାଇ ଦେବି, ନହେଲେ ବଂଧୁ ବାନ୍ଧବ ଘର...

କିନ୍ତୁ ହଠାତ୍ ପାଦ ଦୁଇଟା ମୋର ଅଟକି ଗଲା କାହିଁକି । ସଦର ଦରଜାରେ ପହଞ୍ଚି ଗ୍ୟାରେଜ୍ ଆଡ଼େ ଚାହିଁ ମୁଁ ଯେମିତି ସ୍ଥବିର ପାଲଟି ଗଲି । ମୁଁ ଯେମିତି ଗୋଟାଏ ପଥର ମୂର୍ତ୍ତି । ମୋର ଶକ୍ତି ସାମର୍ଥ୍ୟ ସବୁ କୁଆଡ଼େ ଉଭେଇ ଗଲା । କ'ଣ ମୁଁ ଦେଖୁଚି ସାମ୍‌ନାରେ ?

ନା ସ୍ୱପ୍ନ ନୁହେଁ, ସ୍ୱପ୍ନ ଏହା ହୋଇପାରେନା । ବାସ୍ତବ ଏବଂ କଠୋର ବାସ୍ତବ ।

ଲୋକଦି'ଟା ମିଲିଟାରୀ ପୋଷାକ ପିନ୍ଧିଛନ୍ତି । ରୀଟା ସଙ୍ଗରେ କ'ଣ ଗରମା ଗରମ କଥାବାର୍ତ୍ତା କରୁଛନ୍ତି । ରୀଟା ଆଖି ମୋ ଉପରେ ପଡ଼ିବା ମାତ୍ରକେ ସେ ଯେପରି ବଞ୍ଚିଗଲା । ମୋ ଆଡ଼କୁ ଛୁଟି ଆସୁ ଆସୁ କହିଲା : ହେଇ ଘରର୍ ମାଲିକ ଆସି ଗଲେଣି । ଆପଣଙ୍କର ଯାହା ଦରକାର ସେଇଆଙ୍କୁ କୁହନ୍ତୁ ।

ସେମାନେ ଚାହିଁଲେ ମୋ ଆଡ଼କୁ । ଦୁଇଜଣଙ୍କ ମୁହଁରେ କଠୋର କାଠିନ୍ୟ । ବିରକ୍ତିର ଭାବ ସୁସ୍ପଷ୍ଟ ।

ରୀଟାକୁ ମୁଁ ପଚାରିଲି : ହେଇଚି କ'ଣ ? ତମେ ସମସ୍ତେ ଏପରି ଉତ୍ତେଜିତ ମନେ ହେଉଛ କାହିଁକି ?

: ହେଉଛି ଛେନାଗୁଡ଼ । ଏମାନେ ଗାଡ଼ିର ଲଗେଜ୍ କ୍ୟାରିଅର୍ ଖୋଲି ଦେଖିବାକୁ ଚାହାନ୍ତି । ମୁଁ କହିଲି ଚାବି ମୋ ପାଖରେ ନାହିଁ । ଅଥଚ ସେମାନେ କହୁଛନ୍ତି ଚାବି ନଥିଲେ ଆମେ ଭାଙ୍ଗି ପକାଇବୁ ।

: କିନ୍ତୁ କାହିଁକି ? ଆମ ଗାଡ଼ିର ଲଗେଜ୍ କ୍ୟାରିଅର୍ ଖୋଲିବାକୁ ଏମାନେ ଜିଦ୍ କରୁଛନ୍ତି କାହିଁକି ?

: ସେ କଥା ପରେ କହିବି । ତମେ ଆଗ ଚାବିଟା ଦେଲ, ସେମାନେ ଦେଖିଶୁଣି ବିଦାୟ ହୁଅନ୍ତୁ । ତା'ପରେ...

ସେତେବେଳକୁ ମୁଁ ପକେଟରେ ହାତ ଭରି ଚାବିଟା ଖୋଜିବାର ଛଳନା କରୁଥିଲି । ହଠାତ୍ ଚମକିଲା ପରି କହିଲି : ଓଃ ମନେ ପଡ଼ିଲା । ଚାବିଟା ଯେ ମୁଁ ଚାବିବାଲା ପାଖରେ ରଖି ଆସିଛି । ତମ ପାଇଁ ଗୋଟାଏ ଡୁପ୍ଲିକେଟ ଚାବି କରିବି ବୋଲି...

: ତା'ହେଲେ ଲଗେଜ୍ କ୍ୟାରିଅର୍ ଭାଙ୍ଗିବାକୁ ହେବ । ସେମାନଙ୍କ ଭିତରୁ ରୋଗା ଲୋକଟି କହିଲା ।

: ମୁଁ କ'ଣ କହୁଥିଲି କି, ମାତ୍ର ଆଉ କେତେଟା ଘଣ୍ଟା । ରାତି ପାହି ସକାଳ ହେବା ସଙ୍ଗେ ସଙ୍ଗେ ଚାବିଟା ମୋତେ ମିଳିଯିବ । ଆପଣମାନେ ଦୟାକରି ଯଦି କାଲି ସକାଳେ

ଥରେ ଆସନ୍ତେ, ତେବେ ଖୋଲି ଖାଲି ସବୁ ଦେଖାଇ ଦିଅନ୍ତି । ମୁଁ ସେଇ ମିଲିଟାରୀ ଲୋକ ଦୁଇଟିଙ୍କୁ ଉଦ୍ଦେଶ୍ୟ କରି କହିଲି ।

: ନା ନା, ସେ କଥା ହୋଇ ପାରିବ ନାହିଁ । ମୋଟା ଲୋକଟି ଉତ୍ତର ଦେଲା । ଆମକୁ କଡ଼ା ନିର୍ଦ୍ଦେଶ ଅଛି ଦରକାର ହେଲେ ତାଲା ଭାଙ୍ଗି ଇନ୍‌କ୍ୱାରୀ କରିବା ପାଇଁ । ଆଜି ରାତି ସୁଦ୍ଧା ଆମ ଅଫିସରଙ୍କ ପାଖରେ ଇନ୍‌କ୍ୱାରୀ ରିପୋର୍ଟ ଦାଖଲ କରିବାକୁ ହେବ ।

: ସବୁ ବୁଝିଲି ଯେ ! ଆପଣମାନେ ହୁଏତ ଜାଣି ନାହାନ୍ତି ମୁଁ ପୋଲିସ୍ ହେଡ୍‌କ୍ୱାର୍ଟରରେ ଚାକିରି କରେ ଏବଂ ଖୋଦ୍ ବଡ଼ ସାହେବଙ୍କର ମୁଁ ପ୍ରେସ୍ ଅଫିସର୍ । ସେଇଥିପାଇଁ କହୁଥିଲି ଯଦି ଆଜି ରାତିଟା ଅପେକ୍ଷା କରି ଯାଆନ୍ତେ, ମୁଁ ଗୁଡ଼ାଏ ଖର୍ଚ୍ଚାନ୍ତରୁ ବଞ୍ଚି ଯାଆନ୍ତି ।

ରୋଗା ଲୋକଟା ମୋଟା ଲୋକଟା ମୁହଁକୁ ଚାହିଁଲା । ମୋଟା ଲୋକଟା ଗୋଟାଏ ହାତୁଡ଼ି ଧରି ପ୍ରସ୍ତୁତ ହେଉଥିଲା ଲଗେଜ୍ କ୍ୟାରିଅର୍ ଭାଙ୍ଗିବା ପାଇଁ । ଦୁଇଜଣଙ୍କର ଆଖି ମିଶିଲା । ସେ ହାତୁଡ଼ିଟା ଦୂରକୁ ଫିଙ୍ଗି ଦେଇ କହିଲା : କାଲି କିନ୍ତୁ ସକାଳ ଆଠଟା ବେଳେ ଆମେ ଆସି ପହଞ୍ଚିବୁ, ଯଦି ଚାବି ନଥାଏ, କାଲି ଆଉ କିଛି ଶୁଣିବୁ ନାହିଁ ।

ମୁଁ ଗଦ୍ ଗଦ୍ ହୋଇ କହିଲି ନା ନା, କାଲି ସକାଳ ଆଠଟା କାହିଁକି, ସାତଟାରେ ଆସିଲେ ବି ମୁଁ ଚାବି ଆଣି ରଖିଥିବି ।

ସେମାନେ ଚାଲିଗଲେ ।

ରୀଟା ମୋ ଆଡ଼େ ରୋଷକଷାୟିତ ନୟନରେ ଚାହିଁ କହିଲା, : ସାମାନ୍ୟ ଗୋଟାଏ ଚାବି ପାଇଁ ମୋତେ ସେମାନେ ଯାହା ହଇରାଣ କଲେଣି ନା, ତମେ ବା ଏତେ ଶୀଘ୍ର ଗୋଟାଏ ଡୁପ୍ଲିକେଟ୍ ଚାବି ତିଆରି କରିବାକୁ ଦେଇ ଦେଲ କାହିଁକି ?

: ଓଃ ସେ କଥା ଥାଉ ରୀଟା । ଦିନ ସାରା ଖଟି ଖଟି ଆସିଲି ଟିକିଏ ବିଶ୍ରାମ କରିବା ପାଇଁ, କେଉଁଠି ଟିକିଏ ତ୍ରାହି ନାହିଁ । ହେ ଭଗବାନ...

ଏଥର ରୀଟା ହସିଲା । କହିଲା : ଲୋକ ଦି'ଟା ଏତେ ରୁକ୍ଷ ଯେ ମୁଁ ଭାବି ପାରୁନାହିଁ ସେ କିମିତି ତମ କଥା ଶୁଣି ରାଜି ହୋଇ ଚାଲି ଗଲେ । ଆଚ୍ଛା ଛାଡ଼ ସେ ସବୁ । ଘରକୁ ଆସିଲ !

ମୁଁ ରୀଟାର କାନ୍ଧରେ ହାତଭରା ଦେଇ ଧୀରେ ଧୀରେ ଘର ଭିତରେ ପଶିଲି । ବୈଠକ ଖାନାରେ ପହଞ୍ଚି କୋଟ୍‌ଟା ଆଲଣାକୁ ଲକ୍ଷ୍ୟ କରି ଫିଙ୍ଗି ଦେଇ ସୋଫା ଉପରେ ଗୋଡ଼ ଉଠେଇ ବସିଲି । ଧୀରେ ଧୀରେ ଆଖି ଲାଗି ଆସୁଥିଲା ।

ରୀଟା ସୁଗୃହିଣୀ । ସେ ଜାଣେ ମୋର କେତେବେଳେ କ'ଣ ଆବଶ୍ୟକ । ସେ ବୁଝି ପାରିଥିଲା ଏଇ ମୁହୂର୍ତ୍ତରେ ମୋର କ'ଣ ଦରକାର । ସେଇଥିପାଇଁ ସେ ଗୋଟିଏ ଗ୍ଲାସରେ ହୁଇସ୍କି ଢାଳି ଆଣି ମୋତେ ଡାକିଲା ।

ମୁଁ ନିଦ ମଳ ମଳ ଆଖିରେ ହାତ ବଢ଼େଇ ଗ୍ଲାସ ନେଲି । ଗ୍ଲାସରେ ମୁହଁ ଲଗେଇଲି । ସିଗାରେଟ୍ ପ୍ୟାକେଟ୍‌ଟା ବି ମୋ ଆଡ଼କୁ ବଢ଼େଇ ଦେଲା ରୀଟା ।

ନେଲି ।

ସେ ବୋଧହୁଏ ଡିଆସିଲି ଖୋଜୁଥିଲା ସିଗାରେଟ୍ ଲଗେଇ ଦେବା ପାଇଁ ।

: କ'ଣ ଖୋଜୁଚ ? ପଚାରିଲି ।

: ଡିଆସିଲିଟା ପାଉ ନାହିଁ । ରୀଟା କହିଲା ।

: ମୋ କୋଟ୍ ପକେଟରେ ଲାଇଟର ଅଛି ।

ଆଲଣା ପାଖରେ ଫ୍ଲୋର୍ ଉପରେ ମୋ କୋଟ୍‌ଟା ମୁହଁ ମାଡ଼ି ପଡ଼ିଥିଲା । ରୀଟା ଉଠେଇ ଆଣି ପକେଟରେ ହାତ ଭରିଲା । ମୁଁ ଗ୍ଲାସରେ ମୁହଁ ଲଗାଇଲି ।

: ଇଏ କ'ଣ ?

ରୀଟା ହଠାତ୍ କିପରି ଅସ୍ୱାଭାବିକ ଭାବରେ ଚିତ୍କାର କରି ଉଠିଲା ।

ମୋର ନିଦର ଘୋର କଟିଗଲା । ମୁଁ ଚମକି ଉଠିଲି ।

ରୀଟା ତା'ର ଦୁଇ ଆଙ୍ଗୁଳି ମଝିରେ ମୋ ଚାବି ରିଂଟା ଧରି ଧୀରେ ଧୀରେ ମୋ ଆଡ଼କୁ ଆଗେଇ ଆସୁଥିଲା ।

କି ଉତ୍ତର ଦେବି ମୁଁ ରୀଟାକୁ ? ତଣ୍ଟି ମୋର ଶୁଖି ଯାଇଥିଲା । ମୁଁ ବିସ୍ମୟ ବିସ୍ଫାରିତ ଆଖିରେ ରୀଟାକୁ ଚାହିଁଥିଲି । ରୀଟା ମୁହଁରେ ବି ଭାଷା ନଥିଲା । ସେ କେବଳ ଚାବି ରିଂଟାକୁ ମୋ ଆଡ଼କୁ ଦେଖେଇ ଦେଖେଇ ଆଗେଇ ଆସୁଥିଲା । ମୋ ଆଖି ଆଗରେ ଚାବି ରିଂଟା ଗୋଟାଏ ବିରାଟ କାୟା ବିସ୍ତାର କରିଥିଲା । ମନେ ହେଉଥିଲା ଯେପରି ଫାଶୀକାଠର ସେଇ ଗୋଲେଇ ଦଉଡ଼ିଟା ରୀଟା ଧରି ଆଗେଇ ଆସୁଛି ମୋ ଗଳାରେ ପିନ୍ଧାଇ ଦେବା ପାଇଁ ।

ଦୁହେଁ ଦୁହିଁଙ୍କୁ ନିର୍ବାକ୍ ହୋଇ ଚାହିଁଥିଲୁ ଅନେକ ବେଳଯାଏ । କିନ୍ତୁ ହଠାତ୍ ଏକ ସମୟରେ ମୋ ହାତରୁ ଗ୍ଲାସଟା ଖସି ପଡ଼ି ଝନ୍ ଝନ୍ ହୋଇ ଭାଙ୍ଗିଗଲା ଫ୍ଲୋର୍ ଉପରେ ।

ମୁଁ ଅସହାୟ, ରୀଟା ଆଖିରେ ମୁଁ ଅପରାଧୀ ।

ରୀଟା ଆଗରେ ମୁହଁ ଦେଖାଇବି କିପରି ?

ଏଇ ମୁହୂର୍ତ୍ତରେ ଘର ଛାଡ଼ି କୁଆଡ଼େ ପଳାଇଯିବି । ସୋଫା ଉପରୁ ଉଠି ପଡ଼ିଲି । କିନ୍ତୁ ପାଦେ ବି ଆଗେଇ ପାରିଲି ନାହିଁ । ଚାରିଆଡ଼ ମୋତେ ଅନ୍ଧାର ଦେଖାଗଲା । ମୁଁ ପଡ଼ି ଯାଉଥିଲି । ରୀଟା ଦୁଇ ହାତରେ ମୋତେ ଜାବୁଡ଼ି ଧରିଲା ।

ରୀଟା କାନ୍ଧରେ ମୁଣ୍ଡ ରଖି ଭୋ ଭୋ ହୋଇ କାନ୍ଦି ଉଠିଲି ।

\+ + +

ରୀଟା ମୋତେ ନେଇ ଶୁଆଇ ଦେଲା ବିଛଣାରେ ।

ଅନେକ ଅନେକ ଅନେକ ସମୟ ପରେ ମୁଁ ଧୀରେ ଧୀରେ ତା' ପ୍ରଶ୍ନର ଉତ୍ତର ଦେଲି । ଗୋଟି ଗୋଟି କରି ସବୁ କହିଲି । ସବିତା ସହିତ ପ୍ରଥମ ପରିଚୟ ଠାରୁ ଆରମ୍ଭ କରି ସୁଲେଖା ଶବ ମୋ ଗାଡ଼ିର ଲଗେଜ୍ କ୍ୟାରିଅରଥିବା ପର୍ଯ୍ୟନ୍ତ ସବୁ କଥା ରୀଟା ଶୁଣିଲା ।

ଶୁଣି ସାରି ଗୋଟାଏ ଦୀର୍ଘଶ୍ୱାସ ପକାଇ କହିଲା : ତା' ହେଲେ ତମେ ଏତେ ଦିନଯାଏ ମୋ ପାଖରେ ଏସବୁ ଗୋପନ ରଖିଥିଲ କାହିଁକି ?

: ଇଚ୍ଛା କରି ରୀଟା । ତମେ ଭୟ ପାଇବ ବୋଲି, ତମେ ମୋତେ ଘୃଣା କରିବ ବୋଲି । ମୁଁ ଜାଣେ ଏଇ ମୁହୂର୍ତ୍ତରେ ତମେ ମୋ ଜୀବନର ଏଇ ଅପକୀର୍ତ୍ତି ସବୁ ଶୁଣି ସାରିଲା ପରେ ମୋତେ...

: ନା ନା, ତମେ ସେପରି ଭାବନାହିଁ ମୋଟେ । ତମେ ମୋର ସ୍ୱାମୀ । ତମ ସୁଖ ଦୁଃଖର ସମଭାଗୀ ହୋଇ ମୋତେ ଚଳିବାକୁ ହେବ । ବିଶ୍ୱାସ କର ମୋ ମନରେ ତମ ପ୍ରତି ଟିକିଏ ହେଲେ ଘୃଣା ଭାବ ଜନ୍ମି ନାହିଁ । ଘଟଣାର ଆବର୍ତ୍ତରେ ପଡ଼ି ତମେ ଯାହା କରିଚ ସବୁ ମୋ ପାଇଁ, ସବୁ ମୋରି ଭଲ ପାଇଁ । ତମେ ମୋତେ ବିଶ୍ୱାସ କର । ମୁଁ ତମର ପାପ ପୁଣ୍ୟର ସମାନ ଅଂଶୀଦାର । ତମେ... ତମେ...

ରୀଟାକୁ ମୁଁ କୋଳକୁ ଟାଣି ନେଲି । ସେ ମୋ ଛାତି ଉପରେ ମୁହଁ ରଖି କଇଁ କଇଁ ହୋଇ କାନ୍ଦୁଥିଲା ।

ନୀରବତା ଭିତରେ କେତେ ସମୟ କଟିଗଲା କେଜାଣି, କାନ୍ଥ ଘଡ଼ିରେ ଏଗାରଟା ବାଜିବାର ଶବ୍ଦ ଶୁଣି ରୀଟା ଧଡ଼ପଡ଼ ହୋଇ ଉଠିଲା ।

: ନା, ଆଉ ଡେରି କରିବା ଉଚିତ ନୁହେଁ । ଯେପରି ହେଉ ସୁଲେଖାର ମୃତ ଦେହଟାକୁ କେଉଁଠି ନିରାପଦ ସ୍ଥାନରେ ଫିଙ୍ଗି ଦେଇ ଆସିବାକୁ ହେବ ।

: ହଁ, ମୁଁ ବି ସେଇଆ ଭାବୁଚି । ବର୍ତ୍ତମାନ ଆମର ସବୁଠାରୁ ବେଶି ଦରକାର ହେଉଛି ଖଣ୍ଡେ ଗାଡ଼ିର ।

: କିନ୍ତୁ ଗାଡ଼ି ମିଳିବ କେଉଁଠୁ ? ଭଡ଼ା ଯେ ଆଣିବା, ଭଡ଼ା ଦେବାଭଳି ଟଙ୍କା ତ ଆମ ପାଖରେ ନାହିଁ ।

: ଟଙ୍କା ନାହିଁ ମାନେ ? ମୁଁ ସ୍ୱପ୍ନରୁ ଉଠିଲା ପରି କହିଲି । ପାଞ୍ଚଲକ୍ଷ ଟଙ୍କା ଯେ ଆମ ଗାଡ଼ିର ଲଗେଜ୍ କ୍ୟାରିଅର୍‌ରେ ଶଢୁଚି ।

: କିନ୍ତୁ ସେ ଟଙ୍କା ତମେ କ'ଣ ଖରଚ କରିବ ? ପରେ ଯଦି ପୋଲିସ୍...

: ନା, ପୋଲିସ୍‌ର ଭୟ କିଛି ନାହିଁ । ସବୁ ଦଶଟଙ୍କିଆ ନୋଟ୍ ।

: ତା'ହେଲେ ତମେ କିଛି-ଟଙ୍କା ନେଇ ଚାଲିଯାଅ । ଗୋଟାଏ ଗାଡ଼ି ଭଡ଼ା କରି ଆଣ । ତା'ପରେ...

ମୁଁ ଉଠିଲି । ଟେବୁଲ୍ ଡ୍ରୟାରରୁ ଛୋଟ ଟର୍ଚ୍ଚଟି ବାହାର କରି ଧୀରେ ଧୀରେ ଆଗେଇ ଗଲି ଗ୍ୟାରେଜ୍ ଆଡ଼କୁ ।

ରୀଟା ଚାବି ନେନ୍ଥାଟା ମୋ ଆଡ଼କୁ ବଢ଼ାଇ ଦେଇ କହିଲା : ମୁଁ ତମ ସାଙ୍ଗରେ ଯିବି ?

: ନା ନା, ତମର ଯିବା ଦରକାର ନାହିଁ । ଚାରିଆଡ଼େ ନଜର ରଖିଥାଅ । ମୁଁ ଆଟାଚିଟା ଧରି ସଙ୍ଗେ ସଙ୍ଗେ ଫେରି ଆସୁଚି ।

ବାହାରକୁ ବାହାରି ଚାରିଆଡ଼କୁ ଚାହିଁଲି । ନା, କାହାରି ଘରେ ଆଲୁଅ ଜଳୁନାହିଁ । ସନ୍ତର୍ପଣରେ ଯାଇ ଗ୍ୟାରେଜ୍ ଦରଜା ଖୋଲିଲି । ତା'ପରେ ଲଗେଜ୍ କ୍ୟାରିଅର୍ ।

କିପରି ଗୋଟାଏ ଦୁର୍ଗନ୍ଧ ଆସି ନାକରେ ବାଜିଲା । ମନେହେଲା ବାନ୍ତି ହୋଇଯିବ ସଙ୍ଗେ ସଙ୍ଗେ । କିନ୍ତୁ ନିଜକୁ ସଂଯତ କରି ଟର୍ଚ୍ଚର ମଳିନ ଆଲୋକରେ ଲଗେଜ୍ କ୍ୟାରିଅର୍‌ରୁ ଆଟାଚି କେସ୍‌ଟି ବାହାର କଲି । ଆଡ଼ ଆଖିରେ ଚାହିଁଲି ଥରେ ସୁଲେଖା ଆଡ଼େ । ମୋର ସର୍ବାଙ୍ଗ ଥରି ଉଠିଲା । ନା, ବର୍ତ୍ତମାନ ଆଉ ଭାଙ୍ଗି ପଡ଼ିଲେ ଚଳିବ ନାହିଁ । ମୁଣ୍ଡ ଠିକ୍ ରଖି ପାଦ ଶକ୍ତ କରି, ଲଗେଜ୍ କ୍ୟାରିଅର୍ ବନ୍ଦ କଲି । ଗ୍ୟାରେଜ୍ ଦରଜା ବନ୍ଦ କରି ଚାବି

ପକାଇଲି । ଟଳି ଟଳି ଯାଇ ଡ୍ରଇଂରୁମ୍ ଟେବୁଲ ଉପରେ ଆଟାଚିଟା ଥୋଇ ଦେଇ, ସୋଫା ଉପରେ ବସି ପଡ଼ିଲି ।

ରୀଟା ମୋ ହାତକୁ ହୁଇସ୍କି ଗ୍ଲାସଟା ବଢ଼େଇ ଦେଲା ।

ଏକାଥରକେ ଗ୍ଲାସଟା ନିଃଶେଷ କରି ଟେବୁଲ ଉପରେ ରଖି ଦେଇ ଗୋଟାଏ ସିଗାରେଟ୍ ଲଗାଇଲି ।

ରୀଟା ଆଖିରେ ଅଦମ୍ୟ କୌତୂହଳ ।

ଥରିଲା କଣ୍ଠରେ ସେ କହିଲା : ଆଟାଚିଟା ଖୋଲିବି ?

ଜ୍ୱଳନ୍ତ ସିଗାରେଟ୍‌ଟା ଆଷ୍ଟ୍ରେ ଭିତରେ ଗୁଞ୍ଜିଦେଇ ଆଟାଚି କେସ୍‌ଟା ଟାଣି ଆଣିଲି କୋଳ ଉପରକୁ ।

ଦୁଇ ପାଖର ଟିପା ତାଲା ଦୁଇଟି ଦୁଇ ହାତରେ ଟିପି ଦେଲି । ଟିକ୍ ଟିକ୍ କରି ଶବ୍ଦ ହେଲା ଦୁଇଥର । ଏଥର ତାଲା ଖୋଲିଲେ ଭିତରେ ପାଇବି କୁବେର ଭଣ୍ଡାର । ତାଲା ଖୋଲିବା ପୂର୍ବରୁ ରୀଟା ଆଡ଼କୁ ଥରେ ଚାହିଁଲି । ସେ ଅପଲକ ନୟନରେ ଅନେଇ ରହିଚି ଆଟାଚିଟାକୁ ।

ଫଟ୍‌କରି ଖୋଲିଦେଇ ଆଟାଚିଟାକୁ ଓଲଟେଇ ଦେଲି ଟେବୁଲ ଉପରେ । ଭାବିଥିଲି ବଣ୍ଡିଲ୍ ବଣ୍ଡିଲ୍ ଦଶ ଟଙ୍କାର ନୋଟ୍ ବିଛି ହୋଇ ପଡ଼ିବ ଘରଯାକ ।

କିନ୍ତୁ... କିନ୍ତୁ...

ମୋ ଆଖିକି ମୁଁ ମୋତେ ବିଶ୍ୱାସ କରି ପାରିଲି ନାହିଁ । ଟଙ୍କା ବଦଳରେ ଗୋଛାଏ ପୁରୁଣା ଖବର କାଗଜ ଜମା ହୋଇ ପଡ଼ିଲା ଟେବୁଲ ଉପରେ । ହଁ, ପ୍ରାୟ ପଚିଶ ତିରିଶ ଖଣ୍ଡ ଖବର କାଗଜ । ଚାରିଚଉତ କରି ଭଲଭାବରେ ଭଙ୍ଗା ହୋଇଛି । ପଡ଼ି ରହିଛି ମୋରି ଆଖି ସାମ୍‌ନାରେ ।

ଘରଟା ଯେପରି ମୋ ଆଖି ଆଗରେ ଚର୍‌କି ପରି ଘୂରିବାକୁ ଲାଗିଲା । ଟେବୁଲ୍, ଚେଆର, ସୋଫା, ରୀଟା ଏବଂ...

ମୁଁ ମୋ ଦୁଇ ହାତରେ ଆଖିକୁ ବନ୍ଦ କରିଦେଇ ସେଇଠି ବସି ପଡ଼ିଲି ।

: ଶୁଣୁଛ ? ରୀଟା ମୋତେ ଧୀରେ ଧୀରେ ଡାକିଲା, ଇଏ କ'ଣ ହେଲା ? ଆଟାଚି ଭିତରେ ଥିଲା ତିରିଶଖଣ୍ଡ ଖବର କାଗଜ । ଗୋଟିଏ ବି ଟଙ୍କା ନାହିଁ । ମୁଁ ତନ୍ନ ତନ୍ନ କରି ସବୁ କାଗଜ ଖେଳେଇ ଦେଖିଚି ।

: ହଁ ରୀଟା । ମୁଁ ବି ସେଇଆ ଦେଖୁଚି ।

: କିନ୍ତୁ ଏତେ ଗୁଡ଼ିଏ ଟଙ୍କା ଗଲା କୁଆଡ଼େ ?

: ଆଶ୍ଚର୍ଯ୍ୟ ରୀଟା । ମୁଁ କିନ୍ତୁ ଆଟାଚି ହାତରେ ପାଇବା ପରଠାରୁ ସବୁବେଳେ ଆଖି ଆଗରେ ରଖିଚି ।

: ତା'ହେଲେ ରାଜେନ୍ଦ୍ର ପ୍ରସାଦ କ'ଣ ତୁମକୁ ଠକିଦେଲେ ?

: ନା ନା, ସେ ସେପରି ଲୋକ ନୁହନ୍ତି । ତା'ଛଡ଼ା ଝିଅର ଜୀବନ ମରଣ ସମସ୍ୟା ଯେଉଁ ଟଙ୍କା ସହିତ ଜଡ଼ିତ, ସେ ଅନ୍ତତଃ ଏ କ୍ଷେତ୍ରରେ ଠକିବାକୁ ସାହସ କରି ନଥିବେ ।

: ତା'ହେଲେ...

: ଜାଣ ରୀଟା, ମୋର କାହିଁକି ମନେ ହେଉଛି ଠକିଛି ମୋତେ ସବିତା । ସେ ଜାଣି ଶୁଣି ଜଣେ ଜେଲ ଫେରନ୍ତା ଦାଗୀ ଲୋକକୁ ଏ ସମସ୍ୟା ଭିତରକୁ ଟାଣିଲା ସତ, କିନ୍ତୁ ମୋତେ ଲକ୍ଷେ ଟଙ୍କା ଦେବାର ଇଚ୍ଛା ତା'ର ନଥିଲା । ତମେ ଜାଣନା ବୋଧେ ରୀଟା, ଏଇ ଟଙ୍କା ମୋତେ ଦେବା ପାଇଁ ଦୁଇଟି ଏକା ରଙ୍ଗର ଆଟାଚି କିଣା ହୋଇଥିଲା । ସବିତା ସେଇଠି ହୁଏତ ହାତ ବଦଳ କରି ଦେଇଛି । ମୋ ମନ କହୁଛି ଏ କାରସାଦି ସବିତାର... ହଁ ସବିତା...

: ସେ ତ ଯା' ହେବାର ହୋଇ ଯାଇଚି । କିନ୍ତୁ ବର୍ତ୍ତମାନ କ'ଣ କରିବା ? ଆଗ ଏ ପାପ ମୁକ୍ତ ହେବାକୁ ପଡ଼ିବ ତ ?

: ବୁଝିଲି ଯେ ! ହେଲେ ମୋ ମୁଣ୍ଡରେ ତ କିଛି ପଶୁନାହିଁ । ଗୋଟାଏ ଗାଡ଼ି ଛଡ଼ା ଏ କାମ...

: ହଁ ଗାଡ଼ିତ ଗୋଟାଏ ଯୋଗାଡ଼ କରିବାକୁ ପଡ଼ିବ । ରୀଟା ଚିନ୍ତାଗ୍ରସ୍ତ ହୋଇ ପଡ଼ିଲା । ଆଚ୍ଛା ଗାଡ଼ି ଗୋଟାଏ ଯେତେବେଳେ ଆମର ନିଶ୍ଚୟ ଦରକାର ତା' ହେଲେ ଗୋଟାଏ କାମ କଲେ ହୁଅନ୍ତା ନାହିଁ ?

: ତମ ପ୍ରସ୍ତାବଟା ଶୁଣେ ।

ରୀଟା ଦିଆଲ ଘଡ଼ିକୁ ଚାହିଁଲା । କହିଲା : ଏଇକ୍ଷିଣା ଚୌରଙ୍ଗୀର ସବୁ ସିନେମା ହାଉସ୍ ସାମ୍ନାରେ ବହୁତ ଗାଡ଼ି ଠିଆ ହୋଇଥିବ ।

: ତା' ମାନେ ଆମେ ଗାଡ଼ି ଚୋରି କରିବା ?

: ନା ଚୋରି ନୁହେଁ । ଧାର । ମାତ୍ର କେତୋଟି ଘଣ୍ଟା ପାଇଁ । ଆମେ ଗାଡ଼ି ଆଣି ଆମ ଗ୍ୟାରେଜରୁ ସୁଲେଖାର ମୃତ ଦେହଟା ବାହାର କରି ନେଇ ସେଇ ଗାଡ଼ିର ଲଗେଜ୍ କ୍ୟାରିଅର୍‌ରେ ରଖିବା । ତା'ପରେ ବହୁ ଦୂରକୁ ନେଇ ଗାଡ଼ିଟା ଛାଡ଼ି ଦେଇ ଆସିବା । ପରଦିନ ପୋଲସ୍ ଗାଡ଼ି ଏବଂ ମୃତ ଦେହ ଦୁଇଟାଯାକ ଉଦ୍ଧାର କରିବ । ଯାହାର ଗାଡ଼ି ତାକୁ ଫେରେଇ ଦେବ ।

ରୀଟାର ପ୍ଲାନ୍‌ଟା ମନ୍ଦ ନୁହେଁ । ମୁଁ ମନେ ମନେ ଚିନ୍ତା କରୁଥିଲି ।

: କି, ଚୁପ୍ ରହିଲ ଯେ ! କ'ଣ ଗୋଟାଏ କୁହ ।

: କ'ଣ ଆଉ କହିବି । ହୁଏତ ନୂଆ କରି ଗାଡ଼ି ଚୋରି ଅପରାଧରେ ଅପରାଧୀ ହେବାକୁ ପଡ଼ିବ । କିନ୍ତୁ ଏହାଛଡ଼ା ଯେ ଅନ୍ୟ ପଥ କିଛି ନାହିଁ । ମୁଁ ନୀରସ ସ୍ୱରରେ କହିଲି ।

: ତା'ହେଲେ ଉଠ । ଆଉ ଘଣ୍ଟାକ ପରେ ସିନେମା ଭାଙ୍ଗିଯିବ ଯିଏ ଯୁଆଡ଼େ ନିଜ ନିଜର ଗାଡ଼ି ନେଇ ପଳେଇ ଯିବେ । ଆମକୁ ଆଉ ସୁଯୋଗ ମିଳିବ ନାହିଁ ।

: ଚାଲ । ମୁଁ ସଙ୍ଗେ ସଙ୍ଗେ ଉଠିଲି ।

ଦୁହେଁ ନୀରବରେ ଆଗେଇ ଚାଲିଲୁ । ଚୌରଙ୍ଗୀରେ ମେଟ୍ରୋ ସିନେମା ସାମ୍ନାରେ ଅସଂଖ୍ୟ ଗାଡ଼ି ଠିଆ ହୋଇଛି । ଆମର କିନ୍ତୁ ଅଜସ୍ର ବା ଅସଂଖ୍ୟର ପ୍ରୟୋଜନ ନାହିଁ । କେବଳ ଗୋଟିଏ । ମାତ୍ର କେଇ ଘଣ୍ଟା ପାଇଁ । କିନ୍ତୁ ଏହି ପ୍ରଶସ୍ତ ଉଜ୍ଜ୍ୱଳ ରାସ୍ତା ଉପରୁ ଗାଡ଼ି ନେଇ ପଳେଇବା କ'ଣ ସହଜ ହେବ ?

ରୀଟା କହିଲା : ନା ଏଠି ନୁହେଁ । ଚାଲ 'ଲାଇଟ୍ ହାଉସ୍' ସାମ୍ନାକୁ । ସେଠାରେ ଛୋଟ ଜାଗା । ବହୁତ ଗାଡ଼ି ଏପାଖ ସେପାଖ ହୋଇ ଜମା ହୋଇଥିବ । ରାସ୍ତାଟା ଅପେକ୍ଷାକୃତ ଅନ୍ଧକାର । ତେଣୁ ଆମ କାମ ହାସଲ ପାଇଁ...

ରୀତା ଠିକ୍ କହିଛି । ଆମେ ଗୋଟାକ ପରେ ଗୋଟାଏ ଗାଡ଼ିକୁ ଚାହିଁ ଚାହିଁ ଆଗେଇଲୁ । କାହାରି ଡ୍ୟାସ୍‌ବୋର୍ଡ଼ରେ ଚାବି ଲାଗି ନାହିଁ । କିନ୍ତୁ କେହି କ'ଣ ବ୍ୟସ୍ତ ବିବ୍ରତ ହୋଇ ଭୁଲ୍‌ରେ ଡ୍ୟାସ୍‌ବୋର୍ଡ଼ରେ ଚାବି ଝୁଲାଇ...

ରୀତା ହଠାତ୍ ଗୋଟାଏ ଜାଗାରେ ଅଟକି ଯାଇ ମୋତେ ହାତଠାରି ଡାକିଲା । ହଁ ସେ ପାଇଛି । ଗୋଟାଏ ଚକୋଲେଟ୍ ରଙ୍ଗର ଆମ୍ବାସାଡ଼ାର ଗାଡ଼ିର ଡ୍ୟାସବୋର୍ଡ଼ର ଚାବି ଝୁଲୁଛି । ମୁଁ ଯାଇ ଦେଖିଲି, କିନ୍ତୁ କେହି ଯଦି ଗାଡ଼ିଷ୍ଟାର୍ଟ କଲାବେଳେ ଦେଖି ପକାଏ... ଗାଡ଼ିର ମାଲିକ ଯଦି ନିଜେ ଆସିଯାଏ...

ରୀତା ମୋତେ ହଲାଇଦେଇ କହିଲା : ଏଇକ୍ଷିଣା ଚିନ୍ତା କରି ଆଉ ସମୟ ନଷ୍ଟକଲେ ଚଳିବ ନାହିଁ । ରାସ୍ତାରେ ଯେଉଁମାନେ ଯାତାୟାତ କରୁଛନ୍ତି, ସେମାନେ ଆମକୁ ମୋଟେ ସନ୍ଦେହ କରିବେ ନାହିଁ । ଆଉ ଗାଡ଼ିର ମାଲିକ ନିଶ୍ଚୟ ସିନେମା ଦେଖୁଛି । ତମେ ଆସିଲ ।

ନିଜେ ସେ ଗାଡ଼ିର ଦରଜା ଖୋଲି ଭିତରକୁ ପଶି ଯାଇ ଷ୍ଟିଅରିଂ ଧରିଲା । ମୁଁ ଗାଡ଼ିକୁ ଉଠିବା ମାତ୍ରକେ ସେ ଷ୍ଟାର୍ଟ କରି ସେଠାରୁ ବାହାରିଗଲା ।

ମୁଁ ଏକା ଥିଲେ ହୁଏତ ଏତେଟା ଦୁଃସାହସ କରି ପାରି ନଥାନ୍ତି । କାରଣ ଧକ୍‌କା ପରେ ଧକ୍‌କା ଖାଇଖାଇ ମୁଁ କ୍ଳାନ୍ତ ହୋଇ ପଡ଼ିଥିଲି । ମୋର ସମସ୍ତ ଧୈର୍ଯ୍ୟ ଶକ୍ତି ନଷ୍ଟ ହୋଇ ଯାଇଥିଲା । ରୀତା କିନ୍ତୁ ବଡ଼ ରାସ୍ତାରେ ଗାଡ଼ି ପଡ଼ିବା ମାତ୍ରକେ ଦ୍ରୁତବେଗରେ ଆଗେଇ ଯାଇଥିଲା ।

ମୋ ମୁଣ୍ଡଟା ଘୂରୁଥିଲା ଆହୁରି ଦ୍ରୁତ ବେଗରେ । ମୋ ମନ ଭିତରେ ଦୀର୍ଘ କେତେଘଣ୍ଟା ଧରି ମାତ୍ର ଗୋଟିଏ ଭାବନା, ସୁଲେଖାକୁ ହତ୍ୟା କଲା କିଏ ? ସୁଲେଖାକୁ ହତ୍ୟା କରିବା ମୂଳରେ କାହାର କି ସ୍ୱାର୍ଥ ନିହିତ ଥିଲା ? ମୋ ଆଖି ଆଗରେ ଭାସି ଉଠୁଥିଲା କେବଳ ଜଣକ ମୁହଁ । ସେ ଜଣକ ସବିତା । କିନ୍ତୁ ତାକୁ ହତ୍ୟା କରି ସେ ଯେ ନିସ୍ତାର ପାଇପାରିବ ନାହିଁ, ଏକଥା ମଧ ସେ ଜାଣେ । କାରଣ ମଝିରେ ମୁଁ ଅଛି ଏବଂ ଘଟଣାଟା ମୂଳରୁ ଶେଷଯାଏ ଜାଣେ । ଏଇଟା ଯେ ଗୋଟାଏ ଚକ୍ରାନ୍ତ ଏବଂ ଏ ଚକ୍ରାନ୍ତ ମୂଳରେ ଯେ ସବିତାର ଭୂମିକା ଶ୍ରେଷ୍ଠ ଭୂମିକା, ଏ କଥା ପୋଲିସ ନିଶ୍ଚୟ ବାହାର କରିବ । ସେତେବେଳେ ଆଉ ସବିତାର ନିସ୍ତାର କାହିଁ ? ଏ ସବୁ ଜାଣିଶୁଣି ସବିତା କ'ଣ ସୁଲେଖାକୁ ହତ୍ୟା କଲା ? ତା'ହେଲେ... ଯଦି ସବିତା ନହୁଏ, କିଏ ସେହି ଦ୍ୱିତୀୟ ବ୍ୟକ୍ତି ?

ଗାଡ଼ି ଠିଆ ହେଲା ଆସି ଆମ ଗ୍ୟାରେଜ ସାମ୍‌ନାରେ । ରୀତା କହିଲା : ଆଉ ଡେରି କରନି । ସିନେମା ଭାଙ୍ଗିଲେ ଗାଡ଼ି ଖୋଜା ପଡ଼ିବ । ତମେ ଶୀଘ୍ର ଶୀଘ୍ର କାମ ଶେଷ କର ।

ମୁଁ ଗ୍ୟାରେଜ୍ ଖୋଲିଲି । ରୀତାକୁ କହିଲି : ତମେ ଭିତରକୁ ଯାଅ । ସୁଲେଖାର ମୃତଦେହ ଦେଖି ତମେ ସହ୍ୟ କରିପାରିବ ନାହିଁ । ତା'ଛଡ଼ା ତମର ମୋ ସହିତ ଯିବା ପ୍ରୟୋଜନ ନାହିଁ ।

ରୀତା ମୋ କଥାର କୌଣସି ପ୍ରତିବାଦ ନକରି ଧୀରେ ଧୀରେ ଘର ଭିତରକୁ ଚାଲିଗଲା । ମୁଁ ଆମ୍ବାସାଡ଼ାରର ଲଗେଜ୍ କ୍ୟାରିଅର୍‌ଟା ଖୋଲି ଠିଆ କରି ରଖିଲି । ତା'ପରେ ଖୋଲିଲି ଯାଇ ମୋ ଗାଡ଼ିର ଲଗେଜ୍ କ୍ୟାରିଅର୍ । ସୁଲେଖାର ମୃତ ଦେହଟାକୁ ଟେକିଆଣି ଭରିଲି ଆମ୍ବାସାଡ଼ାରରେ । ଦୁର୍ଗନ୍ଧରେ ନାକ ଫାଟି ପଡୁଥିଲା । କିନ୍ତୁ ଦେହରେ ଦେଖା ଦେଇଥିଲା

ଅସୁରର ବଳ । ଯନ୍ତଚାଳିତ ଭଳି ସବୁ ଶେଷ କରି ଯେତେବେଳେ ମୁଁ ଗ୍ୟାରେଜର ଦରଜା ବନ୍ଦ କରୁଚି, ରୀଟା ସେଇ ଆଟାଚି କେସ୍‌ଟା ଧରି ମୋ ଆଡ଼କୁ ଆଗେଇ ଆସିଲା । ସତେ ତ ! ଏଇଟାକୁ ବି ସୁଲେଖା ସଙ୍ଗରେ ବିସର୍ଜନ ଦେବାକୁ ହେବ ।

ମୁଁ ରୀଟା ହାତରୁ ଆଟାଚି କେସ୍‌ଟା ନେଇ ସୁଲେଖାର ମୃତ ଦେହ ପାଖରେ ରଖି ଲଗେଜ୍ କ୍ୟାରିଅର୍ ବନ୍ଦ କରୁଚି, ଗାଡ଼ି ଷ୍ଟାର୍ଟ ହେବାର ଶବ୍ଦ ଶୁଣିଲି । ରୀଟା ପୁଣି ଯାଇ ଷ୍ଟିଅରିଂ ଧରି ବସିଛି । ତାକୁ ବାରଣ କଲି ନାହିଁ । ଧୀରେ, ଶାନ୍ତ ଶିଶୁଟି ପରି ଗାଡ଼ିରେ ଉଠି ବସିଲି ରୀଟା ପାଖରେ ।

ନୀରବତା ଭିତରେ ଗାଡ଼ି ଆଗେଇ ଚାଲିଥିଲା ।

ମୋ ମୁଣ୍ଡରେ କିନ୍ତୁ ସେଇ ଗୋଟିଏ ଭାବନା । ସୁଲେଖାକୁ ହତ୍ୟା କଲା କିଏ ?

ରୀଟା ଧୀରେ ଧୀରେ କହିଲା : ତମେ ଯାହା ଭାବ ପଛେ, ମୋର କିନ୍ତୁ କାହିଁକି ମନେ ହେଉଛି ସବିତାର ଆଉ ଜଣେ କେହି ପ୍ରେମିକ ଅଛି ।

: ପ୍ରେମିକ, କାହାର ପ୍ରେମିକ ? ମୋ ସ୍ୱରରେ ଚଞ୍ଚଳତା ଫୁଟି ଉଠିଥିଲା ।

: ସବିତାର ପ୍ରେମିକ ।

: ଥାଇପାରେ, କିଛି ଅସମ୍ଭବ ନୁହେଁ ।

: ମୋର ମନେ ହେଉଛି ସବିତା ତା'ର ସେହି ପ୍ରେମିକ ସାହାଯ୍ୟରେ ସୁଲେଖାକୁ ଖୁନ୍ କରିଛି ।

: ଇଉରେକା... ମୁଁ ଚିତ୍କାର କରି ଉଠି ପୁଣି ନୀରବ ହୋଇଗଲି । ଯଦି ତାହାହିଁ ହୁଏ, ତେବେ ସେଇ ପ୍ରେମିକଟିର ସୁଲେଖାକୁ ଖୁଣ୍ କରି ଲାଭ କ'ଣ ? ହୁଏତ ସବିତା ତାକୁ ପ୍ରଲୋଭନ ଦେଖାଇ କହିଛି, ସୁଲେଖା ଆମ ପଥର କଣ୍ଟା । ତାକୁ ଘୁଞ୍ଚେଇ ଦେଲେ ଆମର ପ୍ରତିଦ୍ୱନ୍ଦୀ କେହି ରହିବେ ନାହିଁ । ରାଜେନ୍ଦ୍ର ପ୍ରସାଦଙ୍କର ସମସ୍ତ ସମ୍ପତ୍ତିର ମାଲିକ ହେବ ତମେ ଆଉ ମୁଁ । ସବିତାର ଏହି ପ୍ରଲୋଭନରେ ହୁଏତ ତା'ର ସେହି ପ୍ରେମିକଟି ଆକୃଷ୍ଟ ହୋଇଚି ଏବଂ ସୁଲେଖାକୁ ଖୁଣ୍ କରି ସେ ପଥ ନିଷ୍କଣ୍ଟକ କରିଛି । କିନ୍ତୁ ସୁଲେଖା ବୋକାଙ୍କ ପରି ସବିତା ଷଡ଼ଯନ୍ତ୍ରର ଶିକାର ହେଲା କାହିଁକି ? ମୋ ମୁଣ୍ଡରେ ଏସବୁ କିଛି ପଶୁ ନଥିଲା ।

ଆମ ଗାଡ଼ି ସେତେବେଳକୁ ଭିକ୍ଟୋରିଆ ମେମୋରିଆଲ ବାଟ ଦେଇ ଗଙ୍ଗାକୂଳ ଆଡ଼କୁ ଆଗୋଉଥିଲା ।

ଗୋଟିଏ ନିର୍ଜନ ସ୍ଥାନରେ ରୀଟାକୁ ଗାଡ଼ିଟା ଅଟକେଇବାକୁ କହିଲି । ରୀଟା ଗାଡ଼ି ଅଟକେଇଲା । ମୁଁ ତଳକୁ ଓହ୍ଲେଇ ଚାରିଆଡ଼କୁ ଚାହିଁଲି । ନା, କେହି କୁଆଡ଼େ ନାହିଁ । ରୀଟାକୁ ଓହ୍ଲେଇ ଆସିବାକୁ କହିଲି । ତା'ପରେ ଗାଡ଼ିଟାକୁ ଆମେ ସେଇଠି ଛାଡ଼ି ଦେଇ ଆମ ପଥରେ ଆଗେଇ ଗଲୁ । ଆମ ଘରେ ପହଞ୍ଚିଲାବେଳକୁ ଘଡ଼ିରେ ଗୋଟାଏ ବାଜି ଯାଇଥିଲା ।

ରୀଟା ଖୁବ୍ ଥକି ପଡ଼ିଥିଲା । ଖାଲି କ୍ଲାନ୍ତି ନୁହେଁ, ଆତଙ୍କର ଚିହ୍ନ ସୁସ୍ପଷ୍ଟ ଫୁଟି ଉଠିଥିଲା ତା' ଦେହ ମୁହଁରେ । ରୀଟା ବିଛଣା ଧରିଲା । ମୁଁ ଇଚ୍ଛା କରି ତାକୁ ନିଦ ଔଷଧ ଖୁଆଇ ଦେଲି ।

ଏହାପରେ ମୋର କାର୍ଯ୍ୟ ଅତି ସଂକ୍ଷିପ୍ତ । ଗ୍ୟାରେଜକୁ ଯାଇ ଗାଡ଼ି ପଛରୁ ସୁଲେଖାର ସୁଟ୍‌କେସଟି ବାହାର କଲି । ପାଣି ଆଣି ଲଗେଜ କ୍ୟାରିଅର୍‌ଟି ଭଲ ଭାବରେ ଧୋଇ ସଫା

କଲି । ସୁଲେଖାର ଛୋଟ ସୁଟ୍‌କେସଟି ଧରି ଚାଲି ଆସିଲି ଆମର ରୋଷେଇ ଘରକୁ । ସୁଲେଖାର ଲୁଗା, ଜାମା, ଟିକିଟିକି ପ୍ରୟୋଜନୀୟ ଜିନିଷ ସବୁ ନିଆଁ ଲଗେଇ ପୋଡ଼ି ଦେଲି । ଯେପରି ସାମାନ୍ୟ ଟିକିଏ କ୍ଲୁ ବି ରହି ନଯାଏ କାଲି ପାଇଁ ।

ବାଥ୍‌ରୁମ୍‌ରେ ଯାଇ ସାୱାର ଖୋଲି ଭଲଭାବରେ ଗାଧୋଇଲି । ମୋ ମୁଣ୍ଡରୁ ଯେପରି ପଥର ବୋଝ ଓହ୍ଲେଇଗଲା । ମୁଁ ସ୍ୱସ୍ତିରେ ନିଶ୍ୱାସ ପକାଇଲି ।

\+ + +

ଠିକ୍ ସକାଳ ନଅଟା ବେଳକୁ ମୁଁ ପ୍ରସ୍ତୁତ ହୋଇଗଲି ଅଫିସ୍ ଯିବା ପାଇଁ । ଏହି ନାଟକର ଶେଷ ଯବନିକା ଟଣା ହେବ ହୁଏତ ଆଜି । ଏତେ ଉଦ୍ୟମ ପରେ ବି ଶେଷ ରକ୍ଷା କରି ହେବ ତ !

ହଠାତ୍ ଟେଲିଫୋନ୍‌ଟା ବାଜି ଉଠିଲା ।

ରିସିଭର ଉଠାଇଲି : ହ୍ୟାଲୋ ?

: ରଜତ, ମୁଁ ଥାନାରୁ କହୁଛି । ବରେନ୍ କହୁଥିଲା । ଶୁଣିଲୁଣି ? ସୁଲେଖାର ସନ୍ଧାନ ମିଳିଛି ।

: ସତେ ? ସେ କେଉଁଠି ଥିଲା ?

: ଥିଲା ଗୋଟାଏ ଗାଡ଼ିର ଲଗେଜ୍ କ୍ୟାରିଅର୍ ଭିତରେ । ମୁଁ ଯାହା ଭାବିଥିଲି ସେଇଆ । ଗୁଣ୍ଡାମାନେ ତା' ମୃତ ଦେହଟା ଗୋଟାଏ ଚୋରି ଗାଡ଼ିର ଲଗେଜ୍ କ୍ୟାରିଅର୍ ଭିତରେ ପୂରାଇ, ଗଙ୍ଗାକୂଳରେ ଏକ ନିର୍ଜନ ସ୍ଥାନରେ ରଖି ଦେଇ ଯାଇଛନ୍ତି ।

: ତା'ମାନେ ସୁଲେଖା ମୃତ ?

: ଏଥିରେ ଆଉ ସନ୍ଦେହର ଅବକାଶ ନାହିଁ ରଜତ । ଗୁଣ୍ଡାମାନେ ସୁଲେଖାକୁ ଖୁଣ୍ କରିଛନ୍ତି । ନା ଫୋନ୍‌ରେ ଆଉ କିଛି କହିବା ଉଚିତ ନୁହେଁ, ତମେ ଶୀଘ୍ର ଥାନାକୁ ଚାଲିଆସ ।

: ହୁଁ, ଟେଲିଫୋନ୍ ରିସିଭରଟା ରଖିଦେଲି । ନାଟକର ଶେଷ ଦୃଶ୍ୟ ତା'ହେଲେ ଜମି ଉଠିଛି ।

ଥାନା ସାମ୍‌ନାରେ ଯାଇ ଦେଖିଲି ସେଇ ଚକୋଲେଟ ରଙ୍ଗର ଆମ୍ବାସାଡ଼ାରକୁ ଘେରି ଅସଂଖ୍ୟ ଲୋକ ଜମା ହୋଇଛନ୍ତି । ପୋଲିସ୍ ଅଫିସରମାନେ କାର୍ଯ୍ୟବ୍ୟସ୍ତ । ଫଟୋ ଉଠାଇବାଠାରୁ ଆରମ୍ଭ କରି ନାନା ପ୍ରକାର ପରୀକ୍ଷା ନିରୀକ୍ଷା ଚାଲିଛି । ଗାଡ଼ିର ଲଗେଜ୍ କ୍ୟାରିଅର୍ ଖୋଲା । ମୃତ ଦେହ ଅପସାରିତ ହୋଇଛି । ଆଟାଚିଟା ଗୋଟାଏ ପାଖକୁ ପଡ଼ି ରହିଛି ।

ମୁଁ ପହଞ୍ଚିବା ମାତ୍ରକେ ବରେନ୍ ମୋତେ ଦେଖାଇ ଦେଲା : ଏଇ ଗାଡ଼ିର ଲଗେଜ୍ କ୍ୟାରିଅର୍‌ରେ ସୁଲେଖାର ମୃତ ଦେହ ଥିଲା । ଏ ଆଟାଚିଟା ପଡ଼ିଥିଲା ତା' ପାଖରେ । ତମର ମନେଥିବ ରାଜେନ୍ଦ୍ର ପ୍ରସାଦ ଠିକ୍ ଏହିପରି ଗୋଟିଏ ଆଟାଚି ମୋତେ ଦେଇଥିଲେ । ଏ ଆଟାଚିଟା ପାଇ ମନେ ହେଉଥିଲା ସବୁ ନ ହେଲେ ବି ହୁଏତ କିଛି ଟଙ୍କା ପଇସା ଥିବ ଯା ଭିତରେ । କିନ୍ତୁ ଆଟାଚିଟା ଯେତେବେଳେ ଖୋଲାହେଲା...

: କେତେ ଟଙ୍କା ମିଳିଲା ? ମୁଁ ଆଗ୍ରହ ମିଶା କଣ୍ଠରେ ପଚାରିଲି ।

: ଟଙ୍କା ? ନୂଆ ପଇସାଟିଏ ବି ନଥିଲା । କେତେ ଖଣ୍ଡ ଖବର କାଗଜ ଚାରି ଭାଙ୍ଗ ହୋଇ ପଶିଥିଲା ଆଟାଚି ଭିତରେ ।

: ଆଶ୍ଚର୍ଯ୍ୟ !

: ହଁ ଆଶ୍ଚର୍ଯ୍ୟ ନିଶ୍ଚୟ । ତେବେ ସେ ଯା ହେଉ, ତୁମେ ଏଇ ମୁହୂର୍ତ୍ତରେ ଯାଅ ରାଜେନ୍ଦ୍ର ପ୍ରସାଦଙ୍କ ଘରକୁ । ଘଟଣାଟା ତାଙ୍କୁ ଜଣାଇବାକୁ ହେବ । ତା'ଛଡ଼ା ମୃତଦେହ ସନାକ୍ତ ନ କରିବା ପର୍ଯ୍ୟନ୍ତ ଆଇନତଃ ଆମେ କିଛି କରି ପାରିବା ନାହିଁ । ତୁମେ ବରଂ ପ୍ରଥମେ ସବିତା ସହିତ ଦେଖା କର । ସମ୍ଭବ ହେଲେ ତାଙ୍କୁ ସାଙ୍ଗରେ ଘେନି ଆସ, ସେ ସୁଲେଖାକୁ ସନାକ୍ତ କରି ଯାଆନ୍ତୁ ।

ବରେନ୍‌ର କଥା ଶୁଣି ହଠାତ୍ ମୋ ଛାତି ଭିତରଟା କମ୍ପି ଉଠିଲା । ମୁଁ ଅନ୍ୟ ଆଡ଼କୁ ମୁହଁ ବୁଲେଇ କହିଲି : ସବିତା ତ ଆସୁସ୍ଥ, ତା'ଛଡ଼ା...

: ନା ନା, ରଜତ । ତମେ ଅସଲବେଳେ ପଛଘୁଞ୍ଚା ଦେଲେ ଚଳିବ ନାହିଁ । ତମେ ଯାଅ । ଆଉ ଡେରି କରନି ।

ସତେତ ! ଆଉ ଡେରି କରିବା ଉଚିତ ନୁହେଁ । ସବିତାର ସାମ୍‌ନା ସାମ୍‌ନି ହେବାର ଇଏ ଗୋଟାଏ ଅପୂର୍ବ ସୁଯୋଗ । ଏ ସୁଯୋଗ ହୁଏତ ପରେ ଆଉ ମିଳିବ ନାହିଁ ।

ଆଉ ଦ୍ୱିତୀୟ କଥା ନକହି ମୁଁ ଯାଇ ଜିପ୍‌ରେ ବସିଲି ।

ଦଶ ମିନିଟ୍ ପରେ ମୁଁ ଯାଇ ପହଞ୍ଚିଲି ରାଜେନ୍ଦ୍ର ପ୍ରସାଦଙ୍କ ଘରେ ।

ଦରବାନ୍ ଗେଟ୍ ଖୋଲି ଦେଲା ।

ମୁଁ କହିଲି : ପୋଲିସ୍ ହେଡ଼କ୍ୱାର୍ଟର୍‌ରୁ ଆସିଛି । ମିଷ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ସହିତ ଖୁବ୍ ଦରକାର ।

ଦରବାନ କହିଲା : ସେ ଖୁବ୍ ଅସୁସ୍ଥ । ଶୋଇଛନ୍ତି । ଡାକ୍ତର ମନା କରିଛି କେହି ଯେପରି ତାଙ୍କୁ ବିରକ୍ତ ନକରନ୍ତି ।

: ବୁଝିଲି । ତା'ହେଲେ ମୋତେ ସବିତା ଦେବୀଙ୍କ ପାଖକୁ ନେଇ ଚାଲ ।

: ହେଉ, ମୁଁ ତା'ହେଲେ ତାଙ୍କୁ ଖବର ଦେଉଛି । ଦରବାନ୍ ଚାଲିଗଲା ।

ମୋର ଆଉ ଅପେକ୍ଷା କରିବାକୁ ଧୈର୍ଯ୍ୟ ନଥିଲା । ମୁଁ ଦରବାନର ପଛେ ପଛେ ଯାଇ ପହଞ୍ଚିଗଲି ସବିତା ଘରେ ।

ସବିତା ଖବର କାଗଜ ପଢୁଥିଲା । ଆମର ପାଦ ଶବ୍ଦ ଶୁଣି ମୁହଁ ଟେକି ଚାହିଁଲା ।

ଚାରି ଆଖିର ମିଳନ ହେବାକ୍ଷଣି ସେ ବୋଧହୁଏ ଟିକିଏ ଅବାକ୍ ହେଲା । ନୀରବତା ଭଙ୍ଗକରି ଦରବାନକୁ ପଚାରିଲା : କ'ଣ ? ଏ ଲୋକ...

: ପୋଲିସ୍ ହେଡ଼କ୍ୱାର୍ଟସରୁ ଆସିଛନ୍ତି । ଆପଣଙ୍କ ସାଙ୍ଗରେ ଦେଖା କରିବାକୁ ଚାହାନ୍ତି ।

ହୁଁ, ଆସନ୍ତୁ । ସବିତା ମୋତେ ଭିତରକୁ ଡାକିଲା ଏବଂ ଦରବାନ୍‌କୁ ଇଙ୍ଗିତରେ ଚାଲି ଯିବାକୁ କହିଲା ।

ତା'ପରେ କେତୋଟି ନୀରବ ମୁହୂର୍ତ୍ତ ।

ପ୍ରଥମେ ମୋତେହିଁ ନୀରବତା ଭଙ୍ଗ କରିବାକୁ ପଡ଼ିଲା । ମୁଁ ବିଦ୍ରୂପ ମିଶା କଣ୍ଠରେ କହିଲି : ମୋତେ ଚିହ୍ନି ପାରୁଛନ୍ତି ?

ସବିତା ଖବର କାଗଜଟା ଘୁଞ୍ଚେଇ ରଖି ଟେବୁଲରୁ ସିଗାରେଟ୍ କେଶ୍‌ଟା ଉଠେଇଲା । ସ୍ମିତ ହସି କହିଲା : ଚିହ୍ନା ଅଚିହ୍ନାରେ ଆଉ ଦରକାର କ'ଣ ରଜତ ବାବୁ ! ପୁଣି କାହିଁକି ଆସିଲେ ?

: ଆସିଲି । ଆସିବାକୁ ପଡ଼ିଲା । ପୋଲିସ୍ ମୃତଦେହର ସନ୍ଧାନ ପାଇଛି, ସେଇ ଖବରଟା ଦେବାକୁ ଆସିଲି ।

ସିଗାରେଟରେ ଅଗ୍ନି ସଂଯୋଗ କଲା ସବିତା । କିଛି ଉତ୍ତର ଦେଲା ନାହିଁ ।

ହସିଲି ମୁଁ । କହିଲି : ଅବଶ୍ୟ ମୋର ଦୁଶ୍ଚିନ୍ତାର କିଛି କାରଣ ନାହିଁ । ମୃତ ଦେହ ସେମାନେ କେବିନ୍‌ରୁ ପାଇ ନାହାନ୍ତି । ପାଇଛନ୍ତି ଗୋଟାଏ ପରିତ୍ୟକ୍ତ ଗାଡ଼ିର ଲଗେଜ୍ କ୍ୟାରିଅର୍ ଭିତରୁ । କ'ଣ ସଂବାଦଟା ଶୁଣି ଖୁବ୍ ହତାଶ ହେଲେ ?

: କ'ଣ କହିଲେ ? ମୃତ ଦେହ ? କାହାର ମୃତ ଦେହ ?

: ସୁଲେଖାର ।

: ତା'ହେଲେ ସୁଲେଖା କ'ଣ ମୃତ ? ଶାନ୍ତ ଓ ଅବିଚଳିତ କଣ୍ଠରେ ପ୍ରଶ୍ନକଲା ସବିତା ।

: ବାଃ, ଚମତ୍କାର । ଏପରି ଭାବରେ ପ୍ରଶ୍ନ କରୁଛନ୍ତି ଆପଣ ଯେମିତି କିଛି ଜାଣି ନାହାନ୍ତି । ସୁଲେଖା ଯେ ମରିଛି, ସେ କଥା ଆପଣଙ୍କ ଠାରୁ ଅଧିକ ଆଉ କାହାକୁ ଜଣା ଅଛି ?

: ତା'ହେଲେ... ତା'ହେଲେ ଟଙ୍କା ଲୋଭରେ ଶେଷ ପର୍ଯ୍ୟନ୍ତ ଆପଣ ସୁଲେଖାକୁ ହତ୍ୟା କଲେ ? ସବିତା ଓଲଟି ମୋ ଉପରେ ଦୋଷ ନଦିଲା ।

: ମୋତେ ହସେଇଲେ ମିସେସ୍ ପ୍ରସାଦ । ଆଉ କିଏ ଜାଣୁ ନଜାଣୁ ସୁଲେଖାର ମୃତ୍ୟୁ ଯେ ଆପଣଙ୍କ ଇଂଗିତରେ ହୋଇଛି ଏବଂ ତା'ର ମୃତ୍ୟୁ ପାଇଁ ଯେ ଆପଣ ସଂପୂର୍ଣ୍ଣ ଦାୟୀ, ସେ କଥା ମୁଁ ଜାଣେ । ତେଣୁ ଆପଣ ଖସି ଯିବାକୁ ଚାହିଲେ ମୁଁ କିନ୍ତୁ ଆପଣଙ୍କୁ ନିସ୍ତାର ଦେଉ ନାହିଁ ।

: ମାନେ ? ଆପଣ ଏସବୁ କ'ଣ ଯା' ତା' କହୁଛନ୍ତି ?

: ମୁଁ ଯା' ତା' କହୁଛି ? ଆଉ ଆପଣ ଏକଦମ୍ ଗୋଟିଏ ସୁବୋଧ ଶିଶୁ । କିଛି ଜାଣନ୍ତି ନାହିଁ । ସ୍ୱାମୀଙ୍କ ମୃତ୍ୟୁପରେ ଆପଣ ଯେ ଏହି ଅଚଳାଚଳ ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରିଣୀ ହୋଇ ନିଷ୍କଣ୍ଟକ ଜୀବନ ଯାପନ କରିବେ, ସେ ସ୍ୱପ୍ନ ତ ସଫଳ କରିଛନ୍ତି ସୁଲେଖାକୁ ହତ୍ୟାକରି ।

: ଛି ଛି, ଆପଣ ମୋ ଉପରେ ଅଯଥା ଦୋଷାରୋପ କରୁଛନ୍ତି ରଜତ ବାବୁ । ଗୋଟାଏ ସହିତ ଆଉ ଗୋଟାଏ ସମସ୍ୟା ମିଶେଇ ଆପଣ ଏକ ଉଦ୍ଭଟ ପରିକଳ୍ପନା କରୁଛନ୍ତି । ତା'ଛଡ଼ା ସେଦିନ ରାତିରେ ମୁଁ ଖୁବ୍ ଅସୁସ୍ଥ ଥିଲି । ଡାକ୍ତର ମୋତେ ନିଦ ଔଷଧ ଦେଇ ଶୁଆଇ ପକାଇ ଥିଲେ । ଆପଣ ମୋତେ ଅନର୍ଥକ ଭୟ ଦେଖାଉଛନ୍ତି । କିନ୍ତୁ ମନେ ରଖନ୍ତୁ ଜଣେ ଜେଲ- ଫେରନ୍ତା କଏଦୀର କଥା ଅପେକ୍ଷା ଜଣେ କୋଟିପତି ସ୍ତ୍ରୀର କଥାକୁ ପୋଲିସ୍ ଅଧିକ ମର୍ଯ୍ୟାଦା ଦେବ ।

: ଦେଇଥାଆନ୍ତା, ଯଦି ଆଗରୁ ମୁଁ ସତର୍କ ହୋଇ ନଥାନ୍ତି । ସ୍ମିତ ହସି କଣେଇ ଚାହିଁଲି ସବିତା ମୁହଁକୁ ।

ସବିତା ଜଳନ୍ତା ସିଗାରେଟ୍‌ଟା ଆଷ୍ଟ୍ରେରେ ଗୁଞ୍ଜିଦେଇ ମୋ ଉପରେ ତୀକ୍ଷ୍ଣ ଚାହାଣି ହାଣି କହିଲା : ଆପଣ ଆଗରୁ ସତର୍କ ହୋଇଛନ୍ତି । କି ରକମ ସତର୍କ ?

: ଏକଦମ୍ ଅଥେଣ୍ଟିକ୍ । ମୁଁ ସବୁ ଟେପ୍ କରି ରଖିଛି ।

: ଟେପ୍ ! ଟେପ୍ ମାନେ ?

: ଟେପ୍ ମାନେ ଟେପ୍‌ରେକର୍ଡ଼ । ସୁଲେଖାର ହରଣଚାଲ ସମ୍ବନ୍ଧରେ ଆପଣ ମୋ ଓ ସୁଲେଖା ଭିତରେ ଯାହା ଆଲୋଚନା ହୋଇଥିଲା, ସବୁ ମୁଁ ଟେପ୍ କରି ରଖିଛି । ପୋଲିସ୍ ମୋ ମୁହଁର କଥା ବିଶ୍ୱାସ କରିବ ନାହିଁ ଠିକ୍ ଯେ, କିନ୍ତୁ ଯେତେବେଳେ ଜଣେ କୋଟିପତି ସ୍ତ୍ରୀର ସ୍ୱର ଟେପ୍ ରେକର୍ଡ଼ର୍ ଭିତରୁ ଭାସି ଉଠିବ... ସେତେବେଳେ ?

: ମିଛ କଥା । ଆପଣ ମିଥ୍ୟାବାଦୀ । ମୋତେ ଏକା ପାଇ ଭୟ ଦେଖାଉଛନ୍ତି । ମୁଁ ଆପଣଙ୍କର ପଦେ କଥା ବି ବିଶ୍ୱାସ କରିବି ନାହିଁ ।

: ସେ ଆପଣଙ୍କ ମର୍ଜି ମିସେସ୍ ପ୍ରସାଦ । କାହାରି ବିଶ୍ୱାସ ଅବିଶ୍ୱାସ ଉପରେ ହସ୍ତକ୍ଷେପ କରିବାର ଅଧିକାର ମୋର ନାହିଁ । ତେବେ ସମୟ ଆସିଲେ ଆପଣ ଜାଣି ପାରବେ ମୁଁ ସତ କହୁଛି କି ମିଛ କହୁଛି ।

କ'ଣ ଗୋଟାଏ କହିବାକୁ ଯାଇ ଅଟକିଗଲା ସବିତା । କାଚ ଦରଜା ଠେଲି ଜଣେ ବଳିଷ୍ଠକାୟ ଯୁବକ ପ୍ରବେଶ କଲା ଘର ଭିତରେ । ମୁଣ୍ଡରେ ବାବୁରୀବାଳ, ତୀକ୍ଷ୍ଣ ନାକ, ଚଉଡ଼ା କପାଳ, ବୟସ ମୋ'ରି ବୟସ ହେବ ।

: ଖବର କ'ଣ ବ୍ରିଜ୍‌ଲାଲ ?

ବ୍ରିଜ୍‌ଲାଲ ? ଏଇ ବ୍ରିଜ୍‌ଲାଲ ? ମୋର ଏତେଦିନଯାଏ ଗୋଟାଏ ଧାରଣା ଥିଲା ବ୍ରିଜ୍‌ଲାଲ ପ୍ରୌଢ଼, ବୟସ ନିଶ୍ଚୟ ପଚାଶରୁ ବେଶି ହୋଇଥିବ । କିନ୍ତୁ... କିନ୍ତୁ ସେ ଯେ ସୁନ୍ଦର ସ୍ୱାସ୍ଥ୍ୟବାନ ଗୋଟିଏ ଯୁବକ ।

ସବିତା ଆଡ଼େ ଅବନତ ମସ୍ତକରେ ଚାହିଁ ଅଭିବାଦନ ଜଣାଇ କହିଲା : ଗାଡ଼ି ପ୍ରସ୍ତୁତ ମାଡ଼ାମ୍ ।

: ଥାଉ, ଆଜି ଆଉ ବୁଲିବାକୁ ଯିବି ନାହିଁ । ତାଙ୍କ ଦେହଟା ଖରାପ । ତା'ଛଡ଼ା... କଥା ଅସମାପ୍ତ ରଖି ସେ ଦରଜା ଆଡ଼କୁ ଆଗେଇଲା ।

: ମିସେସ୍ ପ୍ରସାଦ... ଚେଆର ଠେଲି ମୁଁ ଉଠି ଠିଆ ହେଲି ।

: କୁହନ୍ତୁ । ସବିତା ମୋ ଆଡ଼େ ବକ୍ରଦୃଷ୍ଟିରେ ଚାହିଁ ଠିଆ ହେଲା ।

: ମୁଁ ଆସିଥିଲି ଯେଉଁ କାମରେ ସେ ସମ୍ବନ୍ଧରେ କିଛି କଥା ହୋଇ ନାହିଁ ଆପଣଙ୍କ ସହିତ ।

: କ'ଣ କୁହନ୍ତୁ । ସବିତା ମୋ ଆଡ଼େ ସିଧା ଚାହିଁ ଠିଆ ହେଲା ।

କିନ୍ତୁ ମୁଁ ଯେଉଁ ଉଦ୍ଦେଶ୍ୟରେ ଆସିଥିଲି, ମୋ ଉଦ୍ଦେଶ୍ୟ ସଫଳ ହେଲା ନାହିଁ ଯେ ! ମୁଁ ଆସିଥିଲି ସୁଲେଖାର ହତ୍ୟାକାରୀ ସମ୍ବନ୍ଧରେ ପ୍ରକୃତ ତଥ୍ୟ ସବିତା ମୁହଁରୁ ବାହାର କରିବାକୁ । ସବିତା ଯେ ନିଜ ହାତରେ ସୁଲେଖାକୁ ମାରି ନାହିଁ ଏହା ସତକଥା । କିନ୍ତୁ କିଏ ସେହି ଲୋକ, ଯାହା ହାତରେ ସବିତା ସୁଲେଖାକୁ ହତ୍ୟା କରାଇଛି ।

ନୀରବତା ଭଙ୍ଗ କରି ବ୍ରିଜଲାଲ କହିଲା : ଆପଣଙ୍କ ନାଁ ରଜତ ମିଶ୍ର ନା ?

ହଠାତ୍ ମୁଁ ଯେପରି ସମ୍ବିତ୍ ଫେରି ପାଇଲି, ଚାହିଁଲି ତା'ଆଡ଼େ । :ହଁ । ମୁଁ କ'ଣ

କହୁଥିଲି କି ମିସେସ୍ ପ୍ରସାଦ, ବଡ଼ ସାହେବ କହିଛନ୍ତି, ମୃତ ଦେହ ସନାକ୍ତ କରିବା ପାଇଁ ଆପଣ ମୋ ସାଙ୍ଗରେ ଥାନାକୁ ଯିବେ ।

: ମୃତ ଦେହ ! ତା'ମାନେ ମିସ୍ ପ୍ରସାଦ ଶେଷ ପର୍ଯ୍ୟନ୍ତ ଖୁଣ୍ ହେଲେ ? ବ୍ରିଜଲାଲ କହିଲା ।

: ହଁ । ମିସେସ୍ ପ୍ରସାଦ, ବର୍ତ୍ତମାନ ଆପଣ...

: ନା ନା, ଅସମ୍ଭବ । ଏକେ ତ ମୁଁ ଅସୁସ୍ଥ । ତା'ପରେ ସୁଲେଖାର ମୃତ ଦେହ !! ମୁଁ ସହ୍ୟକରି ପାରିବି ନାହିଁ । ବରଂ ଆପଣ ବ୍ରିଜଲାଲକୁ ସାଙ୍ଗରେ ନେଇ ଯାଆନ୍ତୁ । ସେଇ ସନାକ୍ତ କରି ଆସିବ ।

: ଇସ୍... ହାତରେ ହାତ ଘଷୁଥିଲା ବ୍ରିଜଲାଲ । ମୁଣ୍ଡ ହଲାଉଥିଲା । ବାଁ' ଡାହାଣ କରି, ଫୁଲପରି ଗୋଟାଏ କୋମଳ ନିଷ୍ପାପ ପ୍ରାଣକୁ କୋଉ ସଇତାନ ଗଳାଟିପି ହତ୍ୟା କଲା ? ଟିକିଏ ଅପେକ୍ଷା କରନ୍ତୁ, ମୁଁ ମିଷ୍ଟର ପ୍ରସାଦଙ୍କୁ ଖବରଟା ଦେଇଆସେ ।

ତା' ଯିବା ପଥକୁ ଚାହିଁ ଅନ୍ୟମନସ୍କ ଭାବରେ ପକେଟରେ ହାତ ଭରି ସିଗାରେଟ୍ ପ୍ୟାକେଟ୍‌ଟା ଖୋଜୁଥିଲି । ସିଗାରେଟ୍ ବାହାର କରି ଅଗ୍ନିସଂଯୋଗ କରିବା ମାତ୍ରକେ ହଠାତ୍ ମୋ କାନରେ ପ୍ରତିଧ୍ୱନିତ ହୋଇ ଉଠିଲା ବ୍ରିଜଲାଲର ସେଇ କଥା ପଦକ- 'ଫୁଲପରି ଗୋଟିଏ କୋମଳ ନିଷ୍ପାପ ପ୍ରାଣକୁ କୋଉ ସଇତାନ ଗଳାଟିପି ହତ୍ୟାକଲା ?'

କିନ୍ତୁ ମୁଁ ତ ସବିତା ଅଥବା ବିଜ୍ରଲାଲ କାହାରି ଆଗରେ କହିନାହିଁ ସୁଲେଖାର କିପରି ମୃତ୍ୟୁ ହୋଇଛି । କୌଣସି ସଂବାଦ ପତ୍ରରେ ବି ପ୍ରକାଶିତ ହୋଇନାହିଁ ତା'ର ମୃତ୍ୟୁ ସଂବାଦ । ତା'ହେଲେ ବ୍ରିଜଲାଲ ଜାଣିଲା କିପରି ସୁଲେଖାକୁ ଗଳାଟିପି ହତ୍ୟା କରା ହୋଇଛି ?

ଆଶ୍ଚର୍ଯ୍ୟ ! ନା ନା ଆଶ୍ଚର୍ଯ୍ୟ ହେବାର ଏଥିରେ କ'ଣ ଅଛି ? ଏହାହିଁ ଘଟଣା । ମୁଁ ଗୋଟାଏ ନିପଟ ବୋକା । ମୋର ବହୁ ପୂର୍ବରୁ ସବିତା-ବ୍ରିଜଲାଲର ଏହି ସମ୍ପର୍କ ଜାଣିବା ଉଚିତ ଥିଲା । ବ୍ରିଜଲାଲ ସବିତା ହାତର କ୍ରୀଡ଼ା ପୁତ୍ତଳି ନା ସବତା ବ୍ରିଜଲାଲର, ସେ କଥା ପରେ ବୁଝିଲେ ଚଳିବ । କିନ୍ତୁ କେଡ଼େ ବୋକା ମୁଁ, ଏଇ ଅତି ସହଜ ତଥ୍ୟଟି ଆଜିଯାଏ ଆବିଷ୍କାର କରି ପାରି ନଥିଲି !

ମୋ ସମଗ୍ର ଦେହରେ କିପରି ଏକ ଶିହରଣ ସୃଷ୍ଟି ହେଲା । ହାତରୁ ସିଗାରେଟ୍‌ଟା ଖସି ତଳେ ପଡ଼ିଗଲା । ଏ ଶିହରଣ, ଏ ଚଞ୍ଚଳତା ଉଲ୍ଲାସର, ମୁଁ ଅନୁଭବ କରୁଥିଲି ।

ବ୍ରିଜଲାଲ ଫେରି ଆସିଲା ।

: ଚାଲନ୍ତୁ, ଏଥର ଯିବା ।

: ହଁ ଆସ । ମୁଁ ଆଗେ ଆଗେ ଓ ବ୍ରିଜଲାଲ ମୋ ପଛେ ପଛେ ଯାଇ ଗାଡ଼ିରେ ଉଠିଲୁ । ଗାଡ଼ି ଆଗେଇ ଚାଲିଲା ଥାନା ଆଡ଼କୁ ।

: ମିଷ୍ଟର ପ୍ରସାଦଙ୍କୁ କହିଲେ ? ମୁଁ ବ୍ରିଜଲାଲକୁ ପଚାରିଲି ।

: ହଁ ।

: ଶୁଣି ସେ ନିଶ୍ଚୟ ଭାଙ୍ଗି ପଡ଼ିଥିବେ ।

: ସ୍ୱାଭାବିକ । ଗୋଟିଏ ମାତ୍ର ଝିଅ ।

: କିନ୍ତୁ ମିସେସ୍ ପ୍ରସାଦ । ମୋର ମନେ ହେଲା ଝିଅର ମୃତ୍ୟୁ ସଂବାଦ ଶୁଣି ସେ ବିଶେଷ ଦୁଃଖିତ ନୁହନ୍ତି । ହୁଏତ ସାବତ ଝିଅ ବୋଲି...

: ନା ନା ମିଷ୍ଟର ମିଶ୍ର । ମିସେସ୍ ପ୍ରସାଦ ସୁଲେଖାକୁ ଖୁବ୍ ଭଲ ପାଉଥିଲେ । କିନ୍ତୁ ଏହି ଭଦ୍ରମହିଳା ଏକ ଅଦ୍ଭୁତ ଚାପା ପ୍ରକୃତିର ମଣିଷ । ବାହାରେ ଆପଣ ତାଙ୍କ ମୁହଁ ଦେଖି କିଛି ବୁଝି ପାରିବେ ନାହିଁ, କିନ୍ତୁ ଭିତରେ ଭିତରେ ସେ ଗୁମୁରି ଗୁମୁରି କାନ୍ଦୁଥିବେ ।

: ହୁଁ, ମୁଁ ବ୍ରିଜଲାଲ ମୁହଁକୁ ଥରେ ଚାହିଁ ଅନ୍ୟ ଆଡ଼େ ଦୃଷ୍ଟି ଫେରାଇଲି ।

କିଛି ସମୟ ପରେ ଗାଡ଼ି ଯାଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା ଏବଂ ମୃତ ଦେହ ସନାକ୍ତ କରି ବ୍ରିଜଲାଲ ଚାଲିଗଲା ।

ଆମେ ରହିଲୁ ବରେନ୍, ମୁଁ ଆଉ ମାଥୁର ।

ବରେନ୍ କହିଲା : ଆଟାଚି ଭିତରେ ଖବର କାଗଜ ଭର୍ତ୍ତିକରି ଟଙ୍କା ଗୁଡ଼ାକ ନେଲା କିଏ ? ପାଞ୍ଚଲକ୍ଷ ଟଙ୍କା, ସବୁ ପୁଣି ଦଶଟଙ୍କିଆ ନୋଟ୍... ନାଃ, ମୋ ମୁଣ୍ଡରେ ସେଇ ପୁରୁଣା ଚିନ୍ତାଟା ବାରମ୍ବାର ଘୂରି ବୁଲୁଛି । ଏ କାମ ଯିଏ କରିଛି ସେ ସୁଲେଖାର ଅନ୍ତରଙ୍ଗ ନ ହେଲେ ବି, ମୋଟା ମୋଟି ପରିଚିତ ହୋଇଥିବ । ତୁମେ ବରଂ ଗୋଟାଏ କାମ କର ମାଥୁର । ସୁଲେଖାର ଅନ୍ତରଙ୍ଗ ଓ ପରିଚିତ ବନ୍ଧୁ ବାନ୍ଧବମାନଙ୍କର ଗୋଟାଏ ଲିଷ୍ଟ ତିଆରି କର । ସେମାନଙ୍କ ପାଖକୁ ଯାଇ ଜମାନବନ୍ଦୀ ନିଅ । କାଲି ସଂଧ୍ୟା ସୁଦ୍ଧା ମୋତେ ରିପୋର୍ଟ ଦିଅ ।

ମାଥୁର ଚାଲିଗଲା ତା' ଅଫିସ୍ ରୁମ୍‌କୁ ! ଆମେ ଦି'ଜଣ ବରେନ୍ ରୁମ୍‌ରେ ପଶିଲୁ ।

ଘରେ ପଶି ଚେଆରରେ ବସି ଗୋଟାଏ ସିଗାରେଟ୍ ଲଗାଇଛି କି ନାହିଁ, ଦରଜା ଖୋଲି ଭିତରେ ପଶିଲା ଗୋଟାଏ କନେଷ୍ଟବଳ ।

: ସାର୍, ସଂଜୟ ଚଉଧୁରୀ ନାମରେ ଜଣେ ଲୋକ ଅନେକ ବେଳୁ ବାହାରେ ଆପଣଙ୍କ ପାଇଁ ଅପେକ୍ଷା କରି ବସିଛନ୍ତି । କାଗଜରେ ଯେଉଁ ଫଟୋ ଛପା ହୋଇଥିଲା, ସେ ସମ୍ବନ୍ଧରେ ସେ କିଛି କହିବାକୁ ଆସିଛନ୍ତି ।

: ଭିତରକୁ ପଠାଇ ଦିଅ ।

କିଛି ସମୟ ପରେ ଘରେ ପ୍ରବେଶ କଲା ଜଣେ ହୃଷ୍ଟପୁଷ୍ଟ ଚେହେରାର ଯୁବକ ।

ବରେନ୍ ଚେଆରରୁ ଉଠି ହାତ ବଢ଼ାଇଲା : ଆପଣ ସଂଜୟ ଚଉଧୁରୀ ?

: ଆଜ୍ଞା । ଯୁବକଟି କରମର୍ଦ୍ଦନ କରି କହିଲା ।

: ବସନ୍ତୁ ।

ବସିଲା ସେ । ପକେଟରୁ ଖଣ୍ଡିଏ ଭାଙ୍ଗକରା ଖବର କାଗଜ ବାହାର କରି ନିର୍ଦ୍ଦିଷ୍ଟ ଛବିଟି ଆଡ଼େ ଆଙ୍ଗୁଳି ଦେଖାଇ କହିଲା : ଏଇ ଲୋକଟିକୁ ମୁଁ ଦେଖିଛି ସାର୍ ।

ହଠାତ୍ ମୋ ଛାତିଟା ଥରି ଉଠିଲା । କଲମ ଷ୍ଟାଣ୍ଡରୁ ଗୋଟାଏ କଲମ ବାହାର କରି ବ୍ଲଟିଂରେ ଏଣୁ ତେଣୁ ଗାର କାଟିଲି ।

: କେବେ ?

: ଶନିବାର ରାତିରେ ।

: ରାତି ମାନେ ? କେତେଟା ରାତି ହେବ ?

: ଏଇ ଧରନ୍ତୁ ଦଶଟା ।

: ବେଶ୍, ତା'ହେଲେ ଶନିବାର ରାତି ଦଶଟାବେଳେ ଆପଣ ଯାହାକୁ ଏଆର୍‌ପୋର୍ଟରେ ଦେଖିଛନ୍ତି, ସେ ଆଉ ଛବିର ଏଇ ଲୋକ ଦୁହେଁ ଏକ ।

: ନା, ଏତେଟା ଯଦିଓ ମୁଁ ନିଶ୍ଚିନ୍ତ ନୁହେଁ, ତଥାପି ମୋର ଯେତେ ଦୂର ବିଶ୍ୱାସ ସେ ଦୁହେଁ ଏକ ।

: ଏଆର୍‌ପୋର୍ଟରେ ଏତେ ଲୋକ ଥାଉ ଥାଉ ହଠାତ୍ ଆପଣଙ୍କର ଏଇ ଲୋକଟି ଉପରେ ଦୃଷ୍ଟି ପଡ଼ିଲା କାହିଁକି ?

: ସେ ଗୋଟାଏ ଅତି ତୁଚ୍ଛ କଥା ସାର୍ । ଆପଣ ଶୁଣିଲେ ହୁଏତ ହସିବେ । ସେ ଲୋକଟି ଯେଉଁ ବ୍ଲେଜାର ପିନ୍ଧିଥିଲା, ସେଇପରି ଏକ ବ୍ଲେଜାର କିଣି ପିନ୍ଧିବା ପାଇଁ ମୋର ବହୁତ ଦିନରୁ ଇଚ୍ଛା ଥିଲେ ବି ନାନା ଅସୁବିଧାରୁ ମୁଁ କିଣି ପିନ୍ଧି ପାରି ନଥିଲି । ତେଣୁ ମୋର ଅଭିଳଷିତ ଜିନିଷଟି ଦେଖିବାମାତ୍ରକେ ହଠାତ୍ ମୋ ଆଖିଟା ସେଇଠି ଲାଖିଗଲା ।

: ଅବଶ୍ୟ । ସେଇଟା ସ୍ୱାଭାବିକ । ତା'ହେଲେ ଆପଣ ସେ ଲୋକକୁ ଏବେ ଦେଖିଲେ ଚିହ୍ନି ପାରିବେ ?

: ନା, ବୋଧହୁଏ ପାରିବି ନାହିଁ । କାରଣ ମୁଁ କେବଳ ବ୍ଲେଜାରକୁ ହିଁ ଭଲ କରି ଦେଖିଛି । ଲୋକଟାର ମୁହଁ ଆଡ଼େ ଚାହିଁ ନାହିଁ ।

: ସେ ଲୋକଟି କ'ଣ ଏକା ଥିଲା ?

: ନା, ତା' ସାଙ୍ଗରେ ଗୋଟିଏ ଝିଅ ଥିଲା ।

: ଝିଅ ? ବରେନ୍ ଅବାକ୍ ହୋଇ ଅନେଇଲା ତା' ମୁହଁକୁ ।

: ଝିଅଟିକୁ ଆପଣ ଭଲକରି ଦେଖିଛନ୍ତି ? ଝିଅଟି ଚେହେରା ସମ୍ବନ୍ଧରେ ଟିକିଏ ବର୍ଣ୍ଣନା ଦିଅନ୍ତୁ ତ ।

: ବର୍ଣ୍ଣନା ? ନା ବର୍ଣ୍ଣନା ଦେବାଭଳି ମୁଁ ଦେଖି ନାହିଁ । ତେବେ ଆନମନା ହୋଇ ଯେତେଟା ଦେଖିଛି, ଝିଅଟି ଦେଖିବାକୁ ମୋଟାମୋଟି ଭଲ ।

: ସେ କ'ଣ ପିନ୍ଧିଥିଲା କହି ପାରିବେ ?

: ନୀଳ ରଙ୍ଗର ସାଦା ଡୋରିକଟା ସ୍କାର୍ଟ, ଆଖିରେ ଗୋଟାଏ ଗଗ୍ଲାସ ।

: କ'ଣ କହିଲେ ? ନୀଳ ରଙ୍ଗର ସାଦା ଡୋରିକଟା ସ୍କାର୍ଟ ?

ସଙ୍ଗେ ସଙ୍ଗେ ରିସିଭର ଉଠାଇଲା ବରେନ୍ । ଅପରେଟରକୁ ଲାଇନ୍‌ଟା ଦେବା ପାଇଁ କହିଲା କାହାକୁ... କିଏ ସୌମିତ୍ର ? ହଁ ହଁ ଶୁଣ, ସୁଲେଖା ଯେଉଁ ପୋଷାକଟା ପିନ୍ଧିଥିଲା, ସଙ୍ଗେ ସଙ୍ଗେ ମୋ ଘରକୁ ଟିକିଏ ପଠାଇ ଦିଅ... ହଁ, ହଁ, ଖୁବ୍ ଜରୁରୀ । ରିସିଭର ରଖି ଦେଲା ବରେନ୍ ।

ସଞ୍ଜୟ ଚଉଧୁରୀ ବରେନ୍ ମୁହଁକୁ ଅବାକ୍ ଆଖିରେ ଚାହିଁ ପ୍ରଶ୍ନ କଲା : ଆଚ୍ଛା, ଘଟଣାଟା କ'ଣ କହିଲେ ? ଆପଣ କାହାକୁ ଖୋଜୁଛନ୍ତି ? ସମ୍ବାଦ ପତ୍ରରେ ପ୍ରକାଶିତ ସେଇ ଲୋକଟାକୁ ନା ସେ ଝିଅଟାକୁ ?

: ସେ ଝିଅଟି ସମ୍ବନ୍ଧରେ ଆଉ ଅଧିକ କିଛି ଆପଣ କହିପାରିବେ ? ଆଚ୍ଛା, ସେମାନେ ସେଠି କ'ଣ କରୁଥିଲେ ?

: କ'ଣ ଆଉ କରିବେ ? ଦୁଇଜଣ ସାଙ୍ଗ ହୋଇ ଆସିଲେ, କାଉଣ୍ଟରକୁ ଗଲେ । ତା'ପରେ ମୁଁ ଆଉ ଲକ୍ଷ୍ୟ କରି ନାହିଁ ।

ଦରଜା ଠେଲି ଘରେ ପଶିଲା ଗୋଟିଏ କନେଷ୍ଟବଳ । ତା' ହାତରେ ସୁଲେଖାର ପରିହିତ ସେହି ପୋଷାକ ।

ସଞ୍ଜୟ ପୋଷାକଟି ଦେଖିବା ମାତ୍ରେ ଚିତ୍କାର କରି ଉଠିଲା : ହଁ ସାର୍, ଏଇ ପୋଷାକ ସେ ଝିଅଟି ପିନ୍ଧିଥିଲା । ବେଶ୍ ମାନୁଥିଲା ଝିଅଟାକୁ ।

: ନା ନା, ଆପଣ ଭଲ କରି ଦେଖି କୁହନ୍ତୁ । ଭୁଲ୍ ତ ହେଇପାରେ ଆପଣଙ୍କର ?

: ନା, ଏତେ ବଡ଼ ଭୁଲ୍ ମୋର ହେବ ନାହିଁ । ମୁଁ ଜୋର୍ ଦେଇ କହୁଛି, ଏଇ ପୋଷାକ ସେ ଝିଅଟି ପିନ୍ଧିଥିଲା ।

ଠିକ୍ ସେତିକିବେଳେ ଗୋଟିଏ କନେଷ୍ଟବଳ ଆସି ମୋତେ ଡାକିଲା : ସାର୍, ଆପଣଙ୍କର ଫୋନ୍ ।

ମୁଁ ଏଠାରେ ଭୀଷଣ ଅସ୍ୱସ୍ତି ଅନୁଭବ କରୁଥିଲି । ଫୋନ୍ କଥା ଶୁଣି ସଙ୍ଗେ ସଙ୍ଗେ ଉଠି ଚାଲିଗଲି ମୋ ରୁମ୍‌କୁ । ରିସିଭର କାନରେ ଦେଲି : ହ୍ୟାଲୋ ?

ଫୋନ୍ ରୀତା କରିଥିଲା । କହିଲା : ତମେ ସଙ୍ଗେ ସଙ୍ଗେ ଏଇ ମୁହୂର୍ତ୍ତରେ ଘରକୁ ଚାଲି ଆସ । ଭୀଷଣ ଦରକାର । ଏତିକି କହି ସେ ରିସିଭରଟା ରଖି ଦେଲା । ମୁଁ ତାକୁ ଦରକାର କ'ଣ ପଚାରିବାର ଅବକାଶ ବି ପାଇଲି ନାହିଁ ।

ସଙ୍ଗେ ସଙ୍ଗେ ମୁଁ ବରେନ୍ ଘରକୁ ଉଠିଗଲି । ମୋ ବ୍ୟସ୍ତତା ଦେଖି ସେ ପଚାରିଲା : ରୀତା ଫୋନ୍ କରିଥିଲା ବୋଧେ ।

: ହଁ, ଏଇ ମୁହୂର୍ତ୍ତରେ ସେ ଘରକୁ ଯିବାକୁ ଡାକୁଛି । ମୁଁ ଆସିଲାବେଳେ ଦେହଟା ତା'ର ଖରାପ ଥିଲା । ବୋଧହୁଏ...

: ନା, ତମର ଆଉ ଡେରି କରିବା ଉଚିତ ନୁହେଁ । ତମେ ବରଂ ଗୋଟାଏ ଗାଡ଼ି ନେଇ ଶୀଘ୍ର ଘରକୁ ଚାଲିଯାଅ । ରୀତାର ଅବସ୍ଥା ଦେଖି ଯଦି ଦରକାର ହୁଏ ଡାକ୍ତର ଦେଖାଇ ଫେରି ଆସ । ଏଣେ କିନ୍ତୁ ମୁଁ ପ୍ରଚୁର ଆଶାର ଆଲୋକ ଦେଖୁଛି । ଆଚ୍ଛା, ସୁଲେଖାର ଏଇ ପୋଷାକଟା ଆମ ଅଫିସ୍‌ର କୌଣସି ଜଣେ ଲେଡ଼ି ଆସିଷ୍ଟାଣ୍ଟକୁ ପିନ୍ଧାଇ, ତା' ଫଟୋ ଉଠାଇ କାଗଜରେ ଛାପି ଦେଲେ କେମିତି ହୁଅନ୍ତା ? ସଞ୍ଜୟ ଚଉଧୁରୀ ପରି କେହି ନିଶ୍ଚୟ ସୁଲେଖାକୁ କେଉଁଠି ହେଲେ ଦେଖିଥିବ ।

ମୁଁ ନୀରସ କଣ୍ଠରେ କହିଲି : ଆପଣ ଫଟୋଗ୍ରାଫରକୁ ଡାକି ଫଟୋ ଉଠାନ୍ତୁ । ମୁଁ ଯଥା ସମ୍ଭବ ଶୀଘ୍ର ଘରୁ ଫେରି ଆସୁଛି ।

\+ \+ \+

: ରୀତା, ରୀତା ! ଡାକି ଡାକି ମୁଁ ଘରେ ପଶିଲି । କିନ୍ତୁ ରୀତା ତ ଡ୍ରଇଂ ରୁମ୍‌ରେ ନାହିଁ । ଗଲା କୁଆଡ଼େ ?

: ରୀତା, ରୀତା !!

: ମୁଁ ଏ ଘରେ । ଆସ । ରୀତା ଜବାବ ଦେଲା ।

ମୁଁ ଡ୍ରଇଂ ରୁମ୍ ପାରି ହୋଇ ବାରଣ୍ଡାରେ ଠିଆ ହୋଇ ଘର ଭିତରକୁ ଚାହିଁଲି ।

କିଏ ? କିଏ ସେଠି ? ପାଟିରୁ ମୋର କଥା ବାହାରିଲା ନାହିଁ । ପାଦ ଦୁଇଟା ଯେପରି ମେରୁ ପାଲଟି ଗଲା । ନିଶ୍ଚଳ ପାଷାଣ ମୂର୍ତ୍ତି ପରି ସେଇଠି ମୁଁ ଠିଆ ହୋଇ ରହିଲି ।

ନା, ଦୃଷ୍ଟିଶକ୍ତି ମୋର ନଷ୍ଟ ହୋଇନି । ମୁଁ ଠିକ୍ ଦେଖୁଛି । ଘର ଭିତରେ ଚେଆର ଉପରେ ଶକ୍ତ ହୋଇ ଯିଏ ବସିଛି ସେ ବ୍ରିଜଲାଲ, ହଁ ବ୍ରିଜଲାଲ । ମୁହଁରେ କିପରି ଏକ କଠିନ ନିଷ୍ଠୁରତାର ଭାବ । ଆଉ ହାତରେ... ହାତରେ ସେଇଟା କ'ଣ ? ହଁ ହଁ ଗୋଟିଏ ଛୋଟ ରିଭଲଭର୍ । ନଳଟା ଯେପରି ମୋତେ ଲକ୍ଷ୍ୟ କରି ଅପେକ୍ଷା କରିଛି ।

: ଆସନ୍ତୁ, ଭିତରକୁ ଆସନ୍ତୁ ମିଷ୍ଟର ମିଶ୍ର । ବାହାରେ ଏପରି ଅପରିଚିତଙ୍କ ପରି ଠିଆହୋଇ ରହିଲେ କାହିଁକି ? ବ୍ରିଜଲାଲ କଣ୍ଠରେ ବିଦ୍ରୂପର ସ୍ୱର ।

ମୋର ସମଗ୍ର ଦେହଟା ସେତେବେଳକୁ କିପରି ଜଳି ଉଠିଥିଲା, ଘୃଣା ଆଉ କ୍ରୋଧରେ ମୁଁ ବିବ୍ରତ ହୋଇ ପଡ଼ିଥିଲି । ବ୍ରିଜଲାଲ ଆଖିରେ ଆଖି ମିଶେଇ କହିଲି : ଆପଣଙ୍କୁ ମୋ ଘର ଭିତରକୁ ପଶିବାର ଅଧିକାର କିଏ ଦେଲା ? ଏଇ ମୁହୂର୍ତ୍ତରେ ଆପଣ ଘର ଛାଡ଼ି ଚାଲି ଯାଆନ୍ତୁ ।

: ଏ କ'ଣ କହୁଛନ୍ତି ମିଷ୍ଟର ମିଶ୍ର । ରିଭଲଭରଟା ଉପରକୁ ଫୋପାଡ଼ି ଦେଇ ପୁଣି ଧରି ନେଲା । ଆପଣଙ୍କ ଘରକୁ ଆସିଛି । ଆପଣଙ୍କ ଅତିଥି । ଏପରି ଅପମାନିତ କରି ତଡ଼ିଦେବା କ'ଣ ଉଚିତ ?

: ଆପଣ କାହିଁକି ଆସିଛନ୍ତି ? କ'ଣ ଚାହାନ୍ତି ?

: ଟେପ୍ ।

: ଟେପ୍, କି ଟେପ୍ ?

: ବାଃ, ଆପଣ ଏତେ ଶୀଘ୍ର ସବୁ କଥା ଭୁଲି ଯାଉଛନ୍ତି ? ସକାଳେ ସବିତାକୁ କହି ଆସିଲେ, ଅଥଚ...

: ଭୁଲିନି । ହିସାବ ମିଳେଇବାକୁ ଯାଇ ଏତେ ଶୀଘ୍ର ଭୁଲିଲେ ଚଳିବ କିପରି ?

: ହିସାବ, କି ହିସାବ ?

: ଆପଣଙ୍କ ହିସାବ । ଏକଦା ପୋଲିସ୍ କର୍ମଚାରୀ ବ୍ରିଜଲାଲ ଆଜି ଜଣେ କୋଟିପତି ସ୍ତ୍ରୀର ପଦ ଲେହନକାରୀ କୁକୁର, ସେଇ ହିସାବ ମିଳାଉଥିଲି ।

: ବାଃ ... ଆପଣଙ୍କର ବୁଦ୍ଧି ଅଛି ଦେଖୁଛି । ଆପଣ ଏତେ ଶୀଘ୍ର ମୋ ସମ୍ବନ୍ଧରେ ଏତେ କଥା ଜାଣି ଗଲେଣି ? ଚମତ୍କାର ! କିନ୍ତୁ ମିଷ୍ଟର ମିଶ୍ର, ଏତେ କଥା ଯଦି ଆପଣ ଜାଣି ପାରିଲେ, ଆଉ ଟେପ୍‌ଟା ହସ୍ତାନ୍ତର ନକରି ଆଜିଯାଏ ରଖିଛନ୍ତି କାହିଁକି ?

: ନା, ଟେପ୍ ମୁଁ ଦେବି ନାହିଁ ।

: ଶୁଣନ୍ତୁ ମିଷ୍ଟର ମିଶ୍ର, ଅବାଧ୍ୟତା ଆଉ ଜିଦ୍ ଦୁଇଟା ଅଲଗା ଅଲଗା ଜିନିଷ । ଆପଣ ଆଜି ଯାହା କରୁଛନ୍ତି ସେଟା ଜିଦ୍ ନୁହେଁ, ଅବାଧ୍ୟତା ।

: ଅବାଧ୍ୟତା ମୁଁ କରୁଛି ? ଆଉ ଆପଣ ? ଗୋଟାଏ ରିଭଲଭର ଧରି, ଭୟ ଦେଖାଇ...

: ନା ନା ମିଷ୍ଟର ମିଶ୍ର । ଭୟ ମୁଁ ମୋଟେ ଦେଖାଉ ନାହିଁ । କର୍ତ୍ତବ୍ୟ ହିଁ ମୋର ଧର୍ମ । କିନ୍ତୁ ଗୋଟାଏ କଥା ଜାଣି ରଖନ୍ତୁ, ଲକ୍ଷ୍ୟ ମୋର ଅବ୍ୟର୍ଥ । ଆଖି ପିଛୁଳାକେ କ'ଣ ଯେ ଘଟିବ...

ମୁଁ ସ୍ଥିର, ନିର୍ବାକ୍ । ବ୍ରିଜଲାଲ ମୁହଁକୁ ଏକ ଦୃଷ୍ଟିରେ ଚାହିଁଥିଲି ।

କିଛି ସମୟର ନୀରବତା ପରେ ବ୍ରିଜଲାଲ ପୁଣି ଆରମ୍ଭ କଲା : ହଁ, ମୁଁ ଯାହା କହୁଥିଲି, ଧରନ୍ତୁ ଗୁଳିଟା ଆଖି ପିଛୁଳାକେ ଆପଣଙ୍କ ପ୍ରିୟତମା ସ୍ତ୍ରୀର ହୃତ୍‌ପିଣ୍ଡ ଭେଦ କରି ସେପାଖ ଦିଆଲରେ ଯାଇ ଫୁଟିଲା । କିମ୍ବା, କିମ୍ବା ଧରନ୍ତୁ ଏଇ ଶିଶି...

ଶିଶିଟା ଦେଖେଇଲା ବ୍ରିଜଲାଲ । ଭିତରେ ତରଳ ପଦାର୍ଥ କିଛି ରହିଛି । ଠିପି ଖୋଲି ସେଇ ତରଳ ପଦାର୍ଥରୁ ଫୁଣ୍ଟାଏ ଢାଳିଲା ଟେବୁଲ ଉପରେ । ସଂଗେ ସଂଗେ ଧୂଆଁ ଉଠିଲା ଏବଂ ଟେବୁଲଟା ପୋଡ଼ି ପୋଡ଼ି କଣା ହୋଇଗଲା । ବିଦ୍ରୂପର ହସ ଫୁଟି ଉଠିଥିଲା ତା' ମୁହଁରେ ।

: ଦେଖୁଛନ୍ତି ! ନାଇଟ୍ରିକ୍ ଏସିଡ୍ । ଧରନ୍ତୁ ଏମିତି ଗୋଟିଏ ଶିଶି ଆପଣଙ୍କ ସ୍ତ୍ରୀଙ୍କର ମୁହଁ ଉପରେ କେହି ଢାଳିଦେଲା । ପରବର୍ତ୍ତୀ ଅବସ୍ଥାଟା କଳ୍ପନା କରି ପାରୁଛନ୍ତି ମିଷ୍ଟର ମିଶ୍ର ? ଆଖି ସ୍ଥାନରେ ଦେଖିବେ କେବଳ ଦୁଇଟା ଗାତ, ନାକଟା ନଥିବ, ଗାଲରେ ମାଂସ ବଦଳରେ ରହିବ ଦି'ପାଟି ଦାନ୍ତ ହା ହା, ହାଃ ହାଃ... ଆଉ ଥରେ କଳ୍ପନା କରନ୍ତୁ ତ ଆପଣ ସ୍ତ୍ରୀଙ୍କ ମୁଖ ?

କିପରି ଏକ ଆତଙ୍କ-ବିଭୀଷିକାରେ ମୁଁ ଶିହରୀ ଉଠିଲି । କେତୋଟି ମୁହୂର୍ତ୍ତର ନୀରବତା । ମୁଁ ଅନୁଭବ କରୁଥିଲି ମୋର ସର୍ବାଙ୍ଗ କିପରି ଅବଶ ହୋଇ ଆସୁଛି । ତଣ୍ଟିରୁ ଛେପ ଶୁଖି ଯାଉଛି । ବହୁ କଷ୍ଟରେ କହିଲି : ଚାଲ ।

: କୁଆଡ଼େ ?

: ବ୍ୟାଙ୍କକୁ । ସବୁ ଟେପ୍ ଲକରରେ ଜମା ଅଛି ।

: ବେଶ୍, କିନ୍ତୁ ଠକାଠକି କରିବାକୁ ଯେପରି ଚେଷ୍ଟା ନକରନ୍ତି । ତା' ହେଲେ...

ନା ନା, ଠକିବିନି । ଆପଣ ମୋ ସାଙ୍ଗରେ ଆସନ୍ତୁ । ଘରୁ ବାହାରକୁ ପାଦ ବଢ଼ାଇଲି ।

ରୀଟା କିନ୍ତୁ ଛୁଟି ଆସି ପଥରୋଧ କଲା : ନା ନା, ତମେ ଯାଅନି, ତମେ ଦିଅନି । ଟେପ୍ ହାତରୁ ଚାଲିଗଲେ ପ୍ରମାଣ କିଛି ରହିବନି... ତମେ ମୋ କଥା ମାନ... ପ୍ଲିଜ୍...

ରୀଟାକୁ ମୁଁ ଠେଲିଦେଇ ପଦାକୁ ବାହାରି ଗଲି । ମୋ ପଛେ ପଛେ ବ୍ରିଜଲାଲ । ଆମେ ଯାଇ ଗାଡ଼ିରେ ଉଠିଲୁ ।

ଗାଡ଼ି ଆଗେଇ ଚାଲିଲା ।

: ବୁଝିଲେ ମିଃ ମିଶ୍ର । ଝାମେଲା ଏଡ଼େଇ ଚଳିବା ହେଉଛି ବୁଦ୍ଧିମାନର କାମ । ଧରନ୍ତୁ ମୋ'ରି କଥା । ସବିତା କହିଲା, ଟେପ୍ ଗୁଡ଼ିକ କୁଆଡ଼େ ଆପଣଙ୍କ ପାଖରେ ଅଛି । ମୁହୂର୍ତ୍ତେ ବି ସମୟ ନଷ୍ଟ ନୁହେଁ, ସଙ୍ଗେ ସଙ୍ଗେ ଚାଲି ଆସିଲି ଆପଣଙ୍କ ପାଖକୁ । କିନ୍ତୁ ଆପଣଙ୍କ ଧୈର୍ଯ୍ୟର ପ୍ରଶଂସା ନକରି ମୁଁ ରହିପାରୁ ନାହିଁ । ଏତେ ସମସ୍ୟା ଭିତରେ ବି ଆପଣ ମୁଣ୍ଡ ଥଣ୍ଡା ରଖି ଗୋଟିକ ପରେ ଗୋଟିଏ କାମ କରି ଚାଲିଛନ୍ତି । ଏତେ ଆପଣଙ୍କ ମନର ଜୋର୍, ବରେନ୍ ବୋଧହୁଏ ଏ ପର୍ଯ୍ୟନ୍ତ ଆପଣଙ୍କୁ ସନ୍ଦେହ କରି ପାରିନାହିଁ । ନୁହେଁ ?

: ହଁ ।

: କରିବ । ସନ୍ଦେହ ସେ କରିବାକୁ ବାଧ୍ୟ ହେବ । ଆଜି ହେଉ, କାଲି ହେଉ ଆପଣ କିନ୍ତୁ ନିସ୍ତାର ପାଇବେ ନାହିଁ ।

: ଜାଣିଛି ।

: ତେବେ ହଁ । ଆଗରୁ ମୁଁ ଆପଣଙ୍କୁ ସାବଧାନ କରି ରଖୁଛି । ବିପଦରେ ପଡ଼ି ଯେପରି ସବିତା ବା ମୋତେ ଦଳକୁ ନ ଟାଣନ୍ତି । ତା'ହେଲେ ପରିଣତି ଆପଣଙ୍କର ଆହୁରି ଖରାପ ହେବ ।

ତା'କଥାର କିଛି ଉତ୍ତର ନଦେଇ ଅଳ୍ପ ହସିଲି ।

: କ'ଣ ହେଲା ? ଆପଣ ହସୁଛନ୍ତି ଯେ !

: ନା, ସେମିତି କିଛି ନୁହେଁ । ହସ ମାଡ଼ିଲା ଆପଣଙ୍କ ଭବିଷ୍ୟତ କଥା ଚିନ୍ତାକରି ।

: ମାନେ ?

: ମାନେ ଅତି ସହଜ । କପାଳରେ ଆପଣଙ୍କର ଅନେକ ଦୁଃଖ ଅଛି ବ୍ରିଜଲାଲଜୀ, ଅନେକ ।

: ଆରେ ଆପଣ ଦେଖୁଛି ଜ୍ୟୋତିଷ ବିଦ୍ୟା ବି...

: ନା ନା, ମୁଁ ପରିହାସ କରୁ ନାହିଁ । ହିସାବ ଅଙ୍କ ବିଦ୍ୟାପରି ନିର୍ଭୁଲ । ଯେଉଁ ସବିତା ପ୍ରସାଦକୁ ବଞ୍ଚେଇବା ପାଇଁ ଆପଣ ପ୍ରାଣପାତ କରି ଲାଗି ପଡ଼ିଛନ୍ତି, କାର୍ଯ୍ୟ ହାସଲ ପରେ ସେଇ ସବିତା ପ୍ରସାଦ ଆପଣଙ୍କୁ ଲାତ ମାରି ଘରୁ ତଡ଼ିଦେବ । ମୋ ହିସାବ ନିର୍ଭୁଲ । ଦୁଇରେ ଦୁଇ ମିଶାଇଲେ ଚାରି ହେବାକୁ ବାଧ ।

ହୋ ହୋ ହୋଇ ହସି ଉଠିଲା ବ୍ରିଜଲାଲ : ଫୁଃ... ଆପଣ ଦେଖୁଚି କଥା କହିବାରେ ଓସ୍ତାଦ । ଏମିତି କଥା କହି ସବିତା ଆଉ ମୋ ମଝିରେ ମେଘନାଦ ପାଚେରି ଠିଆ କରେଇବାକୁ ଚାହାନ୍ତି । କିନ୍ତୁ ଆପଣଙ୍କର ସେ ପ୍ରଚେଷ୍ଟା ବ୍ୟର୍ଥ ହେବ । ତା'ଛଡ଼ା ମୁଁ ଶିଶୁ ନୁହେଁ ଯେ ସବିତାଠାରୁ ପ୍ରତିଶ୍ରୁତି ନପାଇ...

: କି ପ୍ରତିଶ୍ରୁତି ସବିତା ଦେଇଚି ଆପଣଙ୍କୁ ?

: କ'ଣ ଆଉ ଦିଅନ୍ତା ! ଆମ ଭବିଷ୍ୟତ ସମ୍ପର୍କରେ । ବୁଢ଼ା ମରିଯିବା ପରେ ସବିତା ମୋତେ ବିବାହ କରିବ, ତା'ପରେ ସମସ୍ତ ସମ୍ପତ୍ତି...

: ହଉ ଥାଉ । ମୋତେ ଆଉ ବେଶି ଶୁଣାନ୍ତୁ ନାହିଁ । ସ୍ୱାର୍ଥ ହାସଲ ପାଇଁ ସବିତା ପ୍ରସାଦ ପରି ସ୍ତ୍ରୀଲୋକମାନେ ଯାହା କରି ଥାଆନ୍ତି ଆପଣ କେବଳ ସେଇ ଆଶାର କଥା ସବୁ ଶୁଣିଛନ୍ତି । ମୁଁ କିନ୍ତୁ ମୋ ସାମ୍ବାଦିକ ଜୀବନରେ ଏପରି ବହୁ ଘଟଣା ପ୍ରତ୍ୟକ୍ଷ କରିଛି । ଆପଣ ଭୁଲ୍ କରୁଛନ୍ତି ବ୍ରିଜଲାଲଜୀ !

: ଭୁଲ୍... ମୁଁ ଭୁଲ କରୁଛି ? ବ୍ରିଜଲାଲ ମୁହଁରେ ମୁହୂର୍ତ୍ତକ ପାଇଁ କିପରି ଚିନ୍ତାର କଳାଛାଇ ମାଡ଼ି ଆସିଲା ! ସେ ଇତସ୍ତତଃ କରି କହିଲା, ଆଚ୍ଛା, ମୋ ଜାଗାରେ ଯଦି ଆପଣ ଥାଆନ୍ତେ କ'ଣ କରି ଥାଆନ୍ତେ ?

ହଁ, ଏଥର ତା'ହେଲେ ଫାନ୍ଦରେ ଗୋଡ଼ ଦେଇଚି ବ୍ରିଜଲାଲ । ସାବଧାନରେ ସୂତା ଟାଣିବାକୁ ହେବ ।

: କ'ଣ ଆଉ କରି ଥାଆନ୍ତି, ତାକୁ ପରୀକ୍ଷା ନିରୀକ୍ଷା କରି ଥାଆନ୍ତି । ତା'ର କଥା ଆଉ କାମ ଭିତରେ ମେଳ ଅଛି କି ନାହିଁ, ତା' ଆଖିରେ ଅନ୍ୟ କୌଣସି ସ୍ୱପ୍ନ ଅଛି କି ନାହିଁ...

: ଧେତ୍... ଆପଣ ଦେଖୁଚି ଗୋଟିଏ ବୋକା । ସ୍ତ୍ରୀ ଲୋକଙ୍କ ସମ୍ବନ୍ଧରେ ଆପଣଙ୍କର କିଛି ଧାରଣା ନାହିଁ । ତା'ଛଡ଼ା ସବିତାକୁ ମୁଁ ଚିହ୍ନେ । ତା'ର କଥା ଯାହା କାମ ସେଇଆ ।

: ହୋଇଥିବ । ଗାଡ଼ି ନେଇ ମୁଁ ବ୍ୟାଙ୍କ ଦୁଆରେ ଭିଡ଼େଇଲି ।

ତା'ପରର କାର୍ଯ୍ୟ ଅତ୍ୟନ୍ତ ସଂକ୍ଷିପ୍ତ । ଲକର୍ ଖୋଲି ଟେପ୍ ଆଣି ବ୍ରିଜଲାଲ ହାତରେ ସମର୍ପି ଦେଲି ।

ସେ ହସିଲା । କହିଲା : ମୁଁ ଆସୁଛି ।

: ହଁ, ଆସ । କିନ୍ତୁ ମୋ କଥା ମନେ ରଖିଥିବ । ଧରିନିଅ ଏଇଟା ମୋର ଉପଦେଶ । 'ଦୁଇ'ରେ 'ଦୁଇ' ମିଶିଲେ ଚାରି ହେବାକୁ ବାଧ ।

: ଥାଉ, ସେସବୁ ଫମ୍ପା ଉପଦେଶ ମୋତେ ନ ଦେଲେ ଚଳିବ । ମୁଁ ବ୍ରିଜଲାଲ । ମୋର ଆଖି-କାନ ଅଛି ।

ସେ ଆଉ ମୁହୂର୍ତ୍ତେ ଅପେକ୍ଷା ନକରି ଦ୍ରୁତଗତିରେ ଆଗେଇ ଗଲା । ମୁଁ ତା'ରି ଯିବା ପଥକୁ ଚାହିଁ ରହିଥିଲି ଏକ ଦୃଷ୍ଟିରେ ।

ମୁଁ ଅଫିସ୍‌ରେ ପହଞ୍ଚିଲା ବେଳକୁ ତିନିଟା ବାଜି ଯାଇଥିଲା । ଘରେ ପଶି ଚେଆରରେ ବସୁ ବସୁ ଦେଖିଲି, ଟେବୁଲ ଉପରେ ଗୋଟିଏ ଛୋଟ ସ୍ଲିପ୍-ଆସି ପହଞ୍ଚିବା ମାତ୍ରକେ ବରେନ୍ ସହିତ ମୁଁ ଯେପରି ଦେଖା କରେ ।

ଅର୍ଥାତ୍ ? ଏଇ ଘଣ୍ଟାଏ ଦେଢ଼ ଘଣ୍ଟା ଅନୁପସ୍ଥିତିରେ ଅନେକ ଘଟଣା ହୁଏତ ଘଟି ଯାଇଛି । ହୁଏତ ଆହୁରି ଅନେକ ଅଜଣା ତଥ୍ୟ ପୋଲିସ୍‌ର ଗୋଚରକୁ ଆସିଛି । ତା' ସହିତ ହୁଏତ ପୋଲିସ୍ ଜାଣି ପାରିଛି ଯେ ଏହି ନାଟକର ନାୟକ ସ୍ୱୟଂ ମୁଁ । ଯାହାହେଉ ବର୍ତ୍ତମାନ ଆଉ ବାଟ କିଛି ନାହିଁ । ମୋ ନିର୍ଦ୍ଦୋଷତାର ସମସ୍ତ ପ୍ରମାଣ ମୁଁ ବ୍ରିଜଲାଲକୁ ଦେଇ ଦେଇଛି । ଦେଇ ଦେଇଛି ମାନେ ? ଦେବାକୁ ବାଧ ହୋଇଛି । ରିଭଲଭର ବା ଏସିଡ୍ ଶିଶି ଧରି ଖାଲି ଯେ ସେ ଭୟ ଦେଖାଇବାକୁ ଆସିଥିଲା ତା' ନୁହେଁ, ତା'ର ମୁଖଭଙ୍ଗୀ ଓ ଆଖିର ଚାହାଣିରୁ ମୁଁ ବୁଝି ପାରିଥିଲି, ସେ ଖୁଣୀ । ଦରକାର ହେଲେ ଦ୍ୱିତୀୟ ଖୁଣ୍ କରିବା ପାଇଁ ଟିକେ ମାତ୍ର ଅବହେଳା କରିବ ନାହିଁ । ହେଉ, ଯାହା ହେବାର ଥିବ ହେବ ।

ମୁଁ ବରେନ୍ ଘର କବାଟ ଖୋଲି ଭିତରେ ପଶିଲି ।

ବରେନ୍ ଟେବୁଲ ଉପରେ ଗୋଟାଏ ଫାଇଲ ମେଲେଇ ପଢ଼ିବାରେ ବ୍ୟସ୍ତ ଥିଲା । ମୋ ପାଦ ଶବ୍ଦ ଶୁଣି ମୁହଁଟେକି ଚାହିଁଲା, : ବସ । ମୁଁ ଟିକେ ଏ ରିପୋର୍ଟଟା ଶେଷ କରିନିଏ ।

ମୁଁ ଆଶ୍ଚର୍ଯ୍ୟ ହେଲି । ମୋର ମନେ ହେଲା ଏ ଯେପରି ଆଉ ଏକ ବରେନ୍ । ତା'ର କଣ୍ଠସ୍ୱର, ତା'ର ଆଚରଣ... ତା'ହେଲେ, ବରେନ୍ କ'ଣ ୟା ଭିତରେ ସବୁ କଥା ଜାଣି ପାରିଛି ।

ଚେଆର୍ ଟାଣି ବସିଲି । ସିଗାରେଟ୍ ଲଗେଇଲି, ସ୍ଥିର ଦୃଷ୍ଟିରେ ଚାହିଁ ରହିଲି ବରେନ୍ ମୁହଁକୁ ।

ବରେନ୍ ପଢ଼ା ଶେଷ କରି ଫାଇଲ୍‌ଟି ବନ୍ଦ କଲା । ମୋ ମୁହଁ ଉପରେ ଏକ ତୀର୍ଯ୍ୟକ ଦୃଷ୍ଟି ବୁଲେଇ ନେଇ କହିଲା : ଆଚ୍ଛା ରଜତ, ସୁଲେଖା ସହିତ ତମର କ'ଣ ପରିଚୟ ଥିଲା ?

: ପରିଚୟ ? ସୁଲେଖା ସହିତ ? ମୋ ଭିତରଟାରେ ଯେପରି ବରଫ ଝଡ଼ ବହିଗଲା । ଏସବୁ ତମେ କ'ଣ କହୁଚ ବରେନ୍ ? ତା'ଛଡ଼ା ସେମାନେ ଯେତେବେଳେ ଏ ସହରକୁ ଆସିଲେ ମୁଁ ସେତେବେଳେ ଜେଲ୍‌ରେ, ଛାଡ଼ପାଇଲି ତ ଏଇ କେଇଦିନ ହେବ । ତେଣୁ ତା' ସହିତ ଜଣାଶୁଣାର ସୁଯୋଗ ପାଇଲି କେବେ ?

: ସେ କଥା ଠିକ୍ ଯେ । ଇତସ୍ତତଃ କଲା ବରେନ୍ । ତଥାପି ତା' ସମ୍ବନ୍ଧରେ ଯଦି କିଛି ଜାଣିଥାଅ...

: ଉଁ ହୁଁ, ମୁଁ ତା' ସମ୍ବନ୍ଧରେ କିଛି ଜାଣି ନାହିଁ । ତା'ଛଡ଼ା ହଠାତ୍ ଏ ପ୍ରଶ୍ନ ବା ଉଠିଲା କାହିଁକି ?

: ଏମିତି । ହାତ ବଢ଼େଇ ଟେବୁଲ ଉପରୁ ସିଗାରେଟ୍ ପ୍ୟାକେଟ୍ ଉଠାଇ ନେଲା ବରେନ୍ । ସିଗାରେଟ୍‌ରେ ଅଗ୍ନି ସଂଯୋଗ କରି, ଚେଆର୍ ଉପରେ ଆଉଜି ବସିଲା । ଆଖି ବୁଜି କ'ଣ ଚିନ୍ତା କଲା । ସିଗାରେଟ୍ ଧୂଆଁରେ ରିଂ କରୁ କରୁ କହିଲା, ସୁଲେଖା ସମ୍ବନ୍ଧରେ ଯେତେଟା ଜାଣିଲି, ଝିଅଟାର ସ୍ୱଭାବ ଚରିତ୍ର ଭଲ ନଥିଲା । କେତେ ଲୋକ ସାଙ୍ଗରେ ତା'ର ଯେ ଜଣାଶୁଣା, ପ୍ରେମ ପ୍ରୀତି, ହୁଏତ ସେମାନଙ୍କ ଭିତରୁ ଜଣେ ଅଧେ କାହା ସହିତ ଆମର କାହାର ପରିଚୟ ନିଶ୍ଚୟ ଥିବ ।

: ଅସମ୍ଭବ ନୁହେଁ । ସେ ଯା'ହେଉ, ସୁଲେଖା ସମ୍ବନ୍ଧରେ ଆଉ କ'ଣ ଖବର ପାଇଲୁ କହ ।

: ଖବର ମିଳିଛି ଅନେକ । ସୁଲେଖାକୁ ନେଇ ଭୁବନେଶ୍ୱର ହୋଟେଲରେ ରଖା ହୋଇଥିଲା । ଏଆରପୋର୍ଟ ସୂତ୍ରରୁ ସନ୍ଧାନ କରି ତଥ୍ୟ ମିଳିଛି । ଆହୁରି ଜାଣିଛ ରଜତ, ସୁଲେଖାର ଜୋତା ଭିତରୁ କିଛି ମିହିଦାନା ବାଲି ମିଳିଛି । ସେ ବାଲି କେଉଁଠିକାର ସେଥିପାଇଁ ବିଶେଷଜ୍ଞଙ୍କ ଦ୍ୱାରା ଅନୁସନ୍ଧାନ ହେଉଛି । ଏଇ ସବୁ ଖବର ମିଳିଗଲେ...

କଥା ଶେଷ ହେଲା ନାହିଁ । ଗୋଟାଏ କନେଷ୍ଟବଲ ଆସି ଖବର ଦେଲା, ବଡ଼ ସାହେବ ଡାକୁଛନ୍ତି ।

: ଚାଲ ବରେନ୍ । ବଡ଼ ସାହେବ ଏତଲା ପଠେଇଲେଣି ।

ଦୁଇଜଣଯାକ ବଡ଼ ସାହେବଙ୍କ ଘରେ ପଶିଲୁ । ବଡ଼ ସାହେବ ଆମକୁ ବସିବାକୁ କହି ଆରମ୍ଭ କଲେ : ଏସବୁ କ'ଣ ଶୁଣୁଛି ହେ ।

: ଆପଣ ଠିକ୍ ଶୁଣିଛନ୍ତି । ସୁଲେଖା ପ୍ରକୃତରେ ଗୁଣ୍ଡାମାନଙ୍କ ହାତରେ ପଡ଼ି ନଥିଲା ।

: ଆଶ୍ଚର୍ଯ୍ୟ । ଏତ ଦେଖୁଛି ଜମକଜମାଟ ଏକ ଗୁଇନ୍ଦା ଗଳ୍ପ ।

: ହଁ ସାର୍ । ଗୁଇନ୍ଦା ଗଳ୍ପ ନିଶ୍ଚୟ । ଗଳ୍ପଟା ମୂଳରୁ ଶେଷ ପର୍ଯ୍ୟନ୍ତ ସୁନ୍ଦର ଭାବରେ ସଜା ହୋଇଛି । ସୁଲେଖା ଆଉ ତା'ର ସେହି ବ୍ଲେଜାର ପିନ୍ଧା ସଙ୍ଗୀଟି, ଦୁଇଜଣ ମିଶି ଗଳ୍ପଟିର ପରିକଳ୍ପନା କରିଛନ୍ତି । ସଙ୍ଗୀଟିର ହୁଏତ ଟଙ୍କାର ଦରକାର ପଡ଼ିଛି । ମିଥ୍ୟା ନିରୁଦ୍ଦେଶର ଉପାୟ ଅବଲମ୍ବନ କରି ବାବା ଠାରୁ ଟଙ୍କା ଆଦାୟ କରିବା ପାଇଁ ସୁଲେଖାକୁ ରାଜି କରା ହୋଇଛି ଏବଂ ସୁଲେଖା ଯଥାରୀତି ନିରୁଦ୍ଦେଶ ହେବାର ଅଭିନୟ କରିଛି ।

: କିନ୍ତୁ ଏସବୁ ତ ତମର ଅନୁମାନ ବରେନ୍, ଏହାକୁ ଯଦି ମୁଁ ଆଉ ଏକ ଗଳ୍ପ ବୋଲି ଧରିନିଏ ।

: ନା, ସାର୍, ଏହା ଅନୁମାନ ବା ଗଳ୍ପ ନୁହେଁ । ମିଃ ମାଥୁର ତଦନ୍ତ କରି ଫେରି ଆସିଛନ୍ତି । ସୁଲେଖା ନିରୁଦ୍ଦେଶ କାଳରେ ଯାଇ ଭୁବନେଶ୍ୱର ହୋଟେଲରେ ରହିଥିଲା । ସେଠାରେ ସେ ଯେଉଁ ରୁମ୍‌ରେ ରହିଥିଲା, ଗୋଟାଏ ଚିରୁଣୀ ଭୁଲ୍‌ରେ ଛାଡ଼ି ଆସିଥିଲା । ସେଇ ଚିରୁଣୀରେ ଆଙ୍ଗୁଳି ଛାପ ସହିତ ସୁଲେଖା ଆଙ୍ଗୁଳିର ଛାପ ମିଶି ଯାଉଛି ।

: ବୁଝିଲି । ଘଟଣାଟା ହୁଏତ ସତ୍ୟ । କିନ୍ତୁ ସୁଲେଖା ଖୁଣ୍ ହେଲା କାହିଁକି ?

: କାରଣ ଅଛି ସାର୍, କାରଣ ଗୋଟାଏ ନୁହେଁ, ଅଜସ୍ର । ଟଙ୍କା ଭାଗ ବାଣ୍ଟ ନେଇ ହୋଇପାରେ, ଅଥବା ସୁଲେଖାର ମୁହଁ ଚିରଦିନ ବନ୍ଦ କରିଦେବା ପାଇଁ ହୋଇପାରେ ।

: କିନ୍ତୁ କିଏ ସେଇ ସଙ୍ଗୀ ? କ'ଣ ତା'ର ପରିଚୟ ?

: ପରିଚୟ ପାଇଛି ସାର୍, ତେବେ ଯେତିକି ପାଇଛି, ସେତିକିରେ ତାକୁ ଗ୍ରେପ୍ତାର କରି ହେବ ନାହିଁ । ଆହୁରି ଅନେକ ତଥ୍ୟ ଜାଣିବାକୁ ହେବ, ପ୍ରମାଣ କରିବାକୁ ହେବ । ବାଲି ସମ୍ବନ୍ଧରେ ଫୋରେନ୍‌ସିକ୍ ରିପୋର୍ଟଟା ମିଳିଗଲେ...

ହଠାତ୍ ଟେଲିଫୋନ୍‌ଟା ଝନ୍ ଝନ୍ ହୋଇ ବାଜି ଉଠିଲା ।

ବରେନ୍ ରିସିଭରଟା ଉଠାଇ ନେଲା କାନ ପାଖକୁ, ହ୍ୟାଲୋ ? ହଁ କହୁଛି, ପାଇଛ... ? ଏଁ .... ଆଶ୍ଚର୍ଯ୍ୟ । ଠିକ୍ ଅଛି, ଆମେ ସାଙ୍ଗେ ସାଙ୍ଗେ ବାହାରିଲୁ । ତମେ ତମ ଲୋକମାନଙ୍କୁ ପ୍ରସ୍ତୁତ ହୋଇ ଯିବାକୁ କୁହ ।

କ୍ଷିପ୍ର ବେଗରେ ରିସିଭର ରଖିଦେଲା ବରେନ୍ । କହିଲା : ମୋତେ ଏଇକ୍ଷଣି ଡାଇମଣ୍ଡ ହାରବର୍ ଯିବାକୁ ହେବ ସାର୍ । ଫୋରେନସିକ୍ ରିପୋର୍ଟକୁ ଜଣା ଯାଇଛି ଯେ ବାଲିଗୁଡ଼ିକ ଡାଇମଣ୍ଡ ହାରବର୍‌ର ସମୁଦ୍ରକୂଳ ଅଞ୍ଚଳର ବାଲି । ସେଠାରେ ମଧ୍ୟ ହୋଟେଲ ଫୋଟେଲ କେତେଟା ଅଛି । ଯାଇ ଥରେ ପଚରା ପଚରି କରି ଆସେ । ଚାଲ ବରେନ୍, ଘୂରି ଆସିବା ଚାଲ ।

ପୁଣି ଥରେ ମୋ ସର୍ବାଙ୍ଗ କମ୍ପି ଉଠିଲା । ହଠାତ୍ ମିଃ ଶର୍ମାଙ୍କ ମୁହଁ ଭାସି ଉଠିଲା ମୋ ଆଖି ଆଗରେ । ହୋଟେଲ ଭଡ଼ା ସେ ପାଇବେ ଆହୁରି ଶହେ ଟଙ୍କା । ତାଙ୍କ ସହିତ ଦେଖା ହେବା ମାତ୍ରକେ ସେ ଯଦି ଆରମ୍ଭ କରି ଦିଅନ୍ତି ସେଇକଥା, ତା'ହେଲେ ମୋ ଅବସ୍ଥା...

: ମୁଁ ନଗଲେ ଚଳିବ ନାହିଁ ବରେନ୍ । ମୋର ଟିକେ ଏଣେ କାମ ବି ଥିଲା । ତୁମେ ବରଂ...

: ଆଉ, କାମ ପରେ କରିଲେ ଚଳିବ । ତମେ ବାହାରିଲ ସଂଗେ ସଂଗେ । ମୋ ରୁମ୍‌କୁ ଆସ । ମୁଁ ପ୍ରସ୍ତୁତ ହେଉଛି । ବରେନ୍ ତା' ରୁମ୍ ଆଡ଼େ ଚାଲିଥିଲା ।

ଅନିଚ୍ଛା ସତ୍ତ୍ୱେ ମୋତେ ବରେନ୍ ସହିତ ଯିବାକୁ ହେବ । ନ ଯାଇ ଉପାୟ କ'ଣ । ଏଥର କିନ୍ତୁ... ଆନମନା ହୋଇ ମୁଁ ମୋ ରୁମ୍‌ର କବାଟ ଖୋଲି ଭିତରେ ପଶିବା ମାତ୍ରେ ଦେଖିଲି, କାଚ ଝରକା ସେପାଖ ବାରଣ୍ଡାରେ ଠିଆ ହୋଇଛନ୍ତି ଦୁଇଜଣ ଗୁଇନ୍ଦା ଅଫିସର, ଚୁପ୍‌ଚୁପ୍ କ'ଣ କଥାବାର୍ତ୍ତା ହେଉଛନ୍ତି ନିଜ ନିଜ ଭିତରେ । ମୋତେ ଦେଖିବା ମାତ୍ରକେ ସେମାନେ ମୁହଁ ବୁଲେଇନେଲେ ଅନ୍ୟ ଆଡ଼କୁ ।

ଆଚ୍ଛା ! ପହରାର ସୁବ୍ୟବସ୍ଥା ବି ହୋଇସାରିଛି । ହେଉ ।

ମୁଁ ଆଉ ଘରେ ବସିଲି ନାହିଁ । ପୁଣି ବାହାରି ଆସିଲି ବାହାରକୁ, ସିଧା ବରେନ୍ ଘରକୁ । ସେ ପ୍ରସ୍ତୁତ ହୋଇ ସାରିଥିଲା । କହିଲି : ଚାଲ ।

ଆମେ ଆଗେଇଲୁ । ବାରଣ୍ଡା । ବାରଣ୍ଡାରୁ ଶିଡ଼ି... ପଛକୁ ଚାହିଁ ଦେଖିଲି, ଆମ ପଛେ ପଛେ ସେଇ ଗୁଇନ୍ଦା ଅଫିସର ଦୁଇଜଣ ଚାଲିଛନ୍ତି । ତା'ହେଲେ ବ୍ୟବସ୍ଥା ସୁଦୃଢ଼ ।

ଫୋରେନ୍‌ସିକ୍ ଅଫିସ୍‌ର୍ ବିଶେଷଜ୍ଞମାନେ ଓ ଆମେ ଗୋଟାଏ ଗାଡ଼ିରେ ଉଠିଲୁ । ଡ୍ରାଇଭର ପାଖରେ ବସିଲେ ସେଇ ଗୁଇନ୍ଦା ଅଫିସର ଦୁଇଜଣ ।

ଆମେ ଡାଇମଣ୍ଡ ହାର୍‌ବରରେ ପହଞ୍ଚିଲା ବେଳକୁ ସଂଧ୍ୟା ଛଅଟା । ଗାଡ଼ି ରହିଲା ଯାଇ ସୈକତାବାସ ସାମ୍‌ନାରେ । ଆମେ ସମସ୍ତେ ଓହ୍ଲାଇଲୁ । ଗୋଏନ୍ଦା ଅଫିସର ଦି'ଜଣ ଦୂରେଇ ଗଲେ । ବରେନ୍ ମୋତେ ସାଂଗରେ ନେଇ ସୈକତାବାସ ଅଫିସକୁ ଗଲା ।

ଠିକ୍ ଯାହା ମୁଁ ଭାବିଥିଲି । ମିଃ ଶର୍ମା ସ୍ୱୟଂ ସଶରୀରେ ଉପସ୍ଥିତ ଅଛନ୍ତି । ମୋତେ ଦେଖିବା ମାତ୍ରେ ଦାନ୍ତ ଦେଖାଇ ହସି ଉଠିଲେ : ଆସନ୍ତୁ । ଆସନ୍ତୁ ରଜତ ବାବୁ । ଆଉସବୁ ଖବର କ'ଣ ?

: ଖବର ସବୁ ଭଲ । ବିଶେଷ ଗୋଟାଏ କାମରେ ମୋତେ ଆସିବାକୁ ହେଲା ମିଃ ଶର୍ମା । ଏ ଇନିସ୍‌ପେକ୍ଟର ମିଃ ହାଜରା । ପୋଲିସ୍ ହେଡ୍‌କ୍ୱାଟର୍ସରୁ ଆସିଛନ୍ତି ଗୋଟାଏ ଜରୁରୀ ତଦନ୍ତ ସମ୍ବନ୍ଧରେ । ଆପଣଙ୍କୁ କେତେଟା ପ୍ରଶ୍ନ ପଚାରିବାକୁ ଚାହାନ୍ତି ।

: ପ୍ରଶ୍ନ ! କି ପ୍ରଶ୍ନ ? ମିଃ ଶର୍ମା ଚାହିଁଲେ ବରେନ୍ ମୁହଁକୁ । କ'ଣ କିଛି ଗୋଳମାଳ... ମିଷ୍ଟର ହାଜରା ?

: ନା, ଗୋଳମାଳ ସେମିତି କିଛି ନୁହେଁ । ଆମେ ଗୋଟାଏ ଝିଅର ସଂଧାନରେ ଏଠାକୁ ଆସିଚୁ । ଏଇ କୋଡ଼ିଏ ଏକୋଇଶ ବର୍ଷର ଝିଅ, ମୁଣ୍ଡମାଳ ବବ୍‌କରା । ପିନ୍ଧିଛି ନୀଳ ଉପରେ ସାଦା ଡୋରି ଡୋରି ସ୍କାର୍ଟ, ଆଖିରେ ଗଗ୍ଲାସ, ଏମିତି ଗୋଟିଏ ଝିଅକୁ ଆପଣ ଦେଖିଚନ୍ତି ଏ ଅଞ୍ଚଳରେ ?

: ଦୁଃଖିତ ମିଃ ହାଜରା । ଦିନସାରା ଆମ ଏଠାକୁ ଏତେ ପୁଅ ଝିଅ, ଏତେ ରଙ୍ଗ ବେରଙ୍ଗ ପୋଷାକ ପିନ୍ଧି ଆସନ୍ତି ଯେ ବିଶେଷ ଭାବରେ କାହାକୁ ମନେରଖିବା...

: କିନ୍ତୁ ଶନିବାର ଅଧରାତି ବେଳକୁ ସେ ଏଠାକୁ ଆସିଥିଲା ମିଃ ଶର୍ମା । ତା'ର ଏଠାକୁ ଆସିବାର ପ୍ରମାଣ ଗୋଟାଏ ନୁହେଁ, ଦୁଇଟା ନୁହେଁ, ଆମ ପାଖରେ ବହୁତ ରହିଛି । ଆଚ୍ଛା ଆପଣ ଏଠାରେ କେତେ ରାତି ଯାଏ ରୁହନ୍ତି ?

: ଆଠଟା ଯାଏ ।

: ଶନିବାର ?

: ଶନିବାର ରବିବାର କୌଣସି ଦିନ ମୁଁ ଆଠଟାରୁ ଅଧିକ ରାତି ଯାଏ ରୁହେ ନାହିଁ । କିନ୍ତୁ... ହଁ, ଗୋଟାଏ କଥା ମନେପଡ଼ିଲା । ରଜତ ବାବୁ ତ ଶନିବାର ଦିନ ରାତିସାରା ଏଠାରେ ଥିଲେ ।

ହେଇଚି । ଯୋଉଠି ରାତି, ସେଇଠି ବାଘ ଗର୍ଜନ । ଶର୍ମାଟା ଏକଦମ୍ ବେଅକଲୀ ଲୋକ । ସମସ୍ତଙ୍କ ଆଗରେ...

: ନା ମିଃ ଶର୍ମା । ଆପଣ ଭୁଲ୍ କହୁଛନ୍ତି । ମୁଁ ଶୁକ୍ରବାର ରାତିରେ ଏଠାରେ ଥିଲି, ଶନିବାର ନୁହେଁ ।

:ଓଃ, ତା'ହେଲେ ମୁଁ ଭୁଲ୍ କହୁଛି ମିଷ୍ଟର ହାଜରା । ଦିନସାରା ଏଠାରେ ଯାହା ଝାମେଲା ନା, ମୁଣ୍ଡ ଠିକ୍ ରଖିବା କାଠିକର ପାଠ ।

: ହୁଁ, କିନ୍ତୁ ଶୁକ୍ରବାର ରାତିରେ ତୁମେ ବା ଏଠାରେ କାହିଁକି ଥିଲ ରଜତ ?

: ଓହୋ, କଥାଟା ମୁଁ ତମକୁ କହିବାକୁ ଏକଦମ୍ ଭୁଲିଯାଇଛି । ମୁଁ ଏଠାରେ କେତେଦିନ ହେବ ଗୋଟାଏ କେବିନ୍ ଭଡ଼ା ନେଇଥିଲି, ମୋର ଲେଖା ଉପନ୍ୟାସଟାକୁ ଶେଷ କରିଦେବା

ପାଇଁ । ମାତ୍ର କେତେଗୁଡ଼ିଏ ଟଙ୍କା କେବଳ ଭଡ଼ା ଗଣିବା ସାର ହେଲା ସିନା, ହେଲେ ଉପନ୍ୟାସଟା କିନ୍ତୁ...

: ତା'ହେଲେ ତମେ ଏଠାରେ ଗୋଟିଏ କେବିନ୍ ଭଡ଼ା ନେଇ ଉପନ୍ୟାସ ଲେଖୁଥିଲ । ଶର୍ମା ଆଡ଼େ ଚାହିଁ ବରେନ୍ ପଚାରିଲା, ଆଚ୍ଛା ସେ କେବିନ୍‌ଟା ଖାଲି ଅଛି ନା କେହି ରହିଲେଣି ?

ଶର୍ମା କି ବୋର୍ଡ ଆଡ଼େ ଦୃଷ୍ଟି ବୁଲାଇ ଆଣି କହିଲା : ନା, ଖାଲି ଅଛି ।

: ଚାବିଟା ଟିକିଏ ଦିଅନ୍ତୁ ତ ! ବଂଧୁ କିପରି ନିର୍ଜନ କୋଠରିଟିଏ ବାଛି ନେଇଥିଲେ ମୁଁ ଥରେ ଦେଖିଆସେ ।

ଶର୍ମା ବରେନ୍ ହାତକୁ ଚାବି ବଢ଼ାଇ ଦେଲା ।

ଆମେ ଆଗେଇଲୁ କେବିନ୍ ଆଡ଼କୁ । ବାଟରେ ବରେନ୍ ଗମ୍ଭୀର ହୋଇ ଚାଲିଥିଲା । କେବିନ୍ ଦୁଆରେ ପହଞ୍ଚି ହଠାତ୍ ଅଟକି ଯାଇ ମୋତେ କହିଲା : ମୁଁ ଏକଦମ୍ ଭୁଲି ଯାଇଥିଲି ରଜତ । ରୀଟାର ଦେହ ଖରାପ ନା ? ପ୍ରାୟ ସାତଟା ବାଜିବ । ତୁମେ ଘରକୁ ଚାଲିଯାଅ । ସେ ବିଚାରୀ ହୁଏତ ଯନ୍ତ୍ରଣାରେ ଛଟପଟ ହେଉଥିବ ।

ମୁଁ ପ୍ରତିବାଦ କରିପାରିଲି ନାହିଁ । ମୋତେ ଘର ଦୁଆରୁ ବିଦାୟ କରି ଦେବାର ଉଦ୍ଦେଶ୍ୟ ମୁଁ ଅନୁମାନ କରିପାରିଥିଲି । ମୋ ଅନୁପସ୍ଥିତିରେ ଫୋରେନ୍‌ସିକ ଦପ୍ତରର ଲୋକମାନଙ୍କୁ ଘରେ ପୂରାଇ ଘରର ପ୍ରତିଟି ଇଞ୍ଚ ସେ ପରୀକ୍ଷା ନିରୀକ୍ଷା କରାଇବ । ମୋ ସମ୍ବନ୍ଧରେ ଯାହା ଜାଣିବା କଥା ଅତି ସହଜରେ ଜାଣିପାରିବ ।

ଅନିଚ୍ଛା ସତ୍ତ୍ୱେ ମୁଁ କହିଲି : ତେବେ ମୁଁ ଆସୁଚି ବରେନ୍, ଘରେ ଅଛି । ଦରକାର ହେଲେ...

: ନିଶ୍ଚୟ, ନିଶ୍ଚୟ । ତମେ ଯାଇ ଟିକେ ବିଶ୍ରାମ କର ।

ମୁଁ ଚାଲି ଆସିଲି । ମୋଡ଼ରେ ବସ୍ ଷ୍ଟପେଜ୍‌ରେ ଅପେକ୍ଷା କଲି ବସ୍‌କୁ । ଗୋଟାଏ ସିଗାରେଟ୍ ଲଗେଇ ଆନମନା ହୋଇ ମୁଁ ଚିନ୍ତା କରୁଛି, ହଠାତ୍ ମୋ ସାମ୍ନାରେ ଆସି ଗୋଟାଏ ଜିପ୍ ଛିଡ଼ା ହୋଇ ପଡ଼ିଲା । ଜିପ୍‌ରେ ଗୁଇନ୍ଦା ଦପ୍ତରର ସେଇ ଦି'ଜଣ ଅଫିସର । ମୋତେ ଜଣେ କହିଲା : ଆରେ ଆପଣ ବସ୍‌ରେ ଯିବେ କାହିଁକି, ଆମେତ ସିଆଡ଼େ ଯାଉଚୁ, ଆସନ୍ତୁ ଆପଣଙ୍କୁ ପହଞ୍ଚାଇ ଦେବୁ ।

ସେତିକିବେଳେ ଗୋଟାଏ ବସ୍ ଆସି ଠିଆ ହେଲା । ମୁଁ ସିଗାରେଟ୍‌ଟା ଜୋତାରେ ମାଡ଼ି ଲିଭେଇ ବସ୍‌କୁ ଉଠିଯାଇ କହିଲି : ଧନ୍ୟବାଦ । ଗୁଇନ୍ଦା ଅଫିସର ଦୁହେଁ ଜିପ୍‌ରେ ବସି ହସୁଥିଲେ ।

ବସ୍‌ଟା ଅନେକ ଦୂର ଆଗେଇ ଯାଇ ଯେତେବେଳେ ମୋଡ଼ ଘୂରିଲା, କୌତୂହଳ ବଶତଃ ପଛକୁ ଚାହିଁଲି, ହଁ ଅନୁମାନ ମୋର ନିର୍ଭୁଲ । ସେଇ ଜିପ୍‌ଟି ଠିକ୍ ବସ୍‌ଟିର ପଛେ ପଛେ ଚାଲିଛି... ଚାଲିଛି... ଏବଂ ଚାଲିଛି ।

\+ \+ \+

ବିମର୍ଷ ମନରେ ବାହାରକୁ ଚାହିଁ ଡ୍ରଇଂ ରୁମ୍‌ରେ ବସି ରହିଥିଲା ରୀଟା । ମୁଁ ଘରେ ପଶିବା ମାତ୍ରକେ ଛୁଟିଆସି ମୋତେ ଜାବୁଡ଼ି ଧରିଲା ।

ମୁହଁ ତା'ର ପାଣ୍ଡୁର, ତାହାଣିରେ ହତାଶା, ମୋ ଛାତି ଉପରେ ମୁହଁ ରଖି ସେ ଗୋଟିପଣ ଥରୁଥିଲା ।

ମୁଁ ତା' ମୁଣ୍ଡର ଅଲରା ବାଳ ସଜାଡ଼ି ଦେଲି । ତାକୁ ଶକ୍ତ ହାତରେ ଜାବୁଡ଼ି ଧରିଲି । ସେ ମୋ ମୁହଁକୁ ଚାହିଁଲା । ଥରିଲା ଗଳାରେ କହିଲା : ଜାଣ, ସେମାନେ ଆସିଥିଲେ ।

କେଉଁମାନେ ?

: ପୋଲିସ୍ । ଖରାବେଳେ ମୁଁ ଟିକେ ବଜାରକୁ ଯାଇଥିଲି । ଫେରିଆସି ଦେଖେ ଘରର ଜିନିଷପତ୍ର ସବୁ ଓଲଟପାଲଟ । ସେମାନେ ହୁଏତ ଘରେ କେଉଁଠି ମାଇକ୍ରୋଫୋନ୍...

ତା' ମୁହଁ ମୁଠେଇ ଧରିଲି । ଇଂଗିତରେ ଚୁପ୍ ରହିବାକୁ କହିଲି । ହଁ, ହୋଇପାରେ । ମାଇକ୍ରୋଫୋନ୍ କଥାଟା ମୋ ମନକୁ ଥରଟିଏ ବି ଆସି ନାହିଁ । ସେମାନେ କୌଣସି ଗୋପନ ସ୍ଥାନରେ ମାଇକ୍ରୋଫୋନ୍ ବସେଇ ଦେଇଯିବା କିଛି ବିଚିତ୍ର ନୁହେଁ ।

ଖୁବ୍ ବେଶି ଖୋଜାଖୋଜି କରିବାକୁ ପଡ଼ିଲା ନାହିଁ । ବୈଠକଖାନାରେ ଟଙ୍ଗା ହୋଇଥିବା ଆମର ଏକ ଯୁଗଳ ଫଟୋ ପଛରେ ଗୋଟାଏ ସରୁ କଳା ତାର ଆଖିରେ ପଡ଼ିଲା । ରୀଟା ଠିକ୍ ଅନୁମାନ କରିଛି । ଯାହାହେଉ ଏହାର କିଛି ଗୋଟାଏ ବ୍ୟବସ୍ଥା କରିବାକୁ ହେବ । ଘରେ ଆମେ ରହିବୁ, ଅଥଚ କଥାବାର୍ତ୍ତା ହେବୁ ନାହିଁ, ଏହା କିପରି ସମ୍ଭବ । ଆମ କଥାବାର୍ତ୍ତା ଯେପରି ମାଇକ୍ରୋଫୋନ୍ ଯାଏ ପହଞ୍ଚି ନ ପାରେ ତା'ର ବ୍ୟବସ୍ଥା କରିବାକୁ ହେବ ।

ଆର ଘରୁ ରେଡ଼ିଓଟା ଉଠେଇ ଆଣି, ସେଇ ଫଟୋ ତଳେ ଗୋଟାଏ ଉଚ୍ଚା ଷ୍ଟୁଲ୍ ଉପରେ ରଖିଲି । ରେଡ଼ିଓ ସୁଇଚ୍ ଖୋଲି ଭଲ୍ୟୁମ୍ ବଢ଼େଇ ଦେଲି । ବାସ୍, ଏତିକି ଯଥେଷ୍ଟ ।

ତା'ପରେ ଘରର ସଦର ଦରଜା ଭିତରୁ ବନ୍ଦ କରି ଚାହିଁଲି ଚାରିଆଡ଼େ । ଆଲମାରୀ, ଟ୍ରଙ୍କ ସବୁ ଖେଳିଆ ହୋଇଛି । ଘରେ ପଶି ସେମାନେ ତା'ହେଲେ କ'ଣ ଖୋଜୁଥିଲେ ?

ହଠାତ୍ ମୋର ମନେପଡ଼ିଗଲା କଥାଟା ।

ମୋର ସେଇ ବାଦାମୀ ରଙ୍ଗର ବ୍ଲେଜାରଟା...

କ୍ଷିପ୍ର ହସ୍ତରେ ଆଲମାରୀ ଖୋଲି ଖେଳେଇ ଗଲି । ପ୍ୟାଣ୍ଟ, କୋର୍ଟ, ଟାଇ ସବୁ ଅଛି । ନା, ନାହିଁ କେବଳ ସେଇ ବ୍ଲେଜାରଟା- ନା, ନାହିଁ, ନାହିଁ, ନାହିଁ ।

ତା'ହେଲେ ସେମାନଙ୍କର ଆୟୋଜନ ସଂପୂର୍ଣ୍ଣ । ସୁନା ପଞ୍ଜୁରି ମେଲା କରି କେବଳ ହଳଦୀବସନ୍ତ ପକ୍ଷୀ ଅପେକ୍ଷାରେ ସେମାନେ ବସି ରହିଛନ୍ତି ।

ମୋ ସମଗ୍ର ଶରୀରଟାରେ କିପରି ଏକ ଶୀତଳ ଝଡ଼ ବହିଗଲା । ବର୍ତ୍ତମାନ ମୋର କର୍ତ୍ତବ୍ୟ ? ମୁଁ ପାଷାଣ ମୂର୍ତ୍ତି ପରି ଶୂନ୍ୟ ହାଙ୍ଗରଟାକୁ ହାତରେ ଧରି ଠିଆ ହୋଇଥିଲି ।

ରୀଟା ମୋ ପାଖକୁ ଲାଗି ଆସି ମୋତେ ସ୍ପର୍ଶ କଲା : ଶୁଣୁଛ ?

: ଉଁ ।

: କ'ଣ ହେଲା ତମର । ଇମିତି ଚୁପ୍‌ଚାପ୍ ଠିଆ ହୋଇ ରହିଲ କାହିଁକି ?

: ମୋ ବ୍ଲେଜାର ଏଇ ହାଙ୍ଗାରରେ ଥିଲା, ନାହିଁ । ସେମାନେ ନେଇ ଯାଇଛନ୍ତି ।

: ନେଇ ଯାଇଛନ୍ତି ?

: ରୀଟା... ? ମୋ ମୁହଁରୁ ଏକ ଅଦ୍ଭୁତ ଆର୍ତ୍ତନାଦ ବାହାରି ଆସିଲା । ମୁଁ ଦୁଇ ହାତରେ ରୀଟାକୁ ଜାବୁଡ଼ି ଧରିଲି ।

ନୀରବତା ଭିତରେ କିଛି ସମୟ କଟିଯିବା ପରେ ରୀଟା ଶୀତଳ କଣ୍ଠରେ କହିଲା : ଆଚ୍ଛା, ବରେନ୍‌କୁ ଡାକି ସବୁ କଥା ବୁଝାଇ କୁହ, ସେ ଯଦି...

: ନା, କିଛି ଲାଭ ହେବ ନାହିଁ । ଅନେକ ଡେରି ହୋଇଯାଇଛି, ତା'ଛଡ଼ା ମୋ ହାତରେ ପ୍ରମାଣ କାହିଁ ?

: ତା'ହେଲେ... ଆଚ୍ଛା ଏତେଗୁଡ଼ାଏ ଟଙ୍କା, ସେସବୁ ବା ଗଲା କୁଆଡ଼େ ?

: ଟଙ୍କା ? ଶୂନ୍ୟ ଦୃଷ୍ଟିରେ ବହୁତ ସମୟ ମୁଁ ଅନାଇ ରହିଲି ରୀଟା ମୁହଁକୁ ।

: ସତେ ତ ! ସ୍ୱପ୍ନରୁ ଉଠିଲା ପରି ମୁଁ ମୁଣ୍ଡ ହଲାଇଲି । ଏତେଗୁଡ଼ାଏ ଟଙ୍କା । ସବୁ ଦଶଟଙ୍କିଆ ନୋଟ୍ । ପାଞ୍ଚ ଲକ୍ଷ । ଏତେଗୁଡ଼ାଏ ପଦାର୍ଥ କେଉଁଠି ଲୁଚେଇ ପାରେ ବ୍ରିଜଲାଲ ? କେଉଁଠି ?

: କାହିଁକି, ବ୍ୟାଙ୍କରେ ।

: ନା, ବ୍ୟାଙ୍କରେ ଏତେଗୁଡ଼ାଏ ଟଙ୍କା ଏକା ସାଙ୍ଗରେ ଜମା ଦେବାରେ ଅନେକ ବିପଦ ଅଛି । ସେକଥା ବ୍ରିଜଲାଲ ଜାଣେ । ତେଣୁ ଜାଣିଶୁଣି ଏତେ ବଡ଼ ଝୁଙ୍କି ସେ ନେଇ ନଥିବ ।

: ତା'ହେଲେ ଘରେ...

: ଘରେ ବି ବିପଦ କମ୍ ନୁହେଁ । ସେ ଜାଣେ ଦରକାର ହେଲେ ବରେନ୍‌କୁ କହି ପୋଛି ମୁଁ ତା'ର ଘର ଖାନତଲାସ କରିପାରେ । ତେଣୁ...

: ଆଶ୍ଚର୍ଯ୍ୟ ! ତା'ହେଲେ... ଘରେ ନୁହେଁ, ବ୍ୟାଙ୍କରେ ନୁହେଁ, ନିରାପଦ ଜାଗା ବୋଇଲେ, ଆଚ୍ଛା ବାହାରେ କେଉଁଠି ! ଧର ରେଲୱେ ଷ୍ଟେସନ କିମ୍ବା ଏଆରପୋର୍ଟର ଲେଫ୍‌ଟ ଲଗେଜ୍... ?

: କ'ଣ କହିଲ ? ଷ୍ଟେସନ୍, ଏଆରପୋର୍ଟର ଲେଫ୍‌ଟ ଲଗେଜ୍ ? ହଁ ହଁ । ଠିକ୍ କହିଛ । ଟଙ୍କା ବୋଇଲେ ଗୋଟାଏ ଛୋଟ ସୁଟ୍‌କେଶ । ସେଇଟାକୁ ନେଇ ଜମା ଦେଇ ଗୋଟାଏ ରିସିଟ୍ ଆଣିପାରିଲେ ସେ ନିରାପଦ । କେହି ଜାଣିବେ ନାହିଁ, କେହି ଶୁଣିବେ ନାହିଁ, ସନ୍ଦେହର ଅବକାଶ ଆଦୌ ନାହିଁ । ତେଣୁ ବ୍ରିଜଲାଲ ନିରାପଦ । ଆଉ ମୁଁ ?

: ତମେ ବରଂ ଗୋଟାଏ କଥା କର । ବରେନ୍‌କୁ ତମର ଏହି ସନ୍ଦେହର କାରଣଟା କୁହ । ସେ ଇଚ୍ଛା କଲେ...

: ନା ରୀଟା । କେବଳ ଗୋଟାଏ ଅନୁମାନ ଉପରେ ଭିତ୍ତି କରି ସତ୍ୟାସତ୍ୟ ପ୍ରମାଣ କରିହୁଏ ନାହିଁ । ଏ କ୍ଷେତ୍ରରେ ବରେନ୍ କିଛି କରିପାରିବ ନାହିଁ । ଯାହା କରିବାକୁ ହେବ ମୋତେ କରିବାକୁ ହେବ । ଏଥିପାଇଁ ସୂକ୍ଷ୍ମ କୌଶଳ ଆବଶ୍ୟକ, ହଁ କୌଶଳ, ବୁଦ୍ଧିର ଖେଳ । ବ୍ରିଜଲାଲ ଆଉ ମୁଁ, ମୁଁ ଆଉ ବ୍ରିଜଲାଲ । କେବଳ ବୁଦ୍ଧି କୌଶଳ...

ପଛକୁ ମୁହଁ ବୁଲେଇବା ମାତ୍ରକେ ଆଖି ପଡ଼ିଲା ମୋର ଟେଲିଭିଜନ ସେଟ୍ ଉପରେ । ବିଦ୍ୟୁତ୍ ବେଗରେ ମୋ ମୁଣ୍ଡ ଭିତରେ ଫୁଟି ଉଠିଲା ଉପାୟଟା, ରୀଟାକୁ ମୁଁ ଛାଡ଼ିଦେଇ ଛୁଟିଗଲି ଲେଖା ଟେବୁଲ୍‌କୁ ।

ରୀଟା ମୋ ପଛେ ପଛେ ଛୁଟି ଆସିଲା ।

ମୁଁ ଚେଆରରେ ବସି କଲମଟା ନେଇ ପାଟିରେ କାମୁଡ଼ି କିଛି ସମୟ ଚିନ୍ତା କଲି । ରୀଟା ଟେବୁଲ ଉପରକୁ ଝୁଙ୍କି ପଡୁଥିଲା । ମୁଁ କହିଲି : ତୁମେ ଦୁଇମିନିଟ୍ ଅପେକ୍ଷା କର । ମୁଁ ସବୁ କଥା କହୁଛି ତୁମକୁ ।

ପ୍ରାୟ ଦଶ ମିନିଟ୍ ଲାଗିଗଲା ମୋତେ ଲେଖାଟି ସଂପୂର୍ଣ୍ଣ କରିବା ପାଇଁ । ଲେଖିସାରି ଲେଖାଟି ମୁଁ ରୀଟାକୁ ଶୁଣାଇ ପଢ଼ିଲି :

ପୁଲିସ୍ ସୂତ୍ରରୁ ପ୍ରାପ୍ତ ସଂବାଦରେ ପ୍ରକାଶ, ମିସ୍ ସୁଲେଖା ପ୍ରସାଦର ହତ୍ୟା ରହସ୍ୟ ସମାଧାନ ଦିଗରେ ଦ୍ରୁତ ଆଗେଇ ଚାଲିଛି । ତଦନ୍ତକାରୀ ଅଫିସର ବରେନ୍ ହାଜରାଙ୍କ ମତରେ କୋଟିପତି ରାଜେନ୍ଦ୍ର ପ୍ରସାଦଙ୍କ ପ୍ରଦତ୍ତ ସେଇ ପାଞ୍ଚ ଲକ୍ଷ ଟଙ୍କା ଏବେବି ଏହି ସହରରେ କେଉଁଠି ନା କେଉଁଠି ଲୁଚି ରହିଛି । ଆତତାୟୀମାନେ ସେ ଟଙ୍କା ନେଇ ସହର ବାହାରକୁ ପଳେଇ ଯାଇପାରି ନାହାନ୍ତି ।

ଟଙ୍କା ଲୁଚି ରହିଥିବା ସମ୍ଭାବ୍ୟ ଜାଗା ପୋଲିସ୍ ଆଖିରେ ଦୁଇଟି । ଏକ : ବ୍ୟାଙ୍କ ଲକର୍, ଦୁଇ : ଷ୍ଟେସନ କିମ୍ବା ଏଆରପୋର୍ଟ ଲେଫ୍‌ଟ ଲଗେଜ୍ ।

ଏହି ଅନୁମାନ ଭିତ୍ତିରେ ରାଜ୍ୟପାଳଙ୍କଠାରୁ ବିଶେଷ ଅନୁମତି ନେଇ ଆଗାମୀକାଲି ସକାଳ ନଅଟା ଠାରୁ ପୋଲିସ୍ ଏକ ଜରୁରୀ କର୍ମସୂଚୀ ଗ୍ରହଣ କରିବ । ସହରର ପ୍ରତ୍ୟେକଟି ଲକର୍‌ର ତାଲା ଖୋଲି ସେମାନେ ଦେଖିବେ, ଷ୍ଟେସନ ଓ ଏଆରପୋର୍ଟର ପ୍ରତିଟି ମାଲ୍‌ପତ୍ର ସେମାନେ ପରୀକ୍ଷା କରିବେ । ପୋଲିସ୍ ଅଫିସର ବରେନ୍ ହାଜରାଙ୍କର ଦୃଢ଼ ବିଶ୍ୱାସ, ଏହି କର୍ମସୂଚୀ ସଫଳ ହେଲେ ଆତତାୟୀ ଏବଂ ଲୁଟ୍ ହୋଇଥିବା ଟଙ୍କା, ଦୁଇଟିଯାକ ସମସ୍ୟାର ସମାଧାନ ହୋଇପାରିବ ।

ସର୍ବସାଧାରଣଙ୍କୁ ଅନୁରୋଧ, ଗତ ଏକମାସ ମଧ୍ୟରେ ଯେଉଁମାନେ ବ୍ୟାଙ୍କ ଲକର୍ ଭଡ଼ା ନେଇଛନ୍ତି ବା ଲେଫ୍‌ଟ ଲଗେଜରେ ଜିନିଷ-ପତ୍ର ରଖିଛନ୍ତି, ସେମାନେ କାଲି ସକାଳ ଆଠଟା ମଧ୍ୟରେ ଲକର୍ ଚାବି ଓ ମାଲ ଜମା ଦେବା ରସିଦ୍ ସମେତ ନିକଟବର୍ତ୍ତୀ ଥାନାରେ ଯୋଗାଯୋଗ କରନ୍ତୁ ।

ଲେଖାଟା ପଢ଼ିସାରି ରୀଟା ମୁହଁକୁ ଚାହିଁଲି ।

: ଏଇଟା ତ ଗୋଟାଏ ରିପୋର୍ଟ । ରୀଟା ନିରୁତ୍ସାହିତ କଣ୍ଠରେ କହିଲା ।

: ହଁ, ରିପୋର୍ଟ । ମୁଁ ହେଉଛି ହେଡ୍‌କ୍ୱାଟର୍ସର ପ୍ରେସ୍ ଅଫିସର । ଟେଲିଭିଜନ, ରେଡ଼ିଓ, ଖବରକାଗଜ ସବୁ ଜାଗାକୁ ସଂବାଦ ପରିବେଷଣ କରିବା ମୋର କାମ । ଏଇ ସଂବାଦଟା ଯଦି ଟେଲିଭିଜନ ଅଫିସ୍‌ରେ ପହଞ୍ଚି ପାରେ, ତା'ହେଲେ ପ୍ରଚାର ସମ୍ବନ୍ଧରେ ବିନ୍ଦୁମାତ୍ର ସନ୍ଦେହ କେହି କରିବେ ନାହିଁ ।

: କିନ୍ତୁ ସେଥିରେ ତୁମର ଲାଭ କ'ଣ ହେବ ?

: ଲାଭ ମାନେ ? ଅନେକ ଲାଭ । କେବଳ ରିପୋର୍ଟର କଥାଗୁଡ଼ିକ କୌଣସି ପ୍ରକାର ବ୍ରିଜଲାଲ କାନରେ ପହଞ୍ଚାଇବାକୁ ହେବ । ତା'ହେଲେ ଆଉ କିଛି ଦରକାର ନାହିଁ । ନିଜେ ବ୍ରିଜଲାଲ ମୋତେ ତା'ର ଗୋପନ ସ୍ଥାନଟି ଦେଖାଇ ଦେବ ।

: କିନ୍ତୁ ଟେଲିଭିଜନର ଏଇ ବିଶେଷ ଘୋଷଣାଟି ସେ ଯେ ଶୁଣିବ, ତା'ର ତ କୌଣସି ନିଶ୍ଚୟତା ନାହିଁ ।

: ସେ ଦିଗଟା ବି ମୁଁ ଭାବିଛି । ସେ ଯେପରି ଏହି ଘୋଷଣାଟି ଶୁଣେ, ତା'ର ବ୍ୟବସ୍ଥା ବି ମୋତେ କରିବାକୁ ହେବ । କିନ୍ତୁ ନା, ଆଉ ଡେରି କରିବା ଉଚିତ ନୁହେଁ । ଫୋନ୍ ଘରୁ କଲେ ବି ଚଳିବ ନାହିଁ । କାରଣ ପୋଲିସ୍ ହୁଏତ ଆମ ଫୋନ୍‌କୁ ଟ୍ୟାପ୍

କରିବାର ସମସ୍ତ ବ୍ୟବସ୍ଥା କରିସାରିଛନ୍ତି । ବରଂ ବାହାରକୁ ଯାଇ, ପବ୍ଲିକ୍ ଫୋନ୍ ବୁଥ୍‌ରୁ କାମ ଶେଷ କରି ଆସେ । ତୁମେ ଘରୁ କୁଆଡ଼େ ବାହାରକୁ ବାହାରିବ ନାହିଁ ।

ରୀଟାର ଉତ୍ତରକୁ ପ୍ରତୀକ୍ଷା ନ କରି ତୀବ୍ର ବେଗରେ ମୁଁ ଘରୁ ବାହାରି ଚାଲିଗଲି । ବାଟରେ ଆଉ କୌଣସିଆଡ଼େ ନଜର ନ ଦେଇ ଏକ ପ୍ରକାର ଦଉଡ଼ି ଦଉଡ଼ି ପଶିଲି ଯାଇ ଗୋଟାଏ ପବ୍ଲିକ୍ ଫୋନ୍ ବୁଥ୍ ଭିତରେ । କାଚ ଦରଜାଟା ଭିତର ପଟୁ ଭିଡ଼େଇ ଦେଇ ନିଜକୁ ଟିକିଏ ନିରାପଦ ମନେକଲି ।

ସଂଗେ ସଂଗେ ଡାଏଲ୍ କଲି ଟେଲିଭିଜନ ଅଫିସ୍‌କୁ । ଜନସଂଯୋଗ ଅଫିସର ଚନ୍ଦ୍ରଭାନୁ ଦେବ ଟେଲିଫୋନ୍ ଧରିଲେ ।

: ହ୍ୟାଲୋ ?

: ମୁଁ ରଜତ କହୁଛି । ମିଃ ଦେବ ! ଗୋଟାଏ ଜରୁରୀ ଘୋଷଣା ଅଛି । ଆଜି ରାତି ଠିକ୍ ଏଗାରଟାରେ ପ୍ରଚାର ହୋଇପାରିଲେ ଖୁବ୍ ଭଲ ହୁଅନ୍ତା ।

: ନିଶ୍ଚୟ ହେବ । ଘୋଷଣାଟା କ'ଣ କୁହନ୍ତୁ । ମୁଁ ଲେଖିରଖୁଚି, ଚନ୍ଦ୍ରଭାନୁ ଦେବ ଅପର ପ୍ରାନ୍ତରୁ କହିଲେ ।

ମୁଁ ଲେଖି ଆଣିଥିବା ରିପୋର୍ଟଟା ମୂଳରୁ ଶେଷଯାଏ ପଢ଼ିଗଲି । ଚନ୍ଦ୍ରଭାନୁ ଦେବ ନୋଟ୍ କରିନେଲେ ।

: ଠିକ୍ ଅଛି, ତା'ହେଲେ ମୁଁ ରହୁଛି । ମନେରଖିବେ, ଆଜି ରାତି ଏଗାରଟା । ରିସିଭର୍ ରଖିଦେଲି ।

ଯା'ହେଉ ଗୋଟାଏ ସମସ୍ୟାର ସମାଧାନ ହେଲା । ଆଉ ରହିଲା ଗୋଟାଏ । ସେଇଟାର ବି ସମାଧାନ କରିବାକୁ ହେବ ।

ପୁଣି ରିସିଭର ଉଠାଇଲି । ଏଥର ଡାଏଲ୍ କଲି ରାଜେନ୍ଦ୍ର ପ୍ରସାଦଙ୍କ ନମ୍ବର ।

: ହ୍ୟାଲୋ ? ଅପରପ୍ରାନ୍ତରୁ ଶୁଣାଗଲା ।

: ମୁଁ ପୋଲିସ୍ ହେଡ୍‌କ୍ୱାର୍ଟର୍ସରୁ କହୁଛି, ଟିକିଏ ବ୍ରିଜ୍‌ଲାଲ୍‌କୁ ଡାକି ଦିଅନ୍ତୁ ।

: ଦେଉଛି ।

କିଛି ସମୟର ନୀରବତା ପରେ ଅପର ପ୍ରାନ୍ତରୁ ବ୍ରିଜଲାଲର କଣ୍ଠ ସ୍ୱର ଶୁଣାଗଲା : ହ୍ୟାଲୋ ?

ମୁଁ କହୁଛି ।

: କିଏ ଆପଣ ?

: ବାଃ, ମୋତେ ଚିହ୍ନିପାରୁ ନାହାନ୍ତି । ଆଜି ଆପଣଙ୍କ ସହିତ ଏତେ କଥା ହୋଇଗଲା, ମୋତେ ପିସ୍ତଲ ଦେଖାଇ ଆପଣ ନିଜେ ମୋ'ଠାରୁ ଟେପ୍‌ଯାକ ନେଇଗଲେ, ଏତେ ଶୀଘ୍ର ସବୁ କଥା ଭୁଲିଯାଉଛନ୍ତି ?

: ହଁ ମନେପଡ଼ିଲା । କହନ୍ତୁ, କ'ଣ ଦରକାର ।

: ଦରକାର ମୋର କିଛି ନାହିଁ ବ୍ରିଜଲାଲଜୀ, ମନେହେଉଛି ଦରକାରଟା ଆପଣଙ୍କର । ଶେଷ ରକ୍ଷା ବୋଧହୁଏ ଆପଣଙ୍କର ହୋଇପାରିଲା ନାହିଁ । ଯାହା ଗୋଟାଏ ଫନ୍ଦି ପାଞ୍ଚୁଛି ବରେନ୍ ନା ?

: ଫନ୍ଦି ? କି ଫନ୍ଦି ହେ ?

: କ'ଣ ଆଉ ହୁଅନ୍ତା । ଆପଣଙ୍କୁ ଧରିବାର ଫନ୍ଦି । ଆଜି ରାତି ଏଗାରଟାରେ ଟେଲିଭିଜନର ବିଶେଷ ଘୋଷଣାଟି ମନଦେଇ ଶୁଣିବେ । ସମୟଟା ମନେରଖିବେ, ରାତି ଏଗାରଟା । ରହିଲି । ସଂଗେ ସଂଗେ ରିସିଭରଟା ରଖିଦେଲି ।

ବାସ୍, ଏଥର ମୋର ସବୁ କାମ ଶେଷ । ମୁଁ ନିଶ୍ଚିନ୍ତ । ପୋଲିସ୍ ଯଦି ମୋତେ ଏହାପରେ...

ମୋ ଭାବନା ଶେଷ ହେଲା ନାହିଁ । ମୁଁ ଫୋନ୍ ବୁଥ୍‌ର କବାଟ ଖୋଲି ବାହାରକୁ ପାଦ ଦେଇ ଦୁଇପାହୁଣ୍ଡ ଆଗେଇବା ମାତ୍ରକେ ଦେଖିଲି, ଜଣେ ସବଳକାୟ ପୋଲିସ୍ ଅଫିସର ମୋ ପଥରୋଧ କରି ପ୍ରଶ୍ନ କଲେ : ଆପଣଙ୍କ ନା ରଜତ ମିଶ୍ର ?

: ହଁ । ମୁଁ ଦୃଢ଼ କଣ୍ଠରେ କହିଲି ।

: ଆପଣଙ୍କୁ ଏଇ ମୁହୂର୍ତ୍ତରେ ହେଡ୍‌କ୍ୱାଟର୍ସ ଯିବାକୁ ହେବ ମିଃ ମିଶ୍ର, ଦୟାକରି...

: ଚାଲନ୍ତୁ । ମୁଁ ସହଜ କଣ୍ଠରେ ଉତ୍ତର ଦେଇ ଆଗେଇ ଯାଇ ପୋଲିସ୍ ଜିପ୍‌ରେ ଉଠିଲି ।

ଗାଡ଼ିର ନରମ ଗଦି ଉପରେ ବସି ଆଖିବୁଜି ଚିନ୍ତା କରିବାକୁ ଲାଗିଲି, ଏଥର ଶେଷ ଦୃଶ୍ୟ ଆରମ୍ଭ ହୋଇଗଲା ।

ଦେଖାଯାଉ ।

ଜଳନ୍ତା ସିଗାରେଟ୍ ହାତରେ ଏକ ଧୂମାୟିତ ପରିବେଶ ଭିତରେ ଚିନ୍ତାନ୍ୱିତ ହୋଇ ବସିଥିଲା ବରେନ୍ । ମୁଁ ଘରେ ପ୍ରବେଶ କରିବା ମାତ୍ରକେ କହିଲା : ଆସ ।

ଧୀର ପଦଚାଳି ଆଗେଇଯାଇ ବସିଲି ବରେନ୍ ସାମ୍ନାରେ ।

ପକେଟ୍ ଅଣ୍ଡାଳି ସିଗାରେଟ୍ ପ୍ୟାକେଟ୍‌ଟା ମୋ ଆଡ଼କୁ ବଢ଼େଇ ଦେଇ ବରେନ୍ କହିଲା  ସିଗାରେଟ୍ ନିଅ ।

ପ୍ୟାକେଟ୍‌ରୁ ସିଗାରେଟ୍ ବାହାର କରି ଓଠ ମଝିରେ ଚାପି ଧରିଲି । ଅଗ୍ନି ସଂଯୋଗ କଲି ।

ହସିଲି ମୁଁ । ଏପରି ସ୍ତବ୍ଧ ନୀରବତା ସହ୍ୟ କରି ହେଉ ନଥିଲା । କହିଲି : ଘଟଣା କ'ଣ ? ମୋ ସିଗାରେଟ୍ ଖିଆ ଦେଖିବା ପାଇଁ ତମେ କ'ଣ ଏତେ ରାତିରେ ମୋତେ ଏଠାକୁ ଡାକି ଆଣିଛ ?

: ହୁଁ, ତୁମେ... ମାନେ ମୁଁ ଠିକ୍ ବୁଝିପାରୁନି ରଜତ, ତୁମେ ଏସବୁ କ'ଣ କଲ ?

: ହଁ, ଯାହା କରିଛି ସବୁ ତୁମକୁ କହିବି । ଆଗ କହିଲ ତମେ କ'ଣ ମୋତେ ଗ୍ରେପ୍ତାର କରିଛ ?

: ନା, କରିନି । ଗ୍ରେପ୍ତାର କରିବା ଆଗରୁ ତମ ସହିତ ଖୋଲାଖୋଲି ଭାବରେ ସବୁ କଥା ଥରେ ଆଲୋଚନା କରିବାକୁ ଚାହେଁ ।

ବେଶ୍, କ'ଣ ଜାଣିବାକୁ ଚାହ ଏଥର ପ୍ରଶ୍ନ କର ।

: ତୁମେ... ମାନେ ମୁଁ କ'ଣ କହୁଥିଲି କି ତୁମେ କ'ଣ ସୁଲେଖାକୁ ଖୁଣ୍ କରିଚ ?

: ନା, ମୁଁ ମ୍ଳାନ ହସିଲି । କିନ୍ତୁ ନା କହିଲେ ତୁମେ କ'ଣ ମୋ କଥା ବିଶ୍ୱାସ କରିବ ?

: ଦେଖ ରଜତ ! ଆମର ବନ୍ଧୁତ୍ୱ ଦୀର୍ଘ କୋଡ଼ିଏ ବର୍ଷର । ଏକା ସାଂଗରେ ସ୍କୁଲ,

କଲେଜ କରିଛେ । ବହୁ ସୁଖଦୁଃଖ ଭିତରେ ଆମର ଅତୀତର ଦିନଗୁଡ଼ିକ ଅତିବାହିତ ହୋଇଛି । ତମେ କେମିତି ଭାବୁଛ ମୁଁ ତମ କଥା ବିଶ୍ୱାସ କରିପାରିବି ନାହିଁ । ଯାହାସବୁ ଘଟିଚି, ଘଟଣାଚକ୍ରରେ ତମେ କେତେବେଳେ କିମିତି ଛନ୍ଦି ହୋଇପଡ଼ିଲ, ସବୁ ଗୋଟି ଗୋଟି କରି ମୋତେ କୁହ । ମୁଁ ଶୁଣେ । ବରେନ୍‌ର ସ୍ୱର ବେଦନା ଜର୍ଜରିତ ହୋଇ ଉଠିଥିଲା ।

ନୀରବତା ଭିତରେ କେତୋଟି ମୁହୂର୍ତ୍ତ ଅତିବାହିତ ହୋଇଗଲା ।

ମୁଁ ବରେନ୍ ମୁହଁକୁ ଓ ବରେନ୍ ମୋ ମୁହଁକୁ ଚାହିଁ ରହିଲୁ ।

ଆରମ୍ଭ କଲି, ସବିତା ପ୍ରସାଦ ସହିତ ମୋର ପ୍ରଥମ ସାକ୍ଷାତର ଦିନଠାରୁ, ଆଜିର ହେଡ୍‌କ୍ୱାଟର୍ସକୁ ଆସିବାର ପୂର୍ବ ମୁହୂର୍ତ୍ତରେ ଦୁଇଟି ଫୋନ୍ କରିଥିବା ପର୍ଯ୍ୟନ୍ତ ସବୁ ଗୋଟି ଗୋଟି କରି କହିଗଲି । କେବଳ କହିଲି ନାହିଁ ଗୋଟିଏ କଥା, ସେଇଟା ସୁଲେଖାର ମୃତଦେହ ଅପସାରଣ କରିବାକୁ ଯାଇ ରୀଟା ମୋତେ ସାହାଯ୍ୟ କରିଥିବା କଥା ।

ବରେନ୍ ମୋ କାହାଣୀ ଶୁଣି ଅବାକ୍ ହୋଇ ଯାଇଥିଲା । ପ୍ରଥମେ ହୁଏତ ବିଶ୍ୱାସ କରିପାରି ନଥିଲା ଯେ ଏପରି ଏକ ସତ୍ୟକଥା ସହିତ ମୁଁ ସଂଶ୍ଳିଷ୍ଟ ହୋଇପାରେ । ଧୀରେ ଧୀରେ ଜଡ଼ତା କଟେଇ ସେ କହିଲା : ତୁମେ କ'ଣ ଶୁଣାଉଛ ରଜତ ! ଭିତରେ ଭିତରେ ଏତେ ସବୁ ଘଟଣା । ମୁଁ ତ ମୋଟେ ଚିନ୍ତା କରିପାରୁ ନାହିଁ । ତା'ଛଡ଼ା ମୁଁ ଭାବିପାରୁ ନାହିଁ ସୁଲେଖା ସାବତମା'ର ଚକ୍ରାନ୍ତର ଶିକାର ହେବାକୁ ରାଜିହେଲା କାହିଁକି ?

: ମୁଁ ବି ସେଇକଥା ଅନେକ ଭାବିଛି । ଉତ୍ତର ଖୋଜିବାକୁ ଯାଇ ବାରମ୍ବାର ମୋର କେବଳ ସେଇ ଜଣକ ଆଖି ଆଗରେ ଭାସିଉଠିଛି । ଏ କ୍ଷେତ୍ରରେ ବି ସେଇ ବ୍ରିଜଲାଲ । ହୁଏତ ଲୋଭ ଦେଖେଇଚି ସେ ସୁଲେଖାକୁ । କହିଛି ସବିତାଠାରୁ କୌଶଳରେ ଟଙ୍କା ଆଦାୟ କରି ସେମାନେ ଦୁହେଁ ପଳାଇବେ ଏ ସହର ଛାଡ଼ି । ଅନ୍ୟ କେଉଁଠି ଯାଇ ବାହା-ସାହା ହୋଇ ସୁଖର ସଂସାର ଗଢ଼ିବେ । ହୁଏତ ବ୍ରିଜଲାଲର ସେଇ ମଧୁର କାହାଣୀ ନିର୍ବୋଧଙ୍କ ପରି ବିଶ୍ୱାସ କରିଛି ସୁଲେଖା ଏବଂ ଶେଷରେ ତାକୁ ହୁଏତ ସେଇ ସଇତାନ ହାତରେ ମୃତ୍ୟୁ ବରଣ କରିବାକୁ ହିଁ ପଡ଼ିଛି ।

: ବୁଝିଲି ଯେ, କିନ୍ତୁ ସୁଲେଖା ବା ସବିତାର ଦୋଷ ତୁମେ ପ୍ରମାଣ କରିବ ବା କିପରି ? ତମ ହାତରେ ତ କୌଣସି ପ୍ରକାରର ସାକ୍ଷୀ ପ୍ରମାଣ ନାହିଁ ।

: ନା କିଛି ନାହିଁ । ସେମାନଙ୍କ ବିରୁଦ୍ଧରେ ମୋର ଏକମାତ୍ର ପ୍ରମାଣ 'ଟେପ୍'ଯାକ ବି ମୁଁ ବ୍ରିଜଲାଲ୍‌କୁ ଦେଇ ଦେଇଛି । ବର୍ତ୍ତମାନ ମୁଁ ନିଃସ୍ୱ, ଅସହାୟ । ବର୍ତ୍ତମାନ ଶେଷ ସମ୍ବଳ କହିବାକୁ ଗଲେ ଏକମାତ୍ର ମୋର ଭାଗ୍ୟ । ଅବଶ୍ୟ ତୁମେ ଯଦି ମୋତେ ଟିକେ ସାହାଯ୍ୟ କର ।

: କିନ୍ତୁ ସାହାଯ୍ୟ କରି ବା ଲାଭ କ'ଣ ହେବ ତମର ? ତମେ କ'ଣ ଭାବିଛ ଟେଲିଭିଜନର ଘୋଷଣା ଶୁଣି ବ୍ରିଜଲାଲ ଧାଇଁବ ତା' ଟଙ୍କା ବାକ୍ସ ସମ୍ଭାଳିବାକୁ ?

: ହଁ ବରେନ୍ । ସେ ନିଶ୍ଚୟ ଧାଇଁବ । ମୁହଁରେ ଯେତେ ଭଡ଼ଙ୍ଗ ଦେଖେଇଲେ ବି ମନ ଭିତରେ ତା'ର ପ୍ରଚଣ୍ଡ ଭୟ । ସେ ଅପରାଧୀ, ସେ ଖୁଣୀ । ଟେଲିଭିଜନର ଘୋଷଣା ଶୁଣି ସେ ମୋଟେ ସ୍ଥିର ହୋଇ ବସିପାରିବ ନାହିଁ ।

: କିନ୍ତୁ ଏପରି ଅବସ୍ଥାରେ ମୁଁ ତୁମକୁ କ'ଣ ସାହାଯ୍ୟ କରିପାରିବି ?

: ବିଶେଷ କିଛି ମୁଁ ଚାହୁ ନାହିଁ । ତମେ କେବଳ ଏଇକ୍ଷିଣା ସଦଳବଳେ ମୋ ସହିତ

ଯିବ ରାଜେନ୍ଦ୍ର ପ୍ରସାଦଙ୍କ ଘରକୁ । ବାକି ଯାହା କରଣୀୟ ଏଗାରଟା ବାଜିବା ମାତ୍ରକେ ଜାଣିପାରିବ ।

: କିନ୍ତୁ... ଟିକିଏ ଇତସ୍ତତଃ କଲା ବରେନ୍ । ସ୍ଥିର ଦୃଷ୍ଟିରେ ମୋ ଆଡ଼କୁ ଚାହିଁଲା କିଛିକ୍ଷଣ । ତା'ପରେ ଚେଆରରୁ ଉଠିଲା । ବେଶ୍, ଚାଲ ତା'ହେଲେ ।

ଆମେ ଆଗେଇଲୁ । ନୀରବତା ଭିତରେ ଗାଡ଼ି ଛୁଟି ଚାଲିଥିଲା । ରାଜେନ୍ଦ୍ର ପ୍ରସାଦଙ୍କ ଘରେ ପହଞ୍ଚିବାକୁ ଆମକୁ ଦଶ ମିନିଟ୍‌ରୁ ବେଶି ସମୟ ଲାଗିଲା ନାହିଁ ।

ଦରବାନ ଦରଜା ଖୋଲିଦେଲା । ନୂତନ କରି କୌଣସି ପରିଚୟ ଦେବାକୁ ପଡ଼ିଲା ନାହିଁ । ଫାଟକରେ ଜଣେ ପୋଲିସ୍ ଅଫିସରଙ୍କୁ ପହରା ଦେବାକୁ କହି ଆମେ ଭିତରେ ପଶିଲୁ ।

ଭିତରଟା ଅନ୍ଧକାର । କେବଳ ବଗିଚା ଆଡ଼କୁ ଗୋଟିଏ ଘରେ ଆଲୋକ ଜଳୁଚି । ବରେନ୍ ଓ ତା'ର ସଙ୍ଗୀମାନଙ୍କୁ ଅପେକ୍ଷା କରିବାକୁ କହି ଅତି ସନ୍ତର୍ପଣରେ ମୁଁ ଆଗେଇ ଗଲି ସେଇ ଆଲୋକିତ ଘରଟି ଆଡ଼କୁ ।

ଘରର ବଡ଼ ବଡ଼ ଝରକା ଦୁଇଟା ଖୋଲା । ମୁଁ ଅତି ସନ୍ତର୍ପଣରେ ଉଙ୍କି ମାରି ଚାହିଁଲି ଘର ଭିତରକୁ ।

ହଁ, ଘର ଭିତରେ ସେଇ ଦି'ଜଣ ଅଛନ୍ତି । ବାଁ ପାଖ ସୋଫା ଉପରେ ବସିଛି ବ୍ରିଜଲାଲ, ତା' ହାତରେ ଗୋଟାଏ ହୁଇସ୍କି ଗ୍ଲାସ । ଡାହାଣ ପାଖ ଡିଭାନ ଉପରେ ଚିତ୍ ହୋଇ ଶୋଇଛି ସବିତା । ଦୁଇ ହାତ ଫାଙ୍କରେ ତା'ର ଜ୍ୱଳନ୍ତ ସିଗାରେଟ୍ । ଦିଆଲ ଘଡ଼ିରେ ସେତେବେଳେ ଏଗାରଟା ବାଜିବାକୁ ମାତ୍ର ପାଞ୍ଚ ମିନିଟ୍ ବାକି ।

ମୁହଁ ବୁଲେଇ ଇଙ୍ଗିତରେ ଡାକିଲି ବରେନ୍‌କୁ ।

ସେ ଧୀର ପଦଚାଳି ଆଗେଇ ଆସିଲା ମୋ ପାଖକୁ ।

ହୁଇସ୍କି ଗ୍ଲାସ୍‌ରୁ ଦୁଇଢୋକ ଗଳାଧଃକରଣ କରି ବ୍ରିଜଲାଲ ଘଡ଼ିକୁ ଚାହିଁଲା : ଧେତ୍ ଧବୁ ବାଜେ ଖବର । ବିପଦରେ ପଡ଼ି ଶେଷ ମୁହୂର୍ତ୍ତରେ ରଜତ ମୋ ସଂଗରେ ପରିହାସ କରିଛି ।

: ହେଉ, ତଥାପି ସାବଧାନ ହେବା ଦରକାର । ଏଇ ତ ଆଉ ଦୁଇମିନିଟ୍ ପରେ ଏଗାରଟା ବାଜିବ । ତମେ ଟେଲିଭିଜନଟା ଚଳେଇ ଦିଅ । ସବିତା ସେହିପରି ଶୋଇ ରହିଥିଲା ।

ବ୍ରିଜଲାଲ ଉଠିଲା । ଯେପରି ତା'ର ଶତ ଅନିଚ୍ଛା । ତଥାପି ସୁଇଚ୍ ଟିପି ଚଳେଇ ଦେଇ ବସିଲା ଯାଇ ପୂର୍ବ ସ୍ଥାନରେ ।

ପର୍ଦ୍ଦାରେ ଫୁଟି ଉଠିଲା ଦୁଇଟି କ୍ରୁଦ୍ଧ ଯୁବକଙ୍କ ମୁଖ । ଦୁହିଁଙ୍କ ହାତରେ ଖୋଲା ତରୱାଲ । ଜଳନ୍ତା ଆଖିରେ ଦୁହେଁ ଦୁହିଁଙ୍କୁ ଚାହିଁ ରହିଛନ୍ତି । ଅର୍ଥାତ୍ ଟେଲିଭିଜନରେ ଗୋଟାଏ ଜୋର୍‌ଦାର୍ ମାରପିଟ୍ ଛବି ପ୍ରଦର୍ଶିତ ହେଉଛି ।

ସବିତା ଉଠି ବସିଲା । ଆଷ୍ଟ୍ରେରେ ଜଳନ୍ତା ସିଗାରେଟ୍‌ଟା ଗୁଞ୍ଜିଦେଇ ଚାହିଁଲା ଟେଲିଭିଜନ ପର୍ଦ୍ଦା ଆଡ଼କୁ ।

ଠିକ୍ ସେତିକିବେଳେ ଦିଆଲ ଘଡ଼ିରେ ଠନ୍ ଠନ୍ ହୋଇ ଏଗାରଟା ବାଜିବାର ଶବ୍ଦ ହେଲା ।

ଦୁଇ ଯୁବକଙ୍କର ରକ୍ତାକ୍ତ ଚାହାଣି ମିଳେଇ ଗଲା ପର୍ଦ୍ଦା ଉପରୁ । ପର ମୁହୂର୍ତ୍ତରେ ଟେଲିଭିଜନ ପର୍ଦ୍ଦା ଉପରେ ଭାସି ଉଠିଲା ଚନ୍ଦ୍ରଭାନୁ ଦେବଙ୍କର ମୁହଁ । ସେ ସ୍ମିତ ହସି କହିଲେ : କ୍ଷମା କରିବେ, ଏପରି ଏକ ରୁଦ୍ଧଶ୍ୱାସ ମୁହୂର୍ତ୍ତରେ ଆପଣମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟାଉଥିବାରୁ ମୁଁ ଦୁଃଖିତ । ବେଶି ସମୟ ମୁଁ ନେବି ନାହିଁ । କେବଳ ଗୋଟିଏ ଛୋଟ ଘୋଷଣା, ଶୁଣନ୍ତୁ...

ଚନ୍ଦ୍ରଭାନୁଦେବ ରଜତ ଲେଖିଥିବା ଘୋଷଣାଟି ପଢ଼ି ଶୁଣାଇଲେ । ଘୋଷଣା ଶେଷ ହେଲା । ଧୀରେ ପର୍ଦ୍ଦା ଉପରୁ ଲିଭିଗଲା ଚନ୍ଦ୍ରଭାନୁ ଦେବଙ୍କ ଛବି, ପର ମୁହୂର୍ତ୍ତରେ ପୁଣି ଫୁଟି ଉଠିଲା ସେହି ରକ୍ତମୁଖୀ ଦୁଇ ଯୁବକଙ୍କ ଦୃଶ୍ୟ ।

ପରବର୍ତ୍ତୀ ଘଟଣା ପାଇଁ ଆମେ ଅଶେଷ ଆଗ୍ରହରେ ଅପେକ୍ଷା କରି ଠିଆ ହୋଇଥିଲୁ । ଉତ୍ତେଜନାରେ ମୋର ସମଗ୍ର ଶରୀର କମ୍ପି ଉଠିଥିଲା ।

ବ୍ରିଜଲାଲ ଝଡ଼ ବେଗରେ ଛୁଟିଯାଇ ଟେଲିଭିଜନ ସୁଇଚ୍‌ଟା ବନ୍ଦ କରିଦେଲା । ବୁଲିପଡ଼ି ସବିତା ଆଗରେ ଠିଆ ହେଲା ମୁହୂର୍ତ୍ତେ, କହିଲା : ମୁଁ ଚାଲିଲି ।

: କୁଆଡ଼େ ? ସବିତା କିନ୍ତୁ ହଠାତ୍ ଅସ୍ତବ୍ୟସ୍ତ ହୋଇ ଉଠି ପଡ଼ିଲା ।

: କୁଆଡ଼େ ବୁଝିପାରୁନ ? ସମ୍ପଦର ନିରାପତ୍ତା ପ୍ରତି ଦୃଷ୍ଟି ନ ଦେଲେ, କାଲି ସକାଳ ନଅଟାରୁ ଖାନତଲାସୀ ସୁରୁ ହୋଇଯିବ । ସମୟ ହାତରେ ମାତ୍ର ଆଜି ରାତିଟା । ତେଣୁ ଏଇ ସଂଗେ ସଂଗେ ଯେମିତି ହେଉ ଯାଇ ଏଆର୍‌ପୋର୍ଟରୁ ଆଟାଚିଟା ଅନ୍ତତଃ ମୁକୁଳେଇ ଆଣିବାକୁ ହେବ ।

ଏଆର୍‌ପୋର୍ଟ...

ମୋ ଛାତି ଭିତରଟା ଯେପରି କମ୍ପି ଉଠିଲା ।

: କିନ୍ତୁ... ସବିତା କ'ଣ କହିବାକୁ ଯାଇ ଟିକିଏ ଅଟକି ଗଲା । କିନ୍ତୁ ଏଇଟା ଯଦି ରଜତର କୌଶଳ ହୋଇଥାଏ, ତୁମକୁ ଫାନ୍ଦରେ ପକାଇବା ପାଇଁ...

: ବେଶ୍ ! ତେବେ ମୁଁ ଘରେ ରହୁଛି, ତୁମେ ଯାଅ ।

: ନା ବାବା, ମୋତେ ସେ ସବୁ ଯିବା ଆସିବା ପୋଷାଏ ନାହିଁ । ବରଂ ସେ ଆଟାଚିଟା ଯେଉଁଠି ଯେମିତି ଅଛି, ସେଇଠି ସେମିତି ରହିଥାଉ ।

: ମାନେ ? ବାରବର୍ଷର ତପ ଆଜି ଶୁଖୁଆ ଝୋଳରେ ଯିବ । ଏତେ ପରିଶ୍ରମ କରି, ଏତେ କସରତ କରି, ଶେଷରେ ସବୁ ନେବ ପୋଲିସ୍ ?

: ତା'ଛଡ଼ା ଯେ ଅନ୍ୟ ଉପାୟ ନାହିଁ ।

: ଉପାୟ ତ ବତେଇ ଦେଲି । ମୋଠାରୁ ରସିଦ୍ ନେବ । ଏଆର୍‌ପୋର୍ଟରେ ଦେଖେଇବ । ମାଲ ଧରି ସିଧା ଚାଲି ଆସିବ ଘରକୁ ।

: ନା ମୋ ଦ୍ୱାରା ସେସବୁ ହେବ ନାହିଁ । ସବିତା ଦୃଢ଼ କଣ୍ଠରେ ପ୍ରତିବାଦ କଲା ।

: ମୁଁ ତମର ମଙ୍ଗଳ ପାଇଁ କହୁଛି ସବିତା । ତମେ ଯାଅ, ନହେଲେ ବିପଦରେ ପଡ଼ିବ ।

: ବିପଦ ମାନେ ?

: ବିପଦ ମାନେ- ବି-ପ-ଦ । ବିଷଦ ଭାବରେ ବ୍ୟାଖ୍ୟା ଶୁଣିବ ? ରଜତ ମୋତେ ଯେଉଁ ଟେପ୍ ଦେଇଥିଲା, ସେଗୁଡ଼ାକ ମଧ୍ୟ ସେଇ ଆଟାଚି ଭିତରେ ଅଛି । ଏଥର ବିପଦର ଅର୍ଥ ବୁଝିଲ ?

: ଟେପ୍ ! କ'ଣ କହୁଚ ବ୍ରିଜଲାଲ୍ ? ତୁମେ ମୋତେ ସେଦିନ କହିଲ ନା ତମେ ସେ ଟେପ୍ ସବୁ ପୋଡ଼ି ଦେଇଛ !

ହସି ଉଠିଲା ବ୍ରିଜଲାଲ । କହିଲା : ମୁଁ ଏତେ ବୋକା ନୁହେଁ ଯେ ଟେପ୍‌ଟା ପୋଡ଼ିଦେଇ ତମକୁ କଳଙ୍କମୁକ୍ତ କରି ବସିରହିବି ଆଉ ତମେ ମୋ ଦ୍ୱାରା ତମର ସମସ୍ତ କାମ ହାସଲ କରିସାରିବା ପରେ, ଟଙ୍କା ପଇସା, ଧନସମ୍ପତ୍ତି ସବୁ ଆୟତ୍ତ କରି ମୋତେ ଲାତ୍ ମାରି ବାହାର କରିଦେବ । ଆଗ ବୁଢ଼ା ମରୁ, ତମେ ମତେ ବିବାହ କର, ତା'ପରେ ତମରି ସାମ୍‌ନାରେ ଟେପ୍‌ଗୁଡ଼ାକ ଡିଆସିଲି ମାରିଦେବି । ବୁଝିଲ ?

ସବିତା ହଠାତ୍ ଯେପରି କ୍ରୋଧରେ ଜଳି ଉଠିଲା । କହିଲା : ତୁମେ ଗୋଟାଏ ବୋକା, ତୁମେ ନିର୍ବୋଧ, ତୁମେ...

ବ୍ରିଜଲାଲ୍ ହସିଲା । ସୋଫା ଉପରେ ଯାଇ ବସିଲା ଆରାମରେ । କହିଲା : ତମ ଆଖିରେ ମୁଁ ଯାହା ହୁଏ, କିନ୍ତୁ ମୁଁ ନିର୍ବୋଧ ନୁହେଁ । ମୋତେ କେହି ଦୋଷୀ ସାବ୍ୟସ୍ତ କରିପାରିବେ ନାହିଁ । ପୋଲିସ୍ ହାତକୁ ଆଟାଚି ଗଲେ ତମେ ବିପଦରେ ପଡ଼ିବ । ଅତଏବ ଯାହା ଭଲ ମନେକରୁଛ କର ।

: ବେଶ୍ ଭଲ କଥା । ମୋ ଭଲମନ୍ଦର ଦାୟିତ୍ୱ ଯେତେବେଳେ ଏକା ମୋତେ ବୁଝିବାକୁ ହେବ, ମୋ ବଂଚିବାର ବ୍ୟବସ୍ଥା ମୁଁ କରିବି । ଏଇକ୍ଷିଣା ପୋଲିସ୍‌କୁ ଫୋନ୍ କରି ସବୁ କଥା କହିଦେବି । କହିବି, ରଜତର କିଛି ଦୋଷ ନାହିଁ, ସୁଲେଖାକୁ ଖୁଣ୍ କରିଚ ତମେ । ମୋତେ ପ୍ରରୋଚିତ କରି ଖସଡ଼ା ପଥରେ ଆଗେଇ ନେଇଚ ତମେ । ତା'ର ପ୍ରମାଣ ମୋ ପାଖକୁ ଲେଖା ତମର ବିଡ଼ା ବିଡ଼ା ଚିଠି ମୁଁ ପୋଲିସ୍ ହାତକୁ ବଢ଼ାଇ ଦେବି ।

: ହୁଁ... ବ୍ରିଜଲାଲ୍ ଉଠି ଠିଆ ହେଲା । ପକେଟ୍‌ରେ ହାତ ଭରି କହିଲା : ମୋତେ ଭୟ ଦେଖାଉଚ ?

: ନା ଭୟ ନୁହେଁ, ତୁମ ପରି ଗୋଟାଏ ଜାନୁଆରକୁ...

ସବିତା କଥା ଶେଷ କରିପାରିଲା ନାହିଁ । ବୋଧହୁଏ ବ୍ରିଜ୍‌ଲାଲ ହାତର ଉଦ୍ୟତ ରିଭଲ୍‌ଭରଟା ଦେଖି ସେ ସ୍ତବ୍ଧ ହୋଇଯାଇଥିଲା । ଆଖି ତା'ର ସ୍ଥିର ହୋଇଯାଇଥିଲା ଛୋଟ ରିଭଲ୍‌ଭର୍‌ଟି ଉପରେ ।

ବ୍ରିଜ୍‌ଲାଲ ବିଦ୍ରୂପର ହସ ହସି କହିଲା : ପୋଲିସ୍ ଡାକିବା, ଏଆରପୋର୍ଟରୁ ଯାଇ ଆଟାଚି ଆଣିବା ବରଂ ଏସବୁ ଧନ୍ଦା ଆପାତତଃ ଥାଉ । ମୋ ମତରେ ବର୍ତ୍ତମାନ ପରିସ୍ଥିତିରେ ଅତି ସହଜ କାମଟା ହେଉଚି, ତୁମ କପାଳକୁ ଲକ୍ଷ୍ୟ କରି ଥରଟିଏ ଟ୍ରିଗାର ଟିପିବା । ବାସ୍, ସବୁ ଝାମେଲା ଶେଷ । ତମେ ବି ନିଶ୍ଚିନ୍ତ, ମୁଁ ବି ନିଶ୍ଚିନ୍ତ । କାଲି ସକାଳୁ ଯେତେବେଳେ ପୋଲିସ୍ ଆସିବ, ମୁଁ କହିବି ତମେ ଆତ୍ମହତ୍ୟା କରିଛ । ଟେଲିଭିଜନରୁ ସେଇ ବିଶେଷ ଘୋଷଣା ଶୁଣିବା ପରେ ତମେ ଆଉ ମୁଣ୍ଡ ଠିକ୍ ରଖିପାରି ନାହଁ । ପୋଲିସ୍ ହାତରେ ଧରା ପଡ଼ିବା ଆଗରୁ ତୁମେ ଆତ୍ମହତ୍ୟା କରି ଲାଞ୍ଛନା ଓ ଗଞ୍ଜଣା ହାତରୁ ନିଜକୁ ବଞ୍ଚାଇଛ । କ'ଣ ଉପାୟଟା ସମୟ ଉପଯୋଗୀ ନୁହେଁ ?

ସବିତା ରକ୍ତଚାଉଳ ଚୋବାଉଥିଲା । ସେ କର୍କଶ କଣ୍ଠରେ କହିଲା : ମୋତେ ଖୁଣ୍ କରି ତୁ ନିସ୍ତାର ପାଇବୁନି ସଇତାନ । ରଜତ ତୋ ସମ୍ବନ୍ଧରେ ସବୁ ଜାଣେ । ଏତେ ସହଜରେ ସେ ତତେ ଛାଡ଼ିଦେବ ନାହିଁ ।

: ଆରେ ଯା, ରଜତ । ସେ ରକମ କେତେ ରଜତକୁ ହଜମ କରିଦେଇଛି ଜୀବନରେ । ନା, ଆଉ କଥା ବଢ଼େଇ ସମୟ ନଷ୍ଟ କରିବାକୁ ମୁଁ ଚାହେ ନାହିଁ । ଏଥର ପ୍ରସ୍ତୁତ ହୁଅ । ତମେ ଯାଇ ସେ ଦିଆଲ ପାଖରେ ହାତ ଟେକି ଠିଆ ହୁଅ । ହଁ, ସେଇଠି । ଏଥର ମୋ ଆଡ଼କୁ ଚାହଁ ।

ରିଭଲ୍‌ଭରଟା ସବିତାର କପାଳକୁ ଲକ୍ଷ୍ୟ କରି ପାଦେ ପାଦେ କରି ଆଗେଇ ଯାଉଥିଲା ବ୍ରିଜଲାଲ୍ ।

: ଆଜି ତମର ସବୁ ଦୁଶ୍ଚିନ୍ତାର ଅବସାନ ଘଟିବ ସବିତା । ଏଥର ଇଷ୍ଟନାମ ସ୍ମରଣ କର ।

ବରେନ୍ କିନ୍ତୁ ଆଉ ସ୍ଥିର ହୋଇ ରହିପାରିଲା ନାହିଁ । ସେ ମୋତେ ଠେଲିଦେଇ ଝରକା ପାଖକୁ ଆଗେଇ ଯାଇ ତା' ରିଭଲ୍‌ଭର ବାହାର କଲା ସେଇ ମୁହୂର୍ତ୍ତରେ ।

ବ୍ରିଜଲାଲ ତା' ଛୋଟ ରିଭଲ୍‌ଭରଟାକୁ ଚୁମ୍ବନ କଲା, ଟ୍ରିଗାର ଉପରେ ଆଙ୍ଗୁଳି ଦାବିବା ଆଗରୁ, ବରେନ୍‌ର ରିଭଲ୍‌ଭରଟା ହଠାତ୍ ଗର୍ଜି ଉଠିଲା । ବ୍ରିଜଲାଲ୍ ଗୋଟାଏ ଆର୍ତ୍ତଚିତ୍କାର କରି ଲୋଟି ପଡ଼ିଲା ଫ୍ଲୋର୍ ଉପରେ ।

ଏ କ'ଣ ହେଲା ?

ଘଟଣାଟା କ'ଣ ଘଟିଲା କିଛି ବୁଝିପାରିବା ଆଗରୁ ବରେନ୍ ଡେଇଁପଡ଼ିଲା ଫ୍ଲୋର୍ ଉପରକୁ ।

ବ୍ରିଜ୍‌ଲାଲ ରକ୍ତାକ୍ତ ଶରୀରରେ ଚେଷ୍ଟା କରୁଥିଲା ତା' ହାତରୁ ଛିଟିକି ପଡ଼ିଥିବା ରିଭଲ୍‌ଭର୍‌ଟା ଫ୍ଲୋର୍ ଉପରୁ ଗୋଟେଇ ଆଣିବା ପାଇଁ, କିନ୍ତୁ ସାମ୍‌ନାରେ ବରେନ୍‌ର ରୁଦ୍ର ମୂର୍ତ୍ତି ଦେଖି ସେ କମ୍ପିତ କଣ୍ଠରେ କହିଲା : ସୁଲେଖାକୁ ଖୁଣ୍ ମୁଁ କରିଛି । କିନ୍ତୁ ସବିତା ମୋତେ ଉତ୍ସାହ ଦେଇଛି, ପ୍ରବର୍ତ୍ତାଇଛି, ଲୋଭ ଦେଖାଇଛି । ତା'ର ପ୍ରମାଣ ଆପଣ ପାଇବେ ସେଇ ଆଟାଚି କେସ୍‌ରୁ, ଏଆରପୋର୍ଟ ଲେଫ୍ଟ ଲଗେଜ୍‌ରେ ଅଛି । ପାଞ୍ଚଲକ୍ଷ ଟଙ୍କା ଆଉ ଟେପ୍ । ଆପଣ ଲେଖିନିଅନ୍ତୁ, ମୁଁ ସହିକରି ଦେଉଛି ।

ଦ୍ରୁତ ହସ୍ତରେ ମୁଁ ବ୍ରିଜଲାଲ୍‌ର ଜମାନବନ୍ଦୀ ଲେଖି ଚାଲିଥିଲି ।

କଲମ ସହ କାଗଜଟା ବଢ଼ାଇ ଦେଲି ବ୍ରିଜଲାଲ୍ ହାତକୁ । ବ୍ରିଜଲାଲ୍ ମୋ ଆଡ଼କୁ ଥରେ ଚାହିଁଲା । ହସିଲା । କହିଲା : ଆପଣ ଠିକ୍ କହୁଥିଲେ ରଜତବାବୁ । ମୁଁ ବଂଚିରହିଲେ ଆପଣଙ୍କୁ ଗୁରୁ କରିବି ।

ବ୍ରିଜଲାଲ୍ ହାତରୁ ବରେନ୍ କାଗଜ ଖଣ୍ଡିକ ନେଲା । ଦୁଇଜଣ କନେଷ୍ଟବଲଙ୍କୁ ନିର୍ଦ୍ଦେଶ ଦେଲା ବ୍ରିଜ୍‌ଲାଲ୍‌କୁ ଶୀଘ୍ର ହସ୍‌ପିଟାଲ୍‌କୁ ନେଇଯିବା ପାଇଁ ।

ବରେନ୍ ମୋ ମୁହଁକୁ ଚାହିଁଲା । କହିଲା : ତମେ ତା'ହେଲେ ଏ କେସ୍‌ରେ ରାଜସାକ୍ଷୀ । ଆଉ ମିସେସ୍ ପ୍ରସାଦ ?

ସବିତା ଦୁଇ ହାତ ଭିତରେ ମୁହଁ ଘୋଡ଼େଇ ଆକୁଳ କଣ୍ଠରେ କାନ୍ଦି ଉଠିଲା ।

●



ଆଧୁନିକ ବଙ୍ଗଳା କଥାସାହିତ୍ୟରେ ଶରଦିନ୍ଦୁ ବନ୍ଦୋପାଧ୍ୟାୟଙ୍କ ଠାରୁ ଆରମ୍ଭ କରି ସତ୍ୟଜିତ୍ ରାୟଙ୍କ ପର୍ଯ୍ୟନ୍ତ ବହୁ ପ୍ରବୀଣ କଥାକାର ରହସ୍ୟ-ଉପନ୍ୟାସ ରଚନା କରି ବଙ୍ଗଳା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । କିନ୍ତୁ ଓଡ଼ିଶାରେ କଥାସାହିତ୍ୟର ଏହି ଲୋକପ୍ରିୟ ବିଭାବ ପ୍ରତି ସତ୍ ସାହିତ୍ୟିକମାନଙ୍କର ଅବଦାନ ନଗଣ୍ୟ । ବ୍ୟତିକ୍ରମ ହେଉଛନ୍ତି କେବଳ ଏକଦା 'ଆସନ୍ତକାଲି' ଓ 'କଳନା' ସାହିତ୍ୟ ପତ୍ରିକାର ସଂପାଦକ କସ୍ତୁରିଚରଣ ଦାସ । 'ଜନ୍ମମାଟି', 'ଦାଗ', 'କୁମାରୀ କନ୍ୟା', 'କାଳିନ୍ଦୀ', 'ଜଳତରଙ୍ଗ', ପ୍ରଭୃତି ଉଚ୍ଚକୋଟିର ସାମାଜିକ ଉପନ୍ୟାସ ସହିତ 'ସ୍ୱର୍ଣ୍ଣମୟୂରୀ ଉପାଖ୍ୟାନ', 'ଉପନ୍ୟାୟିକା', 'ଜାପାନୀ ଖେଳନା', 'ସେଇ ଝିଅଟି', 'ଲାୟଲୀ ଗୋଟିଏ ଝିଅର ନାମ' ପ୍ରଭୃତି ଅର୍ଦ୍ଧଶତାଧିକ ରହସ୍ୟ-ଉପନ୍ୟାସ ଲେଖି ସେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସରଳ, ସାବଲୀଳ ଭାଷା, କାହାଣୀ ବିନ୍ୟାସରେ ଶିଳ୍ପୀସୁଲଭ କାରୁକାର୍ଯ୍ୟ ଏବଂ ସ୍ୱପ୍ନାଭ ପରିବେଶ ସୃଷ୍ଟି କରିବାରେ ଅପୂର୍ବ ଦକ୍ଷତା ଯୋଗୁ ତାଙ୍କର ରହସ୍ୟ ଉପନ୍ୟାସଗୁଡ଼ିକ ସଫଳ ସାହିତ୍ୟକୀର୍ତ୍ତି ଭାବରେ ପ୍ରଶଂସିତ ହୋଇଛି ।

ତାଙ୍କର ଅର୍ଦ୍ଧଶତାଧିକ ଉପନ୍ୟାସ ମଧ୍ୟରୁ ଶ୍ରେଷ୍ଠ ପାଞ୍ଚଗୋଟି ଉପନ୍ୟାସକୁ ନେଇ ଏଇ ପ୍ରଥମ ଆତ୍ମପ୍ରକାଶିତ ହେଉଛି 'ଶ୍ରେଷ୍ଠ ରହସ୍ୟ ଉପନ୍ୟାସ' ।

- ପ୍ରକାଶକ

ISBN - 81 - 86494 - 26 - 8